**ବସନ୍ତ ପଞ୍ଚସପ୍ତତି**

ବସନ୍ତ ଦାସ

ପ୍ରକାଶକ: ଆମ ଓଡ଼ିଶା
୪ ଆର୍ ୧/୨, ୟୁନିଟ୍-୩
ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ: ଡୁଡୁଲି ପ୍ରୋସେସ୍ ଆଣ୍ଡ୍ ଅଫ୍‌ସେଟ୍
ବାପୁଜୀ ନଗର, ଭୁବନେଶ୍ୱର-୭୫୧୦୦୯



ପ୍ରଥମ ପ୍ରକାଶ: ଜାନୁଆରୀ, ୨୦୧୫

ମୂଲ୍ୟ: ଟ.୪୦୦/-

**Basanta Panchasaptati**
Basanta Das

Publisher: Aama Odisha
4R 1/2, Unit-3,
Bhubaneswar-751001
e-mail: aamaodisha@gmail.com

Printed at : Duduly Process & Offset
Bapuji Nagar, Bhubaneswar-751009

1st print : January, 2015



Price : ₹. 400/-

ISBN: 978-81-89436-92-6

ସୁଦୂର ୟୁରୋପରେ ରହି ମୋ ଆତ୍ମଜୀବନୀ ପୁସ୍ତକର ଲେଖା ସମାପ୍ତ କରିବାପାଇଁ ଉତ୍ସାହିତ କରିଥିବା ଓ ପ୍ରେରଣା ଯୋଗାଇଥିବା ପୁଅ ଚନ୍ଦନ, ବୋହୂ ସାଲୋନୀ ଓ ଦୁଇ ନାତୁଣୀ ଏଲିନା ଓ ସାଇନାଙ୍କ ହାତରେ ଏ ପୁସ୍ତକଟି ଅର୍ପଣ କରୁଛି ।

-ବସନ୍ତ

# କୈଫିୟତ

୨୦୦୭ ମସିହା ସେପ୍ଟେମ୍ବର ମାସର ପ୍ରଥମ ସପ୍ତାହ । ମୁଁ ସସ୍ତ୍ରୀକ ଚେକ୍ ରିପବ୍ଲିକର ଅଷ୍ଟ୍ରୋଭା ସହରକୁ ଯାଇଥିଲି । ପୁଅ ଚନ୍ଦନ ଓ ବୋହୂ ସାଲୋନୀ ସେଠାରେ ରହୁଥିଲେ। ଚନ୍ଦନ ଆର୍‌ସେଲର ମିତ୍ତଲ କମ୍ପାନୀରେ ସେଲସ୍ ଏକଜିକ୍ୟୁଟିଭ୍(କଣ୍ଟ୍ରି ମ୍ୟାନେଜର) ଭାବରେ ଅବସ୍ଥାପିତ ହୋଇଥିଲା ।

ଓଡ଼ିଶାର ଅନ୍ୟତମ ସୁଯୋଗ୍ୟ ସନ୍ତାନ, ବିଶିଷ୍ଟ ଇଂଜିନିୟର, ମୋର ଅଗ୍ରଜ ପ୍ରତିମ ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ ଜର୍ମାନୀର ନେସ୍‌ସ ସହରରେ ଦୀର୍ଘଦିନ ଧରି ରହିଛନ୍ତି । ମୁଁ ପୂର୍ବରୁ ଜର୍ମାନୀ ଯାଇଥିଲେ ହେଁ, ବର୍ଲିନ ସହର ସମେତ ଅନ୍ୟ କେତେକ ସହର ଦେଖିବାର ସୁଯୋଗ ପାଇନଥିଲି । ସେଥିପାଇଁ ରାଜେନ୍ଦ୍ର ଭାଇ ଆଉଥରେ ଜର୍ମାନୀ ଯିବାପାଇଁ ସବୁପ୍ରକାର ବ୍ୟବସ୍ଥା କରିଥିଲେ ।

ସେପ୍ଟେମ୍ବର ୧୫ ତାରିଖ ଦିନ ମୁଁ ଅଷ୍ଟ୍ରୋଭାରୁ ଯାଇ ଡୁସଲଡର୍ଫରେ ପହଞ୍ଚିଲି । ଡ. ଦାସଙ୍କ ଘରେ ଦୁଇଦିନ ରହିଲା ପରେ ସେପ୍ଟେମ୍ବର ୧୭ ତାରିଖରେ ଆମେ ବର୍ଲିନ ସହରକୁ ଯାଇଥିଲୁ । ପଞ୍ଚତାରକା ହୋଟେଲ 'ହୋଟେଲ କମେଟ୍'ର ୪୧୯ନମ୍ବର ଡିଲକ୍ସସୁଟ୍‌ରେ ଆମର ରହିବାର ବ୍ୟବସ୍ଥା ହୋଇଥିଲା । ସେ ରୁମ୍‌ରେ ରାଜେନ୍ଦ୍ରଭାଇଙ୍କ ସହିତ ଏକତ୍ର ରହିବାର ସୁଯୋଗ ମତେ ମିଳିଥିଲା ।

କଥା ପ୍ରସଙ୍ଗରେ ସେ ପ୍ରସ୍ତାବ ଦେଇଥିଲେ, "ଗତ ପଚାଶ ବର୍ଷ ମଧ୍ୟରେ ଓଡ଼ିଶାର ସମାଜିକ ଓ ରାଜନୈତିକ କ୍ଷେତ୍ରରେ ଯାହା ସବୁ ଘଟିଯାଇଛି, ସେସବୁ ଘଟଣାବଳୀ ଆଗାମୀ ପିଢ଼ିର ପିଲାମାନଙ୍କ ଜାଣିବା ପାଇଁ ଲିପିବଦ୍ଧ ହେବା ଆବଶ୍ୟକ । ତାହା ନହେଲେ ଆମ ପିଲାମାନେ ନିଜ ରାଜ୍ୟ ସଂପର୍କରେ କିଛି ଜାଣିବା ପାଇଁ ସୁଯୋଗ ପାଇବେ ନାହିଁ। ଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଜଣେ ପ୍ରବୀଣ ସାମ୍ବାଦିକ ଭାବରେ ତମେ ଯାହାସବୁ ଅଙ୍ଗେ ଲିଭାଇଛ,

ଯେଉଁସବୁ ଘଟଣାକୁ ନିକଟରୁ ଅନୁଧ୍ୟାନ କରିଛ, ତାକୁ ଯଦି ତମେ ଆତ୍ମଜୀବନୀରେ ପ୍ରକାଶ ନକରିବ, ତେବେ ଜଣେ ସଚେତକ ନାଗରିକ ଭାବରେ ନିଜର କର୍ତ୍ତବ୍ୟରେ ଅବହେଳା କରିଚ ବୋଲି ଲୋକେ କହିବେ ।"

ମୁଁ ତାଙ୍କୁ ବୁଝାଇବାକୁ କହିଥିଲି, "ଆତ୍ମଜୀବନୀ ସେହିମାନଙ୍କର ଲେଖା ହୁଏ, ଯେଉଁମାନେ ସମାଜରେ କିଛି ପଦପଦବୀର ଅଧିକାରୀ ହୋଇଥାନ୍ତି । ସମାଜରେ ପ୍ରତିଷ୍ଠା ଅର୍ଜନ କରିଥାନ୍ତି । ମୁଁ ତ ଜଣେ ଅକିଞ୍ଚନ ସାମ୍ବାଦିକ । ମୋର ଗୋଟିଏ କ'ଣ ଆତ୍ମଜୀବନୀ ଲେଖାଯିବ । ଆତ୍ମଜୀବନୀ ଲେଖୁଲେଖୁ ହୁଏତ ତାହା ଆତ୍ମବଡ଼ିମାରେ ପରିଣତ ହୋଇଯାଇପାରେ ।"

ସେ ମୋ ଯୁକ୍ତିକୁ ଗ୍ରହଣ ନକରି ଓଲଟା କହିଥିଲେ, "ନିଜ ଶରୀରରେ ଧାରଣ କରୁଥିବା କସ୍ତୁରୀକୁ ମୃଗ ନିଜେ ଦେଖିପାରେନାହିଁ । ହେଲେ ଅନ୍ୟମାନେ ଏହି ଅମୂଲ୍ୟ କସ୍ତୁରୀର ସନ୍ଧାନ ପାଇଥାନ୍ତି ।"

ପୂର୍ବରୁ ଆତ୍ମଜୀବନୀ ଲେଖିବା ପାଇଁ ବହୁ ବନ୍ଧୁ ଓ ଶୁଭେଚ୍ଛୁ ମତେ ଏକାଧିକବାର ଅନୁରୋଧ କରିଥିଲେ । କିନ୍ତୁ କୌଣସି ନା କୌଣସି ବାହାନା ଦେଖାଇ ମୁଁ ସେମାନଙ୍କ ଅନୁରୋଧକୁ ଏଡ଼ାଇ ଦେଇଥିଲି । ମାତ୍ର ରାଜେନ୍ଦ୍ର ଭାଇଙ୍କ ଅକାଟ୍ୟ ଯୁକ୍ତିରେ ପରାସ୍ତ ହୋଇ ତାଙ୍କର ଅନୁରୋଧକୁ ଆଦେଶ ଭାବରେ ଗ୍ରହଣ କଲି ।

ବିଦେଶରୁ ଫେରି ଏ ଦିଗରେ ମନ ବଳାଇଲି । ନିରୋଳାରେ ବସି ଅତୀତର ରୋମନ୍ଥନ କଲି । ସବୁକଥା ହେଜ ହେଲା ନାହିଁ । ଅତୀତର ଅଭୁଲାସ୍ମୃତିକୁ ମନେ ପକାଇଲା ବେଳେ ନଟେଇର ଅଡୁଆସୂତା ଭଳି ମନର ଭାବନା ସବୁ ଅଡୁଆତଡୁଆ ହୋଇଗଲା । ସବୁକଥା ସଜାଡ଼ି କୋଉଟା ଆଗ, କୋଉଟା ପଛ, ସେସବୁର କ୍ରମାନ୍ୱୟ ରଖିହେଲାନି ।

ଦୀର୍ଘ ପଚାଶ ବର୍ଷର ସାମ୍ବାଦିକ ଜୀବନକାଳ ମଧ୍ୟରେ ଓଡ଼ିଶାର ସାମାଜିକ ଓ ରାଜନୈତିକ କ୍ଷେତ୍ରରେ ଘଟିଥିବା ଘଟଣାବଳୀର ମୁଁ ଜଣେ ମୂକସାକ୍ଷୀ । ସବୁକଥା ବଖାଣିବା କିମ୍ବା ଗୋଟିଏ ପୁସ୍ତକରେ ଲିପିବଦ୍ଧ କରିବା ସମ୍ଭବ ନୁହେଁ । ଅତୀତର ସ୍ମୃତିକୁ ରୋମନ୍ଥନ କରି ଯାହା ମନେ ପଡିଲା, ଏ ପୁସ୍ତକରେ ତାହା ସ୍ଥାନିତ ହୋଇଛି । ସେସବୁ କାଳ୍ପନିକ ନୁହେଁ; ବାସ୍ତବ ସତ୍ୟ ।

ମୋ ଜୀବନ ଏକ ଘଟଣାବହୁଳ ଅଙ୍କାବଙ୍କା କଣ୍ଟକିତ ପଥ । ସେ ପଥକୁ ଅତିକ୍ରମ କରିବାରେ ମତେ ଅନେକ ସଂଘର୍ଷ କରିବାକୁ ପଡିଛି ।

ସେଥିପାଇଁ ଅନେକଙ୍କର ସାହାଯ୍ୟ, ସହଯୋଗ ଓ ସହାନୁଭୂତି ଲୋଡ଼ିଛି । କେହିକେହି ସାହାଯ୍ୟର ହାତ ବଢ଼ାଇଥିବା ବେଳେ ଅନ୍ୟମାନେ ହତାଦର କରିଛନ୍ତି । ମୁଁ କିନ୍ତୁ ଉଭୟ ଗୋଷ୍ଠୀଙ୍କୁ ସମାନ ଭାବରେ ଶ୍ରଦ୍ଧା କରିଛି । ସାହାଯ୍ୟ, ସହଯୋଗ ପାଇନାହିଁ ବୋଲି କାହାରି ପ୍ରତି ବିଦ୍ୱେଷ ଭାବ ପ୍ରଦର୍ଶନ କରିନାହିଁ ।

ଜୀବନରେ ମୁଁ ଗୋଟିଏ ମାର୍ଗ ନିର୍ଦ୍ଧାରଣ କରି ସେଇ ମାର୍ଗରେ ଚାଲିଲି । ସେ ମାର୍ଗଟି ଉଚିତ କି ନୁହେଁ, ସେ କଥା 'ମୋ ପରେ' ମୂଲ୍ୟାୟନ ହେବ । ମୁଁ କିନ୍ତୁ ସମ୍ପଦରେ କିମ୍ବା ବିପଦରେ ମୋ ନିର୍ଦ୍ଧାରିତ ମାର୍ଗରୁ ବିଚ୍ୟୁତ ହୋଇନାହିଁ ।

ଗତ ୨୦୦୫ ମସିହାରେ ମୋ ସାମ୍ବାଦିକତା ଜୀବନର ଚାଳିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଗୋଟିଏ 'ଅଭିନନ୍ଦନିକା' ପ୍ରକାଶ ପାଇଥିଲା । ସେ ପୁସ୍ତକଟି ସଂକଳନ କରିଥିବା ମୋର ଅନୁଜପ୍ରତିମ ବନ୍ଧୁ ନୃସିଂହ ଚରଣ ସାହୁ ଲେଖିଥିଲେ, "ଶ୍ରୀ ଦାସ କେବଳ ଜଣେ ସଫଳ ସାମ୍ବାଦିକ ଭାବରେ ନୁହନ୍ତି, ଜଣେ ପ୍ରଖ୍ୟାତ ସ୍ତମ୍ଭକାର, ଗବେଷକ, ରାଜନୈତିକ ବିଶ୍ଳେଷକ ଓ ସୁସଂଗଠକ ଭାବରେ ସମାଜରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ସମାଜର ବହୁକ୍ଷେତ୍ରରେ ତାଙ୍କୁ ସଫଳତା ମିଳିଛି । କଲେଜ ଜୀବନରେ ଛାତ୍ର ନେତୃତ୍ୱ, ଏନ୍.ସି.ସି.ର ଅଣ୍ଡର ଅଫିସର ଭାବରେ ପୁରସ୍କୃତ ହେବା ସହ ସାମ୍ବାଦିକତା କ୍ଷେତ୍ରରେ ସ୍ୱୀକୃତି ଲାଭ କରିଛନ୍ତି । ସାମ୍ବାଦିକ ଜୀବନରେ ବହୁ ଲାଳସା ଓ ପ୍ରଲୋଭନକୁ ଏଡ଼ାଇ ସେ 'ଇଷ୍ଟର୍ଣ୍ଣ ଟାଇମ୍ସ'ର ସାମୟିକ ସମ୍ବାଦଦାତାରୁ ଜୀବନ ଆରମ୍ଭ କରି 'ଅମୃତ ବଜାର ପତ୍ରିକା'ର ବ୍ୟୁରୋ ମୁଖ୍ୟ ପଦରେ ଅଧିଷ୍ଠିତ ହୋଇପାରିଥିଲେ । ସେ ଜଣେ ବିରଳ ସାମ୍ବାଦିକ, ଯାହାଙ୍କର ଦଳ ମତ ନିର୍ବିଶେଷରେ ଏକାଧିକ ମୁଖ୍ୟମନ୍ତ୍ରୀଙ୍କ ସହିତ ଘନିଷ୍ଠ ସମ୍ପର୍କ ରହିଥିଲା । ଫଳରେ ତାଙ୍କ ବ୍ୟକ୍ତିତ୍ୱରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ବିଚକ୍ଷଣତା, ବିଜୁ ପଟ୍ଟନାୟକଙ୍କ ସାହସିକତା, ବୀରେନ ମିତ୍ରଙ୍କ ଉଦାରତା, ନୀଳମଣି ରାଉତରାୟଙ୍କ ଧୈର୍ଯ୍ୟଶୀଳତା ଓ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହନଶୀଳତାର ସମନ୍ୱୟ ଘଟିଛି ।"

ଏହା ମୋ ଜୀବନର ବାସ୍ତବ ଆକଳନ କିମ୍ବା ବନ୍ଧୁ ଶ୍ରୀ ସାହୁଙ୍କର ମୋ ପ୍ରତି ଥିବା ଶ୍ରଦ୍ଧା ଓ ସ୍ନେହ ଯୋଗୁ ସେ ଏପରି ପ୍ରକାଶ କରିଛନ୍ତି, ସେ ବିଷୟରେ କେବେ କେଉଁଠି ଚର୍ଚ୍ଚା ହୋଇନାହିଁ ।

ଯେଉଁସବୁ ଘଟଣାକୁ ନିକଟରୁ ଅନୁଧ୍ୟାନ କରିଛ, ତାକୁ ଯଦି ତମେ ଆତ୍ମଜୀବନୀରେ ପ୍ରକାଶ ନକରିବ, ତେବେ ଜଣେ ସଚେତକ ନାଗରିକ ଭାବରେ ନିଜର କର୍ତ୍ତବ୍ୟରେ ଅବହେଳା କରିଚ ବୋଲି ଲୋକେ କହିବେ ।"

ମୁଁ ତାଙ୍କୁ ବୁଝାଇବାକୁ କହିଥିଲି, "ଆତ୍ମଜୀବନୀ ସେହିମାନଙ୍କର ଲେଖା ହୁଏ, ଯେଉଁମାନେ ସମାଜରେ କିଛି ପଦପଦବୀର ଅଧିକାରୀ ହୋଇଥାନ୍ତି । ସମାଜରେ ପ୍ରତିଷ୍ଠା ଅର୍ଜନ କରିଥାନ୍ତି । ମୁଁ ତ ଜଣେ ଅକିଞ୍ଚନ ସାମ୍ବାଦିକ । ମୋର ଗୋଟିଏ କ'ଣ ଆତ୍ମଜୀବନୀ ଲେଖାଯିବ । ଆତ୍ମଜୀବନୀ ଲେଖୁଲେଖୁ ହୁଏତ ତାହା ଆତ୍ମବଡ଼ିମାରେ ପରିଣତ ହୋଇଯାଇପାରେ ।"

ସେ ମୋ ଯୁକ୍ତିକୁ ଗ୍ରହଣ ନକରି ଓଲଟା କହିଥିଲେ, "ନିଜ ଶରୀରରେ ଧାରଣ କରୁଥିବା କସ୍ତୁରୀକୁ ମୃଗ ନିଜେ ଦେଖିପାରେନାହିଁ । ହେଲେ ଅନ୍ୟମାନେ ଏହି ଅମୂଲ୍ୟ କସ୍ତୁରୀର ସନ୍ଧାନ ପାଇଥାନ୍ତି ।"

ପୂର୍ବରୁ ଆତ୍ମଜୀବନୀ ଲେଖିବା ପାଇଁ ବହୁ ବନ୍ଧୁ ଓ ଶୁଭେଚ୍ଛୁ ମତେ ଏକାଧିକବାର ଅନୁରୋଧ କରିଥିଲେ । କିନ୍ତୁ କୌଣସି ନା କୌଣସି ବାହାନା ଦେଖାଇ ମୁଁ ସେମାନଙ୍କ ଅନୁରୋଧକୁ ଏଡ଼ାଇ ଦେଇଥିଲି । ମାତ୍ର ରାଜେନ୍ଦ୍ର ଭାଇଙ୍କ ଅକାଟ୍ୟ ଯୁକ୍ତିରେ ପରାସ୍ତ ହୋଇ ତାଙ୍କର ଅନୁରୋଧକୁ ଆଦେଶ ଭାବରେ ଗ୍ରହଣ କଲି ।

ବିଦେଶରୁ ଫେରି ଏ ଦିଗରେ ମନ ବଳାଇଲି । ନିରୋଳାରେ ବସି ଅତୀତର ରୋମନ୍ଥନ କଲି । ସବୁକଥା ହେଜ ହେଲା ନାହିଁ । ଅତୀତର ଅଭୁଲାସ୍ମୃତିକୁ ମନେ ପକାଇଲା ବେଳେ ନଟେଇର ଅତୁଆସୂତା ଭଳି ମନର ଭାବନା ସବୁ ଅତୁଆତତୁଆ ହୋଇଗଲା । ସବୁକଥା ସଜାଡ଼ି କୋଉଟା ଆଗ, କୋଉଟା ପଛ, ସେସବୁର କ୍ରମାନ୍ୱୟ ରଖିହେଲାନି ।

ଦୀର୍ଘ ପଚାଶ ବର୍ଷର ସାମ୍ବାଦିକ ଜୀବନକାଳ ମଧ୍ୟରେ ଓଡ଼ିଶାର ସାମାଜିକ ଓ ରାଜନୈତିକ କ୍ଷେତ୍ରରେ ଘଟିଥିବା ଘଟଣାବଳୀର ମୁଁ ଜଣେ ମୂକସାକ୍ଷୀ । ସବୁକଥା ବଖାଣିବା କିମ୍ବା ଗୋଟିଏ ପୁସ୍ତକରେ ଲିପିବଦ୍ଧ କରିବା ସମ୍ଭବ ନୁହେଁ । ଅତୀତର ସ୍ମୃତିକୁ ରୋମନ୍ଥନ କରି ଯାହା ମନେ ପଡିଲା, ଏ ପୁସ୍ତକରେ ତାହା ସ୍ଥାନିତ ହୋଇଛି । ସେସବୁ କାଳ୍ପନିକ ନୁହେଁ; ବାସ୍ତବ ସତ୍ୟ ।

ମୋ ଜୀବନ ଏକ ଘଟଣାବହୁଳ ଅଙ୍କାବଙ୍କା କଣ୍ଟକିତ ପଥ । ସେ ପଥକୁ ଅତିକ୍ରମ କରିବାରେ ମତେ ଅନେକ ସଂଘର୍ଷ କରିବାକୁ ପଡିଛି ।

ସେଥିପାଇଁ ଅନେକଙ୍କର ସାହାଯ୍ୟ, ସହଯୋଗ ଓ ସହାନୁଭୂତି ଲୋଡ଼ିଛି । କେହିକେହି ସାହାଯ୍ୟର ହାତ ବଢ଼ାଇଥିବା ବେଳେ ଅନ୍ୟମାନେ ହତାଦର କରିଛନ୍ତି । ମୁଁ କିନ୍ତୁ ଉଭୟ ଗୋଷ୍ଠୀଙ୍କୁ ସମାନ ଭାବରେ ଶ୍ରଦ୍ଧା କରିଛି । ସାହାଯ୍ୟ, ସହଯୋଗ ପାଇନାହିଁ ବୋଲି କାହାରି ପ୍ରତି ବିଦ୍ୱେଷ ଭାବ ପ୍ରଦର୍ଶନ କରିନାହିଁ ।

ଜୀବନରେ ମୁଁ ଗୋଟିଏ ମାର୍ଗ ନିର୍ଦ୍ଧାରଣ କରି ସେଇ ମାର୍ଗରେ ଚାଲିଲି । ସେ ମାର୍ଗଟି ଉଚିତ କି ନୁହେଁ, ସେ କଥା 'ମୋ ପରେ' ମୂଲ୍ୟାୟନ ହେବ । ମୁଁ କିନ୍ତୁ ସମ୍ପଦରେ କିମ୍ବା ବିପଦରେ ମୋ ନିର୍ଦ୍ଧାରିତ ମାର୍ଗରୁ ବିଚ୍ୟୁତ ହୋଇନାହିଁ ।

ଗତ ୨୦୦୫ ମସିହାରେ ମୋ ସାମ୍ବାଦିକତା ଜୀବନର ଚାଳିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଗୋଟିଏ 'ଅଭିନନ୍ଦନିକା' ପ୍ରକାଶ ପାଇଥିଲା । ସେ ପୁସ୍ତକଟି ସଂକଳନ କରିଥିବା ମୋର ଅନୁଜପ୍ରତିମ ବନ୍ଧୁ ନୃସିଂହ ଚରଣ ସାହୁ ଲେଖିଥିଲେ, "ଶ୍ରୀ ଦାସ କେବଳ ଜଣେ ସଫଳ ସାମ୍ବାଦିକ ଭାବରେ ନୁହନ୍ତି, ଜଣେ ପ୍ରଖ୍ୟାତ ସ୍ତମ୍ଭକାର, ଗବେଷକ, ରାଜନୈତିକ ବିଶ୍ଳେଷକ ଓ ସୁସଂଗଠକ ଭାବରେ ସମାଜରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ସମାଜର ବହୁକ୍ଷେତ୍ରରେ ତାଙ୍କୁ ସଫଳତା ମିଳିଛି । କଲେଜ ଜୀବନରେ ଛାତ୍ର ନେତୃତ୍ୱ, ଏନ୍.ସି.ସି.ର ଅଣ୍ଡର ଅଫିସର ଭାବରେ ପୁରସ୍କୃତ ହେବା ସହ ସାମ୍ବାଦିକତା କ୍ଷେତ୍ରରେ ସ୍ୱୀକୃତି ଲାଭ କରିଛନ୍ତି । ସାମ୍ବାଦିକ ଜୀବନରେ ବହୁ ଲାଳସା ଓ ପ୍ରଲୋଭନକୁ ଏଡ଼ାଇ ସେ 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର ସାମୟିକ ସମ୍ବାଦଦାତାରୁ ଜୀବନ ଆରମ୍ଭ କରି 'ଅମୃତ ବଜାର ପତ୍ରିକା'ର ବ୍ୟୁରୋ ମୁଖ୍ୟ ପଦରେ ଅଧିଷ୍ଠିତ ହୋଇପାରିଥିଲେ । ସେ ଜଣେ ବିରଳ ସାମ୍ବାଦିକ, ଯାହାଙ୍କର ଦଳ ମତ ନିର୍ବିଶେଷରେ ଏକାଧିକ ମୁଖ୍ୟମନ୍ତ୍ରୀଙ୍କ ସହିତ ଘନିଷ୍ଠ ସମ୍ପର୍କ ରହିଥିଲା । ଫଳରେ ତାଙ୍କ ବ୍ୟକ୍ତିତ୍ୱରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ବିଚକ୍ଷଣତା, ବିଜୁ ପଟ୍ଟନାୟକଙ୍କ ସାହସିକତା, ବୀରେନ ମିତ୍ରଙ୍କ ଉଦାରତା, ନୀଳମଣି ରାଉତରାୟଙ୍କ ଧୈର୍ଯ୍ୟଶୀଳତା ଓ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହନଶୀଳତାର ସମନ୍ୱୟ ଘଟିଛି ।"

ଏହା ମୋ ଜୀବନର ବାସ୍ତବ ଆକଳନ କିମ୍ବା ବନ୍ଧୁ ଶ୍ରୀ ସାହୁଙ୍କର ମୋ ପ୍ରତି ଥିବା ଶ୍ରଦ୍ଧା ଓ ସ୍ନେହ ଯୋଗୁ ସେ ଏପରି ପ୍ରକାଶ କରିଛନ୍ତି, ସେ ବିଷୟରେ କେବେ କେଉଁଠି ଚର୍ଚ୍ଚା ହୋଇନାହିଁ ।

ମୋ ଜୀବନ କାଳ ଭିତରେ ଓଡ଼ିଶାର ଶିକ୍ଷା, ସଂସ୍କୃତି, ରାଜନୀତି, ସାମ୍ବାଦିକତା କ୍ଷେତ୍ରରେ ସବୁକିଛି ବଦଳିଯାଇଛି । ପାରମ୍ପରିକ ସ୍କୁଲଗୁଡ଼ିକରେ ପିଲାମାନଙ୍କୁ ପଢ଼ାଇବା ପାଇଁ ଅଭିଭାବକମାନେ ଆଉ ଆଗ୍ରହୀ ନୁହନ୍ତି । ସେସବୁ ସ୍କୁଲରେ ପାଠପଢ଼ାର ଢଙ୍ଗ ବଦଳିଗଲାଣି । ଏକରୁ ଶହେ ପର୍ଯ୍ୟନ୍ତ ଗଣି ପାରୁନଥିବା କିମ୍ବା 'ଅ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଠିକ୍ ଭାବରେ ଲେଖିପାରୁନଥିବା ପିଲା ଅକ୍ଳେଶରେ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ଯାଇପାରୁଛନ୍ତି। ପିଲାଙ୍କ ମଧ୍ୟରେ ଇଂରାଜୀ ମାଧ୍ୟମରେ ପଢ଼ା ଯାଉଥିବା ସ୍କୁଲର ଚାହିଦା ବଢୁଛି । ଓଡ଼ିଆ ଭାଷାପ୍ରତି କ୍ରମେ ପିଲାଙ୍କର ଆଦର କମୁଛି ।

ସଂସ୍କୃତି କ୍ଷେତ୍ରରେ ମଧ୍ୟ ଦ୍ରୁତ ଅବକ୍ଷୟ ଘଟୁଛି । ଅର୍ଦ୍ଧଉଲଗ୍ନ ଉଦ୍ଦଣ୍ଡନୃତ୍ୟ ଓଡ଼ିଶାର ନିଜସ୍ୱ ଓଡ଼ିଶୀ ନୃତ୍ୟକୁ କାବୁ କରିଦେଲାଣି । ଓଡ଼ିଶୀ ନୃତ୍ୟକ୍ଷେତ୍ରରେ ଆଉ ନାମକରା ଗୁରୁ ବାହାରୁ ନାହାନ୍ତି । ଓଡ଼ିଶା ପ୍ରଦେଶ ଗଠନର ଅଠସ୍ତରୀ ବର୍ଷ ପରେ ବି ଓଡ଼ିଶୀ ସଂଗୀତକୁ ଶାସ୍ତ୍ରୀୟମାନ୍ୟତା ମିଳିନାହିଁ । ସେ ଦିଗରେ ସମ୍ମିଳିତ ଉଦ୍ୟମ ଦେଖାଯାଉନାହିଁ । ଆଜିଠୁଁ ଦୀର୍ଘ ତିରିଶ ବର୍ଷ ତଳେ ଆଇନ୍ ପ୍ରଣୟନ କରାଯାଇଥିଲେ ହେଁ, ଓଡ଼ିଶାର ଆଇନ୍, ଅଦାଲତ ଓ ସରକାରୀ କଳରେ ଓଡ଼ିଆ ଭାଷାର ପ୍ରଚଳନ ହୋଇପାରିନାହିଁ । ଏ ଦିଗରେ ସରକାରୀ ସ୍ତରରେ ତତ୍ପରତାର ଅଭାବ ।

ପଚାଶ ବର୍ଷ ତଳେ ସାମ୍ବାଦିକତା ଆମ ପାଇଁ ଉଭୟ ପେସା ଓ ନିଶା ଥିଲା । ସେ ବୃତ୍ତି ପ୍ରତି ଆମର ଅଙ୍ଗୀକାରବଦ୍ଧତା ଥିଲା । ଲୋକେ ସାମ୍ବାଦିକମାନଙ୍କୁ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ହେଲେ ସମୟ ବଦଳିବା ସହିତ ସବୁକିଛି ଓଲଟପାଲଟ ହୋଇଯାଇଛି । ଭୟ ଓ ଘୃଣା, ଶ୍ରଦ୍ଧା ଓ ସମ୍ମାନର ସ୍ଥାନ ନେଇସାରିଲାଣି । 'ପେଟ ପୋଷ, ନାହିଁ ଦୋଷ' ନ୍ୟାୟରେ ଆଧୁନିକ ସାମ୍ବାଦିକମାନେ ନ୍ୟାୟ-ଅନ୍ୟାୟ, ନୀତି-ଅନୀତି ମଧ୍ୟରେ ଥିବା ବାଡ଼କୁ ଭାଙ୍ଗିସାରିଲେଣି । 'ଆପେ ବଞ୍ଚିଲେ ବାପର ନାଁ' କଥାକୁ ସେମାନେ ଆଦରି ନେଲେଣି । ପରିଣତ ବୟସରେ ଏସବୁ ଘଟଣା ମନକୁ ଚହଲେଇ ଦେଉଛି ।

ଆତ୍ମଜୀବନୀ ଲେଖିବାକୁ ବସିଲା ବେଳେ ଜ୍ଞାତ ଓ ଅଜ୍ଞାତରେ ମୁଁ, ମୋର, ମତେ ଭଳି ଆତ୍ମକୈନ୍ଦ୍ରିକ ଶବ୍ଦମାନ ତା'ଭିତରକୁ ପଶି ଆସି ରାଜୁତି କରୁଛନ୍ତି । କେତେକ କ୍ଷେତ୍ରରେ ସତକୁ ମିଛ ଘୋଡ଼େଇ ଦେଉଛି । ଫଳରେ ସତ୍ୟ, ଅର୍ଦ୍ଧସତ୍ୟ କିମ୍ବା ଅସତ୍ୟରେ ପରିଣତ ହୋଇଯାଉଛି । ସତ୍ୟ ଘଟଣା

ଉପରେ ପର୍ଯ୍ୟବସିତ ତଥ୍ୟ ହିଁ କେବଳ ସତ୍ୟ ହୋଇପାରେ । ସେଥିପାଇଁ ଅଙ୍ଗେ ନିଭେଇଥିବା ସତ୍ୟ ଘଟଣାକୁ ଆଧାର କରି ଏ ଆତ୍ମଜୀବନୀଟି ଲେଖିବାକୁ ଚେଷ୍ଟା କରିଛି ।

ବିଶିଷ୍ଟ ସାହିତ୍ୟିକ ପଦ୍ମଭୂଷଣ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଭାଷାରେ "ଅପ୍ରିୟ ସତ୍ୟ ବୋଲି କଥାଟିଏ ଅଛି । ଯେଉଁ ସତ୍ୟ କହିଲେ ସମାଜ ବା ରାଷ୍ଟ୍ରର ଅପ୍ରିୟ ହେବାକୁ ପଡ଼ିବ, ତାହା ବର୍ଜୟେତ୍ । ସତ୍ୟଟା ସେଠାରେ ନ୍ୟାୟ ଠାରୁ ଦୋସରା । ଯେଉଁ ସତ୍ୟପ୍ରକାଶ ପରିବାର, ସମାଜ ବା ରାଷ୍ଟ୍ରର ବିରୋଧୀ ତାହା ପ୍ରକୃତରେ ଅନ୍ୟାୟ । ଅଶ୍ଳୀଳ, ଅସାମାଜିକ ବା ରାଷ୍ଟ୍ରବିରୋଧୀ ଲେଖା ମଧ ସେଇ ବିଚାରରୁ ଦଣ୍ଡନୀୟ ।"

ମୁଁ ଗୋଟିଏ ସ୍ୱାଧୀନତା ସଂଗ୍ରାମୀ ପରିବାରରୁ ଆସିଛି । ମୋ ଦାଦା(ପାଳକ ପିତା) ସ୍ୱର୍ଗୀୟ ଅକ୍ଷୟ କୁମାର ଦାସ ଜଣେ ଗାନ୍ଧିବାଦୀ ଓ ସ୍ୱାଧୀନତା ସଂଗ୍ରାମୀ । ଜାତିର ଜନକଙ୍କ ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ଗାନ୍ଧୀଦର୍ଶନ ଓ ଗାନ୍ଧୀବାଣୀକୁ ଜୀବନର ବ୍ରତ ଭାବରେ ସେ ସାରାଜୀବନ ପାଳନ କରିଯାଇଛନ୍ତି ।

ମୁଁ ତାଙ୍କ ଆଦର୍ଶ ଦ୍ୱାରା ବହୁଭାବରେ ପ୍ରଭାବିତ ହୋଇଛି । ଛାତ୍ରାବସ୍ଥାରୁ ଖଦିବସ୍ତ୍ର ପରିଧାନ କରିଛି । କାହାରି ପଦଲେହନ କରି କଳାଧନ ଉପାର୍ଜନ କରିନାହିଁ । କିମ୍ବା କାହାର ଚରିତ୍ର ସଂହାର କରି ଉତ୍‌ଫୁଲ୍ଲ ହୋଇନାହିଁ । କାହାରି କ୍ଷତିସାଧନ ଉଦ୍ଦେଶ୍ୟରେ ବୃତ୍ତିକୁ କାମରେ ଲଗାଇନାହିଁ । ଏହା ମୋର ଦୁର୍ବଳତା ବୋଲି କେହିକେହି କହିପାରନ୍ତି; ଏଥିରେ ମୋର କିଛି ଯାଏଆସେ ନାହିଁ ।

ଯେଉଁମାନେ ମତେ ଏହି ଆତ୍ମଜୀବନୀ ଲେଖିବା ପାଇଁ ଉତ୍ସାହିତ କରିଛନ୍ତି, ପ୍ରେରଣା ଦେଇଛନ୍ତି, ସବୁପ୍ରକାର ସାହାଯ୍ୟ, ସହଯୋଗ ଓ ସହାନୁଭୂତିର ହାତ ବଢ଼ାଇଛନ୍ତି, ସେମାନଙ୍କ ପ୍ରତି ମୁଁ କୃତଜ୍ଞ । ଏହି ପୁସ୍ତକକୁ ପ୍ରକାଶ କରିଥିବାରୁ 'ଆମ ଓଡ଼ିଶା' ଅଧ୍ୟକ୍ଷ ସୌମ୍ୟରଂଜନ ପଟ୍ଟନାୟକଙ୍କ ନିକଟରେ ମୁଁ ଋଣୀ ।

କାର୍ତ୍ତିକ ପୂର୍ଣ୍ଣମୀ, ୨୦୧୪ **ବସନ୍ତ ଦାସ**

ବସନ୍ତ ପଞ୍ଚସପ୍ତତି

ଦ୍ୱିତୀୟ ଭାଗ

# ଜନ୍ମମାଟି

ଆଜିର ଜଗତସିଂହପୁର ଜିଲ୍ଲା ସେତେବେଳେ ଥିଲା ଗୋଟିଏ ତହସିଲ୍ ଟାଉନ୍। ଟାଉନ୍ କହିଲେ, ତହସିଲ୍‌ଦାରଙ୍କ ଅଫିସ୍, ସବ୍‌ରେଜିଷ୍ଟ୍ରାରଖାନା, ପାଖରେ ଗୋଟିଏ ଛୋଟିଆ ଡାକ୍ତରଖାନା ଓ ଶ୍ରୀକୃଷ୍ଣ ଏକାଡେମୀ। ବିଜୁଳିବତିର ନାଁ'ଗନ୍ଧ ନଥିଲା। ସକାଳଓଳି ତିନି-ଚାରିଖଣ୍ଡ ଛୋଟ ବସ୍ ଓ ଉପରଓଳି ଦୁଇଟି ବସ୍ ଜଗତ୍‌ସିଂହପୁରରୁ କଟକ ଯାଉଥିଲା। ସେ ସମୟରେ ଲୋକେ ଜଗତସିଂହପୁରକୁ 'ହରିପୁର' ବୋଲି କହୁଥିଲେ। କାହିଁକି, କେଉଁ ପରିସ୍ଥିତିରେ ସେ ସ୍ଥାନର ନାମ ହରିପୁର ହୋଇଥିଲା ଓ ପୁଣି କେଉଁ କାରଣରୁ ତା'ର ନାଁ ବଦଳି ଜଗତସିଂହପୁର ହେଲା, ସେ ସମ୍ପର୍କରେ ତଥ୍ୟ ସମ୍ୱଳିତ ବିବରଣୀ ଦେଖିବାକୁ ମିଳେନାହିଁ।

ସେତେବେଳେ ପ୍ରଚଳିତ ଥିବା କେତେଗୁଡ଼ିଏ ପ୍ରଗଣା ମଧ୍ୟରୁ ସାଇବିରି ପ୍ରଗଣା ଥିଲା ଅନ୍ୟତମ। ଏହି ପ୍ରଗଣା ଅଧୀନରେ ଥିବା ମଇନ୍ଦିପୁର ଗାଁ'ରେ ମୋର ଜନ୍ମ। ଗାଁ'ର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ମଇନ୍ଦାଶୁଣୀ। ଠାକୁରାଣୀଙ୍କ ନାଁ ଅନୁସାରେ ଗାଁ'ର ନାମକରଣ ହୋଇଛି କି, ଗାଁ'କୁ ନେଇ ଠାକୁରାଣୀ ଜଣାଶୁଣା ହୋଇଛନ୍ତି, ସେକଥା କହିବା ସମ୍ଭବ ନୁହେଁ। ମଇନ୍ଦିପୁର ଗାଁ' କେବେ ସ୍ଥାପିତ ହୋଇଥିଲା ଓ ଗାଁ'ରେ ଠାକୁରାଣୀ କେବେ ବିଜେ କରିଥିଲେ ତା'ର ହିସାବ କାହାରି ପାଖରେ ନାହିଁ। ମୋର ମନେଅଛି, ଆମ ପିଲାଦିନେ ଗାଁ' ମୁଣ୍ଡରେ ଏକ ବିରାଟ କେନ୍ଦୁଗଛ ତଳେ ଠାକୁରାଣୀ ପୂଜା ପାଉଥିଲେ। ଆଜି ଠାକୁରାଣୀଙ୍କ ପାଇଁ ମନ୍ଦିର ତୋଳା ହୋଇଛି । ହେଲେ ସେଦିନର ସେ କେନ୍ଦୁଗଛ ନାହିଁ । ସେ ସ୍ଥାନର ସେ ପରିବେଶ ମଧ୍ୟ ନାହିଁ।

ମଇନ୍ଦିପୁର ଚାଷୀଖଣ୍ଡର ଏକ ପଡ଼ା ଗାଁ' ଭାବରେ ବହୁଦିନ ଧରି ରହିଥିଲା। ଦେଶ ସ୍ୱାଧୀନ ହେବା ପରେ ବହୁ ଉଦ୍ୟମରେ ଏହା ଏକ ରାଜସ୍ୱ ଗ୍ରାମ ଭାବେ ଘୋଷିତ ହେଲା। ଗାଁ'ରେ ମୁଖ୍ୟତଃ ବ୍ରାହ୍ମଣ, କରଣ, ଗୁଡ଼ିଆ, ଗଉଡ଼ ଓ ଭୋଇମାନେ ବାସ କରନ୍ତି। ବ୍ରାହ୍ମଣମାନେ ଏକଗୋତ୍ରୀ। ଅହଂଭାବ ଯୋଗୁଁ ସେମାନଙ୍କ ମଧ୍ୟରେ 'ଶାସନୀ' ଓ 'ହଳୁଆ' ବ୍ରାହ୍ମଣ ଭାବରେ ଦୁଇ ଗୋଷ୍ଠୀର ସୂତ୍ରପାତ ହୋଇଥିଲା। ଏକଥା ସତ ଯେ, ବ୍ରାହ୍ମଣମାନେ ଲଙ୍ଗଳକଣ୍ଟିରେ ହାତ ପକାଇବା ଛଡ଼ା ଆଉ ସମସ୍ତ ପ୍ରକାର ଚାଷକାର୍ଯ୍ୟରେ ଯୋଗଦେଉଥିଲେ। ସମୟ ଗଡ଼ିବା ସହିତ ସେମାନଙ୍କର ଅହଂଭାବ ଦୂରେଇ ଯାଇଥିଲା। ସେଥି ସହିତ ଗୋଷ୍ଠୀଗତ ବିବାଦ ମଧ୍ୟ ଉଭେଇଗଲା। ବ୍ରାହ୍ମଣମାନଙ୍କ ଭିତରେ ତିନିଘର ଥିଲାବାଲା ଥିଲେ। ତିନିଘର ମଧ୍ୟରୁ ସର୍ବେଶ୍ୱର ଦାଶଙ୍କର ଅଧିକ ସମ୍ପତ୍ତିବାଡ଼ି ଥିଲା। ପାଞ୍ଚହଳ ବଳଦ, ହାତଚାଷ। ସେଇ ଅନୁସାରେ ଚାକରବାକର। ଲୋକେ ତାଙ୍କ ଘରକୁ 'ବଡ଼ବାହ୍ମଣ ଘର' ବୋଲି କହୁଥିଲେ। ପରବର୍ତ୍ତୀ ସମୟରେ ନାନା ବାଦବିବାଦ ଭିତରେ ପଶି ବଡ଼ବ୍ରାହ୍ମଣ ଘର ଗରିବ ହୋଇଗଲେ। ମାଲିମକଦ୍ଦମାରେ ସମୟ ବିତିବା ସହିତ ଧନସମ୍ପତ୍ତି ମଧ୍ୟ ଶେଷ ହୋଇଗଲା।

କରଣମାନଙ୍କର ତିନିସାହି। ଉପରସାହି, ମଝିସାହି ଓ ତଳସାହି। ତଳସାହିରେ ଆମଘର। ଆଗେ ଆମସାହିରେ ଗୋଟିଏ ଘର ଥିଲା। ଆସ୍ତେଆସ୍ତେ ପରିବାର ବଢ଼ି ସାତଘର ହୋଇଗଲେ। ଅଧିକ କୁଟୁମ୍ବ ହେବାରୁ ମୂଳଡିହରୁ ଅଲଗା ହୋଇ ଏବେ କେତେଜଣ ପୋଖରୀ ଉପରେ ଘର କରିଛନ୍ତି।

ଆମସାହି ପାଖରେ ଦି'ଘର ଗଉଡ଼ ଓ ତିନିଘର ଗୁଡ଼ିଆ। ସମସ୍ତଙ୍କ ଭିତରେ ସମ୍ପର୍କ ଭଲ। ବାହାପୁଆଣି, ପୁନିଅପରବରେ ସେମାନଙ୍କୁ ଘରକୁ ଡକାହକା ହୁଏ। ସେମାନଙ୍କ ଘରେ ମେଳାମଉଛବ ହେଲେ ସେମାନେ କରଣମାନଙ୍କୁ ନିମନ୍ତ୍ରିତ କରନ୍ତି।

ଆମ ଅଞ୍ଚଳକୁ ଧୋୟା ବାଇଶିମୌଜା କୁହାଯାଏ। କାଠଯୋଡ଼ି ନଦୀର ଶାଖା 'ଦେବୀ' ଓ 'ବିଲୁଆଖାଇ' ମଝିରେ ବାଇଶିଟି ଗାଁ'। ସେଥିପାଇଁ ବୋଧହୁଏ ଲୋକେ ସେ ଅଞ୍ଚଳକୁ ବାଇଶିମୌଜା ବୋଲି କହନ୍ତି।

ଆଗେ ଆମ ଗାଁ'କୁ ବର୍ଷାଦିନେ ଯିବା କାଠିକର ପାଠ ହେଉଥିଲା। ବର୍ଷାଦିନେ ବିଲୁଆଖାଇ ନଈରେ ବଢ଼ି ଆସେ। ଡଙ୍ଗାରେ ନଈ ପାରହେବାକୁ ହୁଏ। ସରକାରୀ ଡଙ୍ଗା ଚଳାଇବା ପାଇଁ କେଉଟ ଥାଆନ୍ତି। ଧାନକଟା ସମୟରେ କେଉଟମାନେ ବୁଲିବୁଲି ସାଆନ୍ତମାନଙ୍କ ବିଲରୁ ଧାନହଳା ନିଅନ୍ତି। ବନ୍ୟା ସମୟରେ ମାଗଣାରେ ନଈ ପାର କରାନ୍ତି।

ଆମ ଘାଟରେ କେଉଟ ନଟିଆ ଭାରି ସାହସୀ। ତା' ଘର ବାଲିଆରେ। ତା'ହାତରେ ଡଙ୍ଗାର ମଙ୍ଗ ଥିଲେ ଲୋକେ ନିର୍ଭୟରେ ନଈ ପାର ହୁଅନ୍ତି। ତା'ସତ୍ତ୍ୱେ ମଝିରେ ମଝିରେ ଥରେ ଅଧେ ଡଙ୍ଗାବୁଡ଼ି ଘଟଣା ମଧ୍ୟ ଘଟେ। ହେଲେ ଗାଁ'ଲୋକେ ପହଁରା ଜାଣିଥିବାରୁ

କିଛି ଅଘଟଣ ଘଟେନାହିଁ। ଡଙ୍ଗା ବୁଡ଼ିଲେ ଲୋକେ ପହଁରିପହଁରି କୂଳକୁ ଚାଲିଯାଆନ୍ତି।

ବହୁଦିନ ତଳେ ଥରେ ଭଗବତୀ ଠାକୁରାଣୀଙ୍କ ମନ୍ଦିର ପାଖରେ ଗୋଟିଏ ଡ଼ଙ୍ଗା ତାଳଗଛରେ ଧକ୍କା ଖାଇ ବୁଡ଼ିଯାଇଥିଲା। ନଟିଆ ନିଜ ଜୀବନକୁ ବାଜି ଲଗାଇ ଲୋକମାନଙ୍କୁ କୂଳକୁ ନେଇଆସିଥିଲା। ସେଇଦିନୁ ନଟିଆର ନାଁ ଡାକ। ସେଇ ଘଟଣାରେ ଆମର ଜଣେ ଜେଜେ ସୁଅରେ ଭାସିଯାଇ କେଇଢୋକ ପାଣି ପିଇଦେଇଥିଲେ।

ବିଲୁଆଖାଇ ପାର ହୋଇ ନଈବନ୍ଧକୁ ଉଠିଲେ ପ୍ରଥମେ ପଡ଼େ ଗାଁ' ସ୍କୁଲ୍। ନିମ୍ନ ପ୍ରାଥମିକ ବିଦ୍ୟାଳୟ। ଆଗେ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ଥିଲା। ଏବେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଖୋଲିଛି। ଆମ ପିଲାଦିନେ ସ୍କୁଲ୍‌ର ନିଜ ଜାଗା ନଥିଲା। ପ୍ରଥମେ ଉପର ସାହିର ନାରାୟଣ ପଟ୍ଟନାୟକଙ୍କ ଜାଗାରେ ଦୁଇବଖରା ଚାଳଘରେ ସ୍କୁଲ୍ ଚାଲିଥିଲା। ଜଣେ ମାଷ୍ଟର ଥିଲେ। ସେ ସେଇଠି ରହୁଥିଲେ। ଗାଁ' ଲୋକେ ଚାନ୍ଦାଭେଦା ଦେଇ ତାଙ୍କର ରହିବା ଓ ଖାଇବା କଥା ବୁଝୁଥିଲେ। ଆମକୁ ପାଠ ପଢ଼ାଇଥିବା ସତ୍ୟବାଦୀ ମାଷ୍ଟରଙ୍କ ଘର କୂଳ ସାହିରେ। ପରେ ସେ ସବ୍-ଇନିସ୍‌ପେକ୍ଟର ଅଫ୍ ସ୍କୁଲ୍‌ସ ପଦବୀ ପର୍ଯ୍ୟନ୍ତ ପଦୋନ୍ନତି ପାଇ ଚାକିରିରୁ ଅବସର ନେଇଥିଲେ। କିଛିବର୍ଷ ପରେ ସରକାରୀ ଜାଗାରେ ସ୍କୁଲର ସ୍ଥାୟୀ ଘର ତିଆରି ହେଲା। ଅଧିକ ମାଷ୍ଟର ରହିଲେ। ପିଲାମାନଙ୍କ ସଂଖ୍ୟା ମଧ୍ୟ ବଢ଼ିଲା।

ଆମ ପିଲାଦିନେ ଶିକ୍ଷକ ଓ ପିଲା ଭିତରେ ଭଲ ସମ୍ପର୍କ ଥିଲା । ପିଲାମାନେ ଶିକ୍ଷକମାନଙ୍କୁ ଭକ୍ତି କରୁଥିଲେ । ଶିକ୍ଷକମାନେ ମଧ୍ୟ ପିଲାଙ୍କୁ ପୁତ୍ର ଭଳି ସ୍ନେହ କରୁଥିଲେ। ପାଠପଢ଼ାରେ ଢିଲା କଲେ ଦୟାମାୟା ନଥିଲା । କାନ୍ଥରେ ଚୌକି ବସିବା ଠାରୁ ଆଣ୍ଠେଇବା ଓ ବେତମାଡ ପର୍ଯ୍ୟନ୍ତ ସବୁ ପ୍ରକାର ଦଣ୍ଡର ବ୍ୟବସ୍ଥା ଥିଲା ।

ମୋର ମନେଅଛି, ଆମେ ସବୁ ତାଳପତ୍ରରେ ବୁଣାଯାଇଥିବା ଛପା ଓ କନାରେ ତିଆରି ବସ୍ତାନିରେ ସିଲଟ, ଖଡି, ବର୍ଣ୍ଣବୋଧ ବହି ଧରି ସ୍କୁଲକୁ ଯାଉଥିଲୁ । ସ୍କୁଲରେ ପହଞ୍ଚିବା ପରେ ପ୍ରାର୍ଥନା ବୋଲା ଯାଉଥିଲା । ପିଲାମାନେ ଏକାଠି ଛିଡାହୋଇ 'ଆହେ ଦୟାମୟ ବିଶ୍ୱ ବିହାରୀ, ଘେନ ଦୟାବହି ମୋର ଗୁହାରୀ' ପ୍ରାର୍ଥନା ବୋଲୁଥିଲେ । କେତେ ମଧୁର ଥିଲା ସେ ପ୍ରାର୍ଥନାର ଭାଷା। କେତେ ଭାବ ଉଦ୍ଦୀପକ ଥିଲା ସେ ପ୍ରାର୍ଥନାର ଶବ୍ଦ। ପରେ ହେତୁ ହେଲା ପରେ ଜାଣିଲି ଓଡ଼ିଶାର ଯୋଗଜନ୍ମା ସାରସ୍ୱତ ସାଧକ ରାମକୃଷ୍ଣ ନନ୍ଦ ଥିଲେ ସେ ପ୍ରାର୍ଥନାର ଲେଖକ । ପ୍ରାର୍ଥନାରେ

"ସତ କହିବାକୁ କିଆଁ ଡରିବି
ସତ କହି ପଛେ ମଲେ ମରିବି,
ମତେ ଏତିକି ଶିଖାଅ ସାଇଁ ହେ
ମୋର ଧନଜନ ଲୋଡା ନାହିଁ ହେ"

ଇତ୍ୟାଦି ପଦଗୁଡିକ ଖୁବ୍ ପ୍ରଭାବଶାଳୀ ଥିଲା । ଜୀବନର ପରିଣତ ବୟସ ପର୍ଯ୍ୟନ୍ତ ସେ ପଦଗୁଡିକ ମୋର ମନେରହିଯାଇଛି ।

ସ୍କୁଲରେ ଅକ୍ଷର ଶିଖିଲା ପରେ ପିଲାଙ୍କୁ ବର୍ଣ୍ଣବୋଧ ପଢ଼ା ଯାଉଥିଲା । ବର୍ଣ୍ଣବୋଧରେ ସବୁକିଛି ଥିଲା । ଇଂରେଜ ଶାସନ କାଳରେ ବଙ୍ଗାଳୀମାନେ ଓଡ଼ିଶାରୁ ଓଡିଆ ଭାଷା ଉଠାଇ ଦେବା ପାଇଁ ଚକ୍ରାନ୍ତ କରିଥିଲେ । ସେମାନଙ୍କର ଯୁକ୍ତି ଥିଲା, ଓଡ଼ିଶାରେ ଓଡ଼ିଆ ଭାଷାରେ ବର୍ଣ୍ଣବୋଧ ନାହିଁ । ପଢ଼ିବା ବା ପଢ଼େଇବା ପାଇଁ ବହି ମଧ ନାହିଁ । ଏପରି ଚକ୍ରାନ୍ତକୁ ପଣ୍ଡ କରିବା ପାଇଁ ଯେଉଁମାନେ ଆଗଭର ହୋଇଥିଲେ, ସେମାନଙ୍କ ମଧ୍ୟରେ ଭକ୍ତକବି ମଧୁସୁଦନ ରାଓ ଥିଲେ ଅନ୍ୟତମ ।

ସେ ମହାରାଷ୍ଟ୍ରର ମୂଳବାସିନ୍ଦା । ମାତ୍ର ଓଡ଼ିଶାକୁ ମାତୃଭୂମି ଭାବେ ଗ୍ରହଣ କରିନେଇଥିଲେ । ଶ୍ରୀ ରାଓ ଗୋଟିଏ ଦିନରେ ଓଡ଼ିଆ ଭାଷାରେ ବର୍ଣ୍ଣବୋଧଟିଏ ଲେଖି ଦେଇଥିଲେ ବୋଲି ମୁଁ ଶୁଣିଛି । ଏହି ବର୍ଣ୍ଣବୋଧ 'ମଧୁ ବର୍ଣ୍ଣବୋଧ' ନାମରେ ଚାରିଆଡ଼େ ଜଣାଶୁଣା । ସ୍କୁଲରେ ମାଷ୍ଟ୍ରମାନେ ଏହି ବହିଟିକୁ ଘୋଷାଉଥିଲେ । ଦୀର୍ଘ ସତୁରୀ ବର୍ଷ ତଳେ ଏହି ବହିରେ ପଢ଼ିଥିବା

"ଅରଣା ମଇଁଷି ରହିଛି ଅନାଇ
ମଇଁଷିର ପାଶ ନଯାଅ ଦନାଇ ।"
"ରାତି ପାହିଲାଣି ରାବଇ କାଉ
ଉଠ ଉଠ ମଠ ନକର ଆଉ ।"
ସେହିପରି, "ଘଣ୍ଟି ବାଜିଲା ଠନ୍ ଠନ୍
ଘଣ୍ଟା ବାଜଇ ଢ଼ଂ ଢ଼ଂ
ମେଣ୍ଢାମୁଣ୍ଡଟି ବଡ଼ ଟାଣ
ତା ମୁଣ୍ଡିଆକୁ ସାବଧାନ ।"
"ଗୁରୁଣ୍ଡି ଗୁରୁଣ୍ଡି ଏରୁଣ୍ଡି ଉପରେ ମାଧବ ବସିଛି ଯାଇ
ମାତାଙ୍କ ଆଡ଼କୁ ଅନାଇ ଅନାଇ ମାଟି ଦେଉଅଛି ଖାଇ ।"

ଇତ୍ୟାଦି ଆଜି ବି ମନ ଭିତରେ ପ୍ରତିଧ୍ୱନିତ ହେଉଛି । ବର୍ଣ୍ଣବୋଧ ସାଙ୍ଗକୁ ପଣକିଆ, ପାହିଅଣା, ମିଶାଣ, ଫେଡାଣ, ହରଣ, ଗୁଣନ ଇତ୍ୟାଦି ଶିକ୍ଷା ଦିଆଯାଉଥିଲା । ଆଜି ସେସବୁ ଉଠିଗଲାଣି । ପିଲାଏ ସ୍କୁଲରେ ସେସବୁ କିଛି ଶିଖୁନାହାନ୍ତି । ମୋବାଇଲ୍ ଫୋନରେ ସବୁକାମ ଚଳିଯାଉଛି । ପିଲାଏ ଭାଗବତ ପଢ଼ି ଜାଣିଲେ, ପାଠପଢ଼ା ହୋଇଗଲା ବୋଲି ଗାଁ'ଗଣ୍ଡାର ବାପାମାଆ ବିଚାରୁଥିଲେ ।

ସ୍କୁଲ ପାଖରେ ଅଛି ଗୋପବନ୍ଧୁ ପାଠାଗାର। ସ୍ୱାଧୀନତା ପରେ ୧୯୫୦ ମସିହାରେ ଏହା ସ୍ଥାପିତ ହୋଇଥିଲା। ଏଦିଗରେ ସେତେବେଳର ଉତ୍ସାହୀ ଯୁବକ ଅକ୍ଷୟ କୁମାର ଦାସ, ବିଷ୍ଣୁ ଚରଣ ଦାଶ, ରତ୍ନାକର ଦାଶ, ପ୍ରହ୍ଲାଦ ଚରଣ ଦାସ ପ୍ରମୁଖ ଅଗ୍ରଣୀ ଭୂମିକା ନେଇଥିଲେ।

ଗୋପବନ୍ଧୁ ପାଠାଗାର ପାଖରେ ଗୋଟିଏ ଘରେ ଚାଲିଛି ଯୁବକ ସଂଘ। ଗାଁ' ପିଲାମାନଙ୍କ ଚାରିତ୍ରିକ ଓ ବୌଦ୍ଧିକ ବିକାଶ ପାଇଁ ଏ ଦୁଇଟି ସଂସ୍ଥା ବହୁକଷ୍ଟରେ ଗଢ଼ାଯାଇଥିଲା। ଏସବୁ ଟପିଲେ ବାଁ ପାଖରେ ପଡ଼େ ଗୋଟିଏ ବଡ଼ ପୋଖରୀ, ନାଁ 'ଶ୍ରୀରାମ ସାଗର'। କିନ୍ତୁ ଗାଁ' ଲୋକେ ତାକୁ 'ଘାଇ' ବୋଲି କହନ୍ତି।

ଆଗେ ବିଲୁଆଖାଇ ନଈରେ ବଢ଼ି ଆସୁଥିଲା । ନଈବନ୍ଧରେ ଘାଇ ହୋଇ ଗାଁ'ଗଣ୍ଡାରେ ବଢ଼ିପାଣି ପଶୁଥିଲା। କୋଉବର୍ଷ ବିଲରେ ପଟୁ ପଡୁଥିଲା । ଆଉ କୋଉବର୍ଷ ଜମି ବାଲିଚର ହୋଇଯାଉଥିଲା। ବୋଧହୁଏ କେବେ ଆମ ଗାଁ'ମୁଣ୍ଡରେ ନଈବନ୍ଧ ଭାଙ୍ଗି ଏକ ଘାଇ ସୃଷ୍ଟି ହୋଇଥିଲା । ଲୋକେ ସେଥିପାଇଁ ଏହି ପୋଖରୀକୁ 'ଘାଇ' ବୋଲି କହୁଥିଲେ।

ବହୁବର୍ଷ ତଳେ କଟକ ସଦରରେ ରାମଚନ୍ଦ୍ର ମହାନ୍ତି ଥିଲେ ସବ୍‌ଡିଭିଜନାଲ୍ ଅଫିସର (ବର୍ତ୍ତମାନର ସବ୍ କଲେକ୍ଟର)। ସେ ସମୟରେ ଆମ ଅଞ୍ଚଳଟି କଟକ ସଦର ସବ୍‌ଡିଭିଜନ୍ ଅନ୍ତର୍ଭୁକ୍ତ ଥିଲା। ଶ୍ରୀ ମହାନ୍ତି ଥରେ ଆମ ଗାଁ'କୁ ଆସିଥିଲେ । ଘାଇ ସେତେବେଳକୁ ଅଧା ପୋତି ହୋଇଯାଇଥିଲା । ଘାଇର ଅବସ୍ଥା ଦେଖି ତାକୁ ଖୋଳାଇବା ପାଇଁ ସେ କିଛି ସରକାରୀ ଅନୁଦାନ ଦେଇଥିଲେ । ତାଙ୍କରି ବଦାନ୍ୟତାକୁ ସ୍ୱୀକାର କରି ଘାଇର ନାଁ ବଦଳି 'ଶ୍ରୀରାମ ସାଗର' କରାଯାଇଥିଲା। ହେଲେ ଲୋକମୁଖରୁ 'ଘାଇ' ଶବ୍ଦ ଲିଭିଲା ନାହିଁ।

ଘାଇରେ ତିନୋଟି ତୁଠ। ଗୋଟିକରେ ଗାଁ' ମାଇପେ ଗାଧାନ୍ତି । ତା'ରି କିଛିଦୂରରେ ମିଣିପମାନଙ୍କ ପାଇଁ ତୁଠ । ଅନ୍ୟଟି ତଳ ପାଟକର ଲୋକଙ୍କ ପାଇଁ। ଘାଇରେ ଗାଁ'ର ଅଧିକାଂଶ ଲୋକ ସ୍ନାନ କରନ୍ତି। କେହିକେହି ନଈକୁ ମଧ ଯାଆନ୍ତି।

ଘାଇ ପାଖ ରାସ୍ତକଡ଼ରେ ଗ୍ରାମଦେବୀ ମଇଁନ୍ଦାଶୁଣୀଙ୍କ ମନ୍ଦିର । ପାଖରେ ଖରାଖିଆ ବୈଦ୍ୟନାଥ ବିରାଜିତ। ଆଗେ ବୈଦ୍ୟନାଥଙ୍କର ମନ୍ଦିର ନଥିଲା। ଏବେ ସୁନ୍ଦରିଆ ମନ୍ଦିରଟିଏ ହୋଇଛି। ଠାକୁରାଣୀଙ୍କ ପାଖରୁ କିଛିବାଟ ଗଲେ ଗୋଟିଏ ଉଚ୍ଚାଜାଗା ଆଖିରେ ପଡ଼େ। ସେ ଜାଗାଟିକୁ 'ମେର୍ଦ୍ଧା' ବୋଲି ଲୋକେ କୁହନ୍ତି। ଇଂରେଜ ଶାସନକାଳରେ ନଈବଢ଼ି ସମୟରେ ଲୋକଙ୍କୁ ସୁରକ୍ଷା ଦେବା ଉଦ୍ଦେଶ୍ୟରେ ଏହି ମେର୍ଦ୍ଧା ତିଆରି ହୋଇଥିଲା। ସେ ସମୟରେ ଏହା ଖୁବ୍ ଉଚ୍ଚ ଥିଲା ।  କାଳକ୍ରମେ ଏହାର ଅବକ୍ଷୟ ଘଟି ଉଚ୍ଚତା କମିକମି ପାଞ୍ଚଫୁଟରେ ରହିଲାଣି। ପିଲାଦିନେ ମେର୍ଦ୍ଧା ଉପରକୁ ସାଇକେଲରେ ଉଠିବା ପାଇଁ ଆମ

ଭିତରେ ପ୍ରତିଯୋଗିତା ହେଉଥିଲା। ମେର୍ଦ୍ଧା ଉପରେ ଦୁଇଟି ବଡ଼ ବରଗଛ ଥିଲା। ସେ ଗଛମାନଙ୍କରେ ଡାଆଣୀ, ଚିରୁଗୁଣୀ ସବୁ ରହୁଥିବା କଥା ପ୍ରଚାର ହେବା ଫଳରେ ସନ୍ଧ୍ୟା ପରେ ମେର୍ଦ୍ଧା ଉପରକୁ କେହି ଯାଉନଥିଲେ। ଏବେ ସେ ବରଗଛ ଦେଖିବାକୁ ମିଳୁନାହିଁ। ଗାଁ' ଲୋକେ ସେ ଗଛ ହାଣି ନିଜ ଭିତରେ ବାଣ୍ଟି ନେଲେଣି ।

ମେର୍ଦ୍ଧା ପଛପଟେ ଗାଁ' ଶ୍ମଶାନ। ଶ୍ମଶାନର ଗୋଟିଏ କଡ଼ରେ ବଡ଼ କେନ୍ଦୁଗଛଟିଏ ଥିଲା। ଶବସଂସ୍କାର ସମୟରେ ଖରାବର୍ଷାରୁ ରକ୍ଷା ପାଇବା ପାଇଁ ମାଲଭାଇମାନେ ସେହି ଗଛ ତଳେ ବସୁଥିଲେ। ମଶାଣୀକୁ ଆମର ଭାରି ଡର। ଦିନବେଳା ମଧ୍ୟ ଏକୁଟିଆ ସିଆଡ଼କୁ କେହି ଯାଉନଥିଲେ। ମଶାଣୀ ପାଖକୁ ଗୋଟିଏ ଖାଲି ଜାଗାରେ ଲୋକେ ମଲା ଗୋରୁଗାଈଙ୍କୁ ପକାଇ ଦିଅନ୍ତି । ମଲା ଗୋରୁଙ୍କୁ ଚିଲ ଶାଗୁଣା ଖାଇବା ପୂର୍ବରୁ ପାଣମାନେ ଆସି ଚମଡ଼ା ଛାଲିବା ସହିତ କିଛି ମାଂସ ନେଇଯାଉଥିଲେ। ସେକାଳରେ ସେମାନେ ହିନ୍ଦୁ ହୋଇ ମଧ୍ୟ ଦାରିଦ୍ର୍ୟ ଦୃଷ୍ଟିରୁ ଗୋମାଂସ ଭକ୍ଷଣ କରୁଥିଲେ।

ମେର୍ଦ୍ଧା ଟପିଲେ ପଡ଼େ 'ନୂଆଗାଡ଼ିଆ'। ଗାଡ଼ିଆଟି ବିଶେଷ ବଡ଼ ନହେଲେ ବି ତିନିସାହିର ଲୋକ ସେଇଠି ଆଗେ ଗାଧୁଆପାଧୁଆ କରୁଥିଲେ। ଗାଡ଼ିଆଟି କେବେ କିଏ ଖୋଳାଇଥିଲେ, ତା'ର ସଠିକ ବିବରଣୀ ମିଳେନାହିଁ। ତା'ଛଡ଼ା, ଲୋକେ କାହିଁକି ଏ ପୋଖରୀକୁ 'ନୂଆଗାଡ଼ିଆ' ବୋଲି କୁହନ୍ତି, ସେକଥା ମଧ୍ୟ କାହାକୁ ଜଣାନାହିଁ। ବର୍ଷାଦିନେ ନୂଆଗାଡ଼ିଆରେ ପାଣି ଏବନ୍ଧରୁ ସେବନ୍ଧକୁ ଲାଗିଯାଏ। ଆଗେ ପୋଖରୀରେ ବଢ଼ିପାଣି ପଶୁଥିଲା। ଖରାଦିନେ ପାଣି ଶୁଖିଗଲେ ବି ଅଣ୍ଟାଏରୁ ଛାତିଏ ପାଣି ରହେ। ସେଇଥିରେ ଗାଁ'ଲୋକଙ୍କର ଶୌଚ ଓ ସ୍ନାନ କାର୍ଯ୍ୟ ଆଦି ଚଳିଯାଉଥିଲା।

ନୂଆଗାଡ଼ିଆରୁ କିଛିବାଟ ଗଲେ ଡ଼ାହାଣପଟେ ପଡ଼େ ଶ୍ରୀରାଧାବଲ୍ଲଭଜୀଉଙ୍କ ବିଜେସ୍ଥଳୀ। ତାକୁ ସମସ୍ତେ "ଠାକୁରଘର" ବୋଲି କହନ୍ତି । ଆଗର ସେ ସ୍ଥାନର ପରିବେଶ ଆଜି ଆଉ ନାହିଁ। ଠାକୁରଘରେ ମୁଗୁନି ପଥରରେ କୃଷ୍ଣମୂର୍ତ୍ତି ଓ ଅଷ୍ଟଧାତୁରେ ନିର୍ମିତ ଶ୍ରୀରାଧାଙ୍କ ପ୍ରତିମା କାହିଁ କେତେଦିନରୁ ପୂଜା ପାଇଆସୁଛନ୍ତି। ଠାକୁରଘର ଉପରସାହିର ପଟ୍ଟନାୟକ ଓ ଦାସବଂଶର ସମ୍ପତ୍ତି । ମାତ୍ର ଅନ୍ୟ ଦି'ସାହିର ଲୋକେ ସେଠାରେ ପୂଜାର୍ଚ୍ଚନା କରନ୍ତି। ଦୋଳରେ ରାଧାବଲ୍ଲଭ ବିମାନରେ ବିଜେକରି ଭୋଗ ଖାଇବାକୁ ସମସ୍ତଙ୍କ ଘରକୁ ଯାଆନ୍ତି। ଦୋଳପୂର୍ଣ୍ଣମୀ ଦିନ ଖରାବେଳେ 'ମେଣ୍ଢାକୁଡ଼ିଆ' ପୋଡ଼ାବେଳେ ଠାକୁର ବିମାନରେ ବିଜେକରି ତା' ଚାରିପାଖେ ବୁଲନ୍ତି। ଆମେ ସବୁ ପିଲାଦିନେ ନିଆଁକୁ ଗିଲ ଫୋପାଡୁଥିଲୁ। ଗିଲ ଫୁଟିଲାବେଳେ ଠୋ'ଠା' ଶବ୍ଦ ହୁଏ। ଆଜିକାଲି ଯୁଗର ପିଲାଙ୍କୁ ଗିଲ କଥା କହିଲେ ସେମାନେ କିଛି ବୁଝିପାରିବେ ନାହିଁ । ଆଜିକାଲି ଗିଲ ଗଛ ଦେଖିବାକୁ ମିଳୁନାହିଁ ।

ଦୋଳପୂର୍ଣ୍ଣମୀ ସନ୍ଧ୍ୟାରେ କଦମ୍ବ ଗଛମୂଳରେ ତିଆରି ଅସ୍ଥାୟୀ ଦୋଳବେଦୀ ଉପରେ ଠାକୁର ଝୁଲଣରେ ବସନ୍ତି । ଆଗେ ଠାକୁର ଝୁଲଣବେଦୀରେ ଥିଲାବେଳେ ନଦିଆକୀର୍ତ୍ତନ ହେଉଥିଲା । ବ୍ରାହ୍ମଣ ପାଞ୍ଜି ପଢ଼ି ବିଭିନ୍ନ ରାଶିର ଆୟବ୍ୟୟ, ବର୍ଷା, ଫସଲ ଆମଦାନୀ ଇତ୍ୟାଦି ବିଷୟରେ ସୂଚନା ଦେଉଥିଲେ । ପାଢ଼ୀସାହି (ପୁରଣ)ର ନିତିଆ'ନା (ନିତ୍ୟାନନ୍ଦ ପାଢ଼ୀ) ଦୀର୍ଘଦିନ ଧରି ରାଧାବଲ୍ଲଭଜୀଉଙ୍କ ସେବାପୂଜା କରୁଥିଲେ । ତାଙ୍କ ଦେହାନ୍ତ ପରେ ତାଙ୍କ ସାନଭାଇ ସତ୍ୟାନନ୍ଦ ପାଢ଼ୀ ସେ ଦାୟିତ୍ୱ ନିର୍ବାହ କଲେ । ଦୋଳପର୍ବ ସହିତ ଶ୍ରୀରାଧାବଲ୍ଲଭଙ୍କର ରାସ ଉତ୍ସବ ହେଉଥିଲା । ସେଥିପାଇଁ ସୋଲରେ ତିଆରି ମେଢ଼ ନିର୍ମିତ ହେଉଥିଲା । ଆଜି ସେସବୁ ବୁଡ଼ିଗଲାଣି । ଆମ ପିଲାଦିନେ ଆମ ଗାଁ'ର ଭଗତ ଢେଙ୍କେ ଭଲ ରାସ ବୋଲୁଥିଲେ ।

କାର୍ତ୍ତିକ ମାସରେ ବିଧବାମାନେ ଅଁଳା ଗଛମୂଳେ ଦାମୋଦରଜୀଉଙ୍କର ବାଲୁକାମୂର୍ତ୍ତି ତିଆରି କରି ପୂଜା କରୁଥିଲେ । ସେହି ଅବସରରେ ସେମାନେ

"ଦାମୋଦର ଦାମୋଦର
ଭବସାଗରରୁ ପାରିକର
ଦାମୋଦର ବୋଲି ଆସିଲୁ ଧାଇଁ
ଭାତ ହେଲା ନକେଇ
ଭାତ ହେଲେ ନକେଇ
ଦହି ନଗେଇ ଖାଇବା
ମହାକାର୍ତ୍ତିକ ସରିଗଲେ
ଆଉ କାହୁଁ ପାଇବା ।"

ଇତ୍ୟାଦି ଗୀତ ସେମାନେ ବୋଲୁଥିଲେ । କାର୍ତ୍ତିକ ମାସ ସାରା ଦିନରେ ସେମାନେ ଉପବାସ ରହି ସନ୍ଧ୍ୟାରେ ହବିଷ ଅନ୍ନ ଖାଉଥିଲେ । ସେମାନଙ୍କ ବ୍ରତରେ ଛଳନା ନଥିଲା ।

ପିଲାଦିନେ ଆମ ଗାଁ' ଚାରିପାଖରେ ଦଣ୍ଡା ଥିଲା । ଚତୁର୍ମାସ୍ୟାରେ ସେଥିରେ ପାଣି ଭର୍ତ୍ତି ହୋଇଯାଉଥିଲା । ସେହି ପାଣିରେ ପଶି ମଣିଷ ଓ ଗାଈଗୋରୁ ଏକାଠି ଯିବାଆସିବା କରୁଥିଲେ । ଆଣ୍ଠୁଏ କାଦୁଅରେ ପଶି ଯିବାକୁ ହେଉଥିଲା । ବେଶି ପାଣିହେଲେ ମଝିରେ ମଝିରେ ବାଉଁଶର ଚାର ବନ୍ଧା ହେଉଥିଲା । ସେହି ଚାରରେ ଚଢ଼ି ଲୋକେ ଦଣ୍ଡା ପାରି ହେଉଥିଲେ ।

ଦେଶ ସ୍ୱାଧୀନ ହେବାପରେ ଗାଁ'ର ସ୍ଥିତି ବଦଳିଲା । ଦଣ୍ଡା ପୋତାହୋଇ ଦାଣ୍ଡ ହୋଇଗଲା । ଏବେ ଆମ ଗାଁ'ର ସବୁ ସାହିକୁ ଅରାମରେ ଗାଡ଼ିମଟରେ ଯାଇପାରୁଛି । ଗାଁ'ରେ ଘରେ ଘରେ ବିଜୁଳି ଆଲୁଅ ଓ ଟେଲିଫୋନ୍ । ଅଧିକାଂଶ ଘରେ ସ୍କୁଟର କିମ୍ବା ମଟର

ସାଇକେଲ। ଅଗମ୍ୟ ବାଇଶିମଉଜା ଏବେ ସୁଗମ୍ୟ ସଡ଼କ ଦ୍ୱାରା ସଂଯୋଜିତ। ଏବେ ବାଇଶିମଉଜାରୁ ଆମ ଘର ବାଟଦେଇ ସକାଳେ ଦିଖଣ୍ଡ ଓ ଉପରଓଳି ଦିଖଣ୍ଡ ଘରୋଇ ବସ୍ କଟକ ଓ ଭୁବନେଶ୍ୱରକୁ ଯା'ଆସ କରୁଛି। ତା'ଛଡ଼ା ଅନେକ ଟ୍ରେକର ଓ ଅଟୋରିକ୍ସା ମଧ୍ୟ ଚାଲୁଛି।

ଲୋକଙ୍କ ଆର୍ଥିକ ଅବସ୍ଥା ବଦଳି ଯାଇଛି। ଭୋକ ଉପାସ ରହିବା କିମ୍ବା ଖାଦ୍ୟ ନପାଇ ଅନାହାରରେ ମରିବା କଥା ଆଉ ଶୁଣାଯାଉନାହିଁ। ଗାଁ'ର ଅଧିକାଂଶ ଘରର ପିଲାମାନେ ପାଠପଢ଼ି ଚାକିରିବାକିରି କଲେଣି। ଦେଶବିଦେଶରେ ନାଁ କମେଇଲେଣି। ହାଟୁଆ ଶ୍ରେଣୀ ଲୋକେ ଛୋଟକାଟର ବେପାରବଣିଜ କରୁଛନ୍ତି। ଅନ୍ୟମାନେ ମୂଲପାତି ଲାଗି ଚଳିଯାଉଛନ୍ତି।

ମୋର ମନେଅଛି, ପିଲାଦିନେ ସେରେ (ପ୍ରାୟ ବାରଶ ମିଲିଲିଟର)କ୍ଷୀର ଦି'ଅଣା (ବାରପଇସା)ରେ ମିଳୁଥିଲା। ଆମ ଗାଁ'ର ଗେହ୍ଲି ଗଉଡୁଣୀ ଆମେ ଗାଁ'କୁ ଯାଇଥିବା ଖବର ପାଇଲେ ଘରେ ଆଣି କ୍ଷୀର ପହଞ୍ଚାଇ ଦେଉଥିଲା।

ସେକାଳରେ ବାଉଁଶନଳରେ କ୍ଷୀର ମପାଯାଉଥିଲା। ବିଭିନ୍ନ ମାପ ପାଇଁ ବିଭିନ୍ନ କିସମର ବାଉଁଶର ନଳା ଥିଲା। ଘଷି ନିଆଁରେ ମାଟିହାଣ୍ଡିରେ ସେ କ୍ଷୀର ଆଉଟାହେଲେ ସେଥିରେ ହଳଦିଆ ରଙ୍ଗର ସର ପଡ଼ିଯାଉଥିଲା। ଦୁଧହାଣ୍ଡି କରରେ ଲାଗୁଥିବା କୋରୁଅରେ ସୁଆଦ ଥିଲା। କ୍ଷୀରରୁ ଦହି, ଘିଅ ଓ ଛେନା ସବୁ ପ୍ରସ୍ତୁତ ହେଉଥିଲା। ଲହୁଣୀ ମରି ଘିଅ ହେବାପରେ ରହିଯାଇଥିବା ଖଦଡ଼ା ଅଂଶ ଖୁବ୍ ସୁଆଦିଆ। ଘୋଳଦହିକୁ ଘଷିନିଆଁ ଚୁଲିରେ ବସାଇ ସେଥିରେ ଦହିଛେନା ତିଆରି ହେଉଥିଲା। ସେଥିରେ ଛୁଞ୍ଚିପତର, ମଣ୍ଡା, କାକରା ଇତ୍ୟାଦି ପିଠା ହେଉଥିଲା। ଏବେ ସେସବୁ ସାତସପନ। ଦୁଧ, ଘିଅ, ଛେନା କଥା କହିଲେ ଆଜିର ପିଲାଏ ଓମ୍‌ଫେଡ୍ କ୍ଷୀରକୁ ବୁଝୁଛନ୍ତି। ଠେକି, ଆଟିକା, ଖୁଆ, ତଙ୍କା, ମୁଚୁଳା, ଶାମୁକା ଇତ୍ୟାଦି କୁଆଡ଼େ ବୁଡ଼ିଗଲାଣି। ଆମ ପିଲାଏ ସେସବୁ ଦେଖିନାହାନ୍ତି। ଜରି ପ୍ୟାକେଟରେ ମିଳୁଥିବା ପାଉଡର ମିଶା କ୍ଷୀର ପିଉଥିବା ପିଲାଏ ପୁରୁଣାକଥା କୁଆଡୁ ଜାଣିବେ ?

# ମୋ ପିଲାଦିନ

କାର୍ତ୍ତିକମାସର ଶୁକ୍ଳ ଚତୁର୍ଦ୍ଦଶୀ ତିଥି, ପବିତ୍ର 'ବଡ଼ଓଷା' ଦିନ ମୁଁ ଜନ୍ମ ହୋଇଥିଲି। ଆମ ପରିବାରରେ ମୁଁ ପ୍ରଥମ ପୁତ୍ରସନ୍ତାନ ଭାବରେ ଜନ୍ମ ହୋଇଥିବାରୁ ଘରେ ଆନନ୍ଦ ଲହରି ଖେଳିଯାଇଥିଲା। ମାତ୍ର ସେ ଆନନ୍ଦ ବେଶୀଦିନ ରହିଲା ନାହିଁ। ମତେ ଜନ୍ମଦେଇ ମୋ ବୋଉ ଅସୁସ୍ଥ ହୋଇପଡ଼ିଲା। ସେକାଳରେ ଆଜିକାଲି ଭଳି ଚିକିତ୍ସାର ବିଶେଷ ସୁବିଧା ନଥିଲା। ପିଲା ଜନ୍ମ କରି ଅନ୍ତୁଡ଼ିଶାଳରେ ଅନେକ ସ୍ତ୍ରୀଲୋକ ଅକାଳରେ ମୃତ୍ୟୁମୁଖରେ ପଡୁଥିଲେ। ମୁଁ ଶୁଣିଛି, ମୋ ବୋଉର କ'ଣ ହେଲା କିଛି ବୁଝାପଡ଼ିଲା ନାହିଁ। ସମସ୍ତେ କହିଲେ ଦେହ ଖରାପ। ହେଲେ ଦେହ ଖରାପର ସଂଜ୍ଞା ଜଣାପଡ଼ି ନଥିଲା। ଛଅଦିନର ଲଢ଼େଇ ପରେ ସେ ସବୁଦିନ ପାଇଁ ଆମ ସମସ୍ତଙ୍କୁ ଛାଡ଼ି ଆରପୁରକୁ ଚାଲିଗଲା। ଯାହାକୁ ଦେଖିବାର ସୁଯୋଗ ମତେ ମିଳିନଥିଲା।

ମୋ ଜେଜେ ଥିଲେ ତିନିଭାଇ, ମଧୁସୂଦନ, ସାଧୁଚରଣ ଓ କାହ୍ନୁଚରଣ। ସେମାନଙ୍କ ମଧ୍ୟରୁ ସାଧୁଚରଣ ଆମ ଗାଁ'ର ଉପରସାହି ପଟ୍ଟନାୟକ ସାହିକି ପୁଅ ହୋଇ ଯାଇଥିଲେ। ତାଙ୍କ ସାଙ୍ଗିଆ ବଦଳି ପଟ୍ଟନାୟକ ହୋଇଯାଇଥିଲା। ମଧୁସୂଦନଙ୍କର ପୁଅ ନଥିବାରୁ ସେ ବାପାଙ୍କୁ ଅନ୍ୟ କୁଟୁମ୍ବରୁ ପୁଅ କରି ଆଣିଥିଲେ। ପରେ ତାଙ୍କର ଦୁଇଟି ଝିଅ ହୋଇଥିଲେ। ସାନ ଥିଲେ କାହ୍ନୁଚରଣ। ତାଙ୍କର ଚାରି ପୁଅ, ଅକ୍ଷୟ, ଲକ୍ଷ୍ମୀଧର, ପ୍ରଫୁଲ୍ଲ ଓ ଶରତ। ଗୋଟିଏ ଝିଅ ମଞ୍ଜୁବାଳା। ତାଙ୍କର ସାନପୁଅ- ମୋଠାରୁ ମାତ୍ର ଚାରିବର୍ଷ ବଡ। ମୋ ଜନ୍ମବେଳକୁ ସେ ମା'କ୍ଷୀର ଛାଡ଼ି ସାରିଥିଲେ।

ମୁଁ ଜନ୍ମ ହେବା ପୂର୍ବରୁ ମୋ ଜେଜେ ମଧୁସୂଦନ ଓ ତାଙ୍କ ପତ୍ନୀଙ୍କର ଦେହାନ୍ତ ହୋଇସାରିଥିଲା। ଘରେ ଥିଲେ ସାନଜେଜେ କାହ୍ନୁଚରଣ ଓ ତାଙ୍କ ପତ୍ନୀ ରାଧାମଣି। ମୋ ବୋଉ ମରିବା ପୂର୍ବରୁ କୁଆଡ଼େ ରାଧାମଣିଙ୍କୁ ଡ଼ାକି କହିଥିଲେ, "ଖୁଡ଼ି! ମୁଁ ଆଉ ବଞ୍ଚିବି

ନାହିଁ, ମୋ' ପାଇଁ ମନଦୁଃଖ କରିବ ନାହିଁ। ହେଲେ ଯିବା ପୂର୍ବରୁ ତମକୁ ଗୋଟିଏ କଥା କହୁଛି, ରଖିବ ? ମୋର ଏ ପୁଅକୁ ଟେକି ଦେଉଛି, ତାକୁ ଅଣଦେଖା କରିବ ନାହିଁ। ତମ ଚାରିପୁଅଙ୍କ ସାଙ୍ଗରେ ଯାକୁ ପାଳିବ।"

ଆଉ କିଛି କହିବା ପୂର୍ବରୁ ବୋଉର ପାଟି ପଡ଼ିଯାଇଥିଲା। ସେ ଆଉ କିଛି କହିପାରି ନଥିଲା। କିଛି ସମୟ ପରେ ସତକୁ ସତ ସେ ମତେ ଅନାଥ କରି ଚିରଦିନ ପାଇଁ ଆଖିବୁଜି ଦେଲା। ଗୋଟିଏ ଛଅଦିନର ଶିଶୁ ଭାବରେ ଜନ୍ମକଲା ମା'ର ବଞ୍ଚିବା, ମରିବା ଭିତରେ ଥିବା ପ୍ରଭେଦକୁ ଅନୁଭବ କରିବା ଅବସ୍ଥାରେ ମୁଁ ନଥିଲି। ବୋଉ ମରିବା ପରେ ମୁଁ 'ଅରକ୍ଷିତ' ହୋଇଗଲି।

ବୋଉ ମରିବା ପରେ ପ୍ରକୃତ ସମସ୍ୟା ଆରମ୍ଭ ହେଲା। ଛଅଦିନର ଛୁଆକୁ କିଏ ପାଳିବ ? ସେ କ'ଣ ଖାଇ ବଞ୍ଚିବ, ସେ ଚିନ୍ତା ସମସ୍ତଙ୍କୁ ଘାରିଲା। ସେତେବେଳେ ମୋ ପିଉସୀ (ରାଧାମଣିଙ୍କର ଏକମାତ୍ର ଝିଅ) ଅବିବାହିତ ଥିଲେ। ସେ ମୋତେ ବଞ୍ଚାଇବା ପାଇଁ ଅଣ୍ଟା ଭିଡ଼ିଲେ।

ସେତେବେଳେ ମା'କ୍ଷୀର ପିଲାଙ୍କର ମୁଖ୍ୟ ଖାଦ୍ୟ ଥିଲା। ଆଜିକାଲିର ମା'ମାନଙ୍କ ଭଳି ପିଲା ଜନ୍ମ ହେବାର କେଇମାସ ଭିତରେ ବିଭିନ୍ନ ଆଳ ଦେଖାଇ ସେତେବେଳେ କୋଉ ମା' ପିଲାଙ୍କୁ କ୍ଷୀର ଛଡ଼ାଇ ଦେଉନଥିଲେ। ସେଥିପାଇଁ ସମସ୍ତଙ୍କର ଭାଳେଣି ପଡ଼ିଲା। ମା'କ୍ଷୀର କୋଉଠୁ ଆସିବ ? ହେଲେ ଅରକ୍ଷିତକୁ ଦଇବ ସାହା ହେଲାଭଳି ମୋ'ଭଳି ଜଣେ ମାତୃହରା ଶିଶୁକୁ ଈଶ୍ୱର ସହାୟ ହେଲେ। ଦୀର୍ଘ ଚାରିବର୍ଷ ପରେ ରାଧାମଣିଙ୍କ ସ୍ତନରୁ ପୁଣି କ୍ଷୀର ଝରିଲା। ସେ ମନରେ କୌଣସି ଦ୍ୱିଧା ନରଖି ମତେ କ୍ଷୀର ଖୁଆଇ ବଞ୍ଚାଇବାକୁ ଚେଷ୍ଟା କଲେ। ଏପରି ଏକ ଅଲୌକିକ ଘଟଣା ସେତେବେଳେ ଆମ ଗାଁ' କାହିଁକି, ଆଖପାଖ ଅଞ୍ଚଳରେ ମଧ୍ୟ ଆଲୋଚନାର ବିଷୟ ହୋଇଥିଲା।

ସେ ସମୟରେ ଗାଁ' ଲୋକଙ୍କର ନାନାପ୍ରକାର ଅନ୍ଧବିଶ୍ୱାସ ଥିଲା। ବୋଉ ମରିବା ପରେ ଲୋକେ ନାନାକଥା କହିବାକୁ ଲାଗିଲେ। କିଏ କହିଲା, "ସିଏ ପିଲା ଛାଡ଼ି ଯାଇଛି, ପିଲାଙ୍କୁ ଦେଖିବାକୁ ଆସିବ" ଆଉ କିଏ କହିଲା, "ତାକୁ ସାବଧାନ ଥିବ, କେତେବେଳେ ଆସି ତା' ପିଲାକୁ ନେଇଯିବ" ଇତ୍ୟାଦି ଇତ୍ୟାଦି।

ଏଥିରୁ ରକ୍ଷା ପାଇବା ପାଇଁ ବହୁ ଲୋକ ବହୁ ପରାମର୍ଶ ଦେଲେ। ନାନା ପ୍ରକାର ଉପାୟ ବତାଇଲେ। ଗୁଣିଆ ଡାକି ଘର କିଳେଇବାକୁ ପରାମର୍ଶ ମିଳିଲା। କୋଉ ଗାଁ'ରେ କୋଉ ଗୁଣିଆ ଅଛି, ତା'ର ଖୋଜା ପଡ଼ିଲା। କୋଉ ଗୁଣିଆ କୋଉ ଭୂତକୁ ଜବତ କରି ନାଁ କମାଇଥିଲା, କୋଉ ଗୁଣିଆ ଗାଁ'ମୁଣ୍ଡ ବରଗଛରେ ପିଶାଚକୁ କିଳି ବାଃ ବାଃର ପାତ୍ର ହୋଇଥିଲା, ସେସବୁ ଲୋକଙ୍କ ମୁହଁରୁ ଶୁଣାଗଲା।

ଶେଷରେ ଦୂର ଗାଁ'ରୁ ଜଣେ ଗୁଣିଆକୁ ଡକାଗଲା । ସେ ଆସି ଦିନ ତମାମ ପୂଜା କଲା । ପୂଜା ପରେ ଚାରିଟି ବଡ଼ ଲୁହାକଣ୍ଟା ଆଣି ଅଗଣାର ଚାରିଦୁଆରେ ଥିବା ଚଉକାଠରେ ବାଡ଼େଇ ଦେବାପରେ ଆଶ୍ୱସ୍ତିର ନିଶ୍ୱାସ ମାରି କହିଲା, "ଆଉ ଡରିବାର କିଛି ନାହିଁ । ଏ ଚଉକାଠ ଟପି ଆଉ ସିଏ ଭିତରେ ପଶିପାରିବ ନାହିଁ । ମୁଁ ତାକୁ ଜବତ କରିଦେଇଛି ।" ଯାହାକୁ ଦିନେ ବୋହୂ ବୋଲି ବନ୍ଦାପନା କରି ଘରକୁ ଅଣାଯାଇଥିଲା ସେ ମରିବାର ମାତ୍ର କେଇଦିନ ଭିତରେ ତାକୁ 'ପିଶାଚୀ'ର ଆଖ୍ୟା ଦେଇ ତା' ପାଇଁ ଘରଦ୍ୱାର କିଳି ଦିଆଗଲା ।

ଘରେ ସମସ୍ତେ ମୋ'ପାଇଁ ବ୍ୟସ୍ତ ରହୁଥିଲେ । କାରଣ ଗାଁ'ଲୋକେ କହୁଥିଲେ, ଛଅଦିନର ଅପର୍ତ୍ତିଆଣି ଛୁଆ, ଜିଇବ କି ନାହିଁ କିଏ କହିବ ? ଲୋକଙ୍କ କଥା ଶୁଣି ମୋ ବେକଠାରୁ ଆରମ୍ଭ କରି ହାତ ପର୍ଯ୍ୟନ୍ତ ତମ୍ବାପଇସା ଓ ଡଉଁରିଆର ମାଳ ପିନ୍ଧାଇ ଦିଆଯାଇଥିଲା । ମୋ ଅଜାଣତରେ ମୁଁ ଅନେକଙ୍କର ଦୟାର ପାତ୍ର ପାଲଟିଗଲି । ମୋତେ ଦେଖି ସେମାନେ ଚୁ'ଚା' କରିବାକୁ ଲାଗିଲେ । ଜନ୍ମରୁ ବୋଉକୁ ଖାଇଛି ବୋଲି, କେହି କେହି ମତେ ଅଶୁଭ ସୂଚନା କହିବାକୁ ପଛେଇ ନଥିଲେ । ନାନା କଞ୍ଚନାଜଞ୍ଚନା ମଧ୍ୟରେ ମୋର ପିଲାଦିନର କିଛି ବର୍ଷ କଟିଯାଇଥିଲା ।

ମତେ ଚାରିବର୍ଷ ହୋଇଥିଲା ବେଳେ ମୁଁ ଥରେ ବେମାର ପଡ଼ିଥିଲି । ସାମାନ୍ୟ ଜରରୁ ଦେହ ବିଗିଡ଼ିଗଲା । ସେତେବେଳେ ଆମ ଗାଁ' କିମ୍ବା ଗାଁ' ପାଖରେ ଡାକ୍ତରୀ ଚିକିତ୍ସାର କିଛି ସୁବିଧା ନଥିଲା । କବିରାଜି କିମ୍ବା ଟୁଣୁକାଟୁଣୁକିରେ ଚିକିତ୍ସା କରାଯାଉଥିଲା । ଲୋକମାନେ ଭାଗ୍ୟ ଓ ଭଗବାନଙ୍କ ଉପରେ ନିର୍ଭର କରି ବଞ୍ଚୁଥିଲେ । ଗାଁ'ରେ ଥରେ ଝାଡ଼ାବାନ୍ତି(ହଇଜା)ବ୍ୟାପିଲେ କେତେଲୋକ ଆରପାରିକି ଚାଲି ଯାଉଥିଲେ ତା'ର ହିସାବ ମିଳୁନଥିଲା । ହଇଜାକୁ ଲୋକେ ଠାକୁରାଣୀ ଲାଗିଛନ୍ତି ବୋଲି କହୁଥିଲେ । ଚିକିତ୍ସା ନକରି ପଣାପାଣି ଦେଇ ଠାକୁରାଣୀଙ୍କ ପୂଜା କରୁଥିଲେ । ଅଶିକ୍ଷା ଓ ଅନ୍ଧବିଶ୍ୱାସ ଫଳରେ ଗାଁ'ଗଣ୍ଡା ଲୋକେ ସେଇ ପୁରୁଣାକାଳିଆ ଚଳଣୀ ଭିତରେ ରହିଥିଲେ ।

ଦୀର୍ଘଦିନର ଜର ପରେ ମୁଁ କ୍ରମେ ଦୁର୍ବଳ ହୋଇଗଲି । ଚିକିତ୍ସା ଅଭାବରୁ ମୋର ସ୍ୱାସ୍ଥ୍ୟ ଅବସ୍ଥା ଦିନକୁ ଦିନ ଗୁରୁତର ହେବାରେ ଲାଗିଲା । ସମସ୍ତେ ମୋ ବଞ୍ଚିବାର ଆଶା ଛାଡ଼ି ଦେଇଥିଲେ । ଅନ୍ୟ ଉପାୟ ନଦେଖି ମୋ ବୋଉ (ଯେଉଁ ମା'ଙ୍କ କ୍ଷୀର ଖାଇ ମୁଁ ବଞ୍ଚିଥିଲି, ତାଙ୍କୁ ପରବର୍ତ୍ତୀ ସମୟରେ ବୋଉ ବୋଲି ଡାକିଲି) ମରିଚେଇଁ ଠାକୁରାଣୀଙ୍କୁ ମତେ ଅର୍ପଣ କରିଦେଲେ ।

ମରିଚେଇଁ ଠାକୁରାଣୀ ଆମ ପାଖ ଗାଁ' କମଳପୁରର ଗ୍ରାମଦେବତୀ ଭାବରେ ପୂଜା ପାଉଥିଲେ । ଆମ ଗାଁ'ଠାରୁ ଗୋଟିଏ କିଲୋମିଟର ଦୂରରେ ଗାଈଚିରା ନଈ ପାଖରେ ଗଛବୃଛରେ ପୂର୍ଣ୍ଣ ଏକ ତୋଟାରେ ଠାକୁରାଣୀଙ୍କର ବିଜେସ୍ଥଳୀ ଥିଲା । ସେ

ତୋଟାଟି ଖୁବ୍ ଗହଳିଆ ଥିଲା । ଦିନରେ ଅଧିକାଂଶ ସମୟରେ ସେଠାରେ ସୂର୍ଯ୍ୟକିରଣ ପଡ଼େ ନାହିଁ। ପାଢ଼ୀସାଇରେ ଥିବା ପାଢ଼ୀ ବ୍ରାହ୍ମଣମାନେ ଦିନ ଥାଉଁଥାଉଁ ଠାରକୁରାଣୀଙ୍କ ପୂଜା ସାରିଦେଇ ଚାଲିଯାଆନ୍ତି। ସନ୍ଧ୍ୟାରେ ସେ ସ୍ଥାନ ବିଲ୍‌କୁଲ୍ ନିଛାଟିଆ ହୋଇଯାଉଥିଲା। ରାତ୍ରିରେ କୁଆଡ଼େ ସେ ଅଞ୍ଚଳରେ ଠାକୁରାଣୀ ଚଳପ୍ରଚଳ ହେଉଥିଲେ ବୋଲି ଲୋକମୁଖରୁ ଶୁଣିବାକୁ ମିଳୁଥିଲା।

ମୋର ଆୟୁବଳ ଥାଉ କିମ୍ବା ଠାକୁରାଣୀଙ୍କ ମହିମା ବଳରେ ହେଉ, ସାମାନ୍ୟ ଟୁଣୁକାଟୁଣୁକି ଚିକିତ୍ସାରେ ମୁଁ ଭଲ ହୋଇଗଲି। ଏହା ଫଳରେ ଲୋକଙ୍କର ମୋ' ପ୍ରତି ଥିବା ଅଶୁଭ ଭାବନା କ୍ରମେ ଦୂର ହୋଇଗଲା। ମଲାମୁହଁରୁ ବଞ୍ଚିଯାଇଥିବାରୁ ବଡ଼ ହେଲେ ସମାଜରେ ନାଁ କରିବି ବୋଲି କେହି କେହି କହିବାକୁ ଲାଗିଲେ। କିଏ କହିଲେ, ଠାକୁରାଣୀ ଯମ ସାଙ୍ଗରେ ଲଢ଼େଇ କରି ପିଲାଟାକୁ ବଞ୍ଚାଇଦେଲେ। ମରିଚେଇଁ ଠାକୁରାଣୀଙ୍କ ମହିମା ମଧ୍ୟ ଚାରିଆଡ଼େ ବ୍ୟାପିବାକୁ ଲାଗିଲା। ଲୋକଙ୍କ ମନ୍ତବ୍ୟ ଯାହା ଥାଉନା କାହିଁକି, ମୁଁ ଯେ ମରଣ ମୁହଁରୁ ବଞ୍ଚିଗଲି, ତାହାହିଁ ଆମ ପରିବାର ପାଇଁ ଥିଲା ସବୁଠାରୁ ବଡ଼ ଘଟଣା।

ମୁଁ ମାଟ୍ରିକ୍ ପାସ କଲା ପରେ ମରିଚେଇଁ ଠାକୁରାଣୀଙ୍କ ପାଖରୁ ମତେ ମୁକୁଳାଇ କରଜ ମୁକ୍ତ ହେବ ବୋଲି ବୋଉ ଚାହିଁଲା । ମୁଁ ସେତେବେଳେ ଛୁଟିରେ ଗାଁ'ରେ ରହୁଥିଲି । ପାଞ୍ଜି ଦେଖା ହୋଇ ଭଲ ଦିନ ଠିକ୍ ହେଲା । ଠାକୁରାଣୀଙ୍କ ପାଖରେ ବାଳ ଭୋଗ ସହିତ ଖିରି ଖେଚେଡ଼ି ଭୋଗର ବ୍ୟବସ୍ଥା ହେଲା । ଠାକୁରାଣୀଙ୍କୁ ଚୁଆ, ହଳଦୀରେ ସ୍ନାନ କରାଯାଇ କଳାଶାଢ଼ି ଓ ମୁକୁଟ ପିନ୍ଧା ହେଲା । ଠାକୁରାଣୀଙ୍କୁ ୧୫ଟଙ୍କା ଦେଇ ବୋଉ ମୋତେ କିଣି ଆଣିଲା ।

ମୁଁ ଲକ୍ଷ୍ୟ କରୁଥିଲି ବୋଉର ସେ ଦିନ କି ଆନନ୍ଦ ! ସତେ କି ଆକାଶରୁ ଚନ୍ଦ୍ରମା ତା' ହାତକୁ ଖସି ଆସିଥିଲା । ଛଅଦିନର ଛୁଆକୁ ସ୍ତନ୍ୟପାନ କରାଇ ଏତେବଡ କରିଥିବାରୁ ତା' ମନରେ ଥିଲା ଚରମ ତୃପ୍ତି । ତା' ପେଟରୁ ଜନ୍ମ ହୋଇ ନଥିଲେ ମଧ୍ୟ ମୁଁ ତା'ପାଇଁ ଥିଲି ତା ପିଲାଙ୍କ ଠାରୁ ଅଧିକ । ମୋ ଆଖିରୁ ଲୁହ ବୋହିଲେ ତା' ଦେହରୁ ରକ୍ତ ଝରି ଯାଉଥିଲା ।

ମୋ ଜନ୍ମିତ ବୋଉ ମରିବାର ତିନି, ଚାରିବର୍ଷ କୌଣସିମତେ ଭଲରେ କଟିଗଲା। ପରେ ଯେତେବେଳେ ବାପାଙ୍କର ଆଉଥରେ ବିବାହ କରିବାର ପ୍ରସ୍ତାବ ଉଠିଲା, ସେବେଠୁ ମୋ ଭାଗ୍ୟର ଗତିପଥ ବଦଳିବାରେ ଲାଗିଲା।

ବାପା ସେତେବେଳେ ଗଞ୍ଜାମ-କୋରାପୁଟ ସେଟଲମେଣ୍ଟ୍‌ରେ କାମ କରୁଥିଲେ। ଜମିବାଡ଼ି ମାମଲା ସବୁ ସେଟଲମେଣ୍ଟ୍‌ରେ ଫଏସଲା ହେଉଥିବାରୁ ଲୋକେ ସେଟଲ୍‌ମେଣ୍ଟ୍‌ବାଲାଙ୍କୁ ଖୁବ୍ ଖାତିର କରୁଥିଲେ। କୁହାଯାଏ ସେଟଲମେଣ୍ଟ କ୍ୟାମ୍ପରେ କୁଆଡ଼େ ସୁଜି, ଚିନି ବାସି ହୋଇଯାଏ । ତା' ଅର୍ଥ, ସେମାନଙ୍କୁ ଏତେ ଜିନିଷ ମିଳୁଥିଲା

ଯେ, ସେମାନେ ଆଜିର ଜିନିଷକୁ ଆସନ୍ତାକାଲି ଆଉ ବ୍ୟବହାର କରୁନଥିଲେ । ବାପା ଆଉଥରେ ବାହାହେବେ ନହେବେ ଏହାରି ଭିତରେ ପ୍ରାୟ ବର୍ଷେ ସମୟ ବିତିଗଲା । ଶେଷରେ ଗଞ୍ଜାମ ଜିଲ୍ଲା ଆସ୍କା ଅଞ୍ଚଳର ଏକ ସମ୍ଭ୍ରାନ୍ତ କରଣ ପରିବାରରେ ବାପାଙ୍କର ଦ୍ୱିତୀୟ ବିବାହ ହେଲା ।

ମୋର ସେତେବେଳକୁ ହେତୁ ହୋଇନଥିଲା । ବାହାଘର କିମ୍ବା ଘରକୁ ଆଉ ଜଣେ ବୋଉ ଆସିବା ଘଟଣା ମୋ ଉପରେ କୌଣସି ପ୍ରଭାବ ପକାଇନଥିଲା । କିନ୍ତୁ ବାପାଙ୍କ ଦ୍ୱିତୀୟ ବିବାହ ଆମ ପରିବାରର ସ୍ଥିତିକୁ ବଦଳାଇ ଦେଇଥିଲା । କାରଣ ବାପା ସେତେବେଳେ ଘରେ ଏକମାତ୍ର ରୋଜଗାରିଆ ଥିଲେ ।

ଜେଜେ ପିଲାଦିନୁ ଟିକିଏ ସଉକିଆ ଥିଲେ । ତାଙ୍କ ଗୋରା ତକ୍‌ତକ୍ ଦେହକୁ ଫିନ୍‌ଫିନ୍ ଧୋତି ଖୁବ୍ ମାନୁଥିଲା । ସଂକୀର୍ତ୍ତନରେ ମୃଦଙ୍ଗ ବଜାଇବା ତାଙ୍କର ଏକ ସଉକ୍ ଥିଲା । ଆଖପାଖ ଗାଁ'ରେ କୋଉଠି ଅଷ୍ଟପ୍ରହରୀ କିମ୍ବା ସଂକୀର୍ତ୍ତନ ହେଲେ ଜେଜେଙ୍କୁ ଖୋଜା ପଡୁଥିଲା । ସେ ଦି'ତିନିଜଣ ଚେଲାଙ୍କୁ ସାଙ୍ଗରେ ଧରି ସେଠାରେ ପହଞ୍ଚି ଯାଉଥିଲେ । ସେକାଳରେ ସେମାନଙ୍କୁ ଖୁବ୍ ଆଦର ମିଳୁଥିଲା ।

'ବସି ଖାଇଲେ ନଈବାଲି ସରେ' । ସେଇ ନ୍ୟାୟରେ ଘରେ ପଇସାପତ୍ର ଅଭାବ ଦେଖାଦେଲା । ଜେଜେଙ୍କର ଅଫିମ ଅଭ୍ୟାସ ଥିଲା । ଆମ ଘରୁ ପ୍ରାୟ ଚାରି କିଲୋମିଟର ଦୂରରେ ଥିବା ବିରିଡ଼ି ହାଟରେ ଅଫିମ ମିଳୁଥିଲା । ଜେଜେ ମଝିରେ ମଝିରେ ହାଟକୁ ଯାଇ ସେଠାରୁ ଅଫିମ ନେଇଆସୁଥିଲେ । ଦି'ଟଙ୍କାର ଅଫିମ ହେଲେ ଜେଜେଙ୍କର ମାସେ ଚଳିଯାଉଥିଲା । ମୁଁ ପିଲାଦିନେ ଦେଖିଛି, ଜେଜେ ଅଫିମକୁ ମୁଗଭଳି ଗୁଳା କରି ଗୋଟିଏ କରାଟ ଭିତରେ ରଖି ସବୁଦିନେ ସକାଳେ ସେଥିରୁ ଗୋଟିଏ ଲେଖାଏଁ ଖାଉଥିଲେ । ଅଫିମ ସାଙ୍ଗକୁ ଦୋପାଗି ଉଖୁଡ଼ା କିମ୍ବା ନଡ଼ିଆ କୋରାଟିଏ ତାଙ୍କ ପାଇଁ ନାଗୁଆ ହୋଇଥିଲା । ଆମ ଗାଁ'ର ଧୋବେଇ ସାହୁ ସକାଳୁ ସେସବୁ ଆମଘରେ ପହଞ୍ଚାଇ ଦେଉଥିଲେ । ଶେଷରେ ଏସବୁ ବାବଦକୁ ତାଙ୍କ ବାରିତଳେ ଥିବା ଖଣ୍ଡେ ଜମିକୁ ଜେଜେଙ୍କଠାରୁ ସେ ହାତକରି ନେଇଥିଲେ ।

ବିରିଡ଼ି ହାଟକୁ ଯିବା ଜେଜେଙ୍କର ଏକପ୍ରକାର ସଉକ୍ ଥିଲା । ପ୍ରତି ସପ୍ତାହର ରବିବାର ଓ ଗୁରୁବାରଦିନ ହାଟ ବସୁଥିଲା । ହାଟ ଭିତରେ ବାଲି ଉପରେ ବାଉଁଶ ଓ ତାଳ ବାଉଙ୍ଗାରେ ତିଆରି କେତୋଟି ନୂଆଁଣିଆ ଚାଳଘର ଥିଲା । ସେଠାରେ ହାଟୁଆମାନେ ଡାଲି, ଚାଉଳ, ମସଲାମସଲିଠାରୁ ଆରମ୍ଭ କରି ତେଲ, ସାବୁନ୍ ପର୍ଯ୍ୟନ୍ତ ବିକ୍ରି କରୁଥିଲେ । ଆଉ କେତେକ ପଲାରେ ଥଟାରୀମାନେ ଶାଢ଼ି, ଧୋତି, ଗାମୁଛା ଓ ରେଡିମେଡ୍ ପୋଷାକର ପସରା ମେଲାଉଥିଲେ ।

ହାଟର ଗୋଟିଏ କୋଣକୁ ଗୋଟିଏ ଦୁଇଟି ଜଳଖିଆ ଦୋକାନ ଥିଲା। ହାଟପାଳି ଦିନ ସେଠାରେ ଗହଳି ହେଉଥିଲା। ଜଳଖିଆ ଦେକାନରେ ମୁଖ୍ୟତଃ ଚା' ଓ ବେସନରେ ତିଆରି ପକୁଡ଼ି, ବୁଟଚଲା ସାଙ୍ଗକୁ ବୁନ୍ଦିଆ ଲଡୁ କିମ୍ବା ନଡ଼ିଆ କୋରା ମିଳୁଥିଲା। ମୁଁ କେତେଥର ଢେଙ୍କେଙ୍କ ସାଙ୍ଗରେ ବିରିଡ଼ି ହାଟକୁ ଯାଇଥିବା କଥା ମୋର ଏବେ ବି ମନେଅଛି। ହାଟରେ ପହଞ୍ଚିବା ପରେ ଢେଙ୍କେ ମତେ ଗୋଟିଏ ପିତଳ ଅଣି (ପରବର୍ତ୍ତୀ ସମୟର ଦଶପଇସା) ଧରେଇ ଦେଉଥିଲେ। ମୁଁ ଅଧଘଣ୍ଟା ଭିତରେ ବୁଟଚଲା ଓ ପକୁଡ଼ି ଖାଇ ସେତକ ଶେଷ କରିଦେଉଥିଲି। ପିଲାଦିନୁ ହାଟରେ ପକୁଡ଼ି ଖାଇବା କ୍ରମେ ଏକ ଅଭ୍ୟାସରେ ପରିଣତ ହୋଇଗଲା। ଦୀର୍ଘଦିନ ପର୍ଯ୍ୟନ୍ତ ମୁଁ ସେ ଅଭ୍ୟାସକୁ ଛାଡ଼ିପାରି ନଥିଲି।

ହାଟରୁ ମୁଖ୍ୟତଃ କିଛି ପରିବା, ଗୋଟାପାନ, ସିପଚୂନ, ଗୁଆ ଓ ଗୁଣ୍ଡି ତିଆରି ସାମଗ୍ରୀ ଯଥା ବାଇଗଣିପତ୍ର, ପାନମଧୁରୀ, ଭଜାଧନିଆ ଓ ଖଇର ଆସୁଥିଲା। ଘରେ କାଠରେ ତିଆରି ପାନବାକ୍ସରେ ଚୂନଘଡ଼ି, ଗୁଆକାତି, ଗୁଣ୍ଡି ଓ ଖଇର ପାଇଁ ଅଲଗା ଖୋପ ସବୁ ଥିଲା। ବାଇଗଣିପତ୍ରକୁ ହାଣ୍ଡିରେ ଭାଜି ସେଥିରେ ଧନିଆ ଓ ପାନମଧୁରି ମିଶାଇ ଗୁଣ୍ଡି ତିଆରି ହେଉଥିଲା। ହାଟରୁ ଆସିଥିବା ଖଇରକୁ ଗୁଣ୍ଡକରି କେତକୀଫୁଲରେ କେତକୀ ଖଇର ହେଉଥିଲା। ଗୁଣ୍ଡିରେ ଥିଲାବାଲା ଲୋକେ ଚୁଆ ପକାଉଥିଲେ। ଚୁଆପକା ଗୁଣ୍ଡି ଓ କେତକୀ ଖଇରଦିଆ ପାନ ସମ୍ଭ୍ରାନ୍ତବଂଶର ଏକ ପରିଚୟ ଥିଲା। ସେ ସମୟରେ ପରିବାରର ଅଧିକାଂଶ ବୟସ୍କ ଲୋକ ପ୍ରାୟ ଗୁଣ୍ଡିପାନ ଖାଉଥିଲେ। ପିଲାମାନଙ୍କୁ ପାନ ଖାଇବାରୁ ବାରଣ କରାଯାଉଥିଲା।

ଆମ ପିଲାଦିନେ ଆଜିକାଲି ଭଳି ବ୍ୟାଗର ଏତେ ପ୍ରଚଳନ ନଥିଲା। କେବଳ ପିଲାମାନେ ସ୍କୁଲକୁ ବସ୍ତାନିରେ ବହିପତ୍ର ନେଉଥିଲେ। ସଉଦାପତ୍ର ସବୁ ଲୋକେ ଗାମୁଛାରେ ବାନ୍ଧି କରି ଆଣୁଥିଲେ। ଲୁଗା ସାଙ୍ଗକୁ ଗାମୁଛା, ଶରୀରର ଏକପ୍ରକାର ଅଙ୍ଗ ପାଲଟି ଯାଇଥିଲା। ଗାମୁଛା ପଟାଇବା ସେକାଳରେ ଲୋକଙ୍କର ଏକ ସଉକ ଥିଲା। ଗାମୁଛା ପଟିବା ପାଇଁ ଛେନାପାଣିରୁ ଆରମ୍ଭ କରି ବିଭିନ୍ନ ସାମଗ୍ରୀର ଆବଶ୍ୟକ ହେଉଥିଲା। ଧଳା ଗାମୁଛା ପାଗ ହୋଇଗଲେ ଚମ୍ପାରଙ୍ଗର ହୋଇଯାଉଥିଲା। ଦେହରେ ଲୁଗା ସାଙ୍ଗକୁ ଗଞ୍ଜି ବା କମିଜ୍ ଥାଉ ବା ନଥାଉ, କାନ୍ଧରେ ପାଟିଲା ଗାମୁଛା ଖଣ୍ଡେ ପ୍ରାୟ ସମସ୍ତଙ୍କର ରହୁଥିଲା।

ଆମର ଧୋଇଆ ଅଞ୍ଚଳ। ବର୍ଷା ଉପରେ ଫସଲ ନିର୍ଭର କରୁଥିଲା। ଭଲ ବର୍ଷା ହେଲେ ଧାନ ହେଉଥିଲା। ବର୍ଷା ନହେଲେ ମରୁଡ଼ି। ସେଥିରେ ପୁଣି ନଈବଢ଼ିର ବିପଦ। ନଈବଢ଼ି ହୋଇ ଘାଇ ଭାଙ୍ଗିଲେ ବିଲବାଡ଼ି ସବୁ ବାଲିଚର ହୋଇଯାଉଥିଲା। ଜମି ଥିଲେ ବି ଲୋକେ ଖାଇବାକୁ ପାଉନଥିଲେ। ଆମର ଯାହା ଜମି ଥିଲା, ସେଥିରେ ବର୍ଷକ ଚଳି ଯାଉଥିଲା। ଧାନ ପରେ ମୁଗ

ହେଉଥିଲା। ଘରେ ଚାଉଳ ଓ ଡାଲିର ଅଭାବ ନଥିଲା। ବାଡ଼ିରେ ଯାହା ଯେମିତି ପନିପରିବା ଓ ଶାଗ ମିଳୁଥିଲା। ହଳେ ବଳଦ ଚାଷ କରିବା ପାଇଁ ଆବଶ୍ୟକ ଜମି ଆମର ଥିଲା।

ସେ ସମୟରେ ଚାଷକାମ କରିବା ପାଇଁ ଘରେ ଚାକର ରହୁଥିଲେ। ଖାଇବା ଓ ଲୁଗାପଟାକୁ ବାଦଦେଲେ ବର୍ଷକୁ ପଚାଶରୁ ଷାଠିଏ ଟଙ୍କା ପର୍ଯ୍ୟନ୍ତ ଦରମା ମିଳୁଥିଲା। ଚାକରମାନେ ଆମ ଘରେ ରହୁଥିଲେ। ସେମାନଙ୍କୁ ଚାଷକାମରେ ସାହାଯ୍ୟ କରିବା ପାଇଁ କୋଠିଆମାନେ ଥିଲେ। କୋଠିଆମାନେ ଦିନ ମଜୁରିଆ ଭାବରେ କାମ କରୁଥିଲେ। ଚାକରମାନଙ୍କ ପାଇଁ ରସ ଥାଳି, ଗିଲାସ ଓ ତାଟିଆ ଥିଲା। ମୋର ମନେଅଛି, ବର୍ଷାଦିନେ ଝଡ଼ିବର୍ଷାରେ ଜମିରେ ରୁଆ ବେଉଷଣ ହେଉଥିଲା । ଚାକରମାନେ ହଳକାମ ସାରି ଓଦା ହୋଇ ଘରକୁ ଫେରିଲା ପରେ ବିଆଳି ଚାଉଳ ଭାତ ସାଙ୍ଗକୁ କୋଳଥ ଅଟକାଳି ଖାଉଥିଲେ। କୋଳଥଚୁନା ଓ ପେଜରେ ତିଆରି ଅଟକାଳି କୁଆଡ଼େ ଥଣ୍ଡା କାଟିବା ପାଇଁ ଔଷଧ ଭାବରେ କାମ କରୁଥିଲା। ଆଜିକାଲି ସେ ଖାଦ୍ୟ ସମ୍ପର୍କରେ କହିଲେ କେହି ବୁଝିପାରିବେ ନାହିଁ। କିନ୍ତୁ ସେ ଖାଦ୍ୟରେ ଶରୀରର ସୁରକ୍ଷା ପାଇଁ ସବୁପ୍ରକାର ଉପାଦାନ ଭରପୂର ଥିଲା। ବର୍ଷାରେ ଓଦା ହେଲେ ବି କେହି ଥଣ୍ଡାଜରରେ ପଡୁନଥିଲେ।

ବଳଦଙ୍କୁ କୁଣ୍ଡାପାଣି ସାଙ୍ଗରେ କୋଳଥ ସିଝା ଦିଆଯାଉଥିଲା। ସିଝା କୋଳଥ ଖାଇଲେ କୁଆଡ଼େ  ବଳଦମାନେ ହୃଷ୍ଟପୁଷ୍ଟ ରହୁଥିଲେ। ମୁଁ ଦେଖିଛି, ବର୍ଷାରେ ମୁଣ୍ଡରେ ପଛିଆ ଦେଇ ବାଉରାଣୀମାନେ କେମିତି କାଦୁଅଜମିରେ ଧାନ ରୋଉଥିଲେ। ଯୋଉ ଢିପଜମିକୁ ପାଣି ଉଠୁନଥିଲା ସେଠି ଧାନରୁଆ ହେଉଥିଲା। ସେଥିପାଇଁ ଆଗରୁ ଅନ୍ୟ ଜମିରେ ଧାନ ତଳି ପଡୁଥିଲା। 'ରୁଆ ଧାନ ଥୁଆ' ବୋଲି ଚାଷୀମାନଙ୍କର ବିଶ୍ୱାସ ଥିଲା । ସେଥିପାଇଁ ସେମାନେ ରୁଆ ଉପରେ ଅଧିକ ଧ୍ୟାନ ଦେଉଥିଲେ।

ଆମ ଗାଁ'ମୁଣ୍ଡରେ ବିଲୁଆଖାଇ ନଈରେ ଥିଲା ବରକନ୍ଦିଆ ଘାଇ ଓ ଉପରମୁଣ୍ଡରେ ରଘୁଆ ଘାଇ। ନଈବଢ଼ି ବେଳେ ଅନେକ ସମୟରେ ଏ ଦୁଇଟି ଘାଇ ଭାଙ୍ଗିଯାଉଥିଲା। ନଈବଢି କେତେବେଳେ ଲୋକଙ୍କ ପାଇଁ ଆଶୀର୍ବାଦ ହେଉଥିଲା । ଅନ୍ୟ କେତେବେଳେ ଅଭିଶାପ ଭଳି ହେଉଥିଲା। ଯୋଉବର୍ଷ ନଈପାଣିରେ ପଟୁ ଆସି ବିଲରେ ମାଡୁଥିଲା ସେବର୍ଷ ଭଲ ଫସଲ ହେଉଥିଲା। ଆଉ ଯୋଉବର୍ଷ ଜମିରେ ବାଲିଚର ହେଉଥିଲା, ସେବର୍ଷ ଚାଷୀ ମୁଣ୍ଡରେ ହାତଦେଇ ବସୁଥିଲା। ବାଲିଚର ଜମିରେ ବର୍ଷବର୍ଷ ଧରି କୌଣସି ଫସଲ ହେଉନଥିଲା।

ଧୋୟା ଅଞ୍ଚଳର ଲୋକେ ନଈବଢ଼ି ସହିତ ପ୍ରାୟ ଅଭ୍ୟସ୍ତ। ବଢ଼ି ସମୟରେ ଗାଁ'ଗଣ୍ଡାରେ ଆଣ୍ଠୁଏରୁ ଅଣ୍ଟାଏ ପର୍ଯ୍ୟନ୍ତ ପାଣି ହୋଇଯାଏ। ତଥାପି ଲୋକେ ସେଥିରେ ଯା'ଆସ କରୁଥିଲେ। ବଢ଼ି ସମୟରେ ଝାଡ଼ା ଫେରିବା ସବୁଠାରୁ କଷ୍ଟଦାୟକ ହୁଏ।

ଚାରିଆଡ଼େ ପାଣି । ବିଲବାଡ଼ି, ପଡ଼ିଆ ସବୁ ବୁଡ଼ିଯାଉଥିଲା । ଗାଁରେ ଯୋଉଁଠି ଉଚ୍ଚା ଜାଗା ଥିଲା, ସମସ୍ତେ ସେଠାରେ ନିତ୍ୟକର୍ମ କରୁଥିଲେ ।

ପିଲାଦିନେ ଆମେ ନଈବଢ଼ି ସମୟରେ ଖୁବ୍ ମଜା କରୁଥିଲୁ । କଦଳୀ ଭେଳାରେ ବସି ବଢ଼ିପାଣିରେ ବୁଲିବାର ମଜା ନିଆରା ଥିଲା । ଚାରୋଟି କଦଳୀଗଛ ଗଣ୍ଡିକୁ ବାଉଁଶ ସାହାଯ୍ୟରେ ଯୋଡ଼ି ମଝିରେ ଆଉ କିଛି କଦଳୀଗଛ ପକାଇ ଭେଳା ତିଆରି ହେଉଥିଲା । ପାଣିରେ ଭାସିବା ପାଇଁ ଭେଳାର ଚାରିକଣରେ ଚାରୋଟି ହାଣ୍ଡି ବନ୍ଧାଯାଉଥିଲା । ଖଣ୍ଡେ ଛୋଟ କାତ ଧରି ଆମେ ତିନି, ଚାରିଜଣ ତା'ଉପରେ ଚଢ଼ି ଗାଁ'ସାରା ବୁଲୁଥିଲୁ । ପାଣିରେ ଯେତେ ବୁଡ଼ିଲେ ସେତେବେଳେ ଥଣ୍ଡା କି ଜର ହେଉନଥିଲା ।

ଜାତୀୟକବି ବୀରକିଶୋର ଦାସଙ୍କ ଘର ଜଗତସିଂହପୁର ନିକଟବର୍ତ୍ତୀ ଫୁନଙ୍ଗ ଗାଁରେ । ସେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ କବି ଭାବରେ ସାରା ଓଡ଼ିଶାରେ ପରିଚିତ । ସେ ବିବାହ କରିଥିଲେ ଗୋବିନ୍ଦପୁର ପାଖ ନୋଦା ଗାଁରେ । ସେ କାଳରେ ବର୍ଷାଦିନେ ନୋଦା ଗାଁକୁ ଯିବା ଦୁରୂହ ବ୍ୟାପାର ଥିଲା । ଚାରିଆଡ଼େ ନଈ । କୋଉଠି ଡଙ୍ଗାରେ ପାରି ହେବାକୁ ହେଉଥିଲା ତ ଆଉ କୋଉଠି ଅଣ୍ଟାଏ ପାଣିରେ ପଶି ଲୋକେ ଯିବା ଆସିବା କରୁଥିଲେ । ବୀରବାବୁ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, ସେ ବରହୋଇ ଗଲାବେଳେ ସାଧାରଣ ଭାବରେ ଧୋତି ପିନ୍ଧି, କାନ୍ଧରେ ଚାଦର ପକାଇ ଯାଇଥିଲେ । ସେଥିରେ ବ୍ୟଥିତ ହୋଇ ତାଙ୍କ ଶାଳୀ ତାଙ୍କୁ ଯେଉଁ ପତ୍ର ଲେଖିଥିଲେ ତା'ର ଉତ୍ତରରେ ଜାତୀୟ କବି ଲେଖିଥିଲେ,

"ନୋର୍ଦ୍ଧା ଡିମିରିରେ ମୋତେ ଚିହ୍ନିବେକି ଲୋକେ
ନ ମିଳଇ ଖରାଦିନେ ଯହିଁ ପାଣି ଢୋକେ
କୂଅରେ ନବୁଡ଼େ ଲୋଟା, ନାହିଁ କି ସଡ଼କ
ବର୍ଷାଦିନେ ଜମ ଡରେ ନ ହୁଏ ମଡ଼କ
ଗଛଡାଳେ ଚଢ଼ି ଯହିଁ ବସନ୍ତି ପୋଖରୀ
ସମସ୍ତେ ଗୋଲାମ ଯହିଁ ସରକାରୀ ଚାକିରି ।"

କବିଙ୍କ ଏହି ବର୍ଣ୍ଣନାରୁ ସେତେବେଳେ ଧୋୟା ଅଞ୍ଚଳର ଅବସ୍ଥା କିପରି ଥିଲା ତାହା ଜଣାପଡେ ।

ବାପାଙ୍କ ଦ୍ୱିତୀୟ ବିବାହ ପରେ ଘରର ପରିସ୍ଥିତି ବଦଳିବାକୁ ଲାଗିଲା । ମୋର ଦ୍ୱିତୀୟ ବୋଉ ଆସ୍କା ଅଞ୍ଚଳର ଝିଅ । ଆମ ଚଳଣୀ ସହିତ ସେ ପରିଚିତ ନଥିଲେ । ଖାଦ୍ୟପେୟ ଠାରୁ ଆରମ୍ଭ କରି କଥାବାର୍ତ୍ତା ପର୍ଯ୍ୟନ୍ତ ସବୁଥିରେ ଫରକ । ସବୁ ଅଡୁଆ ଲାଗୁଥିଲା । ଆମ ଘରେ କ'ଣସବୁ ଘଟୁଛି ତାକୁ ଗାଁ'ଲୋକେ ଉତ୍କଣ୍ଠାର ସହିତ ଲକ୍ଷ୍ୟ କରୁଥିଲେ । 'ସାବତ ମା', ଛୁଆକୁ ଆଦରିବ କି ନାହିଁ' ତାହା ସେମାନଙ୍କ ଉତ୍କଣ୍ଠାର କାରଣ ଥିଲା ।

ସେତେବେଳକୁ ବଡ଼ଦାଦା (ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ୰ ଅକ୍ଷୟ କୁମାର ଦାସ) ଜେଲରୁ ଖଲାସ ହୋଇ ଆଠଗଡ଼ ନିକଟ କଖଡି ଗାଁରେ ଥିବା ଖଦୀ ଓ ଗ୍ରାମୋଦ୍ୟୋଗ ସଂସ୍ଥାରେ ଯୋଗ ଦେଇଥିଲେ। ସ୍ୱାଧୀନତା ପରେ ଡକ୍ଟର ହରେକୃଷ୍ଣ ମହତାବ କଟକରୁ 'ପ୍ରଜାତନ୍ତ୍ର' ସମ୍ବାଦପତ୍ର ଆରମ୍ଭ କଲେ । ଡଃ. ମହତାବଙ୍କ ଡାକରାରେ ସେ ସେଥିରେ ଯୋଗଦେଲେ। ସେ ସମୟରେ କାମର ମର୍ଯ୍ୟାଦା ଥିଲା। କେହି କୋଉ କାମକୁ ଛୋଟ ବା ବଡ଼ ବୋଲି ବିଚାରୁ ନଥିଲେ। ମୁଁ ଶୁଣିଛି, ସେତେବେଳେ 'ପ୍ରଜାତନ୍ତ୍ର'ରେ ସ୍ୱର୍ଗତ ବୀରେନ୍ ମିତ୍ର, ନୀଳମଣି ରାଉତରାୟ, ଜାନକୀ ବଲ୍ଲଭ ପଟ୍ଟନାୟକ (ସମସ୍ତେ ମୁଖ୍ୟମନ୍ତ୍ରୀ) ଭୈରବ ଚନ୍ଦ୍ର ମହାନ୍ତି, ମିହିର କୁମାର ରାୟ ଓ ଆହୁରି ବହୁ ଜନନେତା ଯୋଗ ଦେଇଥିଲେ।

ସେତେବେଳେ ଶସ୍ତା ସମୟ, ଦରମା କମ୍ ମିଳୁଥିଲେ ବି ଅସୁବିଧା ହେଉନଥିଲା। ସେ କାଳରେ ଦାଦା ଘରକୁ ୩୦ଟଙ୍କା ପଠାଇ ପାରୁଥିଲେ। ବିଲରୁ ଧାନ ଓ ମୁଗ ମିଳୁଥିଲା। ସେଥିରେ ବର୍ଷକ ଚଳି କିଛି ବଳୁଥିଲା। ତିରିଶି ଟଙ୍କା ତେଲଲୁଣ ପାଇଁ ଯଥେଷ୍ଟ ଥିଲା।

କେଜାଣି କାହିଁକି, କିଛିଦିନ ପରେ ଘରର ସେ ପୂର୍ବ ଶାନ୍ତି ଆଉ ରହିଲା ନାହିଁ। ସେତେବେଳେ ମୁଁ ତା'ର କାରଣ ଖୋଜିବା ଅବସ୍ଥାରେ ନଥିଲି। କିଛିଦିନ ପରେ ଶୁଣିଲି ଆମଘରେ 'ଭିନେ' ହେବେ। ଭିନେ ହେବା ଅର୍ଥ ହେଲା, ଘରଦ୍ୱାର, ସମ୍ପତ୍ତିବାଡ଼ି ସବୁ ଏକାଠି ରହିବ, କିନ୍ତୁ ରୋଷେଇ ଅଲଗା ଅଲଗା ହେବ। ଯିଏ ଯେଉଁଘରେ ରହୁଥିବେ ସେ ଘର ତାଙ୍କ ଭାଗରେ ରହିବ।

ଏଇ ଅନୁସାରେ ଗୋଟିଏ ରୋଷେଇଘରେ ଦୁଇଟି ଚୁଲି ହୋଇଗଲା। ଯିଏ ଯାହାର ସୁବିଧା ଓ ରୁଚି ଅନୁଯାୟୀ ରୋଷେଇ କଲେ। ସେଥିରେ କାହାରି କିଛି ଅସୁବିଧା ହେଲା ନାହିଁ।

ଘଟଣାକ୍ରମେ ମୁଁ ବିବାଦୀୟ ହୋଇପଡ଼ିଲି। ମୁଁ ବାପାଙ୍କ ଘରେ ରହିବି କି ଦାଦାଙ୍କ ଘରେ ରହିବି ସେ ବିଷୟ ବୁଝିବା ପାଇଁ ମୋର ବୟସ କିମ୍ବା ବୁଦ୍ଧି ହୋଇନଥିଲା। ପରେ ଶୁଣିଲି, ଯୋଉ ବୋଉ ମତେ କ୍ଷୀର ଖୁଆଇ ଛଅଦିନରୁ ବଞ୍ଚାଇ ବଡ଼ କରିଥିଲା, ସିଏ ମତେ ନଛାଡ଼ିବା ପାଇଁ ଜିଦ୍ ଧରିଲା। ତା'ର ଯୁକ୍ତି ଥିଲା, "ଯୋଉ ଛଅଦିନର ଛୁଆକୁ ମୁଁ ରକ୍ତ ଦେଇ ଛଅବର୍ଷର କଲିଣି, ତାକୁ ମୁଁ କାହାକୁ ଟେକିଦେଇ ପାରିବି ନାହିଁ। ଯିଏ ଯାହା କହୁ ପଛକେ, ସିଏ ମୋ ଚାରିପିଲାଙ୍କ ସାଙ୍ଗରେ ଜଣେ ହୋଇ ରହିବ।" ଶେଷରେ ତା'ରି କଥା ରହିଲା। ମୁଁ ଦାଦାଙ୍କ ଘରେ ରହିଲି । ସେଇଟା ମୋର ନିଜ ଘର ହୋଇଗଲା। ତା'ପରେ ମୁଁ ଆଉ ପଛକୁ ଫେରି ଚାହିଁନାହିଁ। ଶେଷ ପର୍ଯ୍ୟନ୍ତ ବଡ଼ଦାଦାଙ୍କର ଅଘୋଷିତ ପୁଅ ହୋଇ ରହିଗଲି। ହେଲେ ଦାଦାଙ୍କୁ ବାପା ବୋଲି ଡାକି ପାରିଲିନି ।

ଯଥା ସମୟରେ ଗାଁ' ଏଲ୍.ପି. ସ୍କୁଲରେ ମୋ ପାଠପଢ଼ା ଆରମ୍ଭ ହେଲା। ନାଁ ଲେଖାଇଲା ବେଳେ ଜେଜେଙ୍କର ଏକ ସାମାନ୍ୟ ଭୁଲ୍ ପାଇଁ ମୋ ଜନ୍ମ ତାରିଖ ବଦଳିଗଲା। ମୋ ଜନ୍ମ କାର୍ତ୍ତିକ ମାସ ବଡ଼ଓଷା ଦିନ। ଇଂରାଜୀରେ ୨୨.୧୧.୧୯୪୦ ହେବା କଥା। କିନ୍ତୁ ଜେଜେଙ୍କର ଅନ୍ୟମନସ୍କତା ଯୋଗୁଁ ହେଉ କିମ୍ବା ସେତେବେଳର ମାଷ୍ଟରମାନଙ୍କର ଭୁଲ୍ ଯୋଗୁଁ ହେଉ, ସ୍କୁଲ୍‌ରେ ମୋର ଜନ୍ମ ତାରିଖ ୨.୧.୧୯୪୦ ବୋଲି ରେକର୍ଡ ହୋଇଗଲା। ଏହା ଫଳରେ କାଗଜପତ୍ରରେ ମୋ ବୟସ ଦଶମାସ ବଢ଼ିଗଲା। ମୁଁ ଜୀବନରେ ସରକାରୀ ଚାକିରି କରିଥିଲେ ହୁଏତ ଏଇ ସାମାନ୍ୟ ଭୁଲ୍ ମୋ ପାଇଁ ମହଙ୍ଗା ପଡ଼ିଥାନ୍ତା। କିନ୍ତୁ କୌଣସି ସରକାରୀ ଚାକିରିରେ ଯୋଗ ଦେଇ ନଥିବା ହେତୁ ସେ ଭୁଲ୍ ମୋ ପାଇଁ କିଛି ଫରକ ପଡ଼ିନଥିଲା।

ଗାଁ' ସ୍କୁଲ୍‌ରୁ ପାଶ୍ କଲା ପରେ ବାଗଲପୁରରେ ଥିବା ମାଇନର ସ୍କୁଲ୍‌ରେ ମୋ ନାଁ ଲେଖାହେଲା। ସେଠି ନାଁ ଲେଖାଇଲା ବେଳେ ଆଉ ଜନ୍ମ ତାରିଖ ବଦଳିଲା ନାହିଁ। ସେଥିପାଇଁ ମଧ୍ୟ କେହି କୌଣସି ଉଦ୍ୟମ କରିନଥିଲେ। ମୁଁ ଦାଦାଙ୍କ ଘରେ ରହୁଥିଲେ ହେଁ କାଗଜପତ୍ରରେ ବାପାଙ୍କ ନାଁ ରେକର୍ଡ ହୋଇଥିଲା ଓ ତାହା ଶେଷ ପର୍ଯ୍ୟନ୍ତ ରହିଲା।

ଆମ ଗାଁ'ରୁ ବାଗଲପୁର ସ୍କୁଲର ଦୂରତା ପ୍ରାୟ ଦୁଇ କିଲୋମିଟର। ଆମ ଗାଁ'ର ଅନେକ ପିଲା ସେଠାକୁ ପଢ଼ିବାକୁ ଯାଉଥିଲେ। ସେତେବେଳେ ଆଜିକାଲି ଭଳି ରାସ୍ତାଘାଟର ସୁବିଧା ନଥିଲା। ବିଲ ହିଡ଼ରେ ଚାଲି ଚାଲି ଯିବାକୁ ପଡୁଥିଲା। ଅନ୍ୟ ଦିନମାନଙ୍କରେ କୌଣସିମତେ ଚଳିଯାଉଥିଲା। କିନ୍ତୁ ବର୍ଷାଦିନେ ଭାରି ଅସୁବିଧା। ସରୁ ହିଡ଼ରେ ଗୋଡ଼ ଖସିଯିବା ଯୋଗୁଁ କେତେଥର ମୁଁ ପଡ଼ି କାଦୁଅ ହୋଇଛି। ସେ ସମୟରେ ଏତେ ବହିଖାତା ଆବଶ୍ୟକ ହେଉନଥିଲା। ଅଳ୍ପରେ କାମ ଚଳିଯାଉଥିଲା ।

# ସେକାଳର ଚଳଣି

ମୋ ଜନମ ହେବାର ବହୁ ପୂର୍ବରୁ ଗାଁ'ଗଣ୍ଡାରେ ସବୁକଥା ପ୍ରଚଳିତ ସାମାଜିକ ବ୍ୟବସ୍ଥା ଅନୁଯାୟୀ ଚାଲୁଥିଲା। ଲୋକେ ଆଇନ୍‌କାନୁନ୍ ଅପେକ୍ଷା ସାମାଜିକ ପ୍ରଥାକୁ ଅଧିକ ଗୁରୁତ୍ୱ ଦେଉଥିଲେ। ଘରେ ପିଲାଟିଏ ଜନ୍ମ ହେବାଠାରୁ ତରୁଣ, ଯୁବକ, ପ୍ରୌଢ଼ ଅବସ୍ଥା ଦେଇ ମୃତ୍ୟୁବରଣ କରିବା ପର୍ଯ୍ୟନ୍ତ ତା'ପାଇଁ ସମାଜରେ ଏକ ବିଧିବ୍ୟବସ୍ଥା ଓ ପରମ୍ପରା ରହିଥିଲା।

ଆଜିକାଲି ଭଳି ସେକାଳରେ ଗାଁ'ରେ ଡାକ୍ତରଖାନା ନଥିଲା । ଡାକ୍ତର, ନର୍ସ ମିଳୁନଥିଲେ। ଗାଁ'ରେ ଥିବା ବଇଦମାନେ ଚେରମୂଳିର ଟୁଣୁକାଟୁଣୁକି ଦେଇ ରୋଗୀଙ୍କୁ ସାଷ୍ଟାମ କରାଉଥିଲେ। ସେହିପରି ଗାଁ'ରେ ଥିବା ଧାଇମାନେ ପ୍ରସବ କରାଉଥିଲେ। ଗର୍ଭବେଦନା ଆରମ୍ଭ ହେଲେ ଆସନ୍ନପ୍ରସବାଙ୍କୁ ଯେଉଁ ଘରେ ରଖାଯାଉଥିଲା ତାକୁ 'ଏନ୍ତୁଡ଼ିଶାଳ' ବୋଲି କୁହାଯାଉଥିଲା। ମୁଁ ଶୁଣିଛି, ସେ ଘର ମଝିରେ କୁଆଡ଼େ ଗୋଟିଏ ବାଉଁଶର ଖୁଣ୍ଟ ପୋତାଯାଉଥିଲା । ସେ ଖୁଣ୍ଟକୁ ଧରି ସ୍ତ୍ରୀଲୋକମାନେ ଗର୍ଭ ଯନ୍ତ୍ରଣା ସମ୍ଭାଳୁଥିଲେ। ପିଲା ଭୂମିଷ୍ଠ ହେବାମାତ୍ରେ ଧାଇମାନେ ଶାମୁକାରେ ନାହି କାଟୁଥିଲେ। ଶାମୁକାକୁ ଆଗରୁ ପୋଖରୀରୁ ସଂଗ୍ରହ କରାଯାଇ ସଫା କରି ରଖାଯାଉଥିଲା।

ରାଜା, ଜମିଦାରମାନଙ୍କ ଘରେ ରୂପା ଚାମଚରେ ନାହି କଟାଯାଉଥିଲା। ପିଲା ଜନ୍ମ ହେଲେ ଥିଲାବାଲାଙ୍କ ଘରେ ଢୋଲ, ମହୁରି ବାଜୁଥିଲା। ମାମୁଘରକୁ ମାମୁମାଇଁଙ୍କ ପାଇଁ ବାରିକ ହାତରେ ଲୁଗା ଓ ପିଠାପଣା ପଠାଯାଉଥିଲା । କେହିକେହି ସାଙ୍ଗରେ ବାଜା ପଠାଇ ସନ୍ତାନ ହେବା ଖବର ପଠାଉଥିଲେ।

ସନ୍ତାନ ପ୍ରସବ ହେବା ପରେ ଅନ୍ତୁଡ଼ିଶାଳରେ ଏନ୍ତୁଡ଼ି (ଘଷି ଓ କାଠର ନିଆଁ) ଲାଗି ଗୁଆଘିଅରେ ମା' ଓ ଶିଶୁଙ୍କୁ ସେକାଯାଉଥିଲା। ପୋଖତିମାନେ ଏକୋଇଶ ଦିନ ପର୍ଯ୍ୟନ୍ତ

ନିର୍ଦ୍ଦିଷ୍ଟ ପଥ୍ୟରେ ରହୁଥିଲେ। ଦେହ ଶୁଖିବା ପାଇଁ ସେମାନଙ୍କୁ ଭାତରେ ଗୁଆଘିଅ ସାଙ୍ଗରେ ଶୁଣ୍ଠି ଓ ପିପ୍ପଳି ଦିଆଯାଉଥିଲା। ଶିଶୁ ଜନ୍ମ ହେବାର ପାଞ୍ଚଦିନରେ 'ପଞ୍ଚୁଆତି', ଛଅଦିନରେ 'ଷଠୀଘର' ଓ ସାତଦିନରେ 'ଉଠିଆରି' ହେଉଥିଲା। ଷଠୀଘର ଦିନ କାନ୍ଥରେ ମାଟିରେ ଷଠୀଘର କଟାଯାଇ ସେଥିରେ କଉଡ଼ି ଖଞ୍ଜାଯାଉଥିଲା। ଘରେ ବିଭିନ୍ନ ପିଲାଙ୍କ ପାଇଁ ଭିନ୍ନଭିନ୍ନ ଆକାରର ଷଠୀଘର ତୋଳାଯାଇ ଷଠୀଗୋସାଇଁଙ୍କ ଆଶୀର୍ବାଦ କାମନା କରାଯାଉଥିଲା। ଏକୋଇଶ ଦିନରେ ପ୍ରସୂତି ସ୍ନାନ କଲାପରେ ଅଶୌଚ ସମାପ୍ତ ହେଉଥିଲା। ଏକୋଇଶାଦିନ ଘରେ ସତ୍ୟନାରାୟଣ ପାଲା ହେଉଥିଲା। ସତ୍ୟନାରାୟଣ ପାଲା କେବେଠାରୁ ଆମ ସଂସ୍କୃତିର ଏକ ଅଙ୍ଗ ପାଲଟିଛି ସେ ବିଷୟରେ ନିର୍ଦ୍ଦିଷ୍ଟ ବିବରଣୀ ମିଳେନାହିଁ। ତେବେ ଏହା ଉଭୟ ହିନ୍ଦୁ ଓ ମୁସଲମାନ ସଂସ୍କୃତିର ଏକ ପ୍ରତିଛବି ବୋଲି କୁହାଯାଏ। ପାଲାର ଭାଷା ଓଡ଼ିଆ ଓ ଉର୍ଦ୍ଦୁ ମିଶା।

ସତ୍ୟନାରାୟଣ ପୂଜାରେ ପିଢ଼ା ଉପରେ ନୂଆ ଗାମୁଛା ପକାଇ ନାରାୟଣଙ୍କୁ ଆବାହନ କରାଯାଏ। ବ୍ରାହ୍ମଣ ପୂଜାକାଣ୍ଡ ସ୍ଥାପନ କରି କଦଳୀପତ୍ରରେ କଦଳୀ ଓ ଲଡୁ ଥୋଇ ମୁକାମ ବାଢ଼ନ୍ତି। ପିତଳ ହାଣ୍ଡି କିମ୍ବା କୁଣ୍ଡରେ ପାଚିଲା କଦଳୀ ସାଙ୍ଗରେ ନଡ଼ିଆ, କ୍ଷୀର, ଗୁଡ଼ ଓ ଚାଉଳଚୁନା ମିଶାଯାଇ 'ଶିରିଣି' ପ୍ରସ୍ତୁତ କରାଯାଏ। ସେଥିରେ ଅଦା, ଗୋଲମରିଚ ଓ କର୍ପୂର ମଧ ପଡ଼େ। ଏହା ଖୁବ୍ ସୁସ୍ୱାଦୁ। ପୂଜା ସମୟରେ ଜନ୍ମପାଲା ବୋଲାଯାଏ। ଶେଷରେ ନବଜାତ ଶିଶୁର ନାମକରଣ ହୁଏ। ଶିରିଣି ସାଙ୍ଗକୁ ଚୁଡ଼ାଘଷା, ଉଖୁଡ଼ା ଓ ଅନ୍ୟାନ୍ୟ ମିଷ୍ଟାନ୍ନର ବ୍ୟବସ୍ଥା ହୋଇଥାଏ। ଆତ୍ମୀୟସ୍ୱଜନ ଏକାଠି ପ୍ରସାଦ ସେବନ କରି ପିଲାକୁ ଆଶୀର୍ବାଦ କରନ୍ତି।

ସ୍ଥଳବିଶେଷରେ ଏକୋଇଶିଆରେ ଠିଆପାଲା ହୋଇଥାଏ। ପାଲାବାଲା ଛିଡ଼ା ହୋଇ ପାଲା ବୋଲୁଥିବାରୁ ବୋଧହୁଏ ତା'ର ନାମକରଣ ଏପରି ହୋଇଛି। ଠିଆପାଲାରେ ସାଧାରଣତଃ ପାଞ୍ଚଜଣ ଥାଆନ୍ତି। ଜଣେ ଗାୟକ, ଜଣେ ବାୟକ, ଜଣେ ଶ୍ରୀପାଳିଆ ଓ ଦୁଇଜଣ ପାଳିଆ। ଗାୟକ ରଙ୍ଗବେରଙ୍ଗର ପଞ୍ଜାବି ସାଙ୍ଗକୁ ମୁଣ୍ଡରେ ପଗଡ଼ି ପିନ୍ଧି ହାତରେ ଚାମର ଧରିଥାନ୍ତି। ଅନ୍ୟମାନେ ସେହିପରି ନାଲି, ନେଳି, ବାଇଗଣୀ ରଙ୍ଗର ପୋଷାକ ପିନ୍ଧିଥାନ୍ତି। ପାଲାରେ ଗୋଟିଏ ଗୋଟିଏ ପୌରାଣିକ କାହାଣୀର ଅବତାରଣା କରାଯାଇଥାଏ। ଠିଆପାଲା ଚାରି-ପାଞ୍ଚଘଣ୍ଟା ପର୍ଯ୍ୟନ୍ତ ଚାଲେ। ଠିଆପାଲା ହେଉଥିବା କ୍ଷେତ୍ରରେ ରନ୍ଧାବଢ଼ା ହୋଇ ଖାଇବାପିଇବାର ବନ୍ଦୋବସ୍ତ ହୋଇଥାଏ। କୁଳର ଅବଧାନ ଜନ୍ମ ସମୟକୁ ହିସାବ କରି ତାଳପତ୍ରରେ ଜାତକ ତିଆରି କରନ୍ତି।

ଆଗେ ଚାଟଶାଳୀରେ ପିଲାଙ୍କୁ ପ୍ରଥମେ 'ଅ'ଠାରୁ 'କ୍ଷ' ପର୍ଯ୍ୟନ୍ତ ଅକ୍ଷର ଶିକ୍ଷା ଦିଆଯାଉଥିଲା। ଏଥିପାଇଁ ଅବଧାନେ 'ଚାଟଶାଳୀ ପାଠ' ପଢ଼ାଉଥିଲେ। ଅକ୍ଷର ଶିକ୍ଷା

ପରେ ଏକକରୁ ପଚିଶକ ପର୍ଯ୍ୟନ୍ତ ପଣକିଆ, କଡାଗଣ୍ଡା ଓ ପାହିଅଣା ମାଧ୍ୟମରେ ଅଙ୍କ ଶିଖାଯାଉଥିଲା। ଏହାଦ୍ୱାରା ପିଲାଏ ମିଶାଣ, ଫେଡ଼ାଣ, ଗୁଣନ, ହରଣରେ ପାରଙ୍ଗମ ହୋଇଯାଉଥିଲେ। ପିଲାମାନଙ୍କୁ ଭାଗବତ, ରାମାୟଣ, ଶାରଳା ମହାଭାରତ ପଢ଼ାଯାଉଥିଲା। ଓଡ଼ିଶୀ, ଛାନ୍ଦ, ଚଉତିଶା, ଚମ୍ପୂ, ଭଜନ ଓ କୀର୍ତ୍ତନରେ ମଧ୍ୟ ତାଲିମ୍ ଦିଆଯାଉଥିଲା।

ପିଲାଙ୍କୁ ଚାରିବର୍ଷ ହେଲେ ତା'ର କାନଫୋଡ଼ା ହୋଇ ବିଦ୍ୟାରମ୍ଭ ହେଉଥିଲା। ଚାରିବର୍ଷ ଚାରିମାସ ଚାରିଦିନରେ ଅନୁଷ୍ଠିତ କାନଫୋଡ଼ା ସହିତ ବିଦ୍ୟାରମ୍ଭ ମିଳିତ ଭାବରେ କରାଯାଉଥିଲା। ସେଥିପାଇଁ ଭଲ ଦିନ, ବାର, ତିଥି ନକ୍ଷତ୍ର କିମ୍ବା ଲଗ୍ନର ଆବଶ୍ୟକତା ପଡୁନଥିଲା। କାନଫୋଡ଼ାଦିନ ଘରେ ଗୋଟିଏ ଛୋଟକାଟର ଉତ୍ସବ ହେଉଥିଲା। ବ୍ରାହ୍ମଣ ଘରେ ପିଲାଙ୍କର ବ୍ରତଘର ହେଉଥିଲା। ବ୍ରତ ପରେ ପିଲାମାନେ ପଇତା ଗ୍ରହଣ କରୁଥିଲେ। ବିଦ୍ୟାରମ୍ଭ ଦିନ ବିଦ୍ୟାଦାତ୍ରୀ ସରସ୍ୱତୀଙ୍କର ଆରାଧନା କରାଯାଉଥିଲା। ତାଙ୍କୁ ୧୦୮ ନଡ଼ିଆ ଅର୍ପଣ କରାଯାଉଥିଲା। ଗାଁ'ର ଅବଧାନ, ମାଟିଉପରେ ଖଡ଼ି ଗୋଟାଳିରେ ତିନୋଟି ମୁଣ୍ଡୁଳା କରି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ବୋଲି ପିଲାଙ୍କୁ ଖଡ଼ିଛୁଆଁ କରୁଥିଲେ। କୋଉଠି କୋଉଠି ସିଲଟଖଡ଼ିରେ ପିଲାମାନଙ୍କର ବିଦ୍ୟାରମ୍ଭ କରାଯାଉଥିଲା। ଆଜି ଲୋକେ ଏସବୁ ପାସୋରି ଦେଲେଣି।

ଘରେ ବିଦ୍ୟାରମ୍ଭ ପରେ ପିଲାମାନେ ଗାଁରେ ଥିବା ନିମ୍ନ ପ୍ରାଥମିକ ସ୍କୁଲକୁ ଯାଉଥିଲେ। ସ୍କୁଲର ମାଟି ଚଟାଣକୁ ଗୋବରରେ ଲିପାପୋଛା କରି ପରିଷ୍କାର କରାଯାଉଥିଲା। ମୋଟା ଖଡ଼ିରେ ପିଲାମାନେ ତା'ଉପରେ ଲେଖୁଥିଲେ। ସ୍କୁଲ୍‌ରେ ପାଠ ସାଙ୍ଗକୁ ପିଲାମାନଙ୍କୁ ନୀତିଶିକ୍ଷା ଦିଆଯାଉଥିଲା।

ଆମ ଅଞ୍ଚଳରେ ବାଗଲପୁର ଗାଁ'ରେ ଗୋଟିଏ ମାଇନର ସ୍କୁଲ ଥିଲା। ସେଠାରେ ଆଖପାଖ ପ୍ରାୟ ତିରିଶଟି ଗାଁ'ର ପିଲାଏ ଯାଇ ପାଠ ପଢୁଥିଲେ। ଉଭୟ ପିଲା ଓ ଶିକ୍ଷକ ବର୍ଷା ଚାରିମାସ ନଈନାଳ ପାରି ହୋଇ ସ୍କୁଲକୁ ଯାଉଥିଲେ। ବାଗଲପୁର ସ୍କୁଲରେ ପୁନଙ୍ଗ ଗ୍ରାମର ରାଜୁବାବୁ (ରାଜକିଶୋର ରାୟ) ହେଡମାଷ୍ଟର ଥିଲେ। ସେ ପିଲାମାନଙ୍କୁ ଯେତିକି ଶ୍ରଦ୍ଧା କରୁଥିଲେ, ପିଲାଏ ମଧ୍ୟ ତାଙ୍କୁ ତତୋଧିକ ଭକ୍ତି କରୁଥିଲେ। ସ୍କୁଲରେ ପିଲାଙ୍କୁ ପାଠପଢ଼ା ସାଙ୍ଗକୁ ସୂତାକଟା ତାଲିମ ଦିଆଯାଉଥିଲା। ସ୍କୁଲ ବଗିଚାରେ ଚାଷ ହେଉଥିବା ତୁଳାରୁ ମଞ୍ଜି କାଢ଼ି ଭିଣାଯନ୍ତ୍ରରେ ଭିଣା ହେଉଥିଲା। ଭିଣାତୁଳାରେ ବଳଣା ତିଆରି ହୋଇ ଉଭୟ ତାକୁଡ଼ି ଓ ଅରଟରେ ସୂତାକଟା ହେଉଥିଲା। ଯୋଉ ପିଲାର ସୂତା ଯେତିକି ପତଳା ହେଉଥିଲା ସେ ସେତିକି ଦକ୍ଷ ବୋଲି ବିବେଚିତ ହେଉଥିଲା। କଟା ହେଉଥିବା ସୂତାକୁ ନଟେଇରେ ସାଇତା ଯାଉଥିଲା। ସେ ସୂତାକୁ ଲୁଗା ବୁଣିବା ପାଇଁ ବ୍ୟବହାର କରାଯାଉଥିଲା।

ପିଲାଙ୍କର ଏକୋଇଶିଆ ପୂଜା କରି ନାମକରଣ ଓ ବିଦ୍ୟାରମ୍ଭ କରିବା ବାପାମା'ଙ୍କର କର୍ତ୍ତବ୍ୟ ଥିଲା । ସେହିପରି ପୁଅଝିଅମାନଙ୍କର ବାହାଘର କରିବା ମଧ୍ୟ ସେମାନଙ୍କ ପାଇଁ ଆଉ ଏକ ମୁଖ୍ୟ କାମ ଥିଲା । ଆଗକାଳରେ ଝିଅମାନେ ଘରଯୋଗ୍ୟା ହୋଇଗଲେ ବାହାରକୁ ବାହାରୁ ନଥିଲେ । ବଢ଼ିଲା ଝିଅମାନେ ଏକୁଟିଆ ବାପା, ଭାଇମାନଙ୍କ ଆଗକୁ ଯାଉନଥିଲେ । ବିବାହଯୋଗ୍ୟା ଝିଅକୁ ଯେତେଶୀଘ୍ର ବିବାହ ଦିଆଯାଇପାରେ ସେଥିପାଇଁ ଘରର ମୁରବିମାନେ ଚିନ୍ତା କରୁଥିଲେ । ଝିଅ ଓ ଘିଅକୁ ବେଶିଦିନ ଘରେ ରଖିବା ସମୀଚୀନ ନୁହେଁ ବୋଲି ସେମାନେ ବିଚାରୁଥିଲେ । ଭଦ୍ରଲୋକ (ମଧ୍ୟସ୍ଥି)ଙ୍କ ଦ୍ୱାରା ଝିଅ ପାଇଁ ଜ୍ୱାଇଁ ଓ ପୁଅ ପାଇଁ ବୋହୂ ଖୋଜା ହେଉଥିଲା । ପ୍ରସ୍ତାବ ପସନ୍ଦ ହେଲେ ପୁଅଘର ଲୋକେ ଝିଅଘରକୁ ଝିଅ ଦେଖିବାକୁ ଯାଉଥିଲେ । ଝିଅଘରେ ସେମାନଙ୍କୁ ଚର୍ଚ୍ଚା କରାଯାଉଥିଲା । ଘରେ ଗୁଡ଼ିଆ ଡକାଇ ସେମାନଙ୍କ ପାଇଁ ପୁରି, ତରକାରୀ, ମୋହନଭୋଗ(ସୁଜି ହାଲୁଆ), ରସଗୋଲା ଇତ୍ୟାଦି ପରଷା ଯାଉଥିଲା । ପୁଅଘର ଭଳି ଝିଅଘର ଲୋକେ ମଧ୍ୟ ପୁଅଘରକୁ ଘର ଓ ବର ଦେଖିବାକୁ ଯାଉଥିଲେ । କଥାବାର୍ତ୍ତା ମଧ୍ୟରେ ବାହାଘର ପୂର୍ବରୁ ମୁରବୀମାନେ ଝିଅ ଓ ପୁଅଘରର ଜାତି, ଗୋତ୍ର ଓ ସେମାନଙ୍କର ବନ୍ଧୁବାନ୍ଧବଙ୍କ ସମ୍ପର୍କରେ ସବୁକଥା ବୁଝୁଥିଲେ ।

ଝିଅ, ପୁଅ ପସନ୍ଦ ହେଲେ ଏକ ଦେବସ୍ଥଳୀରେ ମହାପ୍ରସାଦ ନିର୍ବନ୍ଧ ହେଉଥିଲା । ଏଥିରେ ଉଭୟପକ୍ଷର କେବଳ ଆତ୍ମୀୟସ୍ୱଜନ ଓ ବନ୍ଧୁବାନ୍ଧବ ଯୋଗଦେଉଥିଲେ । ଉଭୟପକ୍ଷ ସାଙ୍ଗରେ ଚୁଡ଼ା, ଦହି, ଗୁଡ଼, ଲଡୁ, ଜିଲାବି ଇତ୍ୟାଦି ସାମଗ୍ରୀ ନେଉଥିଲେ । ଦେବଦେବୀଙ୍କ ସମ୍ମୁଖରେ କନ୍ୟା ଓ ବରପିତା ମହାପ୍ରସାଦ ଛୁଇଁ ପରସ୍ପରର ବନ୍ଧୁ ହେବା ପାଇଁ ତ୍ରିବାର ପ୍ରତିଜ୍ଞା କରୁଥିଲେ । ଶେଷରେ ଏକତ୍ର ଭୋଜନ କରି ସେମାନେ ନିଜନିଜ ଘରକୁ ଫେରୁଥିଲେ । ମହାପ୍ରସାଦ ନିର୍ବନ୍ଧ ପରେ ଥିଲାବାଲାଙ୍କ କ୍ଷେତ୍ରରେ ଝିଅଘରୁ, ପୁଅଘରକୁ 'ସ୍ୱୀକାର' ପଠାଯାଉଥିଲା । ପ୍ରତିବଦଳରେ ପୁଅଘରୁ ଝିଅଘରକୁ 'ସମ୍ମତି' ସ୍ୱରୂପ କିଛି ଉପଢୌକନ ଦିଆଯାଉଥିଲା । ଏହାପରେ ଶୁଭଲଗ୍ନ ଦେଖି ବିବାହ ତିଥି ସ୍ଥିର ହେଉଥିଲା । ପୂର୍ବରୁ ଶୁଭବେଳାରେ ଏକ ସମୟରେ ଉଭୟ ଝିଅ ଓ ପୁଅ ଘରେ 'ଜାଇ ରଗଡ଼ା' ହୋଇ ବରକନ୍ୟା ବଢ଼ି ପରାଯାଉଥିଲା । ଜାଇ ରଗଡ଼ା ପରେ ବନ୍ଧୁବାନ୍ଧବଙ୍କ ଘରକୁ ଗୁଆ ନିମନ୍ତ୍ରଣ ବାରିକ ହାତରେ ଦିଆଯାଉଥିଲା । ମାମୁ ଘରକୁ ଏକ 'ଗାଇ' (ଦଶଟି) ଗୁଆ ଓ ଅନ୍ୟମାନଙ୍କୁ ପାଞ୍ଚୋଟି ଗୁଆ ପଠାଯାଉଥିଲା । ନିମନ୍ତ୍ରଣ ପାଇବା ପରେ ବିବାହ ଦିନ ବନ୍ଧୁବାନ୍ଧବମାନେ ନିମନ୍ତ୍ରଗ୍ରାହୀଙ୍କ ଘରକୁ ଭାରବେଭାର ପଠାଉଥିଲେ । ଭାରରେ ପରିବା, ନଡ଼ିଆ, କ୍ଷୀର ଇତ୍ୟାଦି ରହୁଥିଲା । ଗଉଡ଼ମାନେ ବାହୁଙ୍ଗିରେ ଭାର କରି ସେସବୁ ନେଉଥିଲେ । ସେମାନଙ୍କୁ ଭାର ବାବଦରେ କିଛି ବିଦାକି ଦିଆଯାଉଥିଲା ।

ବିବାହ ପୂର୍ବଦିନ ମଙ୍ଗନ । ସେଦିନ ଘରେ ମଙ୍ଗନହାଣ୍ଡି ବସେ । ପରେ ଝିଅଘରୁ ବରକୁ ନିମନ୍ତ୍ରଣ କରିବା ପାଇଁ ବରଧରା ଯାଏ । ବରଧରା ପୁଅଘରେ ପହଞ୍ଚିଲା ପରେ ପୁଅ ବାଡୁଅପାଣି ଗାଧୋଇ 'ବର' ହୋଇଯାଏ । ସେହିପରି ପୁଅଘରୁ ବରଧରା ଫେରିଲେ ଝିଅଘରେ ଦିଅଁମଙ୍ଗୁଳା ହୁଏ । ଝିଅ ବାଡୁଅପାଣି ଗାଧୋଇ 'କନ୍ୟା'ରେ ପରିଣତ ହୋଇଯାଏ । ଅବଶ୍ୟ ଆଜିକାଲି ଏ ସାମାଜିକ ବ୍ୟବସ୍ଥା ଆଉ ଚଳୁନାହିଁ । ଆଜିକାଲି ଅଧିକାଂଶ କ୍ଷେତ୍ରରେ "ମିଆଁ ବିବି ରାଜି" ହୋଇ ବାହାଘର ହେଉଥିବାରୁ 'କାଜୀ'ଙ୍କର ଆଉ ଦରକାର ପଡୁନାହିଁ । ମୁରବୀମାନେ ଖାଲି ନାଁ'କୁ 'ବରଯାତ୍ରୀ' ହୋଇ ଯାଉଛନ୍ତି । ବାହାଘରରେ ସେମାନଙ୍କର ଭୂମିକା ଗୌଣ ହୋଇଯାଉଛି । ସେମାନଙ୍କର ଆଉ ମର୍ଯ୍ୟାଦା ବୋଲି କିଛି ରହୁନାହିଁ । ବର ଅନୁକୂଳ କରି କନ୍ୟାଘରକୁ ଯିବାପୂର୍ବରୁ ପ୍ରଥମେ ମାଛ ଓ ଦହି ଭାର ଯାଏ । ଏହାକୁ 'ବହିନିଭାର' ବୋଲି କୁହାଯାଏ । ବର ସାଙ୍ଗରେ ପାଲିଙ୍କିରେ ମାରକୁଣ୍ଡି ବସେ । ପାଲିଙ୍କିକୁ ବେହେରାମାନେ କାନ୍ଧେଇ କରି ନିଅନ୍ତି । ପାଲିଙ୍କି କାନ୍ଧୋଉଥିବା ବେହେରାମାନଙ୍କ ଡାକ ଶୁଣିବାକୁ ମଜା ଲାଗେ । ପାଲିଙ୍କି ପାଖରେ ବାରିକ ଗୋଟିଏ ନିଆଁ ଓଟା ଧରି ଚାଲିଥାଏ । କିଆ ପତରରେ କନା ଗୁଡ଼ାହୋଇ ଓଟା ତିଆରି ହୋଇଥାଏ । ସେଥିରେ ପୁଲାଙ୍ଗ ତେଲ ମଝିରେ ମଝିରେ ପଡୁଥାଏ । ଅନ୍ଧାରରେ ଗଲାବେଳେ ବାଟ ଦେଖାଇବା ପାଇଁ ତାହାହିଁ ଥିଲା ଏକମାତ୍ର ମାଧ୍ୟମ । ଥିଲାବାଲା ଲୋକେ ସାଙ୍ଗରେ ବାଜା, ବାଣ, କେଳାକେଲୁଣୀ, ଶବରଶବରୁଣୀ ଇତ୍ୟାଦି ନେଇଯାଉଥିଲେ ।

ଝିଅଘର ଗାଁ' ମୁଣ୍ଡରେ ଥିବା ପଡ଼ିଆରେ 'ରୋଶଣୀ' ହେଉଥିଲା । ରୋଶଣୀ ଦେଖିବାକୁ ପାହାନ୍ତା ପହରରେ ଗାଁ'ସାରା ଲୋକେ ରୁଣ୍ଡ ହେଉଥିଲେ । ବର କନ୍ୟାଘରେ ପହଞ୍ଚି ବାଟବରଣ ହେଲାବେଳକୁ ଫରଚା (ସକାଳ) ହୋଇଯାଉଥିଲା । ବାହାଘର ହାତଗଣ୍ଠି ପଡ଼ିଲା ପରେ ବରଯାତିମାନେ ନିତ୍ୟକର୍ମ କରିବାକୁ ଗାଁ'ମୁଣ୍ଡ ପୋଖରୀ କିମ୍ବା ନଈକୁ ଯାଉଥିଲେ । ସେମାନଙ୍କୁ ଦାନ୍ତକାଠି, ଗୁଡ଼ାଖୁ, ତେଲ ଇତ୍ୟାଦି ଦିଆଯାଉଥିଲା । ଗାଧୋଇ ଆସିଲା ପରେ କରଣ ଘରମାନଙ୍କରେ ବରଜାତିଙ୍କୁ କୁଣିଆ ମର୍ଯ୍ୟାଦା ସ୍ୱରୂପ ନୂଆଲୁଗା ଦିଆଯାଉଥିଲା । ଏବେ ସେସବୁ ଉଠିଗଲାଣି । ଏବେ ବରଜାତି ଘଟଣାକ୍ରମରେ 'ବରଯାତ୍ରୀ'ରେ ପରିଣତ ହୋଇଗଲେଣି । ସେଥିରେ ବାରଜାତି, ତେରଗୋଲାର ଲୋକେ ମିଶିଲେଣି । ନିଶାସକ୍ତ ଅବସ୍ଥାରେ ସେମାନଙ୍କର ହୋସ୍ ରହୁନାହିଁ । ଭଲମନ୍ଦ କ'ଣ ସେକଥା ବିଚାର କରିପାରୁ ନାହାନ୍ତି । କଥା କଥାକେ ପାଟିତୁଣ୍ଡ, ମାଡ଼ପିଟ ହେଉଛି । ବାହାଘରର ସବୁ ସୁଖ ନିମିଷକେ ପାଣି ଫାଟିଯାଉଛି । କେତେକ କ୍ଷେତ୍ରରେ ମଙ୍ଗୁଳା ବର ବେଦୀରୁ ଫେରିଯାଉଛି ।

ହାତଗଣ୍ଠି ପଡ଼ି ପାଣିଗ୍ରହଣ ପରେ ମହାପ୍ରସାଦ ସେବା । ପ୍ରାତଃ ଜଳଖିଆର ଏହା ଏକ ଅନ୍ୟନାମ । କନ୍ୟାଘର ପତର ପକାଇ ନାନାପ୍ରକାର ଜଳଖିଆ ସହିତ ମହାପ୍ରସାଦ ଦେଇ ନୂଆ ବନ୍ଧୁଙ୍କୁ ଗ୍ରହଣ କରନ୍ତି । ସେଥିରେ ଉଭୟ ବର ଓ କନ୍ୟାପକ୍ଷର ଲୋକେ

ଏକାଠି ବସନ୍ତି। ଝିଅ ବିଦା ପୂର୍ବରୁ ଖରାବେଳେ 'ଠାପିଢ଼ା' (ମଧ୍ୟାହ୍ନଭୋଜନ)ରେ ଆମିଷ ପରିବେଷଣ କରାଯାଏ। କଦଳୀପତ୍ର ପକାଇବା ଠାରୁ ଭଜା, ଲୁଣ ଲାଗିବାରେ ସାମାନ୍ୟ ବ୍ୟତିକ୍ରମ ହେଲେ ବରପକ୍ଷ ଲୋକେ ତାକୁ ଖୁଣନ୍ତି। ସେଇକଥାରୁ ବେଳେବେଳେ ପାଟିତୁଣ୍ଡ ହୋଇଯାଏ।

ଝିଅ ବିଦା ବେଳର ଦୃଶ୍ୟ ଅତ୍ୟନ୍ତ ହୃଦୟ ବିଦାରକ। ଆଗେ ଝିଅମାନେ ଥରେ ବାପଘର ଏରୁଣ୍ଡି ଡେଇଁଲେ ଆଉଥରେ ବାପଘରକୁ ଆସିବା ସେମାନଙ୍କ ପକ୍ଷରେ ସମ୍ଭବ ହେଉନଥିଲା। ସେଥିପାଇଁ ସେମାନେ ଶାଶୂଘରକୁ ଛିଗୁଲେଇ କେତେ ରକମର ବାହୁନୁଥିଲେ। ବିଦା ହେଲାବେଳେ ବାହୁନିବା ପାଇଁ ଭାଉଜମାନେ ଆଗରୁ ନଣନ୍ଦମାନଙ୍କୁ ଗୀତ ମାଧ୍ୟମରେ ବାହୁନା ଶିଖାଉଥିଲେ। ଝିଅ ସାଙ୍ଗରେ ସାନଭାଇ ଶାଶୂଘରକୁ ଯାଉଥିଲା। କରଣ ସାଆନ୍ତଙ୍କ ଘରମାନଙ୍କରେ ପୋଇଲିମାନେ ଝିଅ ସାଙ୍ଗରେ ଶାଶୂଘରକୁ ଯାଉଥିଲେ । କିଛିଦିନ ରହିଲାପରେ ଫେରିଆସୁଥିଲେ। ସ୍ଥଳବିଶେଷରେ ସେମାନେ ଝିଅ ଶାଶୂଘରେ ସବୁଦିନ ପାଇଁ ରହିଯାଉଥିଲେ। ସମୟକ୍ରମେ ସେମାନେ ପରିବାରର ଅଂଶ ପାଲଟି ଯାଉଥିଲେ। ଜ୍ୱାଇଁଙ୍କ ଔରସରୁ ସେମାନଙ୍କର ପିଲାଛୁଆ ମଧ୍ୟ ହେଉଥିଲା। ସେତେବେଳେ ଏହି ଘଟଣାକୁ ସାମାଜିକ ସ୍ୱୀକୃତି ମିଳୁଥିଲା। ଆଜିକାଲି କେତେକ ଗାଁ'ରେ ସେଦିନର ଚଳଣୀର ସ୍ମାରକୀ ସ୍ୱରୂପ 'ପୋଇଲିଡିହ' ଦେଖିବାକୁ ମିଳେ।

ଝିଅ ଶାଶୂଘରେ ପହଞ୍ଚିବା ମାତ୍ରେ 'ବୋହୂ' ପାଲଟିଯାଏ। ବୋହୂ ଘର ଭିତରକୁ ଯିବାବାଟରେ ବଡ଼ ନଣନ୍ଦ ଦୁଆର ମୁହଁରେ ବସି ବାଟ ଛାଡ଼େନାହିଁ। ବୋହୂ ସାଙ୍ଗରେ ଆଣିଥିବା 'ନଣନ୍ଦପୁଟୁଳି' ପାଇଲେ ନୂଆବୋଉଙ୍କୁ ଧରି ସ୍ନେହରେ ଘରକୁ ନେଇଯାଏ। ଆଜିକାଲି ନଣନ୍ଦପୁଟୁଳି ଜାଗାରେ ଭିଆଇପି ସୁଟ୍‌କେସ୍ ଆସୁଛି। ସେଥିରେ ନଣନ୍ଦ ପାଇଁ ଲୁଗାପଟା ସହିତ ସୁନା ଗହଣା ମଧ୍ୟ ଦିଆଯାଉଛି।

ଆଗେ ନଣନ୍ଦପୁଟୁଳି ସହିତ ବୋହୂମାନେ ଶାଶୂପୁଡ଼ା, ଶାଶୂଓଳଗି ଶାଢ଼ି, କାଠପେଡ଼ା, ପାନଡବା, ନିର୍ମାଲ୍ୟପେଡ଼ି ଇତ୍ୟାଦି ସାଙ୍ଗରେ ନେଉଥିଲେ। ଆଗକାଳରେ ଥିଲାବାଲାଏ ଘଣ୍ଟା, ସାଇକେଲ୍, ରେଡିଓ ସାଙ୍ଗକୁ ସୁନାଚେନ୍, ମୁଦି,  ଖଟ, ପଲଙ୍କ, ଶେଯ ଇତ୍ୟାଦି ଯଉତୁକ ଭାବରେ ଦେଉଥିଲେ। ବୋହୂ ସାଙ୍ଗରେ ମାଟିହାଣ୍ଡିରେ ଉଖୁଡ଼ା, ଆରିସା, କାକରା, ଜିଲାବୀ ଇତ୍ୟାଦି ଯାଉଥିଲା। ହାଣ୍ଡି ଭିତରେ ଯାହା ଥାଉନା କାହିଁକି ଖାନ୍‌ଦାନୀ କରଣ ଘରେ ସେ ହାଣ୍ଡିରେ ନାନାପ୍ରକାର ଚିତ୍ର ଅଙ୍କାଯାଉଥିଲା। ସେଥିପାଇଁ ଲୋକେ ଥଟ୍ଟାରେ କହୁଥିଲେ, "କରଣ ଘରର ଢମ, ହାଣ୍ଡିର ଦାମ୍ ଛଅଣା ପଇସା, ହାଣ୍ଡିସାରା କୋଟିକମ।"

ବାହାଘରର ଚାରିଦିନ ପରେ ହେଉଥିଲା ଚତୁର୍ଥୀ। ସେଦିନଟି ସମସ୍ତଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ ବୋଲି ବିଚାର କରାଯାଉଥିଲା। ସେଦିନ ଜ୍ଞାତିକୁଟୁମ୍ବଙ୍କ ସହିତ ଗାଁ' ଭାଇମାନଙ୍କୁ

ଭୋଜିରେ ଆପ୍ୟାୟିତ କରାଯାଉଥିଲା। ସଂଧ୍ୟାରେ ହୋମକର୍ମ ପରେ ବୋହୂ ସ୍ୱଗୋତ୍ରୀ ହେଉଥିଲା। ରାତିରେ ପୁଅବୋହୂଙ୍କର ମିଳନ ହେଉଥିଲା । ସେହିଦିନଠାରୁ ସେମାନେ ବୈବାହିକ ଜୀବନ ଆରମ୍ଭ କରୁଥିଲେ। ବାହାଘରର ଚାରିଦିନ ପର୍ଯ୍ୟନ୍ତ ବିବାହିତ ଦମ୍ପତିଙ୍କର ସାକ୍ଷାତ ଉପରେ କଟକଣା ରହୁଥିଲା। ବାହାହେଲା ପରେ ବି ସେମାନେ ପରସ୍ପରଠାରୁ ଅଲଗା ହୋଇରହୁଥିଲେ। ଚାରିଦିନ କାଳ ଯେଉଁମାନେ ସେମାନଙ୍କୁ ଏକାଠି ହେବାରେ ପ୍ରତିବନ୍ଧ ଲଗାଉଥିଲେ, ଚତୁର୍ଥୀ ରାତିରେ ସେଇମାନେ ସେମାନଙ୍କ ମିଳନ ପାଇଁ ତତ୍ପର ହୋଇପଡୁଥିଲେ।

ଚତୁର୍ଥୀ ଦିନ ବୋହୂ ସ୍ୱଗୋତ୍ରୀ ହେବାପରେ ରୋଷେଇ ଘରକୁ ଯାଇ ଶାଗ ଖରଡୁଥିଲେ। ନଣନ୍ଦମାନେ ନୂଆଭାଉଜଙ୍କୁ ଅପଦସ୍ତ କରିବା ଉଦ୍ଦେଶ୍ୟରେ ନାନାପ୍ରକାର କୌଶଳ ପ୍ରୟୋଗ କରୁଥିଲେ। ନୂଆବୋହୂଟି ସାମାନ୍ୟ ଟିକିଏ ଅନ୍ୟମନସ୍କ ହୋଇଗଲେ ସେମାନେ ଶାଗରେ ତେଜପତ୍ର କିମ୍ବା ଅନ୍ୟକିଛି ପତ୍ର ମିଶାଇ ଦେଉଥିଲେ। ସୁବିଧା ପାଇଲେ ଶାଗରେ ଅଧିକ ଲୁଣ କିମ୍ବା ଲଙ୍କା ପକାଇ ଦେଉଥିଲେ । ଏଇ ଥଟ୍ଟାତାମସାରେ ନଣନ୍ଦଭାଉଜଙ୍କ ମଧ୍ୟରେ ଉତ୍ତମ ବୁଝାମଣା ସୃଷ୍ଟି ହେଉଥିଲା । ଆନ୍ତରିକତା ବୃଦ୍ଧି ପାଉଥିଲା। ସେତେବେଳର ପ୍ରଚଳିତ ସାମାଜିକ ପ୍ରଥା ଅନୁଯାୟୀ ନୂଆବୋହୂକୁ ସମସ୍ତେ ଆଦର କରୁଥିଲେ। ନଣନ୍ଦ, ଦିଅରମାନେ ଭାଉଜଙ୍କୁ ଶ୍ରଦ୍ଧାରେ 'ନୂଆବୋଉ' ବୋଲି ସମ୍ବୋଧନ କରୁଥିଲେ। ନୂଆବୋହୂକୁ ଗାଁ'ଲୋକେ ପାଳିକରି ବୋହୂଭାତ ଦେଉଥିଲେ। ସେହିପରି ବୋହୂ ଘରୁ ଭାର ଆସିଲେ ଗାଁ'ଲୋକଙ୍କୁ ବଣ୍ଟା ଯାଉଥିଲା।

ବୋହୂ ଗର୍ଭବତୀ ହେଲେ ପାଞ୍ଚମାସରେ ପିଠା ବଣ୍ଟାଯାଉଥିଲା। ମୋର ମନେଅଛି ଆମ ଗାଁ'ର ଶିରିବୋଉ ବୁଢ଼ୀ ଟୋକେଇରେ ଚକୁଳି, କାକରାପିଠା ନେଇ ଘରେ ଘରେ ବାଣ୍ଟି ଖୁସି ଖବର ଜଣାଉଥିଲା। ସେହିପରି ଆଠମାସ ପରେ ଆଉଥରେ ପିଠା ବଣ୍ଟାଯାଉଥିଲା। ଆଠମାସ ପରେ ବୋହୂର ବାପଘରୁ ମନ 'ସାଧ' (ମନ ସୁଆଦ) ଭାର ଆସୁଥିଲା। ସେଥିରେ ପିଠାପଣାଠାରୁ ଆରମ୍ଭକରି ନାନାପ୍ରକାର ସୁସ୍ୱାଦୁ ଖାଦ୍ୟ ରହୁଥିଲା। ବାରିକମାନେ ମାଟିହାଣ୍ଡିରେ ଏସବୁ ଦ୍ରବ୍ୟ ପୂରାଇ ପିଠିରେ ବୋହି ନେଉଥିଲେ। ଭାରକୁ ଶାଶୂଘର ପକ୍ଷରୁ ଗାଁ'ରେ କୁଟୁମ୍ବଙ୍କୁ ବଣ୍ଟାଯାଉଥିଲା। ଆଜିକାଲି ପିଠାପଣାର ଚଳଣି ଆଉ ନାହିଁ। ହୋଟେଲରୁ ପ୍ୟାକିଂ ହୋଇ ସବୁ ଯାଉଛି।

ଆଗକାଳରେ ଗାଁ'ଗଣ୍ଡାରେ ପ୍ରଚଳିତ ସାମାଜିକ ବ୍ୟବସ୍ଥାକୁ ସମସ୍ତେ ମାନୁଥିଲେ। ଖୁବ୍ କମ୍ ଘଟଣାରେ କୋର୍ଟ, କଚେରୀରେ ମାମଲା ହେଉଥିଲା। ପରସ୍ପର ପ୍ରତି ସ୍ନେହ, ଶ୍ରଦ୍ଧା ଓ ଭକ୍ତିଭାବ ରହୁଥିବାରୁ ମତାନ୍ତର କିମ୍ବା ମନାନ୍ତର ଦେଖାଯାଉନଥିଲା। ପୁନିଅପର୍ବମାନଙ୍କରେ ସମସ୍ତେ ଏକାଠି ହୋଇ ମଉଜ କରୁଥିଲେ। ଦୋଳ, ଦଶହରାରେ

ଗାଁ'ରେ ମଉଛବ ହେଉଥିଲା । ରଜରେ ଯୁବକମାନେ ଏକାଠି ହୋଇ ଥିଏଟର କରୁଥିଲେ । ନଈବାଲିରେ ବାଗୁଡ଼ି ଖେଳ ହେଉଥିଲା । ଜିଣିବା ଦଳ ପୁରସ୍କାର ଭାବରେ ଖାସି ପାଉଥିଲେ । ଦଶହରାରେ ଗାଁ' ଜନ୍ତାଳରେ ସବୁବର୍ଗର ଲୋକେ ଏକତ୍ର ଭୋଜନ କରୁଥିଲେ । ସମୟ ବଦଳିବା ସହିତ ଏସବୁ ବ୍ୟବସ୍ଥା ଏବେ ଭୁଶୁଡ଼ି ପଡ଼ିଲାଣି । ଜୀବିକା ପାଇଁ ଗାଁ ଲୋକେ ସହରମୁହାଁ ହେବା ଫଳରେ ଗାଁ'ର ଗୁରୁତ୍ୱ କମିଗଲାଣି । ଯେଉଁମାନେ ଗାଁ'ରେ ରହିଛନ୍ତି ସେମାନଙ୍କ ଭିତରେ ଆଗଭଳି ଆନ୍ତରିକତା ଆଉ ନାହିଁ । ସବୁକଥା ଉପରଠାଉରିଆ ଭାବରେ ଚାଲିଛି । ଜନ୍ତାଳ ବନ୍ଦ ହୋଇଗଲାଣି । ବାଗୁଡ଼ି ଖେଳିବାକୁ କେହି ଭେଣ୍ଡିଆ ଏବେ ଆଉ ବାହାରୁ ନାହାନ୍ତି ।

ଆଗକାଳରେ ଗାଁ'ରେ କିଏ ମରିଗଲେ ସାଇ ଭାଇ ମିଶି ଶବଦାହ ଠାରୁ ଆରମ୍ଭ କରି ଦଶାହ ଓ ଏକାଦଶାହ କାମ ଉଠାଇ ନେଉଥିଲେ । ସଂଧ୍ୟା କିମ୍ବା ରାତିରେ କେହି ମଲେ ଯେତେ ଅସୁବିଧା ହେଉପଛେ ରାତାରାତି ଶବଦାହ କରାଯାଉଥିଲା । ସକାଳ ପର୍ଯ୍ୟନ୍ତ ରହିଲେ 'ବାସିମଡ଼ା' ହୋଇଯିବ ବୋଲି ଭାଇମାନେ ରାତାରାତି କାମ ସାରିଦେଉଥିଲେ । ସାଧାରଣତଃ ବଡ଼ପୁଅ ମୁଖାଗ୍ନି ଦେଉଥିଲା । ପୁଅ ନଥିବା କ୍ଷେତ୍ରରେ ଭଣଜା କିମ୍ବା ପୁତୁରା ସେ କାମ ଚଳାଉଥିଲେ । ଦଶଦିନର କ୍ରିୟାକର୍ମ କରି ଜ୍ଞାତିକୁଟୁମ୍ବ ଶୁଦ୍ଧ ହେଉଥିଲେ । ଏଗାର ଦିନ ବ୍ରାହ୍ମଣଭୋଜନ ପରେ ସାଇଭାଇଙ୍କର ପଙ୍ଗତ ହେଉଥିଲା । ବାରଦିନ ବାରପତର ବଡ଼ା ହେଉଥିଲା । ସେଥିରେ ଆମିଷ ପରଷା ଯାଉଥିଲା । ଚଉଦଦିନ ନାମକୀର୍ତ୍ତନ କରାଯାଇ ଶୁଦ୍ଧିକର୍ମ ସମାପ୍ତ ହେଉଥିଲା ।

ଆଜି ଏସବୁ କାମର ପ୍ରାସଙ୍ଗିକତାକୁ ଅନେକେ ଉପଲବ୍ଧି କରୁନାହାନ୍ତି । ଏପରିକି କେତେକ କ୍ଷେତ୍ରରେ ବାପାମା' ମଲେ ପୁଅନାତିମାନେ ଆଉ ଲଣ୍ଡା ହେଉନାହାନ୍ତି । ସମୟ ବଦଳିବା ସହିତ ଆମର ରୀତିନୀତି, ପରମ୍ପରା, ସଂସ୍କୃତି ସବୁ ବଦଳିଗଲାଣି । ଆମ ସଂସ୍କୃତିକୁ ଛାଡ଼ି ଆମେ ବିଦେଶର ଅପସଂସ୍କୃତିକୁ ଆଦରି ନେଉଛୁ । ଆମ ପିଲାଏ ଏବେ ନିଜ ସଂସ୍କୃତି ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ । ଗାଁ' କହିଲେ ସେମାନେ କିଛି ବୁଝି ପାରୁନାହାନ୍ତି । ଗାଁ'ରେ ଆଉ ସାଇଭାଇ କଥା ନାହିଁ । ଆଜିକାଲିର ରାଜନୀତି ଗ୍ରାମ୍ୟ ଜୀବନକୁ କଳୁଷିତ କରିସାରିଲାଣି ।

ଗାଁ'ରେ ଆଉ ଯୌଥ ପରିବାର ଦେଖିବାକୁ ମିଳୁନାହିଁ । ଯେତେ ଭାଇ ସେତେ ଘର ବ୍ୟବସ୍ଥା ପାରିବାରିକ ବନ୍ଧନକୁ ନଷ୍ଟ କରିଦେଲାଣି । ଗାଁ'ରେ ଆଉ ନ୍ୟାୟ ନିଶାପ ହେଉନାହିଁ । କଥାକଥାକେ ମୋକଦ୍ଦମା ହେଉଛି । ଗାଁ' ଲୋକଙ୍କ ଆର୍ଥିକ ଉନ୍ନତି ଘଟିଛି ସତ, ମାତ୍ର ଗାଁ'ର ସେ ଭାଇଚାରା ଆଉ ଦେଖିବାକୁ ମିଳୁନାହିଁ ।

# ସେତେବେଳର ପ୍ରଶାସନିକ ବ୍ୟବସ୍ଥା

ମୁଁ ଜନ୍ମ ହେବା ପୂର୍ବରୁ ଦେଶରେ ସ୍ୱାଧୀନତା ସଂଗ୍ରାମ ଜୋର୍ ଧରିଥିଲା। ମହାତ୍ମା ଗାନ୍ଧୀଙ୍କ ଡାକରାରେ ଆରମ୍ଭ ହୋଇଥିବା ଅସହଯୋଗ ଆନ୍ଦୋଳନ, ଆଇନ୍ ଅମାନ୍ୟ ଆନ୍ଦୋଳନ ପ୍ରତି ଲୋକଙ୍କର ଆଗ୍ରହ ବଢ଼ିଥିଲା । ଚାରିଆଡ଼େ ବିକ୍ଷୋଭ, ପଟୁଆର, ଆଇନଭଙ୍ଗ ଅପରାଧରେ ପ୍ରତିଦିନ ଶହ ଶହ ଲୋକ ଗିରଫ ହେଉଥିଲେ। ଏସବୁ ଦମନ ପାଇଁ ଇଂରେଜ ସରକାର ଲୋକଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରୁଥିଲେ।

ଇଂରେଜ ଶାସନ କାଳରେ ପ୍ରଶାସନିକ ବ୍ୟବସ୍ଥା ଖୁବ୍ ଶୃଙ୍ଖଳିତ ଥିଲା। କୋଉଠି କ'ଣ ଘଟିଲେ ସେକଥା ସରକାର ଜାଣିପାରୁଥିଲେ। ଗାଁ'ରେ ଚଉକିଆଠାରୁ ଆରମ୍ଭ କରି ଜିଲ୍ଲାସ୍ତରରେ ଜିଲ୍ଲାପାଳମାନେ ଆଜ୍ଞାବହ ଭୃତ୍ୟ ଭଳି କାମ କରୁଥିଲେ। ଜଣଙ୍କ କାମ ତଦାରଖ କରିବାକୁ ଆଉ ଜଣଙ୍କ ଉପରେ ଦାୟିତ୍ୱ ଥିଲା। ଯାହା କୁହାଯାଏ, ଇଂରେଜମାନେ ଗୋଟିଏ ଘାଟରେ ଉଭୟ ବାଘ ଓ ଛେଳିକୁ ପାଣି ପିଆଉଥିଲେ।

ଗାଁ'ରେ ଚଉକିଦାରୀ ବ୍ୟବସ୍ଥା ଥିଲା। ମଲିକମାନେ ମୁଖ୍ୟତଃ ଚଉକିଆ ଭାବରେ ନିଯୁକ୍ତି ପାଉଥିଲେ। ମୋଟାଧୋତି ସାଙ୍ଗକୁ ନୀଳରଙ୍ଗର ଜାମା ଓ ମୁଣ୍ଡରେ ନାଲିପଗଡ଼ି। ହାତରେ ଗୋଟିଏ ବଡ଼ ଠେଙ୍ଗା। ଗାଁ' ଗାଁ' ବୁଲି ଚଉକିଆମାନେ ହାନିଲାଭ, ଜନ୍ମମୃତ୍ୟୁର ହିସାବ ରଖୁଥିଲେ। ଗାଁ'ରେ କୌଣସି ଘଟଣା ଚଉକିଆ ଆଖିରୁ ଖସିପାରୁ ନଥିଲା।

ମୋ'ର ମନେପଡୁଛି, ଆମ ପିଲାଦିନେ ଚାଷୀଖଣ୍ଡ ଗାଁ'ର ଯଦୁ ଚଉକିଆ ଧାନକଟା ବେଳେ ବିଲରୁ ଆସି ଧାନ ହଳାଟିଏ ନେଇଯାଉଥିଲା। ଲୋକେ ଖୁସିରେ ସେତକ ଦେଉଥିଲେ। ଲୋକେ ଯୋଉ ଚଉକିଦାରୀ ଟିକସ ଦେଉଥିଲେ, ସେଇଥିରୁ ଚଉକିଆମାନେ ଦରମା ପାଉଥିଲେ। କେବଳ ଚଉକିଆ ନୁହେଁ, ଧୋବା, ଭଣ୍ଡାରି, କେଉଟମାନେ ମଧ୍ୟ ଧାନହଳା

ମାଧ୍ୟମରେ ସେମାନଙ୍କର ବର୍ଷଯାକର ପାଉଣା ଆଦାୟ କରୁଥିଲେ। ସ୍ଥଳ ବିଶେଷରେ ସେମାନଙ୍କୁ ଖଣ୍ଡେ ବିଲ 'ହେତା' ହିସାବରେ ଦିଆଯାଉଥିଲା। ସେ ବିଲକୁ ଚାଷକରି ସେମାନେ ଗୁଜୁରାଣ ମେଣ୍ଟାଉଥିଲେ।

ଚଉକିଆମାନଙ୍କ କାମ ଦେଖିବା ପାଇଁ ଦଫାଦାରମାନେ ଥିଲେ। ସେମାନେ ଲୋକଙ୍କଠାରୁ ଚଉକିଦାରୀ ଟିକସ ଆଦାୟ କରୁଥିଲେ। ଗାଁ'ଗଣ୍ଡାରେ ଦଫାଦାରମାନଙ୍କର ଖୁବ୍ କାଟତି ଥିଲା। ଦଫାଦାରଙ୍କ ଘର କହିଲେ ଲୋକେ ଏକ ସମ୍ଭ୍ରାନ୍ତ ଘରକୁ ବୁଝୁଥିଲେ। ସେହିପରି ଇଂରେଜ ଶାସନ ଅମଳରେ ୟୁନିଅନ୍ ପ୍ରେସିଡେଣ୍ଟମାନେ ଖୁବ୍ ପ୍ରଭାବଶାଳୀ ଥିଲେ। ସେମାନଙ୍କୁ ତୃତୀୟଶ୍ରେଣୀ ମାଜିଷ୍ଟ୍ରେଟ୍ କ୍ଷମତା ଦିଆଯାଉଥିଲା। କୌଣସି ସ୍ଥାନରେ ଅପମୃତ୍ୟୁ ଘଟିଲେ ସେମାନେ ପଞ୍ଚନାମା (ଇନ୍‌କ୍ୱେଷ୍ଟ୍) ପାଇଁ ନିର୍ଦ୍ଦେଶ ଦେଉଥିଲେ। ଗାଁ' ଗହଳରେ କାହାଘରେ ବାହାନିମତା ହେଲେ ୟୁନିଅନ୍ ପ୍ରେସିଡେଣ୍ଟଙ୍କୁ ନିମନ୍ତ୍ରଣ କରାଯାଉଥିଲା। କୋଉଠି କିଛି ବିବାଦ ଉପୁଜିଲେ ତା'ର ଫଏସଲା କରିବା ପାଇଁ ମଧ୍ୟ ୟୁନିଅନ୍ ପ୍ରେସିଡେଣ୍ଟଙ୍କ ଉପସ୍ଥିତି ଆବଶ୍ୟକ ପଡୁଥିଲା।

ଏସବୁ ବ୍ୟବସ୍ଥା ସହିତ ଫାଣ୍ଡି ଓ ଥାନା ବ୍ୟବସ୍ଥା ଥିଲା। ଗୋଟିଏ ଥାନା ଅଧୀନରେ କେତେଗୁଡ଼ିଏ ଫାଣ୍ଡି କାର୍ଯ୍ୟ କାରୁଥିଲା। ଲୋକଙ୍କର କିଛି ସୁବିଧା, ଅସୁବିଧା ହେଲେ ସେମାନେ ଫାଣ୍ଡିକୁ ଆପତ୍ତି କରିବାକୁ ଯାଉଥିଲେ।

ଇଂରେଜ ଶାସନ ସମୟରେ ଫାଣ୍ଡି ଓ ଥାନାବାବୁମାନଙ୍କର ଖୁବ୍ କ୍ଷମତା ଥିଲା। ସିପାହୀମାନେ ଖାକି ହାଫ୍ ପ୍ୟାଣ୍ଟ୍ ସାଙ୍ଗକୁ ନାଲି ଝରିଲଗା ଖାକି ଟୋପି ପିନ୍ଧୁଥିଲେ। ଏ.ଏସ୍.ଆଇ. ଓ ସବ୍-ଇନସ୍ପେକ୍ଟରମାନେ ଖାକି ହାଫପ୍ୟାଣ୍ଟ୍, ହାଫ୍‌ସାର୍ଟ ସାଙ୍ଗକୁ ଗୋଡ଼ରେ ନାଲି ବୁଟ୍ ଓ ଉଲେନ୍ ମୋଜା ପିନ୍ଧୁଥିଲେ। ମୁଣ୍ଡରେ ସେମାନଙ୍କର ସୋଲ ତିଆରି ଟୋପି। କାନ୍ଧରେ କ୍ରସବେଲ୍ଟ । ଲୋକେ ପୁଲିସ୍‌କୁ 'ନାଲିପଗଡ଼ିଆ' ବୋଲି କହୁଥିଲେ।

ଗାଁ'କୁ କୌଣସି କାରଣରୁ ପୁଲିସ୍ ଆସିଲେ ସାଧାରଣଲୋକଙ୍କ ଭିତରେ ଭୟ ସଂଚାର ହେଉଥିଲା। ସେକାଳରେ ଲୋକେ ପୁଲିସ୍‌କୁ 'ମାମୁ' ବୋଲି କହୁଥିଲେ । ଗାଁ'ରେ କାହାରି କାହାରି ଝଗଡ଼ାଝାଟି ହେଲେ ଥିଲାବାଲା ଲୋକେ ଅପର ପକ୍ଷକୁ "ତତେ ଏଥର ମାମୁଘର ଦେଖାଇଦେବି"ବୋଲି ଧମକ ଦେଉଥିଲେ।

ଇଂରେଜମାନେ ସାଧାରଣଲୋକଙ୍କୁ ବନ୍ଧୁକମୁନରେ ଭୟଭୀତ କରି ଶାସନ କରିବା ପାଇଁ ପୁଲିସବାହିନୀ ସୃଷ୍ଟି କରିଥିଲେ। ସେତେବେଳେ ଶାସକ ଓ ଶାସିତ ଭାବରେ ଦୁଇଟି ଗୋଷ୍ଠୀ ସମାଜରେ ରହିଥିଲେ। ଶାସକମାନଙ୍କ ଜୁଲମକୁ ଶାସିତମାନେ

ମୁଣ୍ଡପାତି ସହିନେଉଥିଲେ। ଅନ୍ୟାୟ ବିରୁଦ୍ଧରେ ପାଟି ଖୋଲୁଥିବା ଲୋକ ଉପରେ ଶାରୀରିକ ଅତ୍ୟାଚାର କରାଯାଉଥିଲା । ସବୁଦିନ ପାଇଁ ତା' ମୁହଁ ବନ୍ଦ କରିଦିଆଯାଉଥିଲା।

ଦୀର୍ଘଦିନ ଧରି ବାଇଶିମୌଜା, ଗୋବିନ୍ଦପୁର ଫାଣ୍ଡି ଅଧୀନରେ ଥିଲା। ଗାଁ'ରେ କିଛି କଳିତକରାଳ ହେଲେ କିମ୍ବା କୌଣସି କାରଣରୁ ମାଡ଼ ଫୌଜଦାରୀ ହେଲେ ଲୋକେ ଫାଣ୍ଡିକୁ ଯାଇ ଏତଲା ଦେଉଥିଲେ। ଗୋବିନ୍ଦପୁର ଯିବା ପାଇଁ ଦେବୀନଦୀ ପାର ହେବାକୁ ପଡୁଥିଲା। ଆଗେ ଦେବୀନଦୀରେ କୁମ୍ଭୀର ଭୟ ଥିଲା। ସେଥିପାଇଁ ଲୋକେ ସନ୍ଧ୍ୟା ପୂର୍ବରୁ ନଦୀ ପାର ହୋଇ ଘରକୁ ଫେରିଆସୁଥିଲେ। ଏବେ ଗୋବିନ୍ଦପୁର ଫାଣ୍ଡି ଏକ ଥାନାରେ ପରିଣତ ହେଲାଣି। ଦେବୀନଦୀରେ ପୋଲ ତିଆରି ହୋଇ ବାଇଶିମୌଜା ସହିତ ଗୋବିନ୍ଦପୁର ଯୋଡ଼ି ହୋଇଗଲାଣି।

ପ୍ରଜାମାନଙ୍କୁ ଶାସନ କରିବା ଉଦ୍ଦେଶ୍ୟରେ ଇଂରେଜମାନେ ରାଜା, ମହାରାଜା ଓ ଜମିଦାରମାନଙ୍କୁ କାମରେ ଲାଗାଉଥିଲେ। ଏମାନେ ଇଂରେଜ ସରକାରଙ୍କ ଏଜେଣ୍ଟ୍ ଭାବରେ କାମ କରୁଥିଲେ। ଜମିଦାରମାନେ ନିଜର ଉଦ୍ଦେଶ୍ୟ ସାଧନ ନିମନ୍ତେ ପ୍ରଜାମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରୁଥିଲେ। ଗାଁ' ବାହାରେ ସେମାନଙ୍କର ଖମାର ସବୁ ଥିଲା। ସେ ଖମାରରେ ଅମାନିଆ ପ୍ରଜାମାନଙ୍କୁ ବାନ୍ଧି ମାଡ଼ ଦିଆଯାଉଥିଲା। ଏସବୁ ବିରୁଦ୍ଧରେ ପ୍ରତିବାଦ କରିବାକୁ କାହାରି ଯୁ' ନଥିଲା। ଦେଶ ସ୍ୱାଧୀନ ହେବାପରେ ଜମିଦାରୀ ବ୍ୟବସ୍ଥା ଉଠିଗଲାଣି ସତ, କିନ୍ତୁ ସାଧାରଣଲୋକ ଅତ୍ୟାଚାରରୁ ମୁକ୍ତି ପାଇପାରି ନାହାନ୍ତି।

ଆମ ପିଲାଦିନେ ନଈ, ନାଳ, ବନ୍ଧର ସୁରକ୍ଷା ଓ ରକ୍ଷଣାବେକ୍ଷଣ ପାଇଁ ଜଣେ ଜଣେ ଅଫିସର ରହୁଥିଲେ। ଗାଁ'ଗଣ୍ଡାରେ ଲୋକେ ତାଙ୍କୁ 'ନାଳବାବୁ' ବୋଲି କହୁଥିଲେ। ସେ କାଳରେ ନାଳବାବୁଙ୍କର ଖୁବ୍ ଖାତିର ଥିଲା।

ବାଲିଆରେ ମୁଖାର୍ଜୀବାବୁ ବୋଲି ଜଣେ ବଙ୍ଗାଳି ଭଦ୍ରବ୍ୟକ୍ତି ଓଭରସିଅର ଭାବରେ ନିଯୁକ୍ତ ହୋଇଥିଲେ। ସେ ପ୍ରାୟ ୪୦ବର୍ଷ କାଳ ରହି ସମ୍ପୂର୍ଣ୍ଣ ଓଡ଼ିଆ ପାଲଟିଗଲେ। ମୁଖାର୍ଜୀବାବୁ ଖୁବ୍ ମାର୍ଜିତ। ମନରେ ତାଙ୍କର ଅହଂକାର କିମ୍ବା ଗର୍ବ ବୋଲି କିଛି ନଥିଲା। ତାଙ୍କ ଝିଅ ଆମ ଗାଁ'ର କ୍ଷୀର (ପୁରୀ ଗ୍ରାମ୍ୟବ୍ୟାଙ୍କ୍‌ର ମ୍ୟାନେଜର କ୍ଷୀରୋଦଚନ୍ଦ୍ର ଦାସ)କୁ ବାହାହେବା ପରେ ମୁଖାର୍ଜୀବାବୁଙ୍କର ଆମ ଗାଁ' ସାଙ୍ଗରେ ସମ୍ପର୍କ ଅଧିକ ଦୃଢ଼ ହୋଇଗଲା। ମୋର ମନେଅଛି, ମୁଖାର୍ଜୀବାବୁ ସାଇକେଲ ଚଢ଼ି ଗାଁ'କୁ ଆସିଲେ ଲୋକେ ତାଙ୍କର ଖୁବ୍ ଚର୍ଚ୍ଚା କରୁଥିଲେ। ଗାଁ'ରେ ବିବାହ, ବ୍ରତ, କାନଫୋଡ଼ା ଉତ୍ସବରେ ମୁଖାର୍ଜୀବାବୁଙ୍କୁ ନିମନ୍ତ୍ରଣ କରାଯାଉଥିଲା।

ରାଜସ୍ୱ ଆଦାୟ କ୍ଷେତ୍ରରେ ରେଭିନ୍ୟୁ ଇନସ୍‌ପେକ୍ଟର (ଆର.ଆଇ.) ସର୍ବେସର୍ବା ଥିଲେ। ସେମାନେ ଜମିର ଖଜଣା ଆଦାୟ କରିବା ସହିତ ଜମିଜମା ସମ୍ପର୍କୀୟ ରେକର୍ଡ ସଂଶୋଧନ କରୁଥିଲେ। ଲୋକେ ଜମିର ଖଜଣା ଦାଖଲ କରିବା ଏକ ଧର୍ମ କାର୍ଯ୍ୟ ବୋଲି ବିଚାରୁଥିଲେ। ସରକାରଙ୍କୁ ଖଜଣା ନଦେଲେ ଜମିରେ କୁଶ କଅଁଳିବ ନାହିଁ ବୋଲି ଏକ ବିଶ୍ୱାସ ଥିଲା। ସେଥିପାଇଁ ଲୋକେ ସ୍ୱତଃପ୍ରବୃତ୍ତ ହୋଇ ଆର.ଆଇ.ଙ୍କ ଅଫିସକୁ ଯାଇ ଖଜଣା ଦାଖଲ ସହିତ ପାଉତି ହାସଲ କରୁଥିଲେ। ଯେଉଁମାନଙ୍କର ଖଜଣା ବାକି ରହିଯାଉଥିଲା, ସେମାନଙ୍କୁ ସତର୍କ କରି ଦେବାପାଇଁ ଗାଁ'ରେ ସରକାରଙ୍କ ପକ୍ଷରୁ ଡେଙ୍ଗୁରା ଦିଆଯାଇ ନୋଟିସ୍ ଜାରୀ ହେଉଥିଲା। ଖଜଣା ଆଦାୟ ପାଇଁ ଗାଁ'ରେ ଡେଙ୍ଗୁରା ବାଜିବା ଘଟଣାକୁ ଲୋକେ ଅପମାନଜନକ ବୋଲି ବିଚାରୁଥିଲେ। କ୍ୱଚିତ୍ କ୍ଷେତ୍ରରେ ଜମି ନିଲାମ ପର୍ଯ୍ୟନ୍ତ କଥା ଯାଉଥିଲା।

ଆଜିକାଲି ଭଳି ଆମ ପିଲାଦିନେ ମଧ୍ୟ ସବ୍‌ରେଜିଷ୍ଟ୍ରାର ଅଫିସ୍‌ରେ ଜମିର ବିକ୍ରିଖର୍ଦ୍ଦି ହେଉଥିଲା। ଆମ ଗାଁ'ଠାରୁ ପ୍ରାୟ ଆଠ କିଲୋମିଟର ଦୂର ଜଗତ୍‌ସିଂହପୁରରେ ଗୋଟିଏ ସବରେଜିଷ୍ଟ୍ରାର୍ ଅଫିସ ଥିଲା। ସେଠାକୁ ବିଭିନ୍ନ ଗାଁ'ର ଲୋକେ ଜମିବାଡି ବିକ୍ରି ଖର୍ଦ୍ଦି ପାଇଁ ଯାଉଥିଲେ।

ପ୍ରତି ଗାଁ'ରେ କିମ୍ବା ଦି-ତିନିଖଣ୍ଡ ଗାଁ'ରେ ଜଣେ ଜଣେ ଲୋକ ଜମିବାଡ଼ି କିଣାବିକା କାମରେ ଧୁରନ୍ଧର ଥିଲେ। ଯେକୌଣସି ଜମି କିଣାବିକା ବେଳେ ସେମାନଙ୍କ ସାହାଯ୍ୟ ନିଆଯାଉଥିଲା। ସେମାନେ ଉଭୟ ଜମି ବିକ୍ରି ଓ ଖର୍ଦ୍ଦି କରୁଥିବା ଲୋକଙ୍କୁ ସନ୍ତୁଷ୍ଟ କରିପାରୁଥିଲେ। ସବ୍‌ରେଜିଷ୍ଟ୍ରାର ଅଫିସ୍‌ରେ ପହଞ୍ଚିବା ପରେ ପ୍ରଥମେ କାଗଜପତ୍ର (ଷ୍ଟାମ୍ପ୍ ପେପର) କିଣାଯାଇ ନବସିନ୍ଦାମାନଙ୍କୁ ଦିଆଁଯାଉଥିଲା। ଜଣେ ଜଣେ ନବସିନ୍ଧାଙ୍କର ଦଲିଲ୍ ଲେଖିବାରେ ଖୁବ୍ ଦକ୍ଷତା ଥିଲା।

ସେତେବେଳେ ଯିଏ ଜମି ବିକୁଥିଲେ ତାଙ୍କୁ 'ବାୟା' ଓ ଜମି କିଣିଲା ବାଲାଙ୍କୁ 'ମୁସ୍ତରୀ' କୁହାଯାଉଥିଲା। କୋଉଥିପାଇଁ ଓ କେଉଁ କାରଣରୁ ଏ ଦୁଇଟି ନାମକରଣ କରାଯାଇଥିଲା ସେ ସମ୍ପର୍କରେ ବିଶେଷ ତଥ୍ୟ ମିଳେନାହିଁ। ବୋଧହୁଏ ଜଣେ ବାଇଆ ନହେଲେ ନିଜର ପୈତୃକ ସମ୍ପତ୍ତିକୁ ବିକିବାକୁ ଚାହିଁବ ନାହିଁ ଭାବି ଜମିବିକାଳି ଲୋକଙ୍କୁ 'ବାୟା' ବୋଲି କୁହାଯାଉଥିଲା। ଜମି ବିକ୍ରିଖର୍ଦ୍ଦି ସମୟରେ ସବୁ ଖର୍ଚ୍ଚ ଜମି କିଣିଲା ବାଲାଙ୍କୁ ଦେବାକୁ ପଡୁଥିଲା।

ନବସିନ୍ଧାଙ୍କ ପାଖରେ କାଗଜପତ୍ର ଦାଖଲ ପରେ ସମସ୍ତେ ପାଖରେ ଥିବା ହୋଟେଲକୁ ଯାଉଥିଲେ। ମୁସ୍ତରୀଙ୍କ ପକ୍ଷରୁ ଖାଇବା ପିଇବାର ଅର୍ଡର ଦିଆଯାଉଥିଲା। ସମସ୍ତେ ଖାଇପିଇ ସାରି ପୁଣି ସବ୍‌ରେଜିଷ୍ଟ୍ରାର୍ ଅଫିସ୍‌କୁ ଯାଇ କବଲା କାମ ସମ୍ପାଦନ କରୁଥିଲେ। ହାକିମଙ୍କ

ସାମନାରେ ମଧ୍ୟସ୍ଥି, ଉଭୟ ବାୟା ଓ ମୁସ୍ତରିଙ୍କୁ ଚିହ୍ନଟ କରି କବଲାରେ ସାକ୍ଷୀ ପଡୁଥିଲେ। ଟଙ୍କାପଇସା ଦିଅନିଆ ସରିଲା ପରେ ବିକ୍ରି କବଲା ନେବା ପାଇଁ ଟିକଟ୍ ବରାଦ ହେଉଥିଲା। ଅଫିସ କାମ ଶେଷ ହେବା ପରେ ହରିପୁର-ଜଗତସିଂହପୁର ହାଟରୁ କିଛି ସଉଦାପତ୍ର କିଣି ସମସ୍ତେ ସନ୍ଧ୍ୟା ପୂର୍ବରୁ ଗାଁ'କୁ ଫେରିଆସୁଥିଲେ।

ସେତେବେଳେ ଆଜିକାଲି ଭଳି ଜମି କିଣାବିକାର ଜାଲିଆତି ହେଉନଥିଲା। ହେଲେ ଆଜି ସବୁ ବଦଳିଯାଇଛି। ଜାଲିଆତି, ଜୁଆଚୋରି, ଧପ୍ପାବାଜି ଆଦି ସମାଜର ଏକପ୍ରକାର ଅଙ୍ଗ ପାଲଟିଯାଇଛି। ଆଇନ ଯେତେ ବଦଳୁଛି, ଅପରାଧ ସେଇ ପରିମାଣରେ ବୃଦ୍ଧି ପାଇବାରେ ଲାଗିଛି।

ଆଗକାଳରେ ତହସିଲଦାରମାନେ ମଝିରେ ମଝିରେ ବିଭିନ୍ନ ବିଷୟରେ ତଦନ୍ତ କରିବା ପାଇଁ ଗାଁ'ଗଣ୍ଡାକୁ ଯାଉଥିଲେ । ସେମାନଙ୍କୁ ଖୁବ୍ ଆଦର କରାଯାଉଥିଲା । ଏହି ତଦନ୍ତ ସମୟରେ ଅନେକ ପ୍ରକାର ଜମିଜମା ସଂପର୍କୀୟ ବିବାଦର ଅବସାନ ଘଟୁଥିଲା। ବେଳେବେଳେ ଏସ୍.ଡି.ଓ(ବର୍ତ୍ତମାନର ସବ୍‌କଲେକ୍ଟର)ମାନେ ମଧ୍ୟ ବିଭିନ୍ନ ଅଞ୍ଚଳକୁ ଟୁର୍‌ରେ ଯାଉଥିଲେ । ଏହା ଫଳରେ ଲୋକଙ୍କ ସହିତ ସେମାନଙ୍କର ପ୍ରତ୍ୟକ୍ଷ ସଂପର୍କ ରହିପାରୁଥିଲା। ହେଲେ ଆଜି ସେ କଥା ଆଉ ନାହିଁ । ଚୌକିଦାରୀ, ଦଫାଦାର, ୟୁନିଅନ ପ୍ରେସିଡେ଼ଣ୍ଟ ପ୍ରଥାସବୁ ଉଠିଗଲାଣି । ହାକିମମାନେ ଆଉ ଗାଁ'ଗଣ୍ଡାକୁ ଟୁର୍‌ରେ ଯାଉ ନାହାନ୍ତି । ଫଳରେ ପ୍ରଶାସନ ଓ ସାଧାରଣଲୋକଙ୍କ ଭିତରେ ବ୍ୟବଧାନ ବଢ଼ିଗଲାଣି ।

# କଟକରେ ପାଠପଢ଼ା

ସବୁ ଗାଁ ଭଳି ଆମ ଗାଁ'ରେ ମଧ୍ୟ ନିନ୍ଦୁକ ଓ ଅସହିଷ୍ଣୁ ଲୋକ କମ୍ ନଥିଲେ। ମୁଁ ଦାଦାଙ୍କ ଘରେ ଆରାମରେ ଖାଇବା ପିଇବା କରୁଥିଲି। ବାପା ସ୍କୁଲ୍ ଖର୍ଚ୍ଚ ଯୋଗାଉଥିଲେ। କୋଉଥିରେ କିଛି ଅସୁବିଧା ହେଉନଥିଲା। କିନ୍ତୁ ଗାଁ' ଲୋକେ ଫୁସୁରୁଫାସର ହେଲେ, "ସାବତ ମା' ପିଲାଟିକୁ ଚଳାଇପାରିଲା ନାହିଁ। ସିଏ ଅନ୍ୟ ଘରେ ରହୁଛି। ଏଇଟା କିନ୍ତୁ ସୁନ୍ଦର ହେଉନାହିଁ।" ବାପା ମଝିରେ ମଝିରେ ଗାଁ'କୁ ଆସୁଥିଲେ। ତାଙ୍କ କାନରେ ଗାଁ' ଲୋକଙ୍କ କଥା ପଡ଼ିଲା। ତାଙ୍କୁ ସେକଥା ଖୁବ୍ ବାଧୁଥିଲା।

ସେତେବେଳେ ବାପାଙ୍କର ଜଣେ ଭିଣୋଇ, ଆମ ଗାଁରୁ ୭/୮ କିଲୋମିଟର ଦୂର ବଣିକୁନ୍ଦ ଗାଁ'ର ନେତ୍ରାନନ୍ଦ ମହାନ୍ତି, ଦର୍ପଣୀ ଇଷ୍ଟେଟ୍‌ରେ ତହସିଲ୍‌ଦାର ଭାବରେ କାମ କରୁଥିଲେ। ତାଙ୍କର ବେଶ ସମ୍ପତ୍ତିବାଡ଼ି ଥିଲା। ସେ ପ୍ରଥମେ ମୋର ବଡ଼ ପିଇସୀ ହୀରାଅପାକୁ ବାହା ହୋଇଥିଲେ। ହୀରାଅପା ଅଳ୍ପଦିନ ପରେ ମରିଯିବାରୁ ପିଇସା ତାଙ୍କ ଶାଳୀ ଅର୍ଥାତ୍ ମୋର ଆଉଜଣେ ପିଇସୀ ପାଲିଅପାକୁ ବିବାହ କଲେ।

ଗାଁ' ଲୋକଙ୍କ କଥାରୁ ମତେ ଦୂରେଇ ରଖିବା ଉଦ୍ଦେଶ୍ୟରେ ବାପା ମତେ ନେଇ ନେତ୍ରାନନ୍ଦ ପିଇସାଙ୍କ ପାଖରେ ଛାଡ଼ିବା ପାଇଁ ସ୍ଥିର କଲେ। ସେ ଏପରି ନିଷ୍ପତ୍ତି ନେବା ପୂର୍ବରୁ କାହା ସାଙ୍ଗରେ ପରାମର୍ଶ କରିନଥିଲେ। ହଠାତ୍ ଦିନେ ଗାଁ'ରେ ପହଞ୍ଚି ବାଗଲପୁର ସ୍କୁଲକୁ ଯାଇ ମୋର ଟିସି ନେଇଆସିଲେ। ତା' ପରଦିନ ମତେ ତାଙ୍କ ସାଙ୍ଗରେ ଯିବାକୁ କହିଲେ। ଏକଥା ଶୁଣି 'ବୋଉ' ଖୁବ୍ ମନଦୁଃଖ କଲା। ଛଅଦିନର ମା'ଛେଉଣ୍ଡ ଛୁଆକୁ ରକ୍ତକୁ ପାଣି କରି ଯିଏ ବଢ଼ାଇଥିଲା, ତା' ପାଖରୁ ମୁଁ ଚାଲିଯିବା କଥା ଶୁଣି ସେ ବହୁତ କାନ୍ଦିଲା। ତା' କାନ୍ଦ ଦେଖି ମୁଁ ମଧ୍ୟ ବହୁତ କାନ୍ଦିଥିଲି। କିନ୍ତୁ ମୁଁ ସେ ପରିସ୍ଥିତିକୁ ଠିକ୍ ଭାବରେ ବୁଝିପାରି ନଥିଲି।

ମତେ ମୋର ଜିନିଷପତ୍ର ସଜାଡ଼ିବାକୁ ପଡ଼ିଲା । ଜିନିଷ କହିଲେ କେଇଖଣ୍ଡ ପ୍ୟାଣ୍ଟ୍‌ସାର୍ଟ । କିଛି ବହିଖାତା । ଖଣ୍ଡେ ଗାମୁଛା ଓ ଘୋଡ଼ିହେବା ପାଇଁ ଖଣ୍ଡେ ଚାଦର । ଗାଁ'ରେ ଚପଲ ପିନ୍ଧିବା ଦୁଃସ୍ୱପ୍ନ ଥିଲା । ଖଣ୍ଡେ ଟିଣ ସୁଟ୍‌କେଶ୍‌ରେ ଏସବୁ ଜିନିଷ ପଶିଲା । ସେତେବେଳର ଟିଣ ସୁଟ୍‌କେଶ ଆଜିକାଲି ଦେଖିବାକୁ ମିଳୁନି । ସାନବଡ଼ ଟିଣ ପାତିଆକୁ ଯୋଡି ସୁଟ୍‌କେସ ତିଆରି ହେଉଥିଲା । ଯୋଡା ହେବା ସ୍ଥାନରେ ଗୋବା ଗୋବା କଣ୍ଟା ମରାଯାଉଥିଲା । ସୁଟ୍‌କେଶକୁ ଆକର୍ଷଣ କରିବା ପାଇଁ ତା ଉପରେ କେତେରଙ୍ଗର ଫୁଲ ଲତା ଅଙ୍କା ଯାଉଥିଲା ।

ଦର୍ପଣୀ ଯିବା ବାଟରେ କଟକର ଅଲିଶା ବଜାରରେ ଥିବା ଦାଦାଙ୍କ ବସାରେ ରାତିରେ ରହିଲୁ । କଟକ ବସାରେ ଦାଦାଙ୍କ ସହିତ ପିଇସା ଏକାଠି ରହୁଥିଲେ । ଉଭୟ ପରିବାର କହିଲେ କେବଳ ଚାରିଜଣ । ସେମାନଙ୍କର ପିଲାଛୁଆ କେହି ନଥିଲେ । ରାତିରେ ଖାଇଲାବେଳେ ସବୁ କଥା ପଡ଼ିଲା । ମୁଁ ପଢ଼ିବା ପାଇଁ ଦର୍ପଣୀ ଯାଏ, ସେକଥା ଦାଦା, ଖୁଡ଼ୀ ଓ ଦେଈ, ପିଇସା କେହି ଚାହୁଁନଥିଲେ । ବହୁ ଆଲୋଚନା ପରେ ମୁଁ କଟକରେ ରହି ପଢ଼ିବି ବୋଲି ସ୍ଥିର ହେଲା । ସେଇ ରାତିରେ ଯେଉଁ ନିଷ୍ପତ୍ତି ହେଲା, ତାହା ମୋର ପରବର୍ତ୍ତୀ ଜୀବନର ଗତିପଥକୁ ବଦଳାଇ ଦେଲା ।

ରେଭେନ୍ସା କଲେଜିଏଟ୍ ସ୍କୁଲ୍ ଅଲିଶା ବଜାରରୁ ପାଖ । କିନ୍ତୁ ବର୍ଷ ମଝିରେ ସେଠି ସିଟ୍ ମିଳିବା ସମ୍ଭବ ନଥିଲା । କଲେଜିଏଟ୍ ପରେ ପ୍ୟାରୀମୋହନ ଏକାଡେମୀର ଖୁବ୍ ସୁନାମ ଥିଲା । ପୁଣ୍ୟାତ୍ମା ପ୍ୟାରୀମୋହନ ଆଚାର୍ଯ୍ୟ ସେ ସ୍କୁଲ୍‌ଟି ପ୍ରତିଷ୍ଠା କରିଥଲେ । ତାଙ୍କ ନାମାନୁସାରେ ସ୍କୁଲ୍‌ର ନାମକରଣ କରାଯାଇଥିଲା । ପ୍ୟାରୀମୋହନଙ୍କ ଜନ୍ମ ୧୮୫୨ ମସିହାରେ । ତାଙ୍କର ଦେହାନ୍ତ ହୋଇଥିଲା ୧୮୮୧ ମସିହାରେ । ସେ ମାତ୍ର ଅଣତିରିଶି ବର୍ଷ ବଞ୍ଚିଥିଲେ । ସ୍ୱଳ୍ପ ସମୟ ଜୀବନ କାଳ ଭିତରେ ସେ ଏହି ଅମର କୀର୍ତ୍ତି ସ୍ଥାପନ କରିଥିଲେ । ପ୍ୟାରୀମୋହନ କଲେଜରେ ପଢୁଥିବା ସମୟରେ ଗୋଟିଏ ଲେଖାକୁ କେନ୍ଦ୍ର କରି ଇଂରେଜ ସରକାରଙ୍କ କୋପଦୃଷ୍ଟି ପଡ଼ିଥିଲା ତାଙ୍କ ଉପରେ । ତା' ପରଠାରୁ ତାଙ୍କ ପୋଥିରେ ଡୋର ବନ୍ଧା ହୋଇଥିଲା । ଏଥିରେ ଦବି ନଯାଇ ପ୍ୟାରୀମୋହନ ସ୍କୁଲ୍‌ଟିଏ ପ୍ରତିଷ୍ଠା କରିବା ପାଇଁ ଅଣ୍ଟା ଭିଡିଥିଲେ । ବ୍ୟକ୍ତିଗତ ଉଦ୍ୟମରେ ପ୍ରଥମେ କଟକର ବକ୍ସିବଜାର ଅଞ୍ଚଳର କୃପାସିନ୍ଧୁ ସାହୁଙ୍କ ଘର ବାରଣ୍ଡାରେ ସେ ଗୋଟିଏ ପ୍ରାଥମିକ ସ୍କୁଲ ଖୋଲିଥିଲେ । କିଛିବର୍ଷ ପରେ ୧୮୭୫ ମସିହାରେ ପ୍ରାଥମିକ ସ୍କୁଲଟି ହାଇସ୍କୁଲରେ ପରିଣତ ହୋଇଥିଲା । ପ୍ରଥମେ ସେ ସ୍କୁଲ୍‌ର ନାଁ 'କଟକ ଏକାଡେମୀ' ଥିଲା । ପ୍ୟାରୀମୋହନଙ୍କ ଦେହାନ୍ତ ପରେ ନାଁ ବଦଳାଯାଇ 'ପ୍ୟାରୀମୋହନ ଏକାଡେମୀ' କରାଯାଇଥିଲା ।

ବହୁ ଉଦ୍ୟମ ପରେ ପି.ଏମ୍. ଏକାଡେମୀର ଚତୁର୍ଥ ଶ୍ରେଣୀରେ ମୋ ପାଇଁ ସିଟ୍‌ଟିଏ ମିଳିଗଲା । ସେତେବେଳକୁ କ୍ଲାସ ଆରମ୍ଭ ହୋଇ ପଢ଼ାପଢ଼ି ଆଗେଇ ଯାଇଥିଲା । ସହରୀ

ପିଲାମାନଙ୍କ ଝକଚକ୍ୟପୂର୍ଣ୍ଣ ଚାଲିଚଳଣୀ ସହିତ ପ୍ରଥମାବସ୍ଥାରେ ମୁଁ ନିଜକୁ ସାମିଲ୍ କରିପାରି ନଥିଲି। ସବୁକଥା ନୂଆ ନୂଆ ଲାଗୁଥିଲା। କିଛିଦିନ ଭିତରେ ସବୁକଥା ଦେହସୁହା ହୋଇଗଲା। ମୁଁ ପରିସ୍ଥିତି ସହିତ ଖାପ ଖୁଆଇବା ପାଇଁ ନିଜକୁ ପ୍ରସ୍ତୁତ କରିବାରେ ଲାଗିଲି।

ଯୋଉଦିନ ପ୍ରଥମଥର ପାଇଁ ମୁଁ କ୍ଲାସରେ ଯୋଗଦେଲି, ମନରେ ଏକ ଅଜଣା ଭୟ ରହିଥିଲା। ଅଜଣା ଜାଗା । ସାଙ୍ଗସାଥୀ କେହି ନଥିଲେ। ନୂଆ ଶ୍ରେଣୀ । ନୂଆ ଶିକ୍ଷକ। ମନରେ ସାହସ ସଞ୍ଚୟ କରି ଶ୍ରେଣୀ ଆରମ୍ଭ ପୂର୍ବରୁ ଯାଇ ଗୋଟିଏ ପଛସିଟ୍‌ରେ ବସିଲି। ଆମର ଶ୍ରେଣୀଶିକ୍ଷକ ଥିଲେ ବିଭୁତି ଭୂଷଣ ରାୟ। ଖୁବ୍ ସ୍ନେହୀ। ପିଲାମାନଙ୍କୁ ନିଜର ଭଳି ସ୍ନେହ କରୁଥିଲେ। ବର୍ଷ ମଝିରେ ନାଁ ଲେଖାଇଥିବାରୁ ହାଜିରାଖାତରେ ମୋ ନାଁ ସବା ତଳେ ଥିଲା। ସାର୍ ମୋ ନାଁ ଡାକିଲାରୁ ମୁଁ ଅନ୍ୟ ପିଲାଙ୍କ ଭଳି 'ପ୍ରେଜେଣ୍ଟ ସାର୍' ବୋଲି କହିଲି। ନୂଆ କଣ୍ଠସ୍ୱର ଶୁଣି ପିଲାମାନେ ମୋ ଆଡ଼କୁ ଅନେଇଲେ। ସେ ଚାହାଣୀରେ ଅନେକ ମତଲବ ଥିଲା। ରୋଲ୍‌କଲ୍ ପରେ ମୁଁ କେଉଁଠୁ ଆସିଛି, କୋଉଠି ରହୁଛି ସବୁକଥା ସାର୍ ମତେ ପଚାରିଥିଲେ। ତାଙ୍କ କଥାରେ ଆତ୍ମୀୟତା ଥିଲା। କେଇଦିନ ଭିତରେ ଜଣେ, ଦିଜଣ ପିଲାଙ୍କ ସାଙ୍ଗରେ ସାଙ୍ଗ ହୋଇଗଲା। ସ୍କୁଲ୍‌ରୁ ବାହାରିଲେ ଭିନ୍ନଭିନ୍ନ ରାସ୍ତାବାଟେ ପିଲାଏ ନିଜନିଜ ଘରକୁ ଯାଆନ୍ତି। ଯିବାଆସିବା ବେଳେ କଥାବାର୍ତ୍ତା ମାଧ୍ୟମରେ ଜଣାଶୁଣା ହେଲା।

କିଛିଦିନ ପରେ ମନ ଭିତରେ ଥିବା ଅଜଣା ଆଶଙ୍କା ଦୂରେଇଗଲା। ଦିନେ ଯାହା ନୂଆ ଲାଗୁଥିଲା, ଘଟଣାକ୍ରମେ ତାହା ଆପଣାର ହେବାକୁ ଲାଗିଲା। ଯେଉଁମାନେ ମତେ ପ୍ରଥମଦିନ ଭିନ୍ନ ଭାବରେ ଦେଖିଥିଲେ ସେମାନଙ୍କ ମନୋଭାବ ବଦଳିଗଲା। ମୁଁ ସେମାନଙ୍କ ମଧ୍ୟରେ ଜଣେ ହୋଇଗଲି। ପ୍ରଥମରୁ ମୋ ପାଖରେ ସବୁ ବହି ନଥିଲା। ଚୌଧୁରୀ ବଜାରରେ ଗୋଟିଏ ଦୋକାନରେ ପୁରୁଣା ବହି ବିକ୍ରି ହେଉଥିଲା। ଅଧାଦାମ୍‌ରେ ମିଳୁଥିବାରୁ ସେ ଦୋକାନରେ ସବୁବେଳେ ଭିଡ଼ ଲାଗିରହୁଥିଲା। ଆସ୍ତେଆସ୍ତେ ମାସକ ଭିତରେ ମୁଁ ସବୁ ବହି ଯୋଗାଡ଼ କରିଦେଲି।

ଅଲିଶା ବଜାର ବସାରୁ ପି.ଏମ୍. ଏକାଡେମୀର ଦୂରତା ପ୍ରାୟ ତିନି କିଲୋମିଟର। ଚାଲି କରି ଘରୁ ଯିବା ଛଡ଼ା ଆଉ କିଛି ବାଟ ନଥିଲା। ସେ ସମୟରେ ସାଇକେଲ୍ ଚଢ଼ିବା ବଡ଼ଲୋକୀ ଘରର ଚିହ୍ନ ଥିଲା। ମୋର ମନେଅଛି, ସେତେବେଳେ ଯେଉଁ ପାଞ୍ଚ, ଛଅଜଣ ପିଲା ନୂଆ ସାଇକେଲ୍ ଚଢ଼ି ସ୍କୁଲ୍‌କୁ ଆସୁଥିଲେ, ସେମାନଙ୍କ ମଧ୍ୟରେ ଥିଲେ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ପୁଅ ଶୋଭନ କାନୁନ୍‌ଗୋ (ପରବର୍ତ୍ତୀ ଅବସ୍ଥାରେ ଆଇ.ଏ.ଏସ୍)। କଟକ ବକ୍ସି ବଜାର ଅଞ୍ଚଳର ମଣି ସାହୁ (ଯାହାଙ୍କ ନାମରେ ମଣିସାହୁ ଛକ ହୋଇଛି)ଙ୍କ ନାତି ରାଜକିଶୋର ସାହୁ, ବାଲୁବଜାରରେ ଦୋକାନ ଥିବା ହରେକୃଷ୍ଣ ସାହୁ ଓ ଆଉ କେଇଜଣ ହାତଗଣତି ପିଲା।

ଗାଁ' ସ୍କୁଲ୍ ଓ ସହର ସ୍କୁଲ୍ ଭିତରେ ଆକାଶ ପାତାଳ ଫରକ। ଗାଁ'ରେ ଯିଏ ଯାହା ପିନ୍ଧି ହାତରେ ବହିବସ୍ତାନି ଧରି ଆସିଲେ ଚଳିଯାଉଥିଲା। ହେଲେ ସହରରେ ସଫାସୁତୁରା ସାଙ୍ଗକୁ ଟିକିଏ ଫେସନ ଦରକାର। ଏକାଡେମୀ ସ୍କୁଲ୍‌ରେ ପୁଅଝିଅ ଏକାଠି ପଢୁଥିଲେ। ସବୁଶ୍ରେଣୀରେ ଦୁଇଟି ସେକ୍ସନ 'ଏ' ଓ 'ବି'। 'ବି' ସେକ୍ସନ୍‌ରେ ଝିଅପିଲାଙ୍କ ସହିତ ବଙ୍ଗାଳୀ ପିଲାମାନେ ପଢୁଥିଲେ। କ୍ଲାସ୍‌ରେ ଓଡ଼ିଆ ବିଷୟ ପଢ଼ା ହେଲାବେଳେ ସେମାନଙ୍କ ପାଇଁ ଅନ୍ୟତ୍ର ବଙ୍ଗଳା କ୍ଲାସ ହେଉଥିଲା। ସେମାନଙ୍କୁ ପଢ଼ାଇବା ପାଇଁ ଜଣେ ବଙ୍ଗଳା ଶିକ୍ଷକ ଥିଲେ। ଏକ ସମୟରେ ବହୁ ସ୍ୱନାମଧନ୍ୟ ବ୍ୟକ୍ତି ଏକାଡେମୀରେ ଶିକ୍ଷକତା କରୁଥିଲେ। ସେମାନଙ୍କ ମଧ୍ୟରେ ଥିଲେ ବିପିନ ବିହାରୀ ପାଲ୍, ନିମାଇଁ ଚ୍ୟାଉପଟ୍ଟନାୟକ ପ୍ରମୁଖ। 'ଉତ୍କଳ ସମ୍ମିଳନୀ'ର ଦୀର୍ଘଦିନ ଧରି ସଭାପତି ରହିଥିବା ବସନ୍ତ କୁମାର ପାଣିଗ୍ରାହୀ, କଟକର ଜିଲ୍ଲାପାଳ ହୋଇଥିବା ଅକ୍ଷୟ କୁମାର ଦାସ ପ୍ରମୁଖଙ୍କ ପାଖରେ ପଢ଼ିବାର ସୌଭାଗ୍ୟ ମୋର ଜୁଟିଥିଲା।

ପ୍ୟାରୀମୋହନ ଏକାଡେ୍ମୀର ସେତେବେଳେ ହେଡମାଷ୍ଟ୍ରେ ଥିଲେ ବସନ୍ତ କୁମାର ଦାସ। ସେ ପଶ୍ଚିମବଙ୍ଗ ଅନ୍ତର୍ଗତ ମେଦିନିପୁର ଅଞ୍ଚଳର ମୂଳବାସିନ୍ଦା। କିନ୍ତୁ ତାଙ୍କର କର୍ମକ୍ଷେତ୍ର ଥିଲା କଟକ ସହର। କଟକର ତିନିକୋଣିଆ ବଗିଚାରେ ସେ ଘର କରିଥିଲେ। ଶିକ୍ଷକ ଭାବରେ ତାଙ୍କର ଯଥେଷ୍ଟ ସୁଖ୍ୟାତି ଥିଲା। ଇଂରାଜୀ, ସାହିତ୍ୟରେ ବିଶେଷକରି ବ୍ୟାକରଣ ପଢ଼ାଇବାରେ ସେ ପ୍ରବୀଣ ଥିଲେ। ପାଠପଢ଼ା ସାଙ୍ଗକୁ ସ୍କୁଲରେ ଶୃଙ୍ଖଳା ରକ୍ଷା ଉପରେ ସେ ଅଧିକ ଗୁରୁତ୍ୱ ଦେଉଥିଲେ। ସେ ସମୟରେ ପି.ଏମ୍. ଏକାଡେମୀର ଛାତ୍ରମାନେ ଉତ୍କଳ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ପ୍ରଥମ କିମ୍ବା ଦ୍ୱିତୀୟ ସ୍ଥାନ ଅଧିକାର କରୁଥିଲେ। ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ରାଜ୍ୟର ସବୁ ସ୍କୁଲ ଓ କଲେଜରେ ଛାତ୍ରଛାତ୍ରୀମାନେ ପରୀକ୍ଷା ଦେଉଥିଲେ। ହେଡ୍‌ମାଷ୍ଟ ଭାବରେ ଶ୍ରୀ ଦାସଙ୍କର ପ୍ରତିଷ୍ଠାର ସ୍ୱୀକୃତି ସ୍ୱରୂପ ଭାରତର ରାଷ୍ଟ୍ରପତି, ତାଙ୍କୁ ଶ୍ରେଷ୍ଠଶିକ୍ଷକ ଭାବେ ପୁରସ୍କୃତ କରିଥିଲେ। ମାତ୍ର ଏହି ପୁରସ୍କାର ଘୋଷଣା ବେଳକୁ ତାଙ୍କର ଦେହାନ୍ତ ହୋଇଯାଇଥିଲା। ମରଣୋତ୍ତର ଭାବରେ ଏହି ପୁରସ୍କାର ତାଙ୍କ ପରିବାର ଗ୍ରହଣ କରିଥିଲେ।

ସେତେବେଳେ ପି.ଏମ୍. ଏକାଡେମୀ ଏକମାତ୍ର ସ୍କୁଲ୍, ଯାହାର ନିଜସ୍ୱ ଖେଳପଡ଼ିଆ ଥିଲା। ଖେଳପଡ଼ିଆ ଚାରିପାଖେ ପାଚେରୀ ଘେରା ହୋଇଥିଲା। ପଡ଼ିଆ ବାଟେ ବାହାରକୁ ଯିବା ପାଇଁ ସୁବିଧା ନଥିଲା। ମଝିରେ ମଝିରେ ହେଡ୍‌ମାଷ୍ଟ୍ରେ ପଡ଼ିଆ ମଝିରେ ଥିବା ତେନ୍ତୁଳିଗଛ ତଳେ ଦରି ପକାଇ ଦଶମ ଶ୍ରେଣୀ ପିଲାଙ୍କୁ ବ୍ୟାକରଣ ପଢ଼ାଉଥିଲେ। ତାଙ୍କର ପଢ଼ାଇବାର ଶୈଳୀ ଥିଲା ଅନନ୍ୟ ସାଧାରଣ। ବ୍ୟାକରଣ ଭଳି କ୍ଲିଷ୍ଟ ବିଷୟବସ୍ତୁକୁ ସେ ଏପରି ଭାବରେ ବୁଝାଉଥିଲେ ଯାହାକି ଏ ପର୍ଯ୍ୟନ୍ତ ମୁଁ ଭୁଲିପାରି ନାହିଁ।

ଆମେ ଦଶମ ଶ୍ରେଣୀରେ ପଢୁଥିଲା ବେଳେ ଥରେ ହେଡମାଷ୍ଟ୍ରେ ଆସି ଆମକୁ ପଚାରିଲେ, "ମିଶୁ ମୋର ଦେହ ଏ ଦେଶ ମାଟିରେ, ଦେଶବାସୀ ଚାଲିଯାଆନ୍ତୁ ପିଠିରେ, ଏ କବିତାକୁ କିଏ ଲେଖିଥିଲେ ଓ ଏହାର ଅର୍ଥ କ'ଣ ?" ତାଙ୍କ ପ୍ରଶ୍ନରେ କ୍ଲାସର ସବୁପିଲା ଏକପ୍ରକାର ଛାନିଆ ହୋଇଯାଇଥିଲେ । ଜଣେ ପିଲା ସାହସ ସଞ୍ଚୟ କରି କହିଥିଲା, "ଏହାର ରଚୟିତା ହେଉଛନ୍ତି ଉତ୍କଳମଣି ଗୋପବନ୍ଧୁ ଦାସ । ଏହାର ଅର୍ଥ ହେଉଛି ଆମ ଶରୀର କ୍ଷିତି, ଅପ୍, ତେଜ, ମରୁତ, ବ୍ୟୋମ ଏହିପରି ପଞ୍ଚଭୂତରେ ସୃଷ୍ଟି ହୋଇଛି । ଜୀବନ ଶେଷରେ ଏହି ଶରୀର ଲୀନ ହୋଇଯିବ । ଏହାପରେ ହେଡମାଷ୍ଟ୍ରଙ୍କର ପ୍ରଶ୍ନ ଥିଲା, "କ୍ଷିତ-ଅପ୍ ସନ୍ଧି ହେଲେ କ'ଣ ହେବ ?" ଏହାର ଉତ୍ତର କେତେ ପିଲାଙ୍କୁ ଜଣାଥିଲେ ବି ଛାନିଆରେ କେହି ଠିକ୍ ଉତ୍ତର ଦେଇପାରିନଥିଲେ ।

ଏତିକିରେ ହେଡ୍‌ମାଷ୍ଟ୍ରଙ୍କର ରାଗ ପଞ୍ଚମକୁ ଉଠିଗଲା । "ତମେସବୁ ସାଧାରଣ ସନ୍ଧି ବିଷୟ ଶିଖିବା ପରେ ମୁଁ ଆସି ତମକୁ ପଢ଼ାଇବି" କହି ସେ କ୍ଲାସରୁ ଚାଲିଗଲେ । ଏକ ଅଜଣା ଆଶଙ୍କାକୁ ଆମେ ଅପେକ୍ଷା କରି ରହିଲୁ । କିଛିକ୍ଷଣ ପରେ ଦଶମ ଶ୍ରେଣୀର ଦୁଇ ସେକ୍‌ସନକୁ ଦୁଇ ପଣ୍ଡିତ ଆସି ପହଞ୍ଚିଲେ । ପ୍ରଥମେ ଆମେ କିଛି ବୁଝିପାରିନଥିଲୁ । ଆମ କ୍ଲାସକୁ ବୃନ୍ଦାବନ ସାର୍ (ଚୁଇଁ ପଣ୍ଡିତ) ଆସି କହିଲେ, "ପୋଡାମୁହାଁ, ତମେସବୁ ବ୍ୟାକରଣର ସନ୍ଧି ପଢ଼ିନାହଁ ? ସାର୍‌ଙ୍କୁ ଜଣେ କେହି ଏଇ ସାମାନ୍ୟ ପ୍ରଶ୍ନର ଉତ୍ତର ଦେଇପାରିଲ ନାହିଁ ।" ସେଦିନ ପଣ୍ଡିତେ ଆମକୁ ତିନି ପିରିୟଡ଼ କେବଳ ବ୍ୟାକରଣର ସନ୍ଧି ବିଷୟରେ ପଢ଼େଇଥିଲେ । ପରେ ଦି'ଜଣଯାକ ପଣ୍ଡିତ ଯାଇ ହେଡମାଷ୍ଟ୍ରଙ୍କୁ ବୁଝେଇଲେ । ପିଲା ବ୍ୟାକରଣର ସନ୍ଧି ବିଷୟରେ ଜାଣିଛନ୍ତି । ଆପଣଙ୍କୁ ଡରି ଛାନିଆରେ ସେମାନେ ଉତ୍ତର ଦେଇ ପାରିନଥିଲେ ।" ସେତେବେଳକୁ ହେଡମାଷ୍ଟ୍ରଙ୍କର କ୍ରୋଧ ଶାନ୍ତ ହୋଇଯାଇଥିଲା ।

ସ୍କୁଲ୍‌ରେ ସେତେବେଳେ ସାତଟି ପରିଅଡ୍ ପାଠପଢ଼ା ହେଉଥିଲା । ପ୍ରତ୍ୟେକ ପିରିଅଡରେ ଭିନ୍ନ ଭିନ୍ନ ଶିକ୍ଷକ ଆସି ବିଭିନ୍ନ ବିଷୟରେ ପଢ଼ାଉଥିଲେ । କିନ୍ତୁ ପ୍ରତ୍ୟେକ କ୍ଲାସ୍ ପାଇଁ ଜଣେ ଜଣେ 'କ୍ଲାସ୍ ଟିଚର୍' ଥିଲେ । କ୍ଲାସ୍ ଟିଚର୍ ତାଙ୍କ କ୍ଲାସ୍‌ର ଏକପ୍ରକାର ମୁରବୀ ଭାବରେ କାର୍ଯ୍ୟ କରୁଥିଲେ । ଶିକ୍ଷକମାନେ କ୍ଲାସ୍‌କୁ ଆସିଲେ ରୋଲ୍‌କଲ୍ ହେଉଥିଲା । ଶିକ୍ଷକ ଯେଉଁ ପିଲାର ନାଁ ଧରି ଡାକୁଥିଲେ, ସେ ଛିଡ଼ା ହୋଇ 'ପ୍ରେଜେଣ୍ଟ୍ ସାର୍' ବୋଲି କହୁଥିଲା । ଯେଉଁ ପିଲା ଅନୁପସ୍ଥିତ ରହୁଥିଲା, ତା'ର ଉପସ୍ଥାନ ଖାତାରେ ଛକି ପଡୁଥିଲା । ଅନୁପସ୍ଥିତିର କାରଣ ଦର୍ଶାଇ ଅଭିଭାବକଙ୍କଠାରୁ ଦରଖାସ୍ତ ଆଣି ନଦେଲେ, ଦିନକୁ ଅଣାଏ ହିସାବରେ ଜରିମାନା ଦେବାକୁ ହେଉଥିଲା ।

ସାତଟି ପିରିଅଡ୍ ମଝିରେ ଦୁଇଟି ଖେଳଛୁଟି । ପ୍ରଥମଟି ଦ୍ୱିତୀୟ ପିରିଅଡ୍ ପରେ ଦଶ ମିନିଟ୍ । ଦ୍ୱିତୀୟଟି ଚତୁର୍ଥ ପିରିଅଡ୍ ପରେ କୋଡିଏ ମିନିଟ୍ ପାଇଁ । ଖେଳଛୁଟିରେ ସ୍କୁଲ୍

# ଆମ ପରିବାର



ମୋ ବୋଉ ଓ ମା'
କାହ୍ନୁଚରଣ ଦାସ ଓ ରାଧାମଣି



ବଡ଼ଦାଦା (ପାଳକ ପିତା) ଓ ଖୁଡ଼ୀ
ସ୍ୱାଧୀନତା ସଂଗ୍ରାମୀ ଅକ୍ଷୟକୁମାର ଦାସ ଓ ଶାରଦା ସୁନ୍ଦରୀ

ପିଉସା ଓ ମତେ ପାଳିଥିବା ପିଉସୀ
କୃପାସିନ୍ଧୁ ମହାନ୍ତି ଓ ମଞ୍ଜୁବାଳା

# ମୋ ପିଲାଦିନ



ମାଇନର ସ୍କୁଲ ଛାତ୍ର (୧୯୫୩)



ଏନ୍.ସି.ସି. ଅଣ୍ଡର ଅଫିସର
(୧୯୬୨)



ବାଣୀବିହାର ଛାତ୍ର (୧୯୬୪)



ହାଇସ୍କୁଲ ଛାତ୍ର (୧୯୫୫)



ଯୁବ ସାମ୍ବାଦିକ(୧୯୬୫)

# ଘର ସଂସାର



ବର ବେଶ



ବିବାହ ପୂର୍ବରୁ ପତ୍ନୀ ପ୍ରମଦା



ବର ଅନୁକୂଳ



ପାଣିଗ୍ରହଣ (୨୭-୦୪-୧୯୬୯)



ବେଦୀରେ କଉଡିଖେଳ



ଏକାଦିନେ ବିବାହ କରିଥିବା
ତିନି ଭଉଣୀ
ପୂର୍ଣ୍ଣିମା, ପ୍ରମଦା ଓ ପ୍ରମିଳା



ବନ୍ଧାପନା ପୂର୍ବରୁ

ନବବିବାହିତା ପତ୍ନୀ ପ୍ରମଦାଙ୍କ ସହିତ



ପୁଅ ଚନ୍ଦନ ଓ ବୋହୂ ସାଲୋନୀ
ଶୁଭ ବିବାହ ଅବସରରେ



ପରିବାର ଗହଣରେ ଚନ୍ଦନ ଓ ସାଲୋନୀ



ପୁଅ-ବୋହୂଙ୍କ ସହିତ



ଖୁସି ମୁହୂର୍ତ୍ତରେ ଦୁଇ ନାତୁଣୀ
ଏଲିନା ଓ ସାଇନା

ବାହାରକୁ ଯିବା ପାଇଁ ଅନୁମତି ମିଳୁ ନଥିଲା । ସ୍କୁଲ ସାମ୍ନାରେ ଦୁଇଟି ଗେଟ୍ ଥିଲା । ଗୋଟିଏ ମେନ୍ ଗେଟ । ତା'ପାଖରେ ଛୋଟିଆ ଗେଟ୍‌ଟିଏ । ସାଇକେଲ କିମ୍ବା ଗାଡ଼ି, ମଟର ସ୍କୁଲ ଭିତରକୁ ଆସିବାର ଥିଲେ ବଡ଼ ଗେଟ୍ ଖୋଲା ହେଉଥିଲା । ନହଲେ ସାନଗେଟ୍ ବାଟେ ସମସ୍ତେ ଯିବାଆସିବା କରୁଥିଲେ । ଖେଳଛୁଟିରେ ଯେପରି ପିଲାମାନେ ସ୍କୁଲ ବାହାରକୁ ନ ଯାଇପାରିବେ ସେଥିପାଇଁ ଗେଟ୍ ପାଖରେ ପିଅନ ଜଗି ରହୁଥିଲା । ପିଲାମାନଙ୍କୁ ଦ୍ୱିତୀୟ ଖେଳଛୁଟିରେ ସାମାନ୍ୟ ଜଳଖିଆ ଦିଆଯାଉଥିଲା । ଜଳଖିଆ କହିଲେ ଖସାଲଡୁ କିମ୍ବା ବିସ୍କୁଟ୍ । ମଝିରେ ମଝିରେ ଗଜାମୁଗ ।

ଗେଟ୍ ବାହାରେ ଖେଳଛୁଟି ସମୟରେ ଦହିବରା, ଆଳୁଦମ୍, ଚନାଚୁର୍, ବରକୋଳି, ବମ୍ବେଲଡୁ ପସରା ମେଲାଇ ବସୁଥିଲେ । କଟକିଆ ପିଲାମାନେ ସ୍କୁଲ୍‌ର ନୀତିନିୟମକୁ ନମାନି ବେଳେବେଳେ ଗେଟ୍ ବାହାରକୁ ଚାଲିଯାଉଥିଲେ । ସେମାନଙ୍କ ନିକଟରୁ ଖାଉଥିଲେ । ଆମ ଭଳିଆ ପିଲାଙ୍କ ଭାଗ୍ୟରେ ସେ ସୁଯୋଗ ଜୁଟୁ ନଥିଲା । ଏକେ ତ ସ୍କୁଲର ନିୟମ ଭାଙ୍ଗିବା ପାଇଁ ଆମର ସାହସ ନଥିଲା । ବାହାରେ ଯାଇ ଖାଇବା ପାଇଁ ଆମ ପାଖରେ ପଇସା ନଥିଲା । ସେତେବେଳେ ପଇସା ଖୁବ୍ ଦୁର୍ମୂଲ୍ୟ ଥିଲା । କୋଉଦିନ କେମିତି ଅଣାଏ ଦି'ଅଣା ହାତରେ ପଡ଼ିଗଲେ ସରଗ ଦି'ଆଙ୍ଗୁଳ ଭଳି ବୋଧ ହେଉଥିଲା ।

ସ୍କୁଲ ପାଖରେ ଦରଘା ବଜାରରେ ଥିଲା ଅନ୍ନପୂର୍ଣ୍ଣା ମିଷ୍ଟାନ୍ନ ଭଣ୍ଡାର । ସେଠାରେ ତିଆରି ବରା ଓ ତା' ସାଙ୍ଗକୁ ପିଆଜ ତରକାରୀ ଖୁବ୍ ସୁଆଦିଆ ହେଉଥିଲା । ବରା ଗୋଟାକ ଅଣାଏ । ସାଙ୍ଗରେ ତରକାରୀ ମାଗଣା । ହେଲେ ବରା ଖାଇବା ଭାଗ୍ୟର କଥା ବୋଲି ବିଚାର କରାଯାଉଥିଲା । କାରଣ ସବୁଦିନେ ଅଣାଏ ପାଇବା କଷ୍ଟକର ବ୍ୟାପାର ଥିଲା । ଯୋଉଦିନ ଘରୁ ଅଣାଏ କି ଦି'ଅଣା ମିଳିଯାଉଥିଲା, ଆମେ କେଇଜଣ ସ୍କୁଲର ପ୍ରଚଳିତ ନିୟମ ଭାଙ୍ଗି ସେ ଦୋକାନକୁ ଚାଲି ଯାଉଥିଲୁ । ବରା ସାଙ୍ଗରେ ତରକାରୀ ଖାଇବା ଲୋଭକୁ ସମ୍ଭାଳି ହେଉନଥିଲା । ପଛରେ ଆଉଥରେ ତରକାରୀ ମାଗିଲାବେଳେ ଯଦି ଦୋକାନୀ କାନରେ ଆମ କଥା ପଡ଼ିଯାଉଥିଲା, ତାଙ୍କ ପ୍ରତିକ୍ରିୟା ଥିଲା, "କିଏ ସେ, ଗୋଟାଏ ବରାରେ ଦି'ଥର ତରକାରୀ ମାଗୁଛି ?" ଯେତେବେଳେ ଦୋକାନର ଟୋକା ବାଳିଆ କହୁଥଲା, "ଆଜ୍ଞା ସେମାନେ ଇସ୍କୁଲ୍ ପିଲା", "ହଉ ଦେ' ଦେ', ସେମାନେ କୁଆଡୁ ପଇସା ପାଇବେ ଯେ ଦି'ଟା ବରା ଖାଇବେ" ବୋଲି ପୂର୍ବରୁ ପାଟି କରୁଥିବା ବୁଢ଼ାଙ୍କ କଣ୍ଠ କୋମଳ ହୋଇଯାଉଥିଲା ।

ପିଲାଦିନୁ ବରା ଖାଇବା ପାଇଁ ମୋର ଖୁବ୍ ଦୁର୍ବଳତା ଥିଲା । ଦିନକର ଘଟଣା । ମୁଁ ସେତେବେଳେ ନବମ ଶ୍ରେଣୀରେ ପଢୁଥିଲି । ଆମେ କେଇଜଣ ବନ୍ଧୁ ସେଦିନ ପିଅନ କଥା ନମାନି ସ୍କୁଲ ବାହାରକୁ ଚାଲିଯାଇଥିଲୁ । ଆମେ ଭାବିଥିଲୁ, ପଞ୍ଚମ ପିରିୟଡ ଆରମ୍ଭ ହେବା ପୂର୍ବରୁ ଆମେ ସ୍କୁଲକୁ ଫେରିଆସିବୁ । କେହି କିଛି ଜାଣିପାରିବେ ନାହିଁ । ପିଅନକୁ କୁହାବୋଲା

କଲେ ସେ କାହାକୁ କିଛି କହିବ ନାହିଁ ବୋଲି ଆମର ଭରସା ଥିଲା । କିନ୍ତୁ ଆମର ଭାଗ୍ୟ ଖରାପ । ଆମେ ସେଦିନ ଧରା ପଡ଼ି ଯାଇଥିଲୁ ।

ସାଧାରଣତଃ ପଞ୍ଚମ ପିରିୟଡ଼ରେ ହେଡମାଷ୍ଟ୍ରେ ଦଶମ ଶ୍ରେଣୀକୁ ବ୍ୟାକରଣ ପଢ଼ାଇବାକୁ ଯାଆନ୍ତି । ତାଙ୍କ ପଛରେ ସ୍କୁଲର ପୁରୁଣା ପିଅନ ଅଭିମନ୍ୟୁ ପାଣିଗ୍ଲାସ, ନେସ୍‌ଫିଲ୍ଡ ଗ୍ରାମାର ବହି ଓ ଡିକ୍‌ସନାରୀ ଧରିଯାଏ । ଆମେ ଗେଟ୍ ଡେଇଁ ଆସିଲା ବେଳକୁ ହେଡମାଷ୍ଟ୍ରେ କ୍ଲାସକୁ ବାହାରୁଥିଲେ । କେଇ ମିନିଟ୍‌ର ବ୍ୟବଧାନ ହୋଇଥିଲେ ଆମେ ରକ୍ଷା ପାଇଯାଇଥାନ୍ତୁ । ଭାଗ୍ୟ ପ୍ରତିକୂଳ ହେଲା । ହେଡମାଷ୍ଟ୍ରଙ୍କର ନଜର ଆମ ଉପରେ ପଡ଼ିଗଲା । ସେ କ୍ଲାସକୁ ନଯାଇ ତାଙ୍କ ରୁମ୍‌କୁ ଫେରିଗଲେ । ଅଭିମନ୍ୟୁ ହାତରେ ଆମକୁ ଡକାଇଲେ । ଆମେ ଚାରିଜଣ ସେତେବେଳକୁ ବୁଝି ସାରିଥିଲୁ ଆମ ଭାଗ୍ୟରେ କ'ଣ ଥିଲା ? ମୁଁ ସବାପଛରେ ଥିଲି । ହେଡ୍‌ମାଷ୍ଟ୍ରଙ୍କ ବସିବା ଚୌକିର ବାଁ ପାଖରେ ଗୋଟିଏ ପିତଳ ଖୋଳ ଭିତରେ ବିଭିନ୍ନ ସାଇଜ୍‌ର ବେତ ରଖାଯାଇଥିଲା । ଆମେ ତାଙ୍କ ରୁମ୍‌ରେ ପଶିଲା ମାତ୍ରେ ସେ ଗର୍ଜନ କରି ଉଠିଲେ, "କୁଆଡେ ସବୁ ଯାଇଥିଲ ? ଏଠି କି ପାଠ ପଢ଼ିବାକୁ ଆସିଛ ନା ବଜାରି ହେବାକୁ ଆସିଛ ?" ସାଙ୍ଗେ ସାଙ୍ଗେ ଖୋଳରୁ ବେତ କାଢ଼ି ଆରମ୍ଭ ହୋଇଗଲା ପାହାର । ମୋ ପାଳି ପଡ଼ିଲା ବେଳକୁ ଦୁଇଖଣ୍ଡ ବେତ ଭାଙ୍ଗି ଯାଇଥିଲା । ହେଡମାଷ୍ଟ୍ରଙ୍କର କ୍ରୋଧ ମଧ୍ୟ ଟିକିଏ ଶାନ୍ତ ପଡ଼ିଯାଇଥିଲା । ତଥାପି ମୋ ପିଠିରେ ଦୁଇ ପାହାର ବସିଥିଲା । ସେତିକିରେ ମୋ ପ୍ୟାଣ୍ଟ ଓଦା ହୋଇଯାଇଥିଲା । ମୁଁ ଆଉ କ୍ଲାସକୁ ନଯାଇ ସିଧା ଘରକୁ ପଳେଇଥିଲି । ସେଦିନର ଘଟଣା ମୁଁ ଆଜି ପର୍ଯ୍ୟନ୍ତ ଭୁଲିପାରିନାହିଁ ।

ସେ ସମୟରେ ଆର୍ଥିକ ସ୍ୱଚ୍ଛଳ ନଥିବା ଘରର ପିଲାମାନଙ୍କୁ ସ୍କୁଲ୍‌ରେ ଦରମା ଛାଡ଼ କରାଯାଉଥିଲା । ସେଥି ସହିତ 'ପୁଅର୍ ବୟଜ୍ ଫଣ୍ଡ୍'ରୁ କିଛି ସାହାଯ୍ୟ ମଧ୍ୟ ମିଳୁଥିଲା । ମୋର ସେ ବିଷୟରେ କିଛି ଧାରଣା ନଥିଲା । କିନ୍ତୁ ଜଣେ ସାଙ୍ଗ ପାଖରୁ ଶୁଣି ଦରଖାସ୍ତଟିଏ ପକେଇ ଦେଇଥିଲି । କିଛିଦିନ ପରେ ମୋର 'ହାଫ ଫି' ସହିତ ପୁଅର୍ ବୟଜ୍ ଫଣ୍ଡ୍‌ରୁ ଟଙ୍କାଟିଏ ମିଳିବା ପାଇଁ ନିଷ୍ପତ୍ତି ହୋଇଥିବାର ଶୁଣିଲି । ଏତିକି ସାହାଯ୍ୟ ସେତେବେଳେ ବଡ଼କଥା ଥିଲା । ସେତେବେଳେ ମାସକୁ ସ୍କୁଲ୍ ଫି ବାବଦରେ ପାଞ୍ଚ ଟଙ୍କା ଦେବାକୁ ପଡୁଥିଲା । ସେଥିରୁ ଦରମା ଅଧା ସାଙ୍ଗକୁ ଟଙ୍କାଟିଏ ମିଳିଲା ପରେ ମତେ ମାସକୁ ମାତ୍ର ଦେଢ଼ଟଙ୍କା ଦେବାକୁ ହେଲା । ଆମ କ୍ଲାସ୍‌ରେ ଅନେକ ପିଲାଙ୍କର ମାସକୁ ପାଞ୍ଚଟଙ୍କା ଦେବାର ମଧ୍ୟ ଶକ୍ତି ନଥିଲା । ବହୁ ପିଲା ଖାଲିଗୋଡ଼ରେ ଚାଲିଚାଲି ଅସୁଥିଲେ ।

ଆମେ ହାଇସ୍କୁଲରେ ପଢ଼ିଲାବେଳକୁ ଦୁଆତ, କଲମ ବ୍ୟବସ୍ଥା ଆଉ ନଥିଲା । ଫାଉଣ୍ଟେନ୍ ପେନ୍‌ର ପ୍ରଚଳନ ଆରମ୍ଭ ହୋଇଥିଲା । ଟଙ୍କାକରୁ ଆରମ୍ଭ କରି ପାଞ୍ଚଟଙ୍କା ଭିତରେ ଫାଉଣ୍ଟେନ୍ ପେନ୍ ମିଳିଯାଉଥିଲା । ସେତେବେଳେ 'ସ୍ୱାନ୍', 'ପ୍ଲାଟୋ' ଇତ୍ୟାଦି

କଲମର ଖୁବ୍ ଚାହିଦା ଥିଲା । ମୋର ମନେଅଛି, ଆମ ସ୍କୁଲ୍ ପାଖରେ ଓଡ଼ିଶାର ଥିଏଟର ଓ ସିନେମା ଜଗତର ମହାନ୍ କଳାକାର କୃଷ୍ଣ ପାଣ୍ଡେଙ୍କର ଗୋଟିଏ ଛୋଟିଆ କାଠ କ୍ୟାବିନ୍ ଥିଲା । କ୍ୟାବିନ୍‌ରେ ବସି ସେ ଫାଉଣ୍ଟେନ୍ ପେନ୍ ଓ ଚଷମା ମରାମତି କରୁଥିଲେ । ମରାମତି କହିଲେ ପେନ୍‌ର ଜିଭ କିମ୍ବା ନିବ୍ ବଦଳା ଯାଉଥିଲା । ଚାରଣା (ପଚିଶ ପଇସା)ରେ ପେନ୍ ମରାମତି କାମ ଚଳିଯାଉଥିଲା । କୃଷ୍ଣ ପାଣ୍ଡେ ଓ ତାଙ୍କ ସାଥୀ ଦୀନବନ୍ଧୁ ଦାସ (ଟିମା) ଆକାଶବାଣୀ କଟକ କେନ୍ଦ୍ରରୁ ପ୍ରଚାରିତ 'ଗାଁ ଗହଳି' କାର୍ଯ୍ୟକ୍ରମରେ ମଉସା ଓ ମଙ୍ଗୁଳି ଭାବରେ ଅଂଶ ଗ୍ରହଣ କରି ବେଶ୍ ସୁନାମ ଅର୍ଜନ କରିଥିଲେ ।

ଅଷ୍ଟମ ଶ୍ରେଣୀ ହେଲାବେଳକୁ ମୁଁ ଦେଈ(ପିଇସୀ) ଘରେ କିଛିଦିନ ରହିଥିଲି । ଆମର ପିଇସୀଙ୍କୁ ଦେଈ ବୋଲି ଡାକନ୍ତି । ପିଲାଦିନେ ମତେ ଲାଳନପାଳନ କରିବାରେ ଦେଈର ବହୁତ ଅବଦାନ ଥିଲା । ପିଇସା କୃପାସିନ୍ଧୁ ମହାନ୍ତି ସେଣ୍ଟ୍ରାଲ ପି.ଡବ୍ଲୁ.ଡି.ରେ ଚାକିରି କରୁଥିଲେ । ଜଣେ ଫଟୋଗ୍ରାଫର ଭାବରେ ତାଙ୍କର ଖୁବ୍ ସୁନାମ ଥିଲା । ସେ ବେଶୀ ପାଠ ପଢ଼ିନଥିଲେ । ତାଙ୍କ ଅକ୍ଷର ଖୁବ୍ ସୁନ୍ଦର ଥିଲା ।

ପିଇସା ସେତେବେଳେ ରାଉସା ପାଟଣାରେ ଭଡ଼ାଘରେ ରହୁଥିଲେ । ସକାଳ ଦଶଟା ବେଳେ ସେ ଅଫିସ୍ ଯାଆନ୍ତି । ତା'ପୂର୍ବରୁ ଦେଈକୁ ରୋଷେଇ କରିବାକୁ ପଡୁଥିଲା । ଅନେକ ସମୟରେ ସକାଳେ ଜଳଖିଆ ହୋଇପାରେନାହିଁ । ଦେଈ ସକାଳେ ମତେ ଅଣାଏ ପଇସା ଧରାଇ ଦିଏ । ଆମ ଘର ସାମନାରେ ଜଣେ ବୁଢ଼ୀ ମୁଆଁପିଠା କରି ବିକ୍ରୀ କରୁଥିଲା । ଅଣାକରେ ଫାଳେ ପିଠା ମିଳୁଥିଲା । ସେତିକିରେ ମୋର ଜଳଖିଆ ହୋଇଯାଉଥିଲା ।

ସେତେବେଳେ କାଠ ଚୁଲିରେ ରୋଷେଇ ହେଉଥିଲା । ଗ୍ୟାସ୍ କିମ୍ବା ହିଟରର ପ୍ରଚଳନ ନଥିଲା । ଜଲଦି ରୋଷେଇ ହେବାପାଇଁ ଦୋ'ପଖା ଚୁଲି ଥିଲା । ଦୋ'ପଖା ଚୁଲିରେ ଏକାଥରରେ ଦୁଇଟି ହାଣ୍ଡି ବସି ପାରୁଥିଲା । କାଠଯୋଡି ନଈର ଆରପାଖରୁ କାଠ ବିକାଳିମାନେ ଶଗଡ଼ରେ କାଳେଣି କାଠ ଆଣି ଦେଇ ଯାଉଥିଲେ । ମାସ ଶେଷରେ ଆସି ପଇସା ନେଉଥିଲେ ।

ମୋର ବାଲ୍ୟାବସ୍ଥା ଗାଁ'ରେ କଟିଥିଲେ ହେଁ, କଟକରେ ଅଳ୍ପଦିନ ରହିବା ଭିତରେ ମୋ ଅଜାଣତରେ ମୁଁ କଟକିଆ ହୋଇଯାଇଥିଲି । କଟକର ଖାଦ୍ୟପେୟ, ଚଳଣି ସହିତ ମୁଁ ଅଭ୍ୟସ୍ତ ହୋଇଯାଇଥିଲି । କଟକିଆଙ୍କ ଭଳି ରାସ୍ତାକଡ଼ର ଦୋକାନରେ ପଡିଥିବା ବେଞ୍ଚ ଉପରେ ବସି ବରା ପିଆଜି ଖାଇବା, ବୁଲାବିକାଳି ଦହିବରା ବାଲାଙ୍କ ଠାରୁ ଦହିବରା, ଆଳୁଦମ୍ ଖାଇବା ମୋର ଅଭ୍ୟାସ ହୋଇଗଲା ।

ପିଲାଦିନେ ମୁଁ ଖୁବ୍ ଖାଦ୍ୟପ୍ରିୟ ଥିଲି । ବିଶେଷକରି ବରାପ୍ରତି ମୋର ବହୁତ ଦୁର୍ବଳତା ଥିଲା । ଆମର ଜଣେ ଜେଜେ (ବାପାଙ୍କ ଦାଦା) ପଙ୍କଜ ଚରଣ ଦାସ ବଙ୍ଗାଳି ସାହିରେ ରହୁଥିଲେ । ସେ ସକାଳୁ ଉଠି କାଠଯୋଡ଼ି ନଈର ପୁରୀଘାଟକୁ ଗାଧୋଇବାକୁ ଯାଆନ୍ତି ।

ମତେ ଥରେ ସେ କହିଲେ, "ତୁ ସକାଳୁ ଆସୁନ୍ତୁ, ନଈରେ ଗାଧୋଇସାରି ବରା ଖାଇବୁ ।" କଥାଟା ମୋ ମନକୁ ପାଇଲା ।

ରାଉସା ପାଟଣାରୁ ପୁରୀଘାଟ ଦୁଇ କିଲୋମିଟରରୁ ଅଧିକ ଦୂର ହେବ । କିନ୍ତୁ ବରା ଖାଇବା ଲୋଭ ମତେ ଏତେମାତ୍ରାରେ ପ୍ରଭାବିତ କଲା ଯେ, ମୁଁ ସେ ଦୂରରାସ୍ତାକୁ ଖାତିର କଲିନାହିଁ । କ୍ରମେ ବଙ୍ଗାଳି ସାହି ଛକରେ ବରା ଖାଇବା ମୋର ନିତିଦିନିଆ ଘଟଣା ହୋଇଗଲା ।

ଥରେ ଗୋଟାଏ କୌତୂହଳପୂର୍ଣ୍ଣ ଘଟଣା ଘଟିଲା । ଦିନେ ରାତି ତିନିଟାବେଳେ ମୁଁ ନିଦରୁ ଉଠି କାହାକୁ କିଛି ନକହି ଦେହରେ ତେଲ ଲଗାଇ ଗାଧୋଇବାକୁ ବାହାରୁଥିଲି । ଦେଈର ନିଦ ଭାଙ୍ଗିଗଲା । ସେ ଘଣ୍ଟା ଦେଖିଲା ବେଳକୁ ତିନିଟା ବାଜିଥିଲା । ମତେ ବଡ଼ ଲଜ୍ଜା ଲାଗିଲା । କୌଣସିମତେ ଦି' ଘଣ୍ଟା କଟେଇ ମୁଁ ପାଞ୍ଚଟା ବେଳକୁ ନଈକୁ ଯାଇଥିଲି ।

ଦେଈ ଘରେ ଥିଲାବେଳେ ଥରେ ପିଇସାଙ୍କୁ ହାଡ଼ଫୁଟି ହେଲା । ହାଡ଼ଫୁଟି ଡିଆଁରୋଗ । କାଳେ ମତେ ହାଡ଼ଫୁଟି ହେବ, ସେଥିପାଇଁ କିଛିଦିନ ବାହାରେ ଯାଇ ରହିବାର ଦରକାର ପଡ଼ିଲା । ଚୌଧୁରୀ ବଜାରର ଗୋପାଳଜୀଉ ମନ୍ଦିର ପାଖରେ ସାମନ୍ତ ଛାତ୍ରାବାସ ନାଁରେ ଗୋଟିଏ ହଷ୍ଟେଲ ଥିଲା । ତାକୁ ହଷ୍ଟେଲ କହିଲେ ଠିକ୍ ହେବ ନାହିଁ । କାରଣ ସେଠାରେ ଛାତ୍ରଙ୍କ ଅପେକ୍ଷା ଚାକିରିଆ ବେଶି ରହୁଥିଲେ । ସାମନ୍ତ ପରିବାରର ଛାତ୍ରମାନଙ୍କ ରହିବା ପାଇଁ କଟକର ପ୍ରମୁଖ ସାମନ୍ତମାନେ ସେ ହଷ୍ଟେଲଟି ତିଆରି କରିଥିଲେ ।

ପି.ଏମ୍. ଏକାଡେମୀର ଡ୍ରଇଁ ଶିକ୍ଷକ ଅନିରୁଦ୍ଧ ଦାସ ସେ ହଷ୍ଟେଲରେ ରହୁଥିଲେ । ତାଙ୍କୁ କହିବାରୁ ସେଠାରେ କିଛିଦିନ ରହିବା ପାଇଁ ସେ ବ୍ୟବସ୍ଥା କରିଦେଲେ । ହଷ୍ଟେଲର ଗୋଟିଏ ପଟେ ସାତବଖରା ଟାଇଲ୍ ଛପର ଘର । ଅନ୍ୟ ପଟରେ ରୋଷେଇ ଘର । ପାଖରେ ଦୁଇଜଣ ରୋଷେଇଆ ରହିବା ପାଇଁ ବ୍ୟବସ୍ଥା ଥିଲା । ମଝିରେ ମାଟିନନ୍ଦର କୂଅ । ପଛପଟେ ପାଇଖାନା ।

ସାମନ୍ତ ଛାତ୍ରାବାସରେ ଅନ୍ତେବାସୀଙ୍କ ପାଇଁ କେତେକ ନିୟମ ଓ ଶୃଙ୍ଖଳା ଥିଲା । ସକାଳୁ ଉଠି ପ୍ରାର୍ଥନା କରିସାରି ପାଠପଢ଼ିବା ଉପରେ ଗୁରୁତ୍ୱ ଦିଆଯାଉଥିଲା । ରବିବାର ଥିଲା ଲୁଗାସଫା ପାଳି । ସେଦିନ ସମସ୍ତେ ମିଶି ଘର ଓ ବାରଣ୍ଡା ସଫା କରୁଥିଲେ । ସମସ୍ତଙ୍କ ଭିତରେ ସୌହାର୍ଦ୍ଦ୍ୟ ଥିଲା ।

ଦି'ଓଳି ଖାଇବା, ଛାତ୍ରାବାସରେ ରହିବା ଖର୍ଚ୍ଚକୁ ମିଶାଇ ମାସକୁ କୋଡ଼ିଏ ଟଙ୍କାରେ ସବୁକଥା ଚଳିଯାଉଥିଲା । ସକାଳ ସାଢ଼େ ନଅଟାରେ ଖାଇବା ହୋଇଯାଉଥିବାରୁ ଜଳଖିଆ ଦରକାର ପଡୁନଥିଲା । ତଥାପି ପାଖରେ ଚୂଡ଼ା, ମୁଢ଼ି ଥାଏ । ଛାତ୍ରାବାସର ତତ୍ତ୍ୱାବଧାରକ ଭାବରେ ଜଣେ ଶିକ୍ଷକ ରହୁଥିଲେ । ପିଲାମାନଙ୍କ ପଢ଼ାପଢ଼ି ଠାରୁ ଆରମ୍ଭ କରି ଶୃଙ୍ଖଳା ରକ୍ଷା ପର୍ଯ୍ୟନ୍ତ ସବୁକଥା ସେ ଦେଖୁଥିଲେ ।

ସେତେବେଳେ ଏହି ଛାତ୍ରାବାସରେ ଗୋଟିଏ ରୁମ୍‌ରେ ଦୁଇଜଣ ଛାତ୍ର ରହୁଥିଲେ । ରୁମ୍‌ର ଆସବାବପତ୍ର ବିଷୟରେ ଦୁଇଖଣ୍ଡ ପଟା ଖଟ, ଦୁଇଟି ଛୋଟ ଟେବୁଲ୍ ଓ ହାତନଥିବା ଚୌକି ଦୁଇଖଣ୍ଡ । ପିଲାମାନେ ଖଣ୍ଡେ ଲେଖାଏଁ ଗୋବଲଗା ଟିଣ ଟ୍ରଙ୍କ ସୁଟ୍‌କେଶ ଓ କନ୍ଥାରେ ଗୁଡା ହୋଇଥିବା ବିଛଣା ରଖିଥାନ୍ତି । ମୋ ସାଙ୍ଗରେ ସେତେବେଳେ ରହୁଥିବା ଅଭୟାନନ୍ଦ ରଥ ପରବର୍ତ୍ତୀ ସମୟରେ ଆଇ.ଏ.ଏସ୍ ହୋଇଥିଲେ ।

ଖାଇବା ପାଇଁ ଘଣ୍ଟି ବାଜିଲେ ଆମେ ସିଲ୍‌ଭର ଥାଳି, ଗୋଟିଏ ତାଟିଆ, ଗ୍ଲାସ ଓ ଢ଼ାଳଟିଏ ଧରି ରୋଷେଇ ଘରକୁ ଯାଉଥିଲୁ । ରୋଷେଇ ଘରର ତଳ ମାଟି । ଖାଲ ଢ଼ିପ ଥିବାରୁ ସିଲ୍‌ଭର ଥାଳିକୁ ବାମ ହାତରେ ମାଡ଼ି ବସି ଡାହାଣ ହାତରେ ଖାଇବାକୁ ହେଉଥିଲା । ସପ୍ତାହକୁ ଥରେ ଅଧେ ଆଇଁଷକୁ ବାଦ୍‌ଦେଲେ ଅଧିକାଂଶ ଦିନ ସାଦା ରୋଷେଇ । ସକାଳଓଳି ଭାତ, ଡାଲି, ତରକାରି । ରାତିରେ ଭାତ କିମ୍ବା ରୁଟି ସାଙ୍ଗକୁ ଗୋଟାଏ ଘାଣ୍ଟ । ଖାଇସାରି ନିଜ ଥାଳି, ତାଟିଆ , ଗ୍ଲାସ କୂଅମୂଳକୁ ନେଇ ବାଲି ପକାଇ ମାଜିବାକୁ ହେଉଥିଲା । ଏହା ଥିଲା ନିତିଦିନିଆ ଘଟଣା । ମଝିରେ ମଝିରେ ଦରକାର ପଡ଼ିଲେ ଛାତ୍ରାବାସ ପରିସରକୁ ସଫା କରିବାକୁ ପଡୁଥିଲା ।

ସମୟର ପରିବର୍ତ୍ତନ ସହିତ ସାମନ୍ତ ଛାତ୍ରାବାସ ତା'ର ଅତୀତ ଗୌରବ ହରାଇଛି । ଛାତ୍ରାବାସ ନାଁ ଥିଲେ ବି ସେଠାରେ ଆଉ ପାଠପଢ଼ା ପିଲାଏ ରହୁନାହାନ୍ତି । ଛାତ୍ରାବାସର ପରିବେଶ ବଦଳିଯାଇଛି । ପରେ ଶୁଣିଲି ଜଣେ ଆଇନଜୀବୀ ତାକୁ ମାଡି ବସି ସେଠାରେ କୋଠାବାଡି କଲେଣି । ଏହି ଖବର ମତେ ଦାରୁଣ ଦୁଃଖ ଦେଇଥିଲା ।

ଆମ ପିଲାଦିନେ କଟକ ସହରରେ ମାଲ୍ ପରିବହନ ପାଇଁ ଏକବଳଦିଆ ଶଗଡ଼ ଗାଡି ଏକମାତ୍ର ମାଧ୍ୟମ ଥିଲା । ଗାଡ଼ିରେ ବାଉଁଶପାତିଆରେ ତିଆରି ତାଟ ଲାଗୁଥିଲା । ଗାଡ଼ିରେ ଲଦା ହୋଇଥିବା ଜିନିଷପତ୍ରକୁ ଖରାବର୍ଷାରୁ ରକ୍ଷା କରିବା ପାଇଁ ସେ ତାଟଥିଲା ଭରସା । ଶଗଡରେ ଗୋଟିଏ ବଳଦ ଲାଗୁଥିଲା । କାହାର ଭଡ଼ାଘର ବଦଳିଲେ ଏହି ତାଟଦିଆ ଶଗଡ଼ରେ ଜିନିଷପତ୍ର ନିଆଯାଉଥିଲା ।

ମୋର ମନେ ପଡୁଛି ଆମ ପିଲାଦିନେ କଟକ ସହରରେ ଅନେକ କଚ୍ଚା ରାସ୍ତା ଥିଲା । ରାସ୍ତାରେ ବର୍ତ୍ତମାନର ବିଜୁଳିଖୁଣ୍ଟି ବଦଳରେ କାଠଖୁଣ୍ଟରେ କିରୋସିନି ଲ୍ୟାମ୍ପ ସବୁ ଜଳୁଥିଲା । ସନ୍ଧ୍ୟାହେଲେ କିଛି ଲୋକ ସେହି ଲ୍ୟାମ୍ପରେ କିରାସିନି ତେଲ ଭର୍ତ୍ତିକରି ଜଳାଉଥିଲେ । ଆମ ଘରେ ମଧ୍ୟ ବିଜୁଳିବତୀର ବ୍ୟବସ୍ଥା ନଥିଲା । ଆମେସବୁ କିରୋସିନି ଲଣ୍ଠନରେ ପାଠ ପଢ଼ିଥିଲୁ । ସେକଥା କହିଲେ ବର୍ତ୍ତମାନର ପିଲାଏ ବିଶ୍ୱାସ କରିବେ ନାହିଁ ।

ସମୟ ବଦଳିବା ସହିତ କଟକ ସହରର ଶିକ୍ଷା, ସଂସ୍କୃତି ଓ ପରିବେଶରେ ବ୍ୟାପକ ପରିବର୍ତ୍ତନ ଦେଖାଦେଇଛି । ସେଦିନର ସେ ହାତଟଣା ରିକ୍ସା କିମ୍ବା କିରୋସିନି ଲ୍ୟାମ୍ପ ଆଉ

ଦେଖିବାକୁ ମିଳୁନାହିଁ । ଆଜି ସହରରେ ଅନେକ ସ୍କୁଲ, କଲେଜ ଖୋଲିଛି । ସେଦିନର ପାଠପଢ଼ା ଶୈଳୀରେ ଅନେକ ପରିବର୍ତ୍ତନ ଘଟିଛି । ସ୍କୁଲରେ ଛାତ୍ର ଓ ଶିକ୍ଷକମାନଙ୍କ ମଧ୍ୟରେ ଥିବା ପୂର୍ବ ସଂପର୍କ ଆଉ ଦେଖିବାକୁ ମିଳୁନାହିଁ । କଟକ ସହରର ପିଲାଏ ବିଭିନ୍ନ ପରୀକ୍ଷାରେ ଆଉ ବିଶେଷ କୃତକାର୍ଯ୍ୟ ହୋଇପାରୁନାହାନ୍ତି ।

# ଗାଁର ଅପାସୋରା ଅତୀତ

କଟକରେ ସ୍କୁଲ୍‌ରେ ନାଁ ଲେଖାଇବାର କେଇମାସ ଭିତରେ ଖରାଛୁଟି ହେଲା । ପାଖାପାଖି ଦେଢ଼ମାସ ସ୍କୁଲ୍ ବନ୍ଦ୍ । ମନ ଉଚ୍ଛନ୍ନ ହେଲା ଗାଁ'କୁ ଯିବାକୁ । ସେତେବେଳେ ଗାଁ'କୁ ଯିବାକୁ ହେଲେ କଟକ ମଟର ଆସୋସିଏସନ୍ ଦ୍ୱାରା ଚାଲୁଥିବା ମଟରଗାଡ଼ିରେ ଯିବାକୁ ପଡୁଥିଲା । ବସ୍‌ଗୁଡ଼ିକ ସକାଳେ ଗୌରୀଶଙ୍କର ପାର୍କରୁ ଯାଉଥିଲା । ସନ୍ଧ୍ୟାବେଳେ କଟକ ରେଲଷ୍ଟେସନ ପାଖରୁ ଆଉ କେଇଖଣ୍ଡ ବସ୍ ଚଳାଚଳ କରୁଥିଲା । ଆମର ଗାଁ'ପାଖ ବସଷ୍ଟାଣ୍ଡ୍ ଥିଲା ବାଲିଆ । କଟକରୁ ବାଲିଆକୁ ଭଡ଼ା ଥିଲା ଟଙ୍କାଟିଏ । ଗାଁ'ରେ ଜେଜେ ଓ ବୋଉ ରହୁଥିଲେ । ମୁଁ ଗାଁ' ଛାଡି କଟକ ଆସିବା ଯୋଗୁଁ ବୋଉ ଯେତିକି ଦୁଃଖିତ ହେଉଥିଲା, ଜେଜେ ସେଇ ପରିମାଣରେ ଖୁସି ଥିଲେ । କାରଣ ସେ ପର୍ଯ୍ୟନ୍ତ ଆମ ଗାଁ'ରୁ କେହି ଆସି କଟକ ସହରରେ ପଢ଼ି ନଥିଲେ । ଆମ ଅପେକ୍ଷା ଗାଁ'ରେ ଅନେକ ପଇସାବାଲା ଥିଲେହେଁ ପିଲାଙ୍କୁ ସହରରେ ପଢ଼ାଇବାର ମନୋବୃତ୍ତି ସେମାନଙ୍କର ନଥିଲା ।

କଟକ ମୋଟର ଆସୋସିଏସନର ଯେଉଁ ବସ୍ କଟକରୁ ଜଗତସିଂହପୁର ଯିବାଆସିବା କରୁଥିଲା ସେଥିରେ ତିନୋଟି ଶ୍ରେଣୀ ଥିଲା । ଡ୍ରାଇଭର ପାଖରେ ଥିବା ଗୋଟିଏ ସିଟ୍‌କୁ ଫାଷ୍ଟକ୍ଲାସ ବୋଲି କୁହାଯାଉଥିଲା । ବଡଲୋକଙ୍କ ପାଇଁ ସେ ସିଟ୍‌ଟି ରିଜର୍ଭ ରହୁଥିଲା । କ୍ଷମତାରେ ଥିବା ରାଜନୈତିକ ନେତା, ଆମ ଅଞ୍ଚଳର ପଇସାବାଲା ଲୋକେ, ବସର ମାଲିକ କିମ୍ବା ସେମାନଙ୍କ ପରିବାରଲୋକେ ସେ ସିଟ୍‌ରେ ବସି ଯିବାଆସିବା କରୁଥିଲେ । ଫାଷ୍ଟକ୍ଲାସ ପଛକୁ ସେକେଣ୍ଡ କ୍ଲାସ । ସାମନାସାମନି ହୋଇ ଗଦି ଲଗା ଦୁଇଟି ବେଞ୍ଚ । ପାଞ୍ଚଜଣ ଲେଖାଏଁ ଦଶଜଣ ବସି ପାରୁଥିଲେ । ସେଥିପାଇଁ ଦେଢ଼଼ଗୁଣା ପଇସା ଦେବାକୁ ପଡୁଥିଲା ।

ଥାର୍ଡକ୍ଲାସର ମା'ବାପ କେହି ନଥିଲେ । ଚାରିପାଖରେ କାଠବେଞ୍ଚରେ ଖୁନ୍ଦା ଖୁନ୍ଦି ହୋଇ ବସିବାକୁ ପଡୁଥିଲା । ମଝିରେ ଗାଡିରେ ପାଣି ଦେବା ପାଇଁ ବାଲଟି ମୁହଁମାଡି

ରଖାଯାଉଥିଲା । ଦରକାର ପଡ଼ିଲେ ଲୋକେ ବାଲଟି ଉପରେ ବସୁଥିଲେ । ବସର ମଝି ସ୍ଥାନରେ ଛିଦ୍ରା ହୋଇ ଯିବା ଏକ ନିତିଦିନିଆ ଘଟଣା ଥିଲା। ବସ୍‌ରେ ଯିବା ପାଇଁ ଯେଉଁ ଟିକଟ ମିଳୁଥିଲା, ତା'ର ସାମନା ପଟ ଲେଖା କିଛି ଦେଖାଯାଏ ନାହିଁ । ମାତ୍ର ପଛପଟରେ ଛପା ଅକ୍ଷରରେ ଲେଖାଥିଲା । ସେ ଲେଖାକୁ ମୁଁ ପିଲାଦିନେ ବୁଝିପାରୁ ନଥିଲି । ଅନେକ ଯାତ୍ରୀଙ୍କର ସେ ଲେଖା ଦୀର୍ଘଦିନ ପାଇଁ ମନେ ରହି ଯାଇଥିଲା। ସେଥିରେ ସାତୋଟି ବିଷୟ ଉଲ୍ଲେଖ ଥିଲା । ସେଥିମଧ୍ୟରୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଥିଲା, 'ଦୈବ ଦୁର୍ଘଟଣା ପାଇଁ କମ୍ପାନୀ ଦାୟୀ ନୁହେଁ' । ସେଦିନର ସେକଥାକୁ ମନେ ପକାଇ ଅନେକ ପୁରୁଣା ଲୋକ ଏବେ ବି କହୁଥିବାର ଶୁଣାଯାଏ, ଦଇବ ଦୁର୍ଘଟଣା ପାଇଁ କମ୍ପାନୀ ଦାୟୀ ନୁହେଁ ।

କଟକର ପୁରୁଣା ମାଲ ଗୋଦାମ ଅଞ୍ଚଳରେ ଆଜି ଯେଉଁଠି 'ଓଭରବ୍ରିଜ' ହୋଇଛି, ଆଗେ ସେଠାରେ ଗୋଟିଏ ବଡ଼ ଚାଳଛପର ଘର ଥିଲା । ସେଠୁ ଉପରଓଳି ବସ୍ ସବୁ ଜଗତସିଂହପୁର ଓ ତାରପୁରକୁ ଯାଉଥିଲା । ଭରତବାବୁ (କଟକ ଚାନ୍ଦିନୀଚୌକ ଅଞ୍ଚଳର ଭରତ ସିଂହ) ସେଠାକାର ଇନ୍‌ଚାର୍ଜ ଥିଲେ । ଗୋରା ତକ୍‌ତକ୍ ଚେହେରାକୁ ମର୍ସିରାଇଜଡ ଧୋତି ଓ ଚମ୍ପା ରଙ୍ଗର ସିଲ୍କ ହାଫ୍‌ସାର୍ଟ ତାଙ୍କୁ ଖୁବ୍ ମାନେ । ବସଯାତ୍ରୀମାନଙ୍କ ପାଖରେ ଭରତବାବୁଙ୍କର ଖୁବ୍ ଖାତିର । ଟିକିଏ ସୁବିଧା ପାଇବା ପାଇଁ ସେମାନେ ଭରତବାବୁଙ୍କୁ ଅନେଇ ରହିଥାଆନ୍ତି । ସୁବିଧା କହିଲେ, କାହାର ଜିନିଷ ପାଞ୍ଚସେର ପରିବର୍ତ୍ତେ ସାତସେର ହୋଇଯାଉଛି । ସେ ଦୁଇ ସେର ପାଇଁ ମାସୁଲ ଛାଡ଼ ପାଇବା । ଆରାମରେ ଯିବା ପାଇଁ ଫାଷ୍ଟକ୍ଲାସରେ ଆସନଟିଏ ପାଇବା । ନଚେତ ଥାର୍ଡକ୍ଲାସ ପଇସା ଦେଇ ସେକେଣ୍ଡକ୍ଲାସରେ ଯିବାର ସୁବିଧା ପାଇବା । ଭରତବାବୁ ଖୁବ୍ ରସିକିଆ ଲୋକ । ସାଧମତେ ସାହାଯ୍ୟ କରନ୍ତି । ବଦଳରେ ଘର ତିଆରି ଗୁଣ୍ଡି ଓ କେତକୀ ଖଇରଦିଆ ପାନ ଖଣ୍ଡେ ଦାବି କରନ୍ତି ।

ପିଲାବେଳେ ଯେତିକି ଦିନ ଗାଁ'ରେ କଟିଛି, ତାହା ଚିରକାଳ ମନେ ରହିଥିବ । ଗାଁ'ରେ ସାଙ୍ଗମେଳ ସହିତ ମଉଜ ମଜଲିସରେ କଟିଥିବା ଦିନଗୁଡ଼ିକ ଆଜି ବି ମନେ ପଡ଼ୁଛି । ଗାଁ'ରେ ମୋର ସମସାମୟିକ କହିଲେ ରଙ୍ଗା, ଜାନକୀ, କଣ୍ଟୁରିଆ ପ୍ରମୁଖ ଥିଲେ । ସେମାନେ ମାନ୍ୟ ହିସାବରେ ମୋର ଦାଦା ହୁଅନ୍ତି । କିନ୍ତୁ ଆମ ଭିତରେ ଦାଦା ପୁତୁରାର ହିସାବ ରହୁନଥିଲା । ଆମେ ସବୁ ଘନିଷ୍ଠ ସାଙ୍ଗ ଥିଲୁ । ଆଦ୍ୟ ଜୀବନରେ ବହୁକାମ ଏକାଠି କରିଛୁ । ସେମାନଙ୍କ ଭିତରୁ ଜାନକୀ ଓ କଣ୍ଟୁରିଆ ଆରପୁରକୁ ଚାଲିଗଲେଣି । କେବଳ ରଙ୍ଗା ଦାଦା ପୋଷ୍ଟମାଷ୍ଟର ଚାକିରିରୁ ଅବସର ନେଇ ଗାଁ'ରେ ରହୁଛନ୍ତି । ପୁଅଝିଅ ସବୁ ବାହାଘର କରିଦେଇ ଖୁସିରେ ଅଛନ୍ତି ।

ଆମେସବୁ ସ୍କୁଲରେ ପଢ଼ିଲାବେଳେ ଡିସେମ୍ବର ମାସ ଛୁଟିକୁ ବଡଦିନ ଛୁଟି ବୋଲି କୁହାଯାଉଥିଲା । ସେ ଛୁଟିରେ ଗାଁ'କୁ ଗଲେ ସାଙ୍ଗମାନଙ୍କ ଗୋଡ ତଳେ ଲାଗୁନଥିଲା । ସେମାନେ ଚାତକ ପରି ମୋ ଯିବାକୁ ଅପେକ୍ଷା କରୁଥିଲେ । ଗାଁ'ରେ ନଈରେ ଗାଧୋଇବା,

ଏକାଠି ମାଛ ଧରିବା, ଆଖୁ ଶାଳକୁ ଯାଇ ଦୋଗୁଅ ପିଇବା ଓ ମହୁଆ ଖାଇବା ଆମର ନିତିଦିନିଆ କାମ ଥିଲା । ଆଜିକାଲିର ସହରୀ ପିଲାଙ୍କ ପକ୍ଷରେ ଆଖୁଶାଳ ଦେଖିବା ସମ୍ଭବ ନୁହେଁ । ଆଖୁଶାଳ କଥା କହିଲେ ସେମାନେ କିଛି ବୁଝିପାରିବେ ନାହିଁ ।

ଆଖୁଶାଳରେ ଏକ ବଡ଼ କରେଇରେ ଦୋଗୁଅ ଢ଼ାଳି ସେଥିରୁ ଗୁଡ଼ ତିଆରି ହେଉଥିଲା । ଆଖୁଶାଳରେ ଆଉ ଗୋଟିଏ ସୁସ୍ୱାଦ ଖାଦ୍ୟ ଥିଲା 'ମହୁଆ' । ଯାହାକୁ ଶାଳଗୁଡ଼ କୁହାଯାଏ । ଗୁଡ଼ ଅମଳ ହୋଇ ବଣାରେ ପଶିବା ପୂର୍ବରୁ କରେଇରେ ଟକମକ ହୋଇ ଫୁଟୁଥିବା ଅଧାରନ୍ଧା ଗୁଡ଼କୁ ଶାଳଗୁଡ଼ କୁହାଯାଏ । ଚକୁଳି ପିଠା କିମ୍ବା ରୁଟି ସାଂଗରେ ଶାଳଗୁଡ଼ର ସ୍ୱାଦ ନିଆରା ।

ସେତେବେଳେ ଆମର ଆଉ ଏକ ଅଭ୍ୟାସ ଥିଲା ବିଲରୁ ଧନିଆପତ୍ର ଚୋରିକରିବା । ବଡହେଲା ପରେ ସେକଥା ଭାବିଲେ ଖୁବ୍ ଲଜ୍ଜା ଲାଗେ । ସାମାନ୍ୟ କେତେ ପଇସାର ଧନିଆପତ୍ର ପାଇଁ ଆମେ କାହିଁକି ଚୋରି କରୁଥିଲୁ ? କିନ୍ତୁ ପିଲାଦିନେ ଧନିଆପତ୍ର ଚୋରିକୁ ଚୋରି ଭିତରେ ଗଣାଯାଉନଥିଲା । ସନ୍ଧ୍ୟା ଯାଇ ରାତି ହେଲେ ଆମେସବୁ ବିଲକୁ ଯାଉ । ବିଲରୁ ଧନିଆପତ୍ର ଉପାଡ଼ି ଘରକୁ ଫେରୁ । ସବୁବେଳେ ଧରା ପଡିଯିବାର ଭୟ ମନ ଭିତରେ ଥାଏ । କିନ୍ତୁ ଧରା ନପଡି ଧନିଆପତ୍ର ଧରି ଘରକୁ ଫେରିଲାବେଳେ ମନରେ କି ଆନନ୍ଦ ! ସତେ ଯେପରି ଗଡ଼ ଜିତିଯାଇଛୁ । କେବଳ ଧନିଆପତ୍ର କାହିଁକି, ଦିନରେ ଗହୀର ବିଲକୁ ଯାଇ ଚଣାଛୁଇଁ ଖାଇବା, ଆଖୁ କିଆରୀରୁ ଆଖୁ ଭାଙ୍ଗି ଆଣିବା ପ୍ରାୟ ଦୈନନ୍ଦିନ କାର୍ଯ୍ୟ ଥିଲା । ବେଳେବେଳେ ଅନ୍ୟବାଡ଼ିରେ ପଶି ଆମେ ଲୁଚେଇ କରି ଆମ୍ବଗଛରୁ ଆମ୍ବ ତୋଳୁଥିଲୁ ।

ଆମ ଗାଁ'ରେ ବର୍ଷସାରା ବିଭିନ୍ନ ପର୍ବପର୍ବାଣିରେ ନାନାଦି ପ୍ରକାର ପିଠାପଣା ସାଙ୍ଗକୁ ନାଚଗୀତର ଆୟୋଜନ ହେଉଥିଲା । ସେଥି ମଧ୍ୟରୁ ରଜରେ ପୋଡ଼ପିଠା, ଚିତଉ ଅମାବାସ୍ୟାରେ ଚିତଉ ପିଠା, ଦଶହରାରେ କାକରା, ପୋରୁହାଁ ଅଷ୍ଟମୀରେ ଏଣ୍ଡୁରି, ପୁଷପୂର୍ଣ୍ଣମୀରେ ମଣ୍ଡା ଗଇଁଠା, ଶାମ୍ବଦଶମୀରେ ବୁଢ଼ା ଚକୁଳି ଇତ୍ୟାଦି ଖୁବ୍ ସୁସ୍ୱାଦ ଖାଦ୍ୟ ଭାବରେ ପରିଚିତ ଥିଲା ।

ଗାଁ' ଗଣ୍ଡାରେ ଏସବୁ ପାଇଁ କିଛି ଉପାଦାନ କିଣିବାକୁ ପଡୁନଥିଲା । ବିଲଧାନରୁ ଚାଉଳ ହେଉଥିଲା । ବାରିରେ ନଡ଼ିଆ ଗଛ ଥିଲା । କ୍ଷୀରରୁ ଛେନା ହେଉଥିଲା । ଅଧିକାଂଶଙ୍କ ବିଲରୁ ଗୁଡ଼ ଆମଦାନୀ ହେଉଥିଲା । ପର୍ବ ପୂର୍ବଦିନ ଢ଼ିଙ୍କିଶାଳ ଲିପାପୋଛା ହୋଇ ଶୁଦ୍ଧ ଭାବରେ ଚାଉଳ କୁଟା ହୋଇ ଚୂନା ପ୍ରସ୍ତୁତ କରାଯାଉଥିଲା । ଘରେ ସ୍ତ୍ରୀଲୋକମାନେ ସ୍ନାନକର୍ମ ସାରି ନୂଆ ଲୁଗା ପିନ୍ଧି ଭୋଗପାଇଁ ପିଠାପଣା ତିଆରି କରୁଥିଲେ । କୁଆଡ଼େ ଗଲା ସେ ରୀତିନୀତି ? ଆଜିକାଲି ସେସବୁ ପିଠାପଣା ଆଉ ଦେଖିବାକୁ ମିଳୁନାହିଁ । ଏଣ୍ଡୁରୀ ପିଠା କହିଲେ କ'ଣ ଆଜିକାଲି ପିଲାଏ ବୁଝିପାରିବେ ? ସେମାନଙ୍କ ପାଇଁ ସାଉଥ୍ ଇଣ୍ଡିଆନ୍ ହୋଟେଲରେ ଇଡଲୀ ହେଉଛି ସବୁ ।

ଗାଁ'ରେ ଝିଅମାନଙ୍କର ଦୁଇଟି ବଡ଼ ପର୍ବ ଥିଲା । ଗୋଟିଏ ହେଉଛି ଖୁଦୁରୁକୁଣୀ ଓଷା । ଅନ୍ୟଟି କୁଆଁର ପୁନେଇ । ମୁଁ ପିଲାଦିନେ ଯାହା ଶୁଣିଛି, ଜୀବନରେ ଭଲ 'ବର' ପାଇ, ଉତ୍ତମ ବୈବାହିକ ଜୀବନ କଟାଇବା ପାଇଁ ଝିଅମାନେ ଏସବୁ ଓଷା କରୁଥିଲେ ।

ଖୁଦୁରୁକୁଣୀ ଓଷା ଏକ ପୌରାଣିକ କିମ୍ବଦନ୍ତୀ ଉପରେ ପର୍ଯ୍ୟବସିତ । ଏଥିରେ ମୁଖ୍ୟତଃ ମା'ମଙ୍ଗଳାଙ୍କ ପୂଜା କରାଯାଇଥାଏ । ଝିଅମାନେ ସାରୁପତ୍ରରେ ମାଳଚୂଳ କରି ମଙ୍ଗଳାଙ୍କ ପୂଜାର୍ଚ୍ଚନା କରିଥାନ୍ତି । ଏ ସନ୍ଧ୍ୟାରେ ପୂଜା ସମୟରେ ଖୁଦୁରୁକୁଣୀ ଓଷାର ଯେଉଁ ବହି ପଢ଼ାଯାଏ, ସେଥିରୁ ଉତ୍କଳୀୟ ନୌବାଣିଜ୍ୟର ସ୍ପଷ୍ଟ ସଙ୍କେତ ମିଳେ । ସେଥିରେ ଉତ୍କଳୀୟ ସାଧବ ଘରର ବର୍ଣ୍ଣନା ସହିତ  ସୁଦୂର ସ୍ଥାନକୁ ବଣିଜ କରିଯିବାର ବର୍ଣ୍ଣନା କରାଯାଇଛି । ସାଧବର ଅଲିଅଳି ଝିଅ ତଅପୋଇ, ମା'ମଙ୍ଗଳାଙ୍କ ପୂଜାର୍ଚ୍ଚନା କରିବା ଦ୍ୱାରା ତା'ର କିପରି ସକଳ ଦୁର୍ଦ୍ଦଶା ଅପସରି ଯାଇଥିଲା, ତା'ର ଅବତାରଣା କରାଯାଇ କୁମାରୀମାନଙ୍କ ମନରେ ଭକ୍ତିଭାବର ସଞ୍ଚାର କରାଯାଇଛି ।

ଆଶ୍ୱିନ ମାସର ପୂର୍ଣ୍ଣମୀକୁ କୁଆଁର ପୂନେଇ ଭାବରେ ପାଳନ କରାଯାଏ । ଏହାର ନାଁ କୁମାର ପୂର୍ଣ୍ଣିମା ହୋଇଥିଲେ ହେଁ ଏହା ମୁଖ୍ୟତଃ କୁମାରୀମାନଙ୍କର ପର୍ବ ଭାବରେ ଗାଁ'ମାନଙ୍କରେ ପାଳନ କରାଯାଏ । କୁଆଁର ପୂନେଇ ପାଳନ ଅବସରରେ ଝିଅମାନେ ରାତିରେ ନାନା ପ୍ରକାର ଗୀତ ବୋଲନ୍ତି । ମୋର ମନେ ଅଛି, ପିଲାଦିନେ ଆମେ ସବୁ ଦେହରେ କୁଟା ଗୁଡ଼େଇ 'ପାଳଭୂତ' ହୋଇ ଝିଅମାନଙ୍କୁ ଡରାଉଥିଲୁ । କୁଆଁର ପୂନେଇରେ ଝିଅମାନେ ଚଉରା ମୂଳେ ପୂଜାକରି ଚନ୍ଦ୍ରଙ୍କୁ ବନ୍ଦାପନା କରନ୍ତି । ଏହି ପର୍ବରେ ଚାନ୍ଦଭୋଗ ଅର୍ପଣ କରାଯାଏ । ଖଇ, ଛେନା, ଦହି, ନଡ଼ିଆ, ଗୁଡ଼ ଏକାଠି ଚକଟା ହୋଇ ଚାନ୍ଦ ପ୍ରସ୍ତୁତ କରାଯାଏ । ଆଜିକାଲି ଆଗଭଳି ଏସବୁ ପର୍ବର ସେ ଗାମ୍ଭୀର୍ଯ୍ୟ ଆଉ ଦେଖିବାକୁ ମିଳୁନାହିଁ । ସବୁକଥା ଉପର ଠାଉରିଆ ଭାବରେ ଚାଲୁଛି । ବଜାରରୁ ମିଠା ଆଣି ଭୋଗ ଦିଆଯାଉଛି ।

ଖରାଦିନେ ବିଶେଷକରି ରଜଛୁଟିରେ ଆମ ଗାଁ'ରେ ପ୍ରତିବର୍ଷ ଥିଏଟର ହେଉଥିଲା । ଗାଁ'ରୁ ବାଉଁଶ ଯୋଗାଡ଼ କରାଯାଇ ମଞ୍ଚ ତିଆରି ହୁଏ । । ସାମନାରେ ଲଙ୍ଗଳ ଦଉଡିରେ ଡେ'ଲାଇଟ୍(ବଡ଼ କିରୋସିନି ଲାଇଟ୍) ଟଙ୍ଗାଯାଏ । ଷ୍ଟେଜ ମଝିରେ ପେଟ୍ରୋମାକ୍ସ ଲାଇଟ୍ ମଧ୍ୟ ଟଙ୍ଗା ଯାଏ । କଟକରୁ ବିଭିନ୍ନ ସିନ୍, ଡ୍ରପ ଇତ୍ୟାଦି ଭଡ଼ାରେ ଆସେ । ମେକ୍ଅପ ପାଇଁ ପାଖ ଗାଁ'ର ଚିତ୍ରକରମାନଙ୍କୁ ଡକାଯାଏ । ଆଗେ ଥିଏଟରରେ ପାର୍ଟ କରିବାକୁ ଝିଅମାନେ ମିଳୁନଥିଲେ । ପୁଅମାନେ ଝିଅମାନଙ୍କ କାମ ଚଳାଉଥିଲେ । ପିଲାଦିନେ ମୁଁ ଥରେ ଅଧେ ଝିଅ ଭୂମିକାରେ ପାର୍ଟ କରିଛି । ସେ କଥା ଭବିଲେ ଆଜି ବିଶ୍ୱାସ ହୁଏ ନାହିଁ । ଥିଏଟରରେ ସମସ୍ତେ ସହଯୋଗ କରୁଥିଲେ । ସ୍ୱନାମଧନ୍ୟ ଇଞ୍ଜିନିୟର ବିଜୟରାମ ମିଶ୍ରଙ୍କ ଶଶୁରଘର ଆମ ଗାଁ'ରେ । ତାଙ୍କ ପୁଅ ବୁଢ଼ା(ଜଣାଶୁଣା ପାଇଲଟ ଅଜୟ ମିଶ୍ର) ଓ

ତାଙ୍କର ଅନ୍ୟ ଭାଇଭଉଣୀମାନେ ରଜ ବେଳେ ଆମ ଗାଁ'କୁ ଯାଇ ଥିଏଟରରେ ମାତି ଯାଉଥିଲେ ।

ଗାଁ'ରେ ରଜର ଆଉ ଏକ ଆକର୍ଷଣ ଥିଲା ନଈପଠାରେ ବାଗୁଡି ଖେଳ । ବିଲୁଆଖାଇ ନଈର ସୁବିସ୍ତୃତ ବାଲିରେ ରଜ ତିନିଦିନ ଉପରଓଳି ବାଗୁଡ଼ି ଖେଳର ଆୟୋଜନ ହୁଏ । ଆମ ଗାଁ'ର ସିଧିଆ ଓ ନରିଆ ଭାଇ ମଜଭୁତିଆ ମରଦ । ସେ ଦି'ଜଣ ଦି'ପାଖେ ରହିଲେ ଖେଳ ଖୁବ୍ ଜମେ । ତାଙ୍କ ଖେଳ ଦେଖିବାକୁ ନଈବାଲିରେ ଖୁବ୍ ଭିଡ଼ହୁଏ । ଖେଳାଳିମାନଙ୍କୁ ଉତ୍ସାହିତ କରିବା ପାଇଁ ମଝିରେ ମଝିରେ ଢ଼ୋଲ, ମହୁରୀ ବାଜେ । ଖେଳ ଶେଷରେ ଖେଳାଳିମାନଙ୍କୁ ପୁରସ୍କୃତ କରାଯାଉଥିଲା ।

ଆଗକାଳରେ ସାଧାରଣ ଦିନମାନଙ୍କରେ ଗାଁ'ରେ ମାଂସ ବିକ୍ରି ହେବାର ବ୍ୟବସ୍ଥା ନଥିଲା । କିନ୍ତୁ ରଜ, ଦଶହରାରେ ଗାଁ'ରେ ଖାସି ମରାଯାଏ । ତଳପାଟକ ଗାଁ'ର କୁଶା ମିଆଁ ରଜ ସମୟରେ ଖାସିଟିଏ ଧରି ଗାଁ'ରେ ହାଜର ହୋଇଯାଉଥିଲା । ତା'ର ପୋଷାକ ଥିଲା, ଲୁଙ୍ଗି ଉପରେ ଖଣ୍ଡେ ଫତେଇ । କାନ୍ଧରେ ଗୋଟିଏ ମୁଣି, ମୁଣିରେ ଦୁଇଟି ଛୁରୀ । ଆମ ପିଲାଦିନେ ଖାସି ଗୋଟାକ ଖୁବ୍ ବେଶି ହେଲେ ଦଶ ଟଙ୍କା ପର୍ଯ୍ୟନ୍ତ ଦାମ୍ ହେଉଥିଲା । ଓଜନ ବ୍ୟବସ୍ଥା ନଥିଲା । ଖାସୀଟିକୁ କାଟି ଦଶ ଭାଗ କରାଯାଉଥିଲା । ଲୋକେ ଟଙ୍କାଟିଏ ଦେଇ ଗୋଟିଏ ଭାଗ ନେଇ ଯାଉଥିଲେ । ମୁଣ୍ଡ, ଛାଲ ଓ ଗୋଡ଼ କୁଶା ମିଆଁର ।

ଖରାଛୁଟିରେ ମୁଁ ଗାଁ'କୁ ଗଲେ ଖରାବେଳେ ବୁଲିବୁଲି ତାଳ ଗଛରୁ ତାଳ କାଟିବା, ଖଜୁରୀ ଗଛରୁ ଖଜୁରୀକୋଳି ତୋଳିବା ଆମ ନିତିଦିନିଆ କାମ ହେଉଥିଲା । ସେଥିପାଇଁ କମାରଶାଳରୁ କାଟେଣୀ ତିଆରି କରି ସେଥିରେ ବାଉଁଶ ବେଣ୍ଟ ଲଗାଯାଉଥିଲା । ମୁଁ ଛୁଟିରେ ଗାଁ'ରେ ପହଞ୍ଚିବା ଆଗରୁ ସାଙ୍ଗମାନେ କାଟେଣୀ ତିଆରି କରିସାରି କେଉଁ ଗଛରୁ ତାଳ, ଖଜୁରୀ କୋଳି ପେନ୍ଥା ତୋଳାଯିବ ସେ କଥା ସ୍ଥିର କରିସାରିଥାନ୍ତି । ମୁଁ ଗଲେ କାମ ଆରମ୍ଭ ହୋଇଯାଉଥିଲା ।

ପିଲାଦିନେ ନଈବଢ଼ି ସମୟରେ ଡଙ୍ଗାରେ ବୁଲିବା ଆମ ପାଇଁ ଅନ୍ୟ ଏକ ଆକର୍ଷଣ ଥିଲା । ସକାଳେ ଓ ଉପରଓଳି ଅଳକା ହାଇସ୍କୁଲ ପିଲାମାନେ ନଈ ପାରିହୋଇ ଗଲାପରେ ସାଧାରଣତଃ ଡଙ୍ଗାରେ ଯିବାକୁ ବେଶୀ ଲୋକ ନଥାନ୍ତି । ଆମେ କେଉଟକୁ ଚାରେଣା କିମ୍ବା ଆଠେଣା ହାତଗୁଞ୍ଜା ଦେଇ ଡଙ୍ଗା ନେଇଯାଉ । ନଈର ଏ କୂଳରୁ ସେ କୂଳକୁ ଯିବା ଓ ସେ କୂଳରୁ ଆମ ଘାଟକୁ ଆସିବା ଭିତରେ ସୀମାବଦ୍ଧ ରହୁଥିଲା ଆମ ନୌକାବିହାରର ସରହଦ ।

ସବୁଦିନ ସମାନ ଯାଏନାହିଁ । ଥରେ ଗୋଟାଏ ଅଘଟଣ ଘଟିଲା । ନଟିଆ କେଉଟ ପୁଅ ଜୀବନକୁ ବାଜି ଲଗାଇ ଆମକୁ ଉଦ୍ଧାର ନ କରିଥିଲେ ସେଦିନ ପରିଣତି ହୁଏତ

ଭୟାବହ ହୋଇଥାନ୍ତା । ଡଙ୍ଗାକୁ ସୁଅକାଟି ନେବାକୁ ହେଲେ ଦୂରରେ କାତ ପକାଇବାକୁ ହୋଇଥାଏ । ନଚେତ୍ କାତ ଉପରେ ଡଙ୍ଗା ଚଢ଼ିଯିବାର ଆଶଙ୍କା ଥାଏ ।

ସେଦିନ ସେଇଆ ହେଲା । ମୁଁ କାତ ମାରୁଥିଲି । ଡଙ୍ଗା ଛାଡିବା ପର୍ଯ୍ୟନ୍ତ ସବୁକଥା ଠିକ୍ ଥିଲା । କିନ୍ତୁ ଡଙ୍ଗା ମଝି ନଈରେ ହେଲାବେଳକୁ କଥା ନହସରେ ମୁଁ ଟିକିଏ ଅନ୍ୟମନସ୍କ ହୋଇପଡ଼ିଲି । ସେଇ ଟିକିଏ ଅସାବଧାନତା ଯୋଗୁ ଆମ ଜୀବନ ଏକପ୍ରକାର ବିପନ୍ନ ହୋଇଗଲା । ମୁଁ ପ୍ରକୃତିସ୍ଥ ହେଲାବେଳକୁ କାତ ଉପରେ ଡଙ୍ଗା ମାଡି ଯାଇଥିଲା । କିଛି ଭାବିବା ପୂର୍ବରୁ କାତଟି ମୋ ହାତରୁ ଖସିଗଲା । ହାତରୁ କାତ ଚାଲିଗଲା ପରେ ଡଙ୍ଗା ଆଉ ଆମ ନିୟନ୍ତ୍ରଣରେ ରହିଲା ନାହିଁ । ଡଙ୍ଗାରେ ଅବଶ୍ୟ ଆହୁଲାର ବ୍ୟବସ୍ଥା ଥିଲା । କିନ୍ତୁ ଆମେ ଆହୁଲାର ସାହାଯ୍ୟ ନେବା ପୂର୍ବରୁ ଡଙ୍ଗା ତଳଆଡ଼କୁ ଭାସିବାକୁ ଆରମ୍ଭ କରିଥିଲା । ଥରେ ଡଙ୍ଗା ନିୟନ୍ତ୍ରଣ ହରାଇ ସୁଅରେ ଭାସିଲାରୁ ଯେ କୌଣସି ଅଘଟଣ ଘଟିବାର ଆଶଙ୍କାରେ ଆମେ ଆତଙ୍କିତ ହୋଇପଡ଼ିଲୁ । ମାତ୍ର ଆମ ଭାଗ୍ୟ ଟାଣ ଥିଲା ।

ଆମକୁ ଡଙ୍ଗା ଦେଇ କେଉଟ ପିଲାଟା ଚୁପ୍‌ହୋଇ ବସିନଥିଲା । କୂଳରେ ବସି ସେ ଆମ ଉପରେ ଦୃଷ୍ଟି ରଖିଥିଲା । ଡଙ୍ଗାର ସ୍ଥିତିରୁ ସେ ବିପଦକୁ ଅନୁମାନ କରିପାରିଲା । କାଳବିଳମ୍ବ ନକରି ସେ ବଢ଼ିଲା ନଈକୁ ଡେଇଁ ପଡିଲା । ପାଣିରେ ଭାସୁଥିବା କାତକୁ ଆଗ ଧରିଲା । ତା'ରି ସାହାଯ୍ୟରେ ପହଁରିବାକୁ ଲାଗିଲା । ସେତେବେଳକୁ କିଛି ଲୋକ ନଈ କୂଳରେ ରୁଣ୍ଡ ହୋଇସାରିଥିଲେ । ପ୍ରାୟ ଅଧଘଣ୍ଟାର କସରତ ପରେ ସେ କାତ ସହିତ ଡଙ୍ଗା ପାଖରେ ପହଞ୍ଚିଲା । ସେତେବେଳକୁ ଡଙ୍ଗାଟି ତଳମୁହାଁ ହୋଇ ଗୋଟେ କିଲୋମିଟର ପର୍ଯ୍ୟନ୍ତ ଭାସି ଯାଇଥିଲା । କେଉଟ ପିଲାଟି ଜୀବନକୁ ବିପନ୍ନ କରି ଆମକୁ ଉଦ୍ଧାର ନକରିଥିଲେ ଗାଁ'ରେ ସେଦିନ ଚାରୋଟି ଚୁଇ ଏକାଠି ଜଳିଥାନ୍ତା । ମୁଁ ସେ ଘଟଣାକୁ ଆଜି ପର୍ଯ୍ୟନ୍ତ ଭୁଲିପାରିନାହିଁ ।

ଗାଁ'ରେ ବିଧବା ସ୍ତ୍ରୀଲୋକମାନେ କାର୍ତ୍ତିକମାସରେ ହବିଷ କରନ୍ତି । ମାସଯାକ ନିଷ୍ଠାପର ଭାବରେ ଦାମୋଦରଙ୍କ ପୂଜା କରି ଓଳିଏ ଅରୁଆ ଖାଆନ୍ତି । ଆମ ଗାଁ'ର ବ୍ରାହ୍ମଣ ସାଇରେ ଜଗନ୍ନାଥ ଭାଇନାଙ୍କ ଘରୁ ପଞ୍ଚୁକରେ ହବିଷ ଅନ୍ନ ଖାଇବାକୁ ଜେଜେଙ୍କୁ ଡକରାହୁଏ । ମୁଁ ଥରେ ଜେଜେଙ୍କ ସାଙ୍ଗରେ ତାଙ୍କ ଘରକୁ ଯାଇଥିଲି । ଘରର ଭିତର ବାରଣ୍ଡାରେ ମଞ୍ଜ କଦଳୀ ପତରରେ ସାଦା ଅନ୍ନ, ହବିଷଡାଲମା ଓ ଖଟା କମଳାଲେମ୍ବୁ ଚକଟା ସାଙ୍ଗକୁ ଗୁଆ ଘିଅ, ଲେମ୍ବୁ, ଲୁଣ, ଲଙ୍କା । ଖାଇବା ଶେଷହେବା ପୂର୍ବରୁ ଦୁଇଟି ମଣ୍ଡା ପିଠା ଆମ ପତରରେ ଦିଆଗଲା । ସେଦିନର ସେ ଖାଦ୍ୟର ସୁଆଦ ବହୁଦିନ ପର୍ଯ୍ୟନ୍ତ ମନେଥିଲା ।

ମୁଁ ଗାଁ'କୁ ଗଲେ ସବୁଥର କୁକୁଡ଼ା ମରାଯାଏ । ଆମ ଘର ପାଖରେ ଭୋଇ ସାହିରେ କୁକୁଡ଼ା ପାଳିଥାନ୍ତି । ପ୍ରଥମଥର ଅଣ୍ଡା ଦେବା ଆରମ୍ଭ କରିଥିବା କୁକୁଡ଼ା ଭାରି ସୁଆଦିଆ ।

କୁକୁଡ଼ା ଗୋଟିଏ କି ଦୁଇଟି ଅଣ୍ଡା ଦେଇଥିବ । ପେଟରେ ଅଣ୍ଡା ଥିବ । ସେ ମାଂସ ଭାରି ଚିକ୍କଣ । ଆମେ ଯାଇ ଭୋଇ ସାହିରୁ କୁକୁଡ଼ା ନେଇଆସୁ । ସେଇମାନେ ମାରିଦିଅନ୍ତି । ସେତେବେଳେ ଖଞ୍ଜା ଭିତରେ କୁକୁଡା କିମ୍ବା କୁକୁଡ଼ା ମାଂସ ପଶିବା ଉପରେ ବହୁତ କଟକଣା ଥିଲା । ମାଛ ପାଇଁ ଆପତ୍ତି ନଥିଲା । ବେଳେବେଳେ ଛେଳି ମାଂସ ଚଳି ଯାଉଥିଲା ।

ସମସ୍ତଙ୍କର ବାରିଆଡେ ପ୍ରାୟ ଚୁଲିଟିଏ ଥାଏ । ଆମେ ସେହି ଚୁଲିରେ ଆଇଁଷ କରେଇରେ କୁକୁଡ଼ା ରୋଷେଇ କରୁ । ସେହି ବାରିଆଡେ ଖାଇ ପତରକୁ ପୋଖରୀରେ ପକାଇଦେଉ । ଆଜି ସେକାଳର ଚଳଣି ବିଷୟରେ ମନେ ପକାଇଲେ ବିଶ୍ୱାସ ହୁଏ ନାହିଁ । ଯୁଗ ବଦଳିବା ସହିତ ରୀତିନୀତି ସବୁ ବଦଳିଯାଇଛି । ଆଜି ଆଉ କୁକୁଡ଼ା ରୋଷେଇ ଘରେ ଅସ୍ପୃଶ୍ୟ ହୋଇ ନାହିଁ । ପିଲାମାନଙ୍କର ଚିକେନ୍ ନହେଲେ ଭାତ ପେଟକୁ ଯାଉନାହିଁ । କିନ୍ତୁ ସେଦିନର ଅଣ୍ଡାଦିଆ ଦେଶୀ କୁକୁଡ଼ା ଆଉ ମିଳୁନାହିଁ । କୁକୁଡ଼ା ଫାର୍ମରୁ ଦାନାଖାଇ ଦରମରା ହୋଇ ଆସିଥିବା କୁକୁଡ଼ା ମାଂସ ଖାଇ ପିଲେ ଖୁସି ହେଉଛନ୍ତି ।

ପିଲାଦିନେ ବନିଶିରେ ମାଛ ଧରିବା ଆମର ଗୋଟିଏ ସଉକ୍ ଥିଲା । ଆମ ଗାଁ'ର ବ୍ରାହ୍ମଣସାହିର ସର୍ବେଶ୍ୱର ଦାଶଙ୍କର ଗୋଟିଏ ପୋଖରୀ ଥିଲା । ପୋଖରୀ ଚାରିପଟେ ପଥର କାନ୍ଥ । ଗୋଟିଏ ପଟେ ପଥର ପାହାଚରେ ତୁଠ । ସେଠି ସାହିର ସ୍ତ୍ରୀଲୋକମାନେ ଗାଧୁଆପାଧୁଆ କରନ୍ତି । ସେ ପୋଖରୀର ପାଣି ଭାରି ଥଣ୍ଡା । ଆମେ କେଇଜଣ ସେ ପୋଖରୀକୁ ବନିଶି ପକାଇବାକୁ ଯାଉ । ବନିଶି କଣ୍ଟାରେ ଛିଆ ଗୁନ୍ଥି ମାଛ ଧରିବାରେ ଭାରି ଆନନ୍ଦ । ସେକଥା ମାଛ ଧରୁନଥିବା ଲୋକେ ବୁଝିପାରିବେ ନାହିଁ । ବନିଶିରେ ସାଧାରଣତଃ କେରାଣ୍ଡି, ଶିଙ୍ଗି, ଗଡିଶା ଓ ବେଳେ ବେଳେ ଛୋଟ ବାଳିଆ ମାଛ ପଡନ୍ତି ।

ଆମେ ମଝିରେ ମଝିରେ ନଈକୁ ମଧ ମାଛ ଧରିବାକୁ ଯାଉ । ଯେଉଁଦିନ କାହା ବାରିରେ ମାଛ ପୋଖରୀ ଗୋଳି ହୁଏ ତାକୁ ଦେଖିବାକୁ ବହୁତ ଲୋକ ରୁଣ୍ଡ ହୁଅନ୍ତି । ଖରାଦିନେ ପୋଖରୀରୁ ପାଣି କମିଗଲେ ଜାଲ ଓ ପୋଲୁହରେ ମାଛ ଧରାହେଉଥିଲା । ପୋଲୁହ ଦୁଇ ରକମର । ଗୋଟିଏ ଜାଲ ପୋଲୁହ । ଆଉ ଗୋଟିଏ କାଠି ପୋଲୁହ । ଜାଲ ପୋଲୁହରେ ଜାଲ ଏପରି ଭାବରେ ଛନ୍ଦା ଯାଇଥାଏ, ସେଥିରେ ଥରେ ମାଛ ପଶିଗଲେ ଆଉ ଖସିବାର ବାଟ ନଥାଏ ।

ଆଗେ ଗାଁ'ରେ ବାଦିପାଲା ହେଉଥିଲା । ବାଦିପାଲାର ବିଷୟବସ୍ତୁ ଅତ୍ୟନ୍ତ ଉପଭୋଗ୍ୟ ଥିଲା । ଗୋଟିଏ ଦଳର ଗାୟକ, ସଙ୍ଗୀତ ମାଧମରେ ଅନ୍ୟ ଦଳର ଗାୟକକୁ ପ୍ରଶ୍ନ ପଚାରନ୍ତି । ପ୍ରତିପକ୍ଷ ଗାୟକ ତା'ର ଉତ୍ତର ଦେବା ସଙ୍ଗେସଙ୍ଗେ ନିଜର ପ୍ରତିଦ୍ୱନ୍ଦ୍ୱୀକୁ ପ୍ରଶ୍ନ ପଚାରିବାକୁ ଭୁଲିନଥାନ୍ତି । ଆମ ପିଲାଦିନେ ପ୍ରସିଦ୍ଧ ପାଲା ଗାୟକମାନେ ଥିଲେ ହରିନାଥ ଯୋଗୀ, ନିରଞ୍ଜନ କର, ଜଗନ୍ନାଥ ବେହେରା, ପରମାନନ୍ଦ ଶରଣ ପ୍ରମୁଖ ।

ଯାତ୍ରା ଆମ ପିଲାଦିନେ ଗ୍ରାମ୍ୟ ଜୀବନର ଅନ୍ୟ ଏକ ଆକର୍ଷଣ ଥିଲା । ସେ ସମୟରେ ମନୋରଞ୍ଜନ ପାଇଁ ଯାତ୍ରା ହିଁ ଏକମାତ୍ର ମାଧ୍ୟମ ଥିଲା । ଆଜିକାଲି ଭଳି ସେତେବେଳେ ତମ୍ବୁଘେରା ଷ୍ଟେଜ୍ ଉପରେ ଯାତ୍ରା ହେଉନଥିଲା । ଖୋଲା ଆକାଶ ତଳେ ଲୋକେ ବସି ଯାତ୍ରା ଉପଭୋଗ କରୁଥିଲେ । ଯାତ୍ରାରେ ପୁଅମାନେ ଝିଅ ପାର୍ଟ କରୁଥିଲେ । ଆଜିକାଲି ଭଳି ସେତେବେଳେ ଯାତ୍ରା ଦେଖିବାକୁ ଟିକଟ୍ କରିବାକୁ ପଡୁନଥିଲା । ଗାଁ' ଲୋକେ ନିଜ ଭିତରେ ଚାନ୍ଦା ଭେଦା କରି ଯାତ୍ରାର ଖର୍ଚ୍ଚ ତୁଲେଇ ଦେଉଥିଲେ ।

ଗାଁ'ରେ ଷଣ୍ଢ ଲଢ଼େଇ ପିଲାଦିନେ ଅତ୍ୟନ୍ତ ଉପଭୋଗ୍ୟ ହେଉଥିଲା । ଦୁଇଟି ଷଣ୍ଢ କ୍ରୋଧାନ୍ୱିତ ହୋଇ ପରସ୍ପର ଉପରେ ଆକ୍ରମଣ କରି କ୍ଷତାକ୍ତ ହେଉଥିଲା ବେଳେ ଦେଖଣାହାରୀମାନେ ତାଳିମାରି ତାକୁ ଉପଭୋଗ କରୁଥିଲେ । ସାଧାରଣତଃ ବିଲରେ ଫସଲ ନଥିଲା ବେଳେ ଷଣ୍ଢ ଲଢ଼େଇର ଆୟୋଜନ କରାଯାଉଥିଲା ।

ଆମ ଗାଁ'ର ବ୍ରାହ୍ମଣସାହିରେ ସତିଆ ଗଉଡ଼ ଚାକିରି କରୁଥିଲା । ସତିଆର ଘର କୋଉଠି, କେହି ଜାଣିନଥିଲେ । ପିଲାଦିନୁ ଆସି ଆମ ଗାଁ'ରେ ରହିଯାଇଥିଲା । ଷଣ୍ଢ ପାଳିବା ତା'ର ଏକ ସଉକ ଥିଲା । ସତିଆ ଗୋଟିଏ ଷଣ୍ଢ ପାଳିଥିଲା । ଗୋଲଡ଼ୋଲ ଚିକ୍କଣ ଚେହେରା । ଯାହା କହନ୍ତି, ଦେହରୁ ମାଛି ଖସିପଡ଼ିବ । ଷଣ୍ଢର ରଙ୍ଗ କଳା । ସତିଆ ତା' ନାଁ ଶ୍ରଦ୍ଧାରେ 'କାଳିଆ' ରଖିଥିଲା । ସତିଆ ଓ କାଳିଆ ଭାରି ସାଙ୍ଗ । ସତିଆ ଡ଼ାକିଲେ କାଳିଆ ଜବାବ ଦିଏ । ସତିଆ କାଳିଆକୁ ଖୁବ୍ ଶରଧା କରୁଥିଲା । ବଳଦଙ୍କ ଦାନାରୁ କାଟି ତାକୁ ଖାଇବାକୁ ଦେଉଥିଲା । ଷଣ୍ଢ ଲଢ଼େଇ କରିବାରେ ସତିଆ ଆନନ୍ଦ ପାଉଥିଲା ।

ଆମ ପାଖ ଗାଁ' କମଳପୁରରେ ଥିବା ଧଳାରଙ୍ଗର ଷଣ୍ଢକୁ ବୀରା ଗଉଡ଼ 'ଗଜାଷଣ୍ଢ' ବୋଲି ଡାକେ । କାଳିଆ ଓ ଗଜାଷଣ୍ଢ ସବୁବେଳେ ପରସ୍ପରକୁ ଶତ୍ରୁ ବୋଲି ବିଚାରୁଥିଲେ । ଦେଖା ହୋଇଗଲେ ତାଳ ପକାଇ ଦିଅନ୍ତି । ଖଣ୍ଡିଆଖାବରାକୁ ଖାତିର ନଥାଏ । ଆମେ ଦେଖଣାହାରୀ ଦୁଇପକ୍ଷଙ୍କୁ ମତେଇ ଷଣ୍ଢ ଲଢ଼େଇର ଆୟୋଜନ କରୁ । ଦି' ଷଣ୍ଢ ଲଢ଼ିଲେ ଦୁଇଘଣ୍ଟା ପର୍ଯ୍ୟନ୍ତ କେହି କାହାକୁ ଛାଡୁ ନଥିଲେ । ଅଧିକାଂଶ ଦିନ କାଳିଆ ଷଣ୍ଢ ଲଢ଼େଇରେ ଜିତେ । ଲଢ଼େଇ ବେଳେ ଲୋକେ କୁହାକୁହି ହୁଅନ୍ତି, "ସତିଆ ପରା କାଳିଆକୁ ମୂଳ ଖୁଆଉଛି । ସେ କେବେ ହାରିବ ନାହିଁ ।" ପ୍ରକୃତରେ 'ମୂଳ' କ'ଣ ଓ ତାକୁ ଖାଇଲେ ଶରୀରରେ କି କ୍ରିୟା ବା ପ୍ରତିକ୍ରିୟା ହୁଏ ସେ କଥା ଜାଣିବା ପାଇଁ କେହି ଆଗ୍ରହୀ ନଥାନ୍ତି ।

ଆମ ଗାଁ' ପାଖରେ ଗୋଟିଏ ଜଙ୍ଗଲିଆ ସ୍ଥାନରେ ଥିଲା ବାମଦେବ ଗୋସାଇଁଙ୍କ ଗାଦି । ସେ ବାମଦେବ ଗୋସାଇଁ କିଏ, କୋଉଠୁ ଆସିଥିଲେ ସେ ବିଷୟରେ କେହି କିଛି ଜାଣିନଥିଲେ । ମୁଁ ପିଲାଦିନେ ଶୁଣିଥିଲି, ବାମଦେବ ଗୋସାଇଁଙ୍କର ଭାରି ମହିମା ଥିଲା । ସେଇ ଜଙ୍ଗଲିଆ ଜାଗାରେ ତାଙ୍କର କୁଆଡ଼େ ଜୀବନ୍ତ ସମାଧି ହୋଇଥିଲା । ଆମକୁ ପିଲାଦିନେ

ଜେଜେ କହୁଥିଲେ, ଗୋସାଇଁଙ୍କର ଯେତେବେଳେ ଶେଷ ସମୟ ଆସିଲା, ସେ ଜାଣିପାରିଥିଲେ । ଚେଲାମାନଙ୍କୁ ଡାକି ତାଙ୍କୁ ସେଠି ସମାଧି ଦେବାକୁ କହିଥିଲେ । ଗୋସାଇଁଙ୍କର ଶେଷଇଚ୍ଛା ପୂରଣ ହୋଇଥିଲା ।

ମୋର ମନେଅଛି, ଗାଁ'ରେ କାହାର କ'ଣ ହଜିଲେ, ଗାଈବଳଦ କୁଆଡ଼େ ଚାଲିଗଲେ କିମ୍ୱା ଛୋଟ ପିଲାଙ୍କର ଦେହ ଖରାପ ହେଲେ, ଲୋକେ ବାମଦେବ ଗୋସାଇଁଙ୍କ ନାଁରେ ଅଣାକର ଗଞ୍ଜେଇ ଯାଚିଦେଲେ ସବୁ ରିଷ୍ଟ ଖଣ୍ଡନ ହୋଇଯାଉଥିଲା । ସେ ଜାଗାଟି ଏତେ ଘଞ୍ଚ, ଜଙ୍ଗଲରେ ପୂର୍ଣ୍ଣ ଥିଲା ଯେ, ଦିନରେ ସେଠାକୁ ଯିବାକୁ ଡର ମାଡୁଥିଲା ।

ସମୟ ବଦଳିବା ସହିତ ସବୁକିଛି ବଦଳିଗଲା । ଲୋକଙ୍କର ଧର୍ମ ବିଶ୍ୱାସରେ ମଧ୍ୟ ଅବକ୍ଷୟ ଘଟିଲା । ଏବେ ବାମଦେବ ଗୋସାଇଁଙ୍କ ବିଜେସ୍ଥଳିର ଚିହ୍ନବର୍ଣ୍ଣ ନାହିଁ । ସେଠାରେ ଏବେ ଧାନଚାଷ ହେଉଛି ।

ଆଜିର ସହରୀକରଣ ଦୁନିଆରେ ଗାଁ'ର ପ୍ରଭାବ କମିଗଲାଣି । ଗାଁ'ରେ ଆଉ କେହି ରହିବାକୁ ପସନ୍ଦ କରୁନାହାନ୍ତି । ଯେଉଁ ଗାଁ'ରେ କିଛି ବୁଢ଼ାବୁଢ଼ୀ ଅଛନ୍ତି, ସେମାନେ ବିଭିନ୍ନ କାରଣରୁ ଚଳତ୍ ଶକ୍ତିହୀନ ହୋଇଗଲେଣି । ଆଖିକୁ ଭଲ ଭାବରେ ଦେଖାଯାଉ ନାହିଁ । କାନକୁ ଶୁଭୁନାହିଁ । ଆଣ୍ଠୁଗଣ୍ଠି ଦରଜ । ଚଲାବୁଲା କରି ପାରୁ ନାହାନ୍ତି । ପିଲାମାନେ ଚାକିରିବାକିରି କରି ସହର ବଜାରରେ ଘର ଦୁଆର କରି ରହିଲେଣି । କେବେ କେମିତି ଗାଁ'ରେ ଥିବା ପୁରୁଣା ସାଙ୍ଗମାନଙ୍କ ସହିତ ଦେଖା ହୋଇଗଲେ କିମ୍ୱା ଟେଲିଫୋନରେ କଥାବାର୍ତ୍ତା ହେଲାବେଳେ ଅତୀତର ସେ ଅପାସୋରା ଘଟଣା ସବୁ ମନେପଡିଯାଏ ।

# କଲେଜର ନିଆରା ଜୀବନ

ଆମେ ସ୍କୁଲରେ ପଢ଼ିବା ସମୟରେ ମାଟ୍ରିକ ପରୀକ୍ଷା ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ ହେଉଥିଲା । ଆମେ ଥିଲୁ ଉତ୍କଳ ବିଶ୍ୱବିଦ୍ୟାଳୟର ଶେଷବର୍ଷ ଛାତ୍ର । ଆମ ପରେ ସେକେଣ୍ଡାରୀ ବୋର୍ଡ ଅଧୀନରେ ପରୀକ୍ଷା ନିୟନ୍ତ୍ରିତ ହେଲା । ସ୍କୁଲରେ ପ୍ରିଟେଷ୍ଟ, ଟେଷ୍ଟ ପରୀକ୍ଷା ଠିକ୍ ସମୟରେ ସରିଥିଲା । ମୋର ସେ ବର୍ଷ ମାଟ୍ରିକ୍ ପରୀକ୍ଷା ଦେବା କଥା । ଫର୍ମ ପୂରଣ ହୋଇଥିଲା । କିନ୍ତୁ ଫାଇନାଲ ପରୀକ୍ଷାର ପନ୍ଦର ଦିନ ପୂର୍ବରୁ ହଠାତ୍ ବେମାରରେ ପଡିଲି । ଦେଢ଼ମାସ କାଳ ଶଯ୍ୟାଶାୟୀ ହୋଇଗଲି । ଭଲ ହୋଇ ଉଠିଲା ବେଳକୁ ପରୀକ୍ଷା ସରିଯାଇଥିଲା । ଏତେ ପରିଶ୍ରମ ବୃଥା ହେଲା । ମନରେ ଭୀଷଣ କ୍ଷୋଭ । ସମସ୍ତେ ବୁଝାଇଲେ, "ଦେହ ଆଗ ନାଁ ପରୀକ୍ଷା ଆଗ ।" ମନକୁ ବୁଝାଇବାକୁ ଚେଷ୍ଟା କଲି । ଶେଷରେ ସପ୍ଲିମେଣ୍ଟାରୀ ପରୀକ୍ଷା ପାଇଁ ପ୍ରସ୍ତୁତ ହେଲି । ସେଥିରେ ସେକେଣ୍ଡ ଡିଭିଜନରେ ପାସ୍ କଲି । କିନ୍ତୁ ଯାହା କୁହାଯାଏ, ବିଧି ବାମ ହେଲେ ହେବା କାମ ହୁଏ ନାହିଁ । ମୋ କ୍ଷେତ୍ରରେ ସେୟା ହେଲା ।

ସେ ସମୟରେ ଆଜିକାଲି ଭଳି କଟକ ସହରରେ ଏତେ ସଂଖ୍ୟାରେ କଲେଜ ନଥିଲା । କଟକରେ ମାତ୍ର ତିନୋଟି କଲେଜ । ରେଭେନ୍ସା, ଷ୍ଟୁଆର୍ଟ ଓ କ୍ରାଏଷ୍ଟ କଲେଜ । ରେଭେନ୍ସାରେ ସାଧାରଣତଃ ଫାଷ୍ଟ ଡିଭିଜନ ଛାତ୍ରମାନଙ୍କୁ ସିଟ୍ ମିଳୁଥିଲା । ଷ୍ଟୁଆର୍ଟରେ କେବଳ ସାଇନ୍ସ ପାଠ୍ୟକ୍ରମ ଥିଲା । ସେଥିପାଇଁ ସମସ୍ତଙ୍କ ନଜର କ୍ରାଏଷ୍ଟ କଲେଜ ଉପରେ । କ୍ରାଏଷ୍ଟ କଲେଜ ସକାଳୁଆ ହେଉଥିଲା । ମାଟ୍ରିକ୍ ପାସ କଲାପରେ ବିଭିନ୍ନ ଜାଗାରେ ଚାକିରି କରୁଥିବା ପିଲାଙ୍କ ପାଇଁ ସେ କଲେଜ ଉପଯୋଗୀ ହେଉଥିଲା । ମୂଳରୁ ସବୁ ସିଟ୍ ପୂରଣ ହୋଇଯାଉଥିଲା । ସପ୍ଲିମେଣ୍ଟାରୀରେ ପାସ୍ କରୁଥିବା ପିଲାଙ୍କ ପାଇଁ କାଁ ଭାଁ ଗୋଟିଏ ଦୁଇଟି ସିଟ୍ ମିଳୁଥିଲା ।

ସେ କଲେଜରେ ସେତେବେଳେ ଖ୍ରୀଷ୍ଟ ଧର୍ମାବଲମ୍ବୀ ସମ୍ପ୍ରଦାୟର ପିଲାମାନଙ୍କୁ ପଢ଼ିବା ପାଇଁ ଅଗ୍ରାଧିକାର ଦିଆଯାଉଥିଲା । ମୋର ଦୁର୍ଭାଗ୍ୟ, ସେବର୍ଷ ମତେ ସେଠାରେ ପଢ଼ିବା ପାଇଁ ସୁଯୋଗ ମିଳିଲା ନାହିଁ ।

କଟକ ସହର ବାହାରେ ଯାଇ ପଢ଼ିବା ପାଇଁ ଆବଶ୍ୟକ ସାମର୍ଥ୍ୟ ଆମର ନଥିଲା । ମନରେ ବହୁତ ଦୁଃଖ ହେଲା । ଜୀବନର ଗୋଟିଏ ବର୍ଷ ମାଟି ହୋଇଗଲା । ଦିନେ, ଦି'ଦିନ ଭଲରେ ଖାଇପାରିଲି ନାହିଁ । ସାଙ୍ଗମାନେ କଲେଜରେ ପଢ଼ିଲେ । ମାତ୍ର ସେମାନଙ୍କ ସାଙ୍ଗରେ ମାଟ୍ରିକ୍ ପାସ କରି ମୁଁ କଲେଜ ଦୁଆରମୁହଁ ଦେଖିପାରିଲି ନାହିଁ । ଦୁଃଖ ଓ ଅନୁଶୋଚନାରେ ଏକପ୍ରକାର ଭାଙ୍ଗି ପଡ଼ିଲି । ସମୟ ବଡ ବଳବାନ । ସମୟ ଅତିବାହିତ ହେବା ସହିତ ଭାଗ୍ୟକୁ ଆଦରି ଗୋଟିଏ ବର୍ଷ ଘରେ ବସିଲି । କାଳକ୍ରମେ ସବୁକଥା ଦେହସୁହା ହୋଇଗଲା । ଚାହୁଁଚାହୁଁ ସମୟ କୁଆଡ଼େ ଚାଲିଗଲା ।

ପରବର୍ଷ ନାଁ ଲେଖା ଆରମ୍ଭ ହେଲାମାତ୍ରେ ମୁଁ ସବୁପ୍ରକାର ଫର୍ମାଲିଟି ପୂରଣ କରି ପ୍ରଥମ ତାଲିକାରେ ନାଁ ଲେଖାଇଲି । ବର୍ଷକର ମନସ୍ତାପ କଟିଗଲା ।

ସେ ସମୟରେ କ୍ରାଏଷ୍ଟ କଲେଜରେ କେବଳ ପୁଅପିଲା ପଢୁଥିଲେ । ପୁରୁଷ ଅଧ୍ୟାପକମାନେ ଅଧ୍ୟାପନା କରୁଥିଲେ । ଆମେ ପଢ଼ିଲା ବେଳେ ପ୍ରଥମଥର ପାଇଁ ଆରତି ପାତ୍ର ଇତିହାସ ଅଧ୍ୟାପିକା ଭାବେ ଯୋଗ ଦେଇଥିଲେ । ତାଙ୍କର ମଧୁର ବ୍ୟବହାର ଓ ପାଠପଢ଼ା ଶୈଳୀ ଯୋଗୁ ସେ ସମସ୍ତଙ୍କର ଆକର୍ଷଣର କେନ୍ଦ୍ର ପାଲଟି ଯାଇଥିଲେ । କଲେଜରେ ପାଠପଢ଼ାର ଉତ୍ତମ ବାତାବରଣ ଥିଲା । ଅଧ୍ୟାପକ ଓ ଛାତ୍ରମାନଙ୍କ ମଧ୍ୟରେ ସୁସମ୍ପର୍କ ଥିଲା । ଇତିହାସ, ଅର୍ଥନୀତି, ଇଂରାଜୀ, ଦର୍ଶନ ବିଭାଗ ସାଙ୍ଗକୁ ଓଡ଼ିଆ ବିଭାଗରେ ପ୍ରବୀଣ ଅଧ୍ୟାପକମାନେ ଥିଲେ । ଓଡ଼ିଆ ବିଭାଗ ଅଧିକ ସମୃଦ୍ଧ ଥିଲା । ସେ ବିଭାଗରେ ଶ୍ରୀଧର ଦାସ, ପଠାଣୀ ପଟ୍ଟନାୟକ, ବନମାଳୀ ମିଶ୍ରଙ୍କ ଭଳି ଛାତ୍ରବତ୍ସଳ ଅଧ୍ୟାପକମାନଙ୍କର ଅଧ୍ୟାପନା ବେଶ ଉଚ୍ଚକୋଟୀର ଥିଲା ।

ମୋର ମନେଅଛି ଶ୍ରୀଧର ବାବୁ ଗଙ୍ଗାଧର ମେହେରଙ୍କ 'ପ୍ରଣୟ ବଲ୍ଲରୀ' ପଢ଼ାଉଥିଲେ । ସେ ଅତ୍ୟନ୍ତ ଅମାୟିକ, ନିରାଡମ୍ବର ଓ ସ୍ନେହୀ ମଣିଷ । ଦେଖିବାକୁ ଖୁବ୍ ସାଦାସିଧା । ପରିଧାନ ଖଣ୍ଡେ ଧୋତି ଓ ଧଳା ପଞ୍ଜାବୀ । ଗୋଡ଼ରେ ହଳେ ଚପଲ । ସାଇକେଲରେ ଯିବାଆସିବା କରନ୍ତି । ସେଇ ପିତୃପ୍ରତିମ ଅଧ୍ୟାପକଙ୍କ ପ୍ରତି ଛାତ୍ରମାନଙ୍କର ଥିଲା ପ୍ରଗାଢ଼ ଭକ୍ତି ।

ଅଧିକାଂଶ ଦିନ ତାଙ୍କର ଫୋର୍ଥ ପିରିୟଡ ଥାଏ । ଫୋର୍ଥ ପିରିଅଡ଼ ଆରମ୍ଭ ହେଲାବେଳକୁ ନଅଟା ପଚାଶ ମିନିଟ୍ । ଚାକିରି କରି ପଢୁଥିବା ଛାତ୍ରମାନେ ଥାର୍ଡ ପିରିଅଡ଼ ପରେ ଚାଲିଯାଆନ୍ତି । ସେମାନଙ୍କ ଦେଖାଦେଖି ଆମେ କେଇଜଣ ମଧ୍ୟ କ୍ଲାସରୁ ପଛବାଟେ ଚାଲିଯାଉ । ପିଲାମାନେ

ଚାଲିଯିବା କଥା ସାର୍‌ମାନେ ଜାଣନ୍ତି । ମାତ୍ର କିଛି ଦଣ୍ଡବିଧାନ କରନ୍ତି ନାହିଁ । ଶ୍ରୀଧରବାବୁ, 'ପ୍ରଣୟ ବଲ୍ଲରୀ' କାବ୍ୟରେ ବର୍ଣ୍ଣିତ କଣ୍ୱମୁନିଙ୍କ ଆଶ୍ରମରେ ରାଜା ଦୁଷ୍ମନ୍ତଙ୍କ ପ୍ରେମରେ ନିମଗ୍ନା ଋଷିକନ୍ୟା ଶକୁନ୍ତଳାଙ୍କର ପୂଜ୍ୟପୂଜା ପ୍ରତି ଅବହେଳା ଓ ସେଥିରେ କ୍ରୋଧିତ ହୋଇ ଦୁର୍ବାସା ମୁନିଙ୍କ ଅଭିଶାପ,

"ଘେନ ପୂଜ୍ୟପୂଜା ବ୍ୟତିକ୍ରମ ଫଳ
ଯା'ଠାରେ ରଖିଛୁ ଲୟ
ସେ ତୋତେ ଚିହ୍ନିବ ନାହିଁ
ତୁ ଦେଲେ ହେଁ ଆପଣାର ପରିଚୟ ।" ପଂକ୍ତିର ବାଖ୍ୟା କଲାବେଳେ ମନ ଟାଣି ହୋଇଯାଉଥିଲା କଣ୍ୱମୁନିଙ୍କ ଆଶ୍ରମର ସେହି ଅପୂର୍ବ ଦୃଶ୍ୟପଟକୁ । କ୍ଲାସରେ ଯେତିକି ପିଲା ରହୁଥିଲେ, ସମସ୍ତେ ଚୁପ୍‌ଚାପ ଓ ଭାବ ବିହ୍ୱଳିତ ହୋଇ ଶୁଣୁଥିଲେ ପ୍ରଣୟର ଗାଥାକୁ । ଶ୍ରୀଧରବାବୁଙ୍କ ସାହିତ୍ୟ ପଢ଼ାଇବାରେ ପ୍ରଚଣ୍ଡ ପ୍ରତିଭା ଥିଲା । କ୍ଲିଷ୍ଟ ଶବ୍ଦକୁ ସାବଲୀଳ ଭାବରେ ବୁଝାଇବାରେ ତାଙ୍କର ଅପୂର୍ବ ଦକ୍ଷତା ଥିଲା ।

କ୍ରାଏଷ୍ଟ କଲେଜରେ ସେତେବେଳେ ପ୍ରିନ୍‌ସିପାଲ ଥିଲେ ରେଭେରେଣ୍ଡ ବ୍ରଜାନନ୍ଦ ମହାନ୍ତି । ଖ୍ରୀଷ୍ଟ ସଂପ୍ରଦାୟର ଜଣେ ଗଣ୍ୟମାନ୍ୟ ବ୍ୟକ୍ତି । ବାହାରକୁ ନରମ ଜଣାପଡୁଥିଲେ ବି ପ୍ରଶାସନିକ ଦୃଢ଼ତା ତାଙ୍କର ଥିଲା । ନୀତି ସହିତ ସେ କେବେ ସାଲିସ୍ କରୁନଥିଲେ । ରିସେସ୍ ସମୟରେ ସେ ବାଇବେଲ୍ ପଢ଼ାନ୍ତି । ସେଥିରେ ଯୋଗଦେବା ବାଧ୍ୟତାମୂଳକ ନଥିଲା । ନିଉ ଟେଷ୍ଟାମେଣ୍ଟର ଯେଉଁ ଅଧ୍ୟାୟଗୁଡିକ ସେ ପଢ଼ାଉଥିଲେ ତାହା ଶ୍ରୋତାମାନଙ୍କ ପାଇଁ ଉପାଦେୟ ହେଉଥିଲା ।

ଓଡ଼ିଆ ବିଭାଗର ଅନ୍ୟତମ ପ୍ରଫେସର ପଠାଣି ପଟ୍ଟନାୟକ । ତାଙ୍କର ଅଧ୍ୟାପନା ଶୈଳୀ ଅନନ୍ୟ ସାଧାରଣ । ଓଡ଼ିଆ ସାହିତ୍ୟ ଜଗତର ସେ ଜଣେ କୃତବିଦ୍ୟ ସାଧକ । କବିବର ରାଧାନାଥ ରାୟଙ୍କ ରଚିତ 'ଚିଲିକା' କାବ୍ୟର ପ୍ରାରମ୍ଭରେ ଥିବା,

"ଉତ୍କଳ-କମଳା-ବିଳାସ ଦୀର୍ଘିକା
ମରାଳ-ମାଳିନୀ-ନୀଳାମ୍ବୁ ଚିଲିକା
ଉତ୍କଳର ତୁହି ଚାରୁ ଅଳଙ୍କାର
ଉତ୍କଳ ଭୁବନେ ଶୋଭାର ଭଣ୍ଡାର ।" ପଂକ୍ତିକୁ ସେ ଯେଉଁଳି ସରଳ ଭାଷାରେ ଆମକୁ ବୁଝାଇଥିଲେ, ସେ କଥା ଆଜି ପର୍ଯ୍ୟନ୍ତ ମନେ ରହିଯାଇଛି । ସେହିପରି,

"ଇତିହାସ ରଙ୍ଗସ୍ଥଳି ତୁ ଚିଲିକା
ତୋର ତୀରେ ପରା ଶ୍ରୀମତୀ ମାଣିକା
ହସ୍ତୁ ଭୁଞ୍ଜିଥିଲେ ସାଦରେ ଲବଣୀ

ଭାବଗ୍ରାହୀ ପ୍ରଭୁ ଭକ୍ତ ଚିନ୍ତାମଣି ।" ପଂକ୍ତିକୁ ବୁଝାଉଲା ବେଳେ ଉତ୍କଳର ମଉଡ଼ମଣି ରାଜା ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ବିଷୟ ବସ୍ତୁକୁ ଏପରି ଭାବରେ ବ୍ୟାଖ୍ୟା କରୁଥିଲେ, ତାହା ଭୁଲିବାର ନୁହଁ । କିମ୍ବଦନ୍ତୀରୁ ଜଣାଯାଏ, ଉତ୍କଳର ଗଜପତି ମହାରାଜା ପୁରୁଷୋତ୍ତମ ଦେବ କାଞ୍ଚି ରାଜାଙ୍କ ଠାରୁ ପ୍ରଥମ ଯୁଦ୍ଧରେ ପରାଜିତ ହୋଇଥିଲେ । ଏଥିରେ ସେ ଦୁଃଖରେ ଭାଙ୍ଗି ପଡିଥିଲେ । ଦ୍ୱିତୀୟଥର କାଞ୍ଚି ଅଭିଯାନରେ ଯିବାପାଇଁ ମହାରାଜା ଜଗତରନାଥ ଶ୍ରୀଜଗନ୍ନାଥଙ୍କ ପାଖରେ ଗୁହାରି କରିଥିଲେ । ମହାପ୍ରଭୁ ରାଜାଙ୍କୁ ସ୍ୱପ୍ନାଦେଶ ଧଳାଘୋଡ଼ା ଓ କଳାଘୋଡ଼ାରେ ଚଢ଼ି ଯୁଦ୍ଧକ୍ଷେତ୍ରକୁ ଯିବା ପାଇଁ ପ୍ରତିଶ୍ରୁତି ଦେଇଥିଲେ । କାଞ୍ଚି ଯାତ୍ରା ସମୟରେ ଦୁଇଭାଇ (ଶ୍ରୀଜଗନ୍ନାଥ ଓ ଶ୍ରୀ ବଳଭଦ୍ର) ତୃଷା ନିବାରଣ ପାଇଁ ମାଣିକ ଗଉଡୁଣୀ ହାତରୁ ଦହି ଖାଇଥିଲେ । ଏ ଘଟଣାକୁ କବିବରଙ୍କ ରଚନା ଯେତିକି ରସମୟ କରିଥିଲା, ଅଧ୍ୟାପକ ଶ୍ରୀ ପଟ୍ଟନାୟକଙ୍କ ବର୍ଣ୍ଣନା ତତୋଽଧିକ ମନଛୁଆଁ ହେଉଥିଲା ।

କଲେଜର ଇଂରାଜୀ ଅଧ୍ୟାପକ ଶ୍ରୀ ବାନାର୍ଜୀ ବ୍ୟବହାରରେ ଖୁବ୍ ଅମାୟିକ ଥିଲେ । ଇଂରାଜୀ ଅଧ୍ୟାପନା କ୍ଷେତ୍ରରେ ତାଙ୍କର ପ୍ରବୀଣ ଜ୍ଞାନ ଥିଲା । ତାଙ୍କର ଗୋରା ଦେହକୁ ଧୋତି ଓ ସିଲ୍କ ପଞ୍ଜାବୀ ଖୁବ୍ ମାନେ । ସେ ମୁଖ୍ୟତଃ ଗଦ୍ୟ ପଢ଼ାଉଥିଲେ ।

ଅର୍ଥନୀତି ଅଧ୍ୟାପକ ସୁବ୍ରମଣ୍ୟମ ଥିଲେ ଅତ୍ୟନ୍ତ ଧୀଶକ୍ତି ସମ୍ପନ୍ନ ବ୍ୟକ୍ତି । ଅଧିକାଂଶ ଛାତ୍ରଙ୍କ ନାଁ ଓ ରୋଲ ନମ୍ବର ସେ ମନେ ରଖିପାରୁଥିଲେ । ତାଙ୍କ କ୍ଲାସରେ ପ୍ରକ୍ସି ପକାଇବା ସମ୍ଭବ ହେଉନଥିଲା । ଇକୋନମିକ୍ସ ପାଠ ପ୍ରାୟତଃ ତାଙ୍କ ମୁହଁରେ ଥିଲା । ଅର୍ଥନୀତି ବିଭାଗର ଅନ୍ୟତମ ଅଧ୍ୟାପକ କୁଞ୍ଜୁର୍ ଜାକବ ଥିଲେ ଅତ୍ୟନ୍ତ ବାସ୍ତବବାଦୀ । ଯେଉଁଦିନ ସେ ପ୍ରଥମେ କ୍ଲାସ ନେବାକୁ ଆସିଲେ, ପାଠପଢ଼ା ଆରମ୍ଭ ପୂର୍ବରୁ କେତୋଟି ଇଂରାଜୀ ଶବ୍ଦର ବନାନ ଲେଖି ତାଙ୍କୁ ଦେବାକୁ କହିଲେ । ମୋର ଆଜି ବି ମନେପଡୁଛି ସେ ଶବ୍ଦ ମଧ୍ୟରେ ଥିଲା Tuition, Assam, Life buoy, Colleague, Diarrhoeo, Pneuemonia ଭଳି କେତେକ ନିତ୍ୟ ବ୍ୟବହାର୍ଯ୍ୟ ଶବ୍ଦ । ଆମ ଭିତରୁ ଅଧିକାଂଶ ସେ ଶବ୍ଦଗୁଡିକର ଠିକ୍ ବନାନ ଲେଖିପାରିନଥିଲୁ । ଅଧ୍ୟାପକ ଜାକବ ସେ ଦିନ ଆମ ଉପରେ ବିରକ୍ତ ହୋଇ ନଥିଲେ । ମାତ୍ର ଆମର ଦୁର୍ବଳ ଇଂରାଜୀ ଜ୍ଞାନ ଯୋଗୁ ଦୁଃଖପ୍ରକାଶ କରିଥିଲେ । ତାଙ୍କ ଦୁଃଖପ୍ରକାଶ ଫଳରେ ଆଉ କାହାର କିଛି ହେଉ ନହେଉ କିନ୍ତୁ ମୋର ଗୋଟିଏ ଲାଭ ହୋଇଥିଲା । ଅନ୍ତତଃ ଏହି ଇଂରାଜୀ ଶବ୍ଦଗୁଡିକ ଲେଖିଲା ବେଳେ ଭବିଷ୍ୟତରେ ଆଉ କେବେ ଭୁଲ୍ ହୋଇନଥିଲା ।

କ୍ରାଏଷ୍ଟ କଲେଜରେ ପଢ଼ିଲାବେଳେ ସାଙ୍ଗମେଳରେ ପଡ଼ି ପାଠ ସାଙ୍ଗକୁ ଶାଠରେ ବେଶୀ ମାତିଗଲି । ସ୍କୁଲରେ ପଢ଼ିଲାବେଳେ ଏନ.ସି.ସିରେ ଅଳ୍ପଦିନ ପାଇଁ ଯୋଗ ଦେଇଥିଲି । କେଜାଣି କାହିଁକି ଖାକି ପୋଷାକ ପ୍ରତି ମୋ ମନରେ ଦୁର୍ବଳତା ସୃଷ୍ଟି ହୋଇଥିଲା । କଲେଜରେ ପୁଣି ଏନ୍‌ସିସିରେ ଯୋଗଦେଲି । ସେତେବେଳେ ଓଡ଼ିଶାରେ ଥାଟିନ୍ ସର୍କଲ ଏନ୍‌ସିସି ଥିଲା ।

ତା' ଦାୟିତ୍ୱରେ ସୈନ୍ୟବାହିନୀର ଜଣେ ଲେଫ୍ଟନାଣ୍ଟ କର୍ଣ୍ଣେଲ ରହିଥିଲେ । ଥାର୍ଟିନ୍ ସର୍କଲ ଅଧୀନରେ କେତେଗୁଡିଏ ବାଟାଲିଅନ ରହିଥିଲା । କଟକରେ ଥିଲା ପ୍ରଥମ ବାଟାଲିଅନ ଏନ୍‌ସିସି । ପୁଣି ଗୋଟିଏ ବାଟାଲିଅନ ଅଧୀନରେ ଥିଲା ଏ, ବି, ସି, ଡି ଏହିପରି ଚାରୋଟି କମ୍ପାନୀ ।

କଟକରେ ଥିବା 'ଏ' କମ୍ପାନୀ ଅଧୀନରେ କ୍ରାଏଷ୍ଟ କଲେଜ ଥିଲା । କ୍ରାଏଷ୍ଟ କଲେଜର ମ୍ୟାଥ୍‌ମେଟିକ୍‌ସ ଅଧ୍ୟାପକ ଏମ୍. ଏନ. ରାୟ ଥିଲେ କମାଣ୍ଡାଣ୍ଟ । ଭାରି ଧୀରସ୍ଥିର ଅଫିସର । କିନ୍ତୁ ନୀତି ନିୟମରେ ସାଲିସ୍ କରୁନଥିଲେ । ଆମର ସେତେବେଳେ ରବିବାର ସକାଳେ ଓ ବୁଧବାର ଉପରଓଳି ପ୍ୟାରେଡ୍ ହେଉଥିଲା । ପ୍ୟାରେଡ ଶେଷରେ ବୁଧବାର ଦିନ ଚାରଣା ଓ ରବିବାର ଦିନ ଆଠଣାର ଜଳଖିଆ ମିଳୁଥିଲା । ସେଥିରେ ଥିଲା ଗୋଟିଏ ବରା, ଗୋଟିଏ ସିଙ୍ଗଡା, ଗୋଟିଏ ଆଳୁଚପ ଓ ଗୋଟିଏ ଲଡୁ । ଆଠଣା ପ୍ୟାକେଟରେ ଗୋଟିଏ ରସଗୋଲା କିମ୍ବା ଗୋଲାପ ଜାମୁ ଅଧିକ ରହୁଥିଲା । ବେଳେବେଳେ କେତେ ପିଲା ପ୍ୟାରେଡ୍‌କୁ ନଆସି ପାରିଲେ ଆମକୁ ତାଙ୍କ ପ୍ରେଜେଣ୍ଟ ପକାଇ ଦେବାକୁ ଅନୁରୋଧ କରନ୍ତି । ଆମେ ସେମାନଙ୍କ ପ୍ରେଜେଣ୍ଟ ଖାତାରେ ପକାଇ ଦେଉ । ଏଥିରେ ଆମର ମଧ ଲାଭ ହେଉଥିଲା । ଯେତେ ଅଧିକ ପ୍ରେଜେଣ୍ଟ ପଡୁଥିଲା, ସେତିକି ଅଧିକ ଜଳଖିଆ ପ୍ୟାକେଟ୍ ମିଳୁଥିଲା । କଟକ ସହରର ରାଣୀହାଟ ଛକ ନିକଟରେ ଥିବା କଟକ ସୁଇଟ୍‌ସ ଷ୍ଟଲର ମାଲିକ ଗୋଟିଏ ଟୋକେଇରେ ଜଳଖିଆ ଧରି ରିକ୍ସାରେ ପ୍ୟାରେଡ୍ ସ୍ଥାନକୁ ଆସୁଥିଲେ । ଏତେବଡ଼ ଦୋକାନର ମାଲିକ ହେଲେ ବି ତାଙ୍କ ମନରେ ଅହଙ୍କାର କିମ୍ବା ଗର୍ବ ନଥିଲା । ସମସ୍ତଙ୍କ ସାଙ୍ଗରେ ହସି ହସି କଥା କହୁଥିଲେ । ଜଳଖିଆ ଯାହା ବଳେ ଫେରାଇ ନନେଇ ପିଲାମାନଙ୍କୁ ବାଣ୍ଟି ଦିଅନ୍ତି ।

ରେଭେନ୍ସା କଲେଜରେ ଏମ.ଏ. ପଢୁଥିବା ଅଣ୍ଡର ଅଫିସର ବିମଳେନ୍ଦୁ ମହାନ୍ତି (ପରବର୍ତ୍ତୀ ଅବସ୍ଥାରେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର କୁଳପତି) ରମାପଦ ଚିନ୍ତକ (ଉତ୍କଳ ବିଶ୍ୱବିଦ୍ୟାଳୟର ଛାତ୍ର କଲ୍ୟାଣ ଅଫିସର) ଅରୁଣ ପଟ୍ଟନାୟକ ପ୍ରମୁଖ ଆସି ଆମକୁ ପ୍ୟାରେଡ୍ କରାନ୍ତି । ସେମାନଙ୍କ ସୁପାରିଶ କ୍ରମେ କ୍ୟାଡେଟ୍‌ମାନଙ୍କର ପ୍ରମୋଶନ ହେଉଥିଲା ।

ସେତେବେଳେ ବର୍ଷରେ ଦୁଇଥର ଏନ.ସି.ସି. କ୍ୟାମ୍ପ ହେଉଥିଲା । ଥରେ ଜୁନ୍ ମାସରେ, ଆଉ ଥରେ ଡିସେମ୍ବରରେ । ସାଧାରଣତଃ ବ୍ରହ୍ମପୁର ନିକଟବର୍ତ୍ତୀ ଗୋପାଳପୁର, ଚୌଦ୍ୱାର ନିକଟସ୍ଥ ଚାରିବାଟିଆ ବା ହୀରାକୁଦ ଡ୍ୟାମ ତଳେ ଏହି କ୍ୟାମ୍ପ ସବୁ ପଡୁଥିଲା । କ୍ୟାମ୍ପ ଜୀବନ ଥିଲା ସମ୍ପୂର୍ଣ୍ଣ ଅଲଗା । ସେଠି ସାଧାରଣ ଜୀବନର ସୁଖସୁବିଧା ମିଳେ ନାହିଁ । ତମ୍ବୁ ଭିତରେ ଦରି ପକାଇ ମାଟିରେ ଶୋଇବାକୁ ପଡେ । ଶୃଙ୍ଖଳା ଭିତରେ ଚବିଶ ଘଣ୍ଟା କଟାଇବାକୁ ହୁଏ । ଗୋଟିଏ ଗୋଟିଏ କ୍ୟାମ୍ପରେ ସ୍ୱାଭାବିକ ଭାବରେ ପାଖାପାଖି ପାଞ୍ଚଶହ କ୍ୟାଡେଟ୍ ଯୋଗ ଦେଉଥିଲେ । ଭୋର୍ ପାଞ୍ଚଟା ବେଳୁ ସନ୍ଧ୍ୟା ପର୍ଯ୍ୟନ୍ତ କିଛି ନା କିଛି ତାଲିମ୍

ଦିଆଯାଉଥାଏ । କଠିନ ପରିଶ୍ରମ ସାଙ୍ଗକୁ ମନ ମୁତାବକ ଖାଇବା ମିଳେ ନାହିଁ । ସେଥିପାଇଁ ପିଲାଙ୍କ ମନ ଉଣାଥାଏ । କିନ୍ତୁ ଶୃଙ୍ଖଳାର ଗଣ୍ଡି ଭିତରେ ପ୍ରତିକ୍ରିୟା ପ୍ରକାଶ କରିବାର କିଛି ସୁଯୋଗ ନଥାଏ ।

ବୋଧହୁଏ ୧୯୫୯ ମସିହାର ଘଟଣା । ହୀରାକୁଦ ଆଇଲ୍ୟାଣ୍ଡରେ କ୍ୟାମ୍ପ ପଡିଥିଲା । କ୍ୟାମ୍ପ ଶେଷଦିନ ରାଜ୍ୟପାଳଙ୍କର ସେଠାକୁ ଯିବାର କାର୍ଯ୍ୟକ୍ରମ ଥିଲା । ଧୀରେନ ରାୟ(ଇନ୍‌କମ ଟ୍ୟାକ୍ସର ମୁଖ୍ୟ କମିଶନର) ଶାନ୍ତ ମଜୁମଦାର(ରାଜନୀତି ବିଜ୍ଞାନର ପ୍ରଧ୍ୟାପକ) ମୁଁ ଓ ମୁସ୍ତାଫିଜ ଅହମ୍ମଦ (ଓଡ଼ିଶାର ଏକ ସମୟର ସ୍ୱାସ୍ଥ୍ୟମନ୍ତ୍ରୀ) ଏକାଠି ବସି ବିଚାର କଲୁ, କ୍ୟାମ୍ପରେ ଯୋଉସବୁ ଅସୁବିଧା ହେଉଛି ସେଥିପ୍ରତି ରାଜ୍ୟପାଳଙ୍କ ଦୃଷ୍ଟି ଆକର୍ଷଣ କରିବୁ । କ୍ୟାମ୍ପରେ ସିଲଭର ଥାଳିରେ ଖାଇବାକୁ ଦିଆଯାଉଥିଲା । ଆମେ ସେଦିନ ନଖାଇ ଥାଳିରେ ବଢ଼ା ଯାଇଥିବା ଖାଦ୍ୟକୁ ଧରି ରାଜ୍ୟପାଳଙ୍କ ପାଖକୁ ଯିବାକୁ ବାହାରିଲୁ ।

କ୍ୟାମ୍ପରେ ଚହଳ ପଡିଗଲା । ସମ୍ବିଧାନ ଦୃଷ୍ଟିରୁ ରାଜ୍ୟପାଳ ପ୍ରଶାସନର ସର୍ବୋଚ୍ଚ ମୁଖ୍ୟ । ତାଙ୍କ କାନକୁ ଯଦି ସବୁକଥା ଯିବ, ତେବେ ଅଫିସରମାନଙ୍କର ନାକ କଟିଯିବ । ସେଥିପାଇଁ ଅଫିସରମାନେ ଆମ ପାଖକୁ ଧାଇଁଲେ । ଆମର ଏକା ଜିଦ୍ । ଆମେ ରାଜ୍ୟପାଳଙ୍କୁ ଦେଖାକରି ସବୁକଥା ଜଣାଇବୁ । ବହୁ ବୁଝାଶୁଝା ପରେ ଆମେ ଜିଦ୍‌ରୁ ଓହରିଲୁ । କ୍ୟାମ୍ପ ଦାୟିତ୍ୱରେ ଥିବା ଅଫିସରମାନେ ଅପଦସ୍ଥ ହେବାରୁ ରକ୍ଷା ପାଇଗଲେ । ମାତ୍ର ଯେକୌଣସି ଅନ୍ୟାୟର ପ୍ରତିବାଦ କରିବା ପାଇଁ ସେ ଘଟଣା ଆମକୁ ସାହସ ଓ ଶକ୍ତି ଯୋଗାଇଥିଲା ।

୧୯୬୨ ମସିହାରେ ଚୀନ୍ ଭାରତ ଉପରେ ଅପ୍ରତ୍ୟାଶିତ ଭାବରେ ସାମରିକ ଆକ୍ରମଣ କରିଥିଲା । ସେତେବେଳେ ସେହି ଘଟଣା 'ହିନ୍ଦୀ-ଚୀନ୍ ଭାଇ ଭାଇ'ର ପ୍ରବକ୍ତା, ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ମନରେ ଦାରୁଣ ଆଘାତ ଦେଇଥିଲା । ଯୁଦ୍ଧର ଅବସାନ ପରେ ଭାରତ ସରକାର ସେନାବାହିନୀକୁ ସହାୟତା କରିବା ଉଦ୍ଦେଶ୍ୟରେ ଦେଶରେ ଏକ ଅର୍ଦ୍ଧସେନାବାହିନୀ ଗଠନ କରିବା ପାଇଁ ନୀତିଗତ ଭାବରେ ନିଷ୍ପତ୍ତି ନେଲେ । ସେହି ନିଷ୍ପତ୍ତିର ଅଂଶସ୍ୱରୂପ ଦେଶର ବିଭିନ୍ନସ୍ଥାନରୁ ବଛା ବଛା ଏନ.ସି.ସି କ୍ୟାଡେଟମାନଙ୍କୁ ଆଣି ସାମରିକ ତାଲିମ୍ ଦେବାକୁ ଏକ ଯୋଜନା ପ୍ରସ୍ତୁତ କରାଯାଇଥିଲା । ଏହି ଯୋଜନାରେ ଓଡ଼ିଶାରୁ ତିନିଜଣ କ୍ୟାଡେଟ ତାଲିମ୍ ନେବାପାଇଁ ବଛା ଯାଇଥିଲେ । ସେମାନଙ୍କ ମଧ୍ୟରେ ମୁଁ ମନୋନୀତ ହୋଇଥିଲି ।

ପୁନେ ନିକଟବର୍ତ୍ତୀ ମହାବଳେଶ୍ୱରର ଏକ ପାହାଡ ଉପରେ ତାଲିମ୍ ଶିବିର ଖୋଲାଯାଇଥିଲା । ସେଥିରେ ଆମକୁ ଯୋଗ ଦେବାପାଇଁ ନିର୍ଦ୍ଦେଶ ଆସିଲା । ଏନ୍.ସି.ସି ଅଫିସରୁ କିଟ୍‌ବ୍ୟାଗ ଓ ଆବଶ୍ୟକୀୟ କାଗଜପତ୍ର ସଂଗ୍ରହକରି ଆମେ ବାହାରିଲୁ । ଆମେ କ୍ୟାମ୍ପରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ହୋଇଯାଇଥିଲା । ଦେଶର ୧୬ଟି ରାଜ୍ୟରୁ ୪୦ଜଣ

କ୍ୟାଡେଟ ଆସି ସେଠାରେ ପହଞ୍ଚି ସାରିଥିଲେ । ସେଠାରେ ଥିବା ଗୋଟିଏ ହଲ୍‌ରେ ଆମର ରହିବାର ବ୍ୟବସ୍ଥା ହୋଇଥିଲା । ଆମକୁ ଖଣ୍ଡିଏ କମ୍ବଳ ଓ ବେଡସିଟ୍ ଦିଆଯାଇଥିଲା । ଆମେ ସାଙ୍ଗରେ ଥାଳି, ତାଟିଆ, ଗ୍ଲାସ ଓ ମଗ ନେଇଥିଲୁ ।

ତାଲିମ୍ ଶିବିର ପରିଚାଳନା କରିବା ପାଇଁ ସଦ୍ୟ ଯୁଦ୍ଧରୁ ଫେରିଥିବା କ୍ୟାପଟେନ ରାଣାଡ଼େ ଓ ମେଜର ନିମ୍ବାଲକରଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ ଥିଲା । କ୍ୟାପଟେନ ରାଣାଡେ ଅତ୍ୟନ୍ତ ନିଷ୍ଠୁର ବ୍ୟକ୍ତି ଥିଲେ । ତାଲିମ୍ ସମୟରେ ତାଙ୍କର ଦୟାମାୟା କିଛି ନଥିଲା । ପରେ ଶୁଣିଲୁ, ଲଢ଼େଇର ଲୋମହର୍ଷଣକାରୀ ଦୃଶ୍ୟସବୁ ଦେଖି ଦେଖି ତାଙ୍କ ହୃଦୟ କଠୋର ହୋଇଯାଇଥିଲା । ମାତ୍ର ମେଜର ନିମ୍ବାଲକର ଅପେକ୍ଷାକୃତ ଶାନ୍ତ ଓ କୋମଳ ହୃଦୟର ବ୍ୟକ୍ତି ଥିଲେ ।

ସବୁ କ୍ୟାଡେଟ୍‌ମାନେ ପହଞ୍ଚିଗଲା ପରେ ପ୍ରଥମେ ଆମର ରୋଲ୍‌କଲ୍ ହେଲା । ରୋଲ୍‌କଲ୍ ବେଳେ କ୍ୟାପଟେନ୍ ରାଣାଡେ ଅତି କଠୋର ଭାଷାରେ ଆମକୁ କହିଲେ, "You forget your college life. You are bloody jawans of the Aarmy and you will be treated accordingly" (ତମେ ସବୁ ତମ କଲେଜ ଜୀବନକୁ ଭୁଲିଯାଅ, ଏଣିକି ତମେ ହେଉଛ ଆର୍ମିର ଜବାନ ଏବଂ ତମକୁ ସେହିଭଳି ବ୍ୟବହାର କରାଯିବ) । ଏତିକି କହି ସେ ଜଣେ ବାରିକକୁ ଡକାଇଲେ । ମୁଣ୍ଡରେ ଟୋପି ପିନ୍ଧିବା ପରେ ଯେତିକି ଚୁଳ ବାହାରକୁ ଦେଖାଯାଉଥିଲା, ତାକୁ ଖୁରରେ ଚାଞ୍ଛି ଦେବାକୁ ତାକୁ ହୁକୁମ ଦେଲେ । ପାଟିରୁ ହୁକୁମ ବାହାରିବା ମାତ୍ରେ ସାଙ୍ଗେସାଙ୍ଗେ କାର୍ଯ୍ୟକାରୀ ହେଲା । କେଇ ମିନିଟ୍ ଭିତରେ ଆମେ ସବୁ କିମ୍ଭୂତ କିମାକାର ଦେଖାଗଲୁ । ପାଟି ଫିଟାଇବାର ଯୁ' ନଥିଲା ।

ତାଲିମ ଶିବିରରେ ଦିନକୁ ବାରଘଣ୍ଟା ପରିଶ୍ରମ । ସକାଳ ପାଞ୍ଚଟାରେ ଡ୍ରିଲ୍ ସାଙ୍ଗକୁ ରାସ୍ତାରେ ଦୌଡ଼ । ପରେ ଥିଓରି କ୍ଲାସ । କ୍ଲାସରେ 'ସ୍ୟାଣ୍ଡ ମଡେଲିଂ' ଠାରୁ ଆରମ୍ଭ କରି ମେସେଜ ରାଇଟିଂ, 'ମକ୍‌ୱାର'ର କୌଶଳ ସମ୍ପର୍କରେ ଶିକ୍ଷା ଦିଆଯାଉଥିଲା । ଦିନେ ଛଡ଼ା ଦିନେ ବ୍ୟବଧାନରେ ରୁଟ୍ ମାର୍ଚ୍ଚ । ରୁଟ୍ ମାର୍ଚ୍ଚର ପ୍ରଥମ ଦିନ ପାଞ୍ଚ କିଲୋ ଓଜନର ସାମଗ୍ରୀ ସାଙ୍ଗରେ ନେଇ ତିନି କିଲୋମିଟର ପଥ ଯିବାକୁ ପଡିଥିଲା । ମଝିରେ ମଝିରେ କ୍ରସ୍‌କଣ୍ଟ୍ରି ପଡେ । ଅର୍ଥାତ୍ ସାଙ୍ଗରେ ଦିନକର ଖାଦ୍ୟ ସାମଗ୍ରୀ, ବନ୍ଧୁକ ଇତ୍ୟାଦି ନେଇ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯିବାକୁ ପଡୁଥିଲା । ଯିବା ପୂର୍ବରୁ ଯେଉଁ ବାଟ ଦେଇ ଯିବାକୁ ହେଉଥିଲା, ସେ ପଥ ସମ୍ପର୍କରେ ବୁଝାଇ ଦିଆଯାଉଥିଲା । କିନ୍ତୁ ବାଟରେ ଥିବା ଅସୁବିଧା ସମ୍ପର୍କରେ କୌଣସି ସୂଚନା ଦିଆଯାଉନଥିଲା ।

ବାଟରେ ଗଲାବେଳେ ରାସ୍ତା ମଝିରେ ଗୋଟିଏ ବଡ଼ ଖାଲ ଦେଖି ଆମେ କିଛି ବୁଝି ପାରିନଥିଲୁ । ସେ ଖାଲ ଭିତରେ ଭଙ୍ଗା ଇଟା, କଣ୍ଟା ଇତ୍ୟାଦି ପଡିଥିଲା । ଖାଲ ମଝିରେ

ଗୋଟିଏ ଗଛ ଡାଳରୁ ଗୋଟିଏ ଦଉଡ଼ି ଓହଳିଥିଲା । ସେ ଦଉଡାକୁ ଧରି ଖାଲଟି ପାର୍ ହେବାକୁ ଆମକୁ କୁହାଗଲା । ଖାଲର ବ୍ୟାସାର୍ଦ୍ଧ ପ୍ରାୟ ପନ୍ଦର ଫୁଟ୍ ଥିଲା । ଦେହରେ ସାମରିକ ପୋଷାକ । ପାଣି ବୋତଲ ସାଙ୍ଗକୁ ଖାଦ୍ୟ ସାମଗ୍ରୀ ଓ ବନ୍ଧୁକ । ସେସବୁ ଧରି ପାର୍ ହେବା ସମ୍ଭବ ନୁହେଁ ବୋଲି ମନେ ହେଉଥିଲା । କିନ୍ତୁ ଆମ ସାଙ୍ଗରେ ଥିବା ଇନଷ୍ଟ୍ରକ୍ଟରମାନଙ୍କ ସାହସପୂର୍ଣ୍ଣ ବାକ୍ୟରେ ଆମେ ଅନାୟାସରେ ସେ ଅସୁବିଧାକୁ ପାର୍ ହୋଇଗଲୁ । ସେହିପରି ବାଟରେ ଆହୁରି ଅନେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡିଥିଲା ।

ତାଲିମ୍ ଶିବିରରେ ମାସକର ରହଣି ସମୟ ମଧ୍ୟରେ ଆମକୁ ସବୁପ୍ରକାର ସାମରିକ କୌଶଳ ବିଷୟରେ ଶିକ୍ଷା ଦିଆଯାଇଥିଲା । ଏପରିକି ଆମକୁ ଛାୟାଯୁଦ୍ଧର ସମ୍ମୁଖୀନ ହେବାକୁ ପଡିଥିଲା । ତାଲିମ୍ ସମୟରେ ଆମକୁ ବନ୍ଧୁକ ଚାଳନା, ବାୟୋନେଟ ଫାଇଟିଂ ଏବଂ ଲାଇଟ୍ ମେସିନ୍ ଗନ ଚଳାଇବାର କୌଶଳ ଆୟତ୍ତ କରିବାକୁ ପଡିଥିଲା । ତାଲିମ୍ ଶିବିରରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ଥିଲା ସମୟାନୁବର୍ତ୍ତିତା ଓ ଶୃଙ୍ଖଳା । ସେଥିରେ କେହି ସାଲିସ୍ କରୁନଥିଲେ । ତାଲିମ୍ ସମୟର ସେହି ସମୟାନୁବର୍ତ୍ତିତା ପରବର୍ତ୍ତୀ ଜୀବନରେ ମୋର ବ୍ୟକ୍ତିତ୍ୱର ଏକ ଅଂଶ ହୋଇଗଲା । କୌଣସି କାର୍ଯ୍ୟକ୍ରମରେ ସାମାନ୍ୟ ବିଳମ୍ବ ହେଲେ ମୁଁ ସହ୍ୟ କରିପାରୁନଥିଲି ।

କଲେଜରେ ଅଧ୍ୟୟନ କରୁଥିବା ସମୟରେ ମୁଁ କେନ୍ଦ୍ର ସରକାରଙ୍କ ଅଧୀନରେ ଚାକିରି କରିବାର ସୁଯୋଗ ପାଇଥିଲି । ମାତ୍ର ସାଙ୍ଗମାନଙ୍କ ଟାହିଟାପରା ଯୋଗୁ ତାକୁ ହରାଇଥିଲି ।

ଆମ ଘରପାଖରେ ମଇନୁଦ୍ଦିନ ଅହମ୍ମଦ ଆଇ.ଏ.ଏସ୍ ଘର କରିଥିଲେ । ସେ ଜନଗଣନା ନିର୍ଦ୍ଦେଶକ ହୋଇଥିଲେ । ଆମ ବାରିରେ ଗୋଟିଏ ଭଲ କଦଳୀ କାନ୍ଧି ଫଳିଥିଲା । ପଡ଼ୋଶୀ ଭାବରେ ତାଙ୍କ ଘରକୁ ମୁଁ ଫେଣାଏ କଦଳୀ ନେଇ ଯାଇଥିଲି । ମୁଁ କ୍ରାଏଷ୍ଟ କଲେଜରେ ପଢୁଥିବା ଜାଣି ଦିନରେ ତାଙ୍କ ଅଫିସରେ ଜଏନ କରି କିଛି ଟଙ୍କା ରୋଜଗାର କରିବା ପାଇଁ ପରାମର୍ଶ ଦେଇଥିଲେ । ସେହି ଅନୁସାରେ ମୁଁ ଜନଗଣନା ଅଫିସରେ ଜଣେ ଆସିଷ୍ଟାଣ୍ଟ ଭାବରେ ଯୋଗ ଦେଇଥିଲି । ସାଙ୍ଗମାନେ ସେ କଥା ଜାଣି ମତେ ନାନାପ୍ରକାର ଥଟ୍ଟା କଲେ । ମୁଁ ଅଳ୍ପଦିନ ଭିତରେ ଚାକିରି ଛାଡ଼ିଦେଲି ।

ସେହିପରି ଢ଼େଙ୍କାନାଳ-କେନ୍ଦୁଝର ମେଜର ସେଟଲମେଣ୍ଟରେ ମଧ୍ୟ ମୁଁ କିଛି ଦିନ ଚାକିରି କରିଥିଲି । ମୁଁ ବି.ଏ. ପରୀକ୍ଷା ଦେଇ ଘରେ ବସିଥିଲି । ଥରେ ଜଗତସିଂହପୁର ଅଞ୍ଚଳର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପ୍ରାଣକୃଷ୍ଣ ପଢିଆରୀଙ୍କ ପୁଅ ସତ୍ୟବ୍ରତ ପଢିଆରୀ ଆସି ଆମ କଟକ ଘରେ ପହଞ୍ଚିଥିଲେ । ସେ ଆମ ଘରକୁ ମଝିରେ ମଝିରେ ଆସନ୍ତି । ଦାଦାଙ୍କ ସହିତ କିଛି ସମୟ କଥାବାର୍ତ୍ତା ହୋଇ ଚାଲିଯାଆନ୍ତି । ମୋ ସାଙ୍ଗରେ ଯେତେବେଳେ ଦେଖାହୁଏ, ସେତେବେଳେ ସେ ପଚାରନ୍ତି, "ଆଜିକାଲି କ'ଣ ହେଉଛି ? ପରୀକ୍ଷା ଫଳ ବାହାରିବାକୁ

ତେଲି ଅଛି । ତୁ ଯଦି କହିବୁ ମୁଁ ତୋ ପାଇଁ ଗୋଟିଏ ଚାକିରି ଯୋଗାଡ଼ କରିଦେବି । ହାତକୁ କିଛି ପଇସା ଆସିଯିବ । ଏମ୍‌ଏ ପଢ଼ିଲାବେଳେ କାମରେ ଆସିବ ।"

ତାଙ୍କ ପ୍ରସ୍ତାବଟି ମନକୁ ପାଇଲା । ମୁଁ କହିଲି, "ଆପଣ ବୁଝନ୍ତୁ । ମୁଁ ଚାକିରି କରିବି । କିନ୍ତୁ ବେଶୀଦିନ ପାଇଁ ନୁହଁ । ବାଣୀବିହାରରେ ନାଁ ଲେଖାଇଲା ପରେ ଛାଡ଼ିଦେବି ।" ଦି'ଦିନ ପରେ ସେ ଆସି ମତେ ତାଙ୍କ ସାଙ୍ଗରେ ସେଟଲମେଣ୍ଟ ଅଫିସକୁ ନେଇଗଲେ । ସେ ଅଫିସଟି ସେତେବେଳେ ସନ୍‌ସାଇନ୍ ପଡ଼ିଆ ପାଖରେ ଗୋଟିଏ ଭଡ଼ାଘରେ ଚାଲୁଥିଲା । ସେଟଲମେଣ୍ଟ ଅଫିସର ଥିଲେ ଚୌଧୁରୀ ରାଜକିଶୋର ମିଶ୍ର । ଗଲାବେଳେ ସତ୍ୟବ୍ରତବାବୁ ମତେ ଗୋଟିଏ କଥା ବତେଇଥିଲେ ଯେ, ହାକିମ ପଚାରିଲେ କହିବୁ, "ମୁଁ ଗରିବ ପିଲା । ଘରେ ଆଉ କେହି ରୋଜଗାରିଆ ନାହାନ୍ତି । ହଜୁର ମତେ ଚାକିରି ଖଣ୍ଡେ ଦେଲେ ଆମ ପରିବାର ଚଳିଯାଆନ୍ତା ।"

ଆମେ ସାଢ଼େ ଦଶଟାବେଳେ ଅଫିସରେ ପହଞ୍ଚିଲୁ । ଅଫିସର ଆସି ଯାଇଥିଲେ । ସତ୍ୟବ୍ରତବାବୁ ବୋଧହୁଏ ମୋ ବିଷୟରେ ତାଙ୍କୁ ଆଗରୁ କିଛି କହିଥିଲେ । ମତେ ଦେଖି ଅଫିସର ପଚାରିଲେ, "କୋଉଯାଏ ପଢ଼ିଛ ? ଆମ ଅଫିସରେ ଭିଡ଼ କାମ, ଠକିଲେ ଚଳିବ ନାହିଁ । ହଉ ଯାଅ ।" ମୁଁ ବାହାରକୁ ଚାଲିଗଲି । କିଛି ସମୟ ପରେ ସତ୍ୟବ୍ରତବାବୁ ଆସି ମତେ କହିଲେ, "ତୋ ଭାଗ୍ୟ ଭଲ । ତୋ ଚାକିରି ହୋଇଗଲା । ତୁ କାଲିଠୁ ଆସି ଜଏନ୍ କର ।"

ତାଙ୍କ କଥା ମାନି ମୁଁ ତା' ପରଦିନ ଯାଇ ଅଫିସରେ ଯୋଗ ଦେଲି । ସେଦିନ ଆଉ ଜଣେ ଯୁବକ ମଧ୍ୟ ଯୋଗ ଦେଇଥିଲେ । ପୁରୁଣା ସେଟଲମେଣ୍ଟ ରେକର୍ଡକୁ ନୂଆ ରେକର୍ଡ ସହିତ ମିଳାଇବା, ଆବଶ୍ୟକସ୍ଥଳେ ସେଥିରେ ସଂଶୋଧନ କରିବା ଥିଲା ଆମର କାମ । ବାଣୀବିହାରରେ ନାଁ ଲେଖାଇବାର ଚାରିମାସ ପର୍ଯ୍ୟନ୍ତ ମୁଁ ସେ ଅଫିସରେ କାମ କରୁଥିଲି ।

# ବାଣୀବିହାରର ଅଭୁଲା ସ୍ମୃତି

କ୍ରାଏଷ୍ଟ କଲେଜରେ ବି.ଏ ଶ୍ରେଣୀରେ ରାଜନୀତି ବିଜ୍ଞାନ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ନଥିଲା । ଆମେସବୁ ଅର୍ଥନୀତି ଓ ଇତିହାସ ବିଷୟବସ୍ତୁ ନେଇ ବି.ଏ ପଢ଼ିଥିଲୁ । କିନ୍ତୁ ରାଜନୀତି ବିଜ୍ଞାନରେ ଏମ୍.ଏ ପଢ଼ିବା ପାଇଁ ମୋର ପ୍ରବଳ ଆଗ୍ରହ ଥିଲା । ଆଗ୍ରହ ସିନା ଥିଲା, କିନ୍ତୁ ରାଜନୀତି ବିଜ୍ଞାନ ଶ୍ରେଣୀରେ ନାଁ ଲେଖାଇବା ପାଇଁ ଯେଉଁ ମାପକାଠି ଥିଲା, ସେଥିରେ ମୁଁ ପଡୁନଥିଲି ।

ସେ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟ (ବାଣୀବିହାର) ସ୍ନାତକୋତ୍ତର ରାଜନୀତି ବିଜ୍ଞାନ ବିଭାଗର ଗୋଟିଏ ଶ୍ରେଣୀରେ ୬୪ଟି ସ୍ଥାନ ଥିଲା । ଆମ ଆଗରୁ ଗୋଟିଏ ବ୍ୟାଚ ରେଭେନ୍ସା କଲେଜରୁ ପଞ୍ଚମ ବାର୍ଷିକ ଶ୍ରେଣୀ ସମାପ୍ତ କରି ବାଣୀବିହାରରେ ନାଁ ଲେଖାଇଥିଲେ । ଆମ ରେଜଲ୍ଟ ବାହାରିଲା ବେଳକୁ ପଞ୍ଚମ ବାର୍ଷିକ ଶ୍ରେଣୀ ପାଇଁ ନାମଲେଖା ଆରମ୍ଭ ହୋଇଯାଇଥିଲା । ସେତେବେଳେ କୋପର୍ତ୍ତୀ ଭେଙ୍କଟ ରାଓ(କେ.ଭି.ରାଓ) ରାଜନୀତି ବିଜ୍ଞାନ ବିଭାଗର ବିଭାଗୀୟ ମୁଖ୍ୟ ଏବଂ ପ୍ରଫେସର ଥିଲେ । ଜଣେ ଆଦର୍ଶ ଓ ଦକ୍ଷ ପ୍ରଫେସର ଭାବରେ ତାଙ୍କର ପ୍ରତିଷ୍ଠା ଥିଲା । ଛାତ୍ରଛାତ୍ରୀମାନଙ୍କୁ ସେ ଖୁବ୍ ଶ୍ରଦ୍ଧା କରୁଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ସ୍ନାତକୋତ୍ତର ଶ୍ରେଣୀରେ ରାଜନୀତି ବିଜ୍ଞାନ ବିଭାଗ ଖୋଲିବାରେ ଓଡ଼ିଶାର ଅନ୍ୟତମ ସୁନାମଧନ୍ୟ ଶିକ୍ଷାବିତ୍ ଡକ୍ଟର ଶ୍ରୀରାମ ଚନ୍ଦ୍ର ଦାଶଙ୍କର ଅନେକ ଅବଦାନ ଥିଲା । ଇତିହାସ ବିଭାଗ ଓ ଅର୍ଥନୀତି ବିଭାଗରୁ ଚାରୋଟି ଲେଖାଏଁ ପେପରର ବିଷୟବସ୍ତୁକୁ ଏକାଠି କରି ସେ ରାଜନୀତି ବିଜ୍ଞାନର ପାଠ୍ୟକ୍ରମ ପ୍ରସ୍ତୁତ କରିଥିଲେ । କିନ୍ତୁ ବିଧିର ବିଧାନ ଆନ । ରାଜନୀତି ବିଜ୍ଞାନ ବିଭାଗ ଖୋଲିବାର ଚାରିବର୍ଷ ପର୍ଯ୍ୟନ୍ତ ସେ ବିଭିନ୍ନ କାରଣରୁ ଏହି ବିଭାଗରେ ମୁଖ୍ୟ ଅଧ୍ୟାପକ ଭାବରେ ଯୋଗଦେଇ ପାରିନଥିଲେ ।

ବହୁ ଉଦ୍ୟମ ପରେ ପ୍ରଫେସର ରାଓଙ୍କ ଉପରେ ଚାପ ପକାଇ ରାଜନୀତି ବିଜ୍ଞାନ ଶ୍ରେଣୀରେ ନାଁ ଲେଖାଇବାକୁ ମୁଁ ସକ୍ଷମ ହେଲି । ପ୍ରଥମ ସାକ୍ଷାତରେ ସେ ମତେ ପଚାରିଥିଲେ, "ଓଃ ! ତମେ ତାହାହେଲେ ବସନ୍ତ ଦାସ । ଠିକ୍ ଅଛି । ଭଲ ପଢ଼ । ଭଲ ଲେଖ । ପରୀକ୍ଷାରେ ଭଲ ଶ୍ରେଣୀ ପାଅ ।" ତାଙ୍କର ସେଦିନର ସେ ଉପଦେଶ ବାଣୀବିହାରରେ ପଢୁଥିଲା ପର୍ଯ୍ୟନ୍ତ ମୋର ମନେ ରହିଥିଲା । ଟ୍ୟୁଟୋରିଆଲ୍ସ କ୍ଲାସରେ ଡକ୍ଟର ରାଓଙ୍କ ସହିତ ଆମର ଆତ୍ମୀୟତା ବୃଦ୍ଧି ପାଇଥିଲା । ମାତ୍ର ଆମର ଦୁର୍ଭାଗ୍ୟ ଯେ ଆମେ ନାଁ ଲେଖିବାର ଅଳ୍ପଦିନ ଭିତରେ ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକ ଭାବରେ ଯୋଗଦେବାକୁ ଚାଲିଗଲେ । ଲଳିତ ମାନସିଂହ (ପରବର୍ତ୍ତୀ ଅବସ୍ଥାରେ ଭାରତୀୟ ବୈଦେଶିକ ସଚିବ) ଭାରତୀୟ ବୈଦେଶିକ ସେବାରେ ଯୋଗଦେବା ପୂର୍ବରୁ ବାଣୀବିହାରରେ ରାଜନୀତି ବିଜ୍ଞାନ ବିଭାଗରେ କିଛିଦିନ ପାଇଁ ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ । ତାଙ୍କ ସାଙ୍ଗରେ ଥିଲେ ସ୍ୱରୂପ ଚନ୍ଦ୍ର ପରିଜା (ପରବର୍ତ୍ତୀକାଳରେ ଇନ୍‌କମ ଟ୍ୟାକ୍ସ ବିଭାଗର ବୋର୍ଡ ସଦସ୍ୟ) । ଶାନ୍ତ ମଜମୁଦାର ଓ ରଘୁନାଥ ରାମ ଅଧ୍ୟାପକ ଥିଲେ । ଏ ସମସ୍ତଙ୍କୁ ମୁଁ ଆଗରୁ ଜାଣିଥିଲି । ବିଶେଷକରି ଅଧ୍ୟାପକ ପରିଜାଙ୍କ ସହିତ ମୋର ଘନିଷ୍ଠ ବନ୍ଧୁତା ଥିଲା । ସେ କଲେଜରେ ମୋ ଠାରୁ ଦୁଇବର୍ଷ ସିନିଅର ଥିଲେ । ଘଟଣାକ୍ରମରେ ତାଙ୍କ ସହିତ ବନ୍ଧୁତା ଜମି ଯାଇଥିଲା । ମୋର ଅନ୍ୟତମ ଘନିଷ୍ଠ ବନ୍ଧୁ ଶ୍ରୀକାନ୍ତ ରାୟ ଓ ରୁଦ୍ରଚରଣ ମହାନ୍ତି ଶ୍ରୀ ପରିଜାଙ୍କର କ୍ଲାସମେଟ୍ ଥିଲେ । ସେମାନଙ୍କ ମାଧ୍ୟମରେ ଶ୍ରୀ ପରିଜାଙ୍କ ସାଙ୍ଗରେ ମୋର ବନ୍ଧୁତା ହୋଇଥିଲା । ରବିବାର ଦିନ ଖରାବେଳେ ତାଙ୍କ ଘରେ ତାସ୍ ଖେଳିବା ଓ ସନ୍ଧ୍ୟାରେ କଲେଜଛକରେ ଥିବା ସାଉଥ ଇଣ୍ଡିଆନ ହୋଟେଲରେ ଦୋସା ଖାଇବା ଆମର ଏକ ଅଭ୍ୟାସ ଥିଲା ।

ଡକ୍ଟର କେ.ଭି ରାଓ ଇସ୍ତଫା ଦେଇ ଚାଲିଯିବା ପରେ ଶ୍ରୀ ମାନସିଂହ ବିଭାଗୀୟ ମୁଖ୍ୟ ଭାବରେ ଦାୟିତ୍ୱରେ ରହିଲେ । ସେ ଆମକୁ ଇଣ୍ଟରନ୍ୟାସନାଲ ରିଲେସନ ପଢ଼ାଉ ଥିଲେ । ସେହି ସମୟରେ ଚୀନ୍-ଭାରତ ଯୁଦ୍ଧର ସମାପ୍ତି ଘଟିଥିଲା । କିନ୍ତୁ ଦୁଇଦେଶ ମଧ୍ୟରେ ଥିବା ସୀମାରେଖାକୁ ନେଇ କନ୍ଦଳ ତୁଟି ନଥିଲା । ଶ୍ରୀ ମାନସିଂହ, ମ୍ୟାକ୍‌ମୋହନ ଲାଇନ, ଆନ୍ତର୍ଜାତିକ ନିୟନ୍ତ୍ରଣ ରେଖା ଇତ୍ୟାଦି ସମ୍ପର୍କରେ ଯେଭଳି ପ୍ରାଞ୍ଜଳ ଭାବରେ ବୁଝାଇଥିଲେ ତାହା ଆଜି ପର୍ଯ୍ୟନ୍ତ ମନେ ରହିଯାଇଛି ।  ତାଙ୍କର ଇଂରାଜୀ ଉଚ୍ଚାରଣ ଓ ପଠନଶୈଳୀ ଅତି ଚମତ୍କାର ଥିଲା ।

ଶ୍ରୀ ମାନସିଂହ ଓଡ଼ିଶାର ଶିକ୍ଷାବିତ୍ ଓ ସାହିତ୍ୟିକ ଡକ୍ଟର ମାୟାଧର ମାନସିଂହଙ୍କ ଦ୍ୱିତୀୟ ପୁତ୍ର । କଟକ ସହରର ଥୋରିଆ ସାହିରେ ତାଙ୍କ ପିତାଙ୍କ ସ୍ଥାୟୀ ବାସଭବନ ଥିଲା । ସେଥିପାଇଁ ସେ କଟକରୁ ବାଣୀବିହାର ଯିବାଆସିବା କରୁଥିଲେ । ସେହିପରି ଶ୍ରୀ ପରିଜାଙ୍କ ବାପା ଶରତ

ଚନ୍ଦ୍ର ପରିଡ଼ାଙ୍କର ଜଣେ ଆଇନ୍‌ଜୀବୀ ଭାବରେ ପ୍ରତିଷ୍ଠା ଥିଲା । କାଳିଗଳିରେ ତାଙ୍କର ବିରାଟ ଦ୍ୱିତଳ ପ୍ରାସାଦ । ଶ୍ରୀ ପରିଡ଼ା ମଧ୍ୟ କଟକରୁ ବାଣୀବିହାରକୁ ବସରେ ଯା'ଆସ କରୁଥିଲେ ।

ସେତେବେଳେ କଟକ ଚାନ୍ଦିନୀ ଚୌକରେ ଓଡ଼ିଶା ରୋଡ୍ ଟ୍ରାନ୍ସପୋର୍ଟ କମ୍ପାନୀର ବସଷ୍ଟାଣ୍ଡ ଥିଲା । ସେଠୁ ବସ୍ ପୁରୀ, ଭୁବନେଶ୍ୱର, ବ୍ରହ୍ମପୁର ଓ ଫୁଲବାଣୀ ଆଦି ସ୍ଥାନକୁ ଯାଉଥିଲା । ଚାନ୍ଦିନୀ ଚୌକରୁ ପ୍ରତିଦିନ ସକାଳ ୯ଟା ୧୫ ମିନିଟ୍‌ରେ ଆଗପଛ ହୋଇ ତିନୋଟି ବସ ଭୁବନେଶ୍ୱର ଯାଉଥିଲା । ସେଥିମଧ୍ୟରୁ ଗୋଟିଏ ଏ.ଜି ବସ୍, ଦ୍ୱିତୀୟଟି ସେକ୍ରେଟାରୀଏଟ ବସ ଓ ତୃତୀୟଟି ବାଣୀବିହାର ବସ ଭାବରେ ଜଣାଶୁଣା ଥିଲା । ବାଣୀବିହାର ବସ ଡ୍ରାଇଭର ଥିଲେ ନାୟାର । ତାଙ୍କ ପୂରା ନାଁ କାହାକୁ ଜଣାନଥିଲା । ସେ କେବଳ ନାୟାର ଭାବରେ ସମସ୍ତଙ୍କ ପାଖରେ ଅତ୍ୟନ୍ତ ପ୍ରଶଂସିତ ଥିଲେ । ଚକ୍‌ଚକ୍ ଧଳା ପ୍ୟାଣ୍ଟ ସାଙ୍ଗକୁ ଧଳା ସାର୍ଟ ଓ ଆଖିରେ କଳା ଚଷମା ପିନ୍ଧି ସେ ଖୁବ୍ ସ୍ମାର୍ଟ ଦେଖାଯାଆନ୍ତି । ପରେ ନାୟାର ଜନ୍ମଭୂମି ଛାଡ଼ି ପୁରୁଣା ଭୁବନେଶ୍ୱରରେ ଘର କିଣି ରହିଲେ ।

ଚାନ୍ଦିନୀ ଚୌକରୁ ବାଣୀବିହାର ଯିବାକୁ ଶ୍ରୀ ନାୟାରଙ୍କୁ ଘଣ୍ଟାକରୁ କମ୍ ସମୟ ଲାଗୁଥିଲା । ଆଜିକାଲି ଜନଗହଳି ବାଲୁବଜାର ରାସ୍ତାରେ ଦୁଇଟି କାର ବିପରୀତ ଦିଗରୁ ଯିବାଆସିବା ସମ୍ଭବ ହେଉନାହିଁ । ସେ ସମୟରେ ଦୁଇଟି ଓଆରଟି ବସ କିପରି ପରସ୍ପରକୁ କ୍ରସ କରି ପାରୁଥିଲା ସେ କଥା କହିଲେ ଆଜି କେହି ବିଶ୍ୱାସ କରିବେ ନାହିଁ । ଅଧ୍ୟାପକମାନଙ୍କ ସହିତ ବାଣୀବିହାରରେ ପଢୁଥିବା ଅନେକ ପୁଅଝିଅ ମଧ୍ୟ ନାୟାର ବସରେ ଯିବାଆସିବା କରୁଥିଲେ । ଫଳରେ ଅଧ୍ୟାପକ ଓ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଏକପ୍ରକାର ବନ୍ଧୁତା ସୃଷ୍ଟି ହୋଇଥିଲା ।

ବାଣୀବିହାରରେ ଅଧ୍ୟାପନା କରିବା ସମୟରେ ଶ୍ରୀ ମାନସିଂହଙ୍କ ଆଇ.ଏଫ.ଏସ୍ ପରୀକ୍ଷା ଫଳ ପ୍ରକାଶ ପାଇଥିଲା । ସେ ସର୍ବଭାରତୀୟସ୍ତରରେ ପ୍ରଥମ ହୋଇଥିଲେ । ଏହି ଖବରରେ ଆମେ ସମସ୍ତେ ଅତ୍ୟନ୍ତ ଖୁସି ହୋଇଥିଲୁ । ସମସ୍ତ ଦେଶରେ ପ୍ରତିଯୋଗିତାମୂଳକ ପରୀକ୍ଷାରେ ପ୍ରଥମ ହେବା ସାଧାରଣ ଘଟଣା ନଥିଲା । ସେଥିପାଇଁ ଆମକୁ ଭୋଜି ଦେବାକୁ ଆମେ ପ୍ରଫେସର ମାନସିଂହଙ୍କ ପଛରେ ପଡିଗଲୁ । ଆମକୁ ସମର୍ଥନ କଲେ ଅଧ୍ୟାପକମାନେ । ବହୁତ ଆଲୋଚନା ପରେ ସ୍ଥିର ହେଲା କୋଣାର୍କରେ ସନ୍ଧ୍ୟାରେ ଭୋଜି ହେବ । ମାନସିଂହବାବୁ ଭୋଜି ପାଇଁ ଆବଶ୍ୟକ ହେଉଥିବା ଖର୍ଚ୍ଚ ଦେବେ । ଆମେସବୁ ନିଜ ଭିତରେ ଚାନ୍ଦା କରି ଯାତାୟତ ବ୍ୟବସ୍ଥା କରିବୁ ।

ସେହି ଅନୁଯାୟୀ ମାନସିଂହ ସାର୍ ପାଞ୍ଚଶହ ଟଙ୍କା ଦେଲେ । ଆମେ ଓଆରଟି କର୍ତ୍ତୃପକ୍ଷଙ୍କ ସହିତ କଥାବାର୍ତ୍ତା କରି କମ୍ ପଇସାରେ ବସଟିଏ ଯୋଗାଡ କଲୁ । ରୋଷେଇ କରିବା ପାଇଁ ପୂଜାରୀ ଯୋଗାଡ ହେଲା । ପୁଜାରୀଙ୍କ ଚିଠା ଅନୁଯାୟୀ ସଉଦାପତ୍ର ସବୁ କିଣାହୋଇ ଆସିଲା ।

ଆମେ କ୍ଲାସ ପରେ ପ୍ରାୟ ପାଞ୍ଚଟା ବେଳେ କୋଣାର୍କ ଅଭିମୁଖେ ବାହାରିଲୁ । ଆମ ସାଙ୍ଗରେ କେତେଜଣ ଝିଅ ମଧ ଥିଲେ । ସାଢ଼େ ଛଅଟା ବେଳକୁ ଆମ ବସ କୋଣାର୍କ ପିଡବ୍ଲୁଡ଼ି ବଙ୍ଗଳା ସାମନାରେ ଲାଗିଲା । ଜିନିଷପତ୍ର ଓହ୍ଲାଇଦେଇ ଆମେ ବାହାରିଲୁ କୋଣାର୍କର ନାଟ୍ୟମଣ୍ଡପକୁ । କଥା ହୋଇଥିଲା, ପ୍ରଥମେ ଚା, ପକୁଡ଼ି ତିଆରି ହେବ । ପରେ ରାତ୍ର ଭୋଜନ ପ୍ରସ୍ତୁତ ହେବ ।

ବଙ୍ଗଳାରୁ ଅଧିକାଂଶ ପିଲା ଚାଲିଯାଇଥିଲେ । ଆମେ କେତେଜଣ ରୋଷେଇ ବ୍ୟବସ୍ଥା ତଦାରଖ କରୁଥିଲୁ । ସଉଦାପତ୍ର କାଢ଼ିଲା ପରେ ଦେଖାଗଲା ଯେ, ବାଉଳାରେ ତେଲ ପ୍ୟାକେଟ୍‌ଟି ଯାଇପାରିନାହିଁ । କ'ଣ କରାଯିବ ? ତେଲ ବିନା କିପରି ରୋଷେଇ ହେବ ? ସେତେବେଳେ ଆଜିକାଲି ଭଳି କୋଣାର୍କରେ କୌଣସି ଦୋକାନ ବଜାର ନଥିଲା । ଯାହା ଦରକାର, ଗୋପ ବଜାରରୁ ସଂଗ୍ରହ କରିବାକୁ ପଡୁଥିଲା । ଆମେ ହତାଶ ହୋଇପଡ଼ିଲୁ । ହଠାତ୍ ମୋ ମନରେ ଗୋଟିଏ କଥା ଜୁଟିଲା । ଆମ ସାଙ୍ଗରେ ଗଲାବେଳେ ସ୍ୱରୁପ ବାବୁ ତାଙ୍କ କାର୍ ନେଇଥିଲେ । ତାଙ୍କ ପାଖରୁ ଚାବିନେଇ ଆମେ ଚାଲିଲୁ ଗୋପ ବଜାରକୁ । ସେଠୁ କୌଣସି ମତେ ତେଲ ସଂଗ୍ରହ କରି ଫେରିଲା ବେଳକୁ ରାତି ପ୍ରାୟ ୮ଟା । ଅନ୍ୟମାନେ ଚା', ମିକଶ୍ଚର ଖାଇ ନାଚଗୀତରେ ମଜି ଯାଇଥିଲେ । ରୋଷେଇ କେତେବେଳେ ସରିବ, ଖାଇପିଇ ଆମେ କେତେବେଳେ ବାଣୀବିହାର ଫେରିବୁ ସେ ଦିଗରେ କାହାରି ନଜର ନଥିଲା । ଜହ୍ନରାତି । ନାଟ୍ୟମଣ୍ଡପରେ ଆମର ଚାଲିଥିଲା ଗୀତର ଆସର । ଆମ ଅଜାଣତରେ ବାଣୀବିହାରରୁ କିଏ ନେଇଯାଇଥିଲେ ହାରମୋନିଅମ ଓ ତୁବିତାବଲା । ସେଦିନ ସନ୍ଧ୍ୟାର ମଉଜ ଜୀବନସାରା ଭୁଲିହୋଇନାହିଁ ।

ରୋଷେଇ ସରିଲା ବେଳକୁ ପାଖାପାଖି ଏଗାରଟା ହୋଇଯାଇଥିଲା । ଡ଼ାକ ବଙ୍ଗଳା ବାରଣ୍ଡାରେ ଆମେ ସବୁ ଏକାଠି ବସି ଖାସି ମାଂସର ସ୍ୱାଦକୁ ଉପଭୋଗ କଲୁ । ବାଣୀବିହାରରେ ପହଞ୍ଚିଲା ବେଳକୁ ରାତି ପ୍ରାୟ ଗୋଟାଏ । ବାଣୀବିହାରରେ ପିଲାଙ୍କୁ ଛାଡ଼ି ଆମେ ସ୍ୱରୂପବାବୁଙ୍କ ଗାଡ଼ିରେ କଟକ ଫେରିଲୁ ।

ଆମେ ପଢ଼ିଲା ବେଳେ ବାଣୀବିହାରରେ କଳା ଶ୍ରେଣୀରେ ମାତ୍ର ନଅଟି ବିଭାଗ ଥିଲା । ପିଲାଙ୍କ ସଂଖ୍ୟା ହଜାର ଭିତରେ । ବେଶୀ ପିଲା ଥିଲେ ରାଜନୀତି ବିଜ୍ଞାନ ଓ ଇତିହାସ ବିଭାଗରେ । ବ୍ୟାବସାୟିକ ଅର୍ଥନୀତି, ମନସ୍ତତ୍ତ୍ୱ, ସଂସ୍କୃତ ଇତ୍ୟାଦି ବିଭାଗରେ ଆପେକ୍ଷାକୃତ କମ୍ ଛାତ୍ରଛାତ୍ରୀ ପଢୁଥିଲେ । ବିଜ୍ଞାନ ଶ୍ରେଣୀ ଖୋଲିନଥିଲା । ବାଣୀବିହାର କ୍ୟାମ୍ପସ ଭିତରେ ଭାଇସ୍ ଚାନସେଲର ଓ ଅଳ୍ପ କେତେକ ଅଧ୍ୟାପକ ଏବଂ କର୍ମଚାରୀମାନଙ୍କ ପାଇଁ ହାତଗଣତି କ୍ୱାର୍ଟର୍ସ ଥିଲା । ଛାତ୍ରମାନଙ୍କ ପାଇଁ ଦୁଇଟି ହଷ୍ଟେଲ ଓ ଗୋଟିଏ ଲେଡିଜ୍ ହଷ୍ଟେଲ ଥିଲା ।

ବାଣୀବିହାର ବାଟଦେଇ କଟକରୁ ଦୁଇଟି ବସ ଭୁବନେଶ୍ୱରକୁ ଓ ଭୁବନେଶ୍ୱରରୁ ଦୁଇଟି ବସ କଟକକୁ ଯିବାଆସିବା କରୁଥିଲା । ଭୁବନେଶ୍ୱରରୁ କଟକ ଯାଉଥିବା ବସଟି ବାଣୀବିହାରରେ ତିନିଟା ବେଳେ ପହଞ୍ଚି କ୍ଲାସ ସରିବା ପର୍ଯ୍ୟନ୍ତ ଅପେକ୍ଷା କରୁଥିଲା । ସେ ବସର ଡ୍ରାଇଭର ଅଟଳ । ବହୁତ ସ୍ନେହୀ, ଆପଣାର ଥିଲା । ଆମେ ନଆସିବା ପର୍ଯ୍ୟନ୍ତ ବସ୍ ଛାଡୁନଥିଲା । ବସ୍‌ର କ୍ଲିନର କପିଳ ମଧ୍ୟ ଅତ୍ୟନ୍ତ ସାଦାସିଧା ମଣିଷଟିଏ । କେତେବେଳେ କେମିତି ଆମଠାରୁ ଆଠଣା, ଟଙ୍କାଏ ପାଏ । ସେଥିରେ ସେ ଖୁସି । ଦି'ଜଣ ଯାକ ଆମକୁ ଦେଖିଲେ କୋଟିନିଧି ପାଇଲା ପରି ହୁଅନ୍ତି ।

ବାଣୀବିହାର ହତା ଭିତରେ ଗୋଟିଏ ମାତ୍ର ଜଳଖିଆ ଦୋକାନ । ନାଁ 'ମାଷ୍ଟରକ୍ୟାଣ୍ଟିନ' । କ୍ୟାଣ୍ଟିନର ମାଲିକ ପଞ୍ଜାବୀ । ତାଙ୍କୁ ଲୋକେ 'ମାଷ୍ଟର' ବୋଲି ଡାକନ୍ତି । କ୍ୟାଣ୍ଟିନର ଆଜବେଷ୍ଟସ ଘରେ କେଇଖଣ୍ଡ କାଠ ଟେବୁଲ୍ ଓ କାଠ ତିଆରି ବେଞ୍ଚ । ସେହିଥିରେ କାମ ଚଳିଯାଏ । ଜଳଖିଆରେ ମୁଖ୍ୟତଃ ବରା, ଆଳୁଚପ, ସିଙ୍ଗଡା ସାଙ୍ଗକୁ ଘୁଗୁନି ତରକାରୀ । ନଚେତ୍ ବ୍ରେଡ୍ ବଟର ଆମଲେଟ୍ । ବେଳେବେଳେ ଜିଲାବି ତିଆରି ହୁଏ । ସେଇଠି ଏକାଠି ହୁଅନ୍ତି ଛାତ୍ରଛାତ୍ରୀ, କର୍ମଚାରୀ । ସମସ୍ତେ ସମସ୍ତଙ୍କୁ ପ୍ରାୟ ଜାଣୁଥିଲେ ।

ଖାଇବା ଟେବୁଲରେ ଢ଼ିଙ୍କିଶାଳରୁ ଢ଼େଙ୍କାନାଳ ପର୍ଯ୍ୟନ୍ତ କେତେକଥା ପଡେ । ରାଜନୀତି ଆରମ୍ଭ ହୋଇଗଲେ ସମୟ ଜଣାପଡେ ନାହିଁ । ଖାଇବା ଗୌଣ ହୋଇଯାଏ । ରାତିରେ କିଛି ଲୋକଙ୍କ ପାଇଁ ମିଲ୍ସ ତିଆରି ହୁଏ ।

ଦୋକାନୀର ମାଲିକ ଖୁବ୍ ମେଳାପୀ । ସମସ୍ତଙ୍କ ମନଦେଖି ଚଳୁଥିଲେ । ତଥାପି ବେଳେବେଳେ କିଛି ପିଲା ହଙ୍ଗାମା କରନ୍ତି । ପାଟିତୁଣ୍ଡ କରି ପ୍ଲେଟ ଫୋପଡ଼ା ଫୋପଡ଼ି କରନ୍ତି । ଦୋକାନୀ ମାଲିକ ସବୁକଥାକୁ ଧୈର୍ଯ୍ୟର ସହିତ ସହିଯାଆନ୍ତି । ମୁହଁରେ ଜବାବ ଦିଅନ୍ତି ନାହିଁ । ପରେ ସବୁକଥା ଠିକ୍ ହୋଇଯାଏ । ଯିଏ ମାଷ୍ଟରଙ୍କୁ ଗାଳିଗୁଲଜ କରିଥାନ୍ତି ସେହିମାନେ ପୁଣି ତାଙ୍କ ହାତଧରି ସବୁକଥା ଭୁଲିଯିବାକୁ ଅନୁରୋଧ କରନ୍ତି । ସତରେ କେତେ ଘନିଷ୍ଠ ନଥିଲା ସେ ସମ୍ପର୍କ ? ଦିନେ ଜଣଙ୍କ ମୁହଁ ନଦେଖିଲେ ମାଷ୍ଟର ପଚାରୁଥିଲେ, କାହିଁ ସେ ବାବୁ ଆସିନାହାନ୍ତି । ଆଜି ସମୟ ବଦଳିଯିବା ସହିତ ସମାଜିକ ବ୍ୟବସ୍ଥା ବଦଳିଗଲାଣି । ସବୁକଥା ଦିଆନିଆ, ଲାଭକ୍ଷତିର ହିସାବରେ ଚାଲୁଛି । ବ୍ୟକ୍ତିଗତ ସମ୍ପର୍କ ପଛକୁ ଚାଲିଗଲାଣି ।

ଦୀର୍ଘଦିନର ସଂଗ୍ରାମ ପରେ ୧୯୬୩ ମସିହା ଜୁଲାଇ ୧୨ ତାରିଖରେ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ଆମ ବିଭାଗର ମୁଖ୍ୟ ପ୍ରଫେସର ଓ ବିଭାଗୀୟ ମୁଖ୍ୟଭାବରେ ଯୋଗଦେଲେ । ତା'ର ଅଳ୍ପଦିନ ପରେ ଲଳିତ ମାନସିଂହ ଆଇଏଫଏସ୍‌ରେ ଯୋଗଦେବା ପାଇଁ ଚାକିରିରୁ ଅବ୍ୟାହତି ନେଇ ଚାଲି ଯାଇଥିଲେ ।

ଆମେ ବାଣୀବିହାରରେ ପଢୁଥିବା ସମୟରେ କୁଳପତି ଥିଲେ ଡକ୍ଟର ପ୍ରାଣକୃଷ୍ଣ ପରିଜା। ଡକ୍ଟର ପରିଜା ବୋଧହୁଏ ପ୍ରଥମ ଓଡ଼ିଆ ଅଧ୍ୟାପକ ଭାବେ ବିଲାତକୁ ପାଠ ପଢ଼ିବାକୁ ଯାଇଥିଲେ। ସେଥିପାଇଁ ସମସ୍ତେ ତାଙ୍କୁ 'ପରିଜା ସାହେବ' ବୋଲି ସମ୍ବୋଧନ କରୁଥିଲେ। ଡକ୍ଟର ପରିଜା ସମଗ୍ର ଶିକ୍ଷକ ଓ ଛାତ୍ରସମାଜର ଶ୍ରଦ୍ଧାଭାଜନ ଥିଲେ। ଶୃଙ୍ଖଳା ଜ୍ଞାନ ଓ ସମୟାନୁବର୍ତ୍ତିତାରେ ସେ ଥିଲେ ଅଦ୍ୱିତୀୟ। ଠିକ୍ ସମୟରେ ଠିକ୍ କାମ କରିବା ତାଙ୍କ ବ୍ୟକ୍ତିତ୍ୱର ଅଙ୍ଗ ଥିଲା।

ଆମେ ଶୁଣିଛୁ, ସେ ଠିକ୍ ରାତି ଆଠଟା ବେଳେ ଡିନର କରନ୍ତି। ଯଦି ଆଠଟା ବେଳେ କୌଣସି କାରଣରୁ ଡିନର ସମ୍ଭବ ନହୁଏ, ସେ ବରଂ ଉପବାସ ରହନ୍ତି କିନ୍ତୁ ସମୟ ଅତିବାହିତ ହେବା ପରେ ଖାଆନ୍ତି ନାହିଁ। ସେଥିପାଇଁ ଯଦି ସିଣ୍ଡିକେଟ୍ ବୈଠକ ବେଳେ ଆଠଟା ବାଜି ଯାଉଥିଲା, ପରିଜା ସାହେବଙ୍କ ଡିନର ପାଇଁ ବୈଠକକୁ ଅଧଘଣ୍ଟାଏ ସ୍ଥଗିତ କରାଯାଉଥିଲା। ଡକ୍ଟର ପରିଜାଙ୍କ ଚାଲିଚଳନ, ପୋଷାକପରିଚ୍ଛଦ, କଥାବାର୍ତ୍ତା ସବୁଥିରେ ବିଦେଶୀ ବାସ୍ନା ବାରି ହୋଇପଡୁଥିଲା। ତାଙ୍କୁ ସମଗ୍ର ଶିକ୍ଷକ ସମାଜ ସମ୍ମାନ ଦେବା ସହିତ ଭକ୍ତି କରୁଥିଲେ।

ଶ୍ରୀରାମବାବୁ ବାଣୀବିହାରରେ ଯୋଗଦେବା ପରେ ଆମ ବିଭାଗ ସହିତ ବାଣୀବିହାରର ବାତାବରଣ ବଦଳି ଯାଇଥିଲା। ସେବର୍ଷ ଶ୍ରୀରାମବାବୁ ଉତ୍କଳ ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ୍‌କୁ ଅଧ୍ୟାପକମାନଙ୍କ ପ୍ରତିନିଧି ଭାବରେ ନିର୍ବାଚିତ ହୋଇଥିଲେ। ସିଣ୍ଡିକେଟରେ ସୁରଜମଲ ଶାହା, ପ୍ରଫେସର ବୈଦ୍ୟନାଥ ରଥ, ଆଡଭୋକେଟ୍ ଅଶୋକ ଦାସ ଓ ଶ୍ରୀରାମବାବୁ ମିଶି ଗୋଟିଏ ଗୋଷ୍ଠୀ ଗଠନ କରିଥିଲେ। ସିଣ୍ଡିକେଟରେ ସେ ଗୋଷ୍ଠୀର ଖୁବ୍ ପ୍ରାଧାନ୍ୟ ଥିଲା। ସବୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ସେମାନଙ୍କ ସହମତିରେ ହିଁ ହେଉଥିଲା। ସେଥିପାଇଁ ବାଣୀବିହାର ପରିସରରେ ଶ୍ରୀରାମ ବାବୁଙ୍କର ଖୁବ୍ ଖାତିର ଥିଲା। ସିଣ୍ଡିକେଟ୍ ସଦସ୍ୟ ବଳରେ ବଳୀୟାନ ହୋଇ ସେ ଅନ୍ୟ ବିଭାଗର ଅଧ୍ୟାପକମାନଙ୍କୁ ହେୟଜ୍ଞାନ କରୁଥିଲେ। କେବଳ କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ସେ ଭୟ କରୁଥିଲେ। ଡକ୍ଟର ପରିଜା ତାଙ୍କୁ ଶ୍ରୀରାମ ବୋଲି ସମ୍ବୋଧନ କରୁଥିଲେ।

ଶ୍ରୀରାମବାବୁ ଆମ ବିଭାଗର ମୁଖ୍ୟ ପ୍ରଫେସର ଭାବରେ ଯୋଗଦେବା ପରେ ରାଜନୀତି ବିଜ୍ଞାନ ବିଭାଗର ପ୍ରତିଷ୍ଠା ବଢ଼ିବାରେ ଲାଗିଲା। ନିଜର ପତିଆରା ଦେଖାଇବା ପାଇଁ ସେ ଗୋଟିଏ ପୁରୁଣା ପ୍ରିଫେଟ ଗାଡି କିଣି ସେଥିରେ କଟକରୁ ଯିବାଆସିବା କଲେ। ମଝିରେ ମଝିରେ ବସ୍‌ରେ ମଧ୍ୟ ଯାତାୟତ କରୁଥିଲେ। ଆମର ଷଷ୍ଠ ବର୍ଷ ହେଲାବେଳକୁ ସ୍ୱରୂପବାବୁ ବାଣୀବିହାରରେ ଗୋଟିଏ କ୍ୱାଟର୍ସ ନେଲେ। ପାଣିଟାଙ୍କି ପାଖରେ କ୍ୱାଟର୍ସ ନଂ ସି-୧୬। ସେତେବେଳେ ସେ ସର୍ବଭାରତୀୟ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲେ। ଥ୍ରୀ

ବେଡ଼ରୁମ୍ କ୍ୱାଟର୍ସ । ସାଙ୍ଗରେ ରୋଷେଇ ଘର । ଷ୍ଟୋର ରୁମ୍ । ଭିତରେ ପ୍ରଶସ୍ତ ବାରଣ୍ଡା । ଦୁଇଟି ଟଏଲେଟ୍ । ଖୋର୍ଦ୍ଧାରୁ ଯିବାଆସିବା କରୁଥିବା ଆମ ବିଭାଗର ଅଧ୍ୟାପକ ରଘୁନାଥ ରାମ, ସ୍ୱରୂପବାବୁଙ୍କୁ କହି ସେ ଘରେ ରହିଲେ । ଆଉ ଗୋଟିଏ ରୁମ୍ ଖାଲି ଥିଲା । ସ୍ୱରୂପବାବୁ ମତେ କହିଲେ, "କାହିଁକି କଟକରୁ ଯିବାଆସିବା କରୁଛ, ମୋ କ୍ୱାଟର୍ସରେ ଆସି ରହୁନା ।" ମୁଁ ବିନା ବାକ୍ୟ ବ୍ୟୟରେ ତା'ପର ଦିନ କଟକରୁ ବିଛଣାପତ୍ର ଧରି ହାଜର ହୋଇଗଲି ।

ଘରେ ସିନା ମିଳିଗଲା, ଖାଇବା ପିଇବା କେମିତି ହେବ ସେ ଚିନ୍ତା ଘାରିଲା । ମୋର ପିଲାଦିନୁ ବାହାରେ ଖାଇବାର ଅଭ୍ୟାସ ଥିବାରୁ କିଛି ଅସୁବିଧା ହେଲା ନାହିଁ । ମାତ୍ର ସ୍ୱରୂପ ବାବୁ ବହୁତ ସୁକୁମାରିଆ । ପିଲାଦିନୁ ପରିବାର ଭିତରେ ଚଳିଥିଲେ । ତାଙ୍କ ପରିବାରରେ କେହି ବଜାରରେ ଖାଇବାର ରୀତି ନଥିଲା । କୌଣସିମତେ ଦି ଚାରିଦିନ ଚାଲିଗଲା ।

ସେତେବେଳେ ଡକ୍ଟର ବିମଳେନ୍ଦୁ ମହାନ୍ତି, ବିଶ୍ୱବିଦ୍ୟାଳୟ ଛାତ୍ର କଲ୍ୟାଣ ଅଫିସର ଭାବରେ ବାଣୀବିହାରରେ ଯୋଗ ଦେଇଥିଲେ । ତାଙ୍କ ଅଧୀନରେ ଚିରଞ୍ଜୀବୀ ପଣ୍ଡା ନାମରେ ଗୋଟିଏ ପିଅନ କାମ କରୁଥିଲା । ବୁଝିବାରୁ ଜଣାଗଲା, ସେ ଭଲ ରୋଷେଇ ଜାଣେ । ବିମଳେନ୍ଦୁ ବାବୁଙ୍କ ସହିତ ଆଲୋଚନା ପରେ ସ୍ଥିର ହେଲା, ପଣ୍ଡା ଡିଉଟି ଆୱାର ବାହାରେ ଆମ କ୍ୱାଟର୍ସରେ ରୋଷେଇ କରିବ । ସେଇଠି ରହିବ ଓ ମାଗଣାରେ ଖାଇବ । ଏ ପ୍ରସ୍ତାବରେ ପଣ୍ଡା ମଧ୍ୟ ଖୁସି ଥିଲା । ଅନ୍ତତଃ ତା'ର ରହିବା ଖାଇବା ମାଗଣା ହୋଇଗଲା ।

ଘର ଓ ରୋଷେୟା ଠିକ୍ ହୋଇଗଲା । ହେଲେ ରୋଷେଇ ସରଞ୍ଜାମ ? ମୁଁ ଦିନେ ଉପରଓଳି କ୍ଲାସ ସରିବା ପରେ ପଣ୍ଡାକୁ ଧରି କଟକ ଗଲି । ଡେକଚି, କରେଇ ଠାରୁ ଆରମ୍ଭ କରି କପ୍, ପ୍ଲେଟ, ଗ୍ଲାସ ଓ ଅନ୍ୟାନ୍ୟ ସରଞ୍ଜାମ ସବୁ କିଣି ନେଇ ଆସିଲି । ସେ ସମୟରେ ଗ୍ରାଇଣ୍ଡର, ମିକଷର ଇତ୍ୟାଦିର ପ୍ରଚଳନ ନଥିଲା । ଆଜିକାଲି ଭଳି ଗୁଣ୍ଡ ମସଲା ମଧ୍ୟ ମିଳୁନଥିଲା । ଆଜି ମାର୍କେଟ ବିଲ୍ଡିଂରେ ଯେଉଁଠି କଳାମନ୍ଦିର ଦୋକାନ ଅଛି, ସେତେବେଳେ ସେଠାରେ ବର୍ମା ଜେନେରାଲ ଷ୍ଟୋର ନାମରେ ଗୋଟିଏ ତେଜରାତି ଦୋକାନ ଥିଲା । ସେଠାରେ ଡାଲି, ଚାଉଳ ଠାରୁ ଆରମ୍ଭ କରି ଜିରା, ଲଙ୍କା, ସୋରିଷ, ଧନିଆ, ଲୁଣ, ହଳଦି ଭଳି ସବୁ ଜିନିଷ ମିଳୁଥିଲା । ଦୋକାନର ମାଲିକ ତଳେ ଗଦି ପକାଇ ବସି ସବୁ ପଦାର୍ଥ ବିକ୍ରି କରୁଥିଲେ । ତାଙ୍କ ସାମନାରେ ଷ୍ଟାଣ୍ଡ ଦଣ୍ଡି ଟଙ୍ଗା ଯାଇଥିଲା । ସେହି ଦଣ୍ଡିରେ ମାଲିକ ସବୁ ଜିନିଷ ଓଜନ କରି ଦେଉଥିଲେ । ଏକଥା ଶୁଣିଲେ ହୁଏତ କେହି ବିଶ୍ୱାସ କରି ନପାରନ୍ତି । ମାତ୍ର ଏହାହିଁ ବାସ୍ତବ ସତ । ବାଣୀବିହାରରେ ରହୁଥିଲାବେଳେ ମୁଁ ଅନେକବାର ସେହି ଦୋକାନରୁ ସଉଦା ଆଣିବାକୁ ଯାଉଥିଲି । ସେତେବେଳେ ବର୍ତ୍ତମାନର କଳାମନ୍ଦିର ମାଲିକ ରାଜୀନ୍ଦର ସିଂହ କଲେଜରେ ପଢୁଥିଲେ । ବର୍ମା ଜେନେରାଲ ଷ୍ଟୋର ସାମନାରେ ବସଷ୍ଟାଣ୍ଡ ଥିଲା । ସେଠାରୁ ଟାଉନ

ବସ ଯିବା ଆସିବା କରୁଥିଲା । ସେଥିପାଇଁ ବାଣୀବିହାରରୁ ଆସି ସଉଦାପତ୍ର ନେବାରେ କିଛି ଅସୁବିଧା ହେଉନଥିଲା ।

ସ୍ୱରୂପବାବୁଙ୍କର ବାହାଘର ହୋଇନଥିଲା । ତାଙ୍କର ଘରକୁ ଟଙ୍କା ପଠାଇବାର ଆବଶ୍ୟକତା ନଥିଲା । ଯାହା ଦରମା ପାଉଥିଲେ ନିଜେ ଚଳି ବଳୁଥିଲା । ମତେ ଦିନେ କହିଲେ, "ବସନ୍ତ, ଯାହା ଖର୍ଚ୍ଚ ହେଉଛି ସେଥିପାଇଁ ତମର କିଛି ଦେବା ଦରକାର ନାହିଁ । ସବୁ ଖର୍ଚ୍ଚ ମୁଁ ଦେବି ।" କଥାଟା ମତେ ଭଲ ଲାଗିଲା ନାହିଁ । ଶେଷରେ ସ୍ଥିର ହେଲା, ହଷ୍ଟେଲରେ ଖାଇବା ପାଇଁ ଯେତିକି ଟଙ୍କା ପଡୁଛି, ମୁଁ ସେତିକି ମାତ୍ର ଦେବି । ଆଉ ସବୁ ଖର୍ଚ୍ଚ ତାଙ୍କର ।

କିଛିଦିନ ଅବସ୍ଥାନ ପରେ ଅଧ୍ୟାପକ ରଘୁରାମ, ଏଲଆଇସିରେ ଚାକିରି ପାଇ ଚାଲିଗଲେ । ଆମ କ୍ଲାସର ସୁଭାଷ ରାୟଚୌଧୁରୀ ଆସି ତାଙ୍କ ରୁମ୍‌ରେ ରହିଲେ । ବାହାରୁ ଦେଖିଲେ ସୁଭାଷ ଖୁବ୍ କାଜୁଆଲ ଜଣାପଡେ । ମାତ୍ର ଖୁବ୍ ମେଧାବୀ । ଥରେ ପଢ଼ିଲେ ତା'ର ସବୁକଥା ମନେ ରହିଯାଉଥିଲା । ଆମେ ରାତିରେ ଖାଇସାରି ଶୋଇଲା ପରେ ସେ ପଢ଼ା ଆରମ୍ଭ କରେ । ରାତି ଭିତରେ ବହି ଶେଷ କରିଦିଏ । ଆମ ବ୍ୟାଚ୍‌ରେ ସେ ରାଜନୀତି ବିଜ୍ଞାନରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ହାସଲ କରିଥିଲା । ଇଚ୍ଛା କରିଥିଲେ, ସେ ଯେ କୌଣସି ସର୍ବଭାରତୀୟ ପରୀକ୍ଷାରେ କୃତକାର୍ଯ୍ୟ ହୋଇପାରିଥାନ୍ତା । କିନ୍ତୁ କେଜାଣି କାହିଁକି ସେ ଗୋଟିଏ ବଡ଼ ଘରୋଇ କଂପାନୀରେ ଯୋଗ ଦେବାକୁ ପସନ୍ଦ କଲା । ବମ୍ବେରେ ପୋଷ୍ଟିଂ ହେଲା ।

ବମ୍ବେ ରହଣି ସମୟରେ ଘଟଣାକ୍ରମରେ ଜଣେ ମୁସଲିମ୍ ମହିଳା ସୁଭାଷକୁ ଭଲପାଇ ବସିଲେ । ତାକୁ ବିବାହ କରିବାକୁ ପ୍ରସ୍ତାବ ଦେଲେ । ଏକଥା କ୍ରମେ ଦି'କାନରୁ ଚାରିକାନ ହେଲା । ସୁଭାଷର ବାପାମା' ତାକୁ ଶୀଘ୍ର ବାହା କରିଦେବା ପାଇଁ ସ୍ଥିର କଲେ । ଏକଥା ଶୁଣିଲା ପରେ ସେ ମହିଳା କ୍ରୋଧାନ୍ୱିତ ହୋଇ ଗୋଟିଏ ସ୍କଚ୍ ମଦ ବୋତଲରେ ସୁଭାଷ ମୁଣ୍ଡକୁ ପିଟିଦେଲେ । ସେଥିରେ ସୁଭାଷର ବ୍ରେନ ହାମରେଜ ହୋଇଗଲା । ଶେଷରେ ତାହା ତା'ର ମୃତ୍ୟୁର କାରଣ ହେଲା । ସୁଭାଷର ମୃତ୍ୟୁ ଖବର ଆମକୁ ଅତ୍ୟନ୍ତ ବ୍ୟଥିତ କରିଥିଲା ।

ଆମେ ପଢ଼ିବା ସମୟରେ ବାଣୀବିହାରରେ ବେଳେବେଳେ ପାଣିର ଅଭାବ ହେଉଥିଲା । ବାଣୀବିହାର କ୍ୟାମ୍ପସ ମଝିରେ ଥିବା ଗୋଟିଏ ପାଣିଟାଙ୍କି ଉପରେ ସମସ୍ତେ ନିର୍ଭର କରୁଥିଲେ । ଟାଙ୍କିରେ ପାଣି ଲୋଡ୍ ନହେଲେ ବାଣୀବିହାର ଅଚଳ ହୋଇ ଯାଉଥିଲା । ନିତ୍ୟକ୍ରମ କରିବା ସମ୍ଭବ ହେଉନଥିଲା । ସେଥିପାଇଁ ଅନେକ ସମୟରେ କ୍ଲାସ ମଧ୍ୟ ବନ୍ଦ ହେଉଥିଲା ।

ଆମେ ଯେଉଁ କ୍ୱାଟର୍ସରେ ରହୁଥିଲୁ ସେଠି ମଧ୍ୟ ପାଣିର ଅଭାବ ହେଉଥିଲା । ସେତେବେଳେ ସ୍ୱରୂପବାବୁଙ୍କ ଦାଦା ସୀତାନାଥ ପରିଜା ପୂର୍ତ୍ତ ବିଭାଗ ମନ୍ତ୍ରୀ ହରିହର ମର୍ଦ୍ଦରାଜଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ଥିଲେ । ରାଜଧାନୀର ପୁରୁଣା ବସଷ୍ଟାଣ୍ଡ ପାଖରେ ତାଙ୍କର କ୍ୱାଟର୍ସ ଥିଲା । ଆମେ ଅନେକ ସମୟରେ ସେଠାକୁ ଯାଉ । ସ୍ୱରପବାବୁଙ୍କ ଖୁଡୀ ଖୁବ୍ ସ୍ନେହୀ । ନଖୁଆଇ ଛାଡନ୍ତି ନାହିଁ । ସ୍ୱରୂପବାବୁଙ୍କ ଦାଦାଙ୍କୁ ଆମେ ମଧ୍ୟ ଦାଦା ବୋଲି ଡାକୁ । ବେଳେବେଳେ ତାଙ୍କ ସହିତ ଆମର ଦେଖାହୋଇଯାଏ । ପଚାରନ୍ତି, "କିରେ ପିଲେ, କ'ଣ ସବୁ ଖବର ? ବାଣୀବିହାରରେ ସବୁ ମିଳୁଛି ତ ?"

ଥରେ ମୁଁ ତାଙ୍କୁ ବାଣୀବିହାରରେ ପାଣି ମିଳୁନଥିବା କଥା କହିଲି । ଆମ କ୍ୱାଟର୍ସରେ କେତୋଟି ପାଣିକୁଣ୍ଡ ତିଆରି କରିଦେଲେ କାମ ଚଳିଯାନ୍ତା ବୋଲି ଅନୁରୋଧ କଲି । "ହଉ ଦେଖିବା !" ବୋଲି କହି ସେ ଚାଲିଗଲେ ।

ସାତଦିନ ପରେ ତାଙ୍କ ସାଙ୍ଗରେ ଆଉଥରେ ଦେଖାହେଲା । ସେ ପଚାରିଲେ, "କିରେ ତମ କ୍ୱାର୍ଟର୍ସରେ କୁଣ୍ଡ ହୋଇଗଲା । ଆଉ ପାଣି ଅସୁବିଧା ନାହିଁ ତ ?" ମୁଁ ଟିକେ ଅଭିମାନ ଭରା ସ୍ୱରରେ କହିଲି, "କୋଉ କୁଣ୍ଡ, କାହିଁ କେହି ତ କିଛି କରିନାହାନ୍ତି । ଆପଣ ପୂର୍ତ୍ତବିଭାଗ ମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟାରୀ । ଆପଣଙ୍କୁ କହିଲା ପରେ ଯଦି କେଇଟା କୁଣ୍ଡ ତିଆରି ହୋଇପାରିଲା ନାହିଁ, ତେବେ ଭାଗ୍ୟକୁ ଆଦରି ଆମେ ଚୁପ୍ ରହିବାକୁ ସ୍ଥିର କଲୁ ।" କଥାଟା ବୋଧେ ତାଙ୍କୁ ଝଟ୍‌କା ଲାଗିଲା । ସେ କହିଲେ "ହଉ, ଯଦି ଦୁଇଦିନ ଭିତରେ କୁଣ୍ଡ ତିଆରି ହୋଇନଥିବ, ତେବେ ମତେ ଟିକେ ଫୋନ୍ କରି କହିଦେବ ।" ମୁଁ ସେଦିନ ସେ କଥା ଉପରେ ସେତେଟା ଗୁରୁତ୍ୱ ଦେଇନଥିଲି ।

ତା'ପରଦିନ ସକାଳେ ଚା' ପିଇସାରି କବାଟ ଖୋଲିଲାବେଳକୁ ଦେଖିଲି ସାମନା ବାରଣ୍ଡା ପାରାପିଟ୍ ଉପରେ ଜଣେ ଭଦ୍ରଲୋକ ବସିଛନ୍ତି । ଦେହରେ ସାଧାରଣ ଧୋତି । ବ୍ଲୁ ରଙ୍ଗର ସିଙ୍ଗଲକପ୍ ସାର୍ଟ ଓ ଗୋଡ଼ରେ ଚପଲ । ପାଖରେ ଗାଡ଼ିନଥିଲା । ବୋଧହୁଏ ଚାଲିକରି ଆସିଥିଲେ ? ମୁଁ ହଠାତ୍ ଜାଣିପାରିଲି ନାହିଁ । ସେ ଭଦ୍ରଲୋକ ଏତେ ସକାଳୁ ଏଠାକୁ କାହିଁକି ଆସିଥିଲେ ? ତାଙ୍କୁ ଆଗରୁ କେବେ ଦେଖିଥିଲା ଭଳି ମନେ ହେଲା ନାହିଁ । କିଛି ପଚାରିବା ଆଗରୁ ସେ ତାଙ୍କ ଆଡୁ ପଚାରିଲେ, "ଆଜ୍ଞା, ଆପଣଙ୍କ କ୍ୱାର୍ଟର୍ସରେ ପାଣି କୁଣ୍ଡ ତିଆରି ହେବ ପରା । କୋଉଠି ହେବ ଟିକେ ଦେଖେଇ ଦିଅନ୍ତେ ନାହିଁ ।"

ମୋର ମନେ ପଡ଼ିଗଲା । ଦୁଇଦିନ ତଳେ ଦାଦା କହିଥିଲେ କୁଣ୍ଡ ତିଆରି ହୋଇନଥିଲେ ତାଙ୍କୁ ଜଣାଇବା ପାଇଁ । ମୁଁ କହିଲି, ହଉ ଆସନ୍ତୁ, ଘର ଭିତରେ ଯୋଉଠି ସବୁ ପାଣି ଟ୍ୟାପ୍ ଲାଗିଛି, ତା'ରି ତଳେ କୁଣ୍ଡ ତିଆରି କରିଦେବେ । ସେ ଭଦ୍ରଲୋକ, ପାଣି ଟ୍ୟାପ୍ ଗଣି ଚାଲି ଗଲେ ।

କିଛି ସମୟ ପରେ ଇଟା, ବାଲି, ସିମେଣ୍ଟ ସହିତ ମୂଲିଆ, ମିସ୍ତ୍ରୀ ଆସିଗଲେ । ଦିନକ ଭିତରେ ଆମ କ୍ୱାଟର୍ସରେ ଛଅଟି କୁଣ୍ଡ ତିଆରି ହୋଇଗଲା । ଗଲାବେଳେ ସେ ଭଦ୍ରଲୋକ ମତେ କହିଗଲେ, ଆପଣ ଦୟାକରି ଟିକିଏ ପରିଜାବାବୁଙ୍କୁ ପାଣି କୁଣ୍ଡ ହେଲା ବୋଲି କହିଦେବେ । ମୁଁ ପରେ ଖବର ନେଇ ବୁଝିଲି, ସେ ଭଦ୍ରଲୋକ ଥିଲେ ବର୍ତ୍ତମାନର ସ୍ୱସ୍ତି ହୋଟେଲର ମାଲିକ ଜେ.କେ ମହାନ୍ତିଙ୍କ ବାପା କୃଷ୍ଣଚନ୍ଦ୍ର ମହାନ୍ତି । ସେ ସେତେବେଳେ ଛୋଟକାଟର କଣ୍ଟ୍ରାକ୍ଟରି କାମ କରୁଥିଲେ । ସେହି ହିସାବରେ ମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟାରୀଙ୍କ ସହିତ ତାଙ୍କର ସମ୍ପର୍କ ଥିଲା । ବାଣୀବିହାରରେ ଅନ୍ୟମାନଙ୍କ ପାଇଁ ପାଣି ଅସୁବିଧା ହେଉଥିଲା ବେଳେ ଆମର ଆଉ ସେ ସମସ୍ୟା ଉପୁଜିନଥିଲା । କିନ୍ତୁ ଦୀର୍ଘଦିନ ଧରି କେହି ଜାଣିପାରି ନଥିଲେ ଆମ କ୍ୱାଟର୍ସରେ ପାଣିକୁଣ୍ଡ କିପରି ତିଆରି ହେଲା ।

ନାଁ ସିନା ବାଣୀବିହାର । କିନ୍ତୁ ସେଠାରେ ବିଦ୍ୟାଦାତ୍ରୀ ବୀଣାପାଣିଙ୍କର ପୂଜାର୍ଚ୍ଚନାର କୌଣସି ବ୍ୟବସ୍ଥା ନଥିଲା । ଦିନେ କଥା ପ୍ରସଙ୍ଗରେ ସେ କଥାଟି ଆଲୋଚିତ ହୋଇଥିଲା । ଆମେ କେଇଜଣ ସ୍ଥିର କଲୁ, ଆମ ଡିପାର୍ଟମେଣ୍ଟରେ ବାଗ୍‌ଦେବୀଙ୍କର ପୂଜା କରାଯିବ । ସନ୍ଧ୍ୟାବେଳେ ଆମ କ୍ୱାଟର ଖଟୀରେ ପୂଜା କଥା ପକାଇଲୁ । ପରିଜାବାବୁ ଆମ କଥାକୁ ପୂର୍ଣ୍ଣ ସମର୍ଥନ କଲେ । ତା' ସହିତ ପୂଜା ପାଇଁ କିଛି ଆର୍ଥିକ ସାହାଯ୍ୟ ମଧ୍ୟ ଦେଲେ । ଆମର ଉତ୍ସାହ ଦି'ଗୁଣ ବଢ଼ିଗଲା । ନିଷ୍ପତ୍ତି ହେଲା ଆମ ଡିପାର୍ଟମେଣ୍ଟର ସେମିନାର ରୁମ୍‌ରେ ଦେବୀ ସରସ୍ୱତୀଙ୍କର ପୂଜା ହେବ । ବ୍ରାହ୍ମଣଙ୍କ ସହିତ ପରାମର୍ଶ କରି ପୂଜା ସାମଗ୍ରୀ ଓ ସରସ୍ୱତୀ ମୂର୍ତ୍ତି କ୍ୟାପିଟାଲ ହାଟରୁ କିଣାଗଲା । ଦେବୀଙ୍କ ମୂର୍ତ୍ତି ସଜାଯିବ କିପରି ? ସେ କଥା ଚିନ୍ତାକରି ମୁଣ୍ଡ ଘୂରିଲା ।

ଶେଷରେ ଗୋଟିଏ ଆଇଡିଆ ଜୁଟିଲା । ଲେଡିଜ୍ ହଷ୍ଟେଲ ଯାଇ କିଛି ଶାଢ଼ି ମାଗି ଆଣିଲେ ତ କାମ ଚଳିଯାଆନ୍ତା । ଏଇ କାମରେ ଆମେ ସୁଭାଷକୁ କାମରେ ଲଗାଇବା ପାଇଁ ସ୍ଥିର କଲୁ । ସୁଭାଷର ନାରୀ ମନଲୋଭା ଚେହେରା ସାଙ୍ଗକୁ ସେ ମିଷ୍ଟଭାଷୀ ଥିଲା । ଅଳ୍ପକଥା କହେ । ସବୁବେଳେ ହସ ହସ ମୁହଁ । ଝିଅମାନଙ୍କର ତା' ପ୍ରତି ଭଲ ଧାରଣା ଥିଲା । ସେ ପ୍ରଥମେ ରାଜି ହେଉନଥିଲା । ମାତ୍ର ଆମେ ଜୋର୍ ଦେଲାରୁ ହିଁ କଲା । କିନ୍ତୁ ଗୋଟିଏ ସର୍ତ୍ତ ରଖିଲା । ତା' ସହିତ ଆମେ କେଇଜଣ ଲେଡିଜ୍ ହଷ୍ଟେଲ ଯିବୁ ।

ବାଣୀବିହାରର ଦ୍ୱିତୀୟ ନମ୍ବର ଗେଟ୍ ପାଖରେ ଦୁଇଟି ବଡ଼ କ୍ୱାଟରରେ ଝିଅମାନେ ରହୁଥିଲେ । କ୍ଲାସ ସରିଲା ପରେ ଆମେ ସୁଭାଷକୁ ଧରି ସେ ହଷ୍ଟେଲକୁ ଗଲୁ । ଆମେ ବାହାରେ ଛିଡାହେଲୁ । ସୁଭାଷ ଭିତରକୁ ଗଲା । ଆମ ଯୋଜନା ସଫଳ ହେଲା । ସୁଭାଷ ଯେଉଁମାନଙ୍କୁ ଶାଢ଼ି ମାଗିଲା, ବିନାଦ୍ୱିଧାରେ ସେମାନେ ଶାଢ଼ି ଦେଇଦେଲେ । ସେ ହଷ୍ଟେଲରେ

ଆମ ଡିପାର୍ଟମେଣ୍ଟର ଫିଫ୍‌ଥ ଇୟରରେ ମନ୍ଦିରା ଘୋଷାଲ ବୋଲି ଝିଅଟିଏ ପଢୁଥିଲା । ଦେଖିବାକୁ ଡଉଲଡାଉଲ ଚେହେରା । ବଙ୍ଗଭାଷୀ । କିନ୍ତୁ ଓଡ଼ିଆ କହିବୋଲି ଜାଣେ ।

ତାଙ୍କ ବାପା ଡକ୍ଟର ଘୋଷାଲ ରାଜଧାନୀର ଜଣେ ନାମକରା ଡାକ୍ତର ଥିଲେ । ଓଡ଼ିଶାରେ ଜନ୍ମହୋଇ ବି ମନ୍ଦିରାର ଉଚ୍ଚାରଣରରେ କିଛି ତ୍ରୁଟି ଥିଲା । 'ଣ', 'ଳ' କହିଲା ବେଳେ ଝୁଣ୍ଟୁଥିଲା । ସୁଭାଷ ତାକୁ ବଙ୍ଗଳାରେ ଶାଢ଼ି ଦେବା ପାଇଁ କହିଲା, "ନତୁନ୍ ଶାଢ଼ିଟା, ଦେଖେ ଶୁନେ ବ୍ୟବହାର କରବେନ୍ । କାଣ୍ଟାଟାଟା ମାରବେନା( ନୂଆ ଶାଢ଼ୀଟା, ଦେଖି ଚାହିଁ ବ୍ୟବହାର କରିବେ । କଣ୍ଟା ମାରିବେନି)

ଲେଡିଜ୍ ହଷ୍ଟେଲରୁ ଶାଢ଼ି ମିଳିଗଲା ପରେ ଆମ ଖୁସି କହିଲେ ନସରେ । ଆମେ ସବୁ ସଜାସଜିରେ ଲାଗିଗଲୁ । ସାଢ଼େ ଦଶଟା ସୁଦ୍ଧା ସବୁ କାମ ସରିଗଲା । ପୂଜା ଦିନ ଅନ୍ୟ ବିଭାଗର ଅଧ୍ୟାପକ, ଛାତ୍ରମାନଙ୍କୁ ପୂଜାକୁ ଡକାଗଲା । ଖୁବ୍ ଧୂମ୍‌ଧାମରେ ପୂଜାହେଲା । ସମସ୍ତେ ଭୋଗ ଖାଇଲେ । ସନ୍ଧ୍ୟା ସୁଦ୍ଧା ମୂର୍ତ୍ତି ବିସର୍ଜନ ହୋଇଗଲା । ଆମେ ଗୋଟିଏ ଟ୍ରଲିରେ ମୂର୍ତ୍ତି ଓ ଅନ୍ୟାନ୍ୟ ସାମଗ୍ରୀ ନେଇ ପାଖରେ ଥିବା ଜଳାଶୟରେ ପକାଇଦେଲୁ । ପୂଜା ସମୟରେ ଝିଅମାନଙ୍କ ଶାଢ଼ିରେ ଯେପରି ଦାଗ ନଲାଗିବ ସେଥିପ୍ରତି ସଜାଗ ଥିଲୁ ।

ଯେଉଁଠି ବାଘର ଭୟ, ସେଇଠି ସନ୍ଧ୍ୟା । ପୂଜା କଲାବେଳେ ଧୂପଦାନୀରୁ ଜଳନ୍ତା କତାଗୁଣ୍ଡ ଟିକେ ଉଡି ଗୋଟିଏ ଶାଢ଼ି ଉପରେ ପଡ଼ିଯାଇଥିଲା । ଆମେ ସେତେବେଳେ ସେଥିପ୍ରତି ବିଶେଷ ଗୁରୁତ୍ୱ ଦେଇନଥିଲୁ । ମାତ୍ର ପୂଜା ପରେ ଆମେ ଯେତେବେଳେ ଶାଢ଼ିସବୁ ଫିଟାଇ ଭାଙ୍ଗିଲୁ, ମନ୍ଦିରା ଦେଇଥିବା ଶାଢ଼ିରେ କଣାଟିଏ ହୋଇଥିବାର ଦେଖାଗଲା । କ'ଣ କରାଯିବ ? ସେତ ତା'ର ନୂଆଶାଢ଼ିଟି ଦେଇଥିଲା । ଦେଲାବେଳେ ସାବଧାନତା ସହକାରେ ବ୍ୟବହାର କରିବାକୁ କହିଥିଲା ।

ସୁଭାଷ ବହୁତ ମନକଷ୍ଟ କଲା । ଆମେ ସ୍ଥିର କଲୁ ଶାଢ଼ିଟି ମନ୍ଦିରାକୁ ଫେରାଇ ଦେବା । ସବୁକଥା କହିବା । ଯଦି ସେ ମନ ଦୁଃଖ କରେ, ତେବେ ଆମେ ଚାନ୍ଦାକରି ଗୋଟାଏ ନୂଆଶାଢ଼ି କିଣି ତାକୁ ଦେଇଦେବା । ଆମେ ସୁଭାଷ ହାତରେ ଶାଢ଼ିସବୁ ଫେରାଇ ଦେଲୁ । ସେଥିରେ ମନ୍ଦିରା ଶାଢ଼ି ବି ଥିଲା । ସେ ପ୍ରଥମେ ନଦେଖି ତାକୁ ନେଇଗଲା । ଆମେ ଭାବିଲୁ, ଯାହାହେଉ ଗୋଟିଏ ଚିନ୍ତାଗଲା । କିନ୍ତୁ ମନରୁ ଭୟ ଯାଇ ନଥିଲା । ଆମେ କିଛି ଦୂରରେ ମନ୍ଦିରାର ପ୍ରତିକ୍ରିୟା କ'ଣ ହେଉଛି ଦେଖିବାକୁ ଅପେକ୍ଷା କଲୁ । ଅଳ୍ପ ସମୟ ପରେ ଦେଖିଲୁ ମନ୍ଦିରା ଶାଢ଼ିଟି ହଷ୍ଟେଲ ବାହାରେ ଥିବା ପାରାପିଟ୍ ଉପରେ ଥୋଇ ମନଦୁଃଖରେ ବସିଛି । ଘଟଣାଟା ଆମକୁ ବହୁତ ଖରାପ ଲାଗିଲା ।

ଶେଷରେ ଆମେ ସମସ୍ତେ ତା'ପାଖକୁ ଗଲୁ ଏବଂ ପୂଜକର ଅସାବଧାନତା ଯୋଗୁଁ ଏପରି ଘଟିଥିବା କଥା କହି ଦୁଃଖ ପ୍ରକାଶ କରିବା ସହିତ ସେହିଭଳି ଗୋଟିଏ ନୂଆଶାଢ଼ି

କିଣିଦେବାକୁ ତାକୁ ପ୍ରତିଶ୍ରୁତି ଦେଲୁ । କଥାବାର୍ତ୍ତା ବେଳେ ଅନ୍ୟ ଝିଅମାନେ ଆସି ଆମ ସାଙ୍ଗରେ ମିଶିଲେ । ସେମାନେ ମନ୍ଦିରାକୁ ବୁଝାଇଲେ । ଶାଢ଼ିର ଯୋଉ ଅଂଶରେ କଣା ହୋଇଛି, ପିନ୍ଧିଲାବେଳେ ତାହା ଜଣାପଡିବ ନାହିଁ ବୋଲି କହିଲେ । କିଛି ସମୟର ଆଳାପ ପରେ ମନ୍ଦିରାର ମନ ବଦଳି ଗଲା । ତାକୁ ନୂଆଶାଢ଼ି କିଣିଦେବା ଦରକାର ନାହିଁ ବୋଲି ଆମକୁ କହିଲା ।

ଆମେ ସବୁ ଏକାଠି କାଣ୍ଟିନକୁ ଯାଇ ସେଠାରେ କିଛି ସମୟ କଟାଇଲୁ । ତା' ଭିତରେ ଚା' ପକୁଡି ବରାଦ ଦିଆସରିଥିଲା । ସନ୍ଧ୍ୟା ବେଳକୁ ସ୍ୱାଭାବିକ ଅବସ୍ଥା ଫେରି ଆସିଥିଲା । ଘଟଣାକ୍ରମରେ ଆମେ ମନ୍ଦିରାର ଶାଢ଼ୀରେ କଣା ହୋଇଥିବା ଏବଂ ସେଥିପାଇଁ ସେ ମନଦୁଃଖ କରିଥିବା କଥାକୁ ଭୁଲିଗଲୁ । ହେଲେ ସୁଭାଷ ସେ କଥାକୁ ଦୀର୍ଘଦିନ ଧରି ଭୁଲିପାରି ନଥିଲା । ଶାଢ଼ିରେ ସିନା କଣା ହୋଇଥିଲା କିନ୍ତୁ ତା'ପରେ ଯାହାସବୁ ଘଟିଲା, ସେଥିରେ ସୁଭାଷ ଓ ମନ୍ଦିରା ମଧ୍ୟରେ ସମ୍ପର୍କ ଦୃଢ଼ ହୋଇଥିଲା । ଉଭୟଙ୍କ ମନରେ ପରସ୍ପର ପ୍ରତି ଟିକେ ଦୁର୍ବଳତା ମଧ୍ୟ ଜନ୍ମିଥିଲା ।

ବାଣୀବିହାର ହତା ପଛରେ ଥିବା ଖାଲି ପଡ଼ିଆରେ ଗୋଟିଏ ମହାଦେବ ମନ୍ଦିର ଥିଲା । ମନ୍ଦିରଟି ଛୋଟ । ସକାଳେ ବ୍ରାହ୍ମଣ ଜଣେ ଆସି ମହାଦେବଙ୍କୁ ବେଲପତ୍ର, ପାଣି ଦେଇ ଚାଲିଯାଆନ୍ତି । ଦିନର ଅନ୍ୟାନ୍ୟ ସମୟରେ ସ୍ଥାନଟି ଖାଲିଥାଏ । ବାଣୀବିହାରର ସେ ଅଞ୍ଚଳ ପ୍ରେମୀଯୁଗଳଙ୍କ ପାଇଁ ଥିଲା ପ୍ରକୃଷ୍ଟ ସ୍ଥାନ । ସନ୍ଧ୍ୟା ପୂର୍ବରୁ ହଳ ହଳ ହୋଇ ଯୁବକଯୁବତୀ ହାତ ଧରାଧରି ହୋଇ ସେ ଅଞ୍ଚଳରେ ସ୍ୱଚ୍ଛନ୍ଦରେ ବୁଲାବୁଲି କରନ୍ତି । ବାଧାଦେବାକୁ କେହି ନଥାନ୍ତି । ଆମଭଳି କେଇଜଣ ବେରସିକିଆ ପିଲାଙ୍କ ପାଇଁ ସେ ଅଞ୍ଚଳଟି "ନୋ ଏଣ୍ଟ୍ରି ପଏଣ୍ଟ" ଥିଲା । ଆମ ଡିପାର୍ଟମେଣ୍ଟର କେତେଜଣ ପୁଅଝିଅ ସେଇଠୁ ତାଙ୍କର ପ୍ରେମ ସମ୍ପର୍କ ସ୍ଥାପନ କରି ପରେ ବିବାହ ବନ୍ଧନରେ ଆବଦ୍ଧ ହୋଇଥିଲେ ।

ଆମେ ବାଣୀବିହାରରେ ପଢୁଥିବା ସମୟରେ ରାଜଧାନୀ ଭୁବନେଶ୍ୱର ସହରରେ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଆଜି ରାଜଧାନୀର ଯେଉଁ ଅଞ୍ଚଳଟି ଗୋପବନ୍ଧୁ ନଗର ନାମରେ ପରିଚିତ, ସେତେବେଳେ ସେ ଅଞ୍ଚଳଟି ବୁଦିବୁଦିକିଆ ଜଙ୍ଗଲ ପରିପୂର୍ଣ୍ଣ ଥିଲା । ସନ୍ଧ୍ୟାପରେ ସେ ଅଞ୍ଚଳକୁ କେହି ଯିବାଆସିବା କରୁନଥିଲେ । କଂଗ୍ରେସ ଅଧିବେଶନ ପାଇଁ ସେ ଅଞ୍ଚଳରେ ଗଢ଼ି ଉଠିଲା ନୂଆ କୋଠାବାଡି । ଅଧିବେଶନ ପାଇଁ ପେଣ୍ଡାଲ ଓ ଆହୁରି କେତେ କ'ଣ । ସେହି ସମୟରେ ଭୁବନେଶ୍ୱର ରେଲୱେ ଷ୍ଟେସନର ନବୀକରଣ କରାଯାଇଥିଲା । ବର୍ତ୍ତମାନ ଯେଉଁଠି ଚାରିନମ୍ବର ପ୍ଲାଟଫର୍ମ ରହିଛି, ସେତେବେଳେ ସେଇଠି ଗୋଟିଏ ଛୋଟିଆ ପ୍ଲାଟଫର୍ମ ଥିଲା । ଲୋକେ ମୁଖ୍ୟତଃ ସେଇଠୁ ଯିବାଆସିବା କରୁଥିଲେ ।

କଂଗ୍ରେସ ଅଧିବେଶନ ଉପଲକ୍ଷେ ଭୁବନେଶ୍ୱର ରେଲୱେ ଷ୍ଟେସନ ଠାରୁ ଆଠନମ୍ବର ୟୁନିଟ୍ ପର୍ଯ୍ୟନ୍ତ ଯେଉଁ ବର୍ଣ୍ଣାଢ୍ୟ ଶୋଭାଯାତ୍ରା ବାହାରିଥିଲା, ଲୋକେ ଆଜି ପର୍ଯ୍ୟନ୍ତ ତାକୁ ଭୁଲିପାରି ନାହାନ୍ତି । ସେ ଅଧିବେଶନରେ ଦଳର ସଭାପତି କେ. କାମରାଜ ନାଦରଙ୍କ ସହିତ ପଣ୍ଡିତ ଜବାହରଲାଲ ନେହେରୁ, ଲାଲ ବାହାଦୂର ଶାସ୍ତ୍ରୀ, ମୋରାରଜୀ ଦେଶାଇଙ୍କ ଭଳି ଦେଶର ତୁଙ୍ଗ ନେତାମାନେ ଯୋଗ ଦେଇଥିଲେ । ସେ ଅଧିବେଶନରେ ସ୍ୱେଚ୍ଛାସେବୀ ଭାବରେ ଯୋଗ ଦେବା ପାଇଁ ମତେ ସୁଯୋଗ ମିଳିଥିଲା ।

ମହାନଦୀର ବନ୍ୟାକୁ ନିୟନ୍ତ୍ରଣ କରିବା ଉଦ୍ଦେଶ୍ୟରେ ହୀରାକୁଦ ଠାରେ ଯେଉଁ ବହୁମୂଲ୍ୟ ନଦୀବନ୍ଧ ତିଆରି ହୋଇଥିଲା, ତାଦ୍ୱାରା ମହାନଦୀର ବନ୍ୟାକୁ ସମ୍ପୂର୍ଣ୍ଣ ନିୟନ୍ତ୍ରଣ କରାଯାଇ ନପାରିବାରୁ, ଟିକରପଡା ଠାରେ ମହାନଦୀରେ ଆଉ ଗୋଟିଏ ବନ୍ଧ ନିର୍ମାଣ କରିବାକୁ ସ୍ଥିର ହୋଇଥିଲା । ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁ ଭୁବନେଶ୍ୱର ଆସିଥିବା ସମୟରେ ତାଙ୍କ ଦ୍ୱାରା ଟିକରପଡା ଠାରେ ପ୍ରସ୍ତାବିତ ନଦୀବନ୍ଧ ଯୋଜନାର ଶିଳାନ୍ୟାସ କରିବାକୁ କାର୍ଯ୍ୟକ୍ରମ ନିର୍ଦ୍ଧାରିତ ହୋଇଥିଲା । ହେଲିକପ୍ଟର ଯୋଗେ ପଣ୍ଡିତଜୀ ଭୁବନେଶ୍ୱରରୁ ଟିକରପଡା ଗଲେ । ହଠାତ୍ ସେ ସେଠାରେ ଅସୁସ୍ଥ ହୋଇ ପଡିଲେ । ତୁରନ୍ତ ତାଙ୍କୁ ଭୁବନେଶ୍ୱର ଫେରାଇ ଅଣାଯାଇ ବିମାନ ଯୋଗେ ଦିଲ୍ଲୀ ନିଆଗଲା । ମାତ୍ର ସେ ଆଉ ସୁସ୍ଥ ହେଲେ ନାହିଁ । ଆଧୁନିକ ଚିକିତ୍ସାର ପ୍ରୟୋଗ ଓ ଡାକ୍ତରମାନଙ୍କର ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ୧୯୬୪ ମସିହା ମେ ୨୭ ତାରିଖରେ ତାଙ୍କର ଦେହାନ୍ତ ହୋଇଥିଲା ।

ବାଣୀବିହାରରେ ଅଧ୍ୟୟନ ସମୟରେ ଭୁବନେଶ୍ୱର କଂଗ୍ରେସ ଅଧିବେଶନ, ପଣ୍ଡିତ ନେହରୁଙ୍କ ଅସୁସ୍ଥତା ଇତ୍ୟାଦି ଘଟଣା ମନ ଭିତରେ ଅଭୁଲା ସ୍ମୃତି ହୋଇ ରହିଯାଇଛି । ସମୟର ପରିବର୍ତ୍ତନ ସହିତ ବାଣୀବିହାରର କଳେବର ବୃଦ୍ଧି ପାଇଛି । ସେଠାରେ କଳା ଶ୍ରେଣୀ ସହିତ ବିଜ୍ଞାନ ଶ୍ରେଣୀମାନ ଖୋଲିଛି । ମାତ୍ର ବାଣୀବିହାରର ସ୍ଥିତି ବିଗିଡିଯାଇଛି । ଅଧ୍ୟାପକ ଓ ଛାତ୍ରଛାତ୍ରୀମାନଙ୍କ ଭିତରେ ପୂର୍ବ ସଂପର୍କ ଆଉ ନାହିଁ । ବାଣୀବିହାର ଅସାମାଜିକ ଯୁବକମାନଙ୍କର ଏକପ୍ରକାର ଆଡ୍ଡାସ୍ଥଳୀରେ ପରିଣତ ହୋଇଛି । ଛାତ୍ରମାନଙ୍କ ଭିତରେ ଗଣ୍ଡଗୋଳ ଲାଗି ଅନେକ ସମୟରେ କ୍ଲାସ ସସ୍‌ପେଣ୍ଡ ହେଉଛି । ଏସବୁ ଘଟଣା ଆମଭଳି ପୁରୁଣା ପିଲାଙ୍କୁ ଦାରୁଣ ଦୁଃଖ ଦେଉଛି ।

# କଳାକୋଟ୍ ପିନ୍ଧିବା ନୋହିଲା

ଏମ୍.ଏ ପରୀକ୍ଷା ରେଜଲ୍ଟ ବାହାରିଲା ପରେ ବେଡିଂବିସ୍ତରା ଧରି ପୁଣି କଟକ ଫେରିବାକୁ ପଡିଲା । ଆମ ସାଙ୍ଗରେ ଥିବା ସୁଭାଷ, ହିନ୍ଦୁସ୍ଥାନ ଲିଭର କମ୍ପାନୀରେ ଚାକିରି ପାଇ ଚାଲିଯାଇଥିଲା । ଅଳ୍ପଦିନ ଭିତରେ ସ୍ୱରୂପବାବୁ ମଧ୍ୟ ଇଣ୍ଡିଆନ ରେଭେନ୍ୟୁ ସର୍ଭିସର ଇନ୍‌କମ ଟାକ୍ସ ବିଭାଗରେ ଯୋଗଦେବା ପାଇଁ ମନୋନୀତ ହେଲେ । ସ୍ୱରୂପବାବୁ କ୍ୱାର୍ଟର୍ସରେ ଥିବା କୌଣସି ଆସବାବପତ୍ର ନେବାକୁ ଇଚ୍ଛା କଲେ ନାହିଁ । କେବଳ ଗୋଟିଏ କାରରେ ଯେତିକି ବହିପତ୍ର, ଲୁଗାପଟା ଧରିଲା, ସେତିକି ସେ କଟକ ନେଲେ । ଟେବୁଲ୍, ଚେୟାର, ରୋଷେଇ ସରଞ୍ଜାମ ଇତ୍ୟାଦି ତାଙ୍କ ଟଙ୍କାରେ କିଣାଯାଇଥିଲା । ମାତ୍ର ସେସବୁକୁ ସେ ଜଣେ ବନ୍ଧୁଙ୍କୁ ଦାନ କରିଦେଇଥିଲେ ।

ପାଠପଢ଼ା ଶେଷରେ ଜୀବନର ଗତିପଥ କେଉଁଦିଗକୁ ମୋଡ଼ ନେବ, ସେ କଥା ଆଗରୁ ସ୍ଥିର ହୋଇପାରି ନଥିଲା । ବାଣୀବିହାରରେ ପଢ଼ିଲା ବେଳେ ଅଜାଣତରେ ଛାତ୍ର ରାଜନୀତି ମୋ ଭିତରେ ପ୍ରବେଶ କରିସାରିଥିଲା । ଜୀବନରେ ସ୍ୱାଧୀନ ଭାବରେ କିଛି କରିବା ପାଇଁ ମନରେ ଏକ ଚିନ୍ତା ଉଙ୍କି ମାରିଲା । ସେଥିପାଇଁ କାହାକୁ କିଛି ନଜଣାଇ କଟକରେ ମଧୁସୂଦନ ଲ' କଲେଜରେ ନାଁ ଲେଖାଇ ଦେଲି ।

ସେ ସମୟରେ ଛାତ୍ରସମାଜ ମଧ୍ୟରେ ଦୁଇଟି ଶକ୍ତି କାର୍ଯ୍ୟ କରୁଥିଲା । ଗୋଟିଏ ହେଲା, କମ୍ୟୁନିଷ୍ଟ ଦଳ ଦ୍ୱାରା ପରିଚାଳିତ 'ଛାତ୍ରଫେଡେରେସନ' ଆଉ ଅନ୍ୟଟି 'ଛାତ୍ର ୟୁନିଅନ' । ଛାତ୍ର ୟୁନିଅନରେ କମ୍ୟୁନିଷ୍ଟମାନଙ୍କ ବ୍ୟତୀତ ଅନ୍ୟସବୁ ରାଜନୈତିକ ମତବାଦର ଛାତ୍ରମାନେ ସାମିଲ ହେଉଥିଲେ ।

କଟକରେ ସେତେବେଳେ ଛାତ୍ରସମାଜ ମଧ୍ୟରେ ଛାତ୍ର ଫେଡେରେସନର ପ୍ରଭାବ ଅଧିକ ଥିଲା । ବିଶେଷକରି ଲ' କଲେଜ ଛାତ୍ର ୟୁନିଅନ, ଫେଡେରେସନ କବଜାରେ ରହୁଥିଲା । ମୁଁ ସେଠାରେ ନାଁ ଲେଖିବାର ଅଳ୍ପଦିନ ମଧ୍ୟରେ କଲେଜ ୟୁନିଅନ ନିର୍ବାଚନ ହେଲା । ଫେଡେରେସନ ପକ୍ଷରୁ ମୋର ବାଣୀବିହାର ସହାଧ୍ୟାୟୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ ପ୍ରାର୍ଥୀ ହୋଇଥିଲେ । ନିର୍ବାଚନରେ ଜୟଯୁକ୍ତ ହୋଇ ସେ ବର୍ଷ ଲ' କଲେଜ ଛାତ୍ର ୟୁନିଅନର ସଭାପତି ହେଲେ । ମୁଁ ସେ ପର୍ଯ୍ୟନ୍ତ ଛାତ୍ର ୟୁନିଅନର କାର୍ଯ୍ୟରେ ସକ୍ରିୟ ଅଂଶଗ୍ରହଣ କରିନଥିଲି । କିନ୍ତୁ ଫେଡ଼େରେସନ ପ୍ରାର୍ଥୀଙ୍କ ବିଜୟକୁ ସହଜରେ ଗ୍ରହଣ କରିପାରି ନଥିଲି । ଆମେ କେଇଜଣ ଭବିଷ୍ୟତ କର୍ମପନ୍ଥା ସଂପର୍କରେ ଆଲୋଚନା କଲୁ ।

ସେହି ସମୟରେ ଭାରତ, ପାକିସ୍ଥାନ ଯୁଦ୍ଧ ଶେଷ ହୋଇଥିଲା । ଯୁଦ୍ଧ ପାଣ୍ଠିକୁ ଅର୍ଥ ସାହାଯ୍ୟ ଦେବାପାଇଁ ସରକାରଙ୍କ ପକ୍ଷରୁ ସମସ୍ତଙ୍କୁ ଅନୁରୋଧ କରାଯାଇଥିଲା । ସେହି ଅନୁରୋଧର ସୁଯୋଗ ନେବାକୁ ଆମେ ପ୍ରସ୍ତୁତ ହେଲୁ । ଯାହା କୁହାଯାଏ 'ମୂଳୁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କିମ୍ପା କଳି' । ଆମେ ନିଷ୍ପତ୍ତି କଲୁ, କଲେଜ ୟୁନିଅନ ପାଇଁ ଥିବା ଅର୍ଥକୁ ଯୁଦ୍ଧପାଣ୍ଠିକୁ ଦାନ କରିଦେବା । ଘରୋଇ ଭାବରେ କଲେଜ ୟୁନିଅନ ପରାମର୍ଶଦାତାଙ୍କ ସହିତ ଆମେ ଆଲୋଚନା କଲୁ । ଆମ ମନୋଭାବ କଥା ତାଙ୍କୁ ଜଣାଇଲୁ । ସେ ଆମ କଥାକୁ ତାରିଫ କଲେ ।

କିଛିଦିନ ପରେ ଛାତ୍ର ୟୁନିଅନର ପ୍ରଥମ ବୈଠକ ବସିଲା । ଅନ୍ୟ କାର୍ଯ୍ୟକ୍ରମ ଆରମ୍ଭ ହେବା ଆଗରୁ ମୁଁ ଗୋଟିଏ ପ୍ରସ୍ତାବ ଆଗତ କରି ୟୁନିଅନ ପାଇଁ ମଞ୍ଜୁର ହୋଇଥିବା ଅର୍ଥକୁ ଜାତୀୟ ଯୁଦ୍ଧପାଣ୍ଠିକୁ ଦାନ କରିଦେବାକୁ ଅନୁରୋଧ କଲି । ଆଗରୁ ପିଲା ଠିକ୍ ହୋଇ ରହିଥିଲେ । ମୋ ପ୍ରସ୍ତାବକୁ କରତାଳି ଦେଇ ସମର୍ଥନ ଜଣାଇଲେ । ୟୁନିଅନ ସଭାପତି, ମୋର ବନ୍ଧୁ ପ୍ରଫୁଲ୍ଲ ଘଡ଼େଇ ଓ ଫେଡ଼େରେସନର ଅନ୍ୟ ସଦସ୍ୟମାନେ କିଛି ବୁଝିବା ପୂର୍ବରୁ ପ୍ରସ୍ତାବଟି ଗୃହୀତ ହୋଇଯାଇଥିଲା । ବୈଠକ ପରେ ପ୍ରଫୁଲ୍ଲ ଆସି ମତେ କହିଲା, "ମୁଁ ସିନା ନିର୍ବାଚନରେ ଜିତିଥିଲି, ତୁ କିନ୍ତୁ ବୁଦ୍ଧିରେ ଜିତିଗଲୁ ।"

ଲ' କଲେଜରେ ଅଧ୍ୟୟନ ଆମଭଳି ପିଲାଙ୍କ ପାଇଁ ଟାଇମ୍ ପାସ୍ ଭଳି ବ୍ୟବସ୍ଥା ଥିଲା । ସେଠାରେ ପଢୁଥିବା ପିଲାଙ୍କ ଭିତରୁ ଅଧିକାଂଶ ଚାକିରି କରୁଥିଲେ । ସାଢ଼େ ନଅଟା ବାଜିଲେ ପାଖରେ ଥିବା 'ପଥିକବନ୍ଧୁ ଭୋଜନାଳୟ'ରେ ଖାଇସାରି ଚାକିରି କ୍ଷେତ୍ରରେ ହାଜର ହୋଇଯାଉଥିଲେ । ଛାତ୍ର ରାଜନୀତିରେ ସକ୍ରିୟ ଭାଗ ନେଉଥିବା ଆମେ କେତେଜଣ ବନ୍ଧୁ ଘରକୁ ନଯାଇ ବଟୁଭାଇ ଗାଣ୍ଠିଆ ଦୋକାନରେ ଆଡ୍ଡା ମାରୁଥିଲୁ । ବଟୁଭାଇ ଦୋକାନ ସେତେବେଳେ ଛାତ୍ର ରାଜନୀତିର କେନ୍ଦ୍ରସ୍ଥଳ ଥିଲା । ବଟୁଭାଇ ଦୋକାନର ଅଧା ଚୋପା ଲାଗିଥିବା ଆଳୁଚପ୍ ସାଙ୍ଗକୁ ଚଟଣୀ ଖୁବ୍ ସୁଆଦିଆ ଥିଲା । ବଟୁଭାଇଙ୍କ ପୂରା ନାଁ କ'ଣ,

ସେ କଥା କେହି ଜାଣିନଥିଲେ । ତାଙ୍କ ଦୋକାନଟି ଛୋଟ ହେଲେ କ'ଣ ହେବ, କାରବାର ଭଲ ହେଉଥିଲା । ବଚୁଭାଇ ଖୁବ୍ ମେଳାପୀ । ପୋଖତ ବ୍ୟବସାୟୀ । ହାବଭାବରୁ ସେ ଗରାଖଙ୍କ ମନକଥା ବୁଝି ପାରୁଥିଲେ । କମାର ଲୁହା ଦେଖି ପାଣି ଦେଲାଭଳି ସେ ଗରାଖଙ୍କୁ ଦେଖି ବ୍ୟବହାର କରୁଥିଲେ । ସକାଳ ଦଶଟାରୁ ଦିନ ବାରଟା, ଗୋଟାଏ ଯାଏ ଆମର ସେଠି ଆଡ୍ଡା ହେଉଥିଲା ।

ଏକ ସମୟରେ ଲ' କଲେଜରେ ଅଧିକ ଛାତ୍ର ହେଉନଥିଲେ । ସ୍ୱଳ୍ପ ଦରମା ଯୋଗୁ ଅଧ୍ୟାପନା ପାଇଁ ଅଧ୍ୟାପକ ମଧ୍ୟ ମିଳୁ ନଥିଲେ । ଫଳରେ ଲ' କଲେଜ ବନ୍ଦ ହୋଇଯିବା ଭଳି ପରିସ୍ଥିତି ସୃଷ୍ଟି ହୋଇଥିଲା । ସେହି ସମୟରେ ଓଡ଼ିଆ ଜାତିର ତ୍ରାଣକର୍ତ୍ତା, ପ୍ରଥମ ଓଡ଼ିଆ ଓକିଲ, ଉତ୍କଳ ଗୌରବ ମଧୁସୂଦନ ଦାସ କଲିକତାରୁ ଫେରିଆସି କଟକରେ ଓକିଲାତି ଆରମ୍ଭ କରିଥିଲେ ।  ପରିସ୍ଥିତିର ଗମ୍ଭୀରତାକୁ ଉପଲବ୍ଧି କରି ସେ ବିନା ବେତନରେ ଲ' କଲେଜରେ କିଛି ଦିନ ଅଧ୍ୟାପନା କରିଥିଲେ । ତାଙ୍କରି ତ୍ୟାଗ ଯୋଗୁ ଶିକ୍ଷାନୁଷ୍ଠାନଟି ଅକାଳ ମୃତ୍ୟୁରୁ ରକ୍ଷା ପାଇଯାଇଥିଲା । ପରବର୍ତ୍ତୀ ସମୟରେ ସେହି ମହାନ୍ ବ୍ୟକ୍ତିଙ୍କ ଅମ୍ଳାନ ସ୍ମୃତିରେ ଲ' କଲେଜର ନାମ ମଧୁସୂଦନ ଲ' କଲେଜ ରଖାଯାଇଥିଲା ।

ଆମର ଅଧ୍ୟାପକମାନଙ୍କ ମଧ୍ୟରେ ସ୍ୱବେଶ ରାୟ ଖୁବ୍ କଡ଼ା ମିଜାଜର ବ୍ୟକ୍ତିଥିଲେ । ସାମାନ୍ୟ ବିଶୃଙ୍ଖଳା ତାଙ୍କ ଦେହରେ ଯାଉନଥିଲା । ପିଲାଙ୍କୁ କ୍ଲାସରେ ଶାସନ କରିବାକୁ ସେ ଯେତିକି ଉଦ୍ୟମ କରୁଥିଲେ, ପିଲାଏ ତାଙ୍କୁ ଠକିବା ପାଇଁ ତତୋଽଧିକ ଚେଷ୍ଟିତ ଥିଲେ । ଥରେ ସେ ରୋଲ୍‌କଲ୍ କଲାବେଳେ ଜଣେ ପିଲା ଗୋଟିଏ ପକେଟ ଟ୍ରାନଜିଷ୍ଟର ବଜାଇଦେଲା । ସେ ଶବ୍ଦ ତାଙ୍କ କାନରେ ବାଜିଲାକ୍ଷଣି ସେ ପାଟିକରି ଉଠିଲେ, "ହୁ ଇଜ ଦେୟାର ପ୍ଲେଡ ଟ୍ରାନଜିଷ୍ଟର  ?" ଆମେ ପରିସ୍ଥିତିକୁ ହାଲୁକା କରିବାକୁ ଯାଇ କହିଲୁ, ସାର୍ ! କ୍ଲାସରେ ଟ୍ରାନଜିଷ୍ଟର କୁଆଡୁ ଆସିବ ? ବାହାରେ ପ୍ରୋସେସନ ଯାଉଛି, ସେଇ ଶବ୍ଦ ଶୁଭିଥିବ । ସେ କିନ୍ତୁ ନଛୋଡ଼ବନ୍ଧା । କହିଲେ, "ଡୁ ୟୁ ଥିଙ୍କ ଆଇ ଆମ୍ ଏ ଫୁଲ, ହୁ କ୍ୟାନ ନଟ ଡିଷ୍ଟିଙ୍ଗୁଇସ ବିଟ୍ୟୁଇନ ଟ୍ରାନଜିଷ୍ଟର ସାଉଣ୍ଡ ଆଣ୍ଡ ବ୍ୟାଣ୍ଡପାର୍ଟି ପ୍ରୋସେସନ ସାଉଣ୍ଡ । ହଉ ! ତମେସବୁ ଯଦି ପଢ଼ିବାକୁ ଆଗ୍ରହୀ ନୁହଁ, ତେବେ ମୁଁ ପଢ଼ାଇବାକୁ କାହିଁକି ଚେଷ୍ଟା କରିବି ? ତମେ ସବୁ ବଡ଼ ପିଲା ।  ତମେ ଯଦି ତମ ଶିକ୍ଷକମାନଙ୍କୁ ସମ୍ମାନ ନଦେବ, ତେବେ ତମେ ବଡ଼ ହେଲେ ତମକୁ କାହିଁ କିଏ ସମ୍ମାନ ଦେଖାଇବ ?" ସ୍ୱବେଶ ରାୟଙ୍କ କଥା ସେଦିନ ଆମ ଉପରେ ଖୁବ୍ ପ୍ରଭାବ ପକାଇଥିଲା । ଆମେସବୁ ଛିଡ଼ା ହୋଇ 'ସରି' ବୋଲି କହି ଘଟଣାକୁ ଭୁଲିଯିବାକୁ ସାର୍‌ଙ୍କୁ ଅନୁରୋଧ କଲୁ । ପରେ ପରିସ୍ଥିତି ସ୍ୱାଭାବିକ ହୋଇଥିଲା ।

ଲ' କଲେଜରେ ଦିବର୍ଷ ସିନା ପଢ଼ିଲି, ହେଲେ ଏଲ.ଏଲ.ବି ଡିଗ୍ରୀ ହାସଲ କରି କଳାକୋଟ୍ ପିନ୍ଧିବା ମୋ ଭାଗ୍ୟରେ ଜୁଟିଲା ନାହିଁ । ଯାହା କୁହାଯାଏ, "ଦଇବ ଦଉଡ଼ି

ମଣିଷ ଗାଇ, ଯେଣିକି ଟାଣଇ ସେଣିକି ଯାଇ ।" ସେହିପରି ଘଟଣା ମୋ କ୍ଷେତ୍ରରେ ଘଟିଲା ।

ସେ ସମୟରେ ଲ' ପରୀକ୍ଷାରେ କପିର ଆଶ୍ରୟ ନେବାକୁ ପଡୁଥିଲା । ତା' ପୁଣି ଲୁଚାଚୋରାରେ ନୁହେଁ । ଖୁଲମ ଖୋଲା । ପିଲାସବୁ ବହିରୁ ପୃଷ୍ଠା ଚିରି ନେଇ ସେଥିରୁ ଦେଖି ଉତ୍ତର ଉତାରି ଦେଉଥିଲେ । ନଚେତ୍ କଲେଜ ହତା ବାହାରେ ସେମାନଙ୍କୁ କପି ଯୋଗାଇ ଦିଆଯାଉଥିଲା । ଆମ ସାଙ୍ଗର ଅନେକ ପିଲା ସେ ପନ୍ଥାର ଆଶ୍ରୟ ନେଇ ପରୀକ୍ଷାରେ ସଫଳ ହେଲେ । ମତେ କିନ୍ତୁ ସେ ବାଟରେ ଯିବାକୁ ବିବେକ ବାଧା ଦେଲା । ଘରର ବୁନିଆଦି, ସାମାଜିକ ପ୍ରତିଷ୍ଠା, ମୋ ହାତ ଗୋଡ଼ରେ ବେଡ଼ି ପକାଇଦେଲା । ମୁଁ ଭାବିଲି, ଯଦି କପିକରି ଖସିଗଲି ତ ଭଲ, ଯଦି ଧରା ପଡିଯିବି, ତେବେ ପରିଣତି କ'ଣ ହେବ ? ଗୋଟିଏ ସ୍ୱାଧୀନତା ସଂଗ୍ରାମୀ ପରିବାର ନାମରେ କଳଙ୍କ ବୋଲା ହୋଇଯିବ । ଏହା ମୋ ମନର ଦୁର୍ବଳତାର କାରଣ ହୋଇଥାଇପାରେ । କିନ୍ତୁ ମୁଁ କପି କରିବାକୁ ଡରିଲି । ଜୀବନର ଗାଟିଏ ଅଧ୍ୟାୟର ଅଧାରୁ ସମାପ୍ତି ଘଟିଲା । ଲ' ଡିଗ୍ରୀ ମିଳିଲା ନାହିଁ ସିନା, ହେଲେ ଦି ବର୍ଷର ପାଠପଢ଼ା ପରବର୍ତ୍ତୀ ଜୀବନରେ ଅନେକ କାମରେ ଲାଗିଥିଲା ।

ଲ' କଲେଜରେ ପଢ଼ିଲା ବେଳେ ମୁଁ ମଝିରେ ମଝିରେ 'ପ୍ରଜାତନ୍ତ୍ର' ଅଫିସକୁ ଯାଉଥିଲି । ଛାତ୍ର ଆନ୍ଦୋଳନ ସମୟରେ ବିଭିନ୍ନ ଘଟଣାରେ ସେତେବେଳର ପ୍ରଜାତନ୍ତ୍ରର ସଂପାଦକ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହିତ ମୋର ଘନିଷ୍ଠତା ବଢ଼ିଥିଲା । ତା'ଛଡା, ମୋ ଦାଦା ସ୍ୱାଧୀନତା ସଂଗ୍ରାମୀ ଅକ୍ଷୟ କୁମାର ଦାସ ତାଙ୍କର ସହକର୍ମୀ ଥିବାରୁ ସେ ମତେ ପୁତ୍ରବତ୍ ଶ୍ରଦ୍ଧା କରୁଥିଲେ । ଦିନେ ସଂଧ୍ୟାବେଳେ ବିହାରୀବାଗ(ପ୍ରଜାତନ୍ତ୍ର କାର୍ଯ୍ୟାଳୟ) ହତାରେ ଜାନକୀ ବାବୁଙ୍କ ସହିତ ସାକ୍ଷାତ ହୋଇଗଲା । ସେ ପଚାରିଲେ,"ଲ କ୍ଲାସ ତ ସକାଳ ଦଶଟାରେ ସରିଯାଉଛି । ଦିନଯାକ କ'ଣ କରୁଛୁ ? ଆମ 'ଇଷ୍ଟର୍ଣ୍ଣ ଟାଇମ୍ସ' ପାଇଁ ସାମୟିକ ସମ୍ବାଦଦାତା ଭାବରେ କାମ କରୁନୁ । ପକେଟ୍ ଖର୍ଚ୍ଚ ଉଠିଯାଆନ୍ତା ।" ଜାନକୀବାବୁଙ୍କ ପ୍ରସ୍ତାବଟି ମୋ ମନକୁ ପାଇଲା । ମୁଁ ତାଙ୍କୁ ହଁ କରିଦେଲି । ତା'ପରଦିନ ଠାରୁ କାମ ଆରମ୍ଭ କଲି ।

ସେତେବେଳେ ମୋର ଗୋଟିଏ ରାଲେ ସାଇକେଲ ଥିଲା । ସାଇକେଲରେ ଦିନକୁ କୋଡିଏ, ପଚିଶ କିଲୋମିଟର ରାସ୍ତା ବୁଲିବା କିଛି କଷ୍ଟକର ବ୍ୟାପାର ନଥିଲା । କଟକ ସହରରେ ବିଭିନ୍ନ ରାଜନୈତିକ ଦଳରେ କ'ଣ ଘଟୁଛି ସେ ବିଷୟରେ ଖବର ସଂଗ୍ରହ କରି ତାଙ୍କୁ ଚୁପ୍‌ଚାପ ଦେବାପାଇଁ ଜାନକୀବାବୁ ମତେ କହିଥିଲେ ।

କଟକରେ ସେ ସମୟରେ ଚାରୋଟି ମୁଖ୍ୟ ରାଜନୈତିକ ଦଳ, ଭାରତୀୟ ଜାତୀୟ କଂଗ୍ରେସ, ଭାରତୀୟ କମ୍ୟୁନିଷ୍ଟ ପାର୍ଟି, ସି.ପି.ଏମ୍ ଏବଂ ସୋସାଲିଷ୍ଟ ପାର୍ଟି କାର୍ଯ୍ୟ କରୁଥିଲା । ସାହେବଜାଦା ବଜାରରେ ଥିବା 'ସ୍ୱରାଜ ଆଶ୍ରମ'ରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି

କାର୍ଯ୍ୟାଳୟ ଥିଲା । ଓଡ଼ିଆ ବଜାରରେ ସୋସାଲିଷ୍ଟ ପାର୍ଟି ଅଫିସ ଏବଂ ଚାନ୍ଦିନୀ ଚୌକରେ ସି.ପି.ଆଇ ଅଫିସ ରହିଥିଲା । ସିପିଏମ୍ ଅଫିସ କୋଉ ଜାଗାରେ କାମ କରୁଥିଲା ଠିକ୍ ମନେ ପଡୁନାହିଁ । ବୋଧହୁଏ କଲେଜ ଛକରେ ସେ ଅଫିସ୍‌ଟି ଥିଲା । ତା'ଛଡା, ଶେଖବଜାରର ଗୋଟିଏ ଭଡ଼ାଘରେ ଗଣତନ୍ତ୍ର ପରିଷଦର ଅଫିସ ଥିଲେ ବି ସେତେବେଳେ ସେ ଦଳର ବିଶେଷ କିଛି ପ୍ରଭାବ ନଥିଲା ।

ମୁଁ ଦିନରେ ଥରେ ବିଭିନ୍ନ ଅଫିସରେ ମୁହଁ ମାରିଦେଉଥିଲି । କୋଉଦିନ କେଉଁଠି ଚା' ଓ ଆଉ କୋଉଠି ବରା, ପିଆଜି ମିଳୁଥିଲା । ମୁଁ 'ଇଷ୍ଟର୍ଣ୍ଣ ଟାଇମ୍‌ସ' ପାଇଁ କାମ କରୁଛି ବୋଲି କାହାକୁ କିଛି କହିନଥିଲି । ମତେ ମଧ୍ୟ କେହି ସନ୍ଦେହ କରୁନଥିଲେ । ତା'ଫଳରେ ମୋ କାମଟି ଅଧିକ ସୁଗମ ହେଉଥିଲା । 'ଇଷ୍ଟର୍ଣ୍ଣ ଟାଇମ୍‌ସ'ରେ ଯେଉଁ ରାଜନୈତିକ ଦଳର ଖବର ପ୍ରକାଶ ପାଉଥିଲା, ତାକୁ କିଏ ଦେଉଛି ବୋଲି ବହୁଦିନ ପର୍ଯ୍ୟନ୍ତ କେହି ଜାଣି ପାରିନଥିଲେ । କିନ୍ତୁ ଡକ୍ଟର ହରେକୃଷ୍ଣ ମହତାବ କୌଣସି ସୂତ୍ରରୁ ଟେର୍ ପାଇ ମତେ ଦିନେ ପଚାରିଲେ, "ଓହଃ ! ତମେ କ'ଣ ଆମ କାଗଜ ପାଇଁ କାମ କରୁଛ ?" ମୁଁ ହଁ କି ନାଁ କହିବା ପୂର୍ବରୁ ସେ କହିଲେ, "ହଉ ଭଲ କଥା । ଯଦି ସାମ୍ବାଦିକତା ଭିତରେ ପଶିଲ, ଗୋଟିଏ କଥା ମନେ ରଖିବ । ନିଜର ସୁବିଧା ପାଇଁ କୌଣସି ସମ୍ବାଦରେ ରଙ୍ଗ ବୋଳିବ ନାହିଁ । ଫାଇଦା ପାଇଁ କାହାର ବୋଲକରା ହେବ ନାହିଁ କିମ୍ବା କାହାର ଚରିତ୍ର ସଂହାରରେ ମନ ଦେବ ନାହିଁ । ଏ ଲାଇନରେ କାମ କରୁଥିବା ବ୍ୟକ୍ତି ସମାଜରେ ପ୍ରତିଷ୍ଠା ଲାଭ କରିପାରେ । ନଚେତ୍ ବଦନାମ ମଧ୍ୟ ହୋଇପାରେ । ତମେ ଯେଉଁଟାକୁ ବାଛିପାର ।"

ଡକ୍ଟର ମହତାବଙ୍କର ସେଦିନର ପରାମର୍ଶ ଜୀବନରେ ମୋ ପାଇଁ ପାଥେୟ ହୋଇରହିଗଲା । ସାମ୍ବାଦିକତାର ଦୀର୍ଘ ପଚାଶ ବର୍ଷର ସମୟ ମଧ୍ୟରେ ଜାଣିଶୁଣି କାହାରି କ୍ଷତି ହେଲାଭଳି ମୁଁ କେବେହେଲେ ମୋ କଲମକୁ ବ୍ୟବହାର କରିନାହିଁ । କାହାରି ସ୍ତାବକ ମଧ୍ୟ ହୋଇନାହିଁ । ଘଟଣାର ଅନୁସନ୍ଧାନ ପରେ ଯାହା ଠିକ ବୋଲି ବିଚାରିଛି, କେବଳ ତାକୁ ହିଁ ଲେଖିଛି ।

ବାସ୍ତବତା ଦୃଷ୍ଟିରୁ ବିଚାର କଲେ ଇଷ୍ଟର୍ଣ୍ଣ ଟାଇମ୍‌ସରୁ ମୋର ସାମ୍ବାଦିକତାର ଖଡିଛୁଆଁ ହୋଇଥିଲା । ଜାନକୀବାବୁ ମୋର ପ୍ରଥମ ସାମ୍ବାଦିକ ଗୁରୁଥିଲେ । ଶ୍ରୀ ପଟ୍ଟନାୟକ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ରାଜନୈତିକ ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ଲାଭ କରିଥିଲେ । ସେ ସମୟରେ ଚାକିରିର ଅଭାବ ନଥିଲା । ଶ୍ରୀ ପଟ୍ଟନାୟକ ଚାହିଁଥିଲେ ଯେ କୌଣସି ଉଚ୍ଚ ସରକାରୀ ଚାକିରିରେ ଯୋଗଦେଇ ପାରିଥାନ୍ତେ । କିନ୍ତୁ ସେ ସାମ୍ବାଦିକତାକୁ ବୃତ୍ତି ଭାବରେ ଗ୍ରହଣ କରିବାକୁ ପସନ୍ଦ କରିଥିଲେ । ସାମ୍ବାଦିକତା ଜୀବନର ସେଇ ଅଭିଜ୍ଞତା ଓ ଅନୁଭୂତି ତାଙ୍କୁ ଦୀର୍ଘ ୧୫ ବର୍ଷ କାଳ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ରହିବାରେ ସହାୟକ ହୋଇଥିଲା ।

ପ୍ରତିଦିନ ସନ୍ଧ୍ୟାରେ ସେତେବେଳେ 'ପ୍ରଜାତନ୍ତ୍ର' ହତାରେ ଥିବା ଗୋଟିଏ ହଲରେ ଡକ୍ଟର ମହତାବଙ୍କର ବୈଠକ ବସୁଥିଲା । ସେ ଭୁବନେଶ୍ୱରରେ ରହୁଥିଲେ ମଧ୍ୟ ପ୍ରତ୍ୟହ ଠିକ୍ ପାଞ୍ଚଟା ବେଳେ ବୈଠକରେ ପହଞ୍ଚି ଯାଉଥିଲେ । ବୈଠକରେ ବିଭିନ୍ନ ମତଦାନ ଓ ବିଭିନ୍ନ ରାଜନୈତିକ ଦଳର ବ୍ୟକ୍ତିମାନେ ଯୋଗ ଦେଉଥିଲେ । ସମସ୍ତେ ଡକ୍ଟର ମହତାବଙ୍କୁ ଶ୍ରଦ୍ଧା ଓ ଭକ୍ତି କରୁଥିଲେ । ପ୍ରାୟ ସାତଟା ପର୍ଯ୍ୟନ୍ତ ବୈଠକ ଚାଲୁଥିଲା । ଡକ୍ଟର ମହତାବ ଭୁବନେଶ୍ୱର ଯିବାକୁ ବାହାରିଲେ ଅନ୍ୟମାନେ ଯିଏ ଯୁଆଡ଼େ ଯାଉଥିଲେ । ମୁଁ ବେଳେବେଳେ ସେ ବୈଠକକୁ ଯାଉଯାଉ କ୍ରମେ ତାହା ମୋର ଏକ ଅଭ୍ୟାସରେ ପରିଣତ ହୋଇଗଲା । ସେ ବୈଠକରେ ଯେଉଁମାନେ ଯୋଗ ଦେଉଥିଲେ ପରବର୍ତ୍ତୀ ଜୀବନରେ ସେମାନେ ସମାଜରେ ପ୍ରତିଷ୍ଠିତ ବ୍ୟକ୍ତି ହୋଇପାରିଥିଲେ ।

ମୁଁ ଲ'କଲେଜରେ ଅଧ୍ୟୟନ କରୁଥିଲା ବେଳେ ଓଡ଼ିଶାରେ କଂଗ୍ରେସ ଦଳ ଭିତରେ ଏକ ପ୍ରକାର ବିଭାଜନ ହୋଇସାରିଥିଲା । ଡକ୍ଟର ମହତାବ ତାଙ୍କ ସମର୍ଥକମାନଙ୍କ ସହିତ କଂଗ୍ରେସ ଦଳରୁ ଅଲଗା ହୋଇଯାଇ ଗୋଟିଏ ଆଞ୍ଚଳିକ ରାଜନୈତିକ ଦଳ ଗଠନ ଉଦ୍ୟମରେ ଥିଲେ । ସେହି ପ୍ରକ୍ରିୟାରେ ସେ ମୋତେ ସାମିଲ୍ କରିବାକୁ ଚାହିଁଥିଲେ ।

୧୯୬୫ ମସିହା ଅପ୍ରେଲ ମାସର ଘଟଣା । ତାରିଖ ମନେ ପଡୁ ନାହିଁ । ମୁଁ ସେଦିନ ଡକ୍ଟର ମହତାବଙ୍କ ବାସଭବନ 'ଏକାମ୍ର ନିବାସ'କୁ ଯାଇଥିଲି । ଆଲୋଚନା ସମୟରେ ମୁଁ କାହିଁକି ଲ' ପଢୁଛି ବୋଲି ସେ ମତେ ପଚାରିଥିଲେ । ତାଙ୍କ ମତରେ ଯାହାଙ୍କ ବାପା କିମ୍ବା ଶଶୁର ଓକିଲ ନୁହନ୍ତି ସେ ଓକିଲାତିରେ ସଫଳତା ପାଇବା କଷ୍ଟକର ବ୍ୟାପାର । ଓଡ଼ିଶାରେ ଗୋଟିଏ ଆଞ୍ଚଳିକ ଦଳ ଗଠନ ହେଉଥିବା ସଂପର୍କରେ ସେ ସୂଚନା ଦେଇଥିଲେ । ସେଥିସହିତ ତାଙ୍କ ସହିତ ଯିବାପାଇଁ ମଧ୍ୟ ପରାମର୍ଶ ଦେଇଥିଲେ । ତାଙ୍କ ପରାମର୍ଶକୁ ମୁଁ ଭାଙ୍ଗିପାରି ନଥିଲି ।

ମୁଁ ତାଙ୍କ ସହିତ ଦୀର୍ଘ ପନ୍ଦରଦିନ କାଳ ଓଡ଼ିଶାର ବିଭିନ୍ନ ଅଞ୍ଚଳ ବୁଲିବାର ସୁଯୋଗ ପାଇଥିଲି । ସେ ସମୟ ମଧ୍ୟରେ ପବିତ୍ର ମୋହନ ପ୍ରଧାନ, ବନମାଳୀ ପଟ୍ଟନାୟକ, ସୁରେନ୍ଦ୍ରନାଥ ପଟ୍ଟନାୟକ, ଶାନ୍ତନୁ କୁମାର ଦାସ, ମୁରଲୀଧର ଜେନା ପ୍ରମୁଖ ନେତୃବୃନ୍ଦଙ୍କ ସହିତ ମୋର ଆତ୍ମୀୟତା ବଢ଼ିଥିଲା । ସେହି ପନ୍ଦର ଦିନର ଅଭିଜ୍ଞତା ଓ ଅନୁଭୂତି ଆଜି ବି ଅଭୁଲା ହୋଇ ରହିଛି ।

ମୋର ମନେ ପଡୁଛି, ଡକ୍ଟର ମହତାବଙ୍କ ଯାତ୍ରା ଅନୁଗୁଳରୁ ଆରମ୍ଭ ହୋଇ ଖୋର୍ଦ୍ଧାରେ ଶେଷ ହୋଇଥିଲା । ମୋଟାମୋଟି ଭାବରେ ଡକ୍ଟର ମହତାବ ଓଡ଼ିଶାର ମୁଖ୍ୟ ଅଞ୍ଚଳକୁ ଯାଇ କଂଗ୍ରେସ ବିରୋଧରେ ଜନମତ ଜାଗ୍ରତ କରିଥିଲେ । ଶେଷରେ ୧୯୬୫ ମସିହା ମେ ମାସ ୫ତାରିଖରେ 'ଜନକଂଗ୍ରେସ' ନାମରେ ଗୋଟିଏ ଆଞ୍ଚଳିକ ଦଳ ଜନ୍ମଲାଭ କରିଥିଲା ।

୧୯୬୭ ମସିହା ନିର୍ବାଚନ ପରେ ଜନକଂଗ୍ରେସ, ସ୍ୱତନ୍ତ୍ର ଦଳ ସହିତ ମିଶି ରାଜ୍ୟରେ ଏକ ଅଣକଂଗ୍ରେସ ସରକାର ଗଠନ କରିଥିଲା । ଯେଉଁ ବିଜୁ ପଟ୍ଟନାୟକ ୧୯୬୧ ମସିହାରେ କଂଗ୍ରେସ ଦଳର ୮୨ଜଣ ପ୍ରାର୍ଥୀଙ୍କୁ ଜିତାଇ ଏକ ରେକର୍ଡ ସୃଷ୍ଟି କରିଥିଲେ, ଛଅବର୍ଷର ବ୍ୟବଧାନ ପରେ ଜଣେ ଶିକ୍ଷକଙ୍କ ଠାରୁ ତାଙ୍କୁ ପରାଜିତ ହେବାକୁ ପଡିଥିଲା ।

# ଝିମିଟି ଖେଳରୁ ମହାଭାରତ

ମୁଁ ଲ' କଲେଜରେ ପଢୁଥିବା ବେଳେ ୧୯୬୪ ମସିହାର ଛାତ୍ର ଆନ୍ଦୋଳନ ସମଗ୍ର ରାଜ୍ୟରେ ଆଲୋଡନ ସୃଷ୍ଟି କରିଥିଲା । ସେ ଆନ୍ଦୋଳନରେ ପାଞ୍ଚ ଜଣ ନିରୀହ ଛାତ୍ରଙ୍କର ମୃତ୍ୟୁ ଘଟିଥିଲା । ପ୍ରଥମରୁ ଛାତ୍ରମାନଙ୍କ ଦ୍ୱାରା ଏହି ଆନ୍ଦୋଳନ ଆରମ୍ଭ ହୋଇଥିଲା । ପରେ ଏହା ଏକ ଜନ ଆନ୍ଦୋଳନରେ ରୂପାନ୍ତରିତ ହୋଇଗଲା । ଦ୍ୱାପର ଯୁଗରେ ଯେପରି ସାମାନ୍ୟ ପଶାଖେଳରୁ ମହାଭାରତ ଯୁଦ୍ଧର ସୂତ୍ରପାତ ହୋଇଥିଲା, ସେହିଭଳି ଏକ ବ୍ୟକ୍ତିଗତ କଳହରୁ ସୃଷ୍ଟି ହୋଇଥିବା ବିବାଦ ଏକ ଆନ୍ଦୋଳନର ରୂପ ନେଇଥିଲା ।

୧୯୬୪ ମସିହାର ଛାତ୍ର ଆନ୍ଦୋଳନ ଏକ ରାଜନୈତିକ ଅନ୍ଦୋଳନ ନଥିଲା । ଘଟଣାକ୍ରମେ ଏହା ଐତିହାସିକ ଆନ୍ଦୋଳନରେ ପରିଣତ ହୋଇଥିଲା । ଏକ ସାମାନ୍ୟ ବ୍ୟକ୍ତିଗତ ଘଟଣାରୁ ଆରମ୍ଭ ହୋଇ ଏହା ବନାଗ୍ନି ଭଳି ସମଗ୍ର ରାଜ୍ୟକୁ ମାଡ଼ିଯାଇଥିଲା ।

ସେତେବେଳେ ରାଜ୍ୟର ରାଜନୈତିକ ସ୍ଥିତି ଅତି ଉତ୍ତେଜକ ଅବସ୍ଥାରେ ଥିଲା । ଶାସନ କ୍ଷମତାରେ ଥିବା କଂଗ୍ରେସ ଦଳ ବିରୋଧରେ ସାଧାରଣରେ ଅସନ୍ତୋଷ ସୃଷ୍ଟି ହୋଇଥିଲା । ବିରୋଧୀ ଦଳମାନେ କଂଗ୍ରେସ ସରକାରଙ୍କୁ ବଦନାମ କରିବା ପାଇଁ ଛାତ୍ର ଆନ୍ଦୋଳନକୁ ଏକ ଆୟୁଧ ଭାବେ ବ୍ୟବହାର କରିବାକୁ ଚାହିଁଲେ । ଆନ୍ଦୋଳନକୁ ସଂଗଠିତ କରି ସେଥିରୁ ଫାଇଦା ଉଠାଇଥିଲେ । ଏହି ଆନ୍ଦୋଳନ ତିନୋଟି ପର୍ଯ୍ୟାୟରେ ଦୀର୍ଘ ୪୦ ଦିନ ଧରି ଚାଲିଥିଲା ।

ଶଶାଙ୍କଧର ଦାସ ନାମକ ଓଡ଼ିଶା ଇଂଜିନିୟରିଂ ସ୍କୁଲର ଜଣେ ଛାତ୍ର କଟକ ଷ୍ଟେସନ ବଜାରରେ ଥିବା ଗୋଟିଏ ରେଡିଓ ଦୋକାନରେ ତାଙ୍କର ଟ୍ରାନ୍‌ଜିଷ୍ଟର ରେଡିଓ ମରାମତି କରିଥିଲେ । ରେଡିଓ ମରାମତି ବାବଦ ପ୍ରାପ୍ୟ ଶ୍ରୀ ଦାସ, ରେଡିଓ ଦୋକାନୀ ଉମାଶଙ୍କରଙ୍କୁ ଠିକ୍ ସମୟରେ ଦେଇ ନଥିଲେ ବୋଲି ଅଭିଯୋଗ ହୋଇଥିଲା ।

୧୯୬୪ ମସିହା ସେପ୍ଟେମ୍ବର ୨୬ ତାରିଖ ଦିନ ଶଶାଙ୍କଧର ଷ୍ଟେସନ ବଜାରରେ ଗୋଟିଏ ସେଲୁନରେ ବାଳ କାଟୁଥିଲେ। ପାଖରେ ଥିବା ରେଡିଓ ଦୋକାନୀ ତାଙ୍କୁ ଧରି ନିଜ ଦୋକାନକୁ ନେଇଯାଇଥିଲେ। ରେଡିଓ ଦୋକାନରେ ଉଭୟଙ୍କ ମଧ୍ୟରେ ପାଟିତୁଣ୍ଡ, କଥା କଟାକଟି ହୋଇଥିଲା। ଏହା ପ୍ରାୟ ସକାଳ ଏଗାରଟା ବେଳର ଘଟଣା। ରେଡିଓ ଦୋକାନୀ ଜୋର୍‌ଜବରଦସ୍ତ ଶଶାଙ୍କଧରଙ୍କ ଠାରୁ ଗୋଟିଏ ସାଦା କାଗଜରେ ଦସ୍ତଖତ କରାଇ ନେଇଥିଲେ।

ଶ୍ରୀ ଦାସ ନିକଟରେ ଥିବା ରେଲୱେ ହଷ୍ଟେଲରେ ରହୁଥିଲେ। ସେ ହଷ୍ଟେଲ ଫେରିଯାଇ ସବୁକଥା ସାଙ୍ଗମାନଙ୍କୁ କହିଲେ। ଯାହା କୁହାଯାଏ 'କଥା ମାଜିଲେ ମୋଟ'। ସେହିପରି କଥାଟି ଗୋଟିଏ କାନରୁ ଆଉ ଗୋଟିଏ କାନକୁ ଗଲାବେଳେ ସେଥିରେ କିଛି ପୁଟ ମିଶିଗଲା। ପିଲାମାନେ ଏ ଘଟଣାକୁ ଏକ ଇଜ୍ଜତର ପ୍ରଶ୍ନ ବୋଲି ବିଚାରିଲେ। ସେତେବେଳେ ଲ' ପଢୁଥିବା ବ୍ରହ୍ମପୁରର ରମଣମୂର୍ତ୍ତି ପଟ୍ଟନାୟକ ସେହି ହଷ୍ଟେଲରେ ରହୁଥିଲେ। ଶଶାଙ୍କ ପାଖରୁ ଗଣ୍ଡଗୋଳ ବିଷୟରେ ଶୁଣିଲା ପରେ ସେ କିଛି ପିଲାଙ୍କୁ ସାଙ୍ଗରେ ଧରି ରେଡିଓ ଦୋକାନ ପାଖକୁ ଗଲେ।

ଇଂଜିନିୟରିଂ ସ୍କୁଲର କିଛି ଛାତ୍ର ମଧ୍ୟ ବଦଳା ନେବା ଉଦ୍ଦେଶ୍ୟରେ ରେଡିଓ ଦୋକାନ ପାଖକୁ ଯାଇଥିଲେ। ସେମାନେ ସେଠାରେ ପହଞ୍ଚିଲା ବେଳକୁ ଦୋକାନୀ ଉମାଶଙ୍କର ଦୋକାନରେ ନଥିଲେ। ତାଙ୍କ ସାନ ଭାଇ ଦୋକାନରେ ଥିଲେ। ଘଟଣାକ୍ରମେ କିଛିକ୍ଷଣ ମଧ୍ୟରେ ରେଭେନ୍ସା କଲେଜରୁ କିଛି ଛାତ୍ର ଆସି ସେଠାରେ ପହଞ୍ଚିଗଲେ। ସେମାନଙ୍କ ସହିତ କିଛି ଦେଖଣାହାରୀ ମଧ୍ୟ ମିଶିଗଲେ। ତା'ପରେ ଦୋକାନୀ ଓ ଉପସ୍ଥିତ ଜନତାଙ୍କ ମଧ୍ୟରେ ପାଟିତୁଣ୍ଡ ଚାଲିଲା। ଏହାର ସୁଯୋଗ ନେଇ କିଛି ଅସାମାଜିକ ଲୋକଙ୍କ ଦ୍ୱାରା ରେଡିଓ ମରାମତି ଦୋକାନ ଲୁଟ୍ ହୋଇଯାଇଥିଲା।

ଖବର ପାଇ ପୁଲିସ ଓ ମାଜିଷ୍ଟ୍ରେଟ ଘଟଣା ସ୍ଥଳରେ ପହଞ୍ଚିଲା ବେଳକୁ ପରିସ୍ଥିତି ଅଣାୟତ୍ତ ହୋଇଯାଇଥିଲା। ପୁଲିସ୍ ପକ୍ଷରୁ ସେଠାରେ ଉପସ୍ଥିତ ଥିବା ଜନତାଙ୍କୁ ବେଆଇନ ଘୋଷଣା କରି ସେମାନଙ୍କୁ ଘଉଡ଼ାଇବା ଉଦ୍ଦେଶ୍ୟରେ ଲାଠି ଚାଳନା କରାଯାଇଥିଲା। ରେଡିଓ ଦୋକାନଠାରୁ ରେଭେନ୍ସା କଲେଜ ହତାର ଦୂରତା ପ୍ରାୟ ତିନି ଶହ ମିଟର। ପିଲାଏ କଲେଜ ହତା ଭିତରେ ପଶିଯାଇ ପୁଲିସ ଉପରକୁ ଢ଼େଲା ବୃଷ୍ଟି କଲେ। ସେତେବେଳେ ରାଣୀହାଟ ପୋଲ ନିକଟରେ ଏକ ଦୋ'ତାଲା କୋଠାରେ ଲ' କଲେଜ ହଷ୍ଟେଲ ଚାଲୁଥିଲା। ସନ୍ଧ୍ୟା ହେବା ପରେ ଲ' କଲେଜ ହଷ୍ଟେଲ ପିଲାମାନେ ଗଣ୍ଡଗୋଳ ସହିତ ସାମିଲ ହୋଇଗଲେ। ଏହା ଫଳରେ ରାଣୀହାଟ ପୋଲଠାରୁ ଷ୍ଟେସନ ବଜାର ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳଟି ଏକ ରଣଭୂମିରେ ପରିଣତ ହୋଇଗଲା। ପୁଲିସ ରେଭେନ୍ସା କଲେଜ ହତାରେ ପଶି ପିଲାଙ୍କୁ

ପିଟାପିଟି କରିଥିଲେ । କିନ୍ତୁ ଲ' କଲେଜ ହଷ୍ଟେଲରେ ପଶି ନଥିଲେ । ଗେଟ୍ ଭାଙ୍ଗି ଯଦି ସେଦିନ ରାତିରେ ପୁଲିସ ଲ' କଲେଜ ହଷ୍ଟେଲ ଭିତରେ ପଶିଥାଆନ୍ତେ, ତେବେ ପରିସ୍ଥିତି ଅତ୍ୟନ୍ତ ଶୋଚନୀୟ ହୋଇଥାନ୍ତା । ଅନେକ ଧନଜୀବନ ମଧ୍ୟ ନଷ୍ଟ ହୋଇଥାଆନ୍ତା ।

ଘଟଣାର ପରଦିନ ସତେଇଶ ତାରିଖ ସକାଳେ ପରିସ୍ଥିତି ସ୍ୱାଭାବିକ ହେବା ପରିବର୍ତ୍ତେ ଅଧିକ ଉତ୍ତେଜନାପୂର୍ଣ୍ଣ ହେବାରେ ଲାଗିଲା । ଲ' କଲେଜ ହଷ୍ଟେଲ ସାମନାରେ ଗୋଟିଏ ପୁଲିସ ଜିପ୍‌କୁ ଓଲଟାଇ ଦେଇ ସେଥିରେ ନିଆଁ ଲଗାଇ ଦିଆଯାଇଥିଲା । ସେ ଘଟଣାରେ ଜିପ୍‌ରେ ବସିଥିବା ଜଣେ ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ ଆହତ ହୋଇଥିଲେ । ଏଥିରେ ପୁଲିସ ଆଉ ନୀରବଦ୍ରଷ୍ଟା ନସାଜି ଲ' କଲେଜ ହଷ୍ଟେଲର ଲୁହା ଗେଟ୍ ଭାଙ୍ଗି ଭିତରେ ପଶିଥିଲେ । ସେଠାରେ ଥିବା ଛାତ୍ରମାନଙ୍କୁ ନିର୍ମମ ଭାବରେ ପ୍ରହାର କରିବା ସହିତ ୨୨ଜଣ ଛାତ୍ରଙ୍କୁ ଗିରଫ କରି ନେଇଯାଇଥିଲେ ।

ଲ' କଲେଜ ହଷ୍ଟେଲରେ ପୁଲିସ ପଶିବା ଓ ଛାତ୍ରଙ୍କୁ ଗିରଫ କରିବା ଘଟଣା ଅଳ୍ପ ସମୟ ମଧ୍ୟରେ ଚାରିଆଡେ ବ୍ୟାପୀ ଯାଇଥିଲା । ରେଭେନ୍ସା କଲେଜରୁ ଛାତ୍ରମାନେ ପଟୁଆର ବାହାର କରିବାକୁ ଏକଜୁଟ୍ ହେଲେ । ମାତ୍ର କଲେଜ ହତା ବାହାରେ ମହଜୁଦ ଥିବା ପୁଲିସ ଫୋର୍ସ ସେଥିପାଇଁ ସେମାନଙ୍କୁ ଅନୁମତି ଦେଉନଥିଲେ । ଏକପକ୍ଷରେ ବିକ୍ଷୋଭକାରୀ ଛାତ୍ର ଓ ଅନ୍ୟପକ୍ଷରେ ସଶସ୍ତ୍ର ପୁଲିସ ବାହିନୀ ପରସ୍ପରର ମୁହାମୁହିଁ ହୋଇ ରହିଥିଲେ । କିଛି ସମୟ ପରେ ପୁଲିସ କଲେଜ ଭିତରେ ପଶି ଛାତ୍ରମାନଙ୍କୁ ଘଉଡ଼େଇ ଦେଇଥିଲେ ।

ଏହି ଘଟଣାରେ କ୍ରାଏଷ୍ଟ କଲେଜ, ଷ୍ଟୁଆର୍ଟ କଲେଜ ଏବଂ ଶୈଳବାଳା ମହିଳା କଲେଜର ଛାତ୍ରଛାତ୍ରୀଙ୍କ ମଧ୍ୟରେ ଉତ୍ତେଜନା ପ୍ରକାଶ ପାଇଥିଲା । ସେସବୁ କଲେଜମାନଙ୍କରେ ମଧ୍ୟ ପୁଲିସ ଓ ଛାତ୍ରମାନଙ୍କ ମଧ୍ୟରେ ଛକାପଞ୍ଝା ଖେଳ ଚାଲିଥିଲା । ଆନ୍ଦୋଳନକୁ ଦବାଇ ଦେବା ଉଦ୍ଦେଶ୍ୟରେ ବିଭିନ୍ନ କଲେଜର ବହୁ ଛାତ୍ରନେତାଙ୍କୁ ପୁଲିସ ଗିରଫ କରିନେଇଥିଲା । ପୁଲିସର ଧାରଣା ଥିଲା, ଛାତ୍ର ନେତାମାନେ ଗିରଫ ହୋଇଗଲେ ଆନ୍ଦୋଳନ ମୁଣ୍ଡ ଟେକିବ ନାହିଁ । ମାତ୍ର ସେମାନଙ୍କର ସେପରି ଧାରଣା ଭୁଲ୍ ବୋଲି ପରେ ପ୍ରମାଣିତ ହୋଇଥିଲା ।

ସମୟ ଅତିବାହିତ ହେବା ସହିତ ପରିସ୍ଥିତି ଗମ୍ଭୀର ହେବାରେ ଲାଗିଲା । ଛାତ୍ରମାନଙ୍କ ମନୋବଳକୁ ଅକ୍ଷୁଣ୍ଣ ରଖିବା ପାଇଁ ବିରୋଧୀଦଳ ପକ୍ଷରୁ ସେମାନଙ୍କୁ ସମସ୍ତ ପ୍ରକାର ସମର୍ଥନ ଯୋଗାଇ ଦିଆଯାଇଥିଲା । ସମ୍ବାଦପତ୍ର ମାଧ୍ୟମରେ ପ୍ରତିଦିନ ନୂଆ ନୂଆ ଛାତ୍ରନେତା ସୃଷ୍ଟି କରାଗଲା । ରେଡିଓ ଦୋକାନରୁ ଆରମ୍ଭ ହୋଇଥିବା କଳି କ୍ରମେ ଏକ ରାଜନୈତିକ ଆନ୍ଦୋଳନରେ ରୂପାନ୍ତରିତ ହୋଇଗଲା । ଶାସନକଳ କିମ୍ବା ଶାସକଦଳ ପରିସ୍ଥିତିରେ ମୁକାବିଲା କରିବା ଅବସ୍ଥାରେ ନଥିଲେ ।

୧୯୬୪ ମସିହାରେ ରେଭେନ୍ସା କଲେଜ ଛାତ୍ର ୟୁନିଅନ୍ ନିର୍ବାଚନରେ ୟୁନିଅନ୍ ପ୍ରାର୍ଥୀ ଅଭୟ ମହାପାତ୍ର ସଭାପତି ଭାବରେ ଜୟଯୁକ୍ତ ହୋଇଥିଲେ । ତାଙ୍କ ସହିତ ସ୍ୱାଧୀନ ପ୍ରାର୍ଥୀ ଭାବରେ ପ୍ରତିଦ୍ୱନ୍ଦ୍ୱିତା କରି ଛାତ୍ରନେତା ତ୍ରିଲୋଚନ କାନୁନ୍‌ଗୋ ହାରିଯାଇଥିଲେ । କଲେଜ ୟୁନିଅନ୍‌ର ଅନ୍ୟ ପଦବୀରେ ଛାତ୍ର ୟୁନିଅନ୍ ପ୍ରାର୍ଥୀମାନେ ଜୟଯୁକ୍ତ ହୋଇଥିଲେ । ସାଂଗଠନିକ ଦୁର୍ବଳତା ଯୋଗୁଁ ସେତେବେଳେ ଛାତ୍ର ସମାଜ ଉପରେ ୟୁନିଅନ୍‌ର ସେତେଟା ପ୍ରଭାବ ନଥିଲା ।

ଅନ୍ୟପକ୍ଷରେ ଛାତ୍ର ସଂଘର ନେତୃବୃନ୍ଦ ଶାରୀରିକ ବଳ ପ୍ରୟୋଗ କରି ଛାତ୍ରମାନଙ୍କ ଉପରେ କିଛି ପରିମାଣରେ ପ୍ରଭାବ ବିସ୍ତାର କରିଥିଲେ । ଏପରି ଏକ ପରିସ୍ଥିତିରେ ଛାତ୍ର ଆନ୍ଦୋଳନର ନେତୃତ୍ୱ କାହା ପାଖରେ ରହିବ, ତାକୁ ନେଇ ଦ୍ୱନ୍ଦ୍ୱ ଉପୁଜିଲା । ଅତୀତରେ ଯେତେବେଳେ ରାଜ୍ୟରେ କୌଣସି ଛାତ୍ର ଆନ୍ଦୋଳନ ଦେଖାଦେଉଥିଲା ତା'ର ନେତୃତ୍ୱ ରେଭେନ୍ସା କଲେଜ ୟୁନିଅନ୍ ସଭାପତି ନେଉଥିଲେ । କିନ୍ତୁ ସେହି ଛାତ୍ର ଆନ୍ଦୋଳନର ନେତୃତ୍ୱ ନେବାର ଶକ୍ତି କିମ୍ବା ସାମର୍ଥ୍ୟ ସେତେବେଳକାର ସଭାପତିଙ୍କର ନଥିଲା । ତା'ଫଳରେ ଛାତ୍ର ଆନ୍ଦୋଳନର ନେତୃତ୍ୱ ରେଭେନ୍ସା କଲେଜ ହାତରୁ ଖସି ଯାଇଥିଲା ।

ରେଭେନ୍ସା କଲେଜ ଛାତ୍ର ୟୁନିଅନ ସଭାପତି ଶ୍ରୀ ମହାପାତ୍ରଙ୍କର ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ରଙ୍କ ସହିତ ଭଲ ସମ୍ପର୍କ ଥିଲା । ଆନ୍ଦୋଳନକୁ ଅଧିକ ଦିନ ଚାଲୁ ନରଖିବା ପାଇଁ ଶ୍ରୀ ମିତ୍ର ଶ୍ରୀ ମହାପାତ୍ରଙ୍କୁ ପ୍ରବର୍ତ୍ତାଇଥିଲେ । କଟକ ଛାଡ଼ି ଚାଲିଯିବା ପାଇଁ ତାଙ୍କୁ ତିନି ଶହ ଟଙ୍କା ଦେଇଥିଲେ ବୋଲି ସେତେବେଳେ ଛାତ୍ର ଆନ୍ଦୋଳନକୁ ଉତ୍ସାହିତ କରୁଥିବା ଦୈନିକ 'ପ୍ରଜାତନ୍ତ୍ର'ରେ ପ୍ରକାଶ ପାଇଥିଲା । ଛାତ୍ର ଆନ୍ଦୋଳନ ତୃତୀୟ ପର୍ଯ୍ୟାୟରେ ପହଞ୍ଚିଲା ବେଳକୁ ଶ୍ରୀ ମହାପାତ୍ର କଟକ ଛାଡ଼ି ଏକ ଅଜ୍ଞାତ ସ୍ଥାନକୁ ଚାଲିଯାଇଥିଲେ । ମାତ୍ର ସେଥିପାଇଁ ବାସ୍ତବରେ ସେ ମୁଖ୍ୟମନ୍ତ୍ରୀ ଶ୍ରୀ ମିତ୍ରଙ୍କଠାରୁ ଅର୍ଥଗ୍ରହଣ କରିଥିଲେ କି ନାହିଁ, ତାହା ସବୁଦିନ ପାଇଁ ଅସ୍ପଷ୍ଟ ରହିଗଲା ।

ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜ ଛାତ୍ର ୟୁନିଅନର ସେହିବର୍ଷ ସଭାପତି ଥିଲେ ପ୍ରମୋଦ ସାମନ୍ତରାୟ । ଶ୍ରୀ ସାମନ୍ତରାୟଙ୍କର କୌଣସି ରାଜନୈତିକ ଦଳ ସହିତ ସଂପର୍କ ନଥିଲା । ସେ ନିର୍ଦ୍ଦଳୀୟ ଥିଲେ । ବହୁ ଆଲୋଚନା ପରେ ପ୍ରମୋଦ ସାମନ୍ତରାୟଙ୍କୁ ମିଳିତ ଛାତ୍ର କ୍ରିୟାନୁଷ୍ଠାନ କମିଟିର ଅଧ୍ୟକ୍ଷ କରାଗଲା । ତା' ଫଳରେ ଉଭୟ ଛାତ୍ର ସଂଗଠନ ମଧ୍ୟରେ ନେତୃତ୍ୱକୁ କେନ୍ଦ୍ରକରି ଯେଉଁ ବିବାଦ ମୁଣ୍ଡ ଟେକୁଥିଲା ତା'ର ପରିସମାପ୍ତି ଘଟିଥିଲା ।

କ୍ରିୟାନୁଷ୍ଠାନ କମିଟିର ନିଷ୍ପତ୍ତି ଅନୁଯାୟୀ ପ୍ରତ୍ୟହ ଛାତ୍ରଛାତ୍ରୀମାନଙ୍କର ପଟୁଆର ବିଭିନ୍ନ କଲେଜରୁ ବାହାରୁ ଥିଲା । ଛାତ୍ରଛାତ୍ରୀମାନେ କଟକ ସହରର ପ୍ରଧାନ ରାସ୍ତା ପରିକ୍ରମା କରି ଶେଷରେ କଲେକ୍ଟୋରେଟ୍ ଠାରେ ଏକାଠି ହେଉଥିଲେ । ସେଠାରେ ସାଧାରଣ ସଭା ହୋଇ ସେଦିନର କାର୍ଯ୍ୟକ୍ରମ ଶେଷ ହେଉଥିଲା ।

ଛାତ୍ରଛାତ୍ରୀମାନେ ରାସ୍ତାରେ ଗଲାବେଳେ 'ବିଜୁ-ବୀରେନ୍ କେଉଁଠି ? ମଦ ବୋତଲ ଯେଉଁଠି' ବୋଲି ଧ୍ୱନିମାନ ଦେଉଥିଲେ । ତାହା ସେତେବେଳେ ସହରବାସୀଙ୍କ ପାଇଁ ବେଶ୍ ଉପଭୋଗ୍ୟ ହେଉଥିଲା । ସମ୍ବାଦପତ୍ରମାନଙ୍କରେ, ବିଶେଷକରି 'ପ୍ରଜାତନ୍ତ୍ର'ରେ ଛାତ୍ର ଆନ୍ଦୋଳନ ସପକ୍ଷରେ ଉତ୍ସାହଜନକ ଭାବରେ ସମ୍ବାଦ ପ୍ରକାଶ ପାଉଥିଲା । ସେଥିରେ ଛାତ୍ରମାନେ ଅଧିକ ଉତ୍ସାହିତ ହେଉଥିଲେ । ଅନ୍ୟଭାଷାରେ କହିବାକୁ ଗଲେ ବାସ୍ତବରେ ସମ୍ବାଦପତ୍ରମାନେ ହିଁ ସେତେବେଳେ ନୂଆନୂଆ ଛାତ୍ରନେତା ସୃଷ୍ଟି କରୁଥିଲେ । ସେଥିରେ ସମ୍ବାଦପତ୍ରଗୁଡ଼ିକର ମଧ୍ୟ ବେଶ୍ ଲାଭ ହେଉଥିଲା । ଛାତ୍ର ଆନ୍ଦୋଳନ ସମ୍ପର୍କୀୟ ସମ୍ବାଦମାନ ଅତିରଞ୍ଜିତ ଭାବରେ ପ୍ରକାଶ ପାଉଥିବାରୁ ସେଗୁଡ଼ିକର ପ୍ରସାର ଅତି ଅଳ୍ପଦିନରେ ଆଶାତୀତ ଭାବରେ ବୃଦ୍ଧି ପାଇଥିଲା । ଅନ୍ୟପକ୍ଷରେ ଛାତ୍ରମାନଙ୍କର ସେସବୁ ସମ୍ବାଦପତ୍ର ସହିତ ସଂପର୍କ ବୃଦ୍ଧି ପାଇଥିଲା ।

ନିର୍ଦ୍ଦିଷ୍ଟ ତାରିଖ ମନେ ନାହିଁ । ସେଦିନ ମେଡିକାଲ କଲେଜରୁ ଯେଉଁ ଛାତ୍ର ଶୋଭାଯାତ୍ରା ବାହାରିଥିଲା, ତା'ର ନେତୃତ୍ୱ ନେଇଥିଲେ ଛାତ୍ରୀ ପ୍ରତିମା ମହାପାତ୍ର । କୁମାରୀ ମହାପାତ୍ର ଦେଖିବାକୁ ପତଳା ଚେହେରାର । କିନ୍ତୁ ତାଙ୍କର ମନୋବଳ ଖୁବ୍ ଦୃଢ଼ ଥିଲା । ସେ ଜଗତସିଂହପୁର ଜିଲ୍ଲାର ଏକ ଆଭିଜାତ୍ୟ ସଂପନ୍ନ ଜମିଦାର ପରିବାରରେ ଜନ୍ମ ହୋଇଥିଲେ । କିନ୍ତୁ ତାଙ୍କର ଜୀବନ ଦର୍ଶନ ଭିନ୍ନ ଥିଲା ।

କଟକରେ ଛାତ୍ର ଆନ୍ଦୋଳନ ଚାଲିଥିବାବେଳେ ଅବିଭକ୍ତ କଟକ ଜିଲ୍ଲାର ଜିଲ୍ଲାପାଳ ଥିଲେ ପଦ୍ମନାଭ ମିଶ୍ର । ସେ ଖୁବ୍ ଭଲ ମଣିଷ । ତାଙ୍କ ବାପା ନାରାୟଣ ମିଶ୍ର ରେଭେନ୍ସା କଲେଜରେ ଅଧ୍ୟାପକ ଥିଲେ । ସେ ଖୁବ୍ ଲୋକପ୍ରିୟ ଥିଲେ । ତାଙ୍କ ନାଁରେ ବକ୍ସିବଜାରି ପାଖରେ ଗୋଟିଏ ଗଳିର ନାଁ 'ନାରାୟଣ ମିଶ୍ର' ଗଳି ରଖାଯାଇଥିଲା ।

ମେଡିକାଲ କଲେଜରୁ ଛାତ୍ର ଶୋଭାଯାତ୍ରା ବାହାରୁଥିବା ଖବର ଜିଲ୍ଲା ପ୍ରଶାସକଙ୍କ ପାଖରେ ଆଗରୁ ପହଞ୍ଚିଥିଲା । ସେଥିପାଇଁ ଅଧିକ ନିରାପତ୍ତା ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । କାରଣ ମେଡିକାଲ ପିଲାଏ ଯୁଆଡ଼େ ଯାଉଥିଲେ, ଗୋଳମାଳ କରିବାର ସେମାନଙ୍କର ଏକ ରେକର୍ଡ ଥିଲା । ସେଦିନ ପୁଲିସ, ଯେକୌଣସି ପରିସ୍ଥିତିର ମୁକାବିଲା ପାଇଁ ପ୍ରସ୍ତୁତ ହୋଇରହିଥିଲେ । ତା'ପୂର୍ବରୁ ଅନେକ ଦିନଧରି ଗାଳିଫଗିଡ଼ ଶୁଣିବା ଠାରୁ ଢେଲାପଥର ମାଡ଼ ଖାଇବା ପର୍ଯ୍ୟନ୍ତ ସବୁ ସହ୍ୟ କରି ସେମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟିସାରିଥିଲା ।

ଜିଲ୍ଲାପାଳ ଶ୍ରୀ ମିଶ୍ର ଥିଲେ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ରଙ୍କ ସହପାଠୀ ଓ ବାଲ୍ୟବନ୍ଧୁ । ଦୁହିଁଙ୍କ ଭିତରେ ଖୁବ୍ ଆତ୍ମୀୟତା ଥିଲା । ମୁଖ୍ୟମନ୍ତ୍ରୀ ଓ ଜିଲ୍ଲାପାଳଙ୍କ ସ୍ଥିତି ମଧ୍ୟରେ ବହୁ ବ୍ୟବଧାନ ଥିଲେ ବି ବ୍ୟକ୍ତିଗତସ୍ତରରେ ସେମାନେ ପରସ୍ପରର ଖୁବ୍ ନିକଟତର ଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ମିତ୍ର, ଜିଲ୍ଲାପାଳଙ୍କୁ ଡକାଇ ଅନୁରୋଧ କରି କହିଥିଲେ, "ପଦ, ତୁ ଯାହା

କରୁଛୁ କର, ମୋର ଆପତ୍ତି ନାହିଁ । ହେଲେ କଟକ ସହରରେ ଗୁଳି ଫୁଟିବ ନାହିଁ କି ବୁନ୍ଦାଏ ରକ୍ତ ବୋହିବ ନାହିଁ ।"

ଏକପକ୍ଷରେ ବାଲ୍ୟବନ୍ଧୁ ଓ ଅନ୍ୟପକ୍ଷରେ ମୁଖ୍ୟମନ୍ତ୍ରୀ । ଜିଲ୍ଲାପାଳ ଶ୍ରୀ ମିଶ୍ର, ଶ୍ରୀ ମିତ୍ରଙ୍କ ଅନୁରୋଧକୁ ଆଦେଶ ବୋଲି ଗ୍ରହଣ କରିନେଇ ତଦନୁଯାୟୀ କାମ କରିଥିଲେ । ପିଲାଙ୍କ ଉପରେ ଗୁଳି ନଚଳାଇବାକୁ ଜିଲ୍ଲାପାଳଙ୍କ ପିତା, ଛାତ୍ରବତ୍ସଳ ଅଧ୍ୟାପକ ମିଶ୍ର ମଧ୍ୟ ତାଙ୍କୁ ପରାମର୍ଶ ଦେଇଥିଲେ ।

ଯଥା ସମୟରେ ଶୋଭାଯାତ୍ରା ଆସି କଲେକ୍ଟୋରେଟ ହତାରେ ପହଞ୍ଚିଲା । ପୁଲିସ ଫଉଜ ସଜାଗ ହୋଇଗଲେ । କ'ଣ ଗୋଟାଏ ଘଟଣା ଘଟିବ ବୋଲି ଭାବି ବହୁ ଦେଖଣାହାରୀ ମଧ୍ୟ ସେଠାରେ ପହଞ୍ଚି ଭିଡ଼ ଜମେଇଥିଲେ । ଶୋଭାଯାତ୍ରା ଆଗରେ ଥିଲେ ପ୍ରତିମା ମହାପାତ୍ର । ହାତରେ ଏକ ବଡ଼ କଳାପତାକା । ସେମାନେ ଆସି ପୁଲିସର ସାମନାସାମନି ହୋଇଗଲେ । ପରିସ୍ଥିତି ନିୟନ୍ତ୍ରଣ କରିବା ଦାୟିତ୍ୱରେ ଥିଲେ ଅତିରିକ୍ତ ଜିଲ୍ଲାପାଳ ଦୁର୍ଯ୍ୟୋଧନ ସ୍ୱାଇଁ । ତାଙ୍କୁ ଜିଲ୍ଲାପାଳ ମୁଖ୍ୟମନ୍ତ୍ରୀଙ୍କ ଅନୁରୋଧ କଥା ବୁଝାଇ କୌଣସିମତେ ଅବସ୍ଥା ସମ୍ଭାଳି ନେବାକୁ କହିଥିଲେ । ଶ୍ରୀ ସ୍ୱାଇଁ ଜଣେ ଶାନ୍ତ ପ୍ରକୃତିର ଅଫିସର ଭାବରେ ଜଣାଶୁଣା ଥିଲେ । କାର୍ଯ୍ୟାନୁଷ୍ଠାନ ଗ୍ରହଣ ନକରି ଧୈର୍ଯ୍ୟ ଧରିବା ପାଇଁ ସେ ଉପସ୍ଥିତ ପୁଲିସ ବାହିନୀକୁ ବୁଝାଇଥିଲେ ।

ଶୋଭାଯାତ୍ରା ଆସିବା ପରେ ପୁଲିସ ସେମାନଙ୍କୁ ବାଧା ଦେଇନଥିଲେ । ଏଥିରେ ଉତ୍ସାହିତ ହୋଇ ପ୍ରତିମାଙ୍କ ସମେତ କେତେକ ପିଲା କଲେକ୍ଟୋରେଟ କୋଠା ଉପରକୁ ଚଢ଼ିଯାଇ ଉଡୁଥିବା ଜାତୀୟ ପତାକାକୁ ଓହ୍ଲାଇ ଦେଇ ସେଠାରେ କଳାପତାକା ଉଡ଼ାଇଦେଲେ । ପୁଲିସ ଫଉଜ ସବୁ ଘଟଣା ଦେଖି ନୀରବରେ ସହିଗଲେ । ସେଦିନ ଯଦି ପୁଲିସ ପକ୍ଷରୁ କାର୍ଯ୍ୟାନୁଷ୍ଠାନ ହୋଇଥାନ୍ତା, ତେବେ କେତେ ଯେ ଛାତ୍ର ମୃତାହତ ହୋଇଥାନ୍ତେ ତାହା କଳନାର ବାହାରେ । କିନ୍ତୁ ଜିଲ୍ଲାପାଳ, ତାଙ୍କ ବାଲ୍ୟବନ୍ଧୁଙ୍କୁ ଯେଉଁ ପ୍ରତିଶ୍ରୁତି ଦେଇଥିଲେ, ତାହା ପାଳନ କରି ଅନେକ ଧନଜୀବନ ରକ୍ଷା କରିପାରିଥିଲେ । ସେଦିନର ନିଷ୍ପତ୍ତି ଯୋଗୁଁ ଜିଲ୍ଲାପାଳ ପଦବାବୁଙ୍କ ପ୍ରତି ଛାତ୍ରମାନଙ୍କର ସମ୍ମାନ ବଢ଼ିଯାଇଥିଲା ।

ଦିନକୁ ଦିନ ଛାତ୍ର ଆନ୍ଦୋଳନ ବ୍ୟାପକ ହେବାରେ ଲାଗିଲା । କଟକ ସହରର ସୀମା ଅତିକ୍ରମ କରି ଅନ୍ୟତ୍ର ପ୍ରସାରିତ ହେଲା । ପ୍ରଥମାବସ୍ଥାରୁ ଛାତ୍ରମାନଙ୍କର କିଛି ଦାବୀ ନଥିଲା । କିନ୍ତୁ ପରବର୍ତ୍ତୀ କାଳରେ ଗିରଫ ଛାତ୍ରମାନଙ୍କୁ ଖଲାସ, ପୁଲିସ ଅତ୍ୟାଚାର ବନ୍ଦ, ମିଥ୍ୟା ମକଦ୍ଦମା ପ୍ରତ୍ୟାହାର, ବିଚାର ବିଭାଗୀୟ ତଦନ୍ତ ଇତ୍ୟାଦି ଛାତ୍ରମାନଙ୍କର ମୁଖ୍ୟ ଦାବୀ ହୋଇଗଲା । ଘଟଣାକ୍ରମେ ମୂଳଘଟଣା ରେଡିଓ ଦୋକାନ କଳି କୁଆଡ଼େ ଉଭେଇ ଗଲା ।

ଛାତ୍ର ଆନ୍ଦୋଳନର ନେତୃତ୍ୱ ନେଉଥିଲେ ଭାଗବତ ବେହେରା, ଚୌଧୁରୀ ପ୍ରତାପ କେଶରୀ ମିଶ୍ର, ତ୍ରିଲୋଚନ କାନୁନଗୋ ଓ ଆହୁରି ଅନେକ ଛାତ୍ରନେତା । ସେତେବେଳେ ମୁଁ

ଆଗଧାଡ଼ିର ଛାତ୍ରନେତା ଭାବରେ ଗଣା ହେଉନଥିଲି । ସେଥିପାଇଁ ମୋ ଉପରେ ପୁଲିସର କୋପଦୃଷ୍ଟି ନଥିଲା । ମୁଁ ଶୋଭାଯାତ୍ରାର ନେତୃତ୍ୱ ନନେଇ ଅଣ୍ଡରଗ୍ରାଉଣ୍ଡରେ ରହିବାକୁ କ୍ରିୟାନୁଷ୍ଠାନ କମିଟି ପକ୍ଷରୁ ମତେ ନିର୍ଦ୍ଦେଶ ମିଳିଥିଲା । ତଦନୁଯାୟୀ ମୁଁ କର୍ମପନ୍ଥା ବଦଳାଇଦେଲି । କୌଣସି ଶୋଭାଯାତ୍ରାର ନେତୃତ୍ୱ ନେବା ପରିବର୍ତ୍ତେ ଗିରଫ ହୋଇନଥିବା ବିଭିନ୍ନ ଛାତ୍ରନେତାମାନଙ୍କ ସହିତ ସମ୍ପର୍କ ଯୋଡ଼ିଲି । ଆନ୍ଦୋଳନ ସମ୍ପର୍କୀୟ ଖବର କିପରି ସମ୍ବାଦପତ୍ରମାନଙ୍କରେ ଠିକ୍ ଭାବରେ ପ୍ରକାଶ ପାଇବ ସେ ଦିଗରେ ମଧ୍ୟ ଉଦ୍ୟମ ଜାରି ରଖିଥିଲି ।

ଡକ୍ଟର ହରେକୃଷ୍ଣ ମହତାବଙ୍କ ମାଲିକାନାରେ ପ୍ରକାଶ ପାଉଥିବା ଦୈନିକ ପ୍ରଜାତନ୍ତ୍ରରେ ଛାତ୍ର ଆନ୍ଦୋଳନର ଟିକିନିଖି ଖବର ପ୍ରକାଶ ପାଉଥିଲା । ଶାସନ କ୍ଷମତାରେ ଥିବା କଂଗ୍ରେସ ସରକାରକୁ ସାଧାରଣରେ ନିନ୍ଦିତ ଓ ବଦନାମ୍ କରିବା ଡକ୍ଟର ମହତାବଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ସେତେବେଳେ ଜାନକୀବଲ୍ଲଭ ପଟ୍ଟନାୟକ 'ପ୍ରଜାତନ୍ତ୍ର'ର ସଂପାଦକ ଥିଲେ । ଛାତ୍ର ଆନ୍ଦୋଳନକୁ ଚାଲୁ ରଖିବାରେ ତାଙ୍କର ଯଥେଷ୍ଟ ଅବଦାନ ଥିଲା ।

ଛାତ୍ର ଆନ୍ଦୋଳନକୁ ଭଣ୍ଡୁର କରିବା ପାଇଁ ସରକାରଙ୍କ ପକ୍ଷରୁ ସବୁପ୍ରକାର ଦମନମୂଳକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଥିଲା । କଟକ ସହରର ମ୍ୟୁନିସିପାଲିଟି ଅଞ୍ଚଳରେ ଯେଭଳି ସଭାସମିତି ନହୋଇ ପାରିବ ସେଥିପାଇଁ ଫୌଜଦାରୀ ଆଇନ୍‌ର ୧୪୪ ଧାରା ଜାରି କରାଯାଇଥିଲା ।

ସେତେବେଳେ ସରକାରଙ୍କ ବିରୋଧରେ ଜନମତ ଖୁବ୍ ତୀବ୍ର ଥିଲା । ମ୍ୟୁନିସିପାଲିଟି ସୀମା ବାହାରେ ଖପୁରିଆ ଓ ଜଗତପୁର ଇତ୍ୟାଦି ଅଞ୍ଚଳରେ ବିକ୍ଷୋଭ ଓ ସଭା ଅନୁଷ୍ଠିତ ହେଉଥିଲା । ସେସବୁ ସଭାରେ ହଜାର ହଜାର ସଂଖ୍ୟାରେ ଲୋକ ଯୋଗଦେଇ ଆନ୍ଦୋଳନକୁ ଉତ୍ସାହିତ କରୁଥିଲେ ।

ଛାତ୍ରମାନଙ୍କର ସମସ୍ୟାକୁ ଅନୁଧ୍ୟାନ କରି ଆନ୍ଦୋଳନର ସମାପ୍ତି ଘଟାଇବା ପାଇଁ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର ପ୍ରଥମରୁ ଇଚ୍ଛା ପ୍ରକାଶ କରିଥିଲେ । ମାତ୍ର ସେତେବେଳର ଗୃହମନ୍ତ୍ରୀ ନୀଳମଣି ରାଉତରାୟ ପୁଲିସ କଥାରେ ପଡ଼ି ଆନ୍ଦୋଳନକୁ ଦବାଇ ଦେବା ପାଇଁ ଚାହିଁବାରୁ ଆନ୍ଦୋଳନ ବ୍ୟାପକ ହୋଇଥିଲା ।

ଛାତ୍ର ଆନ୍ଦୋଳନ ସମୟରେ ପୁଲିସର ମାତ୍ରାଧିକ କାର୍ଯ୍ୟାନୁଷ୍ଠାନ ଫଳରେ ଜଗତସିଂହପୁର, ବାଙ୍କୀ, ବିଂଝାରପୁର, ବ୍ରହ୍ମପୁର ଓ ଭବାନୀପାଟଣାରେ ପାଞ୍ଚଜଣ ଛାତ୍ରଙ୍କ ଜୀବନଦୀପ ଅକାଳରେ ଲିଭିଯାଇଥିଲା । ସେସବୁ ଅଞ୍ଚଳକୁ କଟକରୁ କେହି ଛାତ୍ରନେତା ଯାଇ ଆନ୍ଦୋଳନକୁ ସଂଗଠିତ କରିନଥିଲେ । ସ୍ଥାନୀୟ କଲେଜର ଛାତ୍ରମାନଙ୍କ ସହିତ ସାଧାରଣ ଲୋକେ ଯୋଗଦେବା ଫଳରେ ସେସବୁ ଅଞ୍ଚଳରେ ଆନ୍ଦୋଳନ ତୀବ୍ରତର ହୋଇଥିଲା ।

ସେତେବେଳେ ଜଗତସିଂହପୁର ଗୋଟିଏ ତହସିଲ ଟାଉନ ଥିଲା । କଟକ ସହରରୁ ପ୍ରାୟ ୫୦ କିଲୋମିଟର ଦୂରରେ ଥିବା ଏହି ତହସିଲ ଟାଉନ ଅଞ୍ଚଳରେ ପ୍ରଜା ସୋସାଲିଷ୍ଟ ଦଳର ଅଧିକ ପ୍ରଭାବ ଥିଲା । ଦଶହରା ଛୁଟି ଯୋଗୁଁ ଶିକ୍ଷାନୁଷ୍ଠାନ ସବୁ ବନ୍ଦ ହୋଇଥିଲା ।

ଛାତ୍ର ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟ ଅକ୍ଟୋବର ମାସ ଶେଷ ବେଳକୁ ପୁଣି ଆରମ୍ଭ ହେଲା । ଜଗତସିଂହପୁର ଏକ ଜାଗ୍ରତ ଅଞ୍ଚଳ । ସ୍ୱାଧୀନତା ସଂଗ୍ରାମ ସମୟରେ ଏହି ଅଞ୍ଚଳ ଅଧିକ ସକ୍ରିୟ ଥିଲା । ସେଠାରେ ଛାତ୍ରମାନେ ପୁଲିସ ଅତ୍ୟାଚାରର ପ୍ରତିବାଦ କରି ଶୋଭାଯାତ୍ରାରେ ବାହାରି ସହର ପରିକ୍ରମା କରିଥିଲେ । ସ୍ଥାନୀୟ ପୁଲିସଥାନା, ତହସିଲ ଅଫିସ ଓ ସବ୍‌ରେଜିଷ୍ଟ୍ରାର ଅଫିସ ଭିତରେ ପଶି ସେସବୁ ଦଖଲ କରିନେବା ପାଇଁ ଉଦ୍ୟମ କରିଥିଲେ । ପୁଲିସ ପକ୍ଷରୁ ଲାଠିଚାଳନା ଓ ଲୁହବୁହାଗ୍ୟାସ ପ୍ରୟୋଗ କରାଯାଇଥିଲା । ହେଲେ ସେସବୁ ବିଶେଷ ଫଳପ୍ରଦ ହୋଇନଥିଲା । ଶେଷରେ ପୁଲିସ ଦୁଇ ରାଉଣ୍ଡ ଗୁଳିଚାଳନା କରିଥିଲେ । ସେଥିରେ କୃଷ୍ଣ ପ୍ରସାଦ ନାମକ ଜଣେ ଛାତ୍ରଙ୍କର ମୃତ୍ୟୁ ଘଟିଥିଲା । ଆଉ କେତେକ ଛାତ୍ର ଆହତ ହୋଇଥିଲେ । କୃଷ୍ଣପ୍ରସାଦ ସ୍ଥାନୀୟ ଶିକ୍ଷାନୁଷ୍ଠାନର ଛାତ୍ର ନଥିଲେ । ଜଣେ ଦେଖଣାହାରୀ ଭାବରେ ଛିଡ଼ା ହୋଇଥିବା ବେଳେ ତାଙ୍କ ଦେହରେ ଗୁଳି ବାଜିଥିଲା ।

କଟକର ଛାତ୍ର ଆନ୍ଦୋଳନ ମହାନଦୀର ଆରପାରିରେ ଥିବା ସବ୍‌ଡିଭିଜନାଲ ସହର ବାଙ୍କୀକୁ ବ୍ୟାପିଥିଲା । ପ୍ରଥମେ ବାଙ୍କୀରେ ସ୍କୁଲ ଛାତ୍ରମାନେ ଆନ୍ଦୋଳନ ସହିତ ସାମିଲ ହୋଇନଥିଲେ । କିନ୍ତୁ ପରେ ସେମାନଙ୍କର ଯୋଗଦାନ ଫଳରେ ଆନ୍ଦୋଳନ ଜୋର ହୋଇଥିଲା । ଛାତ୍ରମାନଙ୍କ ପକ୍ଷରୁ ଯେଉଁ ଶୋଭାଯାତ୍ରା ବାହାର କରାଯାଇଥିଲା, ସେଥିରେ ଅସାମାଜିକ ଲୋକେ ମିଶିଯିବାରୁ ତାହା ହିଂସାତ୍ମକ ରୂପ ଧାରଣ କରିଥିଲା । ଫଳରେ ପରିସ୍ଥିତିକୁ ଆୟତ୍ତକୁ ଆଣିବା ପାଇଁ ପୁଲିସକୁ ଗୁଳିଚାଳନା କରିବାକୁ ପଡ଼ିଥିଲା । ସେଥିରେ ଜଣେ ଛାତ୍ରର ମୃତ୍ୟୁ ହୋଇଥିଲା ।

ଯାଜପୁର ସବ୍‌ଡ଼ିଭିଜନର ବିଂଝାରପୁରରେ ମଧ୍ୟ ଛାତ୍ର ଆନ୍ଦୋଳନ ମୁଣ୍ଡ ଟେକିଥିଲା । ସେ ଅଞ୍ଚଳରେ ସେତେବେଳେ କେହି ଟାଣୁଆ ଛାତ୍ର ନେତା ନଥିଲେ । ସେଠାରେ ଛାତ୍ର ଆନ୍ଦୋଳନକୁ କେହି ସଂଗଠିତ କରିନଥିଲେ । ତା'ସତ୍ତ୍ୱେ, ସେ ଅଞ୍ଚଳରେ ଆନ୍ଦୋଳନ ଖୁବ୍ ତୀବ୍ର ହୋଇଥିଲା । ଛାତ୍ରମାନଙ୍କ ଦାବୀ ପୂରଣ ନିମନ୍ତେ ବିକ୍ଷୋଭ ପଟୁଆରମାନ ବାହାରିଥିଲା । ଛାତ୍ରମାନଙ୍କ ଅପେକ୍ଷା ଅଣଛାତ୍ରମାନଙ୍କ ହାତକୁ ସେ ପଟୁଆରର ନେତୃତ୍ୱ ଚାଲିଯାଇଥିଲା । ଫଳରେ ଅବସ୍ଥା ଅଣାୟତ୍ତ ହୋଇଯାଇଥିଲା । ଛାତ୍ରମାନେ ପରୀକ୍ଷା ବର୍ଜନ କରି ରାଜରାସ୍ତାକୁ ଚାଲି ଆସିଥିଲେ । ଛାତ୍ରମାନଙ୍କ ସଂଖ୍ୟା ତୁଳନାରେ ସେଠାରେ ଖୁବ୍ କମ୍ ସଂଖ୍ୟକ ପୁଲିସ ଉପସ୍ଥିତ ଥିଲେ । ପୁଲିସ ପାଖରେ ଲୁହବୁହା ଗ୍ୟାସ ନଥିଲା । ଲାଠିଚାଳନା ବିଶେଷ ଫଳବତୀ ହୋଇନଥିଲା । ଅନ୍ୟପକ୍ଷରେ ବିକ୍ଷୋଭକାରୀଙ୍କ ଢେଲାପଥର ମାଡ଼ରେ ବହୁ ପୁଲିସ୍ କର୍ମଚାରୀ

ଆହତ ହୋଇଥିଲେ । ଶେଷରେ ଅନ୍ୟ ଉପାୟ ନପାଇ ଗୁଳିଚାଳନା କରିବାକୁ ଉପସ୍ଥିତ ମାଜିଷ୍ଟ୍ରେଟ ଅର୍ଡର ଦେଇଥିଲେ । ସେଥିରେ ଗୟାସୁଦ୍ଦିନ ନାମକ ଜଣେ ସ୍କୁଲ ଛାତ୍ରର ମୃତ୍ୟୁ ଘଟିଥିଲା ।

ସେହିପରି ଭାବରେ ବ୍ରହ୍ମପୁର ସହରରେ ଛାତ୍ର ଆନ୍ଦୋଳନ ତୀବ୍ର ଭାବରେ ବ୍ୟାପି ଥିଲା । ସେଠାରେ ଆନ୍ଦୋଳନକାରୀମାନେ କେତେକ ଚର୍ଚ୍ଚ ସହିତ ଅନ୍ୟ କୋଠାବାଡ଼ିରେ ନିଆଁ ଲଗାଇ ଦେଇଥିଲେ । ପରିସ୍ଥିତିକୁ ସମ୍ଭାଳିବା ପାଇଁ ପୁଲିସକୁ ଗୁଳି ଚଳାଇବାକୁ ପଡ଼ିଥିଲା । ପୁଲିସ ଗୁଳିଚାଳନାରେ ବସନ୍ତ କୁମାର ଆଚାର୍ଯ୍ୟ ନାମକ ଜଣେ ଛାତ୍ର ନିହତ ହୋଇଥିଲେ ।

କଳାହାଣ୍ଡି ଜିଲ୍ଲାର ଭବାନୀପାଟଣା ସହରରେ ମଧ ଛାତ୍ର ଆନ୍ଦୋଳନ ବ୍ୟାପକ ହୋଇଥିଲା । ପୁଲିସ ପକ୍ଷରୁ ଲାଠିଚାଳନା ଓ ବିକ୍ଷୋଭକାରୀଙ୍କ ପକ୍ଷରୁ ପୁଲିସ ଉପରକୁ ଢ଼େଲାପଥର ଫୋପାଡା ଯାଇଥିଲା । ଶେଷରେ ପରିସ୍ଥିତିକୁ ସମ୍ଭାଳିବା ପାଇଁ ପୁଲିସ ଗୁଳି ଚଳାଇଥିଲା । ସେଥିରେ ଜଣେ ଛାତ୍ର ନିହତ ହୋଇଥିଲେ ।

ରାଜଧାନୀ ଭୁବନେଶ୍ୱର ସହରରେ ମଧ ଛାତ୍ର ଆନ୍ଦୋଳନ ଅଧିକ ବ୍ୟାପି ଥିଲା । ସେଥିରେ ବକ୍ସି ଜଗବନ୍ଧୁ ବିଦ୍ୟାଧର(ବିଜେବି) କଲେଜର ଛାତ୍ରଛାତ୍ରୀମାନେ ମୁଖ୍ୟ ଭୂମିକା ନେଇଥିଲେ ।

ଅକ୍ଟୋବର ୨୮ ତାରିଖ ଦିନ ବିଜେବି କଲେଜର ଏକ ଛାତ୍ର ପଟୁଆର ଆସି କ୍ୟାପିଟାଲ ଥାନା ସାମନାରେ ପହଞ୍ଚିଥିଲା । ଛାତ୍ରମାନଙ୍କ ସହିତ ଅଣଛାତ୍ର ଓ ଅସାମାଜିକ ଲୋକେ ମିଶି ପୁଲିସ ଉପରକୁ ଢ଼େଲାପଥର ପକାଇବାରୁ ପରିସ୍ଥିତି ଉତ୍ତେଜନାପୂର୍ଣ୍ଣ ହୋଇଯାଇଥିଲା । ପରିସ୍ଥିତିକୁ ନିୟନ୍ତ୍ରଣ କରିବା ଉଦ୍ଦେଶ୍ୟରେ ସବ୍‌ଡ଼ିଭିଜନାଲ ମାଜିଷ୍ଟ୍ରେଟ୍ ଗୁଳିଚାଳନା ପାଇଁ ନିର୍ଦ୍ଦେଶ ଦେଇଥିଲେ । ସେଥିରେ ଦିବାକର ରଥ ନାମକ ଜଣେ ବ୍ୟକ୍ତି ଆହତ ହୋଇଥିଲେ ।

ରାଜ୍ୟର ବିଭିନ୍ନ ଅଞ୍ଚଳରେ ବ୍ୟାପି ଥିବା ଛାତ୍ର ଆନ୍ଦୋଳନ ଜନିତ ପରିସ୍ଥିତିକୁ ସମ୍ଭାଳିବା ପାଇଁ ରାଜ୍ୟ ସରକାର ସୈନ୍ୟବାହିନୀର ସହାୟତା ଲୋଡ଼ିଥିଲେ । ବ୍ରିଗେଡିଅର୍ ଇନ୍ଦ୍ରଜିତ୍ ସିଂହ ଗିଲ୍‌ଙ୍କ ନେତୃତ୍ୱରେ ଜଗତସିଂହପୁର ଓ ଅନ୍ୟାନ୍ୟ ଉପଦ୍ରୁତ ଅଞ୍ଚଳରେ ଶାନ୍ତିରକ୍ଷା ପାଇଁ ସେନାବାହିନୀକୁ ମୁତୟନ କରାଯାଇଥିଲା ।

ଛାତ୍ର ଆନ୍ଦୋଳନର ଦୁଇବର୍ଷ ପୂର୍ବରୁ ଚୀନର ଭାରତ ଆକ୍ରମଣ ବେଳେ ସେନାବାହିନୀ ପାଇଁ ଅସ୍ତ୍ରଶସ୍ତ୍ର କିଣିବା ଉଦ୍ଦେଶ୍ୟରେ ଦେଶର ଅଗଣିତ ନରନାରୀ ଅର୍ଥ, ଅଳଙ୍କାର ଇତ୍ୟାଦି ଦାନ କରିଥିଲେ । ବ୍ରିଗେଡିଅର ଗିଲ୍ ଉପଦ୍ରୁତ ଅଞ୍ଚଳକୁ ଯିବା ପୂର୍ବରୁ ମେଡିକାଲ କଲେଜର ଛାତ୍ରୀମାନେ ତାଙ୍କୁ ସାକ୍ଷାତ କରି କହିଥିଲେ, "ଏଇ ହାତରୁ ଆମେ ସୁନା କାଚ କାଢ଼ି ଯେଉଁ ଅସ୍ତ୍ରଶସ୍ତ୍ର କିଣିବାକୁ ଅକାତରରେ ସାହାଯ୍ୟ କରିଥିଲୁ, ଆପଣ ଆଜି ସେହି ଅସ୍ତ୍ର ଆମ ଛାତିରେ

ଫୁଟାଇବାକୁ ଆସିଛନ୍ତି ।" ଛାତ୍ରୀମାନଙ୍କ ଏହି ଆବେଗପୂର୍ଣ୍ଣ କଥାରେ କଠୋର ହୃଦୟ ବ୍ରିଗେଡିଅର ଗିଲ୍ କିଛିକ୍ଷଣ ପାଇଁ ସ୍ତବ୍ଧ ହୋଇଯାଇଥିଲେ ।

ପଣ୍ଡିତ ଜବାହରଲାଲ ନେହରୁଙ୍କ ଦେହାନ୍ତ ପରେ ଲାଲବାହାଦୁର ଶାସ୍ତ୍ରୀଙ୍କ ନେତୃତ୍ୱରେ କେନ୍ଦ୍ରରେ ଯେଉଁ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା, ସେଥିରେ ଗୁଲଜାରୀ ଲାଲ ନନ୍ଦା ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ଥିଲେ । ଜଣେ ସଦାଚାରୀ ଓ ସତ୍ୟନିଷ୍ଠ ବ୍ୟକ୍ତି ଭାବରେ ଶ୍ରୀ ନନ୍ଦାଙ୍କର ପ୍ରତିଷ୍ଠା ଥିଲା । ସମାଜରୁ ଦୁର୍ନୀତି ଦୂର କରି ଏକ ସୁସ୍ଥସମାଜ ଗଠନ ତାଙ୍କ ଜୀବନର ଉଦ୍ଦେଶ୍ୟ ଥିଲା ।

ଓଡ଼ିଶାରେ ଚାଲିଥିବା ଛାତ୍ର ଆନ୍ଦୋଳନ କେନ୍ଦ୍ର ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ପରିସ୍ଥିତି ଅନୁଧ୍ୟାନ କରି ଆନ୍ଦୋଳନର ପରିସମାପ୍ତି ଘଟାଇବା ନିମନ୍ତେ ଶ୍ରୀ ନନ୍ଦା ଆସି କଟକରେ ପହଞ୍ଚିଥିଲେ । ରାଜ୍ୟ ସରକାର ଓ ଛାତ୍ରନେତାମାନଙ୍କ ସହିତ ଆଲୋଚନା ତାଙ୍କର ଉଦ୍ଦେଶ୍ୟ ଥିଲା । କିନ୍ତୁ ସେତେବେଳେ ଅଧିକାଂଶ ଛାତ୍ରନେତା ଗିରଫ ହୋଇ ଜେଲରେ ଥିଲେ । ଶ୍ରୀ ନନ୍ଦାଙ୍କ କାର୍ ରେଭେନ୍ସା କଲେଜରେ ପହଞ୍ଚିଲା ପରେ ଛାତ୍ରମାନେ ତାଙ୍କୁ ଉଲ୍ଲସିତ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ମାତ୍ର ଗିରଫ ଛାତ୍ରନେତାମାନେ ଖଲାସ ନହେବା ପର୍ଯ୍ୟନ୍ତ କୌଣସି ଆଲୋଚନା ସମ୍ଭବ ନୁହେଁ ବୋଲି ଛାତ୍ରମାନଙ୍କ ପକ୍ଷରୁ ସ୍ୱରାଷ୍ଟ୍ର ମନ୍ତ୍ରୀଙ୍କୁ କୁହାଯାଇଥିଲା । ଛାତ୍ରମାନଙ୍କ କଥାର ଯଥାର୍ଥତା ଉପଲବ୍ଧି କରି ଛାତ୍ରନେତାମାନଙ୍କୁ ତୁରନ୍ତ ଖଲାସ କରିବାକୁ ଶ୍ରୀ ନନ୍ଦା ରାଜ୍ୟ ସରକାରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଛାତ୍ରନେତା ଭାଗବତ ବେହେରାଙ୍କ ସମେତ ଅନ୍ୟମାନଙ୍କୁ କଟକ ଜେଲରୁ ଖଲାସ କରାଯାଇ ସରକାରୀ ଗାଡ଼ିରେ ସିଧାସଳଖ ରେଭେନ୍ସା କଲେଜକୁ ଅଣାଯାଇଥିଲା ।

ଶ୍ରୀ ନନ୍ଦାଙ୍କର ଏଇ ଗୋଟିଏ ନିଷ୍ପତ୍ତି ଛାତ୍ରମାନଙ୍କ ଉପରେ ଖୁବ୍ ପ୍ରଭାବ ପକାଇଥିଲା । ସେମାନେ ଶ୍ରୀ ନନ୍ଦାଙ୍କ ସହିତ ଖୋଲାମନରେ ଆଲୋଚନା କରିଥିଲେ । ଛାତ୍ରମାନଙ୍କ ସହିତ ଆଲୋଚନା କରି ସମସ୍ୟାର ସମାଧାନ କରିବାକୁ ଶ୍ରୀ ନନ୍ଦା ରାଜ୍ୟ ସରକାରଙ୍କୁ ପରାମର୍ଶ ଦେଇଥିଲେ ।

ଶ୍ରୀ ନନ୍ଦା ଦିଲ୍ଲୀରୁ ଆସି ଭୁବନେଶ୍ୱର ବିମାନ ବନ୍ଦରଠାରେ ପହଞ୍ଚିବା ପରେ, ରାଜ୍ୟ ସରକାରଙ୍କ ପକ୍ଷରୁ ତାଙ୍କୁ ସ୍ୱାଗତ କରିବା ପାଇଁ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର ବିମାନ ବନ୍ଦରକୁ ଯାଇଥିଲେ । ଶ୍ରୀ ମିତ୍ରଙ୍କ ପାଖରେ ସବୁବେଳେ କଟକିଆ ଲୋକ ଭିଡ଼ ଲଗାଉଥିଲେ । ଶ୍ରୀ ମିତ୍ରଙ୍କୁ ମୁଖ୍ୟମନ୍ତ୍ରୀ ଭାବରେ ଗ୍ରହଣ ନକରି କଟକ ସହରବାସୀ ତାଙ୍କୁ 'ବୀରେନ୍ ଦା' ଭାବରେ ସବୁବେଳେ ବିଚାରୁଥିଲେ ।

ବୀରେନ୍ ବାବୁ ଛାତ୍ରାବସ୍ଥାରୁ ଗୁରୁତର ରୋଗରେ ପୀଡିତ ହେବା ଫଳରେ ତାଙ୍କ ଡାହାଣ ଗୋଡ଼ଟି ଛୋଟା ହୋଇଯାଇଥିଲା । ଅନ୍ୟଉପରେ ଭରା ନଦେଲେ ସ୍ୱଚ୍ଛନ୍ଦରେ

ଚଳପ୍ରଚଳ ହେବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ତେଣୁ ସେ ଯୁଆଡ଼େ ଗଲେ ଅନ୍ୟ ଲୋକର କାନ୍ଧରେ ହାତ ରଖି ଚାଲୁଥିଲେ ।

ବିମାନବନ୍ଦରକୁ ଶ୍ରୀ ନନ୍ଦାଙ୍କୁ ସ୍ୱାଗତ ଜଣାଇବା ପାଇଁ ଯିବା ସମୟରେ କଟକ ମଙ୍ଗଳାବାଗର ମଦ ବ୍ୟବସାୟୀ ହାଡ଼ିବନ୍ଧୁ ଦାସ, ବାଲୁବଜାରର ବାଣଦୋକାନୀ ବସନ୍ତଲାଲ ଭଗତ ଓ ଆହୁରି ଅନେକ ବ୍ୟକ୍ତି ଶ୍ରୀ ମିତ୍ରଙ୍କ ସାଙ୍ଗରେ ଥିଲେ । ସେମାନେ ସମସ୍ତେ ମୁଖ୍ୟମନ୍ତ୍ରୀ ଶ୍ରୀ ମିତ୍ରଙ୍କର ବ୍ୟକ୍ତିଗତ ବନ୍ଧୁ । ମାତ୍ର ସମାଜରେ ସେମାନଙ୍କର ସେତେଟା ପ୍ରତିଷ୍ଠା ନଥିଲା । ମୁଖ୍ୟମନ୍ତ୍ରୀ ବିମାନବନ୍ଦରକୁ ଯିବାବେଳେ ସେମାନେ ଉତ୍ସାହିତ ହୋଇ ଫୁଲମାଳ ଧରି ତାଙ୍କ ସାଙ୍ଗରେ ଯାଇ ସ୍ୱରାଷ୍ଟ୍ର ମନ୍ତ୍ରୀଙ୍କୁ ଫୁଲମାଳ ଦେଇଥିଲେ । ସେମାନଙ୍କ ଫଟୋ ସହିତ ବିଭିନ୍ନ ସମ୍ବାଦପତ୍ରମାନଙ୍କରେ 'ମଦ ବେପାରୀ ସଦାଚାରୀ ନନ୍ଦାଙ୍କୁ ଫୁଲମାଳ ଦେଲେ' ବୋଲି ପ୍ରକାଶ ପାଇଥିଲା । ଏହି ଘଟଣାରେ ଶ୍ରୀ ନନ୍ଦା ନିଜର ଅସନ୍ତୋଷ ପ୍ରକାଶ କରିଥିଲେ ।

ଛାତ୍ର ଆନ୍ଦୋଳନ ସଂକ୍ରାନ୍ତରେ ଏକ ବିଚାର ବିଭାଗୀୟ ତଦନ୍ତ କରିବା ପାଇଁ ମୂଳରୁ କୌଣସି ଦାବି ନଥିଲା । କିନ୍ତୁ ପରବର୍ତ୍ତୀ କାଳରେ ଏହି ଆନ୍ଦୋଳନକୁ ଦବାଇବା ଉଦ୍ଦେଶ୍ୟରେ ବିଭିନ୍ନ ସ୍ଥାନରେ ପୁଲିସର ଗୁଳିଚାଳନା ଓ ଅନ୍ୟାନ୍ୟ କାର୍ଯ୍ୟାନୁଷ୍ଠାନ ଯୋଗୁଁ ବିଚାର ବିଭାଗୀୟ ତଦନ୍ତ ଏକ ମୁଖ୍ୟ ଦାବି ହୋଇଗଲା । ରାଜ୍ୟ ସରକାର ଏହି ଦାବି ପ୍ରଥମରୁ ଗ୍ରହଣ କରିନଥିଲେ ।

ଏହି ତଦନ୍ତର ପରିସୀମା କ'ଣ ହେବ, ସେଥିରେ କେଉଁସବୁ ବିଷୟ ଅନ୍ତର୍ଭୁକ୍ତ ହେବ ସେ ବିଷୟ ସ୍ଥିର କରିବା ପାଇଁ ଏକାଧିକ ବୈଠକ ବସିଥିଲା । ବିଶିଷ୍ଟ ଭୂଦାନନେତ୍ରୀ ରମାଦେବୀ ଓ ତତ୍କାଳୀନ ଆଡ୍‌ଭୋକେଟ ଜେନେରାଲ ଦୀନବନ୍ଧୁ ସାହୁ ରାଜ୍ୟ ସରକାର ଓ ଛାତ୍ରନେତାମାନଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରିବାରେ ସହାୟକ ହୋଇଥିଲେ । ରମାଦେବୀଙ୍କ ପ୍ରତି ଛାତ୍ରସମାଜର ଗଭୀର ଭକ୍ତି ଓ ସମ୍ମାନ ଥିଲା । ସେହିପରି ଶ୍ରୀ ସାହୁ ଜଣେ ବରିଷ୍ଠ ଆଇନ୍‌ଜୀବୀ ଭାବରେ, ସମାଜରେ ପ୍ରତିଷ୍ଠା ଅର୍ଜନ କରିବା ସହିତ ସମସ୍ତଙ୍କର ଶ୍ରଦ୍ଧାଭାଜନ ଥିଲେ ।

୧୯୬୪ ମସିହା ନଭେମ୍ବର ମାସ ୫ ତାରିଖରେ ରାଜ୍ୟ ସରକାର ଓ ଛାତ୍ର ପ୍ରତିନିଧିମାନଙ୍କ ମଧ୍ୟରେ ବୈଠକ ବସିଥିଲା । ତଦନ୍ତ କମିଶନର କେତେକ ସର୍ତ୍ତକୁ କେନ୍ଦ୍ର କରି ଉଭୟ ପକ୍ଷ ମଧ୍ୟରେ ବିବାଦ ସୃଷ୍ଟି ହୋଇଥିଲା । ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଆଲୋଚନା ଚାଲୁ ରହିଥିଲେ ମଧ୍ୟ କୌଣସି ନିଷ୍ପତ୍ତି ହୋଇପାରିନଥିଲା । ବୈଠକରେ ଉପସ୍ଥିତ ଥିବା ଉଚ୍ଚସ୍ତରୀୟ ଅଫିସରମାନେ ଛାତ୍ରମାନଙ୍କ ଦାବିକୁ ମାନିବାକୁ ପ୍ରସ୍ତୁତ ନଥିଲେ । କିନ୍ତୁ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର ଅଫିସରମାନଙ୍କ ପରାମର୍ଶ ନଶୁଣି ସବୁ ନୀତିନିୟମକୁ ବେଖାତିର କରି ଛାତ୍ରମାନଙ୍କର ସମସ୍ତ ଦାବି ମାନିନେଇ ଚୁକ୍ତିପତ୍ରରେ "ଆଇ ଏଗ୍ରି" ବୋଲି ଲେଖି ଦସ୍ତଖତ କରିଦେଲେ । ସାଧାରଣତଃ ଉଭୟ ପକ୍ଷ ମଧ୍ୟରେ ସମ୍ପାଦିତ ହେବା ପାଇଁ ଥିବା

ଚୁକ୍ତିପତ୍ରରେ ସରକାରଙ୍କ ପକ୍ଷରୁ କ୍ଷମତାପ୍ରାପ୍ତ ଅଫିସର ଦସ୍ତଖତ କରିବା କଥା । କିନ୍ତୁ ଶ୍ରୀ ମିତ୍ର ଅଫିସରମାନଙ୍କ ମନୋଭାବରେ ସନ୍ତୁଷ୍ଟ ନହୋଇ ସମସ୍ତପ୍ରକାର ପ୍ରୋଟୋକଲ ନିୟମ ବାହାରକୁ ଯାଇ ଛାତ୍ରନେତାମାନଙ୍କ ଦାବିପତ୍ରରେ ସ୍ୱାକ୍ଷର କରିଦେଇଥିଲେ ।

ମୁଖ୍ୟମନ୍ତ୍ରୀ ଦାବୀପତ୍ରରେ ସ୍ୱାକ୍ଷର କରିଦେଲା ପରେ ଛାତ୍ର ଆନ୍ଦୋଳନ ବନ୍ଦ ହୋଇଯାଇଥିଲା । ମାତ୍ର ଛାତ୍ରମାନଙ୍କ ଭିତରେ ସୃଷ୍ଟି ହୋଇଥିବା ଅଶାନ୍ତି ଥମିଲା ନାହିଁ । ମାସାଧିକ କାଳ ଚାଲିଥିବା ଆନ୍ଦୋଳନରେ ଯେଉଁ ଛାତ୍ରମାନେ ସକ୍ରିୟ ଅଂଶଗ୍ରହଣ କରିଥିଲେ, କଲେଜରେ ସେମାନଙ୍କର ପରସେଣ୍ଟେଜ ସର୍ଟ ହେଲା । ସେମାନେ ପରୀକ୍ଷା ଦେବା ପାଇଁ ସମସ୍ୟା ସୃଷ୍ଟି ହେଲା । ଏ ସମ୍ପର୍କରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରାଯିବାରୁ କଲେଜମାନଙ୍କରେ ଅଧିକ କ୍ଲାସ କରି ଆଟେଣ୍ଡାନ୍ସ ମେକ୍‌ଅପ୍ କରିବାକୁ ନିର୍ଦ୍ଦେଶନାମା ପ୍ରକାଶ ପାଇଥିଲା ।

ସେ ସମୟରେ ଓଡ଼ିଶାର ଶିକ୍ଷାମନ୍ତ୍ରୀ ଥିଲେ ସତ୍ୟପ୍ରିୟ ମହାନ୍ତି । ସମଗ୍ର ଶିକ୍ଷାବିଭାଗ ଦାୟିତ୍ୱରେ ଡକ୍ଟର ସଦାଶିବ ମିଶ୍ର ଡି.ପି.ଆଇ ଭାବରେ ରହିଥିଲେ । ରେଭେନ୍ସା କଲେଜରେ ଅଧକ୍ଷ ଥିଲେ ଡକ୍ଟର ବଂଶୀଧର ସାମନ୍ତରାୟ । ରାଜ୍ୟର ଅନ୍ୟ କୌଣସି କଲେଜରେ କିଛି ସମସ୍ୟା ଦେଖାଦେଇନଥିଲା । ମାତ୍ର ଡକ୍ଟର ସାମନ୍ତରାୟଙ୍କ ଜିଦ୍‌ଖୋର ମନୋଭାବ ଯୋଗୁ ବହୁ ମେଧାବୀ ଛାତ୍ର ସେମାନଙ୍କ ଉଚ୍ଚତର ଡିଗ୍ରୀ ଲାଭରୁ ବଞ୍ଚିତ ହୋଇଗଲେ । ପ୍ରତିହିଂସା ପରାୟଣ ହୋଇ ଯେତିକି ଅଧିକ କ୍ଲାସ କଲେ ଆଗଧାଡି ଛାତ୍ରନେତାମାନଙ୍କର ଆଟେଣ୍ଡାନ୍ସ ମେକଅପ ହୋଇପାରିବ ନାହିଁ, କେବଳ ସେତିକି କ୍ଲାସ କରିବାକୁ ସେ ନିର୍ଦ୍ଦେଶ ଦେଇଥିଲେ । ଯେଉଁ ଛାତ୍ରମାନଙ୍କର ଆଟେଣ୍ଡାନ୍ସ ସର୍ଟ ହୋଇଥିଲା, ତା' ଭିତରେ ଥିଲେ ତ୍ରିଲୋଚନ କାନୁନଗୋ, ଲୋକନାଥ ଆଚାର୍ଯ୍ୟ ପ୍ରମୁଖ ଅନେକ ମେଧାବୀ ଛାତ୍ର ।

ମୋର ଯାହା ମନେ ପଡୁଛି, ଲୋକନାଥ ଆଚାର୍ଯ୍ୟ ବୋଧେ ରେଭେନ୍ସା କଲେଜ ଛାତ୍ର ୟୁନିଅର ସାଧାରଣ ସମ୍ପାଦକ ଥିଲେ । ଆଟେଣ୍ଡାନ୍ସ ସର୍ଟ ଘଟଣାକୁ ସେ ସହଜରେ ଗ୍ରହଣ କରି ପାରିନଥିଲେ । ନିଜର ଭବିଷ୍ୟତ ବିଷୟରେ ଚିନ୍ତାକରି ସେ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଥିଲେ । ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟିଥିଲା । ଆଗପଛ କିଛି ନବିଚାରି ଜାଗର ଅମାବାସ୍ୟା ଦିନ କଟକ ଷ୍ଟେସନରେ ତାଳଚେର ଟ୍ରେନ ଆଗକୁ ଡେଇଁପଡ଼ି ସେ ଆତ୍ମହତ୍ୟା କରିଦେଲେ । ଏହା ଏକ ମର୍ମନ୍ତୁଦ ଘଟଣା ଥିଲା ।

ସେଦିନ ଲ' କଲେଜର ଆମେ ସବୁ ଜାଗର ଯାତ୍ରା ପାଇଁ ଢେଙ୍କାନାଳର କପିଳାସକୁ ଯାଇଥିଲୁ । ସେତେବେଳେ ଆଜିକାଲି ଭଳି ଟେଲିଫୋନର ସୁବିଧା ନଥିଲା । ସେଥିପାଇଁ ଲୋକନାଥଙ୍କ ଆତ୍ମହତ୍ୟା ଖବର ଆମେ ହଠାତ୍ ଜାଣିପାରି ନଥିଲୁ । ରାତିରେ ଫେରିଲା

ପରେ ଜାଣିଲୁ । ସେତେବେଳକୁ ରେଭେନ୍ସା କଲେଜ ହତାରେ ମହାଭାରତ ପର୍ବ ଶେଷ ହୋଇ ସାରିଥିଲା ।

ଲୋକନାଥର ମୃତ ଶରୀରକୁ ତ୍ରିଲୋଚନ କାନୁନ୍‌ଗୋ ଓ ଅନ୍ୟମାନେ ଟେକିଆଣି ରେଭେନ୍ସା କଲେଜ ହତାରେ ରହୁଥିବା ଅଧ୍ୟକ୍ଷ ଡକ୍ଟର ସାମନ୍ତରାୟଙ୍କ ବାରଣ୍ଡାରେ ଶୁଆଇ ଦେଇଥିଲେ । ଏହି ଘଟଣାରେ ତୀବ୍ର ଉତ୍ତେଜନା ପ୍ରକାଶ ପାଇଥିଲା । ଛାତ୍ରମାନେ ଉତ୍ତେଜିତ ହୋଇ ଡକ୍ଟର ସାମନ୍ତରାୟଙ୍କ ପ୍ରତି ଅଶାଳୀନ ଭାଷା ପ୍ରୟୋଗ କରିଥିଲେ । ସେଥିରେ ସେ ଅତ୍ୟନ୍ତ ଅପମାନିତ ବୋଧକରି ବ୍ୟଥିତ ହୋଇଥିଲେ ।

ସମସ୍ତ ଘଟଣାର ନାୟକ ତ୍ରିଲୋଚନ କାନୁନ୍‌ଗୋଙ୍କ ବିରୋଧରେ ଶାସ୍ତିମୂଳକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ମନେମନେ ସ୍ଥିର କଲେ । ତାଙ୍କ ନିର୍ଦ୍ଦେଶରେ ତ୍ରିଲୋଚନଙ୍କୁ କଲେଜରୁ ରଷ୍ଟିକେଟ୍ କରି ଚବିଶଘଣ୍ଟା ମଧ୍ୟରେ ହଷ୍ଟେଲ ଛାଡ଼ି ଚାଲିଯିବା ପାଇଁ ଏକ ନିର୍ଦ୍ଦେଶନାମା ପ୍ରସ୍ତୁତ କରାଯାଇଥିଲା । ସେ ଖବର ଆମ କାନକୁ ଆସିଲା । ଅଧ୍ୟକ୍ଷଙ୍କ ଉଦ୍ୟମକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ଏକ ଚରିତ୍ର ସାର୍ଟିଫିକେଟ ପାଇବାକୁ ତ୍ରିଲୋଚନ ନାମରେ ଅଧ୍ୟକ୍ଷଙ୍କ ନିକଟରେ ଆବେଦନ କରାଗଲା । ଆମର ଉଦ୍ଦେଶ୍ୟ ଥିଲା, ଥରେ ଯଦି ଅଧ୍ୟକ୍ଷ ଗୁଡ୍ କଣ୍ଡକ୍ଟ ସାର୍ଟିଫିକେଟ ଦେଇଦେବେ, ତେବେ ତ୍ରିଲୋଚନଙ୍କୁ ରଷ୍ଟିକେଟ୍ କରିବା ତାଙ୍କ ପକ୍ଷରେ ଆଉ ସହଜସାଧ୍ୟ ହେବ ନାହିଁ । କିନ୍ତୁ ଆମ ଯୋଜନା ସଫଳ ହେଲା ନାହିଁ । ସେହି ଦରଖାସ୍ତ ଅଧ୍ୟକ୍ଷଙ୍କ ଅଫିସରେ ପହଞ୍ଚିବା ପୂର୍ବରୁ ତ୍ରିଲୋଚନ ଉଦ୍ଦେଶ୍ୟରେ ତାଙ୍କ ଅଫିସରୁ ଚିଠିଟି ଇସ୍ୟୁ କରାଯାଇସାରିଥିଲା ।

ଚିଠିଟି ପାଇ ଆମେ ବିବ୍ରତ ହୋଇପଡିଲୁ । କ'ଣ କରାଯିବ । ହଠାତ୍ କିଛି ଭାବିପାରିଲୁ ନାହିଁ । ଛାତ୍ର ଆନ୍ଦୋଳନ ଓ ତା' ପରବର୍ତ୍ତୀ ସମୟର ଘଟଣାବଳୀରୁ ବୀରେନ୍ ମିତ୍ରଙ୍କ ସହିତ ଆମର ଆତ୍ମୀୟତା ବୃଦ୍ଧି ପାଇଥିଲା । ଆମେ ତାଙ୍କୁ 'ଦାଦା' ବୋଲି ସମ୍ବୋଧନ କରୁଥିଲୁ ।

ଘଟଣା ଘଟିବା ଦିନ ଦାଦା କଲିକତାରେ ଥିଲେ । ସେତେବେଳର ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ ସେତେଟା ଦକ୍ଷ ନଥିଲେ । ଘରୋଇ ମନ୍ତ୍ରୀ ଥିଲେ ନୀଳମଣି ରାଉତରାୟ । ସେ ଭୁବନେଶ୍ୱରରେ ରହୁଥିଲେ ।

ଆମେ କାଳବିଳମ୍ବ ନକରି ସେଦିନ ରାତିରେ ଭୁବନେଶ୍ୱର ଗଲୁ । ଆମର ଉଦ୍ଦେଶ୍ୟ ଥିଲା, ଶ୍ରୀ ରାଉତରାୟଙ୍କ ସରକାରୀ ଫୋନ ମାଧ୍ୟମରେ କଲିକତାରେ ରହୁଥିବା ଶ୍ରୀ ମିତ୍ରଙ୍କ ସହିତ ଯୋଗସୂତ୍ର ରକ୍ଷା କରିବା । ଶ୍ରୀ ରାଉତରାୟ, ଆମକୁ ବିଶେଷକରି ମତେ ଭଲ ଭାବରେ ଜାଣିଥିଲେ । କିନ୍ତୁ ଛାତ୍ର ଆନ୍ଦୋଳନ ପରେ ତାଙ୍କ ସରକାରୀ ବାସଭବନରେ ପୁଲିସ ପହରା ବ୍ୟବସ୍ଥା କଡ଼ାକଡ଼ି ହୋଇଥିଲା । ତାଙ୍କ କ୍ୱାର୍ଟର୍ସରେ ଥିବା ପୁଲିସ୍ ଆମକୁ ବାରଣ୍ଡା ମଡେଇ ଦେଲେନାହିଁ । ଅନ୍ୟ ଉପାୟ ନଦେଖି ଆମେ ମନ୍ତ୍ରିମଣ୍ଡଳର ଅନ୍ୟତମ ସଦସ୍ୟ

ପ୍ରହ୍ଲାଦ ମଲ୍ଲିକଙ୍କ ଘରକୁ ଯାଇ ଫୋନ ଯୋଗେ ଦାଦାଙ୍କ ସାଙ୍ଗରେ କଥାବାର୍ତ୍ତା ହେଲୁ । ବ୍ୟସ୍ତ ନହୋଇ ସେ ଫେରିବା ପର୍ଯ୍ୟନ୍ତ ଧୈର୍ଯ୍ୟର ସହିତ ଅପେକ୍ଷା କରିବାକୁ ଦାଦା ଆମକୁ ପରାମର୍ଶ ଦେଇଥିଲେ ।

ଦାଦା କଲିକତାରୁ ଫେରି ତାଙ୍କ ପୁରୁଣାବନ୍ଧୁ କଟକ ଜିଲ୍ଲାପାଳ ପଦ୍ମନାଭ ମିଶ୍ର(ପଦବାବୁ)ଙ୍କୁ ସବୁକଥା ବୁଝିବାକୁ କହିଥିଲେ । ପଦବାବୁ ଡକ୍ଟର ସାମନ୍ତରାୟଙ୍କ ସହିତ ଆଲୋଚନା କଲାବେଳେ ସେ ଅତ୍ୟନ୍ତ କଠୋର ଭାବରେ କହିଲେ, "ରେଭେନ୍ସା କଲେଜରେ ବଂଶୀ ସାମନ୍ତରାୟ ଓ ତ୍ରିଲୋଚନ କାନୁନ୍‌ଗୋ ଏକାଠି ରହିବା ସମ୍ଭବ ନୁହେଁ । ଯଦି ସରକାର ଚାହୁଁଛନ୍ତି ତ୍ରିଲୋଚନ ରହିବେ, ତେବେ ମତେ ବିଦା କରିଦିଅନ୍ତୁ । ମୁଁ ବ୍ରାହ୍ମଣ ଲୋକ । ତୁଳସୀ ପାଣି ଦେଇ ଯାହା ପାଇବି ସେଥିରେ ଚଳିଯିବି ।"

ସେତେବେଳେ ରେଭେନ୍ସା କଲେଜ ଅଧ୍ୟକ୍ଷଙ୍କୁ କେବଳ ଡି.ପି.ଆଇ ଭାବରେ ନିଯୁକ୍ତି ମିଳୁଥିଲା । କାରଣ ସେ ପ୍ରଫେସରମାନଙ୍କ ଭିତରେ ସିନିଅରମୋଷ୍ଟ ଥିଲେ । ତାଙ୍କୁ ଅନ୍ୟ କୌଣସି କଲେଜର ଅଧ୍ୟକ୍ଷ ଭାବରେ ବଦଳି କରିବାର ମଧ୍ୟ ସୁଯୋଗ ନଥିଲା । ପଦବାବୁ ଡକ୍ଟର ସାମନ୍ତରାୟଙ୍କ ମତାମତକୁ ଶ୍ରୀ ମିତ୍ରଙ୍କୁ ଜଣାଇଥିଲେ । ଆମେ ମଧ୍ୟ ଦାଦାଙ୍କୁ ଜଣାଇଦେଲୁ ଯେ, ଯଦି ଏହାର ସନ୍ତୋଷଜନକ ସମାଧାନ ନହୁଏ, ତେବେ ଆମେ ପୁଣିଥରେ ରାଜରାସ୍ତାକୁ ଓହ୍ଲାଇବୁ । ତା'ର ପରିଣତି ପାଇଁ ରାଜ୍ୟ ସରକାର ଦାୟୀ ରହିବେ । ଏହି ଘଟଣା ସେତେବେଳେ ରାଜ୍ୟ ସରକାରଙ୍କ ପାଇଁ ଜଟିଳ ପରିସ୍ଥିତି ସୃଷ୍ଟି କରିଥିଲା ।

ସମସ୍ୟାର ସମାଧାନ ପାଇଁ ଦୀର୍ଘ ସାତଦିନ ଧରି ଏକାଧିକବାର ବୈଠକ ବସି ବିଚାର ଆଲୋଚନା ଚାଲିଲା । ମାତ୍ର ସମାଧାନର ପନ୍ଥା କିଛି ବାହାରି ପାରିନଥିଲା । ଶେଷରେ ଦାଦା, ତାଙ୍କର ବ୍ୟକ୍ତିଗତ ସମ୍ପର୍କକୁ ଉପଯୋଗ କରି ଡକ୍ଟର ସାମନ୍ତରାୟଙ୍କୁ ବୁଝାଇବାକୁ ସକ୍ଷମ ହେଲେ । ଶେଷରେ ଉଭୟ ଡକ୍ଟର ସାମନ୍ତରାୟ ଓ ଶ୍ରୀ କାନୁନ୍‌ଗୋ ଯଥାକ୍ରମେ ଅଧ୍ୟକ୍ଷ ଓ ଛାତ୍ର ଭାବରେ ରେଭେନ୍ସା କଲେଜରେ ରହିଲେ । ମାତ୍ର ମ୍ୟାଥମେଟିକ୍ସରେ ମାଷ୍ଟର୍ସ ଡିଗ୍ରୀ ହାସଲ କରିବା ତ୍ରିଲୋଚନଙ୍କ ପକ୍ଷରେ ଆଉ ସମ୍ଭବ ହେଲା ନାହିଁ ।

ଛାତ୍ର ଆନ୍ଦୋଳନ ପରର ଘଟଣା । ବୋଧହୁଏ ନଭେମ୍ବର ମାସ । ତାରିଖ ମନେ ପଡୁନାହିଁ । ମୁଁ ସେଦିନ ଫୁଲ୍ ପ୍ୟାଣ୍ଟ, ସାର୍ଟ ଓ ଫୁଲସ୍ୱେଟର ପିନ୍ଧିଥିଲି । ଗୋଡ଼ରେ ଜୋତା ଓ ମୋଜା ମଧ୍ୟ ଥିଲା । ସନ୍ଧ୍ୟାରେ ଶୀତ ଲାଗୁଥିଲା । ସେଦିନ କଟକ ସହରର ମ୍ୟୁନିସପାଲିଟି ଅଫିସ ପାଖରେ ଥିବା 'ଚନ୍ଦନ ପଡିଆ'ରେ କଂଗ୍ରେସ ଦଳ ପକ୍ଷରୁ ଗୋଟିଏ ସଭାର ଆୟୋଜନ ହୋଇଥିଲା । ସଭାରେ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେବାର କାର୍ଯ୍ୟକ୍ରମ ଥିବାରୁ ସ୍ୱାଭାବିକ ଭାବେ ଉତ୍ତେଜନା ପ୍ରକାଶ ପାଇଥିଲା । କାରଣ ସାଧାରଣତଃ ସଭାସମିତିମାନଙ୍କରେ ଭାଷଣ ଦେଲା ବେଳେ ବିଜୁ ପଟ୍ଟନାୟକଙ୍କର ତୁଣ୍ଡରେ ନିୟନ୍ତ୍ରଣ ରହୁନଥିଲା । ସ୍ଥାନ, କାଳ, ପାତ୍ର

ନବିଚାରି ସେ ମନକୁ ଯାହା ଆସୁଥିଲା କହି ଦେଉଥିଲେ । ତାଙ୍କୁ ଶୁଣିବାକୁ ସେଦିନ ଯେତିକି ଲୋକ ଆସିଥିଲେ, ତାଙ୍କୁ ବିରୋଧ କରିବାକୁ ମଧ୍ୟ ଅନେକ ଲୋକ ଆସିଥିଲେ ।

ସନ୍ଧ୍ୟାରେ ବିଜୁ ପଟ୍ଟନାୟକ ସଭାସ୍ଥଳରେ ପହଞ୍ଚିଲା ପରେ ତାଙ୍କ ବିରୋଧରେ ସ୍ଲୋଗାନମାନ ଆରମ୍ଭ ହୋଇଗଲା । ବେଳକୁବେଳ ବିରୋଧର ସ୍ୱର ବଢ଼ିବାରେ ଲାଗିଲା ।

ବିଜୁ ବାବୁ ସେ ସବୁକୁ ଖାତିର ନକରି ଜନତାଙ୍କ ଭିତରକୁ ପଶିଯିବାକୁ ଉଦ୍ୟମ କଲେ । ତା'ପରେ ତାଙ୍କୁ ବିରୋଧ କରୁଥିବା ଲୋକଙ୍କ ପକ୍ଷରୁ ଢେ଼ଲାପଥର ମାଡ ଆରମ୍ଭ ହୋଇଗଲା ।

ଏସବୁର ମୁକାବିଲା ପାଇଁ ପୁଲିସ ଆଗରୁ ପ୍ରସ୍ତୁତ ହୋଇ ଥିଲେ । ସାଙ୍ଗେସାଙ୍ଗେ ଲାଠିଚାର୍ଜ ଆରମ୍ଭ ହୋଇଗଲା । ମ୍ୟୁନିସପାଲିଟି ପୋଖରୀ ବାଁ ପଟେ ସହିଦଭବନ ଓ ତା' ପାଖରେ କଳିଙ୍ଗ ଜିମ୍ନାସିଅମ । ଚାରିଆଡ଼େ ପାଚେରୀ । ପୁଲିସ ପହରା । ଖସି ପଳାଇବା ପାଇଁ ରାସ୍ତା ନଥିଲା । ଯେଉଁମାନେ ପୁଲିସ ହାବୁଡ଼ରେ ପଡ଼ିଲେ, ନିସ୍ତୁକ ମାଡ଼ ଖାଇଲେ । ଆଉ କେତେକ ଅନ୍ୟ ଉପାୟ ନପାଇ ଚନ୍ଦନ ପୋଖରୀକୁ ଡ଼େଇଁ ପଡ଼ିଲେ । ପୋଖରୀରେ ପୂରାପାଣି ଥିଲା । ଶୀତଦିନ । ପାଣି ଖୁବ୍ ଥଣ୍ଡା । ଯେଉଁମାନେ ପୋଖରୀକୁ ଡ଼େଇଁଥିଲେ ସେମାନଙ୍କ ମଧ୍ୟରେ ମୁଁ ଥିଲି ।

ମୋର ଆଜିବି ସେଦିନର ଘଟଣା ସ୍ପଷ୍ଟ ମନେ ପଡ଼ିଯାଉଛି । ପ୍ୟାଣ୍ଟ, ସାର୍ଟ, ସ୍ୱେଟର, ଜୋତା, ମୋଜା ସବୁ ପାଣିରେ ବୁଡ଼ିଯିବାରୁ ଓଜନ ବଢ଼ିଗଲା । ପାଣିରେ ନିଜକୁ ସମ୍ଭାଳିବା ମୁସ୍କିଲ ହୋଇଗଲା । ସୌଭାଗ୍ୟକ୍ରମେ ମୁଁ ପହଁରା ଜାଣିଥିଲି । କୌଣସିମତେ ପହଁରି ପୋଖରୀ ଆରପଟେ ଥିବା ଟାଉନହଲ କୋଠା ପାଖରେ ପହଞ୍ଚିଗଲି । ଦେହରୁ ସର ସର ହୋଇ ପାଣି ବୋହୁଥିଲା । ଥଣ୍ଡାରେ ଦାନ୍ତକୁ ଦାନ୍ତ ବାଜୁଥିଲା । ଜୋତା ଭିତରେ ପଙ୍କଭର୍ତ୍ତି । କୁଆଡ଼େ ଯିବି ?

ଏଇକଥା ଭାବୁ ଭାବୁ ମନେ ପଡ଼ିଗଲା, ସହିଦଭବନ ହତାରେ ମୋ ସାଇକେଲଟି ରହିଯାଇଛି । ପଛକୁ ଫେରିଲେ ପୁଲିସ ଲାଠିମାଡ଼ର ଭୟଥିଲା । କିନ୍ତୁ ସାଇକେଲ ନନେଲେ ତ ସବୁ ଅଚଳ । ମୋ ସହିତ ଆହୁରି ଅନେକ ଲୋକ ମଧ୍ୟ ସେହିପରି ଅସ୍ୱାଭାବିକ ପରିସ୍ଥିତିରେ ଥିଲେ । ମୁଁ ବିଚାରିଲି, ପରିଣତି ଯାହା ହେଉନା କାହିଁକି, ମତେ ସାଇକେଲଟି ଉଦ୍ଧାର କରିବାକୁ ପଡ଼ିବ ।

ଶ୍ରୀରାମଚନ୍ଦ୍ରଭବନ ପାଖଦେଇ ଯୋଉ ଗଳି ଯାଇ ଫିରିଙ୍ଗି ବଜାରରେ ମିଶିଛି, ମୁଁ ସେଇଗଳିରେ ଚାଲିଲି । ବାଟରେ ଯିଏ ଦେଖୁଥିଲେ ମତେ ଘଡ଼ିଏ ଅନାଉଥିଲେ । କୌଣସି ମତେ ଆସି ସହିଦଭବନ ପାଖରେ ପହଞ୍ଚିଲାବେଳୁ ପ୍ରାୟ ରାତି ନଅଟା ହୋଇଯାଇଥିଲା । ଚନ୍ଦନ ପଡ଼ିଆରୁ ଗହଳି ଭାଙ୍ଗି ଯାଇଥିଲା । କେବଳ ପୁଲିସ ପଇଁତରା ମାରୁଥିଲେ ।

ସେତେବେଳେ ଶରତ ମିଶ୍ର ଲାଲବାଗ ଥାନାର ଅଫିସର ଇନ୍‌ଚାର୍ଜ ଥିଲେ । ଖୁବ୍ ମେଳାପୀ ଲୋକ । କିନ୍ତୁ ଡିଉଟିରେ କଡ଼ା । କଲେଜରେ ପଢ଼ିଲାବେଳକୁ ତାଙ୍କ ସାଙ୍ଗରେ ଜଣାଶୁଣା ଥିଲା । ଏତେ ରାତିରେ ସେ ବେଶରେ ମତେ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ, "ଶୀଘ୍ର ଏଠୁ ପଳା । ପୁଲିସ ଗଣ୍ଡଗୋଳକାରୀଙ୍କୁ ଖୋଜୁଛି । ଯାହାକୁ ପାଉଛି ଆରେଷ୍ଟ କରୁଛି ।" ମୁଁ ମୋ ସାଇକେଲ କଥା ତାଙ୍କୁ କହିଲି । ସେ ମୋ ସାଙ୍ଗରେ ଜଣେ କନେଷ୍ଟବଳଙ୍କୁ ପଠାଇଲେ । କନଷ୍ଟେବଳ ସାହାଯ୍ୟରେ ମୁଁ ସାଇକେଲଟି ଉଦ୍ଧାର କରି ଘରକୁ ଫେରିଲି । କାହାକୁ କିଛି ନକହି ଓଦାଲୁଗା ସବୁ ଲୁଚେଇ କରି ରଖିଦେଇ ଶୋଇପଡ଼ିଲି ।

ଚନ୍ଦନପଡ଼ିଆରେ ବିଜୁ ପଟ୍ଟନାୟକଙ୍କ ସଭା ଓ ପୁଲିସର ଲାଠିଚାର୍ଜକୁ କେନ୍ଦ୍ରକରି କଟକ ସହରରେ ଅନେକ ଗୁଜବ ଶୁଣିବାକୁ ମିଳିଲା । କଟକ ଏକ ଅଜବ ସହର । ସେଠାକାର କିଛି ଲୋକ ଗୁଲିଖଟି ଗପ କରିବାରେ ଓସ୍ତାଦ । କୁଆ ଉଡ଼ିଗଲା ଘଟଣାକୁ ଛୁଆ ଉଡ଼ିଗଲା ବୋଲି କହିବାକୁ ପଛାନ୍ତି ନାହିଁ । ଘଟଣା ପରଦିନ ସହରରେ ପ୍ରଚାର ହୋଇଗଲା ଯେ, ଚନ୍ଦନ ପୋଖରୀରେ ଅନେକ ଲୋକ ବୁଡ଼ି ପ୍ରାଣ ହରାଇଛନ୍ତି । ସେମାନଙ୍କ ଶବ ଭାସୁଛି । ଏ ଗୁଜବ ପରେ ସେଠାରେ ଜନଗହଳି ବଢ଼ିଲା । ପୁଲିସ ଖବର ପାଇ ଆସି ଲୋକଙ୍କୁ ଘଉଡ଼େଇଲେ । ପୁଲିସ ଫଉଜର ନେତୃତ୍ୱ ନେଇଥିଲେ ଆଲାମ୍ । ତାଙ୍କ ପୂରା ନାଁ କମ୍ ଲୋକ ଜାଣନ୍ତି । ଆଲାମ୍ କଟକିଆ ଲୋକ । ନାମକରା ଫୁଟ୍‌ବଲ ଖେଳାଳୀ । ସେଇ ହିସାବରେ ସେ ଜଣାଶୁଣା ଥିଲେ ।

ଲୋକଙ୍କ ଠେଲାପେଲାରେ ମାରଓ୍ୱାଡି ସ୍କୁଲର ନବମ ଶ୍ରେଣୀରେ ପଢୁଥିବା ବ୍ରଜକିଶୋର ସ୍ୱାଇଁ ନାମକ ଗୋଟିଏ ଛାତ୍ର ତଳେ ପଡ଼ିଗଲା । ଆଲାମ୍ ଚଳାଉଥିବା ପୁଲିସ୍ ଜିପ୍‌ଟି ତା ଗୋଡ଼ ଉପରେ ଚଢ଼ିଗଲା । ଆମେ କେଇଜଣ ଘଟଣାସ୍ଥଳରେ ଉପସ୍ଥିତ ଥିଲୁ । ଆମେ ବ୍ରଜକୁ ଉଦ୍ଧାର କରିବା ପୂର୍ବରୁ ପୁଲିସ ତାକୁ ଜିପ୍‌ରେ ଉଠାଇନେଲା । ତା'ପର ଦିନ ଆମେ ଖୋଜଖବର ନେଇ ତା'ର ଠିକଣା ପାଇଲୁ । ପୁଲିସ ତାକୁ ନେଇ ହସପିଟାଲରେ ଭର୍ତ୍ତି କରିଦେଇ ତାଙ୍କ ଦାୟିତ୍ୱ ତୁଟାଇ ଦେଇଥିଲେ । ଆମେ ଡାକ୍ତରଙ୍କ ସାଙ୍ଗରେ ପରାମର୍ଶ କରି ତା'ର ଚିକିତ୍ସାର ବ୍ୟବସ୍ଥା କଲୁ । ବ୍ରଜର ଗୋଡ଼ ଏପରି ଜଖମ ହୋଇଥିଲା ଯେ ସହଜରେ ଭଲ ହେବା ସମ୍ଭବ ନୁହେଁ ବୋଲି ଡ଼ାକ୍ତର ସେଦିନ ଆମକୁ ସୂଚନା ଦେଇଥିଲେ ।

କାମର ଚାପରେ ଆମେ ବ୍ରଜ କଥା ଏକପ୍ରକାର ଭୁଲି ଯାଇଥିଲୁ । ତା'ର ଚିକିତ୍ସା କିପରି ହେଲା ଓ ସେ କେତେଦିନ ମେଡିକାଲରେ ରହିଲା ସେ ସଂପର୍କରେ ଆମ ପାଖରେ କିଛି ଖବର ନଥିଲା ।

ଦିନେ ସନ୍ଧ୍ୟାରେ ମୁଁ ଝୋଲାସାହି ୟୁନିଅନ ଅଫିସରେ ବସିଥିଲି । ହଠାତ୍ ଜଣେ ପିଲା ଆଶାବାଡି ଧରି ଅଫିସରେ ପହଞ୍ଚିଲା । ଧୋତି ସାଙ୍ଗକୁ ଗାରପକା ହାଫସାର୍ଟ ପିନ୍ଧିଥିଲା । ତା'

ମୁହଁଟା ଚିହ୍ନା ଚିହ୍ନା ଲାଗୁଥିଲା । କିନ୍ତୁ ହଠାତ୍ ଠଉରେଇ ପାଇଲିନାହିଁ । ତାକୁ କୋଉଠି ଦେଖିଛି ହଠାତ୍ ମନେ ପଡିଲା ନାହିଁ ।

ତା' ଗୋଡ ଆଡକୁ ଅନେଇ ମୁଁ ତାଟକା ହୋଇଗଲି । ଏ କ'ଣ ମୁଁ ଦେଖୁଛି । ବ୍ରଜର ଡାହାଣ ଗୋଡ଼ଟି ଆଣ୍ଠୁତଳୁ କଟା ହୋଇଥିଲା । ମୋର ସବୁ କଥା ମନେ ପଡ଼ିଗଲା । ବ୍ରଜ ପ୍ରତି ଅବହେଳା କରିଥିବାରୁ ମନରେ ଧିକ୍କାର ଆସିଲା । ଦୁଃଖ ଯନ୍ତ୍ରଣାରେ ପେଷିହୋଇ ବ୍ରଜ ଏକପ୍ରକାର କାଠ ପାଲଟି ଯାଇଥିଲା । କାନ୍ଦିବାକୁ ଚେଷ୍ଟା କଲେ ବି ସେ କାନ୍ଦି ପାରିନଥିଲା । ଅଫିସରେ ଆଉ କେହି ନଥିଲେ ।

ମୁଁ ତାକୁ ବସିବାକୁ କହିଲି । ସାମ୍ନାରେ ଥିବା ସାହୁ ଦୋକାନରୁ କିଛି ଜଳଖିଆ ମଗେଇ ତାକୁ ଦେଲି । କ୍ରମେ ସେ ସ୍ୱାଭାବିକ ଅବସ୍ଥାକୁ ଫେରିଲା । ମେଡ଼ିକାଲରେ ପଡ଼ି ପଡ଼ି ଚିକିତ୍ସା ଅବହେଳାରୁ କିପରି ତା'ର ଏ ଅବସ୍ଥା ହେଲା ସବୁକଥା ସେ କହିଲା । ସବୁ ଶୁଣି ମୁଁ ନିଜକୁ ନିଜେ ଦୋଷୀ ମନେକଲି । ଆମେ ଚେଷ୍ଟା କରିଥିଲେ, ହୁଏତ ବ୍ରଜର ଗୋଡ଼ କଟାଯିବା ପର୍ଯ୍ୟନ୍ତ କଥା ଯାଇନଥାନ୍ତା ।

ସେ ସନ୍ଧ୍ୟାରେ ବ୍ରଜ ମତେ କିଛି କହି ପାରିନଥିଲା । ଗଲାବେଳେ କେବଳ ଏତିକି କହିଲା, "ସାର୍, ମୋ ପାଠରେ କ'ଣ ଏତିକିରେ ଡ଼ୋରି ବନ୍ଧା ହୋଇଯିବ ? ମୁଁ କ'ଣ ସବୁଦିନେ ଅନ୍ୟର ଦୟାରେ ଜୀବନ ବିତେଇବି ?" ଏତିକିରେ ତା ଆଖିରୁ ଲୁହ ଝରି ପଡ଼ିଲା । ମୁଁ ମଧ ନିଜକୁ ସମ୍ଭାଳି ପାରିଲି ନାହିଁ । ଦୁଇଜଣଙ୍କ କାନ୍ଦ ଭିତରେ ସେ ମୋ ଠାରୁ ବିଦାୟ ନେଇ ଚାଲିଗଲା ।

ମୁଁ ନିଜକୁ କିଛିକ୍ଷଣ ଭାବନା ରାଜ୍ୟରେ ହଜେଇ ଦେଇଥିଲି । ଅଫିସରେ ବ୍ରଜର ଆବିର୍ଭାବ ଓ ପ୍ରସ୍ଥାନ ମତେ ସିନେମାର ଛବିଭଳି ଲାଗୁଥିଲା । ମୁଁ ସ୍ୱାଭାବିକ ସ୍ଥିତିରେ ନଥିଲି । କ'ଣ ନେତାଏ, କ'ଣ ଭାବୁଛ ? କୁଆଡ଼େ ଗାଏବ ହୋଇଯାଇଛ ? ଏଇ ଶବ୍ଦରେ ମୁଁ ଭାବନା ରାଜ୍ୟରୁ ସ୍ୱାଭାବିକ ସ୍ଥିତିକୁ ଫେରିଆସି ଦେଖିଲି ମୋ ସାମନାରେ ଦୁଇତିନିଜଣ ବନ୍ଧୁ ଛିଡା ହୋଇଥିଲେ ।

ତା'ପରଦିନ ଆମେ କେଇଜଣ ବନ୍ଧୁ ମାରୱାଡି ସ୍କୁଲକୁ ଗଲୁ । ସେଠାରେ କେତେକ ଶିକ୍ଷକ ଆମର ଜଣାଶୁଣା ଥିଲେ । ସେମାନଙ୍କୁ ସବୁକଥା ବୁଝାଇଲୁ । ସେମାନେ ସହାନୁଭୂତିଶୀଳ ଥିଲେ । ବ୍ରଜର ପାଠପଢ଼ା ଦିଗରେ ସବୁମତେ ସାହାଯ୍ୟ କରିବେ ବୋଲି ଆମକୁ ପ୍ରତିଶ୍ରୁତି ଦେଲେ । ମଝିରେ ମଝିରେ ବ୍ରଜ ଆମ ଅଫିସକୁ ଆସେ । ତା'ର ସୁବିଧା ଅସୁବିଧା ବିଷୟରେ କହେ । ମୋ ଦ୍ୱାରା ଯାହା ସମ୍ଭବ, ମୁଁ ତାକୁ ସାହାଯ୍ୟ କରୁଥିଲି ।

ପାଠପଢ଼ା ପରେ ମୋର ସାମ୍ବାଦିକ ଜୀବନ ଆରମ୍ଭ । ତା'ପରେ ବାହାଘର । କଟକରୁ ଭୁବନେଶ୍ୱର ବଦଳି । ସଂସାର ଜଞ୍ଜାଳ ଭିତରେ ମୁଁ ବ୍ରଜ କଥା ଏକବାରେ ଭୁଲି ଯାଇଥିଲି ।

ପାଞ୍ଚ ବର୍ଷର ବ୍ୟବଧାନ । ଏହା ଭିତରେ ସେ ଦୁଃଖକଷ୍ଟରେ ଚଳି ଗ୍ରାଜୁଏଟ୍ ହୋଇସାରିଥିଲା । ସେକ୍ରେଟାରିଏଟ୍‌ରେ ଚାକିରି ପାଇଁ ଇଣ୍ଟରଭ୍ୟୁ ଦେଇ ସିଲେକ୍ଟ ହୋଇଥିଲା । ମାତ୍ର ବ୍ରିଟିଶ ଅମଳରୁ ପ୍ରଚଳିତ ବିଧି ତା'ର ବାଟ ଓଗାଳିଲା । ସରକାରୀ ଚାକିରିରେ ଯୋଗଦେବା ପୂର୍ବରୁ ଜଣକୁ ଫିଜିକାଲ ଫିଟ୍‌ନେସ ଦେବାର ଯେଉଁ ବ୍ୟବସ୍ଥା ଥିଲା ବ୍ରଜ କ୍ଷେତ୍ରରେ ପ୍ରତିବନ୍ଧକ ହେଲା । ଅନେକ ଡାକ୍ତରଙ୍କ ପାଖକୁ ସେ ଯାଇଥିଲା । ଅନେକ ଚେଷ୍ଟା କରିଥିଲା । ଗୋଟିଏ ଗୋଡ଼ କଟା ହୋଇଥିବା ଯୁବକକୁ ଫିଟ୍‌ନେସ ସାର୍ଟିଫିକେଟ୍ ଦବାକୁ କେହି ରାଜି ହୋଇନଥିଲେ ।

ମୁଁ ସେତେବେଳେ ଭୁବନେଶ୍ୱରର ତିନିନମ୍ବର ୟୁନିଟରେ ସରକାରୀ କ୍ୱାର୍ଟର୍ସରେ ରହୁଥିଲି । ମୁଁ ସେଦିନ ସକାଳୁ ଚାରିନମ୍ବର ହାଟକୁ କିଛି ପରିବାପତ୍ର ଆଣିବାକୁ ବାହାରି ଥିଲି । ଦେଖିଲି ଗେଟ ସାମନାରେ ବ୍ରଜ ଛିଡା ହୋଇଛି । ମୁଁ ହଠାତ୍ କିଛି ବୁଝି ପାରି ନଥିଲି । ଏହା କିପରି ସମ୍ଭବ ? ସେ ମୋ ଠିକଣା କୋଉଠୁ ପାଇଲା ?

ଯାହାହେଉ ଗେଟ ଖୋଲି ବ୍ରଜକୁ ଘରକୁ ଡାକିଲି । ହାଟକୁ ଯିବା ବନ୍ଦ ହେଲା । ବ୍ରଜ ସେତେବେଳକୁ ତା'ର ଅତୀତକୁ ଭୁଲି ସ୍ୱାଭାବିକ ହୋଇଯାଇଥିଲା । ମତେ ମନ ଖୋଲି ସବୁକଥା କହିଲା । କେତେ କଷ୍ଟକରି ସରକାରୀ ଚାକିରି ଖଣ୍ଡିଏ କରିବା ପାଇଁ କିପରି ମନୋନୀତ ହୋଇଛି ସେ କଥା ଜଣାଇଲା । କିପରି ଡାକ୍ତରମାନେ ତାକୁ ଖଣ୍ଡିଏ ଫିଟ୍‌ନେସ ସାର୍ଟିଫିକେଟ ଦେବାକୁ ଦଉଡ଼େଇଲେ, ଅତି ଦୁଃଖରେ ସେସବୁ କହିଲା । ମୁଁ ତାକୁ ସାନ୍ତ୍ୱନା ଦେଇ କହିଲି, "ବ୍ୟସ୍ତ ହୁଅନା, ଭଗବାନଙ୍କ ଉପରେ ଭରସା ରଖ । ସବୁ ଠିକ୍ ହୋଇଯିବ । ଯିଏ ତତେ ମାରୱାଡ଼ି ସ୍କୁଲରୁ ଆଣି ଏଠି ପହଞ୍ଚେଇଲେଣି ସେ ନିଶ୍ଚେ ତୋ ଦୁଃଖ ଶୁଣିବେ ।"

ସେତେବେଳେ ଡାକ୍ତର ଲଳିତମୋହନ ମହାନ୍ତି ରାଜଧାନୀର ଚାରି ନମ୍ବର ୟୁନିଟରେ ଥିବା ଡିସପେନସାରୀରେ ସର୍ଜରୀ ସ୍ପେଶାଲିଷ୍ଟ ଥିଲେ । କିନ୍ତୁ ତାଙ୍କର ମେଡିସିନ୍ ହ୍ୟାଣ୍ଡ୍ ଭଲଥିଲା । ରୋଗୀମାନେ ମେଡିସିନ୍ ସ୍ପେଶାଲିଷ୍ଟଙ୍କ ପାଖରୁ ପ୍ରେସକ୍ରିପସନ ଆଣି ଲଳିତ ବାବୁଙ୍କୁ ଦେଖାଉଥିଲେ । ଲଳିତ ବାବୁ ଦେଖିଦେଲେ ସେମାନଙ୍କ ମନ ଖୁସ୍ ହୋଇଯାଉଥିଲା ।

ମୁଁ ବ୍ରଜକୁ ନେଇ ଲଳିତବାବୁଙ୍କ ପାଖକୁ ଗଲି । ତାଙ୍କୁ ସବୁକଥା କହିଲି । ସେ ପରିସ୍ଥିତିର ଗମ୍ଭୀରତାକୁ ବୁଝିପାରିଲେ । ମତେ କହିଲେ, "ବସନ୍ତବାବୁ, ମୁଁ ଏ ପିଲାକୁ ଫିଟ୍‌ନେସ ସାର୍ଟିଫିକେଟ ଦେବି । ଫିଟନେସ ଅର୍ଥ ଜଣେ ମାନସିକସ୍ତରରେ କାମ କରିବା ପାଇଁ ସୁସ୍ଥ ଥିବା ଦରକାର । ଗୋଟିଏ ଗୋଡ଼ ନଥିଲେ ଜଣେ କିପରି ମାନସିକସ୍ତରରେ ଅନ୍‌ଫିଟ ହୋଇଯିବ ?" ତା'ପରେ ସେ ବ୍ରଜର କାଗଜପତ୍ର ଦେଖି ତାଙ୍କ ପ୍ୟାଡ୍‌ରେ ଫିଟନେସ ସାର୍ଟିଫିକେଟ ଖଣ୍ଡେ ଲେଖିଦେଲେ । ମୁଁ ବ୍ରଜର ମାନସିକସ୍ଥିତିକୁ ଲକ୍ଷ୍ୟ କରୁଥିଲି । ସାର୍ଟିଫିକେଟ

ଖଣ୍ଡକ ପାଇଲା ପରେ ସେ ଲଳିତବାବୁଙ୍କ ଗୋଡ଼ଧରି ଭୋ ଭୋ କାନ୍ଦି ପକାଇଲା । ଆମେ ତାକୁ ସାନ୍ତ୍ୱନା ଦେଲୁ ।

ବ୍ରଜ ସେକ୍ରେଟାରିଏଟରେ ଏଲ.ଡି ଆସିଷ୍ଟାଣ୍ଟ ଭାବରେ ଚାକିରିରେ ଯୋଗଦେଇ ସେକ୍‌ସନ ଅଫିସର ପର୍ଯ୍ୟନ୍ତ ଯାଇଥିଲା । ବାହାସାହା ହୋଇ ଘରସଂସାର କଲା । ଦୁଇ ନମ୍ବର ୟୁନିଟରେ ତାକୁ ସରକାରୀ କ୍ୱାଟର୍ସ ମିଳିଥିଲା । ମଝିରେ ମଝିରେ ରାସ୍ତାଘାଟରେ ଦେଖାହୋଇଗଲେ ତା' ଭଲମନ୍ଦ କଥା ମୁଁ ପଚାରେ । କୃତଜ୍ଞତାର ସହିତ ସେ ସଂକ୍ଷେପରେ ଉତ୍ତର ଦିଏ । ଗତ କିଛିବର୍ଷ ହେଲା ତା' ସହିତ ଆଉ ଦେଖାହୋଇନାହିଁ । ବୋଧହୁଏ ସରକାରୀ ଚାକିରିରୁ ଅବସର ନେଇ ସାରିଥିବ । ଅବସର ପରର ଜୀବନ ହୁଏତ ନିଜ ଜନ୍ମମାଟିରେ କଟାଇବା ପାଇଁ ସ୍ଥିର କରି ଗାଁ'କୁ ଚାଲିଯାଇଥିବ । ବେଳେବେଳେ ତା'କଥା ମନେପଡ଼ିଲେ ଆଖି ଲୁହରେ ଜକେଇଯାଏ । ଏ ଦୁନିଆର ରୀତି ବଡ଼ ଅଜବ । ଏଠି ଥିଲାବାଲାଙ୍କ ପାଇଁ ସବୁ ସୁବିଧା ଥିଲା ବେଳେ ନଥିଲା ବାଲାଙ୍କ ପାଇଁ କେବଳ ଭଗବାନ ଭରସା ।

# ଛାତ୍ର ରାଜନୀତିରେ ଅଂଶଗ୍ରହଣ

ମଧୁସୂଦନ ଲ' କଲେଜରେ ପଢୁଥିବା ସମୟରେ ଉତ୍କଳ ଛାତ୍ର ୟୁନିଅନ ସହିତ ମୋର ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପିତ ହୋଇଥିଲା । କଟକ ସହରର ଦୋଳମୁଣ୍ଡେଇ ଛକରୁ ବାଁପଟ ରାସ୍ତାରେ ଚୌଧୁରୀ ବଜାର ଯିବାବାଟରେ ପଡେ ଝୋଲାସାହି । ଝୋଲାସାହିର ନାମକରଣ କିଏ, କେବେ ଓ କାହିଁକି କରିଥିଲେ, ତା'ର କୌଣସି ପ୍ରାମାଣିକ ତଥ୍ୟ ମିଳେ ନାହିଁ । ଝୋଲାସାହିର ପ୍ରମୁଖ ବାସିନ୍ଦା ଅବସରପ୍ରାପ୍ତ ଆଇ.ଏ.ଏସ ଅଫିସର ଦୁର୍ଗା ଦାସଙ୍କ ଘର ପାଖରେ ଗୋଟିଏ ନୁଆଁଣିଆ ଚାଳଘର ଥିଲା । ସାମନାକୁ ତିନିବଖରା ଘର । ଭିତରେ ଆଉ ତିନୋଟି କୋଠରୀ । ସାମନା ତିନିବଖରା ମଧ୍ୟରୁ ଭିତରକୁ ଯିବାକୁ ଗୋଟିଏ ବାଟଘର । ଆଉ ଗୋଟିଏ ବଖରାର କବାଟ ଅଗଣା ଭିତରକୁ । ଦାଣ୍ଡପଟକୁ କବାଟ ଲାଗିଥିବା ମଝି ବଖରାଟିରେ ଛାତ୍ର ୟୁନିଅନ ଅଫିସ୍ ଥିଲା । ଅଫିସ୍ କହିଲେ ଘରଭିତରେ ଗୋଟିଏ ପୁରୁଣା କାଠ ଆଲମାରୀ । ଗୋଟିଏ ଟେବୁଲ । ଦି'ଖଣ୍ଡ କାଠ ବେଞ୍ଚ ଓ କେଇଖଣ୍ଡ ଭଙ୍ଗା ଚଉକି । ଚଉକି ଉପରେ ଗୋଟିଏ କାଚର ଲ୍ୟାମ୍ପ ।

ଘରର ମାଲିକ ପୃଷ୍ଟିବାବୁ । ଘର ଚାଉଳିଆଗଞ୍ଜ ମଠସାହିରେ । ବାଙ୍ଗରା ଲୋକ । ସାଇକେଲରେ ଯିବାଆସିବା କରନ୍ତି । ଘରଭଡା ପାଇଁ ଆସିଲେ ବେଳେବେଳେ ଦେଖା ହୋଇଯାଏ । ଘରଭଡା ମାସକୁ ମାତ୍ର ଆଠଟଙ୍କା । ତା' ମଧ୍ୟ ରୀତିମତ ଦେଇହୁଏ ନାହିଁ । ଦି, ତିନିମାସ ବାକି ରହିଯାଉଥିଲା ।

ଝୋଲାସାହିର ସେଇ ନୁଆଁଣିଆ ଚାଳଘରେ ଛାତ୍ର ୟୁନିଅନ ଅଫିସ କିଏ କେବେ ଖୋଲିଥିଲେ ସେ ହିସାବ ଖୋଜିଲେ ମିଳେ ନାହିଁ । ମାତ୍ର ଛାତ୍ର ୟୁନିଅନର ଇତିହାସ ସଂପର୍କରେ କିଛି କିଛି ବିବରଣୀ ପ୍ରତିଷ୍ଠାତା ସଦସ୍ୟମାନଙ୍କ ପାଖରୁ ମିଳିଥିଲା । ସେମାନଙ୍କ କହିବା ଅନୁଯାୟୀ ରେଭେନ୍ସା କଲେଜରେ ଦରମା ବୃଦ୍ଧିକୁ ବିରୋଧ କରି ୧୯୫୨ ମସିହାରେ ଛାତ୍ର ଧର୍ମଘଟ

# ଜୀବନ ଜୀବିକା



ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଭୁବନେଶ୍ୱରରେ ଶେଷ ସାମ୍ବାଦିକ ସମ୍ମିଳନୀ
(୩୦-୧୦-୧୯୮୪)



ହରିଆନାର କୁରୁକ୍ଷେତ୍ରଠାରେ ଅନୁଷ୍ଠିତ ଆଇ.ଏଫ.ଡବ୍ଲ୍ୟୁ.ଜେ. ଅଧିବେଶନରେ
ସୁଷମା ସ୍ୱରାଜ, ଶରଦ ଯାଦବ ଓ ଦେବୀ ଲାଲ ପ୍ରମୁଖଙ୍କ ସହିତ

କଟକଠାରେ ଅନୁଷ୍ଠିତ ଆଇ.ଏଫ.ଡବ୍ଲ୍ୟୁ.ଜେ. ଅଧିବେଶନରେ
ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଓ କେ. ବିକ୍ରମ ରାଓଙ୍କ ସହିତ



ଗୁଜୁରାଟର ଅହମଦାବାଦଠାରେ ଅନୁଷ୍ଠିତ ଆଇ.ଏଫ.ଡବ୍ଲ୍ୟୁ.ଜେ ଅଧିବେଶନର ଉଦ୍‌ଘାଟନ ଉତ୍ସବରେ



ସମ୍ବାଦପତ୍ରର ସ୍ୱାଧୀନତା କ୍ଷୁର୍ଣ୍ଣ କରୁଥିବା 'କଳା ପ୍ରେସ୍ ବିଲ୍' ବିରୋଧରେ ଦିଲ୍ଲୀର ଇଣ୍ଡିଆ ଗେଟ୍ ସାମନାରେ ଆୟୋଜିତ ବିକ୍ଷୋଭରେ ଖୁସବନ୍ତ ସିଂ, ସି.ଆର୍. ଇରାନୀ ଓ ରାମନାଥ ଗୋଏଙ୍କାଙ୍କ ସହିତ

ଉତ୍କଳ ସାମ୍ବାଦିକ ସଂଘ ପକ୍ଷରୁ ଆୟୋଜିତ ଶୋଭାଯାତ୍ରାରେ ସଂଘର ସାଧାରଣ ସମ୍ପାଦକ ବସନ୍ତ ଦାସ

କଟକଠାରେ ଅନୁଷ୍ଠିତ ଆଇ.ଏଫ.ଡବ୍ଲ୍ୟୁ.ଜେ. ଅଧିବେଶନରେ
ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଓ କେ. ବିକ୍ରମ ରାଓଙ୍କ ସହିତ



ଗୁଜୁରାଟର ଅହମଦାବାଦଠାରେ ଅନୁଷ୍ଠିତ ଆଇ.ଏଫ.ଡବ୍ଲ୍ୟୁ.ଜେ ଅଧିବେଶନର ଉଦ୍‌ଘାଟନ ଉତ୍ସବରେ



ସମ୍ବାଦପତ୍ରର ସ୍ୱାଧୀନତା କ୍ଷୁର୍ଣ୍ଣ କରୁଥିବା 'କଳା ପ୍ରେସ୍ ବିଲ୍' ବିରୋଧରେ ଦିଲ୍ଲୀର ଇଣ୍ଡିଆ ଗେଟ୍ ସାମନାରେ ଆୟୋଜିତ ବିକ୍ଷୋଭରେ ଖୁସବନ୍ତ ସିଂ, ସି.ଆର୍. ଇରାନୀ ଓ ରାମନାଥ ଗୋଏଙ୍କାଙ୍କ ସହିତ

ଉତ୍କଳ ସାମ୍ବାଦିକ ସଂଘ ପକ୍ଷରୁ ଆୟୋଜିତ ଶୋଭାଯାତ୍ରାରେ ସଂଘର ସାଧାରଣ ସମ୍ପାଦକ ବସନ୍ତ ଦାସ




ଦିଲ୍ଲୀରେ ଅନୁଷ୍ଠିତ ବିକ୍ଷୋଭର ପୁରୋଭାଗରେ ଆଇ.ଏଫ୍.ଡବ୍ଲ୍ୟୁ.ଜେ.
ଉପସଭାପତି ବସନ୍ତ ଦାସ




ଦିଲ୍ଲୀଠାରେ ଏକ ଶୋଭାଯାତ୍ରାରେ ସାମ୍ବାଦିକ ବନ୍ଧୁମାନଙ୍କ ସହିତ ସାଧାରଣ ସମ୍ପାଦକ ବସନ୍ତ ଦାସ

# ବିଶିଷ୍ଟ ବ୍ୟକ୍ତିମାନଙ୍କ ଗହଣରେ



ରାଜ୍ୟପାଳ ସତ୍ୟନାରାୟଣ ରେଡ୍ଡିଙ୍କୁ ଏକ ଉତ୍ସବକୁ
ପାଛୋଟି ନେଉଛନ୍ତି ବସନ୍ତ ଦାସ




ରାଜ୍ୟପାଳ ଏମ୍.ଏମ୍. ରାଜେନ୍ଦ୍ରନ୍‌ଙ୍କ ସହିତ ଏକ ଅନ୍ତରଙ୍ଗ ମୁହୂର୍ତ୍ତରେ




ଦିଲ୍ଲୀରେ ଅନୁଷ୍ଠିତ ବିକ୍ଷୋଭର ପୁରୋଭାଗରେ ଆଇ.ଏଫ୍.ଡବ୍ଲ୍ୟୁ.ଜେ.
ଉପସଭାପତି ବସନ୍ତ ଦାସ




ଦିଲ୍ଲୀଠାରେ ଏକ ଶୋଭାଯାତ୍ରାରେ ସାମ୍ବାଦିକ ବନ୍ଧୁମାନଙ୍କ ସହିତ ସାଧାରଣ ସମ୍ପାଦକ ବସନ୍ତ ଦାସ

# ବିଶିଷ୍ଟ ବ୍ୟକ୍ତିମାନଙ୍କ ଗହଣରେ



ରାଜ୍ୟପାଳ ସତ୍ୟନାରାୟଣ ରେଡ୍ଡିଙ୍କୁ ଏକ ଉତ୍ସବକୁ
ପାଛୋଟି ନେଉଛନ୍ତି ବସନ୍ତ ଦାସ




ରାଜ୍ୟପାଳ ଏମ୍.ଏମ୍. ରାଜେନ୍ଦ୍ରନ୍‌ଙ୍କ ସହିତ ଏକ ଅନ୍ତରଙ୍ଗ ମୁହୂର୍ତ୍ତରେ



ରାଜ୍ୟପାଳ ରାମେଶ୍ୱର ଠାକୁରଙ୍କୁ ନିଜ ପୁସ୍ତକ
'ଫୁଟ୍‌ପ୍ରିଣ୍ଟସ୍ ଅଫ୍ ଇଭେଣ୍ଟଫୁଲ୍ ଡେଜ୍'
ପ୍ରଦାନ ଅବସରରେ



ମିଡିଆ ଏକାଡେମୀ, ଓଡ଼ିଶାର ପ୍ରତିଷ୍ଠା ଦିବସ
ଉତ୍ସବରେ ରାଜ୍ୟପାଳ ଡ. ଏସ୍.ସି. ଜମିରଙ୍କୁ
ସ୍ୱାଗତ ଜଣାଉଛନ୍ତି ସମ୍ପାଦକ ବସନ୍ତ ଦାସ



କାନାଡ଼ାର ଟରଣ୍ଟୋ ସହରରେ ରାଜ୍ୟପାଳ ମୁରଲୀଧର
ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ ସହିତ ଅନ୍ତରଙ୍ଗ ଆଳାପ



କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଜୟନ୍ତୀ ଅବସରରେ
ଡକ୍ଟର ହରେକୃଷ୍ଣ ମହତାବ ଓ ନ୍ୟାୟମୂର୍ତ୍ତି ନବକୁମାର ଦାସଙ୍କ ସହିତ



ସାପ୍ତାହିକ ପତ୍ରିକା 'ଅନୁସନ୍ଧାନ'ର ବାର୍ଷିକ ଉତ୍ସବରେ
ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ



ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ସାମ୍ବାଦିକ ସମ୍ମିଳନୀରେ ଅନ୍ୟ ବନ୍ଧୁମାନଙ୍କ ସହିତ

ପ୍ରଗତିଦଳ ନେତା ନୀଳମଣି ରାଉତରାୟଙ୍କ ସହିତ ରାଜନୈତିକ ସ୍ଥିତି ସମ୍ପର୍କରେ ଆଲୋଚନା

ହୋଇଥିଲା । ତା'ର ନେତୃତ୍ୱ କମ୍ୟୁନିଷ୍ଟ ପାର୍ଟିର ଛାତ୍ର ସଂଗଠନ, ଛାତ୍ର ଫେଡେରେସନ ହାତରେ ଥିଲା । ସେତେବେଳେ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ । ଛାତ୍ର ଧର୍ମଘଟ ଯୋଗୁ ସରକାରଙ୍କୁ ଅପଦସ୍ତ ହେବାକୁ ପଡ଼ିଥିଲା । ସେହି ସମୟରେ ଡ଼କ୍ଟର ହରେକୃଷ୍ଣ ମହତାବ ଲୋକସଭାକୁ ନିର୍ବାଚିତ ହୋଇ କଟକରେ ଅବସ୍ଥାନ କରୁଥିଲେ । ଛାତ୍ରସମାଜ ଭିତରେ କମ୍ୟୁନିଷ୍ଟମାନଙ୍କର ପ୍ରଭାବକୁ କ୍ଷୁର୍ଣ୍ଣ ନକଲେ ଭବିଷ୍ୟତରେ କଂଗ୍ରେସ ଦଳ ପାଇଁ ବିପଦ ସୃଷ୍ଟି ହେବାର ଆଶଙ୍କାକୁ ସେ ବେଶ୍ ଅନୁମାନ କରିପାରିଥିଲେ । ସେଥିପାଇଁ ଅଣକମ୍ୟୁନିଷ୍ଟ ମତବାଦର ଛାତ୍ରନେତାମାନଙ୍କୁ ଏକାଠିକରି ଛାତ୍ର ୟୁନିଅନ ନାଁରେ ଗୋଟିଏ ଛାତ୍ର ସଂଗଠନ ଗଢ଼ିବାକୁ ସେ ମନସ୍ଥ କଲେ । କିଛିଦିନ ଭିତରେ ତାହା ବାସ୍ତବରେ ପରିଣତ ହେଲା ।

୧୯୫୩ ମସିହା ଅପ୍ରେଲ ମାସରେ କଟକ ଟାଉନହଲରେ ଛାତ୍ର ନେତାମାନଙ୍କର ଗୋଟିଏ ସଭା ଡକାଯାଇଥିଲା । ଆଲୋଚନା ପରେ 'ନିଖିଳ ଉତ୍କଳ ଛାତ୍ର ୟୁନିଅନ' ନାମରେ ସଂଗଠନଟିଏ ଗଢ଼ାହେଲା । ତା'ର ପ୍ରଥମ ସଭାପତି ହୋଇଥିଲେ ବିଷ୍ଣୁଚରଣ ବାହାଲିଆ । ଅନ୍ୟାନ୍ୟ କର୍ମକର୍ତ୍ତା ଥିଲେ ସନ୍ତୋଷ କୁମାର ସାହୁ, ରବି ନାରାୟଣ ମହାପାତ୍ର ଓ ରମଣୀ ରାମନାଥନ୍ । ଚାରୋଟି 'ସି' ଯଥା: କାଷ୍ଟିଜମ, କମ୍ୟୁନିଜମ, କମ୍ୟୁନାଲିଜମ ଓ କାପିଟାଲିଜମ୍ ବିରୋଧରେ ସଂଗ୍ରାମ କରିବା ଛାତ୍ର ୟୁନିଅନର ମୁଖ୍ୟ ଲକ୍ଷ୍ୟ ରହିଥିଲା । ଏହାର ପ୍ରତୀକରେ ଐକ୍ୟ, ସଂସ୍କୃତି ଓ ସଂଗଠନକୁ ସ୍ଥାନ ଦିଆଗଲା ।

ସେଥିସହିତ ଉତ୍ତମ ଚରିତ୍ରଗଠନ, ଶୃଙ୍ଖଳାଜ୍ଞାନ ଉପରେ ଗୁରୁତ୍ୱ ଦିଆଯିବା ସହିତ ନିଶାସେବନ ଓ ଅସାମାଜିକ କାର୍ଯ୍ୟରୁ ନିବୃତ୍ତ ରହିବା ପାଇଁ ସଦସ୍ୟମାନେ ପ୍ରତିଶ୍ରୁତିବଦ୍ଧ ହୋଇଥିଲେ । ସେଥିପାଇଁ ଛାତ୍ର ୟୁନିଅନର କୌଣସି ନେତା ବା ସଦସ୍ୟଙ୍କୁ ନିଶାସେବନ କରିବାର କେବେ ଦେଖାଯାଏ ନାହିଁ । ପ୍ରାରମ୍ଭିକ ଅବସ୍ଥାରେ ଝୋଲାସାହିର ସେ ଚାଳଘରେ ଯିଏ ଝାଡ଼ୁ ମାରିଥିଲେ, ଦିନେ ସମାଜରେ ସେ ପ୍ରତିଷ୍ଠିତ ବ୍ୟକ୍ତି ହୋଇପାରିଥିଲେ ।

ମୁଁ ଯେଉଁଦିନ ପ୍ରଥମେ ସେ ଚାଳଘରେ ପଶିଲି, ଘର ଭିତର ଅବସ୍ଥା ଦେଖି ଆବାକ୍ ହୋଇଯାଇଥିଲି । ଘରଯାକ ଅଳନ୍ଧୁ । ବୋଧହୁଏ କେଇମାସ ହେବ ଘରଟି ଖୋଲାଯାଇନଥିଲା । ଦି'ବର୍ଷ ହେଲା ଘର ଛପର ହୋଇନଥିବାରୁ ଘର ଭିତରୁ ତାରା, ଚନ୍ଦ୍ର ଦେଖାଯାଉଥିଲେ । ଟେବୁଲ ଉପରେ ଥିବା ଲ୍ୟାମ୍ପର କାଚଟି ଅଧା ଭାଙ୍ଗି ଯାଇଥିଲା । ଟେବୁଲ ଚେୟାର ଉପରେ ଆଙ୍ଗୁଳେ ମୋଟାରେ ଧୂଳି । ଏସବୁ ଦେଖି ମନରେ ଏକ ନକରାତ୍ମକ ଭାବ ସୃଷ୍ଟି ହୋଇଥିଲା । କିନ୍ତୁ ମୁଁ ହତାଶ ହୋଇନଥିଲି । ପରିସ୍ଥିତିର ସାମନା କରି ତାକୁ ଏକ ଚାଲେଞ୍ଜ ଭାବରେ ଗ୍ରହଣ କରିଥିଲି ।

ୟୁନିଅନ ଅଫିସ ସାମନାରେ ଥିଲା 'ସାହୁ ଦୋକାନ' । ଦୋକାନର ମାଲିକ ଗୋପୀ ସାହୁ । ପାଖ ଭଗତପୁରରେ ତାଙ୍କ ଘର । ବୟସ ପଚାଶ ଡେଇଁ ଯାଇଥିଲା । ଦୋକାନରେ

ସକାଳେ ସଞ୍ଜେ ବରା, ପିଆଜି ଛଣା ହେଉଥିଲା । ଖରାବେଳେ ଲଡୁ, ଜିଲାବି ଓ ଡାଲିଗଜା ତିଆରି ହେଉଥିଲା । ବରା ଗୋଟାକୁ ଦଶପଇସା । ପିଆଜି ଦଶପଇସାରେ ଦିଟା । ଚା' କପ୍‌କୁ ଦଶପଇସା । ଦୋକାନରେ ଯାହା ବିକ୍ରି ହେଉଥିଲା, ସେଥିରେ ସାହୁଙ୍କ ଗୁଜୁରାଣ ମେଣ୍ଟି ଯାଉଥିଲା । ସାହୁଙ୍କ ପୁତୁରା ଗୋବିନ୍ଦ, ସାହୁଙ୍କୁ ସାହାଯ୍ୟ କରେ । ସାହୁଙ୍କ ଦୋକାନ ପାଖରେ ମନି ପାନଦୋକାନ । ଚାରିଫୁଟରେ ଚାରିଫୁଟର ଗୋଟିଏ ଛୋଟିଆ ଗୁମୁଟି ଘର । ସେଠାରେ ସବୁ ଜିନିଷ ଖୁନ୍ଦା ହୋଇଥାଏ । ଚକଲେଟ୍, ବିସ୍କୁଟ ଠାରୁ ଆରମ୍ଭ କରି ବେଲୁନ୍, ଖେଳଣା, ପିଲାଙ୍କ ପାଇଁ ପେନ୍‌ସିଲ, ରବର ଇତ୍ୟାଦି ସବୁ ସେଠି ମିଳୁଥିଲା ।

ଘର ଭିତରର ଅଳିଆ ସଫା କରିବା ପାଇଁ ଝାଡୁ ଖୋଜିଲି । ବହୁତ ଖୋଜାଖୋଜି ପରେ ଆଲମାରୀ ତଳୁ ଖଣ୍ଡିଆ ଖଜୁରି ଝାଡୁ ଖଣ୍ଡେ ମିଳିଲା । ସେଥିରେ କାମ ଚଳାଇଦେଲି । ଆଲୁଅ କେମିତି ଜଳିବ ? କାଚଭଙ୍ଗା ଲ୍ୟାମ୍ପରେ କିରାସିନି ନଥିଲା । ମୁଁ ଘର ଓଳାଉଥିଲା ବେଳେ ଲକ୍ଷ୍ୟ କରୁଥିଲି, ସାମନା ଦୋକାନୀମାନେ ମୋ କାମକୁ ଦେଖି ଟିକିଏ ବିସ୍ମିତ ହେଉଥିଲେ । କାରଣ, ଆଗରୁ ଯେଉଁ ବାବୁମାନେ ସେ ଘରକୁ ଆସୁଥିଲେ, ସେମାନଙ୍କ ଭିତରୁ କେହି ଘର ଓଳାଇବା ସେମାନଙ୍କ ଆଖିରେ ପଡ଼ି ନଥିଲା ।

ଘର ଓଳା ସରିଲା ପରେ ମୁଁ ସାହୁ ଦୋକାନକୁ ଗଲି । ସାହୁ ମତେ ଦେଖି ପଚାରିଲେ, "ବାବୁ କ'ଣ ନୂଆ ଆସିଛ ? ଘର ବହୁଦିନ ହେଲା ଖୋଲି ନଥିଲା । ବହୁତ ଅଳିଆ ହୋଇଥିବ ? କାହାକୁ କହିଥିଲେ କିଏ ସଫା କରିଦେଇ ନଥାନ୍ତା ? ଆପଣଙ୍କ ଜାମାପଟା କ'ଣ ହେଲାଣି ।" ମୁଁ କହିଲି, ହଉ ଯିଏ ତ ହେଲେ କରିଥାନ୍ତା । ମୁଁ କରିଦେଲି । ଜାମାପଟା ସଫା କରିଦେବି ନାହିଁ ?

ମୋ କଥାକୁ ଅପେକ୍ଷା ନକରି ସାହୁ ମୋ ହାତକୁ କାଚ ଗ୍ଲାସରେ ଚା' ବଢ଼ାଇଦେଲେ । ବାସ୍ତବରେ ମୋର ସେତେବେଳେ ଚା'ଟିକେ ଦରକାର ପଡୁଥିଲା । ସାମ୍ନା ଡାଲାରେ ଗରମ ବରା ଦେଖି ମୋର ଲୋଭ ହେଲା । ମୁଁ ସାହୁଙ୍କୁ ମାଗି ପତରରେ ଚାରୋଟି ବରା ଖାଇଲି । ଖାଇସାରି ସାହୁଙ୍କ ହାତରେ ଟଙ୍କାଟିଏ ଗୁଞ୍ଜି ଦେବାରୁ ସେ ନାହିଁ ନାହିଁ କରି କହିଲେ, ଆପଣ ପ୍ରଥମ କରି ଆମ ଦୋକାନକୁ ଆସିଛନ୍ତି, କ'ଣ ଖାଇଲେ ଯେ ପଇସା ଦେଉଛନ୍ତି ? ସାହୁଙ୍କର ସେ କଥାରେ ଆତ୍ମୀୟତା ଥିଲା । ସେ ଛଳନା କରୁନଥିଲେ । ମୁଁ ତାଙ୍କୁ ବାଧ୍ୟକଲାରୁ କାଠବାକ୍ସରେ ଟଙ୍କାଟି ପକାଇ ସେଥିରୁ ଆଠଣା ପଇସା କାଢ଼ି ମତେ ଫେରାଇ ଦେଲେ ।

ମୁଁ ତାଙ୍କୁ କିରାସିନି କଥା ପଚାରିବାରୁ ସାହୁ କହିଲେ, ଆପଣ କାହିଁକି ଯିବେ, ଗୋବିନ୍ଦ ଯାଇ ଛକରୁ ନେଇ ଆସିବ । ଗୋବିନ୍ଦ ଅଫିସରୁ ଲ୍ୟାମ୍ପଟି ନେଇ ପଚିଶ ପଇସାରେ କିରାସିନି ଓ ଗୋଟିଏ ଦିଆସିଲ ମୁଠା ଆଣି ଭଙ୍ଗା କାଚକୁ ପୋଛି ଲ୍ୟାମ୍ପ ଲଗାଇଲା ।

ମୁଁ ଭାବିଲି ଯାହାହେଉ, ପ୍ରଥମଦିନରେ ଘର ସଫା ହୋଇ ଆଲୁଅ ତ ଲାଗିଲା । ମୋ ଛଡା ଅଫିସରେ ଆଉ କେହି ନଥିଲେ । କିଛି ସମୟ ବସି କବାଟ ବନ୍ଦ କରିବା ପୂର୍ବରୁ ଶପଥ କଲି, ଯେତେଦିନ ପର୍ଯ୍ୟନ୍ତ ମୁଁ ଏ ସଂଗଠନ ସହିତ ସଂପୃକ୍ତ ଥିବି ଏବଂ ଯଦି କଟକ ସହର ବାହାରକୁ ନଯାଇଥିବି, ତେବେ ପ୍ରତିଦିନ ଆସି ଘର ଖୋଲି ଆଲୁଅ ଲଗାଇ ବସିବି ।

ସେତେବେଳେ ଛାତ୍ର ୟୁନିଅନ ସଙ୍ଗଠନ ଅତି ଦୁର୍ବଳ ଥିଲା । ଦଳର ଜଣେ ପ୍ରମୁଖନେତା ତ୍ରିଲୋଚନ କାନୁନ୍‌ଗୋ, ରେଭେନ୍ସା କଲେଜ ଛାତ୍ର ୟୁନିଅନ ନିର୍ବାଚନକୁ କେନ୍ଦ୍ରକରି କେତେକ ବିବାଦ ଉପୁଜିବାରୁ ସଙ୍ଗଠନରୁ ଦୂରେଇ ଯାଇଥିଲେ । ଓଡ଼ିଶାରେ କଂଗ୍ରେସ ଦଳ ଭିତରେ ଡକ୍ଟର ହରେକୃଷ୍ଣ ମହତାବ ଓ ବିଜୁ ପଟ୍ଟନାୟକଙ୍କ ମଧରେ ମତଭେଦ ସୃଷ୍ଟି ହୋଇ ଦଳ ଦୁଇଭାଗରେ ବିଭକ୍ତ ହୋଇଯାଇଥିଲା । ସେ ବିଭାଜନ ଛାତ୍ର ୟୁନିଅନକୁ ଯଥେଷ୍ଟ ଭାବରେ ପ୍ରଭାବିତ କରିଥିଲା । ଛାତ୍ରମାନଙ୍କୁ ଗୋଟିଏ ସୂତ୍ରରେ ବାନ୍ଧି ରଖିଲା ଭଳି ନେତୃତ୍ୱର ଅଭାବ ଥିଲା । ମୁଁ ଚିନ୍ତା କଲି, କ'ଣ କଲେ ସଙ୍ଗଠନକୁ ସଜାଡି ହେବ ।

ଛାତ୍ର ୟୁନିଅନର ସଦସ୍ୟ ହେବା ପାଇଁ ପଚିଶ ପଇସା ଦେବାକୁ ପଡୁଥିଲା । ମୁଁ ପ୍ରଥମେ ଲ' କଲେଜରୁ ସଦସ୍ୟ ସଂଗ୍ରହ ପାଇଁ ଉଦ୍ୟମ ଆରମ୍ଭ କଲି । ପ୍ରତିଦିନ ଚାରି ଜଣ ପିଲାଙ୍କୁ ଟାରଗେଟ୍ କରି ସେମାନଙ୍କୁ ସଦସ୍ୟଭୁକ୍ତ କଲି । ତଦ୍ୱାରା ଦୁଇଟି ଦିଗରୁ ଲାଭ ହେଲା । ସଭ୍ୟ ସଂଖ୍ୟା ବଢ଼ିଲା ଏବଂ ସଂଧ୍ୟାବେଳେ ଅଫିସ ପାଇଁ କିରାସିନି ଓ ଚା' ଜଳଖିଆ ବାବଦକୁ ଟଙ୍କାଟିଏ ମିଳୁଥିଲା ।

ମୋର ଯାହା ମନେ ପଡୁଛି, ଆମ ସାଙ୍ଗରେ କଟକର ବିଶିଷ୍ଟ ଚାଟାର୍ଡ ଆକାଉଣ୍ଟାଟ୍ ହୃଦାନନ୍ଦ ନାୟକଙ୍କ ପୁଅ ଲ' ପଢୁଥିଲେ । ମୁଁ ତାଙ୍କୁ ଆମ ସଙ୍ଗଠନର ସଦସ୍ୟ ହେବା ପାଇଁ ଅନୁରୋଧ କଲି । ସେ ମୋ ଅନୁରୋଧ ରକ୍ଷାକରି ଆବେଦନ ଫର୍ମରେ ଦସ୍ତଖତ କରି ମତେ ଟଙ୍କାଟିଏ ବଢ଼ାଇଦେଲେ । ମୋ ପାଖରେ ରେଜା ପଇସା ନାହିଁ ବୋଲି କହିବାରୁ ସେ କହିଲେ, "ଏଇଟା ମୋ ଚାନ୍ଦା, ରଖନ୍ତୁ ।"

ମାସକ ଭିତରେ ଅଫିସ୍ ଜମି ଆସିଲା । ମୁଁ ପ୍ରତିଦିନ ସନ୍ଧ୍ୟାପୂର୍ବରୁ ଯାଇ କବାଟ ଖୋଲି, ଲ୍ୟାମ୍ପ ଲଗାଇ ବସେ । ସେ ରାସ୍ତାରେ ଯିଏ ଯିବାଆସିବା କରନ୍ତି ଚିହ୍ନା ଲୋକ ଦେଖି ଅଟକାଏ । ଜଣକୁ ଦିନଜଣ ଏମିତି ଦଶ,ବାର ଜଣ ସନ୍ଧ୍ୟାରେ ଅଫିସକୁ ଆସିବା ଆରମ୍ଭ କଲେ । ସନ୍ଧ୍ୟାରେ ଚା, ବରା, ପିଆଜିର ଆସର ଜମିଲା । ସେତେବେଳେ ସିଗାରେଟ୍ ଫୁଙ୍କିବାର ଚଳଣୀ ବେଶୀ ଥିଲା । ପାନାମା ସିଗାରେଟ୍ ଖୁବ୍ ଚଳୁଥିଲା । ଗୋଟିଏ ପ୍ୟାକେଟରେ କୋଡିଏଟା ସିଗାରେଟ୍ । ସନ୍ଧ୍ୟାରୁ ରାତି ଦଶଟା ଭିତରେ ଦୁଇ ପ୍ୟାକେଟ୍ ସିଗାରେଟ କୁଆଡେ ଉଡିଯାଉଥିଲା ।

ମୁଁ ଅନୁଭବ କଲି, ପଇସା ଓ 'ମସଲ୍‌ପାୱାର' ନଥିଲେ ଛାତ୍ର ସଙ୍ଗଠନ ଚଳାଇବା ସମ୍ଭବ ନଥିଲା । ସେତେବେଳେ ଚୌଧୁରୀ ବଜାରର ମ୍ୟୁନିସପାଲିଟି ଅଫିସ ପାଖରେ କଳିଙ୍ଗ ଜିମ୍ନାସିଅମ ନାମରେ ଗୋଟିଏ ବ୍ୟାୟାମଶାଳା ଥିଲା । ସ୍ୱର୍ଗତ ପଦ୍ମଚରଣ ନାୟକ ନାମକ ଜଣେ ପହେଲମାନ ସେହି ସଂସ୍ଥାଟି ପ୍ରତିଷ୍ଠା କରିଥିଲେ । ତା'ର ଆଉ ଦୁଇଟି ଶାଖା ବୁଢ଼ୀଠାକୁରାଣୀ ଲେନ ଓ ମହତାବ ରୋଡରେ ଖୋଲିଥିଲା ।

ମହତାବ ରୋଡ୍ ଶାଖା ଦାୟିତ୍ୱରେ ଥିବା ଧିରେନ୍ଦ୍ର ନାଥ ପଣ୍ଡା ଆମ ସାଙ୍ଗରେ ଲ' ପଢୁଥିଲେ । ମୋର ଆଗରୁ ଜିମ୍ନାସିଅମ ସହିତ ସମ୍ପର୍କ ଥିଲା । ସେଠାକୁ ଯାଉଥିବା ପିଲାମାନଙ୍କୁ ଟାରଗେଟ୍ କରି ମୁଁ ଜିମ୍ନାସିଅମକୁ ପୁଣି ଯିବାଆସିବା କଲି । ଜିମ୍ନାସିଅମର ସମ୍ପାଦକ ଅକ୍ଷୟ କୁମାର ପଣ୍ଡା (ପରବର୍ତ୍ତୀ ସମୟରେ ରାଜ୍ୟସଭା ସଦସ୍ୟ) ଆଗରୁ ଛାତ୍ର ୟୁନିଅନର ସମ୍ପାଦକ ଥିଲେ । ତାଙ୍କ ନିଜ ଘର ତିର୍ତ୍ତୋଲ । କିନ୍ତୁ ତାଙ୍କ ବାପା କାଠଗଡା ସାହିରେ ଘରଦ୍ୱାର କରିରହିଥିଲେ । ଆମେ ଶ୍ରୀ ପଣ୍ଡାଙ୍କୁ ଅକ୍ଷୟନା ବୋଲି ଡାକୁଥିଲୁ । ଅକ୍ଷୟନାଙ୍କ ସାନଭାଇ ଅଜୟ କୁମାର ପଣ୍ଡା (ପୂର୍ତ୍ତବିଭାଗର ସଚିବ) ସ୍କୁଲରେ ମୋର ସହଧ୍ୟାୟୀ ଥିଲା । ଆମେ ଏକାଠି ପ୍ୟାରୀମୋହନ ଏକାଡେମୀରେ ପଢୁଥିଲୁ । ମୁଁ ଅକ୍ଷୟନାଙ୍କ  ସହାୟତା ଲୋଡି ତାଙ୍କ ସମର୍ଥନରେ ଜିମ୍ନାସିଅମର ଅନେକ ଛାତ୍ରଙ୍କୁ ୟୁନିଅନରେ ସାମିଲ୍ କରିଥିଲି ।

କିଛିଦିନ ଭିତରେ ଝୋଲାସାହିରେ ଥିବା ଆମ ଅଫିସର ଚେହେରା ବଦଳିଗଲା । ଭଙ୍ଗା ଚଉକି ବଦଳାଯାଇ ନୂଆ ଚଉକି ଆସିଲା । ଭଙ୍ଗା ଲ୍ୟାମ୍ପ ବଦଳରେ ନୂଆ ବାଲାଇଟ୍ ଜଳିଲା । ଅଫିସକୁ ଖବରକାଗଜ ଆସିଲା । ଛାତ୍ରମାନଙ୍କ ସହିତ ପୂର୍ବତନ ଛାତ୍ରନେତାମାନଙ୍କର ମଧ୍ୟ ଯିବାଆସିବା ଆରମ୍ଭ ହେଲା ।

ପ୍ରଥମେ କଟକ ସହରରେ ଥିବା ବିଭିନ୍ନ କଲେଜରେ ୟୁନିଅନ ଶାଖା ଗଢ଼ିବାକୁ ମୁଁ ଉଦ୍ୟମ ଆରମ୍ଭ କଲି । ସେତେବେଳେ ପ୍ରବୀଣ ଅଧ୍ୟାପକ ରାଜକିଶୋର ରାୟଙ୍କ ବଡ଼ଝିଅ ମାଳବିକା ରାୟ ଶୈଳବାଳା ମହିଳା କଲେଜରେ ଅଧ୍ୟୟନ କରୁଥିଲେ । ରାଜୁ ବାବୁ ଥିଲେ ଅତ୍ୟନ୍ତ ଛାତ୍ରବତ୍ସଳ ଅଧ୍ୟାପକ । ବେଶ୍ ରସିକ ଲୋକ । ପୋଷାକ ଠାରୁ ଆରମ୍ଭ କରି କଥାବାର୍ତ୍ତା ସବୁଥିରେ ରସିକପଣିଆ ବାରି ହୋଇପଡୁଥିଲା ।

ଆମେ ତାଙ୍କ ସାଙ୍ଗରେ ସମ୍ପର୍କ ସ୍ଥାପନ କରି ମହିଳା କଲେଜରେ ୟୁନିଅନର ଗୋଟିଏ ଶାଖା ଖୋଲିବା ପାଇଁ ମାଳବିକାଙ୍କ ସାହାଯ୍ୟ ଚାହୁଁଛୁ ବୋଲି କହିଲୁ । ସେ ଆମ ଆଡକୁ କିଛିକ୍ଷଣ ଚାହିଁ କହିଲେ, "କେବଳ ସେତିକି ନା ଆଉକିଛି ?" ତାଙ୍କ ପ୍ରଶ୍ନରେ ସନ୍ଦେହର ଛିଟା ଥିଲା ।

ଯେତେବେଳେ ପ୍ରଫେସର ରାୟ ଆମର ଅଭିଳାଷ ସମ୍ପର୍କରେ ସମ୍ପୂର୍ଣ୍ଣ ଭାବେ ଆତ୍ମସନ୍ତୋଷ ଲାଭକଲେ, ଝିଅକୁ ଫୋନକରି କହିଲେ, "ମାନୀ, ଏମାନଙ୍କ ଉଦ୍ଦେଶ୍ୟ ମହତ୍ । ତୁମେ ଏମାନଙ୍କୁ ସାହାଯ୍ୟ କର ବୋଲି ମୁଁ ଚାହେଁ ।"

ରାଜୁବାବୁଙ୍କ ଏତିକି ସୁପାରିଶ ଆମ ପାଇଁ ଯଥେଷ୍ଟ ଥିଲା । ଆମେ ମାଳବିକାଙ୍କ ସହିତ ସମ୍ପର୍କ ସ୍ଥାପନ କରି ମହିଳା କଲେଜରେ ୟୁନିଅନର ଶାଖା ଗଠନ କରିବାରେ ସକ୍ଷମ ହେଲୁ । ଅଳ୍ପଦିନ ଭିତରେ କଟକ ସହରରେ ଆମର ଉପସ୍ଥିତିକୁ ଅନ୍ୟମାନେ ଉପଲବ୍ଧି କଲେ । ସଙ୍ଗଠନ ଚଳାଇବା ପାଇଁ ଆମର ପଇସାର ଅଭାବ ରହିଲା ନାହିଁ । କଳିଙ୍ଗ ଜିମ୍ନାସିଅମ ମାଧ୍ୟମରେ ଆମର ମସଲପାୱାର ମଧ୍ୟ ମିଳିଯାଇଥିଲେ । ଆମେ କଟକ ସହରରେ କମ୍ୟୁନିଷ୍ଟ ଦଳ ପରିଚାଳିତ ଛାତ୍ର ଫେଡେରେସନକୁ ଟକ୍କର ଦେବା ସ୍ଥିତିକୁ ଆସିଯାଇଥିଲୁ ।

ସନ୍ଧ୍ୟାରେ ଆମ ଅଫିସରେ ଛାତ୍ରମାନଙ୍କ ସଂଖ୍ୟା କ୍ରମେ ବୃଦ୍ଧି ପାଇବାରେ ଲାଗିଲା । ସନ୍ଧ୍ୟାରେ ସାହୁ ଦୋକାନରୁ ବରା, ପିଆଜି ସାଙ୍ଗରେ ଚା' ଏବଂ ମନି ଦୋକାନରୁ ସିଗାରେଟ୍ ଆଣିବା ନିତିଦିନିଆ କାମ ହୋଇଗଲା । ସେଥିସହିତ ଦେବରୂପ ଦାସ, ନିରୋଦ ମହାନ୍ତି, ଶୁଭେନ୍ଦ୍ର ବର୍ମା, ବୈଷ୍ଣବ ପଣ୍ଡା ଓ ବିଜୟ ଚକ୍ରବର୍ତ୍ତୀ ପ୍ରମୁଖ ମିଶି ଗୋଟିଏ ମଜଭୁତ ଗୋଷ୍ଠୀ ତିଆରି କରିଦେଲେ । ଇତିମଧ୍ୟରେ ଶୁଭେନ୍ଦ୍ର ଓ ବିଜୟ ଆମ ପାଖରୁ ବିଦାୟ ନେଇ ଆରପୁରକୁ ଚାଲିଗଲେଣି ।

ସେତେବେଳେ ଚୌଧୁରୀ ପ୍ରତାପ କେଶରି ମିଶ୍ର (ପରବର୍ତ୍ତୀ ଅବସ୍ଥାରେ ଓଡ଼ିଶା ହାଇକୋର୍ଟର ବିଚାରପତି) ଥିଲେ ୟୁନିଅନର ସାଧାରଣ ସମ୍ପାଦକ । ସେ ଯୋଉଦିନ ୟୁନିଅନ ଅଫିସ୍‌କୁ ଆସୁଥିଲେ ସେଦିନ ଆସରଟା ବେଶି ଜମୁଥିଲା । ସିଗାରେଟ୍ ଟାଣିବାରେ ଆମ ଭିତରେ ତାଙ୍କର ସମକକ୍ଷ କେହି ନଥିଲେ । ମଝିରେ ମଝିରେ ସଭାପତି ସରୋଜ(ଝଙ୍କାରର ସମ୍ପାଦକ ସରୋଜ ରଞ୍ଜନ ମହାନ୍ତି) ବାବୁ ମଧ୍ୟ ଆସି ହାଜର ହୋଇଯାଉଥିଲେ । ବେଳେବେଳେ ବୈଠକ ରାତି ଏଗାରଟା ପର୍ଯ୍ୟନ୍ତ ଚାଲୁଥିଲା ।

ଆମର ସଙ୍ଗଠନ ମଜଭୁତ ହେବା ଫଳରେ ଛାତ୍ର ୟୁନିଅନର ପ୍ରାର୍ଥୀମାନେ ଓଡ଼ିଶାର ବିଭିନ୍ନ କଲେଜ ୟୁନିଅନ ନିର୍ବାଚନରେ ଜୟଯୁକ୍ତ ହୋଇଥିଲେ । ବିଭିନ୍ନ କାରଣରୁ ଛାତ୍ର ୟୁନିଅନର ବାର୍ଷିକ ଅଧିବେଶନ ହୋଇପାରିନଥିଲା । ଏଥିସହିତ ୟୁନିଅନର ନୂଆ କର୍ମକର୍ତ୍ତାମାନେ ମଧ୍ୟ ନିର୍ବାଚିତ ହୋଇନଥିଲେ । ଛାତ୍ର ଆନ୍ଦୋଳନ ଯୋଗୁ ସମଗ୍ର ରାଜ୍ୟରେ ପରିସ୍ଥିତି ଉତ୍ତେଜନାପୂର୍ଣ୍ଣ ଥିଲା ।

୧୯୬୪ ମସିହାରେ ଛାତ୍ର ଆନ୍ଦୋଳନ ଓ ତା'ର ପରବର୍ତ୍ତୀ ଘଟଣାବଳୀ ଓଡ଼ିଶାର ରାଜନୀତିକୁ ଯଥେଷ୍ଟ ପ୍ରଭାବିତ କରିଥିଲା । ଡ଼କ୍ଟର ହରେକୃଷ୍ଣ ମହତାବ ଓ ତାଙ୍କ ଅନୁଗତମାନେ ଭାରତୀୟ ଜାତୀୟ କଂଗ୍ରେସରୁ ଅଲଗା ହୋଇଯାଇ 'ଜନ କଂଗ୍ରେସ' ନାମରେ ଏକ ଆଞ୍ଚଳିକ

ରାଜନୈତିକ ଦଳ ୧୯୬୫ ମସିହା ମେ ୫ ତାରିଖରେ ଗଠନ କରିଥିଲେ । ଫଳରେ କଂଗ୍ରେସ ଦଳ ଓଡ଼ିଶାରେ ଦୁଇଭାଗ ହୋଇଯାଇଥିଲା ।

ନିଖିଳ ଉତ୍କଳ ଛାତ୍ର ୟୁନିଅନ କଂଗ୍ରେସ ଦଳର ଛାତ୍ରଶାଖା ଭାବରେ କାର୍ଯ୍ୟ କରୁଥିବାରୁ, ଦଳର ବିଭାଜନ ସଙ୍ଗଠନକୁ ପ୍ରଭାବିତ କରିଥିଲା । ପରିସ୍ଥିତି ସ୍ୱାଭାବିକ ହେବା ପରେ ବାରିପଦାରେ ବାର୍ଷିକ ସମ୍ମିଳନୀ କରି ସେଠାରେ କର୍ମକର୍ତ୍ତା ନିର୍ବାଚନ ପାଇଁ ସ୍ଥିର ହେଲା ।

ସେତେବେଳକୁ ୟୁନିଅନରେ ଥିବା ସୋସାଲିଷ୍ଟ ପାର୍ଟିର ସମର୍ଥକମାନେ ଗୋଟିଏ ଅଲଗା ଗୋଷ୍ଠୀ ତିଆରି କରି କାଳୀଗଳିରେ ସେମାନଙ୍କର ଅଫିସ ଖୋଲିସାରିଥିଲେ । ମାତ୍ର ଆନୁଷ୍ଠାନିକ ଭାବରେ ସେମାନେ ୟୁନିଅନ ଛାଡି ନଥିଲେ । ୟୁନିଅନରେ ଥିବା ଡ଼କ୍ଟର ମହତାବଙ୍କ ସମର୍ଥକମାନଙ୍କ ସହିତ ସେମାନେ ହାତ ମିଳେଇ ଅଫିସ ଦଖଲ କରିବା ମତଲବରେ ରହିଥିଲେ ।

ମୁଁ ଡକ୍ଟର ମହତାବଙ୍କର ଜଣେ ଅନୁଗତ ହୋଇଥିଲେ ହେଁ, ଘଟଣାକ୍ରମରେ ବିଜୁ, ବୀରେନ୍ ଗୋଷ୍ଠୀ ସହିତ ଯୋଡି ହୋଇଯାଇଥିଲି । ଛାତ୍ର ୟୁନିଅନ ଭିତରେ ତ୍ରିଲୋଚନ, ପ୍ରତାପ ଓ ମୁଁ 'ତ୍ରିଶକ୍ତି' ଭାବରେ ପରିଚିତ ଥିଲୁ । ୟୁନିଅନ ଅଫିସ ଆମ ଅକ୍ତିଆରରେ ଥିଲା । ସଙ୍ଗଠନରେ ଆମର ଅଧିକ ସମର୍ଥକ ମଧ୍ୟ ଥିଲେ । ଆରପାଖରେ ସଭାପତି ଶ୍ରୀ ମହାନ୍ତି, ହରିବନ୍ଧୁ ଦାସ, କୃଷ୍ଣଚନ୍ଦ୍ର ପାତ୍ର, ଗୌରାଙ୍ଗ ଚରଣ ହୋତା, ବିଶେଶ୍ୱର ମିଶ୍ର ପ୍ରମୁଖ ଥିଲେ । ସେମାନେ ସେତେବେଳକୁ କେହି ଛାତ୍ର ନଥିଲେ ।

ଆମେ ବାରିପଦା ଅଧିବେଶନ କିପରି ସଫଳ ହେବ, ସେଥିପାଇଁ ଲାଗି ପଡ଼ିଥିଲା ବେଳେ ଅନ୍ୟ ଗୋଷ୍ଠୀଟି କିପରି ନିର୍ବାଚନ ଜିଣି ୟୁନିଅନକୁ ହାତମୁଠାରେ ରଖିବେ ସେଥିପାଇଁ ଚେଷ୍ଟିତ ଥିଲେ । ସେମାନଙ୍କୁ ଜନ କଂଗ୍ରେସ ଶିବିରରୁ ଆର୍ଥିକ ସହାୟତା ସହିତ ଗାଡ଼ି ମଟର ଯୋଗାଇ ଦିଆଯାଇଥିଲା ।

ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟସୂଚୀ ମୁତାବକ ବାରିପଦା ଅଧିବେଶନ ଯଥା ସମୟରେ ଆରମ୍ଭ ହେଲା । ବାରିପଦାର ପ୍ରାକ୍ତନ ଛାତ୍ରନେତା ଅରବିନ୍ଦ ଦାସ(ଗାନ୍ଧୀ) ଅଧିବେଶନର ଆୟୋଜନ କରାଇଥିଲେ ।

ସକାଳୁ ଆରମ୍ଭ ହୋଇଥିବା ଅଧିବେଶନ ଅପରାହ୍ନ ଗୋଟାଏ ପର୍ଯ୍ୟନ୍ତ ଚାଲି ମଧ୍ୟାହ୍ନଭୋଜନ ପାଇଁ ବିରତି ହୋଇଥିଲା । ଅପରାହ୍ନ ଅଧିବେଶନରେ କର୍ମକର୍ତ୍ତା ନିର୍ବାଚନ ପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା ।

ପ୍ରଥମେ ସର୍ବସମ୍ମତିକ୍ରମେ କର୍ମକର୍ତ୍ତା ନିର୍ବାଚନ କରିବା ପାଇଁ ପ୍ରସ୍ତାବ ରଖାଗଲା । ମାତ୍ର ଆମକୁ ବିରୋଧ କରୁଥିବା ଗୋଷ୍ଠୀ ସେଥିରେ ରାଜି ହେଲେନାହିଁ । ଦୁଇପକ୍ଷର ଦୁଇଟି ପାନେଲ ତିଆରି ହୋଇଥିଲା ।

ଆମ ପାନେଲରେ ତ୍ରିଲୋଚନ କାନୁନ୍‌ଗୋ ସଭାପତି ଓ ମୋ ନାଁ ସାଧାରଣ ସମ୍ପାଦକ ପଦ ପାଇଁ ଥିଲା । କଥା ହେଲା, ଗୋଟିଏ ଗୋଟିଏ ପଦବୀ ପାଇଁ ଆଲୋଚନା କରାଯାଇ ନିଷ୍ପତ୍ତି ହେବ । ପ୍ରଥମେ ସଭାପତି ପଦ କଥା ପଡ଼ିଲା । ସେମାନଙ୍କ ପକ୍ଷରୁ ସଭାପତି ପଦ ପାଇଁ ପ୍ରାର୍ଥୀ ଥିବା ବିଶେଶ୍ୱର ମିଶ୍ର ଓହରିଯିବାରୁ ତ୍ରିଲୋଚନ ନିର୍ଦ୍ୱନ୍ଦ୍ୱରେ ସଭାପତି ନିର୍ବାଚିତ ହୋଇଗଲେ ।

ତା'ପରେ ଆସିଲା ସାଧାରଣ ସମ୍ପାଦକ କଥା । ଯେହେତୁ ଆମ ପାନେଲର ପ୍ରାର୍ଥୀ ସଭାପତି ହେଲେ, ସେ ଦୃଷ୍ଟିରୁ ସାଧାରଣ ସମ୍ପାଦକ ପଦ ସେମାନଙ୍କ ପ୍ରାର୍ଥୀଙ୍କୁ ମିଳିବା ଦରକାର ବୋଲି ମହତାବ ଗୋଷ୍ଠୀ ଯୁକ୍ତି ବାଢ଼ିଥିଲେ । ମାତ୍ର ସେଥିରେ ତ୍ରିଲୋଚନ କିମ୍ବା ପ୍ରତାପ କେହି ରାଜିହେଲେ ନାହିଁ । ଆପୋଷରେ କଥା ନଛିଣ୍ଡିବାରୁ ସାଧାରଣ ସମ୍ପାଦକ ପଦ ପାଇଁ ଗୌରାଙ୍ଗ ଓ ମୋ ଭିତରେ ପ୍ରତିଯୋଗିତା ହେବ ବୋଲି ସ୍ଥିର ହେଲା ।

ଗୌରାଙ୍ଗ ମୋ ଠାରୁ ବୟସରେ ସାନ । ମୋର ଅନୁଜ ସଦୃଶ । ତା' ସହିତ ଗୋଟିଏ ସାମାନ୍ୟ ପୋଷ୍ଟପାଇଁ କଣ୍ଟେଷ୍ଟ କରିବାକୁ ମୁଁ ମାନସିକସ୍ତରରେ ପ୍ରସ୍ତୁତ ନଥିଲି । କିନ୍ତୁ ପରିସ୍ଥିତି ଚାପରେ ମତେ ମୁଣ୍ଡ ନୁଆଁଇବାକୁ ପଡ଼ିଲା । ମହତାବ ଗୋଷ୍ଠୀବାଲା ନିର୍ବାଚନକୁ ଆଖିଆଗରେ ରଖି କିଛି ଅଣଛାତ୍ରଙ୍କୁ ପ୍ରତିନିଧି ଭାବରେ ଅଧିବେଶନକୁ ନେଇଥିଲେ । ସଭାପତି 'ସେମାନେ ଛାତ୍ର' ବୋଲି ଚିହ୍ନଟ କରିବାରୁ ସେମାନଙ୍କ ସମ୍ପର୍କରେ ଆଉ ବିବାଦ ଉପୁଜି ନଥିଲା ।

ଅଧିବେଶନରେ ଯେଉଁମାନେ ଯୋଗ ଦେଇଥିଲେ, ସେମାନଙ୍କ ସହିତ ମୋର ଘନିଷ୍ଠ ସମ୍ପର୍କ ଥିଲା । ମୃତପ୍ରାୟ ୟୁନିଅନକୁ ସକ୍ରିୟ କରିବାରେ ମୋର ତ୍ୟାଗ ଓ ଭୂମିକାକୁ ସେମାନେ ମର୍ମେମର୍ମେ ଅନୁଭବ କରିଥିଲେ । ନିର୍ବାଚନରେ ସେମାନଙ୍କ ମଧ୍ୟରୁ ଅଧିକାଂଶ ମତେ ସମର୍ଥନ କଲେ । ଗୌରାଙ୍ଗକୁ ହରେଇ ମୁଁ ୟୁନିଅନର ସାଧାରଣ ସମ୍ପାଦକ ହେଲି । ନିର୍ବାଚନରେ ଜିତିବା ମତେ ଯେତେ ଆନନ୍ଦ ଦେଇନଥିଲା, ଗୌରାଙ୍ଗର ପରାଜୟରେ ମୁଁ ତା'ଠାରୁ ଅଧିକ ଦୁଃଖିତ ହୋଇଥିଲି ।

ବାରିପଦା ଅଧିବେଶନ ପରେ ଛାତ୍ର ୟୁନିଅନ ଅଧିକ ସକ୍ରିୟ ହେଲା । ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଥିବା କଲେଜମାନଙ୍କରେ ୟୁନିଅନର ଶାଖା ଖୋଲିଲା । ସେ ବର୍ଷ କଲେଜ ୟୁନିଅନ ନିର୍ବାଚନରେ ଆମେ ୫୨ଟି କଲେଜରେ ବିଜୟ ହାସଲ କରିଥିଲୁ । ପୂର୍ବରୁ ସ୍ୱାଧୀନ ପ୍ରାର୍ଥୀ ଭାବରେ ନିର୍ବାଚନ ଲଢ଼ି ହାରି ଯାଇଥିବା ତ୍ରିଲୋଚନ କାନୁନ୍‌ଗୋଙ୍କୁ ସେ ବର୍ଷ ଆମେ ରେଭେନ୍ସା କଲେଜ ଛାତ୍ର ୟୁନିଅନର ସଭାପତି ଭାବରେ ନିର୍ବାଚିତ କରାଇଲୁ । ରାଜ୍ୟର ସର୍ବତ୍ର ଛାତ୍ର ୟୁନିଅନର ବାନା ଫରଫର ହୋଇଉଡିଥିଲା ।

ସଙ୍ଗଠନରେ ନୂତନ ନେତୃତ୍ୱ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଆମେ ପଦବୀରୁ ଇସ୍ତଫା ଦେବାକୁ ସ୍ଥିର କଲୁ । ମୋର ଆଜି ମନେ ପଡୁଛି, ଗହ୍ମା ପୂର୍ଣ୍ଣମୀ ଦିନ ତ୍ରିଲୋଚନ ଘରେ

ପିଠାପଣାର ବ୍ୟବସ୍ଥା ହୋଇଥିଲା । ସେତେବେଳକୁ ସେ ବର୍ଷର କଲେଜ ୟୁନିଅନ ନିର୍ବାଚନ ଶେଷ ହୋଇସାରିଥିଲା । ସେହିଦିନ ତ୍ରିଲୋଚନ ଓ ମୁଁ ଯଥାକ୍ରମେ ସଭାପତି ଓ ସାଧାରଣ ସମ୍ପାଦକ ପଦରୁ ଇସ୍ତଫା ଦେଇଦେଲୁ ।

ରାଜନୈତିକ ଘଟଣାକ୍ରମରେ କଂଗ୍ରେସ ସମେତ ବିଭିନ୍ନ ରାଜନୈତିକ ଦଳ ନିଜ ନିଜର ଛାତ୍ରଶାଖା ଗଠନ କଲେ । ଛାତ୍ର ୟୁନିଅନକୁ ପୃଷ୍ଠପୋଷକତା ବନ୍ଦ ହୋଇଗଲା । ଛାତ୍ରନେତାମାନେ ମଧ୍ୟ ସିଧାସଳଖ ଛାତ୍ର ସଙ୍ଗଠନରେ ସାମିଲ୍ ହେବାକୁ ଲାଗିଲେ । ଫଳରେ ଛାତ୍ର ୟୁନିଅନ କ୍ରମେ ଦୁର୍ବଳ ହୋଇ ଶେଷରେ ନିଜର ସତ୍ତା ହରାଇଲା ।

କର୍ପୁର ଗଲେବି କନା ପଡ଼ିରହିଛି । ସେ ଦିନର ଛାତ୍ରନେତାମାନଙ୍କ ମଧ୍ୟରେ ଯେକୌଣସି ସ୍ଥିତିରେ ସାକ୍ଷାତ ହୋଇଗଲେ ପୁରୁଣା କଥା ମନେ ପଡିଯାଏ । ଇତିମଧ୍ୟରେ ପୂର୍ବସୁରୀମାନଙ୍କ ମଧ୍ୟରୁ ୟୁନିଅନର ପ୍ରତିଷ୍ଠାତା ସଭାପତି ଶ୍ରୀ ବାହାଲିଆ ପ୍ରତିଷ୍ଠାତା ସଦସ୍ୟ ଶ୍ରୀ ସାହୁ, ଶ୍ରୀ ମହାପାତ୍ରଙ୍କ ସମେତ ଭାଗବତ ବେହେରା, ସୁଧାଂଶୁ ମୋହନ ରାଉତ, ହରିବନ୍ଧୁ ଦାସ, ସରୋଜାନନ୍ଦ ରଥ ପ୍ରମୁଖ ଆମ ସାଙ୍ଗରୁ ବିଦାୟ ନେଇଗଲେଣି । ହେଲେ ତାଙ୍କର ସ୍ମୃତି ଆମ ନିକଟରେ ଏ ପର୍ଯ୍ୟନ୍ତ ଉଜ୍ଜୀବିତ ରହିଛି ।

# ଦଇବ ଦଉଡ଼ି ମଣିଷ ଗାଈ

ଛାତ୍ର ୟୁନିଅନ ସାଧାରଣ ସମ୍ପାଦକ ଦାୟିତ୍ୱରୁ ମୁକ୍ତି ମିଳିବା ପରେ ମୁଣ୍ଡ ଟିକିଏ ହାଲୁକା ହୋଇଗଲା । କିଛିଦିନ ହେଲା ଖାଇବା, ପିଇବା, ବିଶ୍ରାମ କୋଉଥିରେ କିଛି ଠିକ୍ ଠିକଣା ନଥିଲା । ଭାବିଲି, କିଛିଦିନ ବାହାରକୁ ଯାଇ ବିଶ୍ରାମ ନେଲେ କେମିତି ହୁଅନ୍ତା ? ମାତ୍ର ତାହା ସମ୍ଭବ ହେଲା ନାହିଁ । ଦାୟିତ୍ୱରୁ ସିନା ଅବ୍ୟାହତି ମିଳିଲା, ହେଲେ ବନ୍ଧନରୁ ମୁକ୍ତି ମିଳିଲା ନାହିଁ । ୟୁନିଅନର ଯେଉଁ ବନ୍ଧୁମାନେ ଆମ ସାଙ୍ଗରେ ଦିନରାତି ଥିଲେ, ଏକାଠି ବସୁଥିଲେ, ଏକାଠି ଖାଉଥିଲେ, ଆମେ ଚାଲି ଆସିଲା ପରେ ସେମାନଙ୍କ ମନରେ ଏକ ହତାଶ ଭାବ ଆସିଲା । ସେଥିପାଇଁ କିଛିଦିନ କଟକରେ ରହି ସେମାନଙ୍କୁ ସାହସ ଦେବା ପାଇଁ ସ୍ଥିର କଲି ।

ଦିନେ ତ୍ରିଲୋଚନ, ପ୍ରତାପ ଓ ମୁଁ ଏକାଠି ବସି ଅତୀତର ଘଟଣାବଳି, ବର୍ତ୍ତମାନର ସ୍ଥିତି ଓ ଭବିଷ୍ୟତର କର୍ମପନ୍ଥା ସମ୍ପର୍କରେ ଆଲୋଚନା କଲୁ । ଆମ ତିନିଜଣଙ୍କ ଭିତରୁ କିଏ କୋଉ ବାଟରେ ଯିବେ ସେ ବିଷୟରେ କଥା ପଡ଼ିଲା ।

ତ୍ରିଲୋଚନର ଇଚ୍ଛା ସକ୍ରିୟ ରାଜନୀତିରେ ପ୍ରବେଶ କରିବା । ପ୍ରତାପ ଓକିଲାତି କରିବା ପାଇଁ ଆଗ୍ରହ ଦେଖାଇବା ପରେ ମୋ ପାଳି ପଡିଲା । ସେତେବେଳକୁ ରାଜନୀତିର ନିଶା ମତେ କିଛି ପରିମାଣରେ ଗ୍ରାସ କରିସାରିଥିଲା । କିନ୍ତୁ ମୋ ପାଇଁ ସେ ପଥ ସୁଗମ ନଥିଲା । କାରଣ ଜନ୍ମସ୍ଥାନ ଜଗତସିଂହପୁର ଓ କର୍ମକ୍ଷେତ୍ର କଟକ ସଦର । ଉଭୟ ବିଧାନସଭା ନିର୍ବାଚନମଣ୍ଡଳି ସଂରକ୍ଷିତ ଆସନ ଥିଲା । ଡକ୍ଟର ହରେକୃଷ୍ଣ ମହତାବଙ୍କ କଥା ମୋର ମନେ ପଡ଼ିଗଲା । ସେ କହିଥିଲେ, "ରାଜନୀତିର ଅର୍ଥ ନିର୍ବାଚନ ଲଢ଼ି କ୍ଷମତାକୁ ଆସିବା । ଯଦି ତାହା ସମ୍ଭବ ନୁହେଁ, ତେବେ ରାଜନୀତିର ଅର୍ଥ ନିରର୍ଥକ ।" ମୁଁ ସେ ପଥରୁ ଓହରିଯିବାକୁ ମନସ୍ଥ କଲି ।

ଏକାଧିକବାର ଆଲୋଚନା ପରେ ଆମେ ତିନିଜଣ ଶେଷ ନିଷ୍ପତ୍ତିରେ ଉପନୀତ ହେଲୁ । ସେ ନିଷ୍ପତ୍ତି ଅନୁଯାୟୀ ତ୍ରିଲୋଚନ କଂଗ୍ରେସ ଦଳର ପ୍ରାର୍ଥୀ ଭାବରେ ଗୋବିନ୍ଦପୁର ନିର୍ବାଚନ ମଣ୍ଡଳିରୁ ୧୯୬୭ ମସିହା ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବେ। ପ୍ରତାପ ଲ'ଡିଗ୍ରୀ ହାସଲ ପରେ ଟ୍ୟାକ୍ସ ପ୍ରାକ୍ଟିସ କରିବେ ଓ ମୁଁ କୌଣସି ଏକ ସରକାରୀ ଚାକିରିରେ ଯୋଗଦେବି ।

ସେତିକିବେଳେ ରାଜ୍ୟ ସରକାରଙ୍କ ଶିକ୍ଷା ବିଭାଗ ପକ୍ଷରୁ ଗୋଟିଏ ଗେଜେଟେଡ୍ ପୋଷ୍ଟ ପାଇଁ ବିଜ୍ଞାପନ ପ୍ରକାଶ ପାଇଥିଲା । ସେଥିପାଇଁ ପବ୍ଲିକ ସର୍ଭିସ କମିଶନ ଜରିଆରେ ପରୀକ୍ଷା ଦେବାର ଆବଶ୍ୟକତା ଥିଲା । ମୁଁ ସେ ପରୀକ୍ଷା ପାଇଁ ପ୍ରସ୍ତୁତ ହେଲି । ଲିଖିତ ପରୀକ୍ଷାରେ ସଫଳତା ପାଇଲି । ତା'ପରେ ସାକ୍ଷାତକାର ପରୀକ୍ଷା । ସେ ସମୟରେ ପବ୍ଲିକ ସର୍ଭିସ କମିଶନରେ ମୋତିଲାଲ ପଣ୍ଡିତ ଅଧ୍ୟକ୍ଷ ଏବଂ ବାମାଚରଣ ଦାସ ଓ କାଳୀକିଙ୍କର ସାମଲ ସଦସ୍ୟ ଥିଲେ ।

ବ୍ୟକ୍ତିଗତ ଭାବରେ ମୁଁ ସେମାନଙ୍କର ଜଣାଶୁଣା ଥିଲି । ମୋତିଲାଲ ପଣ୍ଡିତ କାଶ୍ମୀରବାସୀ । ତାଙ୍କ ବାପା ବିହାରୀଲାଲ ପଣ୍ଡିତ କଟକ ଆସି ଚାନ୍ଦିନୀଚୌକ ଅଞ୍ଚଳରେ ବସବାସ କରୁଥିଲେ । ଚାନ୍ଦିନୀଚୌକ ଅଞ୍ଚଳରେ ଥିବା ଦୈନିକ ସମ୍ବାଦପତ୍ର 'ପ୍ରଜାତନ୍ତ୍ର' ଯେଉଁଠାରୁ ପ୍ରକାଶ ପାଉଛି ତାହା 'ବିହାରୀବାଗ୍' ନାମରେ ଜଣାଶୁଣା । ସେଠାରେ ବିହାରୀଲାଲ ପଣ୍ଡିତଙ୍କର ଗୋଟିଏ ବଗିଚା ଥିଲା । ବଗିଚାକୁ ହିନ୍ଦୀରେ 'ବାଗ୍' ବୋଲି କୁହାଯାଏ । ବଗିଚା ଭିତରେ ଏକ ସୁନ୍ଦର ପୋଖରୀ ଓ ତା'କୂଳରେ ଆମ୍ବ ବଗିଚା ଶୋଭା ପାଉଥିଲା । ମୋତିଲାଲ ପଣ୍ଡିତ କଟକ ସହରର ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ହିସାବରେ ଜଣାଶୁଣା ଥିଲେ ।

ଶିକ୍ଷା ବିଭାଗରେ ଗେଜେଟେଡ ଅଫିସର ହୋଇ କାମ କରିବା ମୋର ଉଦ୍ଦେଶ୍ୟ ନଥିଲା । ସେଥିରେ ଯୋଗଦେବା ପରେ ଓଡ଼ିଶା ପୁଲିସ ସର୍ଭିସ(ଓ.ପି.ଏସ)କୁ ବଦଳି ହୋଇ ଆସିବା ପାଇଁ ମୁଁ ଆଗ୍ରହୀ ଥିଲି । କଲେଜରେ ପଢ଼ିଲା ବେଳେ ଏନ୍.ସି.ସି.ରେ ଦୀର୍ଘଦିନ ରହି ଜାତୀୟସ୍ତରରେ ସାମରିକ ତାଲିମ୍ ନେବା ପରେ ଖାକି ପୋଷାକ ପ୍ରତି ମୋର ଏକପ୍ରକାର ଦୁର୍ବଳତା ସୃଷ୍ଟି ହୋଇଥିଲା ।

ଯଥା ସମୟରେ ମୁଁ ସାକ୍ଷାତକାର ପରୀକ୍ଷା ଦେଲି । ମୋର ସେମାନଙ୍କ ସହିତ ଜଣାଶୁଣା ଯୋଗୁ ହେଉ କିମ୍ବା ଅନ୍ୟ କୌଣସି କାରଣରୁ ହେଉ, ସାକ୍ଷାତକାର ସମୟରେ ମତେ ଯେଉଁସବୁ ପ୍ରଶ୍ନ ପଚରା ଯାଇଥିଲା, ସେଗୁଡିକର ଉତ୍ତର ଦେବା ମୋ ପକ୍ଷରେ ସହଜସାଧ୍ୟ ଥିଲା ।

ମୁଁ ଏକପ୍ରକାର ନିଶ୍ଚିତ ହୋଇ ଯାଇଥିଲି ଯେ, ମୋର ଚାକିରି ନିଶ୍ଚୟ ହୋଇଯିବ । କଥା ପ୍ରସଙ୍ଗରେ ମୋର ଏହି ସଫଳତା ବିଷୟରେ ତ୍ରିଲୋଚନ ଓ ପ୍ରତାପଙ୍କୁ କହିଥିଲି । ମାତ୍ର ସେମାନଙ୍କୁ ଜଣାଇବା ଦ୍ୱାରା ଯେ ମୋ ଇଚ୍ଛା ପୂରଣ ଦିଗରେ ପ୍ରତିବନ୍ଧକ ହେବ ସେ କଥା ମୁଁ ଭାବି ପାରିନଥିଲି ।

ଛାତ୍ର ଧର୍ମଘଟ ପରେ ଏକ ଭିନ୍ନ ରାଜନୈତିକ ପରିସ୍ଥିତିରେ ବୀରେନ୍ ମିତ୍ରଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ପଡିଥିଲା । ସାଧାରଣ ଜୀବନ ଆରମ୍ଭ କରିବା ପରଠାରୁ ମୁଖ୍ୟମନ୍ତ୍ରୀ ହେବା ଓ ସେଥିରୁ ଇସ୍ତଫା ଦେବା ପର୍ଯ୍ୟନ୍ତ ସେ କଟକିଆଙ୍କର ସାହାଭରସା ଥିଲେ ।

ବିନା ସଙ୍କୋଚରେ ଏବଂ ବିନା ବାଧାରେ ଯେ କୌଣସି ବ୍ୟକ୍ତି ଯେ କୌଣସି ସମୟରେ ତାଙ୍କୁ ଦେଖା କରିପାରୁଥିଲା । କଟକିଆ ଲୋକେ ତାଙ୍କୁ 'ଦାଦା' ବୋଲି ସମ୍ବୋଧନ କରୁଥିଲେ । ପରେ ସେ ସମଗ୍ର ସମାଜରେ ଦାଦା ଭାବରେ ପରିଚିତ ହୋଇଗଲେ ।

ଶ୍ରୀ ମିତ୍ର ମୁଖ୍ୟମନ୍ତ୍ରୀ ଥିବା ସମୟରେ ତାଙ୍କର ଦାନ, ଧର୍ମର ମାତ୍ରା ଅଧିକ ବଢ଼ି ଯାଇଥିଲା । ସେଥିପାଇଁ ଅର୍ଥ ସଂଗ୍ରହ ଉଦ୍ଦେଶ୍ୟରେ ସେ ତାଙ୍କ ଧର୍ମପତ୍ନୀ ଈଶ୍ୱରାମା ମିତ୍ରଙ୍କ ମାଲିକାନାରେ 'ଓଡ଼ିଶା ଏଜେଣ୍ଟ' ନାମରେ ଗୋଟିଏ ସଂସ୍ଥା ଗଢ଼ିଥିଲେ । ସେ ସଂସ୍ଥାର ରାଜ୍ୟ ସରକାରଙ୍କ ସହିତ ବାଣିଜ୍ୟିକ ସମ୍ପର୍କ ସ୍ଥାପନ ହୋଇଥିଲା । ଓଡ଼ିଶା ରାଜନୀତିରେ ଥିବା ବହୁ ମାଣ୍ୟଗଣ୍ୟ ବ୍ୟକ୍ତି ପ୍ରତିମାସରେ ଓଡ଼ିଆ ଏଜେଣ୍ଟରୁ ମୋଟା ଅଙ୍କର ଦରମା ପାଉଥିଲେ । କେବଳ ନାଁ'କୁ ମାତ୍ର ସେମାନଙ୍କୁ ଓଡ଼ିଶା ଏଜେଣ୍ଟର କର୍ମକର୍ତ୍ତା ବୋଲି କାଗଜପତ୍ରରେ ଦେଖାଯାଉଥିଲା । ମାତ୍ର ବାସ୍ତବରେ ସେମାନେ କିଛି କାମ କରୁନଥିଲେ ।

ଚାନ୍ଦାର ପରିମାଣ ଏତେ ବଢ଼ିଲା ଯେ, କ୍ରମେ ତାହା ଇନ୍‌କମ ଟ୍ୟାକ୍ସ ବିଭାଗର ଦୃଷ୍ଟି ଆକର୍ଷଣ କଲା । ବିଭିନ୍ନ ବ୍ୟକ୍ତିଙ୍କୁ ଦିଆଯାଉଥିବା ମୋଟା ଅଙ୍କର ବେତନକୁ ଇନ୍‌କମ ଟ୍ୟାକ୍ସ ବିଭାଗ ରାଜନୈତିକ ଚାନ୍ଦା ବିଚାରି ମୋକଦ୍ଦମା କଲେ ।

ବିଚାର ପରେ ଶ୍ରୀ ମିତ୍ରଙ୍କ ଉପରେ ସାଢ଼େ ତିନିଲକ୍ଷ ଟଙ୍କା ଜରିମାନା ଧାର୍ଯ୍ୟ କରାଗଲା । ସେତିକି ପରିମାଣର ଅର୍ଥ ପଇଠ କରିବା ଶ୍ରୀ ମିତ୍ରଙ୍କ ପକ୍ଷରେ ଅସମ୍ଭବ ନଥିଲା । ମାତ୍ର କେଉଁ ସୂତ୍ରରୁ ସେ ଅର୍ଥ ସଂଗ୍ରହ ହେଲା ଇନ୍‌କମ ଟ୍ୟାକ୍ସ ବଭାଗକୁ ତାହା ଜଣାଇବା ସହଜ ବ୍ୟାପାର ନଥିଲା । ଶେଷରେ ଶ୍ରୀ ମିତ୍ର କାଠଯାଡା ସାହିରେ କରିଥିବା ଘରଟି ନିଲାମ ହୋଇଗଲା । ସେ ବେଘର ହୋଇଗଲେ ।

କଟକର ସନ୍‌ସାଇନ ପଡିଆର ଉତ୍ତର-ପଶ୍ଚିମ କୋଣରେ ଶୈଳେନ ରାୟଙ୍କର ଘରଟିଏ ଥିଲା । ଶୁଣାଯାଏ, ଦାଦା ବେନାମୀ ଭାବରେ ସେ ଘରଟି ତିଆରି କରିଥିଲେ । ନିଜ ଘର ନିଲାମ ହୋଇଯିବା ପରେ ଦାଦା ସପରିବାରେ ଆସି ସେ ଘରେ ରହିଲେ । ଦାଦାଙ୍କ ପରିବାର କହିଲେ ଝିଅ ରାଣୀ, ଦୁଇପୁଅ ବାବୁଲା ଓ ସୁବୁଲା । ଘରଟି ଦୋ ମହଲା । ଦାଦା ତଳ ମହଲାରେ ଓ ଶୈଲନ୍ ବାବୁଙ୍କ ପରିବାର ଉପର ମହଲାରେ ରହୁଥିଲେ ।

ସେହି ସମୟରେ ଦାଦା 'ଜନଶକ୍ତି' ନାମରେ ଗୋଟିଏ ଦୈନିକ ସମ୍ବାଦପତ୍ର ପ୍ରକାଶ କରିବାକୁ ନିଷ୍ପତ୍ତି କଲେ । ସେଥିପାଇଁ 'ଜନ କଲ୍ୟାଣ ପବ୍ଲିକେଶନ ଲିମିଟେଡ' ନାମରେ ଗୋଟିଏ କମ୍ପାନୀ ଗଢ଼ାଯାଇଥିଲା । ସେଥିରେ ଦାଦା, କଟକର ଜଣେ ଲୋକପ୍ରିୟ ଡାକ୍ତର

ସୁଧାକର ଆଚାର୍ଯ୍ୟ, ଲକ୍ଷ୍ମଣ ମଲ୍ଲିକ ପ୍ରମୁଖଙ୍କୁ ସଦସ୍ୟ ଭାବରେ ଗ୍ରହଣ କରିଥିଲେ । କଟକର ଓ.ଏମ୍.ପି ଛକ ନିକଟରେ ବିଶିଷ୍ଟ ବ୍ୟବସାୟୀ ରଙ୍ଗଲାଲ ମୋଦିଙ୍କ ପରିବାର ନାଁ'ରେ ଯେଉଁ ଜମି ଥିଲା, ସେଇଠି ଜନଶକ୍ତି ଅଫିସ୍ ତିଆରି ହେଲା । ରାଜ୍ୟ ଅର୍ଥ ନିଗମରୁ ସେଥିପାଇଁ ଋଣ ଆସିଥିଲା ।

ଛାତ୍ର ଆନ୍ଦୋଳନ ସମୟରୁ ଦାଦାଙ୍କ ସହିତ ମୋର ଘନିଷ୍ଠତା ବଢ଼ିଯାଇଥିଲା । ଜନଶକ୍ତିରେ ମତେ ରଖିବାକୁ ଦାଦା ମନେ ମନେ ସ୍ଥିର କରିଥିଲେ । କିନ୍ତୁ ମତେ ସେ ବିଷୟରେ କିଛି କହି ନଥିଲେ । ମଝିରେ ମଝିରେ ଦାଦାଙ୍କ ସହିତ ସାକ୍ଷାତ ହୁଏ । ସେ ମତେ ଜନଶକ୍ତିରେ ଯୋଗଦେବା ପାଇଁ କିଛି କହୁନଥିଲେ କିମ୍ବା ମୁଁ ସରକାରୀ ଚାକିରିରେ ଯୋଗଦେବା ପାଇଁ ଚେଷ୍ଟା କରୁଥିବା ସମ୍ପର୍କରେ ମଧ ତାଙ୍କୁ କିଛି ସୂଚନା ଦେଇନଥିଲି ।

କିନ୍ତୁ କେଜାଣି କେମିତି ମୁଁ ଚାକିରି ପାଇଁ ଇଣ୍ଟରଭ୍ୟୁ ଦେଇଥିବା ଓ ସେଥିରେ ସଫଳ ହୋଇଥିବା କଥା ଦାଦାଙ୍କ କାନରେ ପଡିଗଲା । ମୋର ଯେତେଦୂର ମନେହୁଏ, ତ୍ରିଲୋଚନ କିମ୍ବା ପ୍ରତାପ ମଧ୍ୟରୁ କେହି ଦାଦାଙ୍କୁ ଏ ବିଷୟରେ ଖବର ଦେଇଥିଲେ । କାରଣ ମୁଁ ସରକାରୀ ଚାକିରି କରି ସବୁଦିନ ପାଇଁ ସରକାରୀ ଗୋଲାମ ପାଲଟିଯାଏ, ସେ କଥା ସେ ଦୁଇଜଣ ଚାହୁଁ ନଥିଲେ ।

ଦିନେ ସକାଳେ ମୁଁ ଦାଦାଙ୍କ ପାଖକୁ ଗଲାବେଳେ ତାଙ୍କ ପାଖରେ ଆଉ କେହି ନଥିଲେ । ସେ ମୋ ହାତକୁ ଧରି ପକେଇ କହିଲେ, "ଶେଷରେ ତୁ ବି ମତେ ଧୋକ୍କା ଦେଲୁ । ମୁଁ ତମମାନଙ୍କୁ ଆଖିରେ ରଖି ଜନଶକ୍ତି ବାହାର କରିବାକୁ ଯାଉଛି । ଆଉ ତୁ, ମତେ କିଛି ନକହି ସରକାରୀ ଚାକିରି କରିବାକୁ ବାହାରିଲୁଣି । ଦେଖ, ତୁ ମୋ ପୁଅଭଳି । ବାବୁଲା, ସୁବୁଲାଙ୍କ ସାଙ୍ଗରେ କାନ୍ଧ ଲଗାଇ ମତେ ଖାନ୍‌ନଗର ନେଇଯିବୁ ।" ଏତିକି କହି ଦାଦା ଭୋ ଭୋ କାନ୍ଦିଲେ । ମୁଁ ମଧ କୋହ ସମ୍ଭାଳି ପାରିଲିନାହିଁ । କିଛି ସମୟ ପରେ ଆମେ ପ୍ରକୃତିସ୍ଥ ହେଲୁ । ମୁଁ ଦାଦାଙ୍କୁ କଥା ଦେଲି, "ହଉ ମୁଁ ଜନଶକ୍ତିରେ ଯୋଗଦେବି । ଶେଷ ପର୍ଯ୍ୟନ୍ତ ଆପଣଙ୍କ ପାଖରେ ରହିବି ।" କିଛିକ୍ଷଣ ପରେ ଦାଦାଙ୍କର ଦରବାର ଆରମ୍ଭ ହୋଇଗଲା । ଆମର ଆଲୋଚନା ମଧ ଶେଷ ହୋଇଗଲା ।

ପି.ଏସ.ସି ଅଧକ୍ଷ ମୋତିଲାଲ ପଣ୍ଡିତ ଅନେକ ସମୟରେ ଦାଦାଙ୍କ ଘରକୁ ଯିବାଆସିବା କରୁଥିଲେ । ଘର ଭିତରେ ଶ୍ରୀମତୀ ମିତ୍ରଙ୍କ ସହିତ କିଛି ସମୟ ଏକୁଟିଆ କଟେଇ ସେ ଚାଲିଯାଉଥିଲେ । ବେଳେବେଳେ ଦାଦାଙ୍କ ସହିତ କେଇପଦ କଥା ମଧ ହେଉଥିଲେ ।

ସେ ଦିନ ଥିଲା ରବିବାର । ଶ୍ରୀ ପଣ୍ଡିତ ଦାଦାଙ୍କ ଘରକୁ ଆସିଲା ବେଳେ ଦାଦା ସୋଫାରେ ବସିଥିଲେ । ମୁଁ ତାଙ୍କ ପାଖରେ ଥିଲି । ଶ୍ରୀ ପଣ୍ଡିତ କିଛି କହିବା ପୂର୍ବରୁ ଦାଦା ତାଙ୍କ ହାତ ଧରି ପକାଇ କହିଲେ, "ମୋତି ଭାଇ, ତୁ ମୋ ଘର ଭାଙ୍ଗିଦେବାକୁ ଯାଉଛୁ । ମୁଁ

ଏ ଟୋକାକୁ ମୋ ପାଖରେ ରଖିବାକୁ ଚାହୁଁଛି । ଆଉ ତୁ ତାକୁ ଚାକିରି କରାଇ ଦେଉଛୁ ।" ଶ୍ରୀ ପଣ୍ଡିତ ଦାଦାଙ୍କ କଥାରୁ ପ୍ରଥମେ କିଛି ବୁଝିପାରି ନଥିଲେ । ପରେ ଦାଦା ତାଙ୍କୁ ସବୁକଥା ବୁଝେଇ ମୋ ନାଁ ତାଲିକାରୁ କାଟି ଦେବାକୁ ଅନୁରୋଧ କରିଥିଲେ ।

ବାସ୍ ଦାଦାଙ୍କର ସେତିକି କଥା ମୋ ଭାଗ୍ୟ ବଦଳାଇ ଦେବା ପାଇଁ ଯଥେଷ୍ଟ ଥିଲା । ଗଲାବେଳେ ଶ୍ରୀ ପଣ୍ଡିତ ମୋ ନାଁ'ଟା ବୁଝି ନେଇଥିଲେ । ପି.ଏସ.ସି ରେଜଲ୍ଟ ବାହାରିଲା । ହେଲେ ସେଥିରେ ମୋ ନାଁ ନଥିଲା । ସେଥିରେ ମୁଁ ଯେତିକି ଦୁଃଖିତ ହୋଇଥିଲି, ଦାଦା ତା'ଠାରୁ ଅଧିକ ଖୁସି ହୋଇଥିଲେ । ଖାକି ପୋଷାକ ପିନ୍ଧି ପୁଲିସ ସାହେବ ହେବାର ଯେଉଁ ରଙ୍ଗୀନ ସ୍ୱପ୍ନ ମୁଁ ଦେଖିଥିଲି, ତାହା ଭାଙ୍ଗି ଚୁରମାର ହୋଇଗଲା । ଜୀବନରେ ଆଉ ପୁଲିସ ହାକିମ ହୋଇପାରିଲି ନାହିଁ ।

ଯାହା କୁହାଯାଏ, 'ଦଇବ ଦଉଡି ମଣିଷ ଗାଈ, ଯେଣିକି ଟାଣଇ ସେଣିକି ଯାଇ' ସେକଥା ମୋ କ୍ଷେତ୍ରରେ ଆଉଥରେ ସତ୍ୟ ବୋଲି ପ୍ରମାଣିତ ହୋଇଗଲା । ଭବିଷ୍ୟତରେ ପୁଲିସ ହାକିମ୍ ହୋଇ ସରକାରୀ ଜିପ୍ ଚଢ଼ିବା ପରିବର୍ତ୍ତେ କଟକ ସହରର ରାଜରାସ୍ତାରେ ସାଇକେଲରେ ଘୂରିବା ମୋ ପାଇଁ ସାର ହେଲା ।

କିଛିଦିନ ମନ ଖରାପ ହେଲା । କିନ୍ତୁ ପରେ ମୁଁ ପରିସ୍ଥିତିକୁ ଆପଣେଇ ନେଲି । ସ୍ୱପ୍ନକୁ ଛାଡି ବାସ୍ତବତାକୁ ଗ୍ରହଣ କରିବାକୁ ଚେଷ୍ଟା କଲି ।

୧୯୬୫ ମସିହା ଅପ୍ରେଲ ମାସରେ ଦୈନିକ 'ଜନଶକ୍ତି' ଓ.ଏମ୍.ପି ଛକ ନିକଟରେ ଥିବା ନିଜସ୍ୱ କାର୍ଯ୍ୟାଳୟରୁ ଆତ୍ମପ୍ରକାଶ କଲା । ପୂର୍ବରୁ କଟକ ସହରରୁ ଦୈନିକ 'ସମାଜ', 'ପ୍ରଜାତନ୍ତ୍ର', 'ମାତୃଭୂମି' ଓ 'କଳିଙ୍ଗ' ପ୍ରକାଶ ପାଉଥିଲା ।

'ଜନଶକ୍ତି' ପରିଚାଳନା ପାଇଁ ଯେଉଁ ଟ୍ରଷ୍ଟବୋର୍ଡ ଗଠନ କରାଯାଇଥିଲା, ଶୈଳେନ ମହାପାତ୍ର ତା'ର ସେକ୍ରେଟାରୀ ଥିଲେ । ଯୁବକ ଅବସ୍ଥାରେ ବୀରେନ୍ ମିତ୍ର, କମ୍ୟୁନିଷ୍ଟ ପାର୍ଟିର ଛାତ୍ର ଶାଖା ଛାତ୍ର ଫେଡେରେସନର ସଭ୍ୟ ଥିଲେ । ପରବର୍ତ୍ତୀ ଅବସ୍ଥାରେ କମ୍ୟୁନିଷ୍ଟ ପାର୍ଟି ସହିତ ତାଙ୍କର ଘନିଷ୍ଟ ସମ୍ପର୍କ ଥିଲା । ସ୍ୱାଧୀନତା ଆନ୍ଦୋଳନ ସମୟରେ ଜେଲ୍‌ରେ ଥିବାବେଳେ ସେ ଖୁବ୍ ଅସୁସ୍ଥ ହୋଇଥିଲେ । ସହବନ୍ଦୀ ଭାବରେ କମ୍ୟୁନିଷ୍ଟ ନେତାମାନେ ସେବା କରି ତାଙ୍କୁ ସୁସ୍ଥ କରିଥିଲେ । ସେଥିପାଇଁ କମ୍ୟୁନିଷ୍ଟମାନଙ୍କ ପ୍ରତି ଶ୍ରୀ ମିତ୍ରଙ୍କର ଖୁବ୍ ଦୁର୍ବଳତା ଥିଲା ।

ଜନଶକ୍ତି ପ୍ରକାଶନ ବେଳେ କମ୍ୟୁନିଷ୍ଟମାନେ ସେ ଦୁର୍ବଳତାର ସୁଯୋଗ ନେବାକୁ ଚାହିଁଥିଲେ । ଶ୍ରୀ ମହାପାତ୍ରଙ୍କ ସହିତ ନିମାପଡାର କମ୍ୟୁନିଷ୍ଟ ନେତା ମୋହନ ଦାସ, ପଟିଆର ବୈଦ୍ୟନାଥ ରଥ, ଜଗତସିଂହପୁରର ଗୋବିନ୍ଦ ଚନ୍ଦ୍ର ମହାନ୍ତି, କାକଟପୁରର ନରସିଂହ ତ୍ରିପାଠୀ ପ୍ରମୁଖ ବିଭିନ୍ନ ପଦ ପଦବୀରେ ଅବସ୍ଥାପିତ ହୋଇ ଜନଶକ୍ତିକୁ ଏକ ପ୍ରକାର କବଳିତ କରିଥିଲେ ।

ଆଜିକାଲି ଭଳି ସେତେବେଳେ ଉନ୍ନତ ଧରଣର ମୁଦ୍ରଣ କୌଶଳ ବାହାରି ନଥିଲା । କମ୍ପୋଜିଟରମାନଙ୍କ ଦ୍ୱାରା ହାତରେ ଅକ୍ଷର ଖଞ୍ଜାଯାଇ ଫ୍ଲାଟ ବେଡ୍ ମେସିନରେ ଖବର କାଗଜ ପ୍ରକାଶ କରାଯାଉଥିଲା । କମ୍ପୋଜିଟରମାନଙ୍କ ଭିତରୁ ଅଧିକାଂଶ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ କିମ୍ବା ସମର୍ଥକ ଥିଲେ । ଜନଶକ୍ତିରେ ସେଇମାନେ ଆସି ଆଡ୍ଡା ଜମାଇଦେଲେ ।

ଜନଶକ୍ତି ପ୍ରକାଶ ପାଇବାର ପ୍ରାୟ ଛଅମାସ ପରେ ଦାଦାଙ୍କ ଅନୁରୋଧରେ ମୁଁ ସେଥିରେ ଜଣେ ସବ୍-ଏଡିଟର ଭାବରେ ଯୋଗଦେଲି । ମହଙ୍ଗା ଭତ୍ତା ସହିତ ମାସକୁ ଦରମା ଶହେ ପଚସ୍ତରୀ ଟଙ୍କା ।

ଜନଶକ୍ତି ଅଫିସର ପରିସ୍ଥିତି ଦେଖି ମୁଁ ଆବାକ୍ ହୋଇଯାଇଥିଲି । ଚାରିଆଡେ କମ୍ୟୁନିଷ୍ଟବାଲାଙ୍କ ପ୍ରଭାବ । ଛାତ୍ର ଜୀବନରେ ଛାତ୍ର ୟୁନିଅନର ନେତା ଥିବା ହେତୁ ଏବଂ ନୀତିଗତ ଭାବରେ କମ୍ୟୁନିଷ୍ଟମାନଙ୍କୁ ବିରୋଧ କରୁଥିବା ଯୋଗୁଁ ମୁଁ ପ୍ରଥମେ ସେଠାରେ ନିଜକୁ ଖାପଖୁଆଇ ପାରିନଥିଲି । କିନ୍ତୁ ପରେ ସବୁ ଦେହସୁହା ହୋଇଯାଇଥିଲା ।

କିଛିଦିନ ଭିତରେ ପ୍ରବୀଣ ସାମ୍ବାଦିକ ରଘୁନାଥ ପ୍ରସାଦ ପାଠୀ ଶାସ୍ତ୍ରୀ(ଆର.ପି.ଶାସ୍ତ୍ରୀ), ଶ୍ରୀହର୍ଷ ମିଶ୍ର ପ୍ରମୁଖ ଅଣକମ୍ୟୁନିଷ୍ଟମାନେ ଜନଶକ୍ତିରେ ଯୋଗଦେବା ଫଳରେ ପରିସ୍ଥିତି ସାମାନ୍ୟ ବଦଳିଥିଲା । ସାମ୍ବାଦିକମାନେ ମୁଖ୍ୟତଃ ଦୁଇଟି ଗୋଷ୍ଠୀରେ ପରିଣତ ହୋଇଯାଇଥିଲେ । ଯୁବ ସାମ୍ବାଦିକମାନଙ୍କ ଭିତରେ ଗୋଟିଏ ଗୋଷ୍ଠୀରେ ସ୍ୱରୂପ ଜେନା, ରମେଶ ପ୍ରଧାନ ଥିଲାବେଳେ ଅନ୍ୟ ଗୋଷ୍ଠୀରେ ମୁଁ, ଶୁଭେନ୍ଦ୍ର ବର୍ମା ଓ ରବି ମହାନ୍ତି ଥିଲୁ । ବାହାରକୁ କିଛି ଜଣା ପଡୁନଥିଲେ ମଧ୍ୟ ଜନଶକ୍ତି ଭିତରେ ଏକ ପ୍ରକାର ଶୀତଳଯୁଦ୍ଧ ଚାଲୁ ରହିଥିଲା ।

ଜନଶକ୍ତିରେ ଏତେ ସଂଖ୍ୟାରେ କମ୍ୟୁନିଷ୍ଟମାନଙ୍କର ଯୋଗଦାନର ଅନ୍ୟ ଏକ କାରଣ ଥିଲା । ଯାହାକି ବହୁଦିନ ପରେ ଜଣାପଡିଥିଲା । ସେତେବେଳର ସୋଭିଏତ୍ ଋଷର ଭାରତରେ ଅବସ୍ଥାପିତ ରାଷ୍ଟ୍ରଦୂତଙ୍କ ଜରିଆରେ ମୋଟା ଅଙ୍କର ଯେଉଁ ଅର୍ଥ କମ୍ୟୁନିଷ୍ଟ ଆଦର୍ଶବାଦର ପ୍ରଚାର ପାଇଁ ଆସୁଥିଲା, ସେଥିରୁ କିଛି ଅଂଶ ଜନଶକ୍ତିକୁ ଗୋପନରେ ମିଳୁଥିଲା । ତା' ପ୍ରତିବଦଳରେ ସପ୍ତାହର ପ୍ରତି ଶନିବାର ସଂଖ୍ୟାରେ କମ୍ୟୁନିଷ୍ଟ ମତବାଦ ସପକ୍ଷରେ ଏକ ସ୍ୱତନ୍ତ୍ର ପୃଷ୍ଠା ପ୍ରକାଶ ପାଉଥିଲା ।

ଜନଶକ୍ତିର ସଂପାଦକ ଥିଲେ ପାଟକୁରାର ଲୋକନାଥ ମିଶ୍ର । ସେ ସେତେବେଳେ ଓଡ଼ିଶା ବିଧାନସଭାର ଉପବାଚସ୍ପତି ଥିଲେ । କାଗଜରେ ତାଙ୍କ ନାଁ କେବଳ ବ୍ୟବହାର କରାଯାଉଥିଲା । ମାତ୍ର ଦିନେ ହେଲେ ସେ ଅଫିସକୁ ଆସୁ ନଥିଲେ । ଅନ୍ୟ ଯେଉଁମାନେ କାଗଜ ପରିଚାଳନା ଦାୟିତ୍ୱରେ ଥିଲେ ସେମାନଙ୍କ ପକ୍ଷପାତ ନୀତି ଯୋଗୁ ଦିନକୁ ଦିନ ଜନଶକ୍ତି ତା'ର ନିରପେକ୍ଷତା ହରାଇବାକୁ ବସିଲା । ପ୍ରସାର ସଂଖ୍ୟା ମଧ୍ୟ କମିବାରେ ଲାଗିଲା । କମ୍ୟୁନିଷ୍ଟମାନଙ୍କ କବଳରେ ପଡି ଦାଦା କିଛି ବୁଝିବା ଅବସ୍ଥାରେ ନଥିଲେ । ତା'ଛଡା

କେତେକ ବିଷୟରେ ତାଙ୍କୁ ଅନ୍ଧାରରେ ରଖାଯାଇ କାଗଜ ସମ୍ପର୍କରେ ଗୋଲାପୀ ଚିତ୍ର ଦେଖାଯାଉଥିଲା ।

ଜନଶକ୍ତିର କିପରି ଲୋକପ୍ରିୟତା ବୃଦ୍ଧି ପାଉଛି । କଲେଜ ଛକରେ ଛାତ୍ରମାନେ କିପରି ସବୁ କାଗଜ କିଣି ନେଉଛନ୍ତି ଇତ୍ୟାଦି ଇତ୍ୟାଦି କଥା କହି ତାଙ୍କୁ ଖୁସି କରାଯାଉଥିଲା । କମ୍ୟୁନିଷ୍ଟମାନଙ୍କର ଏହା ଏକ ଯୋଜନାବଦ୍ଧ ଉଦ୍ୟମ ଥିଲା ।

ତା'ଛଡା, କଟକ ସହରର ବିଭିନ୍ନ ଅଞ୍ଚଳରୁ ଲୋକ ପଠାଇ ସେମାନଙ୍କ ସାହିରେ ଜନଶକ୍ତି ମିଳୁନାହିଁ, ବଜାରରେ ସବୁକପି ସରିଯାଉଛି ଇତ୍ୟାଦି କଥା ମଧ ଦାଦାଙ୍କୁ ଖୁସି କରିବା ପାଇଁ କୁହାଯାଉଥିଲା । ସେଥିରେ ଦାଦା ଭଳି ଯାଉଥିଲେ ।

ଅନ୍ୟପକ୍ଷରେ ସଂସ୍ଥାର ଆର୍ଥିକ ଦିଗ ପ୍ରତି ଦୃଷ୍ଟି ଦିଆଯାଉ ନଥିଲା । କାଗଜ କ୍ଷତିରେ ଚାଲୁଥିଲେ ମଧ ଲାଭ କରୁଛି ବୋଲି ପ୍ରତି ମାସରେ ମିଥ୍ୟା ହିସାବ ଫର୍ଦ୍ଦ ପ୍ରସ୍ତୁତ କରାଯାଉଥିଲା ।

ସେତେବେଳେ କଳାଧଳା ଫଟୋରୁ ବ୍ଲକ ତିଆରି କରାଯାଇ କାଗଜରେ ପ୍ରକାଶ କରିବାର ବ୍ୟବସ୍ଥା ଥିଲା । ଜନଶକ୍ତି ପାଇଁ ଗୋଟିଏ ବ୍ଲକ ତିଆରି ମେସିନ୍ ଓ ଆଉ ଗୋଟିଏ ଅକ୍ଷର ତିଆରି ମେସିନ କିଣିବା ପାଇଁ ରାଜ୍ୟ ଅର୍ଥ ନିଗମରୁ ଦୁଇ ଲକ୍ଷ ଟଙ୍କା ଋଣ ଅଣାଯାଇଥିଲା । ମାତ୍ର ସେ ଟଙ୍କାରେ ମେସିନ୍ କିଣା ନଯାଇ ପ୍ରତିମାସରେ କ୍ଷତି ହେଉଥିବା ଅର୍ଥକୁ ଭରଣା କରାଯାଉଥିଲା । ସେକଥା ଦାଦାଙ୍କ କାନକୁ ଯାଉନଥିଲା ।

ରାଜ୍ୟ ସରକାରଙ୍କ ଘରୋଇ ଲୋକସମ୍ପର୍କ(ବର୍ତ୍ତମାନର ସୂଚନା ଓ ଲୋକସଂପର୍କ) ବିଭାଗର ନିର୍ଦ୍ଦେଶକ ଥିବା ସୁଧୀର ଘୋଷ ଅବସର ଗ୍ରହଣ ପରେ ଜନଶକ୍ତିରେ ଯୋଗ ଦେଇଥିଲେ । ଘର ତିଆରି ଠାରୁ ଆରମ୍ଭ କରି ମେସିନ୍ ବସାଇବା ପର୍ଯ୍ୟନ୍ତ ସବୁକାମ ଶ୍ରୀ ଘୋଷଙ୍କ ତଦାରଖରେ ହୋଇଥିଲା । ସେ ଅତ୍ୟନ୍ତ ଅମାୟିକ ଭଦ୍ରଲୋକ ଥିଲେ । ସବୁବେଳେ ହସ ହସ ମୁହଁ । ପରକୁ ଆପଣାର କରିବାର କଳା ତାଙ୍କ ପାଖରେ ଥିଲା । କିନ୍ତୁ କମ୍ୟୁନିଷ୍ଟମାନେ ତାଙ୍କୁ କଣଠେସା କରି ଦେଇଥିଲେ । ନିଷ୍ପତ୍ତିରେ ତାଙ୍କ ଭୂମିକା ଗୌଣଥିଲା ।

ଦାଦା ସେତେବେଳେ ସପରିବାର ବାଖରାବାଦରେ ଥିବା ଶୈଳେନ ରାୟଙ୍କ 'ପିତୃସ୍ମୃତି' ବାସଭବନରେ ରହୁଥିଲେ । ମୁଁ ମଝିରେ ମଝିରେ ତାଙ୍କ ପାଖକୁ ଯାଉଥିଲି ।

ଦିନେ ସନ୍ଧ୍ୟାରେ ଦାଦା ମତେ କହିଲେ, "ତୁ ସେଠି କ'ଣ କରୁଛୁ ? ନିର୍ବାଚନ ଆଉ କେଇଟା ମାସ ରହିଲା । ମୋ ପାଖରେ ଲୋକ କେହି ନାହାନ୍ତି । ତୁ ତ ସାହିବସ୍ତି ଲୋକମାନଙ୍କୁ ଜାଣିଛୁ । ମୋ ପାଖରେ ରହି ମତେ ଟିକେ ସାହାଯ୍ୟ କଲେ ହୁଅନ୍ତା ନାହିଁ ?" ମୁଁ କହିଲି, "ମୁଁ ପରା ଜନଶକ୍ତିରେ ସାମ୍ବାଦିକତା କରୁଛି, ତାକୁ କ'ଣ ଛାଡିଦେବି ?" "ତତେ ଚାକିରି ଛାଡିବା କଥା କିଏ କହୁଛି ? କାଗଜପତ୍ରରେ ତୁ ଜନଶକ୍ତିରେ ଥିବୁ, ହେଲେ ମତେ ଆସି ସାହାଯ୍ୟ କରିବୁ । ପ୍ରତିମାସ ପାଞ୍ଚ ତାରିଖରେ ଦରମା ସହିତ ଯିବାଆସିବା ପାଇଁ ଆଉ ପଚିଶ

ଟଙ୍କା ମିଶି ଦୁଇଶହ ଟଙ୍କା ତତେ ମିଳିଯିବ ।” ଉତ୍ତରରେ ଦାଦା ଏହି ପ୍ରସ୍ତାବ ବାଢ଼ିଥିଲେ । ମୁଁ ଦାଦାଙ୍କୁ ନାଁ କରିପାରିଲି ନାହିଁ । ତା’ପର ଦିନ ଠାରୁ ସକାଳୁ ଆସି ଦାଦାଙ୍କ ଦରବାରରେ ଯୋଗଦେଲି । ସେଥିସହିତ ମୋର ଜୀବନର ଗତିପଥ ବଦଳିଗଲା । ମୁଁ କ’ଣ ହେବି ବୋଲି ଭାବିଥିଲି, ଶେଷରେ କ’ଣ ହେଲି । ଏକ ଅଦୃଶ୍ୟ ଶକ୍ତି ହାତରେ ମୁଁ କେବଳ ସଖୀ କଣ୍ଢେଇ ପାଲଟି ଯାଇଥିଲି ।

ମୁଁ ପ୍ରତିଦିନ ସକାଳ ଆଠଟା ବେଳକୁ ଦାଦାଙ୍କ ଘରେ ପହଞ୍ଚିଯାଏ । ଦାଦା ଉଠି ଚା’ ଖାଉଥାନ୍ତି । ଚା ସାଙ୍ଗରେ କେଇ ଖଣ୍ଡ ବ୍ରିଟାନିଆ ବିସ୍କୁଟ । ଦିନେ ଦିନେ ମୁଁ ତାଙ୍କ ସାଙ୍ଗରେ ଯୋଗ ଦେଉଥିଲି । ଚା’ ଖାଇଲା ବେଳେ ନାନା କଥା ପଡୁଥିଲା । ଦାଦା ମତେ ବିଶ୍ୱାସକୁ ନେଇ ଅନେକ କଥା କହୁଥିଲେ । ଲୋକେ କିପରି ତାଙ୍କ ଠାରୁ ସବୁ ରକମର ସୁବିଧା ହାସଲ କରି ଶେଷରେ ଧୋକ୍କା ଦେଇଥିଲେ, ସେ କଥା କହିଲା ବେଳେ ତାଙ୍କ ଆଖି ଲୁହ ଛଳ ଛଳ ହୋଇଯାଉଥିଲା ।

ସକାଳ ନଅଟା ବେଳକୁ ଦାଦାଙ୍କ ଦରବାର ଆରମ୍ଭ ହେଉଥିଲା । ଏଗାରଟା ବେଳକୁ ଦରବାର ଜମିଯାଉଥିଲା । ଦରବାରରେ ନାନାପ୍ରକାର ଗୁହାରୀ । କାହା ମା’ ବେମାର ପଡିଛି, ଔଷଧ ପାଇଁ ପଇସା ନାହିଁ । କାହା ପୁଅର ବହି କିଣିବା ପାଇଁ ସମ୍ବଳ ନାହିଁ । କାହା ଝିଅର ଶାଶୂ ଘରକୁ ଭାର ଯିବ, ସେଥିପାଇଁ ଅର୍ଥ ଦରକାର । ବର୍ଷାରେ କାହା ଘର ଭାଙ୍ଗିଯାଇଛି ମରାମତି ହେବ । ଆଉ କାହା ପୁଅ କଲେଜରେ ପଢ଼ିବ, ସାଇକେଲ ଖଣ୍ଡିଏ ନାହିଁ ଇତ୍ୟାଦି ଇତ୍ୟାଦି । ତା’ଛଡା ସାହିବସ୍ତିର ସମଷ୍ଟିଗତ ଅସୁବିଧା । କୋଉ ସାହିର ନଳକୂଅରେ ପାଣି ଆସୁନାହିଁ, କୋଉଠି ବତୀଖୁଣ୍ଟରେ ଆଲୁଅ ଜଳୁନାହିଁ, ଆଉ କୋଉଠି ନାଳ ଠିକ୍ ସମୟରେ ସଫା ହେଉନାହିଁ । ଏସବୁ ବିଷୟରେ ମଧ୍ୟ ପ୍ରତିଦିନ କିଛି ନା କିଛି ଆପତ୍ତି ଅଭିଯୋଗ ଦାଦାଙ୍କ ଦରବାରକୁ ଆସୁଥିଲା ।

ଦରବାର ସକାଳ ଓଳି ନଅଟାରୁ ଦିନ ଦି’ଟା ପର୍ଯ୍ୟନ୍ତ ଚାଲୁଥିଲା । ଦରବାରର ଶେଷ ଦଶମିନିଟ୍ ଥିଲା ଅତି ଗୁରୁତ୍ୱପୂର୍ଣ୍ଣ । ସେତିକିବେଳେ ଲୋକଙ୍କ ଗୁହାରୀ ମୁତାବକ ସେମାନଙ୍କୁ ଟଙ୍କା ଦିଆଯାଏ । ବେଳେବେଳେ କିଛି ଲୋକ ମିଛ ବାହାନା ଦେଖାଇ ଟଙ୍କା ନେଇଯାଆନ୍ତି । ଦାଦା ସବୁକଥା ଜାଣିପାରନ୍ତି । କିନ୍ତୁ ସାଧାରଣରେ କିଛି ପ୍ରତିକ୍ରିୟା ପ୍ରକାଶ କରନ୍ତି ନାହିଁ । ଦରବାରର ଆୟବ୍ୟୟ ସହିତ ଦାଦାଙ୍କ ପରିବାରର କିଛି ସମ୍ପର୍କ ନଥାଏ । ଦରବାରରେ ଯାହା ଆୟହୁଏ ପ୍ରତିଦିନ ତାହା ବ୍ୟୟ ହୋଇଯାଏ ।

ଦି’ଟା ବେଳେ ଦାଦା ଗାଧୋଇବାକୁ ଗଲେ ମୁଁ ଘରକୁ ଫେରେ । ପୁଣି ପାଞ୍ଚଟା ବେଳକୁ ଦରବାର ଆରମ୍ଭ ହୋଇ ରାତି ନଅଟା ପର୍ଯ୍ୟନ୍ତ ଚାଲେ । ବେଳେବେଳେ ଦରବାର ସମୟଟା ରାତି ଏଗାରଟା ପର୍ଯ୍ୟନ୍ତ ଟାଣି ହୋଇଯାଉଥିଲା । କାଁ ଭାଁ ଘଟଣାକୁ ବାଦ୍‌ଦେଲେ

ସନ୍ଧ୍ୟା ଦରବାରରେ ଟଙ୍କା ପଇସା ଦିଆନିଆର ଦରକାର ପଡୁନଥିଲା । ମୁଖ୍ୟତଃ ରାଜନୀତି ଚର୍ଚ୍ଚା ହେଉଥିଲା । କଟକ ସହରରେ ସେତେବେଳେ ଦାଦାଙ୍କର ପ୍ରତିସାହିରେ ପ୍ରଭାବ ଥିଲା । ସାହି ମୁରବୀମାନେ ତାଙ୍କର ଅନୁଗତ ଭାବରେ ଜଣାଶୁଣା ଥିଲେ ।

ସନ୍ଧ୍ୟାରେ ସାହି ମୁରବୀମାନେ ଆସି ଦରବାରରେ ଆଡ୍ଡା ଜମାଉଥିଲେ । ସେମାନେ ଦାଦାଙ୍କ ସାଙ୍ଗରେ ଥଟ୍ଟା, ତାମସା ମଧ୍ୟ କରୁଥିଲେ । ସେସବୁ ବଡ଼ ଉପଭୋଗ୍ୟ ହେଉଥିଲା । ସାହିବାଲାଙ୍କ ପାଖରେ ଦାଦା, ପୂର୍ବତନ ମୁଖ୍ୟମନ୍ତ୍ରୀ ନଥିଲେ ।

ପରେ ଗୋଟିଏ ଘଟଣାକୁ ନେଇ ଦାଦା ଅଡୁଆରେ ପଡିଯାଇଥିଲେ । ବୁଢ଼ୀ ଠାକୁରାଣୀ ଅଞ୍ଚଳର ଗୁରିଆ ଓ ସୂତାହାଟର ମକୁନ୍ଦା ଉଭୟ ଦାଦାଙ୍କର ପିଲାଦିନର ସାଙ୍ଗ । ଗୁରିଆର ପୁତୁରା ଓ ମକୁନ୍ଦାର ଜ୍ୱାଇଁ କଟକ ମଧୁପାଟଣାରେ ଥିବା ଓଡ଼ିଶା ଗଭର୍ଣ୍ଣମେଣ୍ଟ ପ୍ରେସ୍‌ରେ ଗୋଟିଏ ଚାକିରି ପାଇଁ ଇଣ୍ଟରଭ୍ୟୁ ଦେଇଥିଲେ । ଚାକିରି ପାଇଁ ଗୋଟିଏ ମାତ୍ର ସ୍ଥାନ ଖାଲି ଥିଲା । ଉଭୟେ ଗୁରିଆ ଓ ମକୁନ୍ଦା ଭିନ୍ନଭିନ୍ନ ସମୟରେ ଦାଦାଙ୍କୁ ସାକ୍ଷାତ କରି ସେମାନଙ୍କ ପ୍ରାର୍ଥୀ ପାଇଁ ସୁପାରିଶ କରିବାକୁ କହିଥିଲେ ।

ସେତେବେଳେ ଉଦୟନାଥ ମିଶ୍ର ଗଭର୍ଣ୍ଣମେଣ୍ଟ ପ୍ରେସ୍‌ରେ ସୁପରିନ୍‌ଟେଣ୍ଡେଣ୍ଟ ଥିଲେ । ସେ ଦାଦାଙ୍କୁ ଖୁବ୍ ମାନୁଥିଲେ । ଦାଦା କାହାରି କଥା ଭାଙ୍ଗିନପାରି ଉଭୟଙ୍କ ପାଇଁ ଶ୍ରୀ ମିଶ୍ରଙ୍କୁ ଅନୁରୋଧ କରିଥିଲେ । ଏହା ଶ୍ରୀ ମିଶ୍ରଙ୍କ ପାଇଁ ଅଡୁଆ ପରିସ୍ଥିତି ସୃଷ୍ଟି କରିଥିଲା ।

ଦିନେ ଦାଦାଙ୍କ ଦରବାରରେ ଉଭୟ ଗୁରିଆ ଓ ମକୁନ୍ଦାଙ୍କର ଭେଟ ହୋଇଗଲା । ଦାଦା ସେମାନଙ୍କୁ ପଚାରିଲେ କାହାର ଚାକିରି କରିବା ଜରୁରୀ । ଗୋଟିଏ ଚାକିରି ଅଛି । ତମେ ଦି'ଜଣ ବସି ସ୍ଥିର କର ସେ ଚାକିରି କାହାକୁ ମିଳିବ ।

ଉଭୟ ଥିଲେ ନଛୋଡବନ୍ଧା । କେହି ସାଲିସ୍ କରିବା ଅବସ୍ଥାରେ ନଥିଲେ । ଦରବାରକୁ ଶ୍ରୀ ମିଶ୍ରଙ୍କୁ ଡକାଗଲା । ଦାଦା ତାଙ୍କ ହାତ ଧରି ପକାଇ କହିଲେ, "ଉଦୟ, ତୁ ମତେ ଏ ଧର୍ମ ସଂକଟରୁ ରକ୍ଷା କର । ଉଭୟ ମୋ ସାଙ୍ଗ । ଜଣକର ପୁତୁରା ଓ ଆଉ ଜଣକର ଜ୍ୱାଇଁ ତମ ପ୍ରେସ୍‌ରେ ଚାକିରି ପାଇଁ ଇଣ୍ଟରଭ୍ୟୁ ଦେଇଛନ୍ତି । ସେ ଦି'ଜଣ କିପରି ଚାକିରି ପାଇବେ ତୁ ତା' ବ୍ୟବସ୍ଥା କର ।"

ଶ୍ରୀ ମିଶ୍ର ଜଣେ ପାରିବାର ଲୋକ ଥିଲେ । ସେ ଦାଦାଙ୍କ କଥାକୁ ଭାଙ୍ଗି ପାରିନଥିଲେ । ଶେଷରେ ଆଉ ଗୋଟିଏ ପୋଷ୍ଟ କ୍ରିଏଟ୍ କରି ଉଭୟ ପ୍ରାର୍ଥୀଙ୍କୁ ଚାକିରି ଯୋଗାଇ ଦେଇଥିଲେ । ଦାଦା ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ ସୁଦ୍ଧା ସରକାରୀ କଳ ଓ ମନ୍ତ୍ରୀମାନଙ୍କ ଉପରେ ତାଙ୍କର ପ୍ରଭାବ ଅକ୍ଷୁର୍ଣ୍ଣ ଥିଲା । ସେ ଯାହାକୁ ଯାହା କହୁଥିଲେ କେହି କଥା ଭାଙ୍ଗି ପାରୁନଥିଲେ ।

ମୋର ମନେପଡୁଛି, କିଛି ବ୍ୟବସାୟୀ, ଶିଳ୍ପପତି ଅନ୍ୟକୁ ଦେଖାଗଲା ଭଳି କିଛି ଟଙ୍କା ହାୱାଇନ୍ କିମ୍ବା ପଞ୍ଜାବୀ ପକେଟ୍‌ରେ ରଖି ଦାଦାଙ୍କୁ ଦେଖା କରିବାକୁ ଆସୁଥିଲେ ।

ଦାଦା କିଛି କହିବା ପୂର୍ବରୁ ସେମାନେ ଦରବାର ପାଇଁ କିଛି ଅର୍ଥ ଦାନ କରୁଥିଲେ । ସେତିକିରେ କାମ ଚଳି ଯାଉଥିଲା ।

ଦିନେ ଦିନେ ଦରକାର ଠାରୁ କମ୍ ଟଙ୍କା ମିଳୁଥିଲା । ଦାଦାଙ୍କର ଦୁଇଜଣ ଘନିଷ୍ଠ ଓଡ଼ିଆ କଣ୍ଟ୍ରାକ୍ଟର ବନ୍ଧୁ ଥିଲେ । ଉଚ୍ଛଦାନନ୍ଦ ସାମନ୍ତରାୟ ଓ ଗୋକୁଳାନନ୍ଦ କାନୁନ୍‌ଗୋ । ଦରବାରରେ ଟଙ୍କାର ଅଭାବ ହେଲେ ସେମାନଙ୍କୁ ଖୋଜା ପଡେ । ସେମାନେ ଅକୁଣ୍ଠରେ ଅଭାବ ମେଣ୍ଟେଇ ଦିଅନ୍ତି ।

ଥରେ ଦାଦା ରହସ୍ୟରେ ଗୋକୁଳି ବାବୁଙ୍କୁ ପଚାରିଲେ, "ହଇରେ ତୋ'ର କେଇଟା ସ୍ତ୍ରୀ ?" ଉତ୍ତରରେ ଗୋକୁଳିବାବୁ କହିଥିଲେ, "କଂଗ୍ରେସକୁ ମିଶାଇ ମୋର ଚାରିଟା ସ୍ତ୍ରୀ ।" ତାଙ୍କ କଥାରୁ ଆମେ କିଛି ବୁଝିପାରି ନଥିଲୁ । ଗୋକୁଳିବାବୁ ତାଙ୍କ କଥାର ବ୍ୟାଖ୍ୟା କରି କହିଲେ, ମୁଁ ତିନିଜଣ ସ୍ତ୍ରୀଙ୍କ ସହିତ କଂଗ୍ରେସକୁ ଚଳାଉଛି । ସେଥିପାଇଁ ମୋର ଚାରିଜଣ ସ୍ତ୍ରୀ ବୋଲି କହିଲି । ଉତ୍ତର ଶୁଣି ଆମେ ହସକୁ ନିୟନ୍ତ୍ରଣ କରିପାରିନଥିଲୁ ।

୧୯୬୭ ମସିହା ପ୍ରାରମ୍ଭରେ ଚତୁର୍ଥ ଓଡ଼ିଶା ବିଧାନସଭା ନିର୍ବାଚନ ପାଇଁ ବିଜ୍ଞପ୍ତି ପ୍ରକାଶ ପାଇଲା । ସେତେବେଳକୁ ଏକାଧିକ କାରଣରୁ କଂଗ୍ରେସ ଦଳ ଓଡ଼ିଶାରେ ବଦ୍‌ନାମ ହୋଇଯାଇଥିଲା । ଓଡ଼ିଶାର ତିନିଜଣ ତୁଙ୍ଗନେତା ଡକ୍ଟର ହରେକୃଷ୍ଣ ମହତାବ, ରାଧାନାଥ ରଥ ଓ ରାଜେନ୍ଦ୍ର ନାରାୟଣ ସିଂହଦେଓ ନିଜ ଭିତରେ ଥିବା ସମସ୍ତ ପ୍ରକାର ତିକ୍ତତାକୁ ଭୁଲି 'କଂଗ୍ରେସ ହଟାଓ' ଅଭିଯାନ ଆରମ୍ଭ କରିଥିଲେ ।

ସେମାନଙ୍କର ସେ ଅଭିଯାନ ସଫଳ ହୋଇଥିଲା । ୧୯୬୭ ନିର୍ବାଚନ ପରେ ରାଜ୍ୟ ବିଧାନସଭାରେ କଂଗ୍ରେସ ଦଳର ସଂଖ୍ୟା ୮୨ରୁ ୩୧କୁ ଖସି ଆସିଥିଲା । ଅପରପକ୍ଷରେ ଡକ୍ଟର ମହତାବଙ୍କ ନେତୃତ୍ୱରେ ଗଠିତ ଜନ କଂଗ୍ରେସ ଦଳ ୨୬ଟି ଆସନ ପାଇଥିଲା । ଏକାଧିକ ଆଲୋଚନା ପରେ ସ୍ୱତନ୍ତ୍ରଦଳ ଏବଂ ଜନ କଂଗ୍ରେସ ମିଶି ଗୋଟିଏ ମିଳିତ ମନ୍ତ୍ରିମଣ୍ଡଳ ଶ୍ରୀ ସିଂହଦେଓଙ୍କ ନେତୃତ୍ୱରେ ଗଢ଼ାଯାଇଥିଲା ।

ଦୀର୍ଘଦିନର ବ୍ୟବଧାନ ପରେ ଓଡ଼ିଶାରେ ଗୋଟିଏ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ କ୍ଷମତାକୁ ଆସିଥିଲା । ସେ ସରକାରର ପ୍ରଭାବ ସମଗ୍ର ରାଜ୍ୟରେ ପ୍ରତିଫଳିତ ହୋଇଥିଲା । ଯେଉଁସବୁ ସମ୍ବାଦପତ୍ର ରାଜ୍ୟ ସରକାରଙ୍କ ବିରୋଧରେ ସମ୍ବାଦ ପ୍ରକାଶ କରୁଥିଲେ, ସେମାନଙ୍କୁ ସରକାରୀ ବିଜ୍ଞାପନ ନଦେବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ସିଂହଦେଓ ଏକ ଅଘୋଷିତ ଆଦେଶନାମା ଜାରୀ କରିଥିଲେ । ଏଥିରେ ଜନଶକ୍ତି ଉପରେ ଆର୍ଥିକ ଚାପ ପଡ଼ିଥିଲା । କିଛିଦିନ ପ୍ରକାଶନ ପରେ ଜନଶକ୍ତିରେ ଲକ୍‌ଆଉଟ୍ ହୋଇଗଲା ।

ଲକ୍‌ଆଉଟ ସମ୍ପର୍କରେ ଆମକୁ ପୂର୍ବରୁ କୌଣସି ସୂଚନା ମିଳିନଥିଲା । ପ୍ରତିଦିନ ସକାଳେ ମୁଁ ଯେଭଳି ଅଫିସ୍ ଯାଏ, ସେ ଦିନ ମଧ ଯାଇଥିଲି । ଅଧିକାଂଶ ଦିନ ଦାଦା ସିଢ଼ି

ପାଖରେ ଗୋଟାଏ ଆର୍ମ ଚେୟାରରେ ଖାଲି ଦେହରେ ବସିଥାନ୍ତି । ତାଙ୍କ ସାଙ୍ଗରେ ବେଳେବେଳେ ଦେଖା ହୋଇଯାଏ । ସେଦିନ ମଧ୍ୟ ଦାଦା ଆର୍ମ ଚେୟାରରେ ବସିଥିଲେ । ମତେ କାହିଁକି ସେ ଦିନର ପରିବେଶ ଟିକିଏ ଅଲଗା ଲାଗିଲା । ମୁଁ ଦୂରରୁ ଦେଖିଲି ଦାଦା ମୁଣ୍ଡରେ ହାତ ଦେଇ ବସିଥିଲେ । ପାଖକୁ ଆସିଲାରୁ ତାଙ୍କ ଆଖିରୁ ଧାର ଧାର ଲୁହ ବୋହୁଥିବାର ଦେଖିଲି ।

ମତେ ଦେଖି ଦାଦା ଭାବବିହ୍ୱଳ ହୋଇଗଲେ । କହିଲେ, "ସବୁ ସରିଗଲା । କେତେ କଷ୍ଟକରି ଜନଶକ୍ତି ବାହାର କରିଥିଲି । ହେଲେ ତାକୁ ବଞ୍ଚେଇ ରଖି ପାରିଲିନି । ଟଙ୍କା ସବୁ ସରିଗଲା । କାଲିଠାରୁ କାଗଜ ବନ୍ଦ ହୋଇଯାଇଛି । ତୋର ଆଉ ଉପରକୁ ଯିବା ଦରକାର ନାହିଁ । ତୋର ଯାହା ଟଙ୍କା ପଇସା ବାକିଅଛି, ତାକୁ ମୁଁ ଆସ୍ତେ ଆସ୍ତେ ଦେଇଦେବି । ମୋ ଉପରେ ବିଶ୍ୱାସ ରଖ ।"

ଦାଦାଙ୍କ କଥା ଶୁଣି ମୁଁ ଅନୁଭବ କଲି ସତେ ଯେପରି ମୋ ଗୋଡ ତଳୁ ମାଟି ଖସି ଯାଉଥିଲା । ଦାଦାଙ୍କ କଥା ଭାଙ୍ଗି ନପାରି ସରକାରୀ ଚାକିରି ଛାଡିଲି । ସାମ୍ବାଦିକତା କରିବି ବୋଲି ମନରେ ଯେଉଁ ଆଶା ପୋଷଣ କରିଥିଲି, ତା'ବି ଶେଷରେ ହେଲା ନାହିଁ । ମନରେ ଏକ ହତାଶା ଭାବ ସୃଷ୍ଟି ହେଲା । ମନର କଥା ମନରେ ରଖି ଦାଦାଙ୍କ ପାଖରେ କିଛି ସମୟ ବସିଲି । ଆମେ ପରସ୍ପରକୁ ସାନ୍ତ୍ୱନା ଦେଲୁ ।

କମ୍ୟୁନିଷ୍ଟମାନଙ୍କ ପାଲରେ ନ ପଡିଥିଲେ ହୁଏତ ଜନଶକ୍ତି ଅକାଳ ମୃତ୍ୟୁମୁଖରୁ ରକ୍ଷାପାଇ ଯାଇଥାନ୍ତା । କିନ୍ତୁ ଦାଦାଙ୍କ ଭାବପ୍ରବଣତାରୁ ସେମାନେ ଫାଇଦା ଉଠାଇଲେ । ନିଜ ନିଜର ପକେଟ୍ ଗରମ କଲେ । ଶେଷରେ ଶତାଧିକ ଲୋକଙ୍କ ଦାନା ମାରି ସେମାନଙ୍କୁ ଦାଣ୍ଡକୁ ଠେଲିଦେଲେ । ଆରମ୍ଭ ବେଳେ ଜନଶକ୍ତି ଏକ ନିରପେକ୍ଷ ଦୈନିକ ଭାବରେ ଜନସାଧାରଣଙ୍କ ଦ୍ୱାରା ଆଦୃତ ହେବ ବୋଲି ଯେଉଁ ଆଶା ସଞ୍ଚାର ହୋଇଥିଲା, ତାହା କମ୍ୟୁନିଷ୍ଟମାନଙ୍କ ଚକ୍ରାନ୍ତ ଫଳରେ କେବଳ ଆଶାରେ ହିଁ ରହିଗଲା ।

ଶେଷରେ ରାଜ୍ୟ ଅର୍ଥ ନିଗମର ଋଣ ଶୁଝାଯାଇ ନପାରିବାରୁ ଜନଶକ୍ତି କୋଠା ନିଲାମ ହୋଇଗଲା । ସେଠାରେ ରାଜ୍ୟ ଅର୍ଥ ନିଗମର ମୁଖ୍ୟ କାର୍ଯ୍ୟାଳୟ ଖୋଲିଲା । ଏବେ ସେ ବାଟେ ଗଲାବେଳେ ସେ କୋଠାକୁ ଦେଖିଲେ ଅତୀତର ଅନେକ ସ୍ମୃତି ମନେ ପଡିଯାଏ ।

ଜନଶକ୍ତିର ପ୍ରକାଶନ ବନ୍ଦ ହୋଇଯାଇଥିଲେ ମଧ୍ୟ ଦାଦାଙ୍କ ସହିତ ମୋର ସଂପର୍କ ଅତୁଟ ଥିଲା । ମୁଁ ପୂର୍ବଭଳି ଦାଦାଙ୍କ ଦରବାରକୁ ଯାଉଥିଲି । ସାଧ ମତେ ତାଙ୍କୁ ସାହାଯ୍ୟ କରୁଥିଲି ।

ଦାଦା ତାଙ୍କ ନିର୍ବାଚନ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ମତେ ଅନୁରୋଧ କଲେ । ମୁଁ ତାଙ୍କ କଥା ଭାଙ୍ଗି ପାରିଲିନାହିଁ । ଦାଦାଙ୍କର ନିର୍ବାଚନ ପ୍ରଚାର ଶୈଳୀ ଭିନ୍ନ ଧରଣର

ଥିଲା । ଦରବାର ସରିଲେ ସେ ସନ୍ଧ୍ୟାରେ ଗୋଟିଏ ସାହିକୁ ଯାଉଥିଲେ । ଜଣକ ପିଣ୍ଡାରେ ବସି ଅନ୍ୟମାନଙ୍କୁ ଡାକୁଥିଲେ । "ତମେ ସବୁଦିନେ ମୋ ପାଖକୁ ଯାଉଥିଲ । ମୁଁ ତମମାନଙ୍କୁ ଯଥାଶକ୍ତି ସାହାଯ୍ୟ କରୁଥିଲି । ଆଜି ମୁଁ ତମମାନଙ୍କ ପାଖକୁ ଆସିଛି କିଛି ସାହାଯ୍ୟ ପାଇଁ । ତମେ ସମସ୍ତେ ମତେ ଖଣ୍ଡିଏ ଖଣ୍ଡିଏ ଭୋଟ ଦେବ ।" ଏତିକିରେ ଦାଦାଙ୍କର ଭୋଟ ପ୍ରଚାର ଶେଷ ହେଉଥିଲା ।

ସାହିଲୋକେ ତାଙ୍କ ଅଞ୍ଚଳର ଅସୁବିଧା ପ୍ରତି ଦାଦାଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ । ତାଙ୍କ ସାହିରେ ନଳକୂପ ବସିନାହିଁ, ଇଲେକ୍ଟ୍ରିକ୍ ଲାଇଟ୍ ପାଇଁ ଖୁଣ୍ଟ ପଡିନାହିଁ, ଠାକୁରଘରର ଛାତ ପଡିନାହିଁ ଇତ୍ୟାଦି ଇତ୍ୟାଦି କଥା ଉଠୁଥିଲା । ଭୋଟ ପରେ ସେସବୁର ବ୍ୟବସ୍ଥା କରାଯିବ ବୋଲି ଦାଦା ସେମାନଙ୍କୁ ପ୍ରତିଶ୍ରୁତି ଦେଇ ଅନ୍ୟ ସାହିକୁ ଯାଉଥିଲେ । ଯିବା ପୂର୍ବରୁ ଠାକୁର ଘରକୁ କିଛି ଚାନ୍ଦା ଥାଳିରେ ପକାଇବାକୁ ସେ ଭୁଲୁ ନଥିଲେ ।

ଦାଦା ୧୯୫୨ ମସିହାରୁ କଟକ ସହରରୁ ନିର୍ବାଚିତ ହେଉଥିଲେ । ୧୯୬୭ ମସିହାରେ ଓଡ଼ିଶାରେ ସର୍ବତ୍ର କଂଗ୍ରେସ ଦଳ ବିରୋଧରେ ଏକ ହାୱା ପ୍ରବାହିତ ହେଉଥିଲା । ସେଥିରେ ବିଜୁ ପଟ୍ଟନାୟକ, ନୀଳମଣି ରାଉତରାୟ, ସତ୍ୟପ୍ରିୟ ମହାନ୍ତି, ସଦାଶିବ ତ୍ରିପାଠୀଙ୍କ ଭଳି କଂଗ୍ରେସର ତୁଙ୍ଗ ନେତାମାନେ ଶୋଚନୀୟ ଭାବେ ପରାଜିତ ହୋଇଥିଲେ ।

ମାତ୍ର କଂଗ୍ରେସ ବିରୋଧୀ ହାୱା ଦାଦାଙ୍କ ସ୍ଥିତି ପ୍ରତି କୌଣସି ବିପଦ ସୃଷ୍ଟି କରି ପାରିନଥିଲା । ସେ ପୂର୍ବଭଳି ଚଉଦ ହଜାରରୁ ଅଧିକ ଭୋଟ ପାଇ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ।

ଦାଦାଙ୍କ ସହିତ ଭୋଟ୍ ସମୟରେ ବିଭିନ୍ନ ସାହିବସ୍ତିକୁ ଯିବା ଫଳରେ ଅନେକ ସାହି ମୁରବୀଙ୍କ ସହିତ ମୋର ସମ୍ପର୍କ ସ୍ଥାପିତ ହୋଇଥିଲା । ସେମାନେ ମତେ ଦାଦାଙ୍କ ନିଜ ଲୋକ ବୋଲି ଭାବି ଖୁବ୍ ଖାତିର କରୁଥିଲେ । ସେଦିନର ସେ ସମ୍ପର୍କ ଦୀର୍ଘଦିନ ପର୍ଯ୍ୟନ୍ତ ସ୍ଥାୟୀ ହୋଇଥିଲା ।

ଏବେ ବି କଟକ ଗଲେ ସେମାନଙ୍କ ଭିତରୁ କେହି କେହି ଦେଖାହୋଇଗଲେ ପୁରୁଣା ଦିନର କଥାସବୁ ମନେ ପଡିଯାଏ । ସମୟ ବଦଳିବା ସହିତ ପୁରୁଣା ରୀତିନୀତି, ଚାଲିଚଳଣି କିପରି ବଦଳିଗଲାଣି ସେ ବିଷୟରେ କଥା ପଡେ । କଥାବାର୍ତ୍ତା ବେଳେ ଆମେ ଦାଦାଙ୍କୁ ମନେ ପକାଉ ।

# ଅରକ୍ଷିତକୁ ଦଇବସ୍ୱାହା

ଜନଶକ୍ତିରେ ଆକସ୍ମିକ ଭାବରେ 'ଲକ୍‌ଆଉଟ' ଜନିତ ପରିସ୍ଥିତିକୁ ମୁଁ ସହଜରେ ଗ୍ରହଣ କରିପାରି ନଥିଲି । ସେତବେଳେ ମୋ ଉପରେ କୌଣସି ଦାୟିତ୍ୱ ନଥିଲା । ତଥାପି ପରିସ୍ଥିତି ସହିତ ହଠାତ୍ ମୁଁ ନିଜକୁ ଖାପଖୁଆଇ ପାରିନଥିଲି । ହାତରେ କିଛି କାମ ନଥିଲା । କପି କରିବାକୁ ଡରି ଲ'ପରୀକ୍ଷା ଦେଲିନାହିଁ । ସରକାରୀ ଚାକିରି ପାଇଁ ଉଦ୍ୟମ କଲି । ଭାଗ୍ୟଦେବୀ ମତେ ସହାୟତା କଲେନାହିଁ । ଦାଦାଙ୍କ କଥା ଭାଙ୍ଗିନପାରି ଜନଶକ୍ତିରେ ଯୋଗଦେଲି । ଶେଷରେ ସେ ମଧ ବନ୍ଦ ହୋଇଗଲା ।

ସେ ସମୟରେ ଅମୃତ ବଜାର ପତ୍ରିକାର ଏକ ସଂସ୍କରଣ କଟକରୁ ପ୍ରକାଶିତ ହେଉଥିଲା । ତୁଳସୀପୁର ଛକରେ ଥିବା 'ଆନନ୍ଦଭବନ'(ବିଜୁ ପଟ୍ଟନାୟକଙ୍କ ବାସଭବନ) ହତାରେ ପତ୍ରିକା ପ୍ରକାଶ ପାଉଥିଲା ।

ସେତେବେଳେ ଡ଼କ୍ଟର ହରେକୃଷ୍ଣ ମହତାବଙ୍କ ମାଲିକାନାରେ କଟକର ବିହାରୀବାଗରୁ 'ଇଷ୍ଟର୍ଣ୍ଣ ଟାଇମ୍‌ସ' ନାମରେ ଗୋଟିଏ ଇଂରାଜୀ ଦୈନିକ ପ୍ରକାଶିତ ହେଉଥିଲା । ଅମୃତ ବଜାର ପତ୍ରିକାର କଟକ ସଂସ୍କରଣ ପ୍ରକାଶ ପାଇବା ପରେ ଇଷ୍ଟର୍ଣ୍ଣ ଟାଇମ୍‌ସର ପ୍ରସାରଣ ପ୍ରଭାବିତ ହେଲା । ଡକ୍ଟର ମହତାବ ତାଙ୍କ ଚେଲାଚାମଣ୍ଡାଙ୍କୁ ମତେଇ ପତ୍ରିକା ବିରୋଧରେ ଆନ୍ଦୋଳନ କଲେ । କିଛିଦିନ ପରେ ପତ୍ରିକା ମାଲିକଙ୍କ ସହିତ ତାଙ୍କର ଆପୋଷ ବୁଝାମଣା ହେଲା । ପତ୍ରିକା ହାଉସ ବଜାର ଦର ଠାରୁ ଅଧିକ ମୂଲ୍ୟ ଦେଇ ଇଷ୍ଟର୍ଣ୍ଣ ଟାଇମ୍‌ସର ପୁରୁଣା ରୋଟାରୀ ମେସିନ୍‌କୁ କିଣି ନେଇଥିଲେ ।

ଡ଼କ୍ଟର ମହତାବଙ୍କ ସହିତ ପତ୍ରିକା ହାଉସର ବୁଝାମଣାକୁ ବିଜୁ ପଟ୍ଟନାୟକ ହାଲୁକା ଭାବେ ଗ୍ରହଣ କରିନଥିଲେ । କାରଣ ରାଜନୈତିକ ଦୃଷ୍ଟିରୁ ଶ୍ରୀ ପଟ୍ଟନାୟକ ସେତେବେଳକୁ

ଡକ୍ଟର ମହତାବଙ୍କୁ ତାଙ୍କର ଶତ୍ରୁ ବୋଲି ବିଚାରୁଥିଲେ । ପୂର୍ବର ଗୁରୁ, ଶିଷ୍ୟ ସମ୍ପର୍କ ତୁଟି ଯାଇଥିଲା ।

ସେତେବେଳେ ଓଡ଼ିଶାରେ ସ୍ୱତନ୍ତ୍ର ଓ ଜନ କଂଗ୍ରେସର ମିଳିତ ମନ୍ତ୍ରିମଣ୍ଡଳ କ୍ଷମତାରେ ଥିଲେ । ଓଡ଼ିଶାରେ କଂଗ୍ରେସ ଦଳର ବିପର୍ଯ୍ୟୟ ହୋଇଥିଲା । ବିଜୁ ପଟ୍ଟନାୟକ ପାଟକୁରା ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରି ଜଣେ ସ୍କୁଲ ଶିକ୍ଷକ, ସୋସାଲିଷ୍ଟ ପାର୍ଟି ପ୍ରାର୍ଥୀ ଚକ୍ରଧର ଶତପଥୀଙ୍କ ଠାରୁ ହାରି ଯାଇଥିଲେ ।

ପତ୍ରିକା ହାଉସ ସହିତ ତାଙ୍କର କୌଣସି ବିବାଦ ନଥିଲା । ଡକ୍ଟର ମହତାବଙ୍କ ସହିତ ପତ୍ରିକା ହାଉସର ବୁଝାମଣା ପରେ ଶ୍ରୀ ପଟ୍ଟନାୟକଙ୍କର ମନୋଭାବ ବଦଳିଗଲା । ପନ୍ଦର ଦିନ ଭିତରେ ତାଙ୍କ ହତାରୁ ମେସିନ୍‌ପତ୍ର ଉଠାଇ ନେବାକୁ ସେ ପତ୍ରିକା ମ୍ୟାନେଜମେଣ୍ଟକୁ ନୋଟିସ୍ ଦେଲେ ।

ଅନ୍ୟ ଉପାୟ ନଦେଖି ପତ୍ରିକା ହାଉସ୍ ପକ୍ଷରୁ କଟକ ସଂସ୍କରଣକୁ ବନ୍ଦ କରିଦିଆଗଲା । ମେସିନ୍ ଓ ଅନ୍ୟାନ୍ୟ ଆସବାବପତ୍ରକୁ ଉଠାଇ ନିଆଯାଇ ଦୋଳମୁଣ୍ଡାଇ ଛକ ନିକଟରେ ଥିବା ଆଳିରାଜାଙ୍କ ହତା ଭିତରେ ଗୋଟିଏ ଆଜବେଷ୍ଟସ ଘରେ ରଖାଗଲା ।

ଆଉଥରେ କଟକରୁ ପତ୍ରିକା ପ୍ରକାଶ କରିବାର ଆଶା ରଖି ଅମୃତ ବଜାର କର୍ତ୍ତୃପକ୍ଷ ଦୀର୍ଘଦିନ ପର୍ଯ୍ୟନ୍ତ ସେଠାରେ ମେସିନ୍ ରଖିଥିଲେ । ମାତ୍ର କଟକରୁ ଅମୃତ ବଜାର ପ୍ରକାଶ ପାଇବା ଆଉ ସମ୍ଭବ ହୋଇନଥିଲା ।

ଜନଶକ୍ତିର ପ୍ରକାଶନ ବନ୍ଦ ହୋଇଯିବା ପରେ ଚାରି ମାସ ବେକାର ହୋଇ ବୁଲିଲି । ସରକାରୀ ଚାକିରି ପାଇଁ ବୟସ ଚାଲି ଯାଇଥିଲା । ଅମୃତ ବଜାର ପତ୍ରିକାର କଟକ ସଂସ୍କରଣ ବନ୍ଦ ହୋଇଯାଇଥିଲେ ବି ତୁଳସୀପୁରରେ ଗୋଟିଏ ଛୋଟିଆ ଭଡ଼ାଘରେ ସେ ସଂସ୍ଥାର ଅଫିସ୍ ଚାଲୁଥିଲା । ତାରାପଦ ଗୁପ୍ତ ନିଉଜ ଏଡିଟର ଭାବରେ ସେ ଅଫିସର ଦେଖାଶୁଣା କରୁଥିଲେ । ଅଫିସରେ ଟେଲିପ୍ରିଣ୍ଟର ସର୍ଭିସ୍ ଥିଲା ।

ମୋର ମନେ ପଡୁଛି, ସେଦିନ ଥିଲା ୧୯୬୭ ମସିହା ଅଗଷ୍ଟ ମାସ ୧୨ ତାରିଖ । ସେତେବେଳେ ବୀରେନ୍ ମିତ୍ର ବାଖରାବାଦ ଘର ଛାଡି ଜନଶକ୍ତି ବିଲ୍ଡିଂରେ ରହୁଥିଲେ । ସେଦିନ ମୁଁ ତାଙ୍କ ପାଖକୁ ଯାଇଥିଲି । ଆଉ କେହି ନଥିଲେ । ଆମ ଭିତରେ ଅନେକ କଥା ପଡିଥିଲା । ଦାଦା ତାଙ୍କ ଜୀବନର ଅନେକ ଦୁଃଖ କାହାଣୀ ମତେ କହିଥିଲେ ।

ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବା ପରେ କିପରି ତାଙ୍କ ବାପା ତାଙ୍କୁ ତେଜ୍ୟପୁତ୍ର କରି ଘରୁ ବାହାର କରିଦେଇଥିଲେ, ଚୌଧୁରୀ ବଜାରର ରାଜୁ ସାହୁଙ୍କ ଦୋକାନରୁ ବରା, ପିଆଜି ଖାଇ, ଟାଉନହଲ ବାରଣ୍ଡାରେ ସେ କିପରି ରାତି କଟେଇଥିଲେ, ସେସବୁ ଘଟଣା ସମ୍ପର୍କରେ ସେଦିନ ଦାଦା ମତେ କହିଥିଲେ । ମୁଁ ମଧ୍ୟ ମୋ ଜୀବନର ଅନେକ କଥା ତାଙ୍କୁ ଜଣେଇଥିଲି ।

କଥାବାର୍ତ୍ତା ଭିତରେ ଗୋଟାଏ କଥା ମୋ ମୁଣ୍ଡକୁ ଢୁକିଥିଲା । ମୁଁ ଦାଦାଙ୍କୁ କହିଲି, "ଆପଣ ଅମୃତ ବଜାର ପତ୍ରିକା ବାଲାଙ୍କୁ ଟିକିଏ କହିଲେ ସେ ମତେ ତାଙ୍କ ସଂସ୍ଥାରେ ରଖି ଦିଅନ୍ତେ ନାହିଁ ?" କଥାଟା ଦାଦାଙ୍କ ମନକୁ ପାଇଲା । ସେ ସାଙ୍ଗେ ସାଙ୍ଗେ କହିଲେ, "ଅମୃତ ବଜାରର କିଏ ଏଠି ଅଛି, ତାକୁ ଟେଲିଫୋନ ଲଗା । ମୁଁ କଥା ହେବି ।" ମୁଁ ଟେଲିଫୋନ ଲଗାଇ ଦାଦାଙ୍କୁ ଦେଲି । ଦାଦା କହିଲେ, "ମୁଁ ବୀରେନ୍ ମିତ୍ର କହୁଛି । ମୋ ସାନଭାଇ ବସନ୍ତ । ତମ କାଗଜରେ କାମ କରିବ । ତମ ମାଲିକଙ୍କୁ ମୋ ନାଁ କହିବ । ବୀରେନ୍ ମିତ୍ର ନ ଚାହିଁଲେ ତମ କାଗଜର ଅଫିସ କଟକ ସହରରେ ଚାଲିପାରିବ ନାହିଁ । ମାଲିକ କ'ଣ କହିଲେ ମତେ ଶୀଘ୍ର ଜଣାଅ ।" ଟେଲିଫୋନ ଧରିଥିବା ବ୍ୟକ୍ତି କ'ଣ କହିଥିଲେ, ସେକଥା ଜାଣିବାର ମୋର ଉପାୟ ନଥିଲା ।

ଅଧଘଣ୍ଟା ପରେ ଦାଦାଙ୍କ ଟେଲିଫୋନ ରିଙ୍ଗ୍ ହେଲା । ମୁଁ ରିସିଭର ଉଠାଇବାରୁ ସେ ପାଖରୁ ଶୁଣାଗଲା, "ଶ୍ରୀଯୁକ୍ତ ମିତ୍ର ଅଛନ୍ତି ? ତାଙ୍କୁ ଟିକିଏ ଫୋନ ଦିଅନ୍ତୁ ।" ମୁଁ ଦାଦାଙ୍କ ହାତକୁ ରିସିଭର ବଢ଼ାଇଦେଲି । ଦାଦା କିଛି ସମୟ ଶୁଣି ଫୋନ ରଖିଦେଲେ । ମତେ କହିଲେ, "ତୋ କାମ ହୋଇଗଲା । ତାଙ୍କ ଅଫିସରେ ଏବେ କିଛି ପୋଷ୍ଟ ଖାଲି ନାହିଁ । ତଥାପି ସେ ତତେ ପାର୍ଟ-ଟାଇମ୍ କରେସପଣ୍ଡେଣ୍ଟ ଭାବରେ ରଖିବେ । ପରେ ସୁବିଧା ହେଲେ ପରମାନେଣ୍ଟ କରିବେ । ତୁ କାଲିଯାଇ ସେ ବାବୁଙ୍କୁ ଦେଖା କରିବୁ । ତାଙ୍କୁ ମୋ ନାଁ କହିବୁ । ସେ ସବୁ ବ୍ୟବସ୍ଥା କରିଦେବେ ।" ମୁଁ ଦାଦାଙ୍କ ଠାରୁ ବିଦାୟ ନେଇ ଘରକୁ ଫେରିଥିଲି ।

ପରଦିନ ସକାଳ ଦଶଟା ବେଳେ ଯାଇ ତାରାପଦ ଗୁପ୍ତଙ୍କୁ ଦେଖାକଲି । ସେ ମତେ ଚାହିଁ ପଚାରିଥିଲେ, "ତମେ ବସନ୍ତ ଦାସ ? ତମ କଥା ପୂର୍ବତନ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର କହୁଥିଲେ ?" ହଉ ଶୁଣ, ତମେ ଏଠାରେ ଜଣେ "ଷ୍ଟ୍ରିଙ୍ଗର"(ଅସ୍ଥାୟୀ ସାମ୍ବାଦିକ) ଭାବରେ କାମ କରିବ । ତମର ଯେତିକି ଖବର ପତ୍ରିକାରେ ଛପାହେବ, ସେହି ଅନୁଯାୟୀ ପଇସା ପାଇବ । ଗୋଟିଏ କଲମ ନ୍ୟୁଜ ପାଇଁ ପନ୍ଦର ଟଙ୍କା ମିଳିବ । ଯଦି ଏଥିରେ ତମେ ରାଜି, ତାହାହେଲେ ସେହି ଅନୁଯାୟୀ ଦରଖାସ୍ତ ଲେଖି ଦେଇଯାଅ । ଯୋଗୀ ଥାଳରେ ଉଆ, ଉଷୁନାର ବାରଣ କ'ଣ ? ମୋର ଯେତେବେଳେ ଅନ୍ୟ ରୋଜଗାର ବ୍ୟବସ୍ଥା ନଥିଲା, ମୁଁ ଶ୍ରୀ ଗୁପ୍ତଙ୍କ କଥାରେ ରାଜି ହୋଇଥିଲି ।

ସେତେବେଳେ ରାମହରି ମିଶ୍ର ଅମୃତ ବଜାର ପତ୍ରିକାର ପ୍ରତିନିଧି ଭାବରେ କଟକରେ କାର୍ଯ୍ୟ କରୁଥିଲେ । କଟକ ସହରରେ ଯେ କୌଣସି ସଭାସମିତି, ପ୍ରେସ୍ କନ୍‌ଫରେନ୍ସ ପାଇଁ ନିମନ୍ତ୍ରଣପତ୍ର ଆସୁଥିଲା ସେସବୁରେ ରାମହରି ବାବୁ ଯୋଗ ଦେଉଥିଲେ । ଏସବୁକୁ ଛାଡିଦେଲେ କଟକ ସହରରେ ଆଉ ଖବର ମିଳିବାର ବିଶେଷ ସୁଯୋଗ ନଥିଲା ।

ପ୍ରଥମ ମାସରେ ମୋର ମାତ୍ର ଛଅ କଲମ ନ୍ୟୁଜ୍ ହୋଇଥିଲା । ସେ ବାବଦରେ ମୁଁ କେବଳ ନବେ ଟଙ୍କା ପାଇଥିଲି । ମୁଁ ତାରାପଦ ବାବୁଙ୍କୁ ଏ ବିଷୟରେ ଜଣାଇଲି । ସେ ମୋ ପ୍ରତି ସମବେଦନା ପ୍ରକାଶ କଲେ । ମୁଁ କିପରି ଅଧିକ ନ୍ୟୁଜ୍ ଦେଇପାରିବି, ମୋର ମାସକୁ ରୋଜଗାର କିପରି ବଢ଼ିପାରିବ ସେ ସମ୍ପର୍କରେ ସେ କେତେକ ସୂଚନା ଦେଇଥିଲେ ।

"କଟକ ସହରରେ ଅନେକ ଘଟଣା ଘଟୁଛି । ସେସବୁ ପତ୍ରିକାରେ ପ୍ରକାଶ ପାଇପାରୁନାହିଁ । ଶାରୀରିକ ଅକ୍ଷମତା ଯୋଗୁ ରାମହରି ବାବୁ କେବଳ ରୁଟିନ୍ କାମ କରିବା ଛଡା ଅନ୍ୟ କାମ କିଛି କରିପାରୁନାହାନ୍ତି । କଟକରେ ଛୋଟ ବଡ଼ ହୋଇ ଆଠଟି କଲେଜ ଅଛି । ସେସବୁ କଲେଜରେ ଏକାଧିକ ସମସ୍ୟା ରହିଛି । କେଉଁଠି ଅଧ୍ୟାପକ ନାହାନ୍ତି । ଆଉ କେଉଁଠି ହଷ୍ଟେଲ ପରିଚାଳନାରେ ନାନାପ୍ରକାର ଅସୁବିଧା ରହିଛି । ସେସବୁ ଖବର ତମେ ସଂଗ୍ରହ କରିପାରିବ । ତା'ଛଡା କଟକ ସହରରେ ଥାନା, ଡାକ୍ତରଖାନା, ଅଗ୍ନିଶମ ସଂସ୍ଥା, ରେଳବାଇରେ ପ୍ରତିଦିନ କିଛି ନା କିଛି ଘଟଣା ଘଟୁଛି । ଆମ କାଗଜରେ ସେସବୁ ଆମେ ଦେଇପାରିବା । କଟକ ଗୋଟିଏ ସମସ୍ୟା ବହୁଳ ଜିଲ୍ଲା । ପ୍ରତିବର୍ଷ ଏ ଜିଲ୍ଲାରେ ବର୍ଷା, ବନ୍ୟା କିମ୍ବା ବାତ୍ୟା ଯୋଗୁ ବହୁ ଲୋକ ଦୁର୍ଦ୍ଦଶାର ସମ୍ମୁଖୀନ ହେଉଛନ୍ତି । ଆମେ ସେସବୁ ଖବର ପତ୍ରିକାରେ ଛାପି ପାରିବା । ତମେ ସେଦିଗରେ ମନ ଦିଅ । ଯଥେଷ୍ଟ ନ୍ୟୁଜ୍ ମିଳିବ । ତମ ରୋଜଗାର ମଧ୍ୟ ବୃଦ୍ଧି ପାଇବ ।"

ତାରାପଦ ବାବୁଙ୍କ କଥା ମତେ ଯଥେଷ୍ଟ ପରିମାଣରେ ପ୍ରଭାବିତ କଲା । ମୁଁ ନିଷ୍ପତ୍ତି କଲି, ଫାଲତୁରେ ବୁଲି ସମୟ ନଷ୍ଟ ନକରି ମୁଁ ପ୍ରତିଦିନ କିଛି କିଛି ଖବର ସଂଗ୍ରହ ଦିଗରେ ଅଧିକ ଧ୍ୟାନ ଦେବି । ଯାହା ଫଳରେ କଟକ ସହରର ବିଭିନ୍ନ ମହଲରେ ମୁଁ ଜଣାଶୁଣା ହେବା ସହିତ ମୋର ଆର୍ଥିକ ସମସ୍ୟା ମଧ୍ୟ କିଛି ପରିମାଣରେ ଦୂର ହୋଇପାରିବ ।

ମୁଁ ସେତେବେଳେ ଖପୁରିଆ ଅଞ୍ଚଳର ନୟାଚୌକରେ ଥିବା ଆମ ଘରେ ରହୁଥିଲି । ମୁଁ ସକାଳୁ ଉଠି ନିତ୍ୟକର୍ମ ସାରି ନଅଟା ସୁଦ୍ଧା ସାଇକେଲ ଧରି ବାହାରିପଡେ । ଘରେ ଜଳଖିଆ ଖାଇବା ହେଲେ ହେଲା ନହଲେ ନାହିଁ । ଘରୁ ବାହାରିଲେ ପ୍ରଥମେ ରେଲୱେ ଷ୍ଟେସନରେ ଥିବା ରେଲବାଇ ପୁଲିସ୍ ଥାନା(ଜିଆରପି) ପଡ଼େ । ପ୍ରଥମେ ପ୍ରଥମେ ସେଠୁ କିଛି ଖବର ମିଳୁନଥିଲା । କିନ୍ତୁ କିଛିଦିନ ଯିବାଆସିବା କରିବା ଦ୍ୱାରା ଥାନା ଅଫିସର ଓ ଅନ୍ୟମାନଙ୍କ ସାଙ୍ଗରେ ଜଣାଶୁଣା ହୋଇଗଲା । କଥାବାର୍ତ୍ତା ଛଳରେ କେତେକ ଖବର ମଧ୍ୟ ମିଳିଲା ।

ତା'ପରେ ପଡେ ମଙ୍ଗଳାବାଗ ଥାନା । ସେଠୁ ପ୍ରତିଦିନ କିଛି ନା କିଛି ଖବର ମିଳୁଥିଲା । ଖବର ଭିତରେ ଥିଲା ସହରରେ ଜୁଆଆଡ୍ଡା ଉପରେ ଚଡ଼ଉ, କୋଉଠି ଚୋର କି ଡ଼କାୟତ ଗିରଫ, ଆଉ କୋଉଠି ଗାଡ଼ି ଧକ୍କା ଇତ୍ୟାଦି ସମ୍ପର୍କରେ ସୂଚନା ।

ମଙ୍ଗଳାବାଗରୁ କଲେକ୍ଟୋରେଟ ଯିବା ବାଟରେ ଫାୟାର ବ୍ରିଗେଡ ଅଫିସ । ସହରରେ କୋଉଠି ଘରପୋଡି ହୋଇଛି, ନଈରେ ଅକାଳେ ସକାଳେ କିଏ ବୁଡି ଯାଇଛି ସେ ସମ୍ପର୍କରେ ବେଳେବେଳେ ସେ ଅଫିସରୁ ଖବର ମିଳୁଥିଲା ।

କଲେକ୍ଟୋରେଟ୍‌ର ଇମରଜେନ୍ସି ସେକ୍‌ସନ ଓ ପବ୍ଲିକ ରିଲେସନ ସେକ୍‌ସନ ବୁଲାବୁଲି କଲେ କିଛି ନା କିଛି ଖବର ମିଳିଯାଉଥିଲା । ସେତେବେଳେ ଗୋପାଳ ପଟ୍ଟନାୟକ ଜିଲ୍ଲା ଇମରଜେନ୍ସି ଅଫିସର ଥିଲେ । ଭାରି କାମିକା ଲୋକ । ତାଙ୍କ ଅଫିସରେ ସେ ଗୋଟିଏ ପୁଲିସ୍ ଓ୍ୱାରଲେସ୍ ସେଟ୍ ଲଗାଇଥିଲେ । ତା' ଫଳରେ ସମଗ୍ର ରାଜ୍ୟରେ ଯୋଉଠି ଯାହା ଘଟଣା ଘଟୁଥିଲା ସେସବୁ ଖବର ସେ ପାଇ ଯାଉଥିଲେ । ଆମେ ତାଙ୍କ ଅଫିସରେ ବସି ମାଗଣାରେ ଚା' ପିଇବା ସହିତ ପ୍ରତିଦିନ କିଛି କିଛି ଖବର ପାଇଯାଉଥିଲୁ ।

ସବୁ ଯାଗା ବୁଲିସାରି ଅଫିସରେ ପହଞ୍ଚିଲାବେଳକୁ ପ୍ରାୟ ବାରଟା ବାଜି ଯାଉଥିଲା । ଯେଉଁଦିନ ଯାହା ନ୍ୟୁଜ୍ ମିଳୁଥିଲା, ତାକୁ ଘଣ୍ଟାକ ଭିତରେ ତିଆରି କରି ତାରାପଦ ବାବୁଙ୍କୁ ଦେଖାଇ ଗୋଟାଏ ସୁଦ୍ଧା ଟେଲିପ୍ରିଣ୍ଟର ମେସିନ୍ ଦ୍ୱାରା କଲିକତା ଅଫିସକୁ ପଠାଇବାକୁ ପଡୁଥିଲା । କ୍ରମେ ତାହା ଏକ ରୁଟିନରେ ପଡ଼ିଗଲା । କୋଡିଏ, ପଚିଶ କିଲୋମିଟର ସାଇକେଲରେ ବୁଲିଲେ ଜଣାପଡୁନଥିଲା । ଏସବୁ ସତ୍ତ୍ୱେ କିନ୍ତୁ ଘଡି ପୂରୁନଥିଲା ।

ମୋର କାର୍ଯ୍ୟସୀମାର ପରିଧିକୁ କଟକ ସହର ବାହାରକୁ ବଢ଼ାଇବା ପାଇଁ ମୁଁ ସ୍ଥିର କଲି । ସେତେବେଳେ ଅଭୟ ମହାପାତ୍ର କଟକ ଜିଲ୍ଲାର ଲୋକସମ୍ପର୍କ ଅଫିସର ଥିଲେ । ତାଙ୍କ ସହିତ ମୋର ବନ୍ଧୁତା ଥିଲା । ସେ ଚାକିରିରେ ଯୋଗଦେବା ପୂର୍ବରୁ ଛାତ୍ରାବସ୍ଥାରେ ରେଭେନ୍ସା କଲେଜ ଛାତ୍ର ୟୁନିଅନର ସଭାପତି ହୋଇଥିଲେ ।

ସେ ସମୟରେ କଟକ ଜିଲ୍ଲା ଅଧୀନରେ ଜଗତସିଂହପୁର, କେନ୍ଦ୍ରାପଡା, ଯାଜପୁର, ଆଠଗଡ଼ ଇତ୍ୟାଦି ଅନ୍ତର୍ଭୁକ୍ତ ଥିଲା । ସେସବୁ ସ୍ଥାନମାନଙ୍କରେ ବିଭିନ୍ନ ସମୟରେ ସରକାରୀ ଉତ୍ସବ ଅନୁଷ୍ଠିତ ହେଉଥିଲା । ମନ୍ତ୍ରୀମାନେ ସେସବୁ ସ୍ଥାନକୁ ଯାଉଥିଲେ । ମନ୍ତ୍ରୀମାନେ ଗଲେ ସେସବୁ ସ୍ଥାନକୁ ଜିଲ୍ଲା ଲୋକ ସମ୍ପର୍କ ଅଫିସରଙ୍କୁ ମାଇକ୍ ଇତ୍ୟାଦି ଧରି ଯିବାକୁ ପଡୁଥିଲା ।

ମନ୍ତ୍ରୀଙ୍କ ସଭା ସରିଲେ ସେ ରାତିରେ କଟକ ଫେରି ଆସୁଥିଲେ । ମୁଁ ଶ୍ରୀ ମହାପାତ୍ରଙ୍କୁ ତାଙ୍କ ସାଙ୍ଗରେ ବିଭିନ୍ନ ଯାଗାକୁ ଯିବାପାଇଁ ଅନୁରୋଧ କଲି । ସେ ରାଜି ହୋଇଗଲେ । ସେଥିରେ ଉଭୟଙ୍କର ଲାଭ ହେଲା । ବିନା ଖର୍ଚ୍ଚରେ ମନ୍ତ୍ରୀଙ୍କ ସଭାର ବିବରଣୀ ଅମୃତ ବଜାର ପତ୍ରିକାରେ ଛପା ହେଲା । ଅନ୍ୟପକ୍ଷରେ ମୋର ଟି.ଏ. ବାବଦକୁ କିଛି ପଇସା ମଧ୍ୟ ମିଳିଲା ।

ତାରାପଦ ବାବୁ ମୋ ଉଦ୍ୟମରେ ଖୁସୀ ହୋଇ ଟି.ଏ. ବାବଦକୁ ମାସକୁ ପଚାଶ ଟଙ୍କା ଦେବାର ବ୍ୟବସ୍ଥା କରିଦେଇଥିଲେ । ଅଳ୍ପଦିନ ମଧ୍ୟରେ ମୁଁ କଟକର ସାମାଜିକସ୍ତରରେ ଜଣାଶୁଣା ହୋଇଯାଇଥିଲି । ମତେ ଅନେକ ଉତ୍ସବକୁ ଯିବାପାଇଁ ନିମନ୍ତ୍ରଣ ମିଳିଲା ।

ମୁଁ ନିଷ୍ଠାର ସହିତ କାର୍ଯ୍ୟ କଲେ ବି ମନରେ ଶାନ୍ତି ଆସିଲା ନାହିଁ । ମନରେ ଭାବନା ଆସିଥିଲା କେତେଦିନ କାକର ଧରି ଘଡ଼ି ପୂରାଇବାକୁ ଉଦ୍ୟମ କରୁଥିବି ? କାକରରେ କ'ଣ ଘଡି ପୂରିବ ? କିନ୍ତୁ ତାରାପଦ ବାବୁଙ୍କର ଗୋଟିଏ ବାକ୍ୟ, "ବସନ୍ତ, ତମେ ଏବେ ଯାହା ପାଉଛ ସେଥିରେ ତମେ ଖୁସୀ ନ ହୋଇପାର । ମାତ୍ର ଯାହା କରୁଛ ତାହା ତମର ଉଜ୍ଜଳ ଭବିଷ୍ୟତ ଗଢ଼ିବାରେ ନିଶ୍ଚିତ ଭାବରେ ସହାୟକ ହେବ ।" ତାଙ୍କର ସେଦିନର ସେକଥା ମୋର ଆତ୍ମବିଶ୍ୱାସକୁ ବଢ଼ାଇ ଦେଇଥିଲା ।

ସେ ସମୟରେ ଦୂରଦର୍ଶନ କେନ୍ଦ୍ର କଟକରେ ଖୋଲିନଥିଲା । ଲୋକେ ସମ୍ବାଦ ପାଇଁ ଆକାଶବାଣୀ ଉପରେ ନିର୍ଭର କରୁଥିଲେ । ଗାଁ' ଗହଳିରେ ସନ୍ଧ୍ୟା ବେଳେ ଆକାଶବାଣୀରୁ ସମ୍ବାଦ ଶୁଣିବା ପାଇଁ ଲୋକେ ଅପେକ୍ଷା କରି ରହୁଥିଲେ । ରେଡିଓରେ ପ୍ରସାରିତ ସମ୍ବାଦକୁ ଲୋକେ ବିଶ୍ୱାସ କରୁଥିଲେ ।

୧୯୬୯ ମସିହାର ଘଟଣା । ମୋର ବାହାଘର ହୋଇନଥାଏ । ଅମୃତ ବଜାର ପତ୍ରିକାରେ କାମ କରିବା ଫଳରେ କଟକ ସହରରେ ମୋର ଅନେକ ଜଣାଶୁଣା ହୋଇଯାଇଥିଲେ ।

ସେହି ସମୟରେ ସୀମାନ୍ତ ଗାନ୍ଧୀ ନାମରେ ପରିଚିତ ଖାଁ ଅବଦୁଲ୍ ଗଫର ଖାନ୍ ଓଡ଼ିଶା ଆସିଥିଲେ । ତାଙ୍କ କାର୍ଯ୍ୟକ୍ରମର ବିସ୍ତୃତ ପ୍ରସାର ନିମନ୍ତେ କେନ୍ଦ୍ର ସରକାରଙ୍କ ପାଖରୁ ନିର୍ଦ୍ଦେଶ ଆସିଥିଲା ।

ସେତେବେଳେ ସ୍ୱାଧୀନତା ସଂଗ୍ରାମୀ ରାମଚନ୍ଦ୍ର ଦାଶ ଆକାଶବାଣୀ କଟକ କେନ୍ଦ୍ରର ସ୍ଥାନୀୟ ସମ୍ବାଦଦାତା ଥିଲେ । ସେ ସାଇକେଲ ଚଢ଼ି ଜାଣିନଥିଲେ । ଯୁଆଡେ ଦରକାର ପଡୁଥିଲା, ଚାଲି ଚାଲି ଯାଉଥିଲେ । ଗଫର ଖାନ୍‌ଙ୍କ କାର୍ଯ୍ୟକ୍ରମର ବିବରଣୀ ସଂଗ୍ରହ ନିମନ୍ତେ କଟକ ଆକାଶବାଣୀ କେନ୍ଦ୍ରର ଆବଶ୍ୟକ ଷ୍ଟାଫ ନଥିଲେ ।

କଟକ ସହରରେ କାର୍ଯ୍ୟରତ ଥିବା ସାମ୍ବାଦିକଙ୍କ ଭିତରୁ କାହାକୁ ଆଣି କାମ ଚଳେଇବାକୁ କର୍ତ୍ତୃପକ୍ଷ ନିଷ୍ପତ୍ତି କଲେ । ଅମୃତ ବଜାର ପତ୍ରିକାର ସାମ୍ବାଦିକ ଭାବରେ ମୋର ସେତେବେଳକୁ କିଛିଟା ସୁନାମ ହୋଇଥିଲା । ସେଥି ସହିତ ନ୍ୟୁଜ୍‌ରୁମ୍ ସହିତ ମୋର ଭଲ ସମ୍ପର୍କ ମଧ୍ୟ ସୃଷ୍ଟି ହୋଇଥିଲା । ସେମାନେ ବିଚାର କରି ତାଙ୍କୁ ସାହାଯ୍ୟ କରିବାକୁ ମତେ ବାଛିଥିଲେ ।

ଆକାଶବାଣୀ କଟକ କେନ୍ଦ୍ରର ସେତେବେଳେ ନିର୍ଦ୍ଦେଶକ ଥିଲେ ଆର୍.ଏନ୍ ଦାସ । ଉପ-ନିର୍ଦ୍ଦେଶକ ସୁରେନ ମହାନ୍ତି । ଓଡ଼ିଶାର ସାଂସ୍କୃତିକ କ୍ଷେତ୍ରରେ ଜଣେ ସୁପରିଚିତ ବ୍ୟକ୍ତି । ନିର୍ଦ୍ଦେଶକଙ୍କ ଘର କଲିକତାରେ । ଖୁବ୍ ମିଜାଜୀ ଲୋକ । ସଂଧ୍ୟାବେଳେ ଦି ରାଉଣ୍ଡ ହୁଇସ୍କି ପଡ଼ିଗଲେ ତାଙ୍କ ମିଜାଜ୍ ଖୋଲିଯାଏ । ହେଲେ ସବୁ କଥା ସୀମାଭିତରେ । ତାଙ୍କୁ ମାତାଲ ହେବାର କେହି କେବେ ଦେଖିନଥିଲା ।

ସୁରେନ୍ ବାବୁ ମତେ ଆଗରୁ ଜାଣିଥିଲେ । ମତେ ଡକେଇ ପଠେଇ କହିଲେ, "ତୁ ଆମକୁ ଟିକେ ସାହାଯ୍ୟ କର । ପାରିଶ୍ରମିକ ଦିନକୁ ଦଶଟଙ୍କା । ଯେତେବେଳେ ଦରକାର ପଡ଼ିବ ଆସିବୁ ।" ମୁଁ ଭାବିଲି ଯାହାହେଉ, 'ଅରକ୍ଷିତକୁ ଦଇବସାହା' ଭଳି ଭଗବାନ ମୋ ପାଇଁ କିଛି ଅଧିକ ରୋଜଗାରର ବ୍ୟବସ୍ଥା କରିଦେଲେ ।

ଗଫର ଖାନ ତାଙ୍କ ଗସ୍ତ ଶେଷକରି ଓଡ଼ିଶାରୁ ବିଦାୟ ନେଇଗଲେ । ମାତ୍ର ରେଡିଓ ଷ୍ଟେସନ ସହିତ ମୋ ସମ୍ପର୍କକୁ ଯୋଡି ଦେଇଗଲେ । ସେତେବେଳେ ନ୍ୟୁଜ୍‌ରୁମ୍‌ରେ ପାଞ୍ଚଜଣ ଷ୍ଟାଫ ଥିଲେ । ସେମାନଙ୍କ ମଧ୍ୟରେ ଶ୍ରୀମନ୍ତ ପଣ୍ଡା, ବିଜୟକେତନ ମଙ୍ଗରାଜ, ନ୍ୟୁଜ୍ ଏଡିଟର, ଗୋପାଳ ଚୌଧୁରୀ, ହେମନ୍ତ ଦାସ, ସବ୍-ଏଡିଟର ଏବଂ ଦେବେନ୍ଦ୍ର ମିଶ୍ର ନ୍ୟୁଜ୍ ରିଡର । ଏମାନେ ସମସ୍ତେ ନିଜ ଗୁଣରେ ମହୀୟାନ ଥିଲେ ।

ଓଡ଼ିଶାର ଜଣାଶୁଣା ରାଜନେତା ଯଦୁମଣି ମଙ୍ଗରାଜଙ୍କ ପୁଅ ବିଜୟକେତନ । ଜଣେ ପାରଙ୍ଗମ ବ୍ୟକ୍ତି । ଗୋଟିଏ ଛୋଟିଆ ଘଟଣାକୁ ବଡ଼ କରି ପ୍ରସାର କରିବାରେ ତାଙ୍କର ଅସାଧାରଣ ସାମର୍ଥ୍ୟ ଥିଲା ।

୧୯୭୫ ମସିହାର ଘଟଣା । ଭାରତ-ପାକିସ୍ତାନ ଯୁଦ୍ଧର ଅବସାନ ଘଟିଥାଏ । ବୋଧହୁଏ ନଭେମ୍ବର ମାସ । ତାରିଖ ମନେ ନାହିଁ । ସେତେବେଳେ ପ୍ରତିଦିନ ସଂଧ୍ୟାରେ 'ଆଜିର ପ୍ରସଙ୍ଗ' ବୋଲି ଗୋଟିଏ କାର୍ଯ୍ୟକ୍ରମ ପ୍ରସାରିତ ହେଉଥିଲା । ସେ କାର୍ଯ୍ୟକ୍ରମଟି ପୂର୍ବରୁ ରେକର୍ଡିଂ ହୋଇ ନିର୍ଦ୍ଧାରିତ ସମୟରେ ରେଡିଓରେ ବାଜୁଥିଲା । ସାଧାରଣତଃ ଚଳନ୍ତି ଘଟଣା ଉପରେ କାର୍ଯ୍ୟକ୍ରମଟି ପର୍ଯ୍ୟବେଶିତ ଥିଲା ।

ସେଦିନ ଶ୍ରୀ ମଙ୍ଗରାଜ, ପାକ୍ ଶାସକବର୍ଗଙ୍କୁ ଦୃଢ଼ ସମାଲୋଚନା କରି କାର୍ଯ୍ୟକ୍ରମଟି ପ୍ରସ୍ତୁତ କରିଥିଲେ । ସଂଧ୍ୟାବେଳକୁ ପ୍ରସାରିତ ହେବା କଥା । ଶ୍ର ମଙ୍ଗରାଜଙ୍କ ମୁଣ୍ଡକୁ ଗୋଟିଏ ବୁଦ୍ଧି ଜୁଟିଲା । ସେ ଚିନ୍ତାକଲେ, ଆଜିର ପ୍ରସଙ୍ଗ କାର୍ଯ୍ୟକ୍ରମ ସିଧାସଳଖ ପ୍ରସାରକରି ଲୋକଙ୍କୁ ଚକିତ କରିବେ । ସେଥିପାଇଁ ସେ ଭୁବନେଶ୍ୱର ସହରକୁ ବାଛିଲେ ।

ସେହି ଅନୁସାରେ ଯୋଜନା ପ୍ରସ୍ତୁତ ହେଲା । ଆଜିକାଲି ଦୁଇନମ୍ବର ୟୁନିଟ୍‌ରେ ହାଟ ସାମନାରେ ଉଦ୍ୟାନ ବିଭାଗ ପକ୍ଷରୁ ଖୋଲାଯାଇଥିବା ନର୍ସରୀ ସ୍ଥାନଟି ସେତେବେଳେ ଖାଲି ପଡ଼ିଥିଲା । ଯୋଜନା ମୁତାବକ ସେଠାରେ ଖଟ ପକାଯାଇ ଏକ ଅସ୍ଥାୟୀ ଷ୍ଟେଜ ତିଆରି ହେଲା । ମାଇକ୍ରୋଫୋନ, ସାଉଣ୍ଡବକ୍ସ ଇତ୍ୟାଦି ସବୁ ଲାଗିଲା । ବୈଷୟିକ କର୍ମଚାରୀମାନେ ମଧ୍ୟ ସଜାଗ ହୋଇରହିଥିଲେ । ଠିକ୍ ସମୟରେ ଶ୍ରୀ ମଙ୍ଗରାଜ ସେଠାରେ ଆସି ପହଞ୍ଚିଲେ ।

ଷ୍ଟେଜ ଉପରୁ ନାଟକୀୟ ଢ଼ଙ୍ଗରେ ସେ ଘୋଷଣା କଲେ, "ମୁଁ ଆପଣମାନଙ୍କୁ ଏହିଠାରୁ ସିଧାସଳଖ ଆଜିର ପ୍ରସଙ୍ଗ କାର୍ଯ୍ୟକ୍ରମ ପ୍ରସାର କରିବି ।" କିନ୍ତୁ ପ୍ରକୃତରେ ସେ ପୂର୍ବରୁ କାର୍ଯ୍ୟକ୍ରମଟି ରେକର୍ଡ କରି ସାଙ୍ଗରେ ଆଣିଥିଲେ ।

ସେ ୱାନ୍, ଟୁ, ଥ୍ରୀ କହି କର୍ମଚାରୀମାନଙ୍କୁ ରେକର୍ଡ ବଜାଇବାକୁ ଇସାରା ଦେଲେ । ଏକାସାଙ୍ଗରେ ରେକର୍ଡଟି ବାଜିଲା ଏବଂ ସେ କାର୍ଯ୍ୟକ୍ରମଟି ପାଠ କରିବା ଆରମ୍ଭ କଲେ । ସାଧାରଣଲୋକେ ଏହାର ରହସ୍ୟ କିଛି ବୁଝି ପାରିନଥିଲେ । ପ୍ରକୃତରେ କାର୍ଯ୍ୟକ୍ରମଟି ରେଡିଓରେ ପ୍ରଚାରିତ ହେଉଛି କି ନାହିଁ, ବୁଝିବାକୁ ପାଖରେ ଥିବା ସୂଚନା କେନ୍ଦ୍ରକୁ ଧାଇଁଲେ । ପୂର୍ବରୁ ରେକର୍ଡ ହୋଇଥିବା କାର୍ଯ୍ୟକ୍ରମଟି ରେଡିଓରୁ ପ୍ରସାରିତ ହେଉଥିଲା । ଲୋକେ ଶ୍ରୀ ମଙ୍ଗରାଜଙ୍କ କୌଶଳକୁ ବୁଝି ନପାରି ତାଙ୍କୁ ବଧେଇ ଦେଇଥିଲେ ।

ନ୍ୟୁଜ୍ ରୁମ୍‌ରୁ କେହି ଛୁଟି ନେଲେ ମତେ ଡ଼ାକରା ହେଉଥିଲା । କେବଳ ନ୍ୟୁଜ୍ ପଢ଼ିବା ବ୍ୟତୀତ ଆଉ ସବୁ କାମ ମତେ କରିବାକୁ ପଡୁଥିଲା । ସେତେବେଳେ ଏକାଧିକ ବାଟରେ ନ୍ୟୁଜ ରୁମ୍‌କୁ ଖବର ଆସୁଥିଲା । କଟକ, ଭୁବନେଶ୍ୱର ସମେତ ବିଭିନ୍ନ ଜିଲ୍ଲାରେ ଥିବା ଆକାଶବାଣୀ ପ୍ରତିନିଧିମାନେ ପ୍ରତିଦିନ କିଛି କିଛି ନ୍ୟୁଜ୍ ଫୋନ୍ ଯୋଗେ ଡାକି ଦେଉଥିଲେ । ମଝିରେ ମଝିରେ ଟେଲିଗ୍ରାମ ଯୋଗେ ଖବର ପଠାଉଥିଲେ । ତା'ଛଡା ପି.ଟି.ଆଇ, ୟୁ.ଏନ.ଆଇ. ଓ ହିନ୍ଦୁସ୍ଥାନ ସମାଚାର ସୂତ୍ରରୁ ମଧ୍ୟ କିଛି ନ୍ୟୁଜ୍ ଆସୁଥିଲା । ଏସବୁକୁ ବାଦ୍‌ଦେଲେ ବିଭିନ୍ନ ବ୍ୟକ୍ତି ବିଶେଷ କିମ୍ବା ଅନୁଷ୍ଠାନର ପ୍ରତିନିଧିମାନେ ସେମାନଙ୍କର ଖବର ଧରି ନ୍ୟୁଜ୍ ରୁମ୍‌କୁ ଆସୁଥିଲେ ।

ସେତେବେଳେ ସକାଳେ ପାଞ୍ଚ ମିନିଟ୍ ଓ ସନ୍ଧ୍ୟାରେ ଦଶ ମିନିଟ୍ ପାଇଁ ନ୍ୟୁଜ୍ ପ୍ରସାରିତ ହେଉଥିଲା । ବେଳେବେଳେ ସେତିକି ସମୟ ପାଇଁ ନ୍ୟୁଜ୍ ମିଳୁ ନଥିଲା । ତାକୁ ଭରଣା କରିବା ପାଇଁ କେନ୍ଦ୍ର ସରକାରଙ୍କ ପକ୍ଷରୁ ଦିଆଯାଇଥିବା ବିଭିନ୍ନ ସଫଳ କାହାଣୀ ଗୋଟିଏ ସ୍ୱତନ୍ତ୍ର ଫାଇଲରେ ରଖାଯାଉଥିଲା । ନ୍ୟୁଜ୍ କମ୍ ପଡ଼ିଲେ ସେଥରୁ ଗୋଟିଏ ଦୁଇଟି ପୃଷ୍ଠା କାଢ଼ି କାମ ଚଳେଇ ଦିଆଯାଉଥିଲା ।

କଅଁଳ ଲୁହାକୁ ବିଲେଇ କାମୁଡ଼ିଲା ଭଳି ମତେ ଦି'ଓଳି ଯିବାକୁ ସେମାନେ କହିଲେ । ମୁଁ ବି କଥା ଭାଙ୍ଗି ନପାରି ଦିନକୁ ଦି'ଥର ଯାଉଥିଲି । ନିୟମ ଦୃଷ୍ଟିରୁ ଦୁଇ ଜଣ ନ୍ୟୁଜ୍ ଏଡିଟରଙ୍କ ଭିତରୁ ଜଣେ କିମ୍ବା ସବ୍-ଏଡିଟରଙ୍କ ମଧ୍ୟରୁ ଜଣେ ଏବଂ ନ୍ୟୁଜ୍ ରିଡର ଡିଭିଟ୍ ସମୟରେ ଉପସ୍ଥିତ ରହିବା କଥା । ମାତ୍ର ମୁଁ ନ୍ୟୁଜ୍ ରୁମ୍‌କୁ ଯିବା ପରେ ସେ ପ୍ରଥା କ୍ରମେ ଭାଙ୍ଗିଗଲା ।

ଅନେକ ସମୟରେ ସକାଳେ କେହି ଆସୁନଥିଲେ । ଶ୍ରୀ ମଙ୍ଗରାଜଙ୍କର ଡ୍ୟୁଟି ଥିଲେ ଫୋନ୍ କରି ପଚାରୁଥିଲେ, "କ'ଣ ଭାଇ, ସବୁ ଠିକ୍ ଚାଲିଛି ? ପାଞ୍ଚ ମିନିଟ୍ ପାଇଁ ନ୍ୟୁଜ ହୋଇଗଲାଣି ? ହଉ, ଯଦି ହୋଇଗଲାଣି ନ୍ୟୁଜ୍ ଛାଡି ଦେ । ସନ୍ଧ୍ୟାବେଳେ ମୁଁ ଯାଇ ଦସ୍ତଗତ କରିଦେବି ।"

ମୁଁ ନ୍ୟୁଜ୍ କାଗଜ ନେଇ ଡ୍ୟୁଟି ରୁମ୍‌ରେ ଥିବା ଅଫିସରଙ୍କୁ ଦେଇଦେଲେ ସେମାନେ ତାକୁ ପ୍ରସାର କରିଦେଉଥିଲେ । ରେଡିଓରେ ନ୍ୟୁଜ୍ ପ୍ରସାରଣ ଏକ ସ୍ପର୍ଶକାତର ବିଷୟ

ହୋଇଥିଲେ ହେଁ ମୋ ଉପରେ ଭରସା କରି ସେମାନେ ମତେ ବ୍ଲାଙ୍କ ଚେକ୍ ଦେଇଥିଲେ । ମୁଁ ମଧ୍ୟ ସେମାନଙ୍କ ଭରସାକୁ ନିଷ୍ଠାର ସହିତ ପାଳୁଥିଲି ।

ସେ ସମୟରେ ନ୍ୟୁଜ୍ ରୁମ୍ ଅନେକଙ୍କ ପାଇଁ ଏକପ୍ରକାର ତୀର୍ଥକ୍ଷେତ୍ର ଥିଲା । ଯେଉଁମାନେ ରେଡିଓ ଷ୍ଟେସନକୁ ଆସୁଥିଲେ, ନ୍ୟୁଜ୍ ରୁମ୍‌ରୁ ଥରେ ବୁଲି ନଗଲେ ସେମାନଙ୍କ ମନ ଶାନ୍ତ ହେଉନଥିଲା । ଓଡ଼ିଶାର ବିଶିଷ୍ଟ ନାଟ୍ୟକାର କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ସ୍ୱନାମଧନ୍ୟ ସାହିତ୍ୟିକ କାଳିନ୍ଦୀ ଚରଣ ପାଣିଗ୍ରାହୀ ପ୍ରମୁଖଙ୍କ ଭଳି ବ୍ୟକ୍ତିତ୍ୱ ଯେ ନ୍ୟୁଜ୍ ରୁମ୍‌କୁ ଆସି ଚା' ପିଉଥିଲେ, ସେକଥା କହିଲେ ଆଜି କେହି ପରତେ ଯିବେ ନାହିଁ ।

ସେ ସମୟରେ କଟକ ରେଡିଓ ଷ୍ଟେସନରୁ ପାଞ୍ଚ ଛଅଟି କାର୍ଯ୍ୟକ୍ରମ ପ୍ରସାରିତ ହେଉଥିଲା । ନ୍ୟୁଜ୍ ବ୍ୟତୀତ ସଙ୍ଗୀତ, ନାଟକ, ଗାଁ'ଗହଳି, ଶିଶୁସଂସାର, କୃଷି କାର୍ଯ୍ୟକ୍ରମ ଓ ବିଭିନ୍ନ ସମସ୍ୟା ସମ୍ପର୍କରେ ସାଧାରଣ ଆଲୋଚନାମାନ କାର୍ଯ୍ୟକ୍ରମରେ ସ୍ଥାନ ପାଉଥିଲା ।

ସଙ୍ଗୀତ ନିର୍ଦ୍ଦେଶକ ରାଖାଲ ମହାନ୍ତିଙ୍କ ନିର୍ଦ୍ଦେଶନାରେ ବାଳକୃଷ୍ଣ ଦାଶ, ଶ୍ୟାମାମଣୀ ପଟ୍ଟନାୟକ, ସିଂହାରୀ ଶ୍ୟାମସୁନ୍ଦର କର, କ୍ଷିତୀଶ ଚନ୍ଦ୍ର ମୈତ୍ରଙ୍କ ଠାରୁ ଆରମ୍ଭ କରି ପ୍ରଣବ ପଟ୍ଟନାୟକ, ଅକ୍ଷୟ ମହାନ୍ତି, ମହମ୍ମଦ ସିକନ୍ଦର ଆଲାମ, ପ୍ରଫୁଲ୍ଲ କର ପ୍ରମୁଖଙ୍କ କଣ୍ଠରୁ ସୁମଧୁର ସଙ୍ଗୀତମାନ ପରିବେଷଣ କରାଯାଉଥିଲା ।

ନାଟକ ବିଭାଗର ଦାୟିତ୍ୱରେ ଥିଲେ ବିଶିଷ୍ଟ ନାଟ୍ୟକାର ମନୋରଞ୍ଜନ ଦାସ । ଗାଁ' ଗହଳି କାର୍ଯ୍ୟକ୍ରମରେ ମଉସା ଓ ମଙ୍ଗୁଳି ଭୂମିକାରେ ଯଥାକ୍ରମେ କୃଷ୍ଣଚନ୍ଦ୍ର ପାଣ୍ଡେ ଓ ଦୀନବନ୍ଧୁ ଦାସ(ଟିମୋ)ଙ୍କ ଅଭିନୟ ହୃଦୟସ୍ପର୍ଶୀ ହେଉଥିଲା ।

ଟିମୋଭାଇ ପାଣିପାଗ ବିବରଣୀ ସଂଗ୍ରହ କରିବାକୁ ସବୁବେଳେ ନ୍ୟୁଜ୍ ରୁମ୍‌କୁ ଆସୁଥିଲେ । ମୁଁ ଦିନେ ତାଙ୍କୁ ଥଟ୍ଟାରେ ପଚାରିଥିଲି, "ହଇଓ ଟିମା ଭାଇ, ତମେ ସବୁଦିନ କହୁଛ, ଯୋଉ ମଝିଆଳି ଢ଼ିପ ଜମିକୁ ପାଣି ଯାଉନାହିଁ, ସେଥିରେ ଚାଷୀ ଭାଇମାନେ ପାଣି ମଡ଼ାଇବାର ବ୍ୟବସ୍ଥା କରିବେ । ତମେ କ'ଣ ଜାଣିନ ମଝି ଢ଼ିପ ଜମିକୁ ପାଣି ଯାଏ ନାହିଁ ବୋଲି ?" ଏଇ କଥାରେ ନ୍ୟୁଜ୍ ରୁମ୍‌ରେ ଥିବା ସମସ୍ତେ ଠୋ ଠୋ ହୋଇ ହସି ଉଠିଥିଲେ ।

ନ୍ୟୁଜ୍ ରୁମ୍‌ରେ ବହୁତ ଥଟ୍ଟାମଜା ହୁଏ । କିନ୍ତୁ ସେକଥାକୁ କେହି ଦିହକୁ ନିଅନ୍ତି ନାହିଁ । ବେଳେବେଳେ ନ୍ୟୁଜ୍ ରିଡର ଦେବୀକା ମହାନ୍ତି ନ୍ୟୁଜ୍ ରୁମ୍‌କୁ ପଶି ଆସିଲେ ବାତାବରଣ ରୋମାଞ୍ଚକର ହୋଇଯାଉଥିଲା । ତାଙ୍କର ଡଉଲଡାଉଲ ଚେହେରା ଅନେକଙ୍କ ମନ ମୋହୁଥିଲା ।

ନ୍ୟୁଜ୍ ରୁମ୍‌କୁ ବୀଣା ଦେବୀ ଆସିଲେ ପରିବେଶ ଜମି ଯାଉଥିଲା । ବୀଣା ଦେବୀଙ୍କୁ ଦ୍ୱିଅର୍ଥ ବୋଧରେ ଯିଏ ଯେତିକି କହୁଥିଲା, ତାଙ୍କଠାରୁ ଅଧିକ ଶୁଣୁଥିଲା । ବାସ୍ତବରେ ସେ ସମୟରେ ଆକାଶବାଣୀ କେନ୍ଦ୍ରରେ ସମସ୍ତେ ଗୋଟିଏ ପରିବାର ଭଳିଆ ଚଳୁଥିଲେ । ସମ୍ପର୍କ ଅତି ମଧୁର ଓ ପବିତ୍ର ଥିଲା ।

ଷ୍ଟେସନ ଡାଇରେକ୍ଟର ଆଇ.ଏନ.ଦାସଙ୍କ ସାଙ୍ଗରେ ଥରେ ଗୋଟିଏ ଭୋଜିରେ ଦେଖା ହୋଇଗଲା । ସେତେବେଳକୁ ତାଙ୍କର ଦି'ରାଉଣ୍ଡ ଶେଷ ହୋଇସାରିଥିଲା । ମତେ ଦେଖି ପଚାରିଲେ, "କି ଖବର, ଏକଟୁ ହବେ ?" ମୁଁ ବିନମ୍ରତାର ସହିତ ନାହିଁ କଲି । ତାଙ୍କର ମନେ ପଡ଼ିଗଲା, ମୁଁ ନ୍ୟୁଜ୍ ରୁମ୍‌ରେ କାମ କରୁଥିଲି ବୋଲି । "ତୁ ମି ଆଜକାଲ ଆମା ଦେର ନ୍ୟୁଜ୍ ରୁମେ କାଜ କରଛ ?" ମୁଁ ଉତ୍ତରରେ କହିଲି ମାସରେ ଦି, ଚାରିଦିନ ଯେତେବେଳେ ଦରକାର ପଡୁଛି, ସେମାନେ ଖବର ଦେଲେ ମୁଁ ଆସୁଛି । ସେ ଆଗରୁ ମୋ ବିଷୟରେ ସବୁକଥା ଜାଣିଥିଲେ । ମିଜାସ୍ ଖୁସ୍ ଥିଲା । ଇଂରାଜୀରେ କହିଲେ, "ଅଲ ରାଇଟ୍, ୟୁ ମିଟ୍ ମି ଇନ୍ ମାଇଁ ଅଫିସ ଟୁମରୋ ।" ସେ ସନ୍ଧ୍ୟାରେ ସେ କଥାର ଅର୍ଥ ମୁଁ କିଛି ବୁଝିପାରିନଥିଲି ।

ତା'ପରଦିନ ପୂର୍ବାହ୍ନ ଏଗାରଟା ବେଳେ ମୁଁ ଯାଇ ଶ୍ରୀ ଦାସଙ୍କୁ ତାଙ୍କ ଅଫିସ୍‌ରେ ଦେଖାକଲି । ମୁଁ କିଛି କହିବା ପୂର୍ବରୁ ସେ କହିଲେ, "I have passed order. You will work in news room for 28 days a month." ଯାହାର ଅର୍ଥ ମୁଁ ଅଠେଇଶ ଦିନ କାମ କଲେ ମାସକୁ ଦୁଇଶହ ଅଶି ଟଙ୍କା ପାଇବି ।

ମୁଁ ଈଶ୍ୱରଙ୍କୁ ଅଶେଷ କୃତଜ୍ଞତା ଜଣାଇ ଘରକୁ ଫେରିଲି । ଭାବିଲି, ଯାହା କହନ୍ତି, ଅରକ୍ଷିତକୁ ଦଇବ ସାହା । ରେଡିଓ ଷ୍ଟେସନରୁ ଯେଉଁ ଚେକ୍ ମିଳୁଥିଲା, ଗେଟ୍ ପାଖରେ ଥିବା ଚା' ଦୋକାନରେ ତାକୁ ଭଙ୍ଗାଇ ଟଙ୍କା ନେଇ ହେଉଥିଲା । ସେଥିପାଇଁ ଦୋକାନୀ କିଛି କମିଶନ କାଟି ରଖୁଥିଲେ । କିନ୍ତୁ ତା' ସତ୍ତ୍ୱେ ବହୁଲୋକ ସେଥିରେ ଉପକୃତ ହେଉଥିଲେ । କାରଣ ସେତେବେଳେ ସମସ୍ତଙ୍କର ବ୍ୟାଙ୍କରେ ଆକାଉଣ୍ଟ ଖୋଲିବାର ବ୍ୟବସ୍ଥା ନଥିଲା । ମୁଁ ବି ସେ ପଥର ପଥିକ ହୋଇଥିଲି ।

ସେ ଦିନର ଷ୍ଟେସନ ଡାଇରେକ୍ଟରଙ୍କର ସେ ନିଷ୍ପତ୍ତି ମୋର ଆର୍ଥିକ ସ୍ଥିତିକୁ ସୁଧାରିବାରେ ବିଶେଷ ପରିମାଣରେ ସହାୟକ ହୋଇଥିଲା ।

ମୁଁ କଟକରେ ଥିବା ପର୍ଯ୍ୟନ୍ତ ମାସରେ ଅଠେଇଶ ଦିନ ଆକାଶବାଣୀରେ କାମ କରୁଥିଲି । ଦିନେ ନ୍ୟୁଜ୍ ପଢ଼ିବା ପାଇଁ କେହି ମିଳିଲେ ନାହିଁ । ଶ୍ରୀମନ୍ତ ପଣ୍ଡାଙ୍କ ସ୍ଥାନରେ ଦେବେନ୍ଦ୍ର ପଟ୍ଟନାୟକ ନ୍ୟୁଜ୍ ଏଡିଟର ଭାବରେ ବଦଳି ହୋଇଆସିଥିଲେ । ମାତ୍ର ତାଙ୍କର ଭଏସ୍ ଟେଷ୍ଟ ହୋଇ ନଥିବାରୁ ତାଙ୍କୁ ନ୍ୟୁଜ୍ ପଢ଼ିବା ପାଇଁ ଅନୁମତି ମିଳିନଥିଲା ।

ମୁଁ ଏ ସଂପର୍କରେ ଷ୍ଟେସନ ଡାଇରେକ୍ଟର ଶ୍ରୀ ଦାସଙ୍କ ଦୃଷ୍ଟି ଆକର୍ଷଣ କରିଥିଲି । ସେ ମତେ ନ୍ୟୁଜ୍ ପଢ଼ିବାକୁ ନିର୍ଦ୍ଦେଶ ଦେଲେ । ମୁଁ ତାଙ୍କ ନିର୍ଦ୍ଦେଶ ପାଳନ ନକରି ବିନମ୍ରତାର ସହିତ କହିଲି, "ମୁଁ ଜଣେ କାଜୁଆଲ୍ ଷ୍ଟାଫ୍ । ନ୍ୟୁଜ୍ ପଢ଼ିବା ମୋ ପକ୍ଷରେ ଉଚିତ୍ ହେବ ନାହିଁ ।"

ଶେଷରେ ନାଟକ ବିଭାଗର ଉର୍ବଶୀ ତ୍ରିପାଠୀଙ୍କୁ ନ୍ୟୁଜ୍ ପଢ଼ିବାକୁ କୁହାଗଲା । କଲେଜ ଜୀବନରୁ ଉର୍ବଶୀ ସାଧାରଣରେ ଖୁବ୍ ଜଣାଶୁଣା ଥିଲେ । ନ୍ୟୁଜ୍ ପଢ଼ିବା ଘଟଣାକୁ ସେ ହାଲୁକା ଭାବେ ଗ୍ରହଣ କରିଥିଲେ । ମାତ୍ର ବାସ୍ତବରେ ସେ ଯେତେବେଳେ ନ୍ୟୁଜ୍ ପଢ଼ିଲେ ତାଙ୍କ ମୁହଁରୁ ଗମ୍ ଗମ୍ ହୋଇ ଝାଳ ବାହାରିଥିଲା ।

ବକ୍ସିବଜାର ଅଞ୍ଚଳରେ ଥିବା ମଧୁପୁର କୋଠୀରୁ ଆକାଶବାଣୀ କ୍ୟାଣ୍ଟନମେଣ୍ଟ ରୋଡ୍‌ର ନିଜସ୍ୱ କୋଠାଘରକୁ ଉଠିଗଲାଣି । ସେଠାରେ ନୂଆ ନୂଆ ବିଭାଗ ଖୋଲିଲାଣି । ଉଚ୍ଚଶିକ୍ଷିତ ବ୍ୟକ୍ତିମାନେ ବିଭିନ୍ନ ଦାୟିତ୍ୱରେ ରହିଲେଣି । ହେଲେ ଆଗର ସେ ବାତାବରଣ ଆଉ ସେଠାରେ ଦେଖିବାକୁ ମିଳୁନାହିଁ । ଆକାଶବାଣୀର ଭାଇଚାରା ସମ୍ପର୍କ କୁଆଡ଼େ ଉଭେଇ ଗଲାଣି । ସମୟକ୍ରମେ ଆକାଶବାଣୀର ଗୁରୁତ୍ୱ ମଧ କମିଗଲାଣି ।

# କାନ୍ଧରେ ୟୁଆଳି ପଡିଲା

କିଛିଦିନର ସାମ୍ବାଦିକତା ଜୀବନ ଭିତରେ ରାଜନୀତି ଆଡ଼କୁ ମନ ପୁଣି ଢ଼ଳିବାକୁ ଲାଗିଲା । ସେଥିପାଇଁ ନିଷ୍ପତ୍ତି କଲି, ବାହାସାହା ହୋଇ ସଂସାର ଜଞ୍ଜାଳରେ ନପଶି, ଖାଇପିଇ ଜୀବନଟାକୁ ଅଯସରେ କଟାଇଦେବି ।

କିନ୍ତୁ ଘରେ ସମସ୍ତେ ବ୍ୟସ୍ତ ହୋଇପଡୁଥିଲେ, ବୟସ ଗଡ଼ିଯିବା ପୂର୍ବରୁ ମତେ କେମିତି ହାତକୁ ଦି'ହାତ କରିଦେବେ । ସେମାନଙ୍କର ଯୁକ୍ତିଥିଲା, ବେକରେ ପଡ଼ିଲେ ବଳେ ବଜେଇବ । ଅନେକ ପ୍ରସ୍ତାବ ମଧ୍ୟ ଆସୁଥିଲା । କିନ୍ତୁ ମୁଁ ଧରାଛୁଆଁ ଦେଉନଥିଲି । ଯୋଉ ବୋଉ ମୋ ଭଳି ଛଅଦିନର ମା'ଛେଉଣ୍ଡ ଛୁଆକୁ ଲହୁଲୁହ ଏକାଠି କରି ଏତେ ବଡ଼ କରିଥିଲା, ତା'ର ଶେଷ ଇଚ୍ଛା ଥିଲା ମୁଁ ଜଲ୍‌ଦି ବାହାହୁଏ । ଘରକୁ ବୋହୂଟିଏ ଆସୁ । ଦିନେ ସେ ମତେ ତା' ମନ କଥା କହିଲା, "ଦେଖ୍, ମୁଁ ଆଉ କେଇଦିନ ରହିବି । ତୋ ମୁଣ୍ଡରେ ଦୋଳମୁକୁଟ ବନ୍ଧା ହେବା କ'ଣ ମୁଁ ଦେଖି ପାରିବିନାହିଁ ? ତୁ କାହିଁକି ରାଜି ହେଉନୁ ? ଆମ ଘରେ କ'ଣ ଖାଇବାକୁ ନାହିଁ ? ଆମେ ଏତେ ଲୋକ ଚଳୁଛୁ, ଆଉ ଜଣେ ଆସିଲେ କ'ଣ ଉପାସ ରହିବ ?" ସେଦିନ ତା' କଥାରେ ଦମ୍ ଥିଲା । କିନ୍ତୁ ମୁଁ କିଛି ଜବାବ ନଦେଇ ତା' କଥାକୁ ଏଡାଇ ଯାଇଥିଲି ।

ସେତେବେଳେ ଓଡ଼ିଶାରେ ସ୍ୱତନ୍ତ୍ର ଦଳ ଓ ଜନ କଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ କ୍ଷମତାରେ ଥିଲେ । ଭାଗୁଆଳି ସରକାର । ରାଜେନ୍ଦ୍ର ନାରାୟଣ ସିଂହଦେଓ (ସ୍ୱତନ୍ତ୍ର ଦଳ) ମୁଖ୍ୟମନ୍ତ୍ରୀ । ପବିତ୍ର ମୋହନ ପ୍ରଧାନ(ଜନ କଂଗ୍ରେସ) ଉପ-ମୁଖ୍ୟମନ୍ତ୍ରୀ । ଶ୍ରୀ ପ୍ରଧାନ ସ୍ୱାଧୀନତା ସଂଗ୍ରାମୀ ଓ ପ୍ରଜା ଆନ୍ଦୋଳନର ନେତା । ଖୁବ୍ ସାଦାସିଧା ଲୋକ । ମନରେ ଗର୍ବ, ଅହଙ୍କାର କିଛି ନଥିଲା । ଅନ୍ୟ ରାଜନୀତି ନେତାଙ୍କ ଭଳି ତାଙ୍କର ଭିତର ବାହାର ଅଲଗା ନଥିଲା । ସେ

କ୍ଷମତାରେ ଥିଲାବେଳେ ଆନୁଷ୍ଠାନିକ ଭାବେ ଦୁର୍ନୀତି ବିରୋଧରେ ସ୍ୱର ଉତ୍ତୋଳନ କରି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ । ତାଙ୍କର ଭାଷଣ ଦେବାର ଶୈଳୀ ଅନ୍ୟଠାରୁ ଭିନ୍ନଥିଲା । ଅଳଙ୍କାର ଓ ଯମକ ଲଗାଇ ଭାଷଣ ଦେଉ ଦେଉ ସେ ସ୍ଥାନ, କାଳ, ପାତ୍ର ସବୁ ଭୁଲି ଯାଉଥିଲେ । ସଭାର ସମୟ ଅତିକ୍ରାନ୍ତ ହୋଇଯାଉଥିଲା । ତାଙ୍କର ନିର୍ମଳ, ନିରପେକ୍ଷ ଆଇନାନୁମୋଦିତ ଶାସନ ସମ୍ପର୍କରେ ଭାଷଣ ଲୋକଙ୍କୁ ଆମୋଦିତ କରୁଥିଲା ।

ସେଦିନ ଥିଲା ୧୯୬୯ ମସିହା ମେ ମାସ ୨୧ ତାରିଖ । ଗୋବିନ୍ଦପୁର ଅଞ୍ଚଳର କୁସୁନୁପୁର ଗାଁରେ ଗୋଟିଏ ସଭା ହେଉଥିଲା । ଶ୍ରୀ ପ୍ରଧାନ ସେଠାରେ ମୁଖ୍ୟ ଅତିଥି ଥିଲେ । ଗାଁରେ ସନ୍ଧ୍ୟାରେ ସଭା ହେଲେ ଡ଼େରିରେ ଆରମ୍ଭ ହୁଏ । ଲୋକେ ଗାଈଗୋରୁ କାମସାରି, ରୋଷେଇବାସ କରି ଖାଇପିଇ ସଭାକୁ ଆସନ୍ତି । ଫେରିବା ସମୟ ଠିକ୍ ନଥାଏ ।

ସେଦିନ ସେଇୟା ହେଲା । ପବିତ୍ର ବାବୁଙ୍କ ଭାଷଣ ପ୍ରାୟ ଦେଢ଼ଘଣ୍ଟା କାଳ ଚାଲିଥିଲା । ସଭାସ୍ଥଳରେ ଅନେକ ଲୋକ ଶୋଇ ପଡ଼ିଥିଲେ । ସଭା ସରିଲା ବେଳକୁ ରାତି ଏଗାର ।

ମୁଁ ଘରେ ପହଞ୍ଚିଥିଲି ରାତି ବାରଟା ପରେ । ସମସ୍ତେ ଶୋଇ ଯାଇଥିଲେ । କେବଳ ବୋଉ ମତେ ଅପେକ୍ଷା କରି ବସିଥିଲା । ଗାଁରେ ସଭାସମିତି ହେଲେ ସାଧାରଣତଃ ଅତିଥିମାନଙ୍କ ପାଇଁ ଖାଇବା, ପିଇବାର ବ୍ୟବସ୍ଥା ହୋଇଥାଏ । ସେ ଦିନ ମଧ୍ୟ ହୋଇଥିଲା ।

ଅତିଥିଙ୍କ ସହିତ ଆମେ ସେଥିରେ ଯୋଗ ଦେଇଥିଲୁ । ଆଉ ଖାଇବାକୁ ଇଚ୍ଛା ନଥିଲା । ଲୁଗାପଟା ବଦଳାଇ ଶୋଇବାକୁ ଗଲାବେଳେ ବୋଉ କହିଲା, "ହଇରେ, ଶୁଣିଲୁଣି, ତୋ ବାହାଘର ଠିକ୍ ହୋଇଗଲା । ଯାହାହେଉ ଷଠିଗୋସେଇଁ ମୋ ଡାକ ଶୁଣିଲେ । ତୋ ମୁଣ୍ଡରେ ଅକ୍ଷତ ଚାଉଳ ପଡ଼ିବ ।" ମୁଁ ସେ କଥା ଉପରେ ଗୁରୁତ୍ୱ ନଦେଇ କହିଲି, "କ'ଣ ସପନ ଦେଖୁଛୁ । ରାତି ବେଶି ହେଲାଣି । ଶୋଇପଡ, ସକାଳେ କଥା ହେବା ।"

ସକାଳେ ମୁଁ ରୁଟିନ କାମରେ ବାହାରିଲା ବେଳକୁ ଖୁଡୀ ମତେ କହିଲା, "ଗଲାବେଳେ ପିଇସାଙ୍କ ବାଟଦେଇ ଯିବୁ । ସେ ଖବର ଦେଇଛନ୍ତି ।" ତା'ପରେ ମୋ ପୋଷାକକୁ ଦେଖି କହିଲା, "ତୋର କ'ଣ ଆଉ ପ୍ୟାଣ୍ଟସାର୍ଟ ନାହିଁ ? ଏଇଟା କ'ଣ ପିନ୍ଧିଛୁ ?" ମୋ ମନରେ ସନ୍ଦେହ ହେଲା । କାଲି ରାତିରେ ବୋଉ କହିଥିବା ମୋ ବାହାଘର କଥା, ସକାଳେ ଭଲଲୁଗା ପିନ୍ଧି ପିଇସାଙ୍କ ପାଖକୁ ଯିବା ପାଇଁ ଖୁଡୀ କଥାରେ କିଛିଟା ସାମଞ୍ଜସ୍ୟ ଥିଲା । ମୁଁ ଖୁଡୀ କଥାକୁ ଏଡେଇ ଦେଇ ଯାହା ପିନ୍ଧିଥିଲି ସେମିତି ସାଇକେଲ ଧରି ବାହାରିଗଲି ।

ମୋ ପିଇସା କୃପାସିନ୍ଧୁ ମହାନ୍ତି, ଏକାଧାରରେ ଜଣେ ଭଲ ଆର୍ଟିଷ୍ଟ ଓ ଫଟୋଗ୍ରାଫର ଭାବରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ସେ ଶ୍ରୀରାମ ଚନ୍ଦ୍ର ଭଞ୍ଜ ମେଡିକାଲ କଲେଜର ପାଥୋଲୋଜି ବିଭାଗରେ ଆର୍ଟିଷ୍ଟ-ଫଟୋଗ୍ରାଫର ଭାବରେ ଚାକିରି କରୁଥିଲେ ।

ସେହି ବିଭାଗରେ ଡାକ୍ତର ଯତୀଶ ଚନ୍ଦ୍ର ଦାସ, ପାଥୋଲୋଜି ଡେମନଷ୍ଟ୍ରେଟର ଥିଲେ । ପିଇସା ଓ ଡଃ ଦାସଙ୍କ ଭିତରେ ଘନିଷ୍ଠ ସମ୍ପର୍କ ଥିଲା । ଡଃ ଦାସ ପିଇସାଙ୍କୁ 'ଦାଦୁ' ବୋଲି ଡାକୁଥିଲେ ।

ଡଃ ଦାସଙ୍କ ଘର ପୁରୀ ଜିଲ୍ଲା ପିପିଲି ନିକଟବର୍ତ୍ତୀ ନୂଆଶାସନ ଗାଁରେ । କିନ୍ତୁ ପ୍ରକୃତରେ ସେମାନେ ପିପିଲିର ମୂଳବାସିନ୍ଦା ନଥିଲେ । ମୁଁ ଶୁଣିଛି ସେମାନଙ୍କର ପୂର୍ବପୁରୁଷମାନେ ଜଗତସିଂହପୁର ଅଞ୍ଚଳର ବାସିନ୍ଦା ଥିଲେ । ସେମାନଙ୍କର ପଟ୍ଟନାୟକ ସାଙ୍ଗିଆ ଥିଲା । ଶ୍ରୀ ଚୈତନ୍ୟ ନଦିଆ ନବଦ୍ୱୀପରୁ ପୁରୀ ଆସିବା ସମୟରେ ଏମାନେ ତାଙ୍କ ସାଙ୍ଗରେ ଆସି ନୂଆ ଶାସନରେ ରହିଯାଇଥିଲେ । ନିଜକୁ ଶ୍ରୀଚୈତନ୍ୟଙ୍କର 'ଦାସ' ବୋଲି ଭାବି ସେମାନେ ପଟ୍ଟନାୟକ ସାଙ୍ଗିଆକୁ ଦାସରେ ବଦଳାଇ ଦେଇଥିଲେ ।

ଡଃ. ଦାସଙ୍କର ଜମିଦାର ଘର । ତାଙ୍କ ଜେଜେ ରାୟସାହେବ ଜାନକୀ ବଲ୍ଲଭ ଦାସ ବ୍ରିଟିଶ ଶାସନ ସମୟରେ ବାରିପଦାର ଏସ୍.ପି ଥିଲେ । ଅଖଣ୍ଡ କ୍ଷମତା ଓ ପ୍ରତିପତ୍ତି ।

ଡଃ ଦାସଙ୍କ ବାପା ଜଗବନ୍ଧୁ ଦାସ କଟକରେ ସେତେବେଳେ ଥିବା ମେଡିକାଲ ସ୍କୁଲରେ ଏଲ୍ଏମ୍ପି ପଢୁଥିଲେ । ତାଙ୍କ ବାପାଙ୍କ ମୃତ୍ୟୁ ପରେ ଅଧାରୁ ପାଠଛାଡି ଜମିଦାରୀ ଦେଖାଶୁଣା କରିବାକୁ ଗାଁକୁ ଫେରି ଆସିଲେ । ଗାଁରେ ତାଙ୍କର ଖୁବ୍ ଖାତିର ଥିଲା । ନୂଆଶାସନ ଗାଁରେ ତାଙ୍କର କେବଳ କୋଠାଘର ଥିବାରୁ ତାଙ୍କୁ ଲୋକେ 'ପକ୍କାବାବୁ' ବୋଲି ଡାକୁଥିଲେ ।

ଶ୍ରୀ ଦାସ ଗାଁରେ ନିଜର ଜମିଦାରୀ ବୁଝିବା ସହିତ ଅନ୍ୟମାନଙ୍କ ସୁଖଦୁଃଖରେ ଭାଗିଦାର ହେଉଥିଲେ । ଅନ୍ୟମାନଙ୍କ ସୁବିଧା ଅସୁବିଧାରେ ସାହାଯ୍ୟ କରୁଥିଲେ । ସେ ଦୁଇ ଦୁଇଥର ପିପିଲି ପଞ୍ଚାୟତ ସମିତିର ଅଧ୍ୟକ୍ଷ ହୋଇଥିଲେ । ତାଙ୍କ ସମୟରେ ପିପିଲି ବ୍ଲକ ଅଞ୍ଚଳର ଅନେକ ଜନହିତକର କାମ ହୋଇପାରିଥିଲା । ଲୋକେ ଏବେ ବି ତାଙ୍କୁ ମନେ ରଖିଛନ୍ତି ।

ତାଙ୍କର ପାଞ୍ଚ ପୁଅ ଓ ଛଅ ଝିଅ । ସମସ୍ତେ ଉଚ୍ଚଶିକ୍ଷିତ । ବଡ଼ପୁଅ ଡଃ.ଯତୀଶ ଚନ୍ଦ୍ର ଦାସ ପରିବାର ନିୟନ୍ତ୍ରଣ ବିଭାଗର ନିର୍ଦ୍ଦେଶକ ହୋଇଥିଲେ । ଦ୍ୱିତୀୟ ପୁତ୍ର ଡଃ. ଜନମୋହନ ଦାସ ପଶୁପାଳନ ବିଭାଗର ଡେପୁଟି ଡାଇରେକ୍ଟର ଥିଲେ । ତୃତୀୟ ପୁତ୍ର ଜୟପ୍ରକାଶ ଦାସ ଜଳସେଚନ ବିଭାଗର ଚିଫ୍ ଇଞ୍ଜିନିୟର ହୋଇଥିଲେ । ଚତୁର୍ଥ ପୁତ୍ର ଡଃ. ଯମୁନା ପ୍ରସାଦ ଦାସ ଚର୍ମ ବିଭାଗର ବିଶେଷଜ୍ଞ ଡାକ୍ତର ଥିଲେ । ସାନ ପୁଅ ଜୟ ଚନ୍ଦ୍ର ଦାସ ଦିଲ୍ଲୀରେ ଆଖି ଡାକ୍ତର ହିସାବରେ ସୁନାମ ଅର୍ଜନ କରିଥିଲେ ।

ଆଗରୁ ଦି' ଝିଅଙ୍କର ବାହାଘର ହୋଇସାରିଥିଲା । ଆଉ ଦି'ଜଣଙ୍କର ବାହାଘର ଠିକ୍ ହୋଇଥିଲା । ଡଃ ଦାସ ଖୁବ୍ ଶାନ୍ତ, ସରଳ ଓ ଅମାୟିକ ବ୍ୟକ୍ତି । ଅଳ୍ପ କଥା କହନ୍ତି । ପୋଷାକ ପରିଚ୍ଛଦ ସାଧାରଣ, କିନ୍ତୁ ମାର୍ଜିତ ।

ମୁଁ ପିଇସାଙ୍କ ପାଖରେ ପହଞ୍ଚିଲାବେଳକୁ ଡଃ ଦାସ ତାଙ୍କ ପାଖରେ ବସିଥିଲେ । ପିଇସା ମତେ ପରିଚୟ କରିଦେଇ କହିଲେ, "ଯେ ହେଉଛନ୍ତି ଯତୀଶ ବାବୁ । ଆମ ଡିପାର୍ଟମେଣ୍ଟରେ ଡେମନଷ୍ଟ୍ରେଟର ଅଛନ୍ତି । ତାଙ୍କ ଭଉଣୀ ଗୁନୀ ସାଙ୍ଗରେ ତୋ ବାହାଘର ଠିକ୍ ହୋଇଛି । ତୁ କ'ଣ କହୁଛୁ ?"

ମୁଁ କିଛି ନବୁଝି କହିଦେଲି, "ଯଦି ସମସ୍ତେ ଠିକ୍ କରିଛନ୍ତି ମୋର କ'ଣ କହିବାର ଅଛି ?" ମୋ କଥା ଶୁଣି ଉଭୟେ ଖୁସୀ ହୋଇଯାଇଥିଲେ । କିଛି ପ୍ରକାଶ କରିନଥିଲେ ମଧ ସେମାନଙ୍କ ମୁଖମଣ୍ଡଳରୁ ସେକଥା ବାରି ହୋଇପଡୁଥିଲା ।

ଡଃ ଦାସ ମତେ ଲକ୍ଷ୍ୟ କରି କହିଲେ, "ଦେଖନ୍ତୁ, ମୋର ଦି ଉଭଣୀଙ୍କର ବାହାଘର ଆଗରୁ ଠିକ୍ ହୋଇଛି । ଏ ଭଉଣୀଟି ଶୈଳବାଳା ଓମେନ୍ସ କଲେଜରେ ବି.ଏସ୍.ସି ପଢୁଛି । ଗ୍ରାଜୁଏଟ୍ ହେବାପରେ ତା ବାହାଘର କରିବା ପାଇଁ ଆମେ ଠିକ୍ କରିଥିଲୁ ।"

ଦାଦୁ ତମ କଥା କହିବାରୁ ଆମେ ଆମ ମତ ବଦଳାଇଲୁ । ମୁଁ ଗାଁ'କୁ ଯାଇ ବାପାଙ୍କୁ ସବୁକଥା କହିଲି । ସେ ଏକାଦିନେ ତିନି ଝିଅଙ୍କ ବାହାଘର କରିବାକୁ ରାଜି ହେଉନଥିଲେ । ତା'ଛଡା ପାଞ୍ଚ, ଛଅଦିନ ଭିତରେ ଆଉ ଗୋଟିଏ ଝିଅକୁ ବାହା କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ବୋଲି ବାପା କହୁଥିଲେ । କିନ୍ତୁ ବାପାଙ୍କୁ ବୁଝାବୁଝି କରିବାରୁ ସେ ରାଜି ହେଲେ ।

ଗତକାଲି ମୁଁ ବାପାଙ୍କୁ ନେଇ ତମ ଘରକୁ ଯାଇଥିଲି । ସେଠାରେ କଥାବାର୍ତ୍ତା ହେଲା । ତମ ସାଙ୍ଗରେ ଦେଖା ହୋଇ ପାରିଲାନାହିଁ । କିନ୍ତୁ ତମ ଫଟୋ ଦେଖି ବାପା ରାଜି ହୋଇଗଲେ । ଆମେ ଦି' ଜ୍ୱାଇଁଙ୍କୁ ସ୍କୁଟର ଓ ଅନ୍ୟାନ୍ୟ ଜିନିଷ ଦେଉଛୁ । ତମର କ'ଣ ଦରକାର ଥିଲେ କୁହ ? ଆମେ ତାକୁ ପୂରଣ କରିବାକୁ ଚେଷ୍ଟା କରିବୁ ।

ସାମ୍ବାଦିକତା ଜୀବନ ଭିତରେ ମୁଁ ସେତେବେଳେ ଅଧିକ ପ୍ରଗଳଭ ଓ ସ୍ପଷ୍ଟବାଦୀ ଥିଲି । ଯାହା କହନ୍ତି 'ନବାବ ପୁଅକୁ ଜବାବ' ଦେଲାଭଳି । ମୁଁ ଡଃ ଦାସଙ୍କୁ ନିଶଙ୍କୋଚରେ କହିଲି, "ଦେଖନ୍ତୁ, ମୁଁ ଜୀବନରେ ଦୁଇଟି କାମ କରିବି ନାହିଁ ବୋଲି ନିଷ୍ପତ୍ତି କରିଥିଲି । ପ୍ରଥମଟି ହେଲା, ନିଜେ ଠିକ୍ କରି ଯାହାକୁ କହନ୍ତି 'ଲଭ ମ୍ୟାରେଜ' କରିବି ନାହିଁ । ଅନ୍ୟଟି ହେଲା, ଘରେ ଯୋଉଠି ବାହାଘର ଠିକ୍ କରିବେ ସେଥିରେ ରାଜିହେବି । କିଛି ଯାନିଯୌତୁକ ଦାବି କରିବି ନାହିଁ । ସେ ଦୃଷ୍ଟିରୁ ଯଦି ଆପଣ ଯୌତୁକ ଦେବା କଥା ଚିନ୍ତାକରି ମୁଣ୍ଡକୁ ଭାରାକ୍ରାନ୍ତ କରୁଛନ୍ତି, ସେକଥା ଭୁଲି ଯାଆନ୍ତୁ । ମୁଣ୍ଡକୁ ହାଲୁକା କରି ବାହାଘର ଆୟୋଜନରେ ଲାଗନ୍ତୁ ।"

"ମୋର କିନ୍ତୁ ଗୋଟିଏ ଡିମାଣ୍ଡ ଅଛି । ମୁଁ ଗୋଟିଏ ପବ୍ଲିକ ଲାଇଫ୍‌ରେ ଅଛି । ମୋର ଯନ୍ତ୍ରୀଙ୍କ ଠାରୁ ମନ୍ତ୍ରୀଙ୍କ ପର୍ଯ୍ୟନ୍ତ, ଦୋକାନୀ ଠାରୁ ଅମଲା ପର୍ଯ୍ୟନ୍ତ ସମସ୍ତଙ୍କ ସାଙ୍ଗରେ ସମ୍ପର୍କ

ଅଛି । ସେମାନେ ସମସ୍ତେ ମୋ ବାହାଘରେ ବରଯାତି ହୋଇ ଯାଇପାରନ୍ତି । ସେମାନଙ୍କର ଉପଯୁକ୍ତ ଚର୍ଚ୍ଚା ହେବା ଦରକାର । ଚର୍ଚ୍ଚାରେ କମିଲେ ମୁଁ ଅସୁଖୀ ହେବି ।"

ଡକ୍ଟର ଦାସ ମତେ ସାନ୍ତ୍ୱନା ଦେଇ କହିଲେ, "ଆମେ କେବେହେଲେ ଚର୍ଚ୍ଚାରେ ଊଣା କରିବୁ ନାହିଁ । ଆମର ଯଥେଷ୍ଟ ମ୍ୟାନପାୱାର ଅଛି । ଆମ ପରିବାରରେ ଆମେ ଅଠର ଭାଇ । ସମସ୍ତେ ମିଶି ଚର୍ଚ୍ଚାରେ ଲାଗିଯିବୁ ।"

ଡଃ ଦାସଙ୍କର ସେ ଦିନର ଅମାୟିକ ବ୍ୟବହାର ଓ ସ୍ପଷ୍ଟୋକ୍ତି ମତେ ଯଥେଷ୍ଟ ପରିମାଣରେ ପ୍ରଭାବିତ କରିଥିଲା । ପ୍ରଥମ ସାକ୍ଷାତରେ ତାଙ୍କ ପ୍ରତି ମୋର ସମ୍ମାନ ବଢ଼ିଯାଇଥିଲା । ଯାହା ଏ ପର୍ଯ୍ୟନ୍ତ ଅବ୍ୟାହତ ରହିଛି ।

ଅନ୍ୟପକ୍ଷରେ ଡଃ ଦାସଙ୍କର ପ୍ରଥମରୁ ମୋ ସମ୍ପର୍କରେ ଏକ ଭଲ ଧାରଣା ସୃଷ୍ଟି ହୋଇଥିଲା । ଯାହାର ପ୍ରମାଣ ମୁଁ ୨୦୧୪ ମସିହା ଜୁଲାଇ ୨୫ ତାରିଖରେ ପାଇଥିଲି । ସେଦିନ ଡଃ ଦାସଙ୍କର ବିବାହର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ସ୍ୱସ୍ତି ହୋଟେଲରେ ପାଳିତ ହେଉଥିଲା । ଡଃ ଦାସ ସେ ଉତ୍ସବରେ ତାଙ୍କ ଜୀବନର ଅନୁଭୂତି ସମ୍ପର୍କରେ ସୂଚନା ଦେଇଥିଲେ । କଥା ପ୍ରସଙ୍ଗରେ ମୋ ସମ୍ପର୍କରେ ସେ ଯାହା କହିଲେ, ସେଥିରେ ମୋ ମନ କୁଣ୍ଢେମୋଟ ହୋଇଯାଇଥିଲା । ସେଦିନ ମୁଁ ଅନୁଭବ କରିଥିଲି, ଜୀବନରେ ଧନଦୌଲତ ଅପେକ୍ଷା ଉତ୍ତମ ସମ୍ପର୍କର ମୂଲ୍ୟ ଅଧିକ । ମୁଁ ଯଦି ବାହାଘର ବେଳେ ଡଃ ଦାସଙ୍କ ପରିବାରକୁ ଅଡୁଆରେ ପକାଇ କେଇ ହଜାର ଟଙ୍କା ଯୌତୁକ ଆକାରରେ ନେଇଥାନ୍ତି, ତେବେ ହୁଏତ ସାଧାରଣରେ ଡଃ ଦାସଙ୍କ ମୁହଁରୁ ମୋ ପ୍ରଶଂସା ଶୁଣିବାରୁ ବଞ୍ଚିତ ହୋଇଥାନ୍ତି ।

ପିଇସାଙ୍କ ପାଖରୁ ଗଲାପରେ କାମ ବ୍ୟସ୍ତ ଭିତରେ ବାହାଘର କଥା ଭାବିବାକୁ ସମୟ ପାଇନଥିଲି । ଘରକୁ ଫେରିଲା ପରେ ଯେତେବେଳେ ବୋଉ ପଚାରିଲା, "ହଇରେ, ପିଇସାଙ୍କ ପାଖକୁ ଯାଇଥିଲୁ ? ସେଠି ଯତୀଶ ଦେଖାହେଲେ ? କ'ଣ ସବୁ କଥାବାର୍ତ୍ତା ହେଲା ?" ଏମିତି ପାଞ୍ଚ ସାତଟା ପ୍ରଶ୍ନ ସେ ଏକାଥରେ ପଚାରି ଚାଲିଥିଲା । ମୁଁ ତାକୁ ଟିକେ ଚିଡ଼େଇବା ପାଇଁ କହିଲି, "ତମେସବୁ ମତେ କ'ଣ ବୋଲି ଭାବିଛ ? ମୁଁ କ'ଣ ଗୋଟେ ଗୋରୁଖୁଣ୍ଟ । ଯେଉଁ ଗାଈ ବାନ୍ଧିଦେଲେ ମୁଁ ସମ୍ଭାଳି ନେବି । ବାହାଘର କ'ଣ ଖେଳଘର କଥା । ଦେଖା ନାହିଁ, ଚାହାଁ ନାହିଁ, ଜାତକ ପଡ଼ିନାହିଁ, କ'ଣ ନା ବାହାଘର ଠିକ୍ ହୋଇଯାଇଛି । ମୁଁ ସଫା ସଫା ମନାକରି ଦେଇ ଆସିଛି, ସେଠି ମୋର ବାହାଘର ହୋଇପାରିବ ନାହିଁ ।"

ମୁଁ ଲକ୍ଷ୍ୟ କରୁଥିଲି, ବୋଉର ମୁହଁ କେମିତି ଶୁଖି ଶୁଖି ଆସୁଥିଲା । କହିଲା, "ହଇରେ, ତୁ ଏମିତି କ'ଣ କହୁଛୁ ? ସେମାନେ ଆସି କଥା ପକ୍କା କରିଯାଇଛନ୍ତି । ତୁ ମନାକଲେ ଆମ

ନାକ କଟି ଯିବନାହିଁ ? ମୋର ଆଉ କେତେଦିନ ? ମୁଁ କ'ଣ ତୋର ଦୋଳମୁକୁଟ ନଦେଖି ଆଖି ବୁଜିବି ? ତତେ ମୁଁ ଛଅଦିନରୁ ପାଳି ଏତେ ବଡ଼ କଲି । ତୁ ମୋ ଖୁସୀ ଦେଖିବାକୁ ଚାହୁଁନୁ ?" ବୋଉର କଥା ଅତ୍ୟନ୍ତ ହୃଦୟସ୍ପର୍ଶୀ ଥିଲା ।

ସିଏ ସିନା ମତେ ଜନ୍ମ ଦେଇନଥିଲା, ହେଲେ ଜନ୍ମକଲା ପିଲା ଠାରୁ ଅଧିକ କରିଥିଲା । ମୋ ଆଖିରୁ ଲୁହ ବୋହିଲେ ତା' ଦେହରୁ ରକ୍ତ ଝରି ଯାଉଥିଲା । ମୋ ଗୋଡ଼ରେ ଧୂଳି ଲାଗିଲେ ତା ଦେହରେ ପଥର ବାଜିଲା ଭଳି ତାକୁ ଲାଗୁଥିଲା । ତାକୁ ଅଧିକ ମାନସିକ ଯନ୍ତ୍ରଣା ନଦେଇ ମୁଁ କହିଲି, "ହଉ, ଯାହା କରୁଛ କର । ମୋର ଆପତ୍ତି ନାହିଁ ।" ଏତିକି ଶୁଣି ବୋଉ ମୁହଁର ଚେହେରା ବଦଳିଗଲା । ସେ ମନେ କଲା, ସତେ ଯେପରି ତା' ହାତରେ ସରଗର ଚାନ୍ଦ ଖସି ପଡ଼ିଛି ।

ବାହାଘର କଥା ଚିନ୍ତାକରି ମୁଣ୍ଡ ଭାରାକ୍ରାନ୍ତ ହୋଇଗଲା । ମାସକୁ ରୋଜଗାର ଦୁଇଶହ ଟଙ୍କାରୁ କମ୍ । ହାତରେ କିଛି ପଇସାପତ୍ର ନଥିଲା । ବାହାଘର ହବ କେମିତି ? ତା'ଛଡା ଯାହା ସାଙ୍ଗରେ ବାହାଘର ହବ, ସେ କେମିତି ଝିଅ, କଟକରେ ଓମେନ୍ସ କଲେଜରେ ପଢୁଛି । ତା'ର ମନରେ ନିଶ୍ଚୟ କିଛି ଅଭୀପ୍ସା ଥିବ । ବାପାଭାଇଙ୍କ କଥାକୁ ଭାଙ୍ଗିନପାରି ହୁଏତ ସେ ବାହାଘର ପ୍ରସ୍ତାବରେ ରାଜି ହୋଇଯାଇଥିବ । କିନ୍ତୁ ଆମ ଘରକୁ ଆସିବା ପରେ ଯଦି ତା' ମନରେ କିଛି ଅଭାବ ରହିଯିବ, ତା'ହେଲେ ପରିଣତି କ'ଣ ହେବ ? ଅଭାବ ଭିତରେ ସେ ଚଳି ପାରିବ କି ନାହିଁ । ଜମିଦାର ଘର ଝିଅ, ନିଶ୍ଚେ ଅୟସରେ ବଢ଼ିଥିବ । ଏଇସବୁ କଥା ଚିନ୍ତା କରୁ କରୁ ମତେ ନିଦ ଲାଗିଯାଇଥିଲା ।

ନିଦ ଭାଙ୍ଗିଲା ବେଳକୁ ସମୟ ସନ୍ଧ୍ୟା ଛଅଟା ବାଜିଥିଲା । ଘରେ ଟିକେ ଗହଳି ଲାଗିଥିଲା ପରି ମନେହେଲା । ଉଠି ଦେଖିଲାବେଳକୁ ପିଇସୀ ଓ ପିଇସା ଦୁଇଜଣ ଆସି ଆମ ଡ୍ରଇଂ ରୁମ୍‌ରେ ବସିଥିଲେ । ପିଇସାଙ୍କ ହାତରେ ମୋ ଭାବୀ ସ୍ତ୍ରୀଙ୍କର ଗୋଟିଏ ଫଟୋ ଥିଲା । ଉଦ୍ଦେଶ୍ୟ ମତେ ଦେଖାଇବା । ମୁଁ ଫଟୋ ଦେଖି ଆନନ୍ଦିତ ହେବାର ମାନସିକ ସ୍ଥିତିରେ ସେତେବେଳେ ନଥିଲି ।

ମେ ୨୭ ତାରିଖରେ ବାହାଘର ହେବାକୁ ସ୍ଥିର ହୋଇଥିଲା । ମଝିରେ ମାତ୍ର ପାଞ୍ଚଦିନର ବ୍ୟବଧାନ । ତା' ଭିତରେ ନିମନ୍ତ୍ରଣ କାର୍ଡ ଛପା, କାର୍ଡ ବାଣ୍ଟିବା, ବର ଓ ବରଯାତି ଯିବା ପାଇଁ ଗାଡି ମଟରର ବ୍ୟବସ୍ଥା କରିବା, ବାହାଘର ଖର୍ଚ୍ଚ ପାଇଁ ଟଙ୍କା ଯୋଗାଡ କରିବା। ଏସବୁ ବୋଝପରି ଲାଗୁଥିଲା ।

ମୁଁ ସାଙ୍ଗେ ସାଙ୍ଗେ ସାଇକେଲ ଧରି ବାହାରି ପଡ଼ିଲି । ନିମନ୍ତ୍ରଣ କାର୍ଡ କିଣାଯାଇ ସେଇ ରାତିରେ ଛପା ହୋଇଗଲା । ଆମ ଗାଁ' ପାଖ ମଙ୍ଗୁଳିରେ ମାଧବ ବାବୁଙ୍କ ଘର । ମାଧବ ବାବୁ ଅତ୍ୟନ୍ତ ସରଳ ଓ ସ୍ନେହୀ ମଣିଷ ଥିଲେ । ଗର୍ବ କିମ୍ବା ଅହଙ୍କାର ତାଙ୍କ ପାଖରେ ପଶି

ନଥିଲା । ଅତ୍ୟନ୍ତ ସାଧାରଣ ଜୀବନରୁ ସାଧନା ବଳରେ ସେ ନିଜକୁ ସମାଜରେ ଜଣେ ସମାନସ୍ପଦ ବ୍ୟକ୍ତି ଭାବରେ ପ୍ରତିଷ୍ଠିତ କରିପାରିଥିଲେ ।

ସେତେବେଳେ ମାଧବ ବାବୁଙ୍କର କେତେଖଣ୍ଡ ବସ୍ ଜଗତସିଂହପୁର ଓ ତାରାପୁର ଲାଇନରେ ଚାଲୁଥିଲା । ତାଙ୍କ ପୁଅ ରବି ମହାନ୍ତି ରେଭେନ୍ସା କଲେଜର ଛାତ୍ର । ଆମ ଛାତ୍ର ୟୁନିଅନର ସକ୍ରିୟ ସଦସ୍ୟ । ମତେ ଖୁବ୍ ଖାତିର କରେ । ବଡ଼ ଭାଇର ମାନ୍ୟତା ଦିଏ ।

ସେଦିନ ସନ୍ଧ୍ୟାରେ କଲେଜ ଛକରେ ହଠାତ୍ ରବି ସହିତ ଦେଖା ହୋଇଗଲା । ତାକୁ ସବୁକଥା କହିଲି । ସେ ଏତେ ଖୁସୀ ହୋଇଗଲା ଯେ, କହିଲେ ନସରେ । ମତେ କହିଲା, "ଭାଇ ବ୍ୟସ୍ତ କାହିଁ ହେଉଛ ? ଆମେ ପରା ତମ ସାଙ୍ଗରେ ଅଛୁ । କୋଉ କାମ କ'ଣ ଅଟକିଯିବ ? ଖାଲି ତମେ ହୁକୁମ ଦେଲେ ହେଲା ।"

ବାହାଘର ଦିନ ବରଯାତି ଯିବାପାଇଁ ବସ୍‌ଟିଏ ଦେବାକୁ ମୁଁ ରବିକୁ କହିଲି । ମୁଁ ବସ୍‌ର ଭଡ଼ା ନଦେଇ କେବଳ ତେଲ ଖର୍ଚ୍ଚ ଦେବି ବୋଲି ତାକୁ ଜଣାଇଲି । ରବି ପ୍ରତିକ୍ରିୟା ପ୍ରକାଶ କରି କହିଲା, "ଭାଇ ଇଏ ଗୋଟାଏ କଥା । ମୁଁ ବସ୍ ଦେବି, ଆଉ ତମେ ସେଥିରେ ତେଲ ପକାଇବ ? ତେଲ ମୋ ଆଡୁ ପଡ଼ିବ । ମୁଁ କ'ଣ ତମ ସାନଭାଇ ନୁହଁ ।" ରବିର ସେଦିନର କଥା ମୁଁ ଆଜି ପର୍ଯ୍ୟନ୍ତ ଭୁଲି ପାରିନାହିଁ ।

ମଙ୍ଗଳାବାଗରେ ଥିବା ଲକ୍ଷ୍ମୀ ମୋଟର୍ସର ମାଲିକ ଲକ୍ଷ୍ମୀଚାନ୍ଦ । ନୟାଚୌକରେ ଆମ ଘର ପାଖରେ ଘର କରିଥିଲେ । ତାଙ୍କ ସାଙ୍ଗରେ ମୋର ସଦ୍‌ଭାବ ଥିଲା । ମୁଁ ତାଙ୍କ ଘରକୁ ଯାଇ ବାହାଘର କଥା କହି କାର୍ଡ ଖଣ୍ଡିଏ ଦେଲି । ସେ ବହୁତ ଖୁସୀ ହୋଇ କହିଲେ, "ଭାଇ ସାହେବ ବୋଲିୟେ, ମେରେ ଲିୟେ କ୍ୟା ହୁକୁମ ହାଏ । ମେ ଆପକା ସାଦି ମେଁ କୈସେ ମଦଦ୍ କର ସକତା ହୁଁ ?"

ମୁଁ କହିଲି, ମୋ ବାହାଘରେ ଆପଣଙ୍କ ଯୋଗଦାନ ମତେ ସବୁଠାରୁ ଅଧିକ ଆନନ୍ଦ ଦେବ । ତା'ଛଡ଼ା ଆପଣଙ୍କ ଫିଆଟ୍ ଗାଡ଼ି ଦି'ତିନିଦିନ ପାଇଁ ମୋର ଦରକାର ।

ଲକ୍ଷ୍ମୀଚାନ୍ଦ ପଞ୍ଜାବର ମୂଳ ବାସିନ୍ଦା । କଟକରେ ବହୁଦିନ ଧରି ବସବାସ କରୁଥିଲେ । ଖୁବ୍ ପଇସା ବାଲା । ବ୍ୟବହାର ଖୁବ୍ ମାର୍ଜିତ । ଦେଖିଲେ ଆଦର କରନ୍ତି । ଘରକୁ ଗଲେ କିଛି ନଖୁଆଇ ଛାଡନ୍ତି ନାହିଁ ।

ମୋ କଥାଶୁଣି ସେ ବସିବା ସ୍ଥାନରୁ ଉଠିଆସି ମୋ ହାତଧରି ପକାଇ କହିଲେ, "ଭାଇ ସାହେବ, ମାଫ କରେଙ୍ଗେ । ମୁଁ ଆପଣଙ୍କ ସାଦିରେ ରହିପାରିବି ନାହିଁ । ଲେକିନ୍ ମୋର ପିଲାମାନେ ଜରୁର ଯିବେ । ଆଉ ଗାଡ଼ି ଆପଣଙ୍କ ସେବାରେ ରହିବ ।"

ସାଙ୍ଗେ ସାଙ୍ଗେ କଲିଂ ବେଲ୍ ବଜାଇ ଡ୍ରାଇଭରକୁ ଆସିବାକୁ ହୁକୁମ ଦେଲେ । ଡ୍ରାଇଭର ଆସିବାରୁ କହିଲେ, "କାଲିଠାରୁ ତମ ଡିଉଟି ଭାଇ ସାହେବଙ୍କ ଘରେ । ସକାଳେ ଯାଇ

ହାଜର ହେବ । ଯେତେବେଳେ ସେ ଛାଡିବେ ଆସିବ । ସବୁଦିନ ଗାଡ଼ି ଟାଙ୍କିରେ ତେଲ ଫୁଲ୍ କରିଦେବ । ସାଦି କାମ ଶେଷ ହେବା ପର୍ଯ୍ୟନ୍ତ ତାଙ୍କ ସାଙ୍ଗରେ ରହିବ ।"

ଇତିମଧ୍ୟରେ ଜଳଖିଆ ଆସି ଯାଇଥିଲା । ମୁଁ ନାହିଁ କଲେ ବି ସେ ବାଧକରି ଖୁଆଇଲେ । ଲକ୍ଷ୍ମୀଚାନ୍ଦଙ୍କ ଘରୁ ଫେରିଲାବେଳେ ମୁଁ ଭାବିଲି ଭଗବାନଙ୍କର ଅସୀମ କରୁଣା । ବର ଓ ବରଯାତି ଯିବା ପାଇଁ ଗାଡିର ବନ୍ଦୋବସ୍ତ କେଇଘଣ୍ଟା ଭିତରେ ହୋଇଗଲା ।

ତା'ପର ଦିନ ସକାଳେ ଯାଇ ଦାଦା(ବୀରେନ ମିତ୍ର)ଙ୍କୁ ସବୁକଥା ଜଣାଇଲି । ସେ ଖୁସୀ ହୋଇଯାଇ କହିଲେ, ମୋ ଉପରେ କି ଦାୟିତ୍ୱ ? ମୋ ବାହାଘରେ ଯଦି ଆପଣ ଯୋଗଦେବେ ତାହା ମୋ ପାଇଁ ସୌଭାଗ୍ୟର କଥା ହେବ ବୋଲି ମୁଁ ତାଙ୍କୁ କହିଥିଲି ।

ସେ କହିଲେ, "ଦେଖ ବାବା, ମୁଁ ଛୋଟା ଲୋକ । ବରସାଙ୍ଗରେ ଯାଇପାରିବି ନାହିଁ । କିନ୍ତୁ ଭୋଜି ଖାଇବାକୁ ନିଶ୍ଚେ ଯିବି । ଆଉସବୁ ବନ୍ଦୋବସ୍ତ କ'ଣ ହେଲାଣି ? କେତେ ଟୋକା ତୋ ସାଙ୍ଗରେ ଯିବେ । ଗାଡି, ମଟର କଥା କ'ଣ ବ୍ୟବସ୍ଥା ହୋଇଛି ? କ'ଣ ବାକି ଅଛି ମତେ କହ ।"

ଏକାବେଳକେ ଦାଦାଙ୍କର ଏତେଗୁଡାଏ ପ୍ରଶ୍ନ । ମୁଁ କହିଲି, ଆସ୍ତେ ଆସ୍ତେ ସବୁ ବ୍ୟବସ୍ଥା ହେଉଛି । ତେବେ ବରଯାତିରେ ଯିବାକୁ ଯେତେ ଲୋକ ବାହାରିଲେଣି, ସେମାନଙ୍କୁ ନେବାପାଇଁ ଗାଡି, ମଟରର ବ୍ୟବସ୍ଥା ହୋଇପାରିନାହିଁ ।

ଦାଦା ପଚାରିଲେ କେଇଟା ଗାଡି ହେଲେ ଚଳିବ ? ପାଞ୍ଚ, ଛଅଟା କାର୍ କିମ୍ବା ଜିପ୍ ହେଲେ ଚଳିଯିବ ବୋଲି ସଂକ୍ଷିପ୍ତ ଉତ୍ତର ଦେଇଥିଲି । "ଆଚ୍ଛା ହେଉ, ଗାଡ଼ିସବୁ ତମ ଘର ପାଖରେ ପହଞ୍ଚିଯିବ । ସେଥିପାଇଁ ବ୍ୟସ୍ତ ହେବୁ ନାହିଁ ।"

ମୁଁ ଖାଲି ଭାବୁଥିଲି, ସତରେ ଭଗବାନଙ୍କର ମୋ ଉପରେ କେତେ ଆଶୀର୍ବାଦ । ଯାହାକୁ ଯାହା କହିଲେ କାମ ହୋଇଯାଉଛି । ମନରେ ଯେଉଁ ଅଜଣା ଆଶଙ୍କା ସୃଷ୍ଟି ହୋଇଥିଲା, ତାହାକ୍ରମେ କମିବାରେ ଲାଗିଲା । ବାହାଘରଟା ସୁରୁଖୁରୁରେ ହୋଇଯିବ ବୋଲି ମନରେ ଆତ୍ମବିଶ୍ୱାସ ସୃଷ୍ଟି ହେଲା ।

ନିର୍ଦ୍ଧାରିତ ସମୟ ରାତି ନଅଟା ବେଳେ ଆମ ବରଯାତି ଦଳ ପିପିଲି ନିକଟରେ ଥିବା ତେଇଶମାଇଲ୍ ଛକରେ ପହଞ୍ଚିଲା । ସେଠାରୁ ଆମକୁ ପାଛୋଟି ନେବାକୁ ଶଶୁର ଘର ଲୋକେ ଅପେକ୍ଷା କରିଥିଲେ ।

ସେଠାରୁ ନୂଆ ଶାସନର ଦୂରତା ପ୍ରାୟ ଦୁଇ କିଲୋମିଟର । କିଛିବାଟ ଗଲାପରେ ଗାଁ' ମୁଣ୍ଡରୁ ପ୍ରସେସନ ଆରମ୍ଭ ହେଲା । ସେଥିପାଇଁ ବାଜା, ବାଣ, ଲାଇଟ୍ ବ୍ୟବସ୍ଥା ଶଶୁରଘର ପକ୍ଷରୁ କରାଯାଇଥିଲା ।

ଗାଁ' ଭିତରେ ପହଞ୍ଚିଲା ପରେ ମୁଁ ଅବାକ୍ ହୋଇଯାଇଥିଲି । ଗାଁ' ଦାଣ୍ଡ ପୁରା ଲୋକାରଣ୍ୟ ଥିଲା । ଶହ ଶହ ଲୋକ ଜମା ହୋଇଥିଲେ । ମୁଁ ପ୍ରଥମେ କିଛି ବୁଝିପାରିନଥିଲି । ଏତେ ଲୋକଙ୍କ ଭିଡ କାହିଁକି ? ମନେ ପଡ଼ିଗଲା, ଓହୋ ! ଏକା ରାତିରେ ତିନୋଟି ବର ଜଣକ ଘରକୁ ଆସୁଥିବାରୁ ରୋଷଣୀ ଦେଖିବାକୁ ଲୋକଙ୍କ ଭିତରେ ଏତେ ଆଗ୍ରହ ସୃଷ୍ଟି ହୋଇଥିଲା ।

ଦାଣ୍ଡରେ ବଡ଼ ବଡ଼ ଚାନ୍ଦୁଆ ଟଙ୍ଗା ହୋଇଥିଲା । ଲାଇଟ୍‌ର ଝାଡ ଝକ୍‌ମକ୍ କରୁଥିଲା । ତା' ସାଙ୍ଗକୁ ବିଭିନ୍ନ କିସମର ଆତସବାଜି । ଗାଁ'ର ମାଇପେ, ମରଦ, ଛୁଆପିଲା ସମସ୍ତେ ଉପଭୋଗ କରୁଥିଲେ ।

ଆମେ ପହଞ୍ଚିବା ପୂର୍ବରୁ ଆଉ ଗୋଟିଏ ବରଯାତି ଦଳ ପହଞ୍ଚି ସାରିଥିଲେ । କିନ୍ତୁ ଆମକୁ ଦେଖି ଲୋକେ କଥାବାର୍ତ୍ତା ହେଉଥିଲେ । "ଏ କଟକିଆ ବର ସମସ୍ତଙ୍କ ଠାରୁ ସରସା ହେବ । କୋଉ ବର ସାଙ୍ଗରେ ଏତେ ଗାଡ଼ିମଟର ଆସେ । ଏ ନିଶ୍ଚେ ପଇସାବାଲା ହୋଇଥିବ ।" ଲୋକଙ୍କ କଥା ମନରେ ସାନ୍ତ୍ୱନା ଦେଲା । ଯାହାହେଉ, ଲୋକତ ନିନ୍ଦା କରୁନଥିଲେ ।

ଆମ ପାଇଁ ଗୋଟିଏ ଅଲଗା ଖଞ୍ଜାର ବ୍ୟବସ୍ଥା ହୋଇଥିଲା । ବାଟବରଣୀ ପରେ ଆମକୁ ସେଠାକୁ ନିଆଗଲା । ମୁଁ ବର ହୋଇଥିବାରୁ କିଛି କହିବାର ସୁଯୋଗ ନଥିଲା । ମୋ ମନରେ ଆଶଙ୍କା ଥିଲା, ଯୋଉ ବାବୁମାନେ ମୋ ସାଙ୍ଗରେ ବରଯାତ୍ରୀ ହୋଇ ଯାଇଥିଲେ ସେମାନଙ୍କୁ ନିୟନ୍ତ୍ରଣରେ କିଏ ରଖିବ ? ମୁଁ ସବୁବେଳେ ସେମାନଙ୍କ କଥା ବୁଝୁଥିଲି । ସେମାନେ ମୋ କଥା ଅନୁଯାୟୀ ଚଳୁଥିଲେ । ଏବେ କ'ଣ ହେବ ?

ବରଯାତିଙ୍କ ଭିତରୁ ଅଧିକାଂଶ ଥିଲେ ଯୁବକ । ବିଭିନ୍ନ କଲେଜର ଛାତ୍ରନେତା । ସେମାନଙ୍କ ପାଟିରେ ବାଡବତା ରହୁନଥିଲା । କଥା କଥାରେ ଝମେଲା କରିଦେଉଥିଲେ । ମନରେ ଅଜଣା ଆଶଙ୍କା ସୃଷ୍ଟି ହେଲା । ଭଗବାନଙ୍କ ଉପରେ ସବୁକଥା ଛାଡ଼ିଦେଇ ମୁଁ ଚୁପ୍ ହୋଇ ବସି କ'ଣ ଘଟିବାକୁ ଯାଉଛି ତାକୁ ଦେଖିବାକୁ ଅପେକ୍ଷା କରିରହିଲି ।

ବରଯାତିଙ୍କ ଚର୍ଚ୍ଚା ପାଇଁ ସବୁ ବନ୍ଦୋବସ୍ତ ହୋଇଥିଲା । ସେମାନଙ୍କୁ ଫୁଲ, ଚନ୍ଦନ, ମହାପ୍ରସାଦ ଦେବା ପରେ ଖାଇବା ପାଇଁ ଡକାହେଲା । କିନ୍ତୁ ଖାଇବାକୁ ଯିବା ପୂର୍ବରୁ ସେମାନଙ୍କର ବରାଦ ହେଲା, 'କ'ଣ ପଇଡ଼ ଫଇଡ଼ କିଛି ନାହିଁ ?' ରାତି ଦଶଟା ହୋଇଥିଲେ ବି ପଇଡ଼ ପିଇସାରି ଖାଇବାକୁ ଯିବାକୁ ବରଯାତିଙ୍କ ଭିତରୁ କେତେକ ପ୍ରସ୍ତାବ ଦେଲେ ।

ମୋ ମନର ଆଶଙ୍କା ବଢ଼ିବାରେ ଲାଗିଥିଲା । ଭାବିଲି, ଏଇଠୁ ବୋଧେ ଝମେଲା ଆରମ୍ଭ ହୋଇଯିବ । କିନ୍ତୁ ଶଶୁର ଘର ଲୋକେ ଏପରି ଏକ ପରିସ୍ଥିତିର ମୁକାବିଲା କରିବାକୁ ପ୍ରସ୍ତୁତ ହୋଇ ରହିଥିଲେ ।

ପଇଡ଼ ସାଙ୍ଗରେ ମାଲୁଆମାନେ ଅପେକ୍ଷା କରିରହିଥିଲେ । ସାଙ୍ଗେ ସାଙ୍ଗେ ପଇଡ଼ କଟା ଆରମ୍ଭ ହୋଇଗଲା । ପରେ ଶୁଣିଲି, ସେଦିନ ରାତିରେ ଆମ ଭାଇମାନେ ପ୍ରାୟ ଦୁଇଶହ ପଇଡ଼ ଶେଷ କରିଦେଇଥିଲେ ।

ଆମର ବରଯାତିଙ୍କ ସଂଖ୍ୟା ଶହେରୁ ଅଧିକ ଥିଲା । ହେଲେ ସେମାନଙ୍କ ଚର୍ଚ୍ଚାରେ କିଛି ଊଣା ହୋଇନଥିଲା । ସବୁ ବରଯାତିଙ୍କୁ ରାତି ଖାଇବା ସାଙ୍ଗରେ ମାଛମୁଣ୍ଡ ପରଷା ଯାଇଥିଲା । ଖାଇସାରି ଅଧିକାଂଶ ବନ୍ଧୁ କଟକ ଫେରିଯାଇଥିଲେ । କେବଳ କେତେକ ଆତ୍ମୀୟ ସ୍ୱଜନ ଓ ଘନିଷ୍ଠ ବନ୍ଧୁ ମୋ ସାଙ୍ଗରେ ରହିଥିଲେ ।

ଈଶ୍ୱରଙ୍କ ଅପାର କରୁଣାରୁ ରାତିରେ ସୁରୁଖୁରୁରେ ବାହାଘର ହୋଇଗଲା । ସକାଳେ ଗାଧୁଆପାଧୁଆ ପରେ କରଣ ଘରର ବ୍ୟବସ୍ଥା ଅନୁଯାୟୀ 'ମହାପ୍ରସାଦ ସେବା'ର ବନ୍ଦୋବସ୍ତ ହୋଇଥିଲା । ତା'ପରେ ବିଦା ହେବା କଥା । ମାତ୍ର ଶଶୁର ଘର ପଟୁ ଅନୁରୋଧ ଆସିଲା 'ଠା,ପିଢ଼ା'(ମଧ୍ୟାହ୍ନଭୋଜନ) ପରେ ଝିଅ ବିଦା ହେବ । ସେଥିରେ ଆମେ ଆପତ୍ତି କରିନଥିଲୁ ।

ମୋର ମନେ ପଡୁଛି, ଆମେସବୁ ଜଳଖିଆ ଖାଇସାରିବା ପରେ ମୁଁ ବସିଥିବା ଘରକୁ ଶଶୁର ଆସିଥିଲେ । ଚେହେରା ଗମ୍ଭୀର । ମନ ଭାରାକ୍ରାନ୍ତ ।

ମୋ ପାଖରେ ବସି କହିଲେ, "ଦେଖ ବାପା, ତମକୁ ମୋର କିଛି କହିବାର ଅଛି । ଅଳ୍ପ ସମୟ ଭିତରେ ତମ ସାଙ୍ଗରେ ଗୁନୀର ବାହାଘର ଠିକ୍ ହୋଇଗଲା । ଆମେ ପ୍ରସ୍ତୁତ ନଥିଲୁ । ସେଥିପାଇଁ ତମକୁ କିଛି ଦେଇ ପାରିଲୁନାହିଁ । କିଛି ମନେ କରିବ ନାହିଁ ।"

"ହଁ, ଆଉ ଗୋଟିଏ କଥା, ମୋ ପିଲାମାନଙ୍କ ଭିତରୁ ଗୁନୀଟା ନିହାତି ସରଳ । ଛନ୍ଦକପଟ କିଛି ଜାଣେ ନାହିଁ । ଯଦି କିଛି ଭୁଲ୍‌ଭଟକା କରିବ, ତା' କଥା କିଛି ଧରିବ ନାହିଁ । ତା ଦୋଷ କ୍ଷମା କରିଦେବ । ମତେ ଏତିକି କଥା ଦିଅ ।"

ମୁଁ ଲକ୍ଷ୍ୟ କରିଥିଲି, ଏତିକି କହିବା ପରେ ଶଶୁରଙ୍କ ଆଖିରେ ଲୁହ ଜକେଇ ଯାଇଥିଲା । ମୁଁ ତାଙ୍କୁ ସାନ୍ତ୍ୱନା ଦେବାକୁ ଯାଇ କହିଲି, "ଦେଖନ୍ତୁ ଆଜ୍ଞା, ଆପଣଙ୍କ ଝିଅକୁ ସୁଖରେ ରଖିବାକୁ ମୁଁ ସାଧମତେ ଚେଷ୍ଟା କରିବି ।" ବିବାହର ପଇଁଚାଳିଶ ବର୍ଷ ଭିତରେ ସେ ଦିନ ଶଶୁରଙ୍କୁ ଦେଇଥିବା କଥା ମୁଁ କେତେଦୂର ରଖିପାରିଛି, ସେକଥା କେବଳ ତାଙ୍କର ସେ ଅଳିଅଳି ନିରୀହ ଝିଅ ହିଁ କହିପାରିବେ ।

ନୂଆ ଶାସନରୁ ବିଦା ହୋଇ ଆସି କଟକରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ହୋଇଯାଇଥିଲା । ବୋହୂ ଆସିଲା ପରେ ବନ୍ଦାପନା, ଅନ୍ୟାନ୍ୟ ରୀତିନୀତି ପାଳନ କରାଯାଇଥିଲା । ଖାଇବା ପିଇବା ସରିଲା ବେଳକୁ ରାତି ପ୍ରାୟ ଏଗାରଟା । ଆମ ପରିବାରର ପ୍ରଚଳିତ ବିଧି ଅନୁଯାୟୀ ଆମେ ଏକାଠି ରାତ୍ରୀଯାପନ କରିଥିଲୁ ।

ସକାଳେ କବାଟ ଠକ୍‌ଠକ୍‌ରେ ମୋ ନିଦ ଭାଙ୍ଗିଗଲା । ପ୍ରମଦା (ମୋ ଧର୍ମ ପତ୍ନୀ) ସେତେବେଳକୁ ଉଠି ଏକ ଅନିଶ୍ଚିତ ଭବିଷ୍ୟତକୁ ଅପେକ୍ଷା କରି ଘରର ଗୋଟିଏ କୋଣରେ ଛିଡା ହୋଇଥିଲେ ।

ମୁଁ କବାଟ ଖୋଲି ଦେଖିଲା ବେଳକୁ ବୋଉ ସେଠାରେ ଛିଡା ହୋଇଥିଲା । ମତେ କହିଲା, "ଯାଆ ଅନ୍ୟମାନେ ଉଠିଲା ପୂର୍ବରୁ ଗାଧୋଇ ମହାଦେବ ଦର୍ଶନ କରିଦେବୁ ।" ମୁଁ ଅନୁଭବ କରୁଥିଲି, ବିଚିତ୍ର ଏ ଦୁନିଆ । ବିଚିତ୍ର ଏ ସାମାଜିକ ବ୍ୟବସ୍ଥା । ଗୋଟିଏ ରାତିର ବ୍ୟବଧାନ ସତେ ଯେପରି ସବୁକିଛି ବଦଳାଇଦେଲା । ମୋ ଭଳି ଲଗାମଛଡା ଲୋକର ବେକରେ ଜୁଆଳି ପଡ଼ିଗଲା । ମୁଁ ସଂସାରୀ ହୋଇଗଲି ।

ସାମାଜିକ ବ୍ୟବସ୍ଥା ଅନୁଯାୟୀ ଯେଉଁ ଜ୍ଞାତିକୁଟୁମ୍ବ ଓ ବନ୍ଧୁବାନ୍ଧବ ଆସିଥିଲେ ସେମାନେ ଚଉଠି ପର୍ଯ୍ୟନ୍ତ ରହିଥିଲେ । ଗାଁରୁ ଯେଉଁ ବ୍ରହ୍ମା, ପୁରୋହିତ ଆସିଥିଲେ ସେମାନେ ମଧ ରହିଥିଲେ । ଚଉଠି କର୍ମ ସାରି ବୋହୂକୁ ଆମ ଗୋତ୍ରରେ ପୁରାଇ ସେମାନେ ଫେରିଯିବା କଥା ।

ଚଉଠି ଦିନ ମୋ ସାଙ୍ଗମାନେ ମଜା ଦେଖିବା ପାଇଁ ଦୋଳମୁଣ୍ଡେଇ ଛକରେ ଥିବା ଗ୍ରାଣ୍ଡ ସିନେମା ହଲରେ ଆମ ଦି ଜଣଙ୍କ ପାଇଁ ମ୍ୟାଟିନ ସୋ ଯିବାକୁ ଦୁଇଟି ଟିକେଟ୍ କିଣି ମୋ ପାଖକୁ ପଠାଇ ଦେଇଥିଲେ ।

ସେତେବେଳେ ସମାଜରେ ରକ୍ଷଣଶୀଳତାର ରାଜ୍ ଥିଲା । ଷୋ'ଳମଙ୍ଗଳା ନ ଯିବା ପର୍ଯ୍ୟନ୍ତ ବାହାରକୁ ଯିବା ଉପରେ କଟକଣା ରହିଥିଲା । ଆମେ ତାକୁ ରକ୍ଷଣଶୀଳତା ବୋଲି କହିଲେ ବି ତା'ପଛରେ ଗୁରୁତ୍ୱପୂର୍ଣ୍ଣ ଦର୍ଶନ ନିହିତ ଥିଲା । ଘରେ ପନ୍ଦରଦିନ କାଳ ରହିଲେ ସ୍ୱାମୀ ସ୍ତ୍ରୀ ପରସ୍ପରକୁ ଭଲ ଭାବରେ ଜାଣିବାକୁ ସୁଯୋଗ ପାଇବେ । ସେମାନଙ୍କ ମନରେ ପରସ୍ପର ପ୍ରତି ଆବେଗ ବଢ଼ିବ । ସେଥିପାଇଁ ସେପରି ବ୍ୟବସ୍ଥା କରାଯାଇଥିଲା ।

ମୁଁ ଗୋଟାଏ ଉପାୟ ପାଞ୍ଚିଲି । ଆମ ଗାଁ'ର ଘନ ଭାଇନାଙ୍କ  ହାତରେ ଗୋଟିଏ ଦି'ଟଙ୍କିଆ ନୋଟ୍ ଗୁଞ୍ଜିଦେଇ ତାଙ୍କୁ କହିଲି, "ମୁଁ ଟିକେ ବାହାରକୁ ଯାଆନ୍ତି ନାହିଁ ?" ସେ ମୋ ଠାରୁ ଦି'ଟଙ୍କା ପାଇବେ ବୋଲି ଆଶା କରିନଥିଲେ । "ଯାଉନ୍ତୁ, କିଏ ମନା କରୁଛି ?" ତାଙ୍କର ଥିଲା  ସଂକ୍ଷିପ୍ତ ଉତ୍ତର ।

"ନାହିଁମ ଭାଇନା, ବାହାହେଲା ପରେ କିଏ କ'ଣ ଏକା ଯାଏ । ମୋ ସାଙ୍ଗରେ ତମ ବୋହୂ ଯାଇପାରିବ ନାହିଁ ?" ସେ ଟିକିଏ ଭାବିଲେ । କହିଲେ, "ହଁ ସିଏ ଯାଉ । ହେଲେ ସନ୍ଧ୍ୟା ପୂର୍ବରୁ ଫେରିଆସିବ । ଏଠି କର୍ମ ହେବ ।"

ମୁଁ କହିଲି, "ଆମେ ଯିବୁ ଯେ, ତମେ ଟିକେ ବୁଢ଼ୀକୁ(ମୋ ବୋଉ) କହିଦିଅ ।" ନୋଟ୍‌ଟି ଅଣ୍ଟାରେ ଖୋସି ଘନ ଭାଇନା ମୋ ବୋଉକୁ ସମ୍ବୋଧନ କରି କହିଲେ,

"ଖୁଡୀ, ଏମାନେ କୁଆଡେ ବାହାରିଛନ୍ତି । ଯାଆନ୍ତୁ । ପଢ଼ାପିଲା, ଘରେ କେତେ ବସିବେ ?"

ମୁଁ ଭାବିଲି ଘନ ଭାଇନାଙ୍କର ମୋ ପ୍ରତି ଅନୁରକ୍ତି ନୁହଁ, ନାଲି ଦୁଇଟଙ୍କିଆ ନୋଟ୍‌ର ସେ ଥିଲା କରାମତି ।

ସମସ୍ତ କଟକଣାକୁ ଭାଙ୍ଗି ମୁଁ ଧର୍ମପତ୍ନୀଙ୍କ ସହିତ ଚଉଠି ଦିନ ଗ୍ରାଣ୍ଡ ସିନେମା ହଲରେ ଚାଲିଥିବା 'ନୀଳକମଳ' ସିନେମା ଦେଖି, ଏକ ନୂଆ ପରମ୍ପରା ସୃଷ୍ଟି କରିଥିଲି । ଯିବା ପୂର୍ବରୁ ଘନ ଭାଇନା ତାଗିଦ୍ କରି କହିଥିଲେ, ଯାଉଛ ଯଦି ଯାଆ, ସନ୍ଧ୍ୟା ଆଗରୁ ଫେରିଲେ ଚଉଠି କାମ ହେବ ।

ସେ ସମୟରେ ଆମ ପରିବାରରେ କାହାରି କାର୍ ନଥିଲା । ଆମେ ରିକ୍ସାରେ ଗଲୁ । ସିନେମା ହଲ ପାଖରେ ପହଞ୍ଚିଲା ବେଳକୁ ଆଠ ଦଶ ଜଣ ସାଙ୍ଗ ସେଠାରେ ଫୁଲ ତୋଡା ଧରି ଛିଡା ହୋଇଥିଲେ । ମୋ ପତ୍ନୀଙ୍କୁ ଫୁଲତୋଡା ଦେଲାବେଳେ "କ'ଣ ଭାଉଜ, ଚଉଠି ଯାଇନାହିଁ, ଭାଇଙ୍କୁ ହାତକରି ସିନେମା ଦେଖିବାକୁ ଆସିଗଲ" ବୋଲି କହି ଥଟ୍ଟା କରିବାକୁ ଭୁଲି ନଥିଲେ ।

ସିନେମା ହଲରେ ବସିଥିଲା ବେଳେ କିଏ କୋଲଡ୍ରିଙ୍କସ, କିଏ କାଜୁ, ଆଉ କିଏ ଆଇସ୍‌କ୍ରିମ୍ ଆଣି ଦେବାରେ ଲାଗିଥିଲେ । ଆମର ସିନେମା ଦେଖିବାରେ ମନ ନଥିଲା । ଆଉ ଅଧିକା ଥଟ୍ଟାର ଶିକାର ନହେବା ପାଇଁ ମ୍ୟାଟିନ ସୋ ଭାଙ୍ଗିବାର ଦଶ ମିନିଟ୍ ପୂର୍ବରୁ ଆମେ ହଲ୍ ଛାଡି ରିକ୍ସାରେ ଘରକୁ ଫେରି ଆସିଥିଲୁ । ଚଉଠି ପୂର୍ବରୁ ଆମେ ସିନେମା ଯାଇଥିବା କଥା ଦୀର୍ଘଦିନ ଯାଏ ଆମ ପରିବାରର ଅନ୍ୟ ସଦସ୍ୟମାନେ କେହି ଜାଣି ନଥିଲେ ।

ବାହାଘର ପରେ ଘରେ କେତେଦିନ ସୁଖରେ କଟିଗଲା । ବନ୍ଧୁବାନ୍ଧବ ସବୁ ଚାଲିଗଲା ପରେ ସ୍ୱାଭାବିକ ଅବସ୍ଥା ଫେରିଆସିଲା । ସେଥି ସହିତ ମନର ଉତ୍ତାପ ମଧ୍ୟ କମି ଯାଇଥିଲା ।

ଅଳ୍ପଦିନ ଭିତରେ ମୁଁ ଅନୁଭବ କଲି, ବାସ୍ତବରେ ଶଶୁର ଯାହା କହିଥିଲେ ସେକଥା ଅକ୍ଷରେ ଅକ୍ଷରେ ସତ । ପ୍ରମଦା ଅତି ସରଳ, ନିର୍ମାୟା । ପରକୁ ଆପଣାର କରିବାର ଶକ୍ତି ତାଙ୍କ ପାଖରେ ଥିଲା । ମୋର ଛୋଟ ଛୋଟ ଭାଇଭଉଣୀ, କୁନୁମୁନି ଓ ଟୁଟୁଙ୍କୁ ସେ କେଇଦିନରେ ଆପଣାର କରିନେଇଥିଲେ ।

ମୁଁ ମନେ ମନେ ଜୀବନଯାତ୍ରାର ପଥକୁ ଅନୁଶୀଳନ କରୁଥିଲି । ଜୀବନରେ କ'ଣ ହେବି ବୋଲି ଭାବୁଥିଲି, ଆଉ ଶେଷରେ କ'ଣ ହେଲି । ଆଦ୍ୟ ଯୌବନର ସ୍ୱପ୍ନ ଭାଙ୍ଗି ଚୁର୍‌ମାର ହୋଇଗଲା । ବାହାସାହା ନହୋଇ ରାଜନୀତିରେ ଜୀବନ ବିତାଇବି ବୋଲି ଯାହା ଭାବିଥିଲି ତାହା କେବଳ ଭାବନାରେ ହିଁ ରହିଗଲା ।

# ଜୀବନ ଜୀବିକା ପାଇଁ ସଂଗ୍ରାମ

ଅମୃତ ବଜାର ପତ୍ରିକାରେ 'ଷ୍ଟ୍ରିଞ୍ଜର' ଓ ରେଡିଓ ଷ୍ଟେସନରେ ସାମୟିକ କାର୍ଯ୍ୟ ଭିତରେ କୌଣସିମତେ ତିନି ବର୍ଷ କଟିଗଲା । କିନ୍ତୁ ଆର୍ଥିକ ସ୍ଥିତି ଦୃଢ଼ ହୋଇପାରିଲାନାହିଁ । ମୋର ବିବାହ ହୋଇ ପୁଅ ଚନ୍ଦନ ଜନ୍ମ ହୋଇସାରିଥିଲା । ପୁଅ ଜନ୍ମହେବା ସମୟର ଗୋଟିଏ ଦୁଇଟି ଘଟଣାକୁ ମୁଁ ଏବେ ମଧ୍ୟ ଭୁଲି ପାରିନାହିଁ ।

ସେ ସମୟରେ ଆଜିକାଲି ଭଳି ଏତେ ସଂଖ୍ୟାରେ ନର୍ସିଂହୋମ କିମ୍ବା ଘରୋଇ ହସ୍‌ପିଟାଲ ନଥିଲା । କଟକରେ ଥିବା ଶ୍ରୀରାମ ଚନ୍ଦ୍ର ଭଞ୍ଜ ମେଡିକାଲ କଲେଜ ଡାକ୍ତରଖାନା ଉପରେ ଚିକିତ୍ସା ପାଇଁ ନିର୍ଭର କରିବାକୁ ପଡୁଥିଲା ।

ସେଠାକାର ସ୍ଥିତି ଯାହାଥିଲା, ସେଥିରେ ଚିହ୍ନା ପରିଚୟ ଲୋକ ନଥିଲେ, ଉପଯୁକ୍ତ ଚିକିତ୍ସା ମିଳିବା ସମ୍ଭବପର ନଥିଲା । ସହର ଭିତରେ ଦୁଇ, ତିନିଜଣ ଲେଡି ଡାକ୍ତର ଘରୋଇ ଭାବରେ ଚିକିତ୍ସା କରୁଥିଲେ । ସେଥିମଧ୍ୟରୁ ତିନିକୋଣିଆ ବଗିଚାରେ ଥିବା ଡକ୍ଟର ନିରୁପମା ରଥଙ୍କ କ୍ଲିନିକ୍ ଅଧିକ ଲୋକପ୍ରିୟ ଥିଲା । ଡକ୍ଟର ରଥ ଆମ ଗାଁ ପାଖ ବାଗଲପୁରରେ ଜନ୍ମିତ ଓଡ଼ିଶାର ବିଶିଷ୍ଟ ଆଇନଜୀବୀ ଗଙ୍ଗାଧର ରଥଙ୍କ ଧର୍ମପତ୍ନୀ । ସେ ମତେ ଭଲ ଭାବରେ ଜାଣିଥିଲେ । ସେଥିପାଇଁ ମୁଁ ଯେତେବେଳେ ତାଙ୍କ କ୍ଲିନିକ୍‌କୁ ଚେକ୍ ଅପ କରିବାକୁ ପ୍ରମଦାକୁ ନେଇଯାଉଥିଲି, ସେ ମୋ'ଠାରୁ ଫିସ୍ ନେଉନଥିଲେ ।

୧୯୭୧ ମସିହାର ମେ ମାସ ଶେଷ ସପ୍ତାହରେ ପ୍ରମଦାର ଡେଲିଭରୀ ହେବ ବୋଲି ଡାକ୍ତର ସୂଚନା ଦେଇଥିଲେ । ମୋ ହାତରେ ସେତେବେଳେ ଟଙ୍କାପଇସା କିଛି ନଥିଲା । ମନରେ ଆଶଙ୍କା ଥିଲା କ'ଣ ହେବ, କ'ଣ ନାହିଁ । ସେଇଚିନ୍ତା ମନକୁ ଘାରୁଥିଲା ।

ମୁଁ ଦିନେ ସନ୍ଧ୍ୟାରେ ପତ୍ରିକା ଅଫିସରେ ତାରାପଦ ଗୁପ୍ତଙ୍କୁ ସବୁକଥା କହିଲି । ସେ ମତେ ସାନ୍ତ୍ୱନା ଦେଇ କହିଲେ, "ବ୍ୟସ୍ତ ହୁଅ ନାହିଁ । ସବୁ ଠିକ୍ ହୋଇଯିବ ।"

ଏତିକିକହି ସେ ମୋ ହାତରେ ଖଣ୍ଡେ ଶହେ ଟଙ୍କିଆ ନୋଟ୍ ଧରେଇ ଦେଲେ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ତାରାପଦ ବାବୁ ମୋ ମନର ଅବସ୍ଥା ବୋଧେ ବୁଝିପାରି କହିଲେ, "କ'ଣ ଚିନ୍ତା କରୁଛ ? ଏ ଟଙ୍କା ରଖ, ତମର ଯେତେବେଳେ ସୁବିଧା ହେବ ଫେରାଇ ଦେବ । ଆଗ କାମ ଚଳିଯାଉ ।" ସେ ଦିନ ଥିଲା ମେ ମାସ ୨୭ ତାରିଖ ।

ମୁଁ ଶହେ ଟଙ୍କା ଧରି ଚୌଧୁରୀ ବଜାର ବାଟେ ଘରକୁ ଫେରିଥିଲି । ସେ ସମୟରେ ଡାକ୍ତରଖାନାରେ ରହିବା ପାଇଁ ସର୍ବନିମ୍ନ ସିଲିଭର ଡାଳ, ଗ୍ଲାସ, ହାୱାଇ ଚପଲ, ଡେଟଲ, ବିସ୍କୁଟ ଇତ୍ୟାଦିର ଆବଶ୍ୟକ ପଡୁଥିଲା । ମୁଁ ସେସବୁ କିଣି ଘରେ ପହଞ୍ଚିଲା ବେଳକୁ ରାତି ଏଗାରଟା ।

ପ୍ରମଦାର ଲେବର ପେନ୍ ଆରମ୍ଭ ହୋଇଯାଇଥିଲା । ସାଙ୍ଗେସାଙ୍ଗେ ଡାକ୍ତରଖାନା ନେବାର ଆବଶ୍ୟକ ପଡ଼ିଲା । ସେତେବେଳେ ଆମର ପଡ଼ୋଶୀ ଥିଲେ ରେଡିଓଲୋଜି ବିଭାଗର ପ୍ରଫେସର ଡାକ୍ତର ଗୋଲେଖ ବିହାରୀ ମହାନ୍ତି ।

ସେ ପ୍ରମଦାର ଦୂର ସମ୍ପର୍କୀୟ ମାମୁ । ମୁଁ ତାଙ୍କୁ ଯାଇ ସବୁ କଥା କହିଲି । ତାଙ୍କ ଘରେ ଫୋନ୍ ଥିଲା । ସେ ଫୋନ୍ କରି ଡାକ୍ତରଖାନାରୁ ଆମ୍ବୁଲାନ୍ସ ମଗାଇଲେ । ଯଥା ସମୟରେ ପ୍ରମଦା ମେଡିକାଲ ଗଲା । ସାଙ୍ଗରେ ପିଇସା(କୃପାସିନ୍ଧୁ ମହାନ୍ତି) ଯାଇଥିଲେ । ସେ ପାଥୋଲୋଜି ବିଭାଗରେ କାମ କରୁଥିବାରୁ ତାଙ୍କର ଡାକ୍ତର ଓ ଅନ୍ୟାନ୍ୟ ଷ୍ଟାଫ୍‌ଙ୍କ ସହିତ ଭଲ ସମ୍ପର୍କ ଥିଲା ।

ରାତି ତିନିଟା ପାଞ୍ଚ ମିନିଟ୍‌ରେ ଚନ୍ଦନ ଜନ୍ମହେଲା । ପୁଅ ଜନ୍ମ ହୋଇଥିବାରୁ ଘରେ ସମସ୍ତେ ଖୁସୀ ହୋଇଥିଲେ । ଗତ ରାତିରେ ତାରାପଦବାବୁ ଦେଇଥିବା ଶହେ ଟଙ୍କାରୁ ଷାଠିଏ ଟଙ୍କା ବଳିଥିଲା । ମୁଁ ସାଙ୍ଗେ ସାଙ୍ଗେ କିଛି ମିଠା ମଗାଇ ସମସ୍ତଙ୍କୁ ବାଣ୍ଟିଲି ।

ଗୋଟିଏ ଦଶଟଙ୍କିଆ ମିଠା ପ୍ୟାକେଟ ଧରି ତାରାପଦବାବୁଙ୍କ ପାଖକୁ ଗଲି । ବାଟରେ ଗଲାବେଳେ ଡାକ୍ତରଖାନାରେ ମା'ପୁଅଙ୍କୁ ଦେଖିଯାଇଥିଲି । ପୁଅ ହେବା ଖବର ଶୁଣି ତାରାପଦବାବୁ ଖୁବ୍ ଖୁସୀ ହୋଇଥିଲେ । ତାରାପଦବାବୁଙ୍କର ସେ ଦିନର ସାହାଯ୍ୟ ଆଜି ପର୍ଯ୍ୟନ୍ତ ଭୁଲି ପାରିନାହିଁ ।

ସେ ସମୟରେ ପିଲାମାନଙ୍କର ଅମୁଲସ୍ପ୍ରେ ଏକପ୍ରକାର ମୁଖ୍ୟ ଖାଦ୍ୟ ଥିଲା । ଅନେକ ସମୟରେ ଅମୁଲସ୍ପ୍ରେ ବଜାରରେ ମିଳୁ ନଥିଲା । ଆଉ ଯେତେବେଳେ ମିଳୁଥିଲା, ସେତେବେଳେ ମୋ ପାଖରେ ପଇସା ନଥିଲା । ସେଥିପାଇଁ ମୁଁ ସବୁବେଳେ ଦୁଇ, ତିନୋଟି ଅମୁଲସ୍ପ୍ରେ ଡବା ଘରେ ଷ୍ଟକ୍ ରଖୁଥିଲି ।

ଚନ୍ଦନକୁ ଦୁଇବର୍ଷ ହେବାରୁ ତା'ର ଯାଆଁବାଳ ପଡ଼ିବା କଥା ଉଠିଲା । ସାଧାରଣତଃ ଠାକୁର ସ୍ଥାନରେ ଯାଆଁବାଳ ପଡ଼ିବାର ବିଧି ଥିଲା । ଆଗରୁ ପ୍ରମଦା ମାନସିକ କରିଥିବାରୁ

ତାଙ୍କ ଗାଁ' ନୂଆଶାସନର ଅଧିଷ୍ଠାତା ଦେବତା ଶ୍ରୀଲକ୍ଷ୍ମୀନୃସିଂହ ଦେବଙ୍କ ପାଖରେ ଯାଆଁବାଳ ପଡ଼ିବ ବୋଲି ଠିକ୍ ହେଲା ।

ସେତେବେଳେ ପ୍ରମଦା ବାପାଙ୍କର ଗାଁ'ରେ ଖୁବ୍ ପ୍ରତିପତ୍ତି ଥିଲା । ଘରେ ଚାକରବାକର, ଟହଲିଆ, ଖମାରୋଇ ପ୍ରଭୃତି ଥିଲେ । ଟଙ୍କା ପଇସାର ଅଭାବ ନଥିଲା । ଶଶୁର ଖୁବ୍ ଯାକଜମକରେ ଚନ୍ଦନର ଯାଆଁବାଳ ପକାଇଥିଲେ । ଭୋଗରାଗ ସହିତ ଖାଇବାପିଇବାର ମଧ୍ୟ ବନ୍ଦୋବସ୍ତ ହୋଇଥିଲା ।

୧୯୭୧ ମସିହା ପ୍ରାରମ୍ଭରେ ଅମୃତ ବଜାର ପତ୍ରିକା କର୍ତ୍ତୃପକ୍ଷ କଟକରୁ ଅଫିସ୍ ଉଠାଇନେବାକୁ ନିଷ୍ପତ୍ତି କଲେ । କେବଳ ରାମହରିବାବୁ ରହିଲେ କାମ ଚଳିଯିବ ବୋଲି ସେମାନଙ୍କର ଉପଲବ୍ଧ ହେଲା ।

ହେଲେ ଏପରି ଏକ ନିଷ୍ପତ୍ତିରେ ମୋର ଭବିଷ୍ୟତ ଏକପ୍ରକାର ଅନିଶ୍ଚିତ ହୋଇଗଲା । କାରଣ କଲିକତା ପତ୍ରିକା ଅଫିସରେ କାଗଜପତ୍ରରେ ମୋ ନାଁ ନଥିଲା ।

ମୁଁ ଅନିଶ୍ଚିତ ଅବସ୍ଥାରେ ଥିଲାବେଳେ ଈଶ୍ୱର ମୋର ସହାୟତା କଲେ । ପତ୍ରିକା ଅଫିସ କଟକରୁ ଉଠାଇ ଦେବା ସହିତ ଭୁବନେଶ୍ୱର ଅଫିସକୁ ବଢ଼ାଇବା ପାଇଁ କଲିକତାରେ ଯେଉଁ ନିଷ୍ପତ୍ତି ହେଲା, ପରୋକ୍ଷରେ ମୁଁ ସେଥିରେ ଉପକୃତ ହେଲି । ତାରାପଦବାବୁ କଟକ ଛାଡ଼ିବା ପୂର୍ବରୁ ଭୁବନେଶ୍ୱର ଅଫିସରେ ମତେ ରଖିବାର ବ୍ୟବସ୍ଥା କରି ଦେଇଯାଇଥିଲେ ।

ସେତେବେଳେ ପ୍ରାଥମିକ ଅବସ୍ଥାରେ ପ୍ରଜାତନ୍ତ୍ର ଓ ଇଷ୍ଟର୍ଣ୍ଣ ଟାଇମ୍‌ସର ପ୍ରତିନିଧି ଭାବରେ ଭୁବନେଶ୍ୱରରେ ଅବସ୍ଥାପିତ ଗୋପାଳ ମିଶ୍ର ଅମୃତ ବଜାର ପତ୍ରିକାର ସାମୟିକ ସମ୍ବାଦଦାତା ଭାବରେ କାର୍ଯ୍ୟ କରୁଥିଲେ ।

କଟକ ଅଫିସ ବନ୍ଦ ହୋଇଯିବା ପରେ ତାଙ୍କର ପଦୋନ୍ନତି ହୋଇ ସେ ଷ୍ଟାଫ୍ କରେସପଣ୍ଡେଣ୍ଟ ହେଲେ । ସେ ସମୟରେ ରାଜଧାନୀ ଭୁବନେଶ୍ୱର ସହରରେ ହାତଗଣତି କେଇଜଣ ସାମ୍ବାଦିକ ଥିଲେ । ଗୋପାଳବାବୁଙ୍କୁ ବାଦ୍ ଦେଲେ 'ସମାଜ'ର ନାରାୟଣ ରଥ, 'ପ୍ରଜାତନ୍ତ୍ର'ର ବାଳକୃଷ୍ଣ କାନୁନ୍‌ଗୋ, 'ମାତୃଭୂମି'ର ବରେନ୍ଦ୍ରକୃଷ୍ଣ ଧଳ ଏବଂ ଆକାଶବାଣୀର ପ୍ରତିନିଧି ଭାବରେ ପ୍ରଭାକର ମିଶ୍ର ଭୁବନେଶ୍ୱରରେ ଅବସ୍ଥାପିତ ହୋଇଥିଲେ ।

ଏମାନଙ୍କ ସହିତ ଇଂରାଜୀ ସମ୍ବାଦପତ୍ର 'ହିନ୍ଦୁ'ର ପ୍ରତିନିଧି ଥିଲେ ଏନ.ଆର ସ୍ୱାମୀ । କିଛିଦିନ ପରେ 'ହିନ୍ଦୁସ୍ଥାନ ଟାଇମ୍‌ସ'ର ପ୍ରତିନିଧି ଭାବରେ ଯୋଗ ଦେଇଥିଲେ ବଙ୍କିମ ଚନ୍ଦ୍ର ଦାସ ।

ନ୍ୟୁଜ୍ ସରବରାହ ସଂସ୍ଥା ଭାବରେ ଭୁବନେଶ୍ୱରରେ 'ପ୍ରେସ ଟ୍ରଷ୍ଟ ଅଫ୍ ଇଣ୍ଡିଆ'ର ଅଫିସ୍ ଥିଲା । ରାମକୃଷ୍ଣ ବେହେରା ତା'ର ମ୍ୟାନେଜର ଥିଲେ । ଅନ୍ୟତମ ନ୍ୟୁଜ୍ ଚ୍ୟାନେଲ ୟୁନାଇଟେଡ ନ୍ୟୁଜ୍ ଅଫ ଇଣ୍ଡିଆ ସଂସ୍ଥାର ଭୁବନେଶ୍ୱରରେ ଅଫିସ୍ ଖୋଲି

ନଥିଲା । ଭି.କେ ଦିକ୍ଷୀତ, ଇଣ୍ଡିଆନ୍ ଏକ୍ସପ୍ରେସ ସମ୍ବାଦଦାତା ଭାବରେ ପରେ ଭୁବନେଶ୍ୱର ଆସିଥିଲେ ।

ସେ ସମୟରେ ପି.ଟି.ଆଇ.ର ଖୁବ୍ କାଟ୍‌ତି ଥିଲା । ଜାତୀୟ, ଆନ୍ତର୍ଜାତିକ ସମ୍ବାଦ ଏହି ସଂସ୍ଥା ଜରିଆରେ ପରିବେଷିତ ହେଉଥିଲା । ରାଜ୍ୟର ବିଭିନ୍ନ ଅଞ୍ଚଳରେ କୌଣସି ବଡ଼ଧରଣର ଘଟଣା ଘଟିଲେ ପ୍ରଥମେ ପି.ଟି.ଆଇକୁ ସେ ଖବର ଆସିଯାଉଥିଲା ।

ବିନା ପରିଶ୍ରମରେ କିପରି ସେ ସମ୍ବାଦକୁ ନିଜ ନିଜ ସମ୍ବାଦପତ୍ରକୁ ପଠାଇହେବ, ସେଥିପାଇଁ ସେତେବେଳେ ଚାରି, ପାଞ୍ଚଜଣ ସାମ୍ବାଦିକ ମିଶି ସେମାନଙ୍କ ଭିତରେ ଗୋଟିଏ ଗୋଷ୍ଠୀ ଗଠନ କରିଥିଲେ । ପି.ଟି.ଆଇକୁ ଯେଉଁ ସମ୍ବାଦ ଆସୁଥିଲା, ତାକୁ ବିଭିନ୍ନ ସମ୍ବାଦପତ୍ରକୁ ପଠାଇବା ପୂର୍ବରୁ ଶ୍ରୀ ବେହେରା ସେ ଗୋଷ୍ଠୀର ସଦସ୍ୟ ଗୋପାଳ ବାବୁ, ଦିକ୍ଷୀତ ବାବୁଙ୍କୁ ପ୍ରଥମେ ଦେଇ ଦେଉଥିଲେ । ତା' ବଦଳରେ ସେ ଆର୍ଥିକ ଦୃଷ୍ଟିରୁ ଉପକୃତ ହେଉଥିଲେ ।

ମୁଁ ଅନେକଥର ଦେଖିଛି, ବେହେରା ବାବୁ ସକାଳ ଦଶଟା ବେଳକୁ ପତ୍ରିକା ଅଫିସକୁ ଆସି କିଛି ନ୍ୟୁଜ୍ ଟାଇପ୍ କରି ଟେଲିପ୍ରିଣ୍ଟର ମେସିନ ମାଧ୍ୟମରେ କଲିକତାକୁ ପଠାଉଥିଲେ ।

ପରେ ଜାଣିଲି ଗୋପାଳ ବାବୁ ତାଙ୍କୁ ଏଥିପାଇଁ ମାସକୁ ଦୁଇଶହ ଟଙ୍କା ଦେଉଥିଲେ । ସେଥିରେ ଉଭୟଙ୍କର ଲାଭ ହେଉଥିଲା । ଏହି ବ୍ୟବସ୍ଥା ବେଶ୍ କିଛିଦିନ ଧରି ଚାଲିଥିଲା । ଅମୃତ ବଜାର ପତ୍ରିକା, କଲିକତାରୁ ଛପା ଯାଉଥିଲେ ବି ଓଡ଼ିଶା ପାଇଁ ଏକ ସଂସ୍କରଣ ପ୍ରକାଶ ପାଉଥିଲା । ସେଥିରେ ଓଡ଼ିଶାର ଖବର ବିସ୍ତୃତ ଭାବରେ ସ୍ଥାନିତ ହେଉଥିଲା ।

ମୋର ଭୁବନେଶ୍ୱର ଆସିବା ଖବର ମୁଁ ଆସି ପ୍ରଥମେ ଗୋପାଳ ବାବୁଙ୍କୁ ଦେଇଥିଲି । ସେ ଆଗରୁ କଟକରେ 'ପ୍ରଜାତନ୍ତ୍ର'ରେ କାମ କରୁଥିଲେ । ମତେ ଭଲଭାବରେ ଜାଣିଥିଲେ । ଆଦ୍ୟ ଜୀବନରେ ବହୁପ୍ରକାର ଅସୁବିଧାର ସମ୍ମୁଖୀନ ହୋଇ କଷ୍ଟସାଧ୍ୟ ଜୀବନ ବିତେଇଥିଲେ ବି ସମୟର ପରିବର୍ତ୍ତନ ସହିତ ସେ ବଦଳି ଯାଇଥିଲେ ।

ବିତି ଯାଇଥିବା ଦିନର ଅନୁଭୂତିକୁ ସମ୍ପୂର୍ଣ୍ଣ ରୂପେ ଭୁଲି ସେ ଏକ ଆଭିଜାତ୍ୟପୂର୍ଣ୍ଣ ଜୀବନ ଆରମ୍ଭ କରିଦେଇଥିଲେ ।

ମୋର ଭୁବନେଶ୍ୱର ଆସିବା ଖବରକୁ ସେ କେଜାଣି କାହିଁକି ଠିକ୍ ଭାବରେ ଗ୍ରହଣ କରିନଥିଲେ । ମତେ କହିଲେ, "ଦେଖ, ତମେ ଯଦି ଭୁବନେଶ୍ୱର ଆସିବାକୁ ଚାହୁଁଚ ଆସ, ମୋର ଆପତ୍ତି ନାହିଁ । ହେଲେ ତମକୁ ମାସକୁ ଦୁଇଶହ ଟଙ୍କା ମିଳିବ । ଏଥିରେ ଯଦି ରାଜି, ତାହାହେଲେ କାଲିଠୁ ଆସି କାମ କର ।"

ଗୋପାଳ ବାବୁଙ୍କ ବ୍ୟବହାର ମତେ ବ୍ୟଥିତ କରିଥିଲା । କିନ୍ତୁ ସେତେବେଳେ ମୋ ପାଖରେ ଅନ୍ୟକିଛି ଉପାୟ ନଥିଲା । ମୁଁ ଶୁଣିଥିଲି, ଗୋପାଳ ବାବୁ ଚାକିରି ଜୀବନର

ଆରମ୍ଭରେ ପ୍ରଜାତନ୍ତ୍ର ଅଫିସରେ ରହୁଥିଲେ । ରାତିରେ ପରଦାକୁ ଲୁଙ୍ଗି କରି ପିନ୍ଧୁଥିଲେ । କାଗଜ ପ୍ୟାକେଟକୁ ତକିଆ ଭଳି ବ୍ୟବହାର କରୁଥିଲେ ।

ମୋର ଧାରଣା ଥିଲା, ଦୁଃଖକଷ୍ଟରେ ଜୀବନ ବିତେଇଥିବା ଜଣେ ମଣିଷ ଅନ୍ତତଃ ଅନ୍ୟ ଦୁଃଖରେ ସମବେଦନା ଜଣାଇବ । ତାକୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିବ । କିନ୍ତୁ ମୋର ସେ ଧାରଣା ଭୁଲ୍ ବୋଲି ପ୍ରମାଣିତ ହୋଇଥିଲା ।

ଚନ୍ଦନର ଯାଆଁବାଳ ପଡ଼ିବା ପରେ ପ୍ରମଦା ନୂଆଶାସନରେ ରହୁଥିଲେ । ମୁଁ ମୋ ଆର୍ଥିକ ସ୍ଥିତି ସମ୍ପର୍କରେ କାହାକୁ କିଛି ଜଣାଉ ନଥିଲି । କିନ୍ତୁ ଶଶୁର ତା'ର କିଛି ସୂଚନା ପାଇଥିଲେ । ସେଥିପାଇଁ ସେ ଝିଅ ଓ ନାତିକୁ ଆଉ କିଛିଦିନ ପାଖରେ ରଖିବାକୁ ଚାହିଁଥିଲେ ।

ମୋର କିନ୍ତୁ ଅନ୍ୟ ଦର୍ଶନ ଥିଲା । ମୁଁ ଭାବିଲି, ମୋ ପରିବାର ଚଳାଇବା ମୋର ଏକ ନୈତିକ କର୍ତ୍ତବ୍ୟ । ତାକୁ ମୁଁ କେତେଦିନ ଏଡ଼ାଇ ଚାଲିବି ? କିନ୍ତୁ ଭାଗ୍ୟ ସହାୟକ ହେଉନଥିଲା ।

୧୯୭୧ ମସିହାରେ ଓଡ଼ିଶା ବିଧାନସଭା ପାଇଁ ହୋଇଥିବା ନିର୍ବାଚନରେ ଗୋବିନ୍ଦପୁରରୁ ତ୍ରିଲୋଚନ କାନୁନ୍‌ଗୋ ନିର୍ବାଚିତ ହୋଇଥିଲେ । ଛାତ୍ରାବସ୍ଥାରୁ ତାଙ୍କ ସହିତ ମୋର ଘନିଷ୍ଠ ସମ୍ପର୍କ ଥିଲା ।

ତାଙ୍କୁ ଏମ.ଏଲ.ଏ କଲୋନୀରେ ଗୋଟିଏ କ୍ୱାର୍ଟର ମିଳିଥିଲା । କ୍ୱାର୍ଟରରେ ତିନୋଟି ବଖରା ଘର । ରୋଷେଇଘର ଏବଂ ଷ୍ଟୋର ରୁମ୍ ଅଲଗା । ଦୁଇଟି ଗାଧୁଆ ଘର । ଖାଇବା ପାଇଁ ମଝିରେ ଯାଗା । ସାମ୍‌ନାରେ ବଡ଼ ବାରଣ୍ଡା ।

ମୁଁ ଭୁବନେଶ୍ୱର ଆସିବା ଖବର ପାଇ ସେ ଖୁସୀ ହୋଇଗଲେ । କହିଲେ, "କାହିଁକି କଟକରୁ ଯିବାଆସିବା କରୁଛ ? ମୋ କ୍ୱାର୍ଟର ତ ଖାଲିପଡ଼ିଛି, ଆସି ରହୁନ ? ସାଙ୍ଗହୋଇ ରହନ୍ତେ ।"

ତ୍ରିଲୋଚନଙ୍କ ଧର୍ମପତ୍ନୀ ଅଗସ୍ତି ମହାନ୍ତି । ଜଗତସିଂହପୁରର ସ୍ୱାମୀ ବିବେକାନନ୍ଦ ମେମୋରିଆଲ କଲେଜରେ ଅଧ୍ୟାପିକା । ତ୍ରିଲୋଚନ ଓ ଅଗସ୍ତି ଉଭୟ ପରସ୍ପରକୁ ଭଲ ପାଇ ବିବାହ ହୋଇଥିଲେ । ସେ ବାହାଘରରେ ମୋର କିଛି ଭୂମିକା ଥିଲା ।

ଅଗସ୍ତିଙ୍କର ଭୁବନେଶ୍ୱର କ୍ୱାର୍ଟରକୁ ଆସିବାର ପ୍ରସ୍ତାବ ନଥିଲା । ତ୍ରିଲୋଚନଙ୍କ କଥା ମୋର ପସନ୍ଦ ହେଲା । ମୁଁ କଟକରୁ ମୋର ଡେରା ଉଠାଇବାକୁ ସ୍ଥିରକଲି ।

କିଛିଦିନ ପରେ କଟକରୁ ଗୋଟିଏ ଛୋଟିଆ ବେଡିଂ, ଗୋଟିଏ ବ୍ୟାଗରେ କିଛି ଲୁଗାପଟା ଓ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ଧରି ମୁଁ ସାଇକେଲରେ ଆସି ଏମ.ଏଲ.ଏ କଲୋନୀରେ ହାଜର ହୋଇଗଲି ।

ସେ କ୍ୱାର୍ଟରରେ ସେତେବେଳେ ଖୁବ୍ ଭିଡ଼ ହେଉଥିଲା । ସବୁ ରୁମ୍‌ରେ ପଶି ଲୋକେ ଆଡ୍ଡା କରୁଥିଲେ । ମୁଁ ଆସି ପ୍ରଥମେ ଗୋଟିଏ ରୁମ୍ ଖାଲି କରେଇଲି । ସେ ରୁମ୍‌ରେ

ଦୁଇଟି ଖଟ ପଡ଼ିଥିଲା । ଗୋଟିଏ ଖଟ ତ୍ରିଲୋଚନ ଓ ଆଉ ଗୋଟିଏ ମୋ ପାଇଁ ରଖି ଘରେ ତାଲା ପକାଇଦେଲି । ଏହା ଅବଶ୍ୟ ଏକ ଅପ୍ରିୟ କାର୍ଯ୍ୟ ଥିଲା । ମାତ୍ର ତା'ଛଡା ଅନ୍ୟ ଉପାୟ ନଥିଲା ।

ସ୍ୱତନ୍ତ୍ର ଦଳ ଆନୁକୂଲ୍ୟରେ ସେତେବେଳେ ଭୁବନେଶ୍ୱରରୁ 'ସ୍ୱରାଜ୍ୟ' ନାମରେ ଗୋଟିଏ ଖବର କାଗଜ ପ୍ରକାଶ ପାଉଥିଲା । ବଲାଙ୍ଗୀର ପାଟଣାର ମହାରାଜା ତଥା ପୂର୍ବତନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ତା'ର ସର୍ବେସର୍ବା ଥିଲେ ।

କେବଳ ଆନୁଷ୍ଠାନିକ ଭାବରେ ବଲାଙ୍ଗୀର ଜିଲ୍ଲା ବିନିକା ନିର୍ବାଚନ ମଣ୍ଡଳୀରୁ ବିଧାୟକ ହୋଇଥିବା ନରସିଂହ ମିଶ୍ର 'ସ୍ୱରାଜ୍ୟ ପ୍ରେସ ମ୍ୟାନେଜମେଣ୍ଟ କମିଟି'ର ଚେୟାରମ୍ୟାନ ରହିଥିଲେ ।

ବୈରାଗୀ ଚରଣ ମହାନ୍ତି, ସେତେବେଳେ ସ୍ୱରାଜ୍ୟର ଭୁବନେଶ୍ୱର ପ୍ରତିନିଧି ଭାବରେ କାର୍ଯ୍ୟ କରୁଥିଲେ । ତାଙ୍କ ସହିତ ମୋର ପରିଚୟ ଥିଲା । ବୈରାଗୀ ବାବୁ ଥିଲେ ଜଣେ ମାର୍ଜିତ ବ୍ୟକ୍ତି । କଥାବାର୍ତ୍ତାରେ ଆତ୍ମୀୟତା ଥିଲା । ଦିନେ ହଠାତ୍ ତାଙ୍କ ସାଙ୍ଗରେ ଦେଖା ହୋଇଗଲା । ସେ ମୋର ଭୁବନେଶ୍ୱର ଆସିଥିବା କଥା ଜାଣିଥିଲେ । କଥା ପ୍ରସଙ୍ଗରେ 'ସ୍ୱରାଜ୍ୟ'ରେ ମୋ ପାଇଁ ଗୋଟିଏ ପାର୍ଟ-ଟାଇମ୍ କାମ ଯୋଗାଡ଼ କରିଦେବାକୁ ତାଙ୍କୁ ଅନୁରୋଧ କଲି । ସେ କହିଲେ, "ହଉ, ଆପଣ କାଲି ଦଶଟା ବେଳେ ଆମ ଅଫିସକୁ ଆସନ୍ତୁ । ସେଇଠି କଥାବାର୍ତ୍ତା ହେବା ।"

ମୁଁ ଦଶଟା ବେଳେ କେଦାରଗୌରୀ ନିକଟରେ ଥିବା ସ୍ୱରାଜ୍ୟ ଅଫିସରେ ପହଞ୍ଚିଲି । ସେତେବେଳକୁ ସଂସ୍ଥାର ଚେୟାରମ୍ୟାନ ଶ୍ରୀ ମିଶ୍ର, ସମ୍ପାଦକ ହରପ୍ରସାଦ ମହାପାତ୍ର ଓ ବୈରାଗୀ ବାବୁ ପହଞ୍ଚି ସାରିଥିଲେ । ମୁଁ ପହଞ୍ଚିଲା ପରେ ବୈରାଗୀ ବାବୁ ମତେ ଚେୟାରମ୍ୟାନଙ୍କ ଅଫିସକୁ ନେଇଗଲେ । ସେ ରୁମ୍‌ରେ ପହଞ୍ଚିଲା ପୂର୍ବରୁ ମୁଁ ଅନୁଭବ କଲି ବୈରାଗୀ ବାବୁ ବୋଧହୁଏ ମୋ ବିଷୟରେ ତାଙ୍କ ଅଫିସରେ ଆଲୋଚନା କରିସାରିଥିଲେ ।

ସ୍ୱରାଜ୍ୟର ଚେୟାରମ୍ୟାନ ନରସିଂହ ମିଶ୍ର ମୋ ପାଇଁ ସମ୍ପୂର୍ଣ୍ଣ ଅଚିହ୍ନା ନଥିଲେ । ବିଧାନସଭାରେ ତାଙ୍କ ସହିତ ଥରେ ଅଧେ ଦେଖାହୋଇଥିଲା । ମୁଁ ତାଙ୍କ ରୁମ୍‌ରେ ପହଞ୍ଚି ନରସିଂହ ବାବୁ ନମସ୍କାର ବୋଲି କହିଲି । ମୋର ଏପରି କହିବାରେ ସ୍ୱରାଜ୍ୟ ଅଫିସର ପରିବେଶ ନିସ୍ତବ୍ଧ ହୋଇଗଲା ଭଳି ମୁଁ ଅନୁଭବ କଲି । କାରଣ ସ୍ୱରାଜ୍ୟ ଅଫିସରେ କେହି କାହାର ନାଁ ଧରି ଡାକିବାର ବ୍ୟବସ୍ଥା ନଥିଲା ।

ସମଗ୍ର ଅଫିସରେ ରାଜାରାଜୁଡାଙ୍କ ଶାସନର ଗନ୍ଧ ବାରି ହୋଇପଡୁଥିଲା । ମୋ କଥା ଶୁଣି ସେଠାରେ କାମ କରୁଥିବା ଅନେକ ଲୋକ ଆଖି ତରାଟି ମତେ କିଛିକ୍ଷଣ ଅନେଇଥିଲେ । ମୋର କିନ୍ତୁ କିଛି ପ୍ରତିକ୍ରିୟା ନଥିଲା । ମୁଁ ସ୍ୱାଭାବିକ ଭାବରେ ଚେୟାରମ୍ୟାନଙ୍କ ଅଫିସରେ ଚଉକିଟିଏ ଦଖଲ କରି ବସିଲି ।

କିଛିକ୍ଷଣ ପରେ ନରସିଂହ ବାବୁ ମତେ ଲକ୍ଷ୍ୟ କରି ପଚାରିଲେ, "ଆପଣ ଭୁବନେଶ୍ୱରରେ ଆମ ପ୍ରତିନିଧି ଭାବରେ ବୈରାଗୀ ବାବୁଙ୍କ ସାଙ୍ଗରେ କାମ କରିପାରିବେ ? ଆମର ଆଉ ଜଣେ ପ୍ରତିନିଧି ଦରକାର ।"

ମୁଁ ତାଙ୍କୁ ବିନମ୍ର ଭାବରେ କହିଲି, "ଦେଖନ୍ତୁ ଆଜ୍ଞା, ସ୍ୱରାଜ୍ୟ ହେଉଛି ଶାସକ ଦଳର କାଗଜ । ସ୍ୱତନ୍ତ୍ର ଦଳର ରାଜନୈତିକ ଦର୍ଶନ ସହିତ ମୋର ମନ ହୁଏତ ମିଳିନପାରେ । କାହାର ପାନରୁ କେତେବେଳେ ଚୂନ ଖସିଯିବ, ସେ କଥା ମୁଁ ସମ୍ଭାଳି ପାରିବିନାହିଁ । ଯଦି ଆପଣ ପାରିବେ, ମତେ ଅଫିସରେ ସବ-ଏଡିଟର ଭାବରେ ରଖିଦିଅନ୍ତୁ । ମୁଁ ସେଥିରେ ଆପଣଙ୍କୁ ସହାୟତା କରିପାରିବି ।"

ମୁଁ ତାଙ୍କର ସହାୟକ ହୁଏ ବୋଲି ବୈରାଗୀ ବାବୁ ଚାହୁଁଥିଲେ । ମତେ ବୁଝାଇବାକୁ ଯାଇ କହିଲେ, "ମୁଁ ତ ଅଛି, ଆପଣଙ୍କର କ'ଣ ଅସୁବିଧା ହେବ ? ଯାହାହେବ ମୁଁ ସମ୍ଭାଳି ନେବି ।"

ମୁଁ ଜାଣିଥିଲି, ରାଜନୈତିକ ନେତା ବିଶେଷକରି ରାଜା, ମହାରାଜାଙ୍କ ମର୍ଜି ଜଗି ଚଳିବା କିଭଳି କଷ୍ଟକର ବ୍ୟାପାର । ମୁଁ ସ୍ପଷ୍ଟ ଭାବରେ କହିଲି, ଦେଖନ୍ତୁ, ମୁଁ ରାଜା, ମହାରାଜାଙ୍କ ପାଖରେ ଚଳିପାରିବି ନାହିଁ । ଆପଣଙ୍କର ଯଦି ସୁବିଧା ଅଛି ଟେବୁଲରେ ମତେ ରଖିଦିଅନ୍ତୁ । ମୁଁ ପି.ଟି.ଆଇ ପାଠକୁ ଅନୁବାଦ କରିବି ।

ମୁଁ ବାହାରକୁ ଆସି ଅପେକ୍ଷା କଲି । ନରସିଂହବାବୁ ଓ ବୈରାଗୀବାବୁ କିଛି ସମୟ କଥାବାର୍ତ୍ତା ହେଲେ । ପରେ ବୈରାଗୀବାବୁ ଆସି ମତେ କହିଲେ, ଠିକ୍ ଅଛି, ବସନ୍ତ ବାବୁ । ଆପଣ ସବ୍-ଏଡିଟର ଭାବରେ ଯଦି ଆମ ଅଫିସରେ କାମ କରିବାକୁ ପ୍ରସ୍ତୁତ ଅଛନ୍ତି, ତେବେ ସେହି ଅନୁସାରେ ଦରଖାସ୍ତ କରନ୍ତୁ । ଦିନେ ଦି'ଦିନ ଭିତରେ ଆପଣ ଉତ୍ତର ପାଇବେ । ହଁ, ଆଉ ଗୋଟିଏ କଥା ମନେ ରଖିବେ, ଆପଣଙ୍କୁ ମାସକୁ ଦରମା ବାବଦକୁ ଦୁଇଶହ ଟଙ୍କା ଦିଆଯିବ। ଅନ୍ୟମାନେ ସେୟା ପାଉଛନ୍ତି । ମୁଁ ବୈରାଗୀବାବୁଙ୍କ କଥାରେ ସହମତି ହୋଇ ଦରଖାସ୍ତଟିଏ ଲେଖିଦେଇ ଫେରିଆସିଲି ।

ଦୁଇଦିନ ପରେ ବୈରାଗୀବାବୁ ମତେ ଖବର ଦେଇ କହିଲେ, "ଆପଣଙ୍କ ଚାକିରି ହୋଇଯାଇଛି । ଆପଣ ଯେତେଶୀଘ୍ର ଆସି ଯୋଗ ଦିଅନ୍ତୁ ।" ମୁଁ ତାଙ୍କୁ ଧନ୍ୟବାଦ ଜଣାଇଥିଲି ।

ସ୍ୱରାଜ୍ୟର ସଂପାଦକ ଥିଲେ ହରପ୍ରସାଦ ମହାପାତ୍ର । ସ୍ୱତନ୍ତ୍ର ଜନ କଂଗ୍ରେସ ମନ୍ତ୍ରିମଣ୍ଡଳରେ ସେ ଜଣେ ସଦସ୍ୟ ଥିଲେ । କିନ୍ତୁ ୧୯୭୧ ମସିହା ନିର୍ବାଚନରେ ହାରି ଯାଇଥିଲେ । ସେ ସାମ୍ବାଦିକ ନଥିଲେ କିମ୍ବା ସମ୍ବାଦପତ୍ର ପ୍ରକାଶନ କ୍ଷେତ୍ରରେ ତାଙ୍କର କୌଣସି ଅଭିଜ୍ଞତା ନଥିଲା । କେବଳ ଥଇଥାନ ଉଦ୍ଦେଶ୍ୟରେ ତାଙ୍କୁ ସ୍ୱରାଜ୍ୟର ସଂପାଦକ

କରାଯାଇଥିଲା । ହରବାବୁ ମନ୍ତ୍ରୀଥିବା ସମୟରେ ମୁଁ ତାଙ୍କୁ ଜାଣିଥିଲି । ଶୂଳବ୍ୟାଧିରେ ପୀଡ଼ିତ ହୋଇଥିବା ଯୋଗୁ ସେ ସବୁବେଳେ ଚିଡ଼ିଚିଡ଼ି ହେଉଥିଲେ । ହସିବା ତାଙ୍କ ଜାତକରେ ନଥିଲା ।

ମୁଁ ସ୍ୱରାଜ୍ୟରେ ଚାକିରି କରିଛି ବୋଲି ତାଙ୍କୁ ଜଣାନଥିଲା । ମତେ ଦେଖି ପଚାରିଲେ, "ଆପଣ କୁଆଡ଼େ ଆସିଛନ୍ତି ? କାହାକୁ ଖୋଜୁଛନ୍ତି ?" "ମୁଁ ପରା ଏଠି ଚାକିରି କରିଛି । ଆସିଛି କାମ କରିବାକୁ ।" ମୋ ଠାରୁ ଏ ଉତ୍ତର ପାଇ ସେ କହିଲେ, "କାହିଁ ଆପଣଙ୍କ କଥା ତ ମତେ କେହି କହିନାହାନ୍ତି । ହଉ, ଯଦି ଆସିଛନ୍ତି, ଆଜି ଜଏନ୍ କରନ୍ତୁ । ଆପଣଙ୍କ ଡିଉଟି ଆୱାର ହେବ ସକାଳ ଆଠଟାରୁ ଦିନ ଦି'ଟା ।"

ସକାଳ ସାତଟା ବେଳେ ଭୁବନେଶ୍ୱରରେ ସେତେବେଳେ ଜଳଖିଆ ମିଳିବା ସମ୍ଭବ ନଥିଲା । ସେଥିପାଇଁ ବେଳେବେଳେ ଅଫିସରେ ପହଞ୍ଚିଲା ବେଳକୁ ଦଶ-ପନ୍ଦର ମିନିଟ୍ ଲେଟ୍ ହୋଇଯାଉଥିଲା । ହରବାବୁ ବାରଣ୍ଡାରେ ବସି ଅଫିସ କରୁଥିଲେ ।

ମୁଁ ଅଫିସ୍ ଯିବା ସମୟରେ ତାଙ୍କ ଆଖି ପଡ଼ିଗଲେ ମୁହଁକୁ ବିକୃତ କରି ପଚାରୁଥିଲେ, "ଆଜି କାହିଁକି ପନ୍ଦର ମିନିଟ୍ ଡ଼େରି ହୋଇଗଲା ?" ମୋର ରେଡ଼ିମେଡ଼ ଉତ୍ତର ଥିଲା, ବାଟରେ ସାଇକେଲରୁ ପମ୍ପ ଚାଲିଗଲା । ସେଥିପାଇଁ ଟିକେ ଡେରି ହୋଇଗଲା । ଏ ଘଟଣା ମାସରେ ପ୍ରାୟ ଚାରି ପାଞ୍ଚ ଥର ହେଉଥିଲା ।

ସ୍ୱତନ୍ତ୍ର ଦଳ ଶାସନ କ୍ଷମତାରେ ଥିବାରୁ ବିଭିନ୍ନ ବ୍ୟବସାୟ ସଂସ୍ଥାରୁ ସ୍ୱରାଜ୍ୟକୁ ରୀତିମତ ବିଜ୍ଞାପନ ଆସୁଥିଲା । ଦିନେ ଦିନେ ରାଜଗାଙ୍ଗପୁର ସିମେଣ୍ଟ କାରଖାନାର କ୍ୱାର୍ଟରପେଜ୍ ବିଜ୍ଞାପନ ଆସିଗଲେ ଆଉ ନ୍ୟୁଜ୍ ଲେଖିବାର ଆବଶ୍ୟକ ପଡୁନଥିଲା । ବାରଟା ବେଳୁ ପେଜ୍ ମେକ୍ଅପ ହୋଇଯାଉଥିଲା ।

ଆମେ ଘରକୁ ଯିବାପାଇଁ ଶୀଘ୍ର ଅଫିସରୁ ବାହାରିଲେ ହରବାବୁଙ୍କର ପ୍ରଶ୍ନଥିଲା "କ'ଣମ, ବାରଟା ବେଳୁ ଘରକୁ ବାହାରିଲେଣି । ଆପଣଙ୍କ ଡିଉଟି ପରା ଦି'ଟା ପର୍ଯ୍ୟନ୍ତ ।" ଯେତେବେଳେ ଆମେ ତାଙ୍କୁ କହୁଥିଲୁ, ଆଜିର କାମ ତ ସରିଗଲାଣି, ଏଠି ବସି କ'ଣ କରିବୁ ? "ହଉ, ଯଦି ଆଜି କାମ ସରିଗଲାଣି, ତେବେ କାଲି ପାଇଁ କିଛି ଲେଖୁନାହାନ୍ତି ?" ହର ବାବୁଙ୍କର ରହୁଥିଲା ଓଲଟା ପ୍ରଶ୍ନ ।

ଏକଥା ଶୁଣି ମୁଁ ମନେ ମନେ ଭାବୁଥିଲି, ଏପରି ଲୋକ କେମିତି ମନ୍ତ୍ରୀ ହୋଇ ରାଜ୍ୟ କଥା ବୁଝୁଥିଲେ ? ଯାହାଙ୍କୁ ସମ୍ବାଦପତ୍ରର ପ୍ରାଥମିକ କଥା ଜଣାନାହିଁ । ଗୋଟିଏ ଦିନର ଘଟଣାବଳୀ ଯେ ସେଇଦିନ ସମ୍ବାଦପତ୍ରରେ ପ୍ରକାଶ ପାଏ, ଏଇ ସାମାନ୍ୟ କଥା ସଂପାଦକ ହରବାବୁଙ୍କୁ ମାଲୁମ ନଥିଲା । ତାଙ୍କ କଥା ନଭାଙ୍ଗି ଆମକୁ ଅଯଥାରେ ଅଫିସରେ ଦୁଇଘଣ୍ଟା ବସିବାକୁ ପଡୁଥିଲା ।

ଖରାଦିନେ ଭୁବନେଶ୍ୱରର ପିଚୁରାସ୍ତା ତରଳି ଯାଉଥିଲା । ସାଇକେଲରେ ଗଲାବେଳେ ଚକା ସେ ତରଳା ପିଚୁରେ ଲାଖିଯାଉଥିଲା । ପ୍ୟାଡଲ ମାରିବାକୁ କଷ୍ଟ ହେଉଥିଲା । ବିଶେଷକରି କଳ୍ପନା ଛକରୁ ରାଜମହଲ ଛକକୁ ଆସିଲା ବେଳେ ସେ କଷ୍ଟ ଅଧିକ ଅନୁଭୂତ ହେଉଥିଲା । ଦେହରୁ ଗମ୍‌ଗମ୍ ଝାଳ ବୋହି ପିନ୍ଧା ଲୁଗା ଓଦା ହୋଇଯାଉଥିଲା ।

ସେଦିନର ସେ କଷ୍ଟ ଆଜିକାଲି ପିଲାଏ କଳ୍ପନା କରିପାରିବେ ନାହିଁ । କାରଣ ସ୍କୁଲରେ ପଢ଼ିବା ବେଳୁ ସେମାନେ ସ୍କୁଟି ଚଢ଼ିଲେଣି । କଲେଜ ବେଳକୁ ଦାମୀ ମଟର ସାଇକେଲ କିମ୍ବା କାର୍ ତାଙ୍କୁ ମିଳିଯାଉଛି । ଯେଉଁମାନେ ସାମ୍ବାଦିକତା କରୁଛନ୍ତି, ଚାକିରି କରିବାର କେଇ ମାସ ଭିତରେ ସେମାନେ ସ୍କୁଟର କିମ୍ବା ମଟର ସାଇକେଲର ମାଲିକ ହୋଇଯାଉଛନ୍ତି ।

ଆଜିକାଲି ରବୀନ୍ଦ୍ର ମଣ୍ଡପ ପାଖରେ ଯୋଉଠି ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ ଚାଲୁଛି, ଆଗେ ସେ ସ୍ଥାନଟି ଖୋଲା ପଡ଼ିଆ ଥିଲା । ସେଇବାଟେ ଲୋକେ ଏମ.ଏଲ.ଏ କଲୋନୀକୁ ଯିବାଆସିବା କରୁଥିଲେ । ରାଜଧାନୀ ବାହାରୁ ଆସୁଥିବା ଲୋକଙ୍କ ପାଇଁ ସେଠାରେ କେତେଗୁଡିଏ ଝୁମ୍ପୁଡି 'ହୋଟେଲ' ଖୋଲିଥିଲା ।

ହୋଟେଲ କହିଲେ ଠିକ୍ ହେବ ନାହିଁ । କାରଣ ସେସବୁ ହୋଟେଲର ଉପର ଥିଲା ଚାଳ ଛପର । ତଳ ଥିଲା ଆବୁଡା ଖାବୁଡା ମାଟି ଚଟାଣ । ରଙ୍ଗବୋଳା ଟେବୁଲ ସାଙ୍ଗକୁ ପ୍ଲାଷ୍ଟିକ ଚଉକି । ଖଲି ପତରରେ ଖାଇବାକୁ ମିଳୁଥିଲା ।

ଭେଜ୍ କହିଲେ, ଭାତ, ଡାଲି, ମିଶାମିଶି ତରକାରୀ ଓ ଗୋଟାଏ ଭଜା । ଯୋଉଦିନ ଯୋଉ ପରିବା ଶସ୍ତା, ସେଇଦିନ ସେ ପରିବା ଭଜା ହୁଏ । ଝୁମ୍ପୁଡିରେ ଯୋଉ କେଇଜଣ ନାଗୁଆ ଗରାଖ ଥିଲେ, ସେମାନଙ୍କ ଭିତରେ ମୁଁ ଜଣେ ଥିଲି । ଖରାବେଳେ ସାଇକେଲରେ ଆସିବା ଫଳରେ ଦେହରୁ ଗମ୍‌ଗମ୍ ଝାଳ ବୋହିଯାଉଥିଲା । ଲୁଗା ବଦଳି ଝାଳ ମାରିବାକୁ ସୁଯୋଗ ମିଳୁନଥିଲା । ସେମିତି ସେଠାରେ ବସି 'ଲଞ୍ଚ' କରିବାକୁ ହେଉଥିଲା । ଖାଇବା ପରଷୁ ଥିବା ଲୋକକୁ ମୁଁ ମଝିରେ ମଝିରେ ଆଠଣା କି ଟଙ୍କାଏ ଦିଏ ବୋଲି ସେ ମୋ ପାଇଁ ଆଳୁ ଭର୍ତ୍ତା ଟିକେ ରଖୁଥିଲା । ଖାଇଲା ବେଳେ ଝାଳ ବୋହି ଡାଲିରେ ମିଶିଯିବା ଫଳରେ ଆଉ ଲୁଣର ଦରକାର ପଡୁନଥିଲା ।

ଖାଇସାରି ସେକ୍ରେଟେରିଏଟକୁ ଯାଇ ଅମୃତ ବଜାର ପତ୍ରିକା ପାଇଁ ଖବର ସଂଗ୍ରହ କରିବାକୁ ପଡୁଥିଲା । ସେତେବେଳେ ସେକ୍ରେଟେରିଏଟ୍‌ର ମୁଖ୍ୟ ପ୍ରବେଶ ଦ୍ୱାର ପାଖରେ ରାସ୍ତାକଡ଼ରେ ଅଭ୍ୟର୍ଥନା କକ୍ଷ ଥିଲା । ଉପର ଆଜବେଷ୍ଟସ ଛାତ । ଆଜବେଷ୍ଟସ ଚାଦରର କାନ୍ଥ । ଖରାବେଳେ ସେଥିରୁ ହୁଳା ବାହାରୁଥିଲା । ସେଇଥିରେ ଅନ୍ୟମାନଙ୍କ ସାଙ୍ଗରେ ଲାଇନ୍‌ରେ ଛିଡା ହୋଇ ଭିତରକୁ ଯିବାପାଇଁ ପାସ୍ ଯୋଗାଡ଼ କରିବାକୁ ପଡୁଥିଲା । ଓଃ ! ସେ କି କଷ୍ଟ । ଆଜି ଭାବିଲେ ମୁଣ୍ଡ ଝାଇଁ ଝାଇଁ ହୋଇଯାଏ ।

ଚୌଧୁରୀବାବୁ ବୋଲି ଜଣେ ଭଦ୍ରଲୋକ ସେଠାରେ ମୁଖ୍ୟ ଅଭ୍ୟର୍ଥନାକାରୀ ଥିଲେ । ସେ ଏକନମ୍ବର ୟୁନିଟ୍‌ରେ ହାଟ ପାଖରେ ସରକାରୀ କ୍ୱାର୍ଟରରେ ରହୁଥିଲେ । ତାଙ୍କ ସାଙ୍ଗରେ ଦେଖାଚାହାଁ ହେବା ଭିତରେ ଗୋଟାଏ ସମ୍ପର୍କ ଯୋଡି ହୋଇଯାଇଥିଲା । ସେ ମତେ ଦେଖିଲେ ସାଙ୍ଗେ ସାଙ୍ଗେ କହନ୍ତି, "ବସନ୍ତ ବାବୁ, ଆପଣଙ୍କ ପାସ୍ ହୋଇଯାଇଛି, ଆସି ନେଇଯାଆନ୍ତୁ ।"

ଥରେ ଚୌଧୁରୀବାବୁ ମତେ କହିଲେ, "ଆପଣ ତ ସବୁଦିନେ ଭିତରକୁ ଯାଉଛନ୍ତି, ଅନେକ ଅଫିସରଙ୍କ ସାଙ୍ଗରେ ଜଣାଶୁଣା ହେବଣି । ଗୋଟାଏ ପନ୍ଦରଦିନିଆ ପାସ୍ କରିଦଉନାହାନ୍ତି । ସାଧାରଣ ପ୍ରଶାସନ ବିଭାଗର ଅଣ୍ଡର ସେକ୍ରେଟେରୀ ରମାନାଥ ମହାନ୍ତି । ସେ ପାସ୍ କଥା ବୁଝୁଛନ୍ତି । ଭାରି ଭଲ ମଣିଷ । ଆପଣ ତାଙ୍କୁ ଦେଖା କରନ୍ତୁ । ଅନ୍ତତଃ ଖରାବେଳେ ଲାଇନରେ ଛିଡାହେବାର କଷ୍ଟରୁ ତ ତ୍ରାହି ପାଇଯିବେ ।"

ଚୌଧୁରୀବାବୁଙ୍କ କଥା ଅନୁସାରେ ମୁଁ ତା'ପରଦିନ ରମାନାଥ ବାବୁଙ୍କୁ ତାଙ୍କ ରୁମ୍‌ରେ ଦେଖାକଲି । ଛଅଫୁଟିଆ ଗୋରା ଟକ୍‌ଟକ୍ ଚେହେରା । ଖୁବ୍ ମାର୍ଜିତ ବ୍ୟବହାର । ମତେ ଦେଖି ଅନେକ କଥା ପଚାରିଲେ । ଘର କୋଉଁଠି ? କ'ଣ ପଢ଼ିଛ, ବାହାହେଲେଣି କି ନାହିଁ ଇତ୍ୟାଦି ଇତ୍ୟାଦି ।

ତାଙ୍କ ଚାକିରି ଆରମ୍ଭରେ ରମାନାଥ ବାବୁ ପିପିଲିରେ ବିଡ଼ିଓ ଥିଲେ । ମୋ ଶଶୁର ଜଗବନ୍ଧୁ ଦାସ ଥିଲେ ବ୍ଲକ ଚେୟାରମ୍ୟାନ । ଶଶୁରଙ୍କ ଶଶୁରଘର ବେଣ୍ଟବାର ଗାଁରେ ରମାନାଥ ବାବୁଙ୍କ ଘର । କଥା ପ୍ରସଙ୍ଗରେ ସବୁ ଜଣାଶୁଣା ହୋଇଗଲା ।

ମୁଁ ଜଗବନ୍ଧୁ ବାବୁଙ୍କ ଜ୍ୱାଇଁ ବୋଲି ଜାଣିଲା ପରେ ରମାନାଥ ବାବୁଙ୍କର ମୋ ପ୍ରତି ସହାନୁଭୂତି ବଢ଼ିଯାଇଥିଲା । ସେ ତତ୍‌କ୍ଷଣାତ ମୋ ପାଇଁ ଗୋଟିଏ ପନ୍ଦରଦିନିଆ ପାସ୍‌ର ବ୍ୟବସ୍ଥା କରିଦେଲେ । ସେ ଦିନର ସେ ପ୍ରଥମ ସାକ୍ଷାତରେ ଆମ ଦୁହିଁଙ୍କ ଭିତରେ ସୃଷ୍ଟି ହୋଇଥିବା 'ବନ୍ଧୁତା' ତାଙ୍କର ଶେଷନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଦୀର୍ଘ ଚାଳିଶ ବର୍ଷକାଳ ଅବ୍ୟାହତ ଥିଲା ।

ସେତେବେଳେ ସେକ୍ରେଟେରିଏଟ ଭିତରେ ଖବର ସଂଗ୍ରହର ନିର୍ଦ୍ଦିଷ୍ଟ ମାର୍ଗ କିଛି ନଥିଲା । ତୃତୀୟ ମହଲା ସିଡ଼ି ପାଖରେ ଗୋଟିଏ ଛୋଟିଆ ରୁମ୍ । ପ୍ରେସ୍ ଇନଫରମେସନ ଅଫିସରଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ରୁମ୍‌ରେ ତାଙ୍କ ଟେବୁଲ, ଚୌକି ସହିତ ଆଉ କେଇଖଣ୍ଡ ପୁରୁଣା ସୋଫା । ଖବର କାଗଜ ରଖିବା ପାଇଁ ଗୋଟିଏ ଷ୍ଟିଲ୍ ର୍ୟାକ୍ ଥିଲା ।

ସେଇଠୁ ବିଭିନ୍ନ ଡିପାର୍ଟମେଣ୍ଟକୁ ଯାଇ ବିଭିନ୍ନ ଅଫିସରମାନଙ୍କୁ ସାକ୍ଷାତ୍ କରି କଥାବାର୍ତ୍ତା ବେଳେ କିଛି କିଛି ଖବରର ସୁରାକ୍ ମିଳି ଯାଉଥିଲା । ତାକୁ ହିଁ ପୁଞ୍ଜିକରି ସନ୍ଧ୍ୟାବେଳେ ନ୍ୟୁଜ୍ ତିଆରି କରିବାକୁ ପଡୁଥିଲା । ଅନେକ ସମୟରେ ସନ୍ଧ୍ୟାରେ ସଭାସମିତିରୁ ମଧ କିଛି ଖବର ମିଳୁଥିଲା ।

ଅମୃତ ବଜାର ପତ୍ରିକାର ଅଫିସ ସେତେବେଳେ ଗୋପାଳ ବାବୁଙ୍କ ଦୁଇ ନମ୍ବର ୟୁନିଟରେ ଥିବା ସରକାରୀ କ୍ୱାର୍ଟରରେ ଚାଲୁଥିଲା । ସେଠାରୁ ନ୍ୟୁଜ୍ ଟାଇପ୍ କରି ଟେଲିପ୍ରିଣ୍ଟର ଯୋଗେ କଲିକତାକୁ ପଠାଇବାକୁ ପଡୁଥିଲା । ମୁଁ ଟାଇପ୍ ଜାଣିଥିବାରୁ ହାତରେ ଲେଖିବାକୁ ପଡୁନଥିଲା ।

ଭୁବନେଶ୍ୱର ଷ୍ଟେସନ ପାଖରେ କେଶରୀ ହୋଟେଲ ତିଆରି ହୋଇଥିବା ସ୍ଥାନଟି ସେତେବେଳେ ଖାଲି ପଡ଼ିଥିଲା । ସାମନାରେ କେବଳ ଦୁଇ ବଖୁରିଆ ଗୋଟିଏ ଆଜବେଷ୍ଟସ ସେଡ୍ ଥିଲା । ସେ ଯାଗାର ମାଲିକ ଥିଲେ ଓଲ୍ଡଟାଉନର ବୀରୁପାକ୍ଷ ନନ୍ଦ । ସାଧାରଣରେ ସେ 'ବୀରନନ୍ଦ' ଭାବରେ ଜଣାଶୁଣା ଥିଲେ । ରୁଗ୍‌ଣ ଶରୀର । କିନ୍ତୁ ଖୁବ୍ ମଉଜିଆ ଲୋକ । ଅନ୍ୟକୁ ସାହାଯ୍ୟ କରିବାରେ ସେ ଅପାର ଆନନ୍ଦ ଅନୁଭବ କରୁଥିଲେ ।

ସେ କାଳରେ ଯେଉଁ କେତେଜଣ ହାତଗଣତି ଓଡ଼ିଆ କଣ୍ଟ୍ରାକ୍ଟର ଥିଲେ, ସେମାନଙ୍କ ଭିତରେ ବୀରବାବୁଙ୍କର ନାଁ ଥିଲା । ଡକ୍ଟର ହରେକୃଷ୍ଣ ମହତାବଙ୍କର ସେ ଜଣେ ଅନୁରକ୍ତ ଥିଲେ । ସେହି ହିସାବରେ ରାଜଧାନୀରେ ଅନେକ କୋଠାବାଡି କରିବାର ସୁଯୋଗ ତାଙ୍କୁ ମିଳିଥିଲା ।

ପ୍ରତିଦିନ ସନ୍ଧ୍ୟାରେ ସେଠି ଗୋଟିଏ ଖଟି ହୁଏ । ଆଠ ଜଣ ଲୋକ ଜମନ୍ତି । ସେମାନଙ୍କ ଭିତରେ ସେ ସମୟରେ ଓଡ଼ିଆ ବିଧାନସଭାର ସେକ୍ରେଟେରୀ ନୀଳକଣ୍ଠ ରଥ, ସାମ୍ବାଦିକ ଗୋପାଳ ମିଶ୍ର, ବାଳକୃଷ୍ଣ କାନୁନ୍‌ଗୋ, ଯୁବ ଇଂଜିନିୟର ହରନାଥ ଦାସ ପ୍ରମୁଖ ଅନ୍ତର୍ଭୁକ୍ତ ଥିଲେ ।

ପାଖରେ ବୀରବାବୁଙ୍କର ଗୋଟିଏ ବିଦେଶୀ ମଦ ଦୋକାନ ଥିଲା । ସନ୍ଧ୍ୟାରେ ଆଠଟା ସୁଦ୍ଧା ସମସ୍ତେ ଆସିଗଲେ ଆସର ଆରମ୍ଭ ହୋଇଯାଉଥିଲା । ପାଖ ଦୋକାନରୁ ମଦ ଓ କିଛି ସ୍ନାକ୍ସ ଅଣାଯାଉଥିଲା । ମୁଁ ବୟସରେ କନିଷ୍ଠ ହୋଇଥିବାରୁ ଅନେକ ସମୟରେ ମତେ ସେ କାମ କରିବାକୁ ପଡୁଥିଲା ।

ବୀରବାବୁ ଦି' ପେଗ୍ ପିଇଲା ପରେ ତାଙ୍କୁ ନିଶା ହୋଇଯାଉଥିଲା । ଅନ୍ୟମାନଙ୍କର ମାଗଣାରେ ଚାରି ପାଞ୍ଚ ପେଗ୍ ପର୍ଯ୍ୟନ୍ତ ଚାଲୁଥିଲା ।

ବୀରବାବୁଙ୍କର ହଂସପାଳ ପାଖରେ ଗୋଟାଏ ଇଟାଭାଟି ଥିଲା । ଦୁଇଟି ଟ୍ରକ ମଧ୍ୟ ଚାଲୁଥିଲା । ତାଙ୍କୁ ସାମାନ୍ୟ ନିଶା ହୋଇଗଲେ ଖଟି ସଦସ୍ୟମାନଙ୍କର ଅଭିନୟ ଆରମ୍ଭ ହେଉଥିଲା । କିଏ ଘର କରୁଛି, ଇଟା ନାହିଁ । ଟ୍ରକ ମିଳୁନଥିବାରୁ ଆଉ କିଏ ବାଲି ମଗାଇ ପାରୁନାହିଁ । କାହାର ସିମେଣ୍ଟ ଆସିବା ପାଇଁ ପାଖରେ ଟଙ୍କା ନାହିଁ ଇତ୍ୟାଦି ଇତ୍ୟାଦି । ବୀରବାବୁ ସାଧ୍ୟମତେ ସମସ୍ତଙ୍କୁ ସାହାଯ୍ୟ କରୁଥିଲେ ।

ଦିନେ ଦିନେ ଖଟିରେ ରୋଷେଇବାସ ହେଉଥିଲା । ବୀରବାବୁ ସବୁ ଖର୍ଚ୍ଚ ବହନ କରୁଥିଲେ । ଅନ୍ୟମାନେ ଖାଲି ତାଳି ମାରୁଥିଲେ ।

୧ ୯ ୭ ୧ ମସିହାରେ ଓଡ଼ିଶାରେ ମହାବାତ୍ୟା ହୋଇଥିଲା । ବାତ୍ୟାରେ କଟକ ଜିଲ୍ଲାର ଜଗତସିଂହପୁର ଓ କେନ୍ଦ୍ରାପଡା ଅଞ୍ଚଳରେ ବ୍ୟାପକ କ୍ଷୟକ୍ଷତି ହୋଇଥିଲା । ବିଜୁ ପଟ୍ଟନାୟକଙ୍କ ଦୁଃସାହସିକ ପଦକ୍ଷେପ ଫଳରେ ଅନେକ ଧନଜୀବନ ରକ୍ଷା ପାଇଯାଇଥିଲା ।

୧ ୯ ୭ ୨ ମସିହା ଜୁନ୍ ମାସରେ ଓଡ଼ିଶାରେ ସରକାର ବଦଳିଗଲା । ସ୍ୱତନ୍ତ୍ର ଓ ଉତ୍କଳ କଂଗ୍ରେସ ସରକାରର ପତନ ପରେ କଂଗ୍ରେସ ନେତ୍ରୀ ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ କଂଗ୍ରେସ ଦଳ କ୍ଷମତାକୁ ଆସିଥିଲା ।

ମୁଖ୍ୟମନ୍ତ୍ରୀ ହେବା ପରେ ଶ୍ରୀମତୀ ଶତପଥୀ ବାତ୍ୟା ଅଞ୍ଚଳ ଗସ୍ତ କରିବାକୁ ସ୍ଥିର କଲେ । ମୁଁ ସେତେବେଳେ ଅମୃତ ବଜାର ପତ୍ରିକାର ସାମୟିକ ପ୍ରତିନିଧି ଓ ସ୍ୱରାଜ୍ୟର ସବ୍-ଏଡିଟର ଭାବରେ କାମ କରୁଥିଲି । ଅମୃତ ବଜାର ପତ୍ରିକା ସହିତ ଶ୍ରୀମତୀ ଶତପଥୀଙ୍କର ଘନିଷ୍ଠ ସମ୍ପର୍କ ଥିଲା । ସେଥିପାଇଁ ତାଙ୍କ ଗସ୍ତ କାଳରେ ମତେ ତାଙ୍କ ସହିତ ଯିବାକୁ ପଡିଲା ।

ସେତେବେଳେ ସମର ବିଳାଶ ପଟ୍ଟନାୟକ ମୁଖ୍ୟମନ୍ତ୍ରୀଙ୍କର ଲୋକ ସମ୍ପର୍କ ଅଫିସର ଥିଲେ । ସେ ମତେ ଭଲଭାବରେ ଜାଣିଥିଲେ । ପ୍ରଭାକର ମିଶ୍ର ସେ ସମୟରେ ଆକାଶବାଣୀ କଟକ କେନ୍ଦ୍ରର ପ୍ରତିନିଧିଭାବରେ ଭୁବନେଶ୍ୱରରେ ଅବସ୍ଥାପିତ ହୋଇଥିଲେ ।

ସମର ବାବୁ ଗୋଟିଏ ଗାଡିରେ ତାଙ୍କ ସାଙ୍ଗରେ ମତେ ଓ ପ୍ରଭାକର ବାବୁଙ୍କୁ ନେବାର ବନ୍ଦୋବସ୍ତ କରିଥିଲେ । ଦେହ ଖରାପର ବାହାନା ଦେଖାଇ ମୁଁ ସ୍ୱରାଜ୍ୟରୁ ଦୁଇଦିନ ପାଇଁ ଛୁଟି ନେଇଥିଲି ।

ମୁଖ୍ୟମନ୍ତ୍ରୀଙ୍କ ଗସ୍ତର ବିବରଣୀରେ ମୁଁ ଗୋଟିଏ ସମ୍ବାଦ ଅମୃତ ବଜାର ପତ୍ରିକାକୁ ପଠାଇଥିଲି । ସେଥିରେ ଥିଲା 'ନିଜ ପାପ ଭାରରେ ଓଡ଼ିଶାରେ ଥିବା ମିଳିତ ମନ୍ତ୍ରିମଣ୍ଡଳର ପତନ ଘଟିଲା ।' ଏହି ସମ୍ବାଦଟି ମୋ ନାଁ ଥାଇ ପତ୍ରିକାର ସାମନା ପୃଷ୍ଠାରେ ବଡ଼ ଅକ୍ଷରରେ ପ୍ରକାଶ ପାଇଥିଲା ।

ମୋର ଉପସ୍ଥିତିକୁ ସ୍ୱରାଜ୍ୟ ଅଫିସରେ ଯେଉଁମାନେ ବିରୋଧ କରୁଥିଲେ ସେମାନଙ୍କ ପାଇଁ ଏହି ସମ୍ବାଦ ଏକ ସୁଯୋଗ ଆଣିଦେଲା । ସେମାନେ ମୋ ବିରୋଧରେ ଗୋଟିଏ ଷଡଯନ୍ତ୍ର ଆରମ୍ଭ କଲେ । ଦେହ ଖରାପ ଯୋଗୁ ଛୁଟି ନେଇ ମୁଁ କିପରି ମୁଖ୍ୟମନ୍ତ୍ରୀଙ୍କ ସାଙ୍ଗରେ ବାତ୍ୟାଞ୍ଚଳକୁ ଗଲି ଓ ମୁଖ୍ୟମନ୍ତ୍ରୀଙ୍କ ଗସ୍ତ ସମ୍ପର୍କରେ ସମ୍ବାଦ ପରିବେଷଣ କଲି ସେଥିପାଇଁ ମତେ ଗୋଟିଏ କୈଫୟତ ତଲବ କରାଗଲା ।

ସେହି ସମୟରେ ଅମୃତ ବଜାର ପତ୍ରିକାର ଜେନେରାଲ ମ୍ୟାନେଜର ମିହିର୍ ଲାଲ ଗାଙ୍ଗୁଲି ଭୁବନେଶ୍ୱର ଗସ୍ତରେ ଆସି ରାଜ୍ୟ ଅତିଥି ଭବନରେ ରହୁଥିଲେ ।

ମୁଁ ତାଙ୍କୁ ସେଠାରେ ସାକ୍ଷାତ କରିବାକୁ ଯାଇଥିଲି । ସମୟ ନଅଟା । ଗୋପାଳ ବାବୁ ସେଠାରେ ପହଞ୍ଚିଲେ । ମିହିର ବାବୁ ସମସ୍ତଙ୍କ ପାଇଁ ବ୍ରେକ୍‌ଫାଷ୍ଟ ବରାଦ କରିଥିଲେ । ମୋର

ସ୍ୱରାଜ୍ୟ ଅଫିସକୁ ଯିବାପାଇଁ ବିଳମ୍ବ ହୋଇ ଯାଉଥିବାରୁ ମୁଁ ବ୍ରେକଫାଷ୍ଟରେ ଯୋଗଦେଇ ପାରିବି ନାହିଁ ବୋଲି ବିନମ୍ରତାର ସହିତ ମିହିର ବାବୁଙ୍କୁ ଜଣାଇଥିଲି ।

ମିହିର ବାବୁ ବାମପନ୍ଥୀ ରାଜନୈତିକ ଦର୍ଶନର ବ୍ୟକ୍ତି ଥିଲେ । ମୋ କଥା ଶୁଣି ସେ ଟିକେ ଗମ୍ଭୀର ହୋଇଗଲେ । ମତେ ପଚାରିଲେ "ତମେ ପତ୍ରିକାର ପ୍ରତିନିଧି ହୋଇ ମହାରାଜା କାଗଜରେ କିପରି କାମ କରୁଛ । ଏଥିରେ ତମକୁ ଲଜ୍ଜା ଲାଗୁନାହିଁ ? ତମେ ସେଠାରୁ କେତେ ଟଙ୍କା ପାଉଛ ? ମୁଁ ତମକୁ ସେତିକି ଟଙ୍କା ପତ୍ରିକାରୁ କରିଦେବି । ତମେ ଆଜି ଚାକିରି ଛାଡିଦିଅ ।"

ସେ ଗୋପାଳ ବାବୁଙ୍କ ଆଡକୁ ଅନାଇ ପଚାରିଲେ, "ବସନ୍ତ ସ୍ୱରାଜ୍ୟରୁ କେତେ ଟଙ୍କା ପାଉଛି ? ତମେ ସେତିକି ଟଙ୍କା ପତ୍ରିକାରୁ ପାଇବା ପାଇଁ ସୁପାରିଶ କରି ଲେଖାଟିଏ ଦିଅ । ମୁଁ ସାଙ୍ଗେ ସାଙ୍ଗେ ଏଇଠି ଅର୍ଡର କରିଦେବି ।"

ଗୋପାଳ ବାବୁ ଚାହିଁଥିଲେ ମୋର ଦରମା ପାଞ୍ଚଶହ ଟଙ୍କାକୁ ବୃଦ୍ଧି କରିପାରିଥାନ୍ତେ । କିନ୍ତୁ ସେ ତା' ନକରି ମୁଁ ଦୁଇଶହ ଟଙ୍କା ପାଇବି ବୋଲି ସୁପାରିଶ କରିଦେଲେ ।

ମିହିର ବାବୁଙ୍କ ନିର୍ଦ୍ଦେଶ ମତେ ମୁଁ ସ୍ୱରାଜ୍ୟ ପରିଚାଳନା ବୋର୍ଡକୁ କୈଫୟତ ଦେବା ପରିବର୍ତ୍ତେ ମୋର ଇସ୍ତଫାପତ୍ରଟି ପଠାଇଦେଲି ।

ସଂଘର୍ଷ ଭିତରେ ଜୀବନର କିଛିଦିନ କଟିଗଲା । ସେତେବେଳେକୁ ପ୍ରମଦା ଓ ଚନୁ ନୂଆଶାସନରୁ ଆସି ଏମ୍‌ଏଲ୍‌ଏ କଲୋନୀରେ ରହିସାରିଥିଲେ । ସେଠାରେ ରୋଷେଇ ଆରମ୍ଭ ହୋଇଥିଲା । କ୍ୱାର୍ଟରରେ ସବୁ ସୁବିଧା ଥିଲେ ବି ସାବଧାନତା ସହକାରେ ଜଗି ରଖି ଚଳିବାକୁ ପଡୁଥିଲା ।

ସେହିପରି ଚାଲିଥିଲେ ଆଉ କିଛିଦିନ ଚଳି ଯାଇଥାଆନ୍ତା । କିନ୍ତୁ ଦିନେ ମୋ ମୁଣ୍ଡକୁ ଗୋଟାଏ କଥା ଜୁଟିଲା । ମୁଁ ଭାବିଲି, ଆମେ ଅଛୁ ବୋଲି ବୋଧହୁଏ ତ୍ରିଲୋଚନ ସ୍ତ୍ରୀ ଛୁଟିରେ ସେଠାକୁ ଆସିପାରୁନାହାନ୍ତି । ଆମ ପାଇଁ କାହିଁ ସେମାନେ କଷ୍ଟ ଭୋଗିବେ ?

ଏଇକଥା ଭାବି ଏମ୍‌ଏଲ୍‌ଏ କଲୋନୀରେ ଥିବା ବାଟା ଜୋତା ଦୋକାନରୁ ଦୁଇଟା ବଡ଼ କାଠ ଡବଲ ଆଣିଲି । ଯାହାକିଛି ଜିନିଷପତ୍ର ଥିଲା ସେଥିରେ ପୂରାଇ ପାଖରେ ଥିବା ପୋଷ୍ଟାଲ କଲୋନୀରେ ସତୁଙ୍କ ଘରେ ନେଇ ରଖିଦେଲି ।

ସନ୍ଧ୍ୟାରେ ପ୍ରମଦା ଓ ଚନୁକୁ ବସରେ ନେଇ କଟକରେ ଘରେ ଛାଡ଼ି ଦେଇଆସିଲି । ମୋ ପାଖରେ ଥିଲା କେବଳ ମୋର ପିନ୍ଧା ଲୁଗା କେଇଖଣ୍ଡ । ଛୋଟ ବେଡ଼ିଂଟିଏ । ଯାହାକୁ ମୁଁ ପ୍ରଥମ ଅବସ୍ଥାରେ କଟକରୁ ଆଣିଥିଲି । ତା' ସହିତ ମୋର ପୁରୁଣା ସାଇକେଲଟି ।

କିଛିଦିନ ଯାଯାବରଙ୍କ ଭଳି ଏଣେତେଣେ ବୁଲି ରାତି କଟାଇଲି । ମଝିରେ ମଝିରେ ସାଇକେଲରେ ସନ୍ଧ୍ୟାବେଳେ କଟକ ଚାଲିଯାଉଥିଲି ।

ସେତେବେଳକୁ କେତେକ ସରକାରୀ ଅଫିସରଙ୍କ ସହିତ ସମ୍ପର୍କ ସ୍ଥାପନ ହୋଇସାରିଥିଲା । ସେମାନଙ୍କ ମଧ୍ୟରୁ ଜଣେ ଦି'ଜଣ, ଗୋଟିଏ ସରକାରୀ କ୍ୱାଟର ନେବା ପାଇଁ ଉଦ୍ୟମ କରିବାକୁ ମତେ ପରାମର୍ଶ ଦେଇଥିଲେ ।

କିନ୍ତୁ ସରକାରୀ କ୍ୱାଟର ପାଇବା ପାଇଁ ଯେଉଁସବୁ ନିୟମ ଥିଲା, ସେତେବେଳେ ମୁଁ ତାକୁ ପୂରଣ କରୁନଥିଲି । ମୁଁ ସ୍ୱୀକୃତିପ୍ରାପ୍ତ ସାମ୍ବାଦିକ ନଥିଲି । ପୂର୍ବତନ ଛାତ୍ରନେତା ସୁଧାଂଶୁ ମୋହନ ରାଉତରାୟ ସେତେବେଳେ ସାଧାରଣ ପ୍ରଶାସନ ବିଭାଗର ଲ୍ୟାଣ୍ଡ ଅଫିସର ଥିଲେ । ତାଙ୍କ ସାଙ୍ଗରେ ମୋର ବହୁଦିନର ବନ୍ଧୁତା ଥିଲା । ମୁଁ ତାଙ୍କୁ ସବୁକଥା କହିଲି । ସେ କହିଲେ, ଗୋଟିଏ ବାଟ ଅଛି, ତମେ ଯଦି ଲୋକସମ୍ପର୍କ ବିଭାଗରୁ ସୁପାରିଶ ଚିଠି ଖଣ୍ଡେ ଆଣିପାରିବ, ତେବେ ମୁଁ ଚେଷ୍ଟା କରି ତମପାଇଁ କ୍ୱାଟରଟିଏ ଯୋଗାଡ଼ କରି ଦେଇପାରିବି ।

ବାଣୀବିହାରରେ ଆମ ତଳବ୍ୟାଚରେ ପଢୁଥିବା ପ୍ରସନ୍ନ କୁମାର ମିଶ୍ର ପରବର୍ତ୍ତୀ ସମୟରେ ଆଇଏଏସ୍ ପାଇ ଲୋକସମ୍ପର୍କ ବିଭାଗର ନିର୍ଦ୍ଦେଶକ ଭାବରେ ଅବସ୍ଥାପିତ ହୋଇଥିଲେ । ମୁଁ ତାଙ୍କୁ ଦେଖାକରି ସମସ୍ତ ଘଟଣା ଜଣାଇ ଦରଖାସ୍ତଟିଏ ଦେଲି ।

ଶ୍ରୀ ମିଶ୍ର ଆଇଏଏସ ଅଫିସର ହୋଇଥିଲେ ବି ତାଙ୍କ ବ୍ୟବହାର ଅତ୍ୟନ୍ତ ଭଦ୍ର ଓ ମଧୁର ଥିଲା । ସବୁକଥା ଶୁଣି ସେ କହିଲେ, "ବସନ୍ତ ବାବୁ ବ୍ୟସ୍ତ ହୁଅନ୍ତୁ ନାହିଁ । ଯଦି ଆମର ଖଣ୍ଡିଏ ସୁପାରିଶ ଚିଠି ବଳରେ ଆପଣ ସରକାରୀ କ୍ୱାଟରଟିଏ ପାଇପାରିବେ, ତେବେ ଆମେ ସେଥିପାଇଁ କୃପଣ ହେବୁ କାହିଁକି ?"

ଶ୍ରୀ ମିଶ୍ର ଜଏଣ୍ଟ ଡାଇରେକ୍ଟର ସୁବ୍ରତ ଯୋଷୀଙ୍କୁ ମୋର ଦରଖାସ୍ତଟି ଫାଇଲରେ ପୁଟଅପ୍ କରିବାକୁ କହିଲେ । ଶ୍ରୀ ଯୋଷୀ କଳାହାଣ୍ଡି ଅଞ୍ଚଳର ଲୋକ । ଅତ୍ୟନ୍ତ ରକ୍ଷଣଶୀଳ । ସବୁ କଥାରେ ନକରାତ୍ମକ ମନୋଭାବ । ତାଙ୍କ ପାଖରୁ ସକାରାତ୍ମକ ସୁପାରିଶ ଥାଇ ଫାଇଲ ଉପରକୁ ଯିବା ସମ୍ଭବ ହେଉନଥିଲା ।

ସେ ନିର୍ଦ୍ଦେଶକଙ୍କ ପାଖରୁ ମୋର ଦରଖାସ୍ତଟି ନେଲେ । ମାତ୍ର କ୍ୱାଟର ପାଇବା ନିମନ୍ତେ ସୁପାରିଶ ନକରିବା ପାଇଁ ମନ୍ତବ୍ୟ ଦେଇ ଫାଇଲଟି ପଠାଇ ଦେଇଥିଲେ । ଶ୍ରୀ ଯୋଷୀଙ୍କର ସେ ମନ୍ତବ୍ୟରେ ପ୍ରସନ୍ନବାବୁ ଅତ୍ୟନ୍ତ ବ୍ୟଥିତ ହୋଇ ତାଙ୍କ ଦସ୍ତଖତରେ ସୁପାରିଶପତ୍ର ଖଣ୍ଡିଏ ସାଧାରଣ ପ୍ରଶାସନ ବିଭାଗକୁ ଲେଖିଥିଲେ ।

ସୁଧାଂଶୁବାବୁଙ୍କ ଚେଷ୍ଟା ଫଳରେ ମୁଁ ନଅ ନମ୍ବର ୟୁନିଟ୍‌ର 'ଡି' ଟାଇପ କ୍ୱାଟରଟିଏ ପାଇଥିଲି । ପ୍ରମଦା ଓ ଚନୁ କଟକରୁ ଆସିଲେ । ଆମର ନୂଆ ଜୀବନ ଆରମ୍ଭ ହେଲା । ସେ କ୍ୱାଟରରେ ତିନି ବଖରା ଘର । ରୋଷେଇ, ଷ୍ଟୋର ରୁମ୍ ଅଲଗା । ଦୁଇଟି ବାଥରୁମ୍ । ମଝିରେ ଡାଇନିଂ ସ୍ପେସ । ସାମନାରେ ବଗିଚା ପାଇଁ ପ୍ରଶସ୍ତ ଯାଗା ।

ଘରେ ଆମର ଜିନିଷପତ୍ର ବିଶେଷ କିଛି ନଥିଲା । କଟକରୁ ଦୁଇଟି ଖଟ ଆସିଥିଲା । ମୁଁ ରାସ୍ତାକରରୁ ଗୋଟିଏ ଟେବୁଲ, ଦୁଇଖଣ୍ଡ ଚେୟାର ଓ ଖଣ୍ଡେ ଆଲଣା କିଣିଥିଲି । ତା ଛଡା, ଆମର ଦୁଇଟି ମାତ୍ର ସୁଟକେଶ ଥିଲା ।

ରୋଷେଇ ଘରେ ସଉଦାପତ୍ର ରଖିବା ପାଇଁ କେତୋଟି ଅମୂଲସ୍ପ୍ରେ ଡବା । ମୁଁ ମାର୍କେଟ ବିଲଡିଂରେ ଥିବା ଅଳକାଷ୍ଟୋରରୁ କିରୋସିନି ଷ୍ଟୋଭଟିଏ କିଣିଲି । ଡେକିଚି, କରେଇ ଇତ୍ୟାଦି ଆମର ଥିଲା । ଏଇସବୁ ପଦାର୍ଥକୁ ନେଇ ଆରମ୍ଭ ହୋଇଥିଲା ଆମର ନୂତନ ସଂସାର । ସେସେବେଳକୁ ମୋର ପାରିଶ୍ରମିକ ବଢ଼ି ମାସକୁ ଚାରିଶହ ଟଙ୍କା ହୋଇଥିଲା । ମୁଁ ସ୍ୱରାଜ୍ୟ ଅଫିସ ଛାଡ଼ି ଦେଇଥିଲି ।

ମୁଁ ଯେଉଁଠି କ୍ୱାଟର ପାଇଥିଲି, ତା'ଚାରିପାଖ କ୍ୱାଟରମାନଙ୍କରେ ଓଏଏସ୍ ଅଫିସରମାନେ ବଦଳି ହୋଇ ଆସି ରହୁଥିଲେ । ବିଭିନ୍ନ ସ୍ଥାନରେ ଏସଡିଓ(ବର୍ତ୍ତମାନର ସବ-କଲେକ୍ଟର) ଭାବେ କାର୍ଯ୍ୟ କରି ଭୁବନେଶ୍ୱରକୁ ଡେ଼ପୁଟି ସେକ୍ରେଟେରୀ ହୋଇ ଆସିଥିଲେ ।

ବଦଳି ହୋଇ ଆସିଲା ବେଳେ ସାଙ୍ଗରେ ବର୍ଷକ ପାଇଁ ଚାଉଳ, ଡାଲି ଓ ଅନ୍ୟାନ୍ୟ ଜିନିଷ ସହିତ ଜାଳେଣି କାଠ ଆଣିବାକୁ ଭୁଲୁ ନଥିଲେ ।

ସେ ଅଞ୍ଚଳରେ ସେତେବେଳେ ବିଶେଷ ଜନଗହଳି ନଥିଲା । ସକାଳ ସାଢ଼େ ନଅଟା ବେଳେ ଗୋଟିଏ ଓଆରଟି ବସ୍ ସେ ରାସ୍ତା ଦେଇ ସରକାରୀ କର୍ମଚାରୀମାନଙ୍କୁ ନେଇ ବସ୍‌ଷ୍ଟାଣ୍ଡକୁ ଯାଉଥିଲା । ଅପରାହ୍ଣ ପାଞ୍ଚଟା ବେଳେ ପୁଣି ସେମାନଙ୍କୁ ନେଇ ଫେରୁଥିଲା । ମୁଁ ସେଇ ବସ୍‌ରେ ସକାଳେ ଯାଉଥିଲି । ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିଲେ ବି ପ୍ରମଦା ଓ ମୋ ଭିତରେ ଠିକ୍ ବୁଝାମଣା ଥିବାରୁ ଆମେ କୌଣସିମତେ ଚଳି ଯାଉଥିଲୁ । ମୁଁ ଆମର ଆର୍ଥିକ ସ୍ଥିତି ସମ୍ପର୍କରେ କାହାକୁ କିଛି ସୂଚନା ଦେଉନଥିଲି ।

ମାତ୍ର ମୁଁ ଅଫିସ ଚାଲିଗଲା ପରେ ଓଏଏସ୍ ଅଫିସରମାନଙ୍କ ପତ୍ନୀମାନେ ଆସି ପ୍ରମଦାକୁ ନାନାପ୍ରକାର ମାନସିକ ଯନ୍ତ୍ରଣା ଦେଉଥିଲେ । କଥା ପ୍ରସଙ୍ଗରେ "ତମର ଡାଇନିଂ ଟେବୁଲ ନାହିଁ ? ଗଡରେଜ ଆଲମୀରା ନାହିଁ ? ଷ୍ଟେନଲେସ ଷ୍ଟିଲ ବାସନ ସେଟ୍ ନାହିଁ ? କେମିତି ଚଳୁଛ ?" ଇତ୍ୟାଦି ଇତ୍ୟାଦି କଥା କହି ତା ମାନସିକ ସ୍ଥିତିକୁ ଦୁର୍ବଳ କରିଦେଉଥିଲେ ।

ମୁଁ ସନ୍ଧ୍ୟାପରେ ଫେରିଲେ ସବୁକଥା ଶୁଣେ । ଧୈର୍ଯ୍ୟ ଧରିବାକୁ ପ୍ରମଦାକୁ ପରାମର୍ଶ ଦିଏ । ହେଲେ ଦିନକୁଦିନ ଯନ୍ତ୍ରଣା ଅଧିକ ହେବାକୁ ଲାଗିଲା । ମୁଁ ଠିକ୍ କଲି କୌଣସିମତେ ସେ ଘର ଛାଡ଼ିଦେଲେ ରକ୍ଷା ମିଳିବ ।

ଦିନେ ତିନି ନମ୍ବର ୟୁନିଟ୍ ଦେଇ ଅଫିସକୁ ଯିବା ବାଟରେ ଗୋଟିଏ କ୍ୱାଟରର ଗେଟ୍‌ରେ ପିତ୍ତଳ ତାଲା ପଡ଼ିଥିବାର ନଜରରେ ପଡ଼ିଥିଲା । ପଚାରି ବୁଝିବାରୁ ଜଣାଗଲା, କ୍ୱାଟରଟି ଦୁଇ, ତିନିଦିନ ଆଗରୁ ଖାଲି ହୋଇଥିଲା ।

ମୁଁ ସେକ୍ରେଟେରିଏଟ୍ ଯାଇ ସୁଧାଂଶୁ ବାବୁଙ୍କ ସହିତ ପରାମର୍ଶ କଲି । ସେ ମତେ କହିଲେ, "ଡାଇରେକ୍ଟର ଦୁର୍ଯ୍ୟୋଧନ ସ୍ୱାଇଁ ସକାଳେ ପୂଜା ସାରିଲା ପରେ ତାଙ୍କ ମୁଡ୍ ଖୁବ୍ ଭଲ ଥାଏ। ସେ ସମୟରେ ଯାହା ମାଗିଲେ ସେ ରାଜି ହୋଇଯାନ୍ତି ।"

ଶ୍ରୀ ସ୍ୱାଇଁ ଛଅ ନମ୍ବର ମେଡିକାଲ ପାଖରେ ଗୋଟିଏ କ୍ୱାଟରରେ ରହୁଥିଲେ । ମୁଁ ପରଦିନ ସକାଳେ ତାଙ୍କ କ୍ୱାଟରକୁ ଯାଇ ବାରଣ୍ଡାର ଗୋଟିଏ କୋଣରେ ପଡ଼ିଥିବା ଚୌକିରେ କାହାକୁ କିଛି ନକହି ବସିଲି । ଯଥା ସମୟରେ ଦୁର୍ଯ୍ୟୋଧନ ବାବୁଙ୍କର ପୂଜା ସରିଲା । ସେ ଚଉରାରେ ପାଣି ଦେଇସାରି ଫେରିଲାବେଳେ ମୋ ଉପରେ ନଜର ପଡ଼ିଲା ।

ପଚାରିଲେ, "କିହୋ ସାମ୍ବାଦିକବାବୁ, ସକାଳୁ କେମିତି ଆମ ଘରଆଡ଼େ ଆସିବା ହେଲା ?" ମୁଁ ତାଙ୍କୁ ସବୁକଥା କହିଲି । ପୂଜା ପରେ ତାଙ୍କୁ ସାକ୍ଷାତ କଲେ ଫଳ ମିଳିବ ବୋଲି ସୁଧାଂଶୁ ବାବୁ କହିଥିବା ବିଷୟରେ ମଧ୍ୟ ଜଣାଇଲି ।

ସେ ହସିଲେ । ମୋ ପିଠି ଥାପୁଡେଇ କହିଲେ, "ଗତକାଲି ସୁଦ୍ଧା ଯଦି ସେ କ୍ୱାଟର କାହାକୁ ଦିଆଯାଇ ନଥିବ, ତେବେ ସେ କ୍ୱାଟର ତମକୁ ମିଳିବ ।" ସତକୁ ସତ ଦୁର୍ଯ୍ୟୋଧନ ବାବୁ ଦେଇଥିବା କଥା ରଖିଲେ । ଟ୍ରେଜେରୀ ପଛରେ ଥିବା ସେ କ୍ୱାଟରକୁ ମୋ ନାଁରେ ଆଲଟ କରିଦେଲେ ।

ଦୁର୍ଯ୍ୟୋଧନବାବୁ ଛାତ୍ର ଆନ୍ଦୋଳନ ସମୟରେ କଟକରେ ଏଡିଏମ୍ ଥିଲେ । ତାଙ୍କ ସାଙ୍ଗରେ ମୋର ଖୁବ୍ ସଦ୍‌ଭାବ ଥିଲା । କ୍ୱାର୍ଟର ଆଲଟମେଣ୍ଟ ପରେ ଥରେ ସେ ଆମ କ୍ୱାଟରକୁ ଆସିଥିଲେ । କ୍ୱାଟର ଭିତରେ ଥିବା ଗୋଟିଏ ଓଉ ଗଛକୁ ଦେଖି କହିଲେ, "ଇଷ୍ଟେଟ ଡାଇରେକ୍ଟର ହିସାବରେ ଏ ଓଉଗଛ ମୋର । ମତେ ନପଚାରି ଓଉ ତୋଳି ପାରିବ ନାହିଁ । ଯଦି ତୋଳିବ, ତେବେ ମୋ ଭାଗ ପଠାଇ ଦେବେ ।" ସତରେ କେତେ ଆତ୍ମୀୟତା ଥିଲା ସେ କଥାରେ । ମୁଁ ସେ କ୍ୱାଟରରେ ଚାରିବର୍ଷ ରହିଥିଲି ।

ଭୁବନେଶ୍ୱରରେ କିଛିବର୍ଷ ରହିବା ପରେ ମୋର ଜଣାଶୁଣା ମହଲ କ୍ରମେ ବଢ଼ିବାରେ ଲାଗିଲା । ଯେହେତୁ ଗୋପାଳ ବାବୁ ଅଧିକାଂଶ ସଭାସମିତିକୁ ଯାଉନଥିଲେ, ସେଥିପାଇଁ ମତେ ଅଧିକ ନିମନ୍ତ୍ରଣ ମିଳିଲା । ମୁଁ ମଧ୍ୟ ନିଷ୍ଠାର ସହିତ ସେସବୁର ନ୍ୟୁଜ୍ ସଂଗ୍ରହ କରି ପତ୍ରିକାରେ ଛପାଇବାର ବ୍ୟବସ୍ଥା କରୁଥିଲି ।

ମୋର ଲୋକପ୍ରିୟତାକୁ ବୋଧହୁଏ ଗୋପାଳ ବାବୁ ଠିକ୍ ଭାବରେ ଗ୍ରହଣ କରୁନଥିଲେ । ମୁହଁରେ କିଛି କହୁନଥିଲେ ବି ତାଙ୍କ ହାବଭାବରୁ ମୁଁ ସେକଥା ବୁଝିପାରୁଥିଲି ।

କୌଣସି ଏକ କାରଣରୁ କଟକରେ ଥିବା ରାମହରିବାବୁ ଅମୃତ ବଜାର ପତ୍ରିକା କର୍ତ୍ତୃପକ୍ଷଙ୍କ କୋପଦୃଷ୍ଟିରେ ପଡ଼ିଲେ । ସେମାନେ ରାମହରିବାବୁଙ୍କୁ କଟକରୁ ବଦଳି କରି କଲିକତା ନେଇଯିବାକୁ ଚାହିଁଲେ ।

ଗୋପାଳବାବୁଙ୍କର ମଧ୍ୟ ରାମହରିବାବୁଙ୍କ ସହିତ ଭଲ ସମ୍ପର୍କ ନଥିଲା । ଅନ୍ୟପକ୍ଷରେ ଭୁବନେଶ୍ୱରରେ ମୋର ପ୍ରତିଷ୍ଠାକୁ ସେ ପରୋକ୍ଷରେ ସହ୍ୟ କରିପାରୁନଥିଲେ । ରାମହରିବାବୁଙ୍କ ବଦଳି ପ୍ରସ୍ତାବ ତାଙ୍କ ପାଇଁ ଏକ ସୁଯୋଗ ଆଣିଦେଲା ।

ସେ ଗୋଟିଏ ଗୁଳିରେ ଦୁଇଟି ଶୀକାର କରିବାକୁ ଚାହିଁଲେ । ରାମହରିବାବୁ କଲିକତା ଗଲେ ମତେ କଟକକୁ ବଦଳି କରିବା ପାଇଁ ସେ ପତ୍ରିକା ହାଉସକୁ ଲେଖିଦେଲେ । ମାତ୍ର ମତେ ପରମାନେଣ୍ଟ କରିବା କିମ୍ବା ମୋର ଦରମା ବୃଦ୍ଧି ସଂକ୍ରାନ୍ତରେ କିଛି ସୁପାରିଶ କଲେ ନାହିଁ । ଏହା ତାଙ୍କର ଏକ ହୀନମନ୍ୟତା ଥିଲା ।

ବଦଳି ଅର୍ଡର ପାଇ ମୁଁ କଟକ ଅଫିସରେ ଯୋଗ ଦେବାକୁ ପ୍ରସ୍ତୁତ ହେଲି । ସେତେବେଳେ ବାରବାଟୀ ଷ୍ଟାଡ଼ିୟମର ଗୋଟିଏ କୋଠରୀରେ ଅମୃତ ବଜାର ପତ୍ରିକା ଅଫିସ କାର୍ଯ୍ୟ କରୁଥିଲା । ରାମହରିବାବୁ କଲିକତା ନଯିବା ପାଇଁ ଅନେକ ଚେଷ୍ଟା କରିଥିଲେ । ମାତ୍ର ସେଥିରେ ସଫଳ ହୋଇନଥିଲେ । ମୁଁ କଟକ ଯିବାର କିଛି ଦିନ ପରେ ସେ କଲିକତା ଚାଲିଯାଇଥିଲେ ।

ମୁଁ ଭୁବନେଶ୍ୱରରେ ଥିଲାବେଳେ ମୁଁ ଗୋଟିଏ ବଜାଜ୍ ସ୍କୁଟର କିଣିଥିଲି । ସେ ସ୍କୁଟର କିଣିବା ପଛରେ ଏକ ବିରାଟ ଘଟଣା ଘଟିଥିଲା ।

ମୋର ଯାହା ମନେପଡୁଛି, ବୋଧହୁଏ ୧ ୯ ୭ ୪ ମସିହା ସେପ୍ଟେମ୍ବର ମାସର ଘଟଣା । ମୁଁ ସାଇକେଲରେ ସେକ୍ରେଟେରିଏଟ୍ ଯିବା ସମୟରେ ନାଲିବତୀ ଲଗା ଗୋଟିଏ କାର ହଠାତ୍ ମୋ ପାଖରେ ଅଟକିଗଲା । ମୁଁ ପଛକୁ ଅନେଇ ଦେଖିଲା ବେଳକୁ ପୂର୍ତ୍ତ ଓ ପରିବହନ ବିଭାଗ ମନ୍ତ୍ରୀ ଲକ୍ଷ୍ମଣ ମଲ୍ଲିକ ସେ ଗାଡ଼ିରେ ବସିଥିଲେ ।

ତାଙ୍କ ଘର ଆମ ଗାଁ' ପାଖରେ । ସେ ମତେ ପିଲାଦିନୁ ଜାଣିଥିଲେ । ମତେ ଦେଖି ପଚାରିଲେ, " କିଓ ନେତା, ସାଇକେଲରେ ଖରାରେ କୁଆଡ଼େ ଯାଉଛ ? କ'ଣ ସ୍କୁଟର ଏପର୍ଯ୍ୟନ୍ତ କିଣିନାହଁ ?" ମୁଁ କହିଲି, "ସ୍କୁଟର କ'ଣ ଆଳୁ, ପିଆଜ ଭଳି ବଜାରରେ ମିଳୁଛି ଯେ ମୁଁ କିଣି ଆଣିବି ? ସରକାରୀ କୋଟାରେ ଯୋଉ ସ୍କୁଟର ମଳୁଛି, ତାକୁ ମତେ କିଏ କହିଁକି ଦବ ?" ମୋ କଥାର ମର୍ମ ବୋଧେ ଲକ୍ଷ୍ମଣ ବାବୁ ବୁଝିପାରିଥିଲେ । "ହଉ ତମେ ମୋ ଅଫିସକୁ ଆସ । ତମ ପାଇଁ ସ୍କୁଟର ଯୋଗାଡ଼ ହୋଇଯିବ ।" ଏତିକି କହି ସେ କାର୍‌ରେ ଚାଲିଗଲେ ।

କିଛି ସମୟପରେ ମୁଁ ସେକ୍ରେଟେରିଏଟ୍‌ରେ ଥିବା ତାଙ୍କ ଅଫିସରେ ପହଞ୍ଚିଲି । ସେ ସାଙ୍ଗେ ସାଙ୍ଗେ ଗୋଟିଏ ଫର୍ମ ମଗାଇ ସେଥିରେ 'Commissioner Transport, Please allot a Bajaj Scooter' ବୋଲି ଲେଖି ଦସ୍ତଖତ କରିଦେଲେ । ମୁଁ ସେଥିରେ ମନ୍ତ୍ରୀଙ୍କ ଅଫିସର ମୋହର ଲଗାଇ ନମ୍ବର ପକାଇ ଫର୍ମଟି ସାଙ୍ଗରେ ନେଇଆସିଲି ।

ସେତେବେଳେ ଟି.ୟୁ ବିଜୟ ଶେଖରନ୍ ଟ୍ରାନ୍ସପୋର୍ଟ କମିଶନର ଥିଲେ । ସେ କଟକର କଲେକ୍ଟର ଥିବା ସମୟରେ ତାଙ୍କ  ସହିତ ମୋର ଭଲ ସମ୍ପର୍କ ଥିଲା । ମନ୍ତ୍ରୀଙ୍କ ସୁପାରିଶ ଥିବା ଫର୍ମଟି ମୁଁ ତାଙ୍କୁ ଦେବାରୁ ସେ କହିଲେ, "ମି. ଦାସ ସ୍କୁଟର ଆଲଟମେଣ୍ଟ ମୁଁ କରୁନାହିଁ, ଆମର ଡେପୁଟି କମିଶନର ଦିବ୍ୟସିଂହ ତ୍ରିପାଠୀଙ୍କୁ ସେ ଦାୟିତ୍ୱ ଦିଆଯାଇଛି । ଆପଣ ତାଙ୍କୁ ଦେଖାକରନ୍ତୁ । ସେ ସବୁ ବ୍ୟବସ୍ଥା କରିଦେବେ ।"

ମୁଁ ଦିବ୍ୟସିଂହବାବୁଙ୍କୁ ତାଙ୍କ ଅଫିସରେ ଦେଖାକରି ମନ୍ତ୍ରୀ ସୁପାରିଶ କରିଥିବା ଦରଖାସ୍ତଟି ଦେଲି । ତାଙ୍କୁ ମୁଁ ଆଗରୁ କେବେ ଦେଖିନଥିଲି । ଦରଖାସ୍ତଟି ଦେଖୁ ଦେଖୁ ସେ ହଠାତ୍ ରୁକ୍ଷଗଳାରେ କହିଲେ, "ମନ୍ତ୍ରୀ ଯାହାକୁ ପାଉଛନ୍ତି, ତା'ପାଇଁ ଲେଖିଦେଉଛନ୍ତି । ତାହେଲେ ଆମେ ଏଠି କାହିଁକି ଅଛୁ ? ଆପଣ ତ ଆକ୍ରିଡେଟେଡ୍ ଜର୍ଣ୍ଣାଲିଷ୍ଟ ନୁହନ୍ତି, ଆଉ ସ୍କୁଟର ପାଇଁ ଚାଲିଆସିଛନ୍ତି ।" ଶ୍ରୀ ତ୍ରିପାଠୀଙ୍କର ସେଦିନର ସେ ରୁକ୍ଷ ବ୍ୟବହାର ମତେ ବହୁତ ଆଘାତ ଦେଇଥିଲା ।

ମୁଁ ଭୁବନେଶ୍ୱର ଫେରି ଲକ୍ଷ୍ମଣବାବୁଙ୍କୁ ସବୁକଥା ଜଣାଇ ତାଙ୍କୁ କହିଲି, "ମୁଁ ମୋ ସାଇକେଲରେ ଖୁସି ଥିଲି । ଆପଣ ମତେ ସ୍କୁଟର ଦେବାପାଇଁ ଡ଼ାକି ଏପରି ଅପମାନିତ କଲେ କାହିଁକି ? ଯଦି ମୁଁ ଆପଣଙ୍କର କିଛି କ୍ଷତି କରିଥିଲି, ତେବେ ଆପଣ ମତେ ସିଧାସଳଖ କହିଲେ ନାହିଁ କାହିଁକି ? ମତେ ଅଫିସରଙ୍କ ଦ୍ୱାରା ଅପମାନ ଦେଇ ଆପଣଙ୍କର କ'ଣ ଲାଭ ହେଲା ?" ମୋ କଥା ଲକ୍ଷ୍ମଣ ବାବୁଙ୍କୁ ବାଧିଥିଲା । ସେ ମତେ ବୋଧଦେଇ 'ହଉ ବୁଝିବା' ବୋଲି କହି ବିଦାୟ ଦେଇଥିଲେ ।

ମୋର ସୌଭାଗ୍ୟ ହେଉ କିମ୍ବା ଦିବ୍ୟସିଂହବାବୁଙ୍କର ଦୁର୍ଯୋଗ ହେଉ, ସେଦିନ ଅପରାହ୍ନରେ ଲକ୍ଷ୍ମଣବାବୁଙ୍କ ଅଫିସରେ ଗୋଟିଏ ମିଟିଂ ହୋଇଥିଲା । ସେଥିରେ ଶ୍ରୀ ତ୍ରିପାଠୀ ଯୋଗଦେବାକୁ କଟକରୁ ଆସିଥିଲେ ।

ମିଟିଂ ଆରମ୍ଭ ହେବା ପୂର୍ବରୁ ମନ୍ତ୍ରୀ ଶ୍ରୀ ମଲ୍ଲିକ ତାଙ୍କୁ କହିଲେ, "ଦିବ୍ୟସିଂହବାବୁ, ଆପଣ ମୁଖ୍ୟମନ୍ତ୍ରୀଙ୍କ ସେକ୍ରେଟାରୀ ରମାକାନ୍ତ ବାବୁଙ୍କ ଭିଣୋଇ । ଆପଣଙ୍କର ମୁଖ୍ୟମନ୍ତ୍ରୀଙ୍କ ସାଙ୍ଗରେ ଭଲ ସମ୍ପର୍କ ଅଛି । ଆପଣ ଦୟାକରି ଗୋଟିଏ ନୋଟସିଟ୍‌ରେ ମୁଖ୍ୟମନ୍ତ୍ରୀଙ୍କ ପାଖରୁ ଅର୍ଡର କରି ଆଣନ୍ତୁ ଯେ, ଟ୍ରାନ୍ସପୋର୍ଟ ମନ୍ତ୍ରୀଙ୍କ ପାଖରେ ଯେଉଁ ଇଚ୍ଛାଧୀନ ସ୍କୁଟର କୋଟା ଅଛି, ସେ କୋଟାରେ ଆପଣ ସ୍କୁଟର ଆଲଟମେଣ୍ଟ କରିବେ ।"

ଶ୍ରୀ ତ୍ରିପାଠୀ ପ୍ରଥମେ ସେ କଥାର ଗୁରୁତ୍ୱ କିଛି ବୁଝିପାରିନଥିଲେ । କାରଣ ସେ ଭାବି ପାରିନଥିଲେ ଯେ, ସେଦିନ ସକାଳେ ସେ ମତେ ଯେପରି ବ୍ୟବହାର ଦେଖାଇଥିଲେ, ସେ ବିଷୟରେ ମନ୍ତ୍ରୀ ସବୁ ଜାଣିପାରିଥିବେ ।

ଲକ୍ଷ୍ମଣବାବୁ ତାଙ୍କୁ ଅତି ଭଦ୍ରଭାବରେ କହିଲେ, "ଦେଖନ୍ତୁ, ମନ୍ତ୍ରୀଙ୍କ ଇଚ୍ଛାଧୀନ କୋଟାକୁ ଯଦି ଆପଣ ନିୟନ୍ତ୍ରଣ କରିବେ, ତେବେ ଇଚ୍ଛାଧୀନ କୋଟାର ଅର୍ଥ କ'ଣ ? ଆପଣ ସ୍କୁଟର ନଦେବେ ନାହିଁ, ଲୋକଙ୍କ ସାଙ୍ଗରେ ଅସୌଜନ୍ୟ ବ୍ୟବହାର କରୁଛନ୍ତି କାହିଁକି ?" ସେତେବେଳକୁ ଦିବ୍ୟସିଂହବାବୁ, ମନ୍ତ୍ରୀଙ୍କ କଥାର ମର୍ମ ବୁଝିସାରିଥିଲେ ।

ସେଦିନ ସନ୍ଧ୍ୟାରେ କଟକରୁ ଟ୍ରାନ୍ସପୋର୍ଟ କମିଶନର ବିଜୟ ଶେଖରନ ଫୋନ୍‌ରେ ମତେ ପଚାରିଲେ, "ବସନ୍ତ ବାବୁ ଆପ୍‌କା ଦିବ୍ୟସିଂହବାବୁକା ସାଥ୍ କୁଛ ଝଗଡ଼ା ହୁଆ କ୍ୟା ?" ମୁଁ ବିନୟର ସହିତ କହିଥିଲି, "ଦେଖନ୍ତୁ ଆଜ୍ଞା, ସେ ଆଇଏଏସ ଅଫିସର, ଆଉ ମୁଁ ଜଣେ ସାମାନ୍ୟ ସାମ୍ବାଦିକ । ତାଛଡା, ସେ ହେଉଛନ୍ତି ଶାସନର ସର୍ବଶକ୍ତିମାନ ଅଫିସର ରମାକାନ୍ତ ରଥଙ୍କ ଭିଣୋଇ । ତାଙ୍କ ସାଙ୍ଗରେ ମୁଁ କେମିତି ଝଗଡ଼ା କରିପାରିବି ?"

ଶ୍ରୀ ବିଜୟ ଶେଖରନ୍ କଥା ନବଢ଼ାଇ କହିଲେ, "ଦେଖନ୍ତୁ ଅକ୍ଟୋବର ମାସର ବଜାଜ ସ୍କୁଟର କୋଟା ଆଲଟ ହୋଇଗଲାଣି । ଆପଣ ଯଦି ଚାହିଁବେ ମୁଁ ଆପଣଙ୍କୁ ଗୋଟିଏ ଲାମ୍ବ୍ରେଟା ସ୍କୁଟର ଆଲଟ କରିଦେବି ।" ମୁଁ ତାଙ୍କ ପ୍ରସ୍ତାବରେ ରାଜି ନହୋଇ ରୋକ୍‌ଠୋକ୍ ଭାବରେ ଜଣାଇଥିଲି, "ଯଦି ମୁଁ ସରକାରୀ କୋଟାରୁ ସ୍କୁଟର ପାଇବା କଥା, ତେବେ କେବଳ ବଜାଜ୍ ସ୍କୁଟର ହିଁ ନେବି । ସ୍କୁଟର ଆଲଟମେଣ୍ଟ ଅର୍ଡର ମୋ ପାଖକୁ ଆସିବ । ମୁଁ ଅର୍ଡର ପଛରେ ଗୋଡ଼େଇବି ନାହିଁ ।"

ଜାନୁୟାରୀ ମାସ କୋଟାରେ ମୋ ନାଁରେ ଗୋଟିଏ ବଜାଜ୍ ସ୍କୁଟର ଆଲଟମେଣ୍ଟ ଆସିଲା । ବରୋଦା ବ୍ୟାଙ୍କରୁ ଶତକଡ଼ା ଷୋହଳ ହାର ସୁଧରେ ଋଣ କରି ମୁଁ ସ୍କୁଟରଟି କିଣିଲି । ସେ ସ୍କୁଟରଟି ମୋ ପାଖରେ ଏକପ୍ରକାର ଜୀବନସାଥୀ ହୋଇ ଦୀର୍ଘ ଚାଳିଶ ବର୍ଷ କାଳ ରହିଥିଲା । ଡାକ୍ତରଙ୍କ ପରାମର୍ଶରେ ସ୍କୁଟର ଚଢ଼ା ଛାଡିବା ପରେ ସେ ସ୍କୁଟରକୁ ବହୁଦିନ କାଳ ଗ୍ୟାରେଜ୍‌ରେ ରଖିଥିଲି ।

୧୯୭୭ ମସିହା ଅଗଷ୍ଟ ମାସ ୧୨ ତାରିଖରେ ମତେ କଟକ ଯିବାକୁ କୁହାଯାଇଥିଲା । ଠିକ୍ ନଅବର୍ଷ ତଳେ ଏଇଦିନ ମୁଁ ଅମୃତ ବଜାର ପତ୍ରିକାରେ ଜଣେ ଅସ୍ଥାୟୀ ସମ୍ବାଦଦାତା ଭାବରେ ଯୋଗ ଦେଇଥିଲି ।

ସେଦିନ ସନ୍ଧ୍ୟାରେ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କର କଟକରେ ଦୁଇଟି କାର୍ଯ୍ୟକ୍ରମ ଥିଲା । ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟକ୍ରମରେ ଯୋଗଦେଇ ଟେଲିଗ୍ରାଫ୍ ଅଫିସରୁ ନ୍ୟୁଜ୍ ପଠାଇ ସାରିଲାବେଳକୁ ରାତି ଦଶଟା ବାଜିଯାଇଥିଲା । ଏତେ ରାତିରେ କାହିଁ କାହା ଘରକୁ ଯାଇ ହଇରାଣ କରିବି, ଏଇକଥା ଭାବି ମୁଁ ସ୍ଥିର କଲି ସ୍କୁଟର ତ ଅଛି, ଭୁବନେଶ୍ୱର ପଳେଇଲେ ହେବ ।

ଆକାଶରେ ମେଘ ଘୋଡେଇ ଝିପିଝିପି ବର୍ଷା ହେଉଥିଲା । ମଝିରେ ମଝିରେ ଜହ୍ନ ଦେଖାଯାଉଥିଲା । ସେତେବେଳେ କଟକ, ଭୁବନେଶ୍ୱର ରାସ୍ତା ମଝିରେ ପାହାଳ ପାଖରେ ରାତିରେ ଗୋଟିଏ ଅଶରୀର ଆତ୍ମା ବାହାରି ଗାଡ଼ି ଆଗରେ ଦଉଡୁଥିବା କଥା ଶୁଣାଯାଉଥିଲା ।

ମୁଁ ଫୁଲନଖରା ଛକ ଟପିବା ପରେ ସେ କଥା ମୋର ମନେ ପଡ଼ିଯାଇଥିଲା । ମନରେ ଅଜଣା ଭୟ ପଶିଗଲା । ଦେହରୁ ଗମ୍‌ଗମ୍ ହୋଇ ଝାଳ ବୋହିଯାଇଥିଲା । ମୁଁ ଦ୍ୱନ୍ଦ୍ୱରେ ପଡ଼ିଯାଇଥିଲି, ଆଗକୁ ବଢ଼ିବି ନା ପଛକୁ ଫେରିବି ।

ଯୋଉ ରାସ୍ତାରେ ମୁଁ ବସ୍, କାର, ସ୍କୁଟର ଓ ସାଇକେଲରେ ଶହ ଶହ ଥର ଯିବାଆସବା କରୁଥିଲି, ସେହି ରାସ୍ତାରେ ସେଦିନ ରାତିରେ ମୋର ଆଗକୁ ବଢ଼ିବାକୁ ସାହସ ହୋଇନଥିଲା । ମୁଁ ନଖରା ପାଖରେ ଥିବା ପେଟ୍ରୋଲ ଟାଙ୍କି ନିକଟରେ ସ୍କୁଟର ଷ୍ଟାର୍ଟ ରଖି ଅପେକ୍ଷା କରି ରହିଲି ।

ରାସ୍ତା ପ୍ରାୟ ଶୂନ୍‌ଶାନ ହୋଇଯାଇଥିଲା । କିଛି ସମୟ ପରେ ପଛରୁ ଗୋଟିଏ କାରର ଆଲୁଅ ଦେଖାଗଲା । ମୋ ମନରେ ଟିକିଏ ସାହସ ହେଲା । ମୁଁ ସେ କାର ଆଗେ ଆଗେ ସ୍କୁଟର ଚଳାଇଲି । କାର ଯେତେ ହର୍ଣ୍ଣ ଦେଲେ ବି ମୁଁ ତାକୁ ସାଇଡ୍ ନଦେଇ ରାସ୍ତା ମଝିରେ ଯାଉଥିଲି ।

ହଂସପାଳ ପୋଲ ଟପିବା ପରେ ମୁଁ କାରକୁ ଅଟକାଇଥିଲି । ସେ କାରଟି ଷ୍ଟେଟ ଗେଷ୍ଟହାଉସର ଥିଲା । ଡ୍ରାଇଭର ମତେ ଜାଣିଥିଲା । ଗେଷ୍ଟଙ୍କୁ ବାଲେଶ୍ୱରରେ ଛାଡି ଫେରୁଥିଲା । ମୁଁ ତାକୁ ସବୁକଥା କହିଲି । ସେ ମୋ ପଛେ ପଛେ ଆସି ରବୀନ୍ଦ୍ର ମଣ୍ଡପ ପାଖରେ ମତେ ଛାଡି ଗେଷ୍ଟ ହାଉସ ଗଲା । ମୁଁ ଘରେ ପହଞ୍ଚିଲା ବେଳକୁ ରାତି ପାଖାପାଖି ବାରଟା ବାଜି ଯାଇଥିଲା । ସେଦିନର ସେ ଅନୁଭୂତି ମୁଁ ଜୀବନରେ ଭୁଲିପାରିନାହିଁ ।

ପୁଅ ଚନ୍ଦନର ସେତେବେଳେ ଷ୍ଟାଣ୍ଡାର୍ଡ ଥ୍ରୀ ହୋଇଥିଲା । ସେ ଭୁବନେଶ୍ୱର ଡ଼ି.ଏ.ଭି ସ୍କୁଲରେ ପଢୁଥିଲା । କଟକ ଗଲେ କୋଉ ସ୍କୁଲରେ ପଢ଼ିବ, ବର୍ଷ ମଝିରେ ସିଟ୍ ମିଳିବ କି ନାହିଁ, ସେ ଚିନ୍ତା ମୁଣ୍ଡରେ ଘାରିଥିଲା ।

ମୁଁ ଯାଇ କଟକ ଷ୍ଟୁଆର୍ଟ ସ୍କୁଲର ପ୍ରିନ୍ସିପାଲଙ୍କୁ ଦେଖାକଲି । ଚନ୍ଦନ କ୍ଲାସରେ ଫାଷ୍ଟ, ସେକେଣ୍ଡ ହେଉଥିଲା । ସେ ପ୍ରୋଗ୍ରେସ ରିପୋର୍ଟଟି ତାଙ୍କୁ ଦେଖାଇଲି । ପ୍ରିନ୍ସିପାଲ ଜଣେ ବିହାରୀ ଲୋକ । ହେଲେ ତାଙ୍କ ବ୍ୟବହାର ଖୁବ୍ ମାର୍ଜିତ ଥିଲା ।

ସେ ରିପୋର୍ଟ ଦେଖି ଖୁସି ହୋଇଗଲେ । ମତେ କହିଲେ, "As on date there is no vacancy. I will offer the first vacancy when it arises to your son."

ଚନ୍ଦନର ଭାଗ୍ୟ ଭଲ । ଆମେ କଥାବାର୍ତ୍ତା ହେଉଥିଲା ବେଳେ ସ୍କୁଲର ପିଅନ ଆସି ଖବର ଦେଲା, ଷ୍ଟାଣ୍ଡାର୍ଡ ଥ୍ରୀର ଜଣେ ପିଲା ଟି.ସି ନେଇଯାଇଛି । ପ୍ରିନ୍ସିପାଲ ସାଙ୍ଗେସାଙ୍ଗେ

ମତେ କଙ୍ଗ୍ରାଚ୍ୟୁଲେସନ ଜଣାଇ କହିଲେ, "Mr Das, your son is lucky. I will offer the seat to him."

କଟକରେ କୋଉଠି ରହିବୁ, ଘରଭଡା ନେବୁ କି ପୁଣି ନୟାଚୌକ ଘରକୁ ଫେରିବୁ ସେ କଥା ଭାବି ଭାବି ରାତିରେ ନିଦ ହୋଇନଥିଲା । ଯାହା କୁହାଯାଏ "ରଖେ ହରି ତୋ ମାରେ କୋନ୍, ମାରେ ହରିତ ରଖେ କୋନ୍", ମୋ କ୍ଷେତ୍ରରେ ସେଇୟା ହେଲା ।

ସେ ସମୟରେ କଟକ ରେଡ଼ିଓ ଷ୍ଟେସନର ନ୍ୟୁଜ୍ ଏଡ଼ିଟର ଥିବା ଦେବେନ୍ଦ୍ର ପଟ୍ଟନାୟକଙ୍କ ଭୁବନେଶ୍ୱରକୁ କ୍ଷେତ୍ର ପ୍ରଚାର ସଂସ୍ଥା(ଫିଲ୍ଡ ପବ୍ଲିସିଟି)କୁ ବଦଳି ହୋଇଥିଲା । ସେ କଟକରେ ଗୋଟିଏ ସରକାରୀ କ୍ୱାଟରରେ ରହୁଥିଲେ । ମୋ ମୁଣ୍ଡକୁ ଗୋଟାଏ ବୁଦ୍ଧି ଦେଖାଗଲା ।

ଦେବେନ୍ଦ୍ରବାବୁଙ୍କ ସାଙ୍ଗରେ ଯଦି କ୍ୱାଟର ଅଦଳବଦଳ କରାଯାଇ ପାରନ୍ତା କେମିତି ହୁଅନ୍ତା ? ମୁଁ ଦେବେନ୍ଦ୍ରବାବୁଙ୍କୁ ଦେଖାକରି ପ୍ରସ୍ତାବଟି ଦେଲି । ସେ ଏତେ ଖୁସି ହୋଇଗଲେ ଯେ ମତ କୁଣ୍ଢେଇ ପକାଇ କହିଲେ, "ମତେ ପଚାରୁଛୁ କ'ଣ ? ଯଦି ଘର ବଦଳ ହୋଇପାରିବ, ତେବେ ତା'ଠାରୁ ବଡ଼ କଥା ଆଉ କ'ଣ ହୋଇପାରେ ?"

ମୁଁ ସରକାରୀସ୍ତରରେ ଚେଷ୍ଟା କରି ଘର ଅଦଳବଦଳ କରିଦେଲି । କଟକରୁ ଦେବେନ୍ଦ୍ର ବାବୁଙ୍କର ଯେଉଁ ଟ୍ରକରେ ଜିନିଷ ପତ୍ର ଭୁବନେଶ୍ୱର ଆସିଥିଲା, ସେଇ ଟ୍ରକରେ ମୋ ଜିନିଷ କଟକ ନେଇଥିଲି ।

ସେଠି ବି ସେଇ ଘଟଣା । ଟ୍ରକରୁ ଜିନିଷପତ୍ର ଓହ୍ଲାଇଲା ବେଳେ ପଡ଼ୋଶୀମାନେ ଉଙ୍କି ମାରି ଦେଖୁଥିଲେ । ମୋର ବିଶେଷ କିଛି ଜିନିଷ ନଥିଲା । ସେଇଥିରୁ ସେମାନେ ବୋଧେ ମୋର ସାମାଜିକସ୍ଥିତିକୁ କଳନା କରୁଥିଲେ । ପରେ କିନ୍ତୁ ସେମାନଙ୍କ ସହିତ ଆତ୍ମୀୟତା ଏତେ ପରିମାଣରେ ବଢ଼ିଗଲା ଯେ, ଆମେ ପ୍ରାୟ ଗୋଟିଏ ପରିବାର ଭଳିଆ ଦୀର୍ଘ ଆଠବର୍ଷ ଚଳିଥିଲୁ ।

କଟକରେ ଘର ମିଳିଗଲା । ଚନ୍ଦନର ସ୍କୁଲରେ ନାଁ ଲେଖା ମଧ୍ୟ ସରିଲା । କାମ ଆରମ୍ଭ ହେବା କଥା । କଟକେର ମାଟି, ପାଣି ସହିତ ପରିଚିତ ଥିବାରୁ କିଛି ଅସୁବିଧା ହେଲାନାହିଁ । ମୁଁ କଟକ ବଦଳି ହେବା ସମୟରେ ଗୋପାଳବାବୁ ସୁପାରିଶ କରିଥିଲେ ମୋ ଚାକିରି ପରମାନେଣ୍ଟ ହୋଇଯାଇଥାଆନ୍ତା । କିନ୍ତୁ ସେ ସୁପାରିଶ ନକରି ମାସକୁ ଆଉ ଦୁଇଶହ ଟଙ୍କା ବଢ଼ାଇ ଦେବାକୁ ଲେଖିଦେଲେ । ଆଗରୁ ମାସକୁ ଚାରିଶହ ଟଙ୍କା ମିଳୁଥିଲା ।

ମୋର କଟକ ବଦଳି ହୋଇଥିବା ଖବର ଶୁଣି ରେଡିଓ ଷ୍ଟେସନର ନ୍ୟୁଜ୍ ରୁମ୍ ଅଫିସରମାନେ ଖୁସି ହୋଇଗଲେ । ସେମାନଙ୍କ ସାଙ୍ଗରେ ସମ୍ପର୍କ ପୁଣି ସ୍ଥାପିତ ହେଲା । ପୂର୍ବଭଳି ମୁଁ ସାମୟିକ ଭାବରେ ସେଠାରେ କାମ କଲି । ଅଳ୍ପଦିନ ଭିତରେ କଟକରେ ଅବସ୍ଥାପିତ କଲେକ୍ଟର, ଏସପି, ଆରଡିସି, ପୁଲିସ ଡିଆଇଜି ଓ ଅନ୍ୟ ଅଫିସରମାନଙ୍କ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ପକ୍ଷରୁ ଆୟୋଜିତ ଉତ୍ସବରେ ମୁଖ୍ୟମନ୍ତ୍ରୀ
ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା ସମ୍ବର୍ଦ୍ଧିତ



ମୁଖ୍ୟମନ୍ତ୍ରୀ ହେମାନନ୍ଦ ବିଶ୍ୱାଳଙ୍କ ସହିତ ଏକ ରାତ୍ରିଭୋଜନ ଅବସରରେ




'ନିତ୍ୟ ନୂତନ' ଉତ୍ସବରେ ମୁଖ୍ୟମନ୍ତ୍ରୀ ଗିରିଧର ଗମାଙ୍ଗଙ୍କ ଦ୍ୱାରା ସମ୍ବର୍ଦ୍ଧିତ




ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ସହିତ ଏକ ଅନ୍ତରଙ୍ଗ ମୁହୂର୍ତ୍ତରେ



ଓଡ଼ିଶା ବିଧାନସଭାର ବାଚସ୍ପତି ଶରତ କୁମାର କରଙ୍କ ସହିତ ନିଜ ପୁସ୍ତକ 'ଓଡ଼ିଶା ରାଜନୀତିର ଗୋପନ କଥା' ସମ୍ପର୍କରେ ଆଲୋଚନା



ଏକ ଖୁସି ମୁହୂର୍ତ୍ତରେ ଦୁଇ ବନ୍ଧୁ, ଅର୍ଥମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ ଓ ବରିଷ୍ଠ ସାମ୍ବାଦିକ ବସନ୍ତ ଦାସ



ଭୁବନେଶ୍ୱର ମହାନଗର ନିଗମର ମେୟର ଅନନ୍ତ ନାରାୟଣ ଜେନାଙ୍କୁ ମିଡିଆ ଏକାଡେମୀ ପକ୍ଷରୁ ସମ୍ବର୍ଦ୍ଧନା ଜ୍ଞାପନ ଅବସରରେ



ବରିଷ୍ଠ ମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନଙ୍କ ଦ୍ୱାରା 'ଚିନ୍ତା ଓ ଚେତନା' ଉତ୍ସବରେ ସମ୍ବର୍ଦ୍ଧିତ



'ବସନ୍ତ ଦାସ ଫାଉଣ୍ଡେସନ୍'ର ଉଦ୍‌ଘାଟନ ଉତ୍ସବରେ ବନ୍ଧୁମାନଙ୍କ ଗହଣରେ

# ସାଂସ୍କୃତିକ ସମ୍ପର୍କ



କୋଣାର୍କଠାରେ ଅନୁଷ୍ଠିତ ପୂର୍ବତନ ଛାତ୍ର ୟୁନିୟନ୍ ନେତାମାନଙ୍କ ବୈଠକରେ ବସନ୍ତ ଦାସ



ନରାଜ ଡାକବଙ୍ଗଳାରେ 'ୟୁନିୟନ୍ ଫ୍ରେଣ୍ଡ୍ସ'ର ବୈଠକରେ ବନ୍ଧୁମାନଙ୍କ ଗହଣରେ ବସନ୍ତ ଦାସ




'ୟୁନିୟନ୍ ଫ୍ରେଣ୍ଡସ'ର ଅନ୍ୟ ଏକ ବୈଠକ



କଟକଠାରେ 'ୟୁନିୟନ୍ ଫ୍ରେଣ୍ଡସ'ର ବୈଠକରେ ବସନ୍ତ ଦାସଙ୍କ ଉଦ୍‌ବୋଧନ । ପାଖରେ ବସିଛନ୍ତି - ୟୁନିୟନ୍ ଫ୍ରେଣ୍ଡସ୍‌ର ସଭାପତି ସନ୍ତୋଷ କୁମାର ସାହୁ, ଦୁଇ ବରିଷ୍ଠ ନେତା ବିଷ୍ଣୁ ପ୍ରସାଦ ବାହାଲିଆ ଓ ଭାଗବତ ବେହେରା

PRESS CLUB

LIONS CLUB CUTTACK

କଟକ ପ୍ରେସ୍ କ୍ଲବରେ ସୂଚନା ଓ ଲୋକ ସମ୍ପର୍କ ସଚିବ ଏ.ଏନ୍. ତିୱାରୀ ଓ ଅନ୍ୟ ବନ୍ଧୁମାନଙ୍କ ସହିତ



'ଜ୍ଞାନମଣ୍ଡଳ' ପ୍ରଣେତା ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋଙ୍କ ଦ୍ୱାରା ଆୟୋଜିତ ସମ୍ବର୍ଦ୍ଧନା ଉତ୍ସବରେ



ମିଡିଆ ଏକାଡେମୀ ସାହିତ୍ୟ ମଞ୍ଚ ବୈଠକରେ ବନ୍ଧୁମାନଙ୍କ ସହିତ




ଏକ ମାଗଣା ଚକ୍ଷୁ ଚିକିତ୍ସା କେନ୍ଦ୍ରରେ ସଂଗଠକ ବସନ୍ତ ଦାସଙ୍କ ଉଦ୍‌ବୋଧନ

ସାଙ୍ଗରେ ପରିଚୟ ହୋଇଗଲା । ସେତେବେଳେ ପ୍ରଫୁଲ୍ଲ ରଥ ପୁଲିସ୍ ଡିଆଇ, ରମାକାନ୍ତ ମିଶ୍ର ଆରଡିସି ଥିଲେ । କଲେଜରେ ଆମ ଠାରୁ ତିନିବର୍ଷ ଜୁନିଅର ଥିବା ପ୍ରସନ୍ନ କୁମାର ହୋତା ଜିଲ୍ଲାପାଳ ଓ ଅନାଦି ସାହୁ ଏସ୍‌ପି ଥିଲେ । ଆମ କ୍ୱାଟରରେ ମାସରେ ଥରେ ଭୋଜିଭାତର ବ୍ୟବସ୍ଥା ହେଉଥିଲା । ସେଥିରେ ଏହି ଅଫିସରମାନେ ସମସ୍ତେ ଯୋଗ ଦେଉଥିଲେ । ସେ ବ୍ୟବସ୍ଥା ମୁଁ କଟକ ଛାଡ଼ିବା ପର୍ଯ୍ୟନ୍ତ ଚାଲୁ ରହିଥିଲା ।

ରାଜଧାନୀ ଭୁବନେଶ୍ୱରରେ କେହି ଅଫିସର ନୂତନ ଭାବରେ ନିଯୁକ୍ତି ପାଇଲେ ଯେପରି ପୁରୀ ଯାଇ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରନ୍ତି, ସେହିପରି କେହି ପ୍ରଥମେ ବଦଳି ହୋଇ କଟକ ଆସିଲେ 'ସମାଜ' ଅଫିସକୁ ଯାଇ ରାଧାନାଥ ରଥଙ୍କୁ ଫୁଲତୋଡା ଦେଇ ପ୍ରଣାମ ଜଣାଇବାର ବିଧି ବହୁଦିନୁ ଚଳି ଆସୁଥିଲା ।

ସେହି ପରମ୍ପରା ଓ ବିଧିକୁ ପାଳନ କରି ମୁଁ କଟକ ଯିବାର ପ୍ରଥମ ଦିନ ସମାଜ ଅଫିସ ଯାଇ ଶ୍ରୀ ରଥଙ୍କୁ ଦେଖା କରିଥିଲି ।

ସେଦିନ ମୋର ଯାହା ମନେ ହୋଇଥିଲା, ବୋଧହୁଏ ମୋର କଟକରେ ଅବସ୍ଥାନକୁ ସେ ପସନ୍ଦ କରିନଥିଲେ । ପରେ ଖବର ନେଇ ବୁଝିଥିଲି, ମୁଁ ଡକ୍ଟର ହରେକୃଷ୍ଣ ମହତାବଙ୍କ ଗୋଷ୍ଠୀର ବୋଲି ତାଙ୍କୁ କିଏ ଜଣେ କାନକୁହା କହିଥିଲେ । ସେତେବେଳେ ଡକ୍ଟର ମହତାବ ଓ ଶ୍ରୀ ରଥଙ୍କ ଭିତରେ ସମ୍ପର୍କ ଠିକ୍ ନଥିଲା । ତା'ଛଡା, ତାଙ୍କର ଧାରଣା ହୋଇଥିଲା ଯେ, ମୁଁ କଟକରେ ଅବସ୍ଥାନ କଲେ କର୍ତ୍ତବ୍ୟରତ ସାମ୍ବାଦିକମାନଙ୍କ ପ୍ରତି ସମାଜ କର୍ତ୍ତୃପକ୍ଷଙ୍କ ଅବିଚାର ଘଟଣା ସବୁ ପଦାରେ ପଡ଼ିଯିବ ।

# ଉତ୍କଳ ସାମ୍ବାଦିକ ସଂଘରେ ମୋର ଭୂମିକା

ଛାତ୍ର ରାଜନୀତିର ଅଭିଜ୍ଞତାକୁ ସାଙ୍ଗରେ ଧରି ସାମ୍ବାଦିକ ଜୀବନରେ ପ୍ରବେଶ କରିଥିବାରୁ ମୂଳରୁ ସାମ୍ବାଦିକ ରାଜନୀତିରେ ମୁଁ ଅଜାଣତରେ ପଶିଯାଇଥିଲି । ସେତେବେଳେ ଉତ୍କଳ ସାମ୍ବାଦିକ ସଂଘ, ସମଗ୍ର ଓଡ଼ିଶାରେ ସାମ୍ବାଦିକମାନଙ୍କର ଏକମାତ୍ର ଅନୁଷ୍ଠାନ ଥିଲା ।

୧୯୫୦ ମସିହାରେ ଏହି ଅନୁଷ୍ଠାନଟି ଗଠନ କରାଯାଇଥିଲା । କର୍ତ୍ତବ୍ୟରତ ସାମ୍ବାଦିକମାନଙ୍କ ମଧ୍ୟରେ ସଂହତି ଓ ଏକତା ପ୍ରତିଷ୍ଠା ସହିତ ସେମାନଙ୍କର ସ୍ୱାର୍ଥ ରକ୍ଷା ଏବଂ ବିଭିନ୍ନ ସମସ୍ୟା ସମାଧାନ କରିବା ଏହି ଅନୁଷ୍ଠାନର ମୂଳ ଲକ୍ଷ୍ୟ ଥିଲା । କିନ୍ତୁ କିଛିଦିନ ପରେ ସଂଗଠନଟି କେତେଜଣ 'ମହନ୍ତ'ଙ୍କ କବଜାକୁ ଚାଲିଯାଇଥିଲା । ସେମାନେ ସଂଗଠନକୁ ଅକ୍ତିଆର କରି ନିଜ ନିଜର ସ୍ୱାର୍ଥ ସାଧନରେ ଲାଗି ଯାଇଥିଲେ । ସାମ୍ବାଦିକମାନଙ୍କ ସ୍ୱାର୍ଥ ପଛକୁ ଚାଲିଯାଇଥିଲା ।

୧୯୭୦ ମସିହା ବେଳକୁ ଉତ୍କଳ ସାମ୍ବାଦିକ ସଂଘ କହିଲେ ଏନ୍.କେ. ସ୍ୱାମୀ, ଗୋପାଳ ମିଶ୍ର, ରାମପ୍ରସାଦ ମହାନ୍ତି, ବାଳକୃଷ୍ଣ କାନୁନ୍‌ଗୋ, ରାମକୃଷ୍ଣ ବେହେରା ପ୍ରମୁଖ କେଇଜଣ ହାତଗଣତି ସାମ୍ବାଦିକଙ୍କୁ ବୁଝାଉଥିଲା ।

ଏମାନଙ୍କ ମଧ୍ୟରୁ ଅଧିକାଂଶ ରାଜଧାନୀ ଭୁବନେଶ୍ୱରରେ ଅବସ୍ଥାପିତ ହୋଇଥିଲେ । କଟକରେ ରାମଚନ୍ଦ୍ର ଦାଶ, ଗୋରାଚାନ୍ଦ ମିଶ୍ର, ଦେବେନ୍ଦ୍ର ମହାନ୍ତି, ଆନନ୍ଦ କୁମାର ପାଣି, ନଗେନ ବେଉରିଆ ପ୍ରମୁଖ ଥିଲେ ହେଁ ସଂଗଠନ ବ୍ୟାପାରରେ ସେମାନଙ୍କ ଭୂମିକା ଗୌଣ ଥିଲା ।

ସେହିପରି ବାଲେଶ୍ୱରରେ ମିହିର କୁମାର ଆଚାର୍ଯ୍ୟ ଓ ଅନିରୁଦ୍ଧ ନନ୍ଦ, ପୁରୀରେ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି ଓ ତାଙ୍କ ସାନ ଭାଇ ପ୍ରତାପ ଚନ୍ଦ୍ର ମହାନ୍ତି, ଗଞ୍ଜାମରେ ପ୍ରଶାନ୍ତ ଦାସ, ସମ୍ବଲପୁରରେ ବସନ୍ତ ମହାନ୍ତି ଓ ତାଙ୍କ ସାନଭାଇ ପ୍ରଶାନ୍ତ ମହାନ୍ତି, ବାରିପଦାରେ ବିମଳ

ଲୋଚନ ଦାସ, ଫୁଲବାଣୀରେ ମହାଦେବ ସାହୁ ଓ ନାଜୀର ଅଖତର, ଆସ୍କାରେ ବିପିନ ଦାଶ, କୋରାପୁଟର ମନୋରଂଜନ ରଥ ପ୍ରମୁଖ ଉତ୍କଳ ସାମ୍ବାଦିକ ସଂଘକୁ ନିଜ ନିଜ ପକେଟରେ ରଖିଥିଲେ । ସଂଗଠନକୁ ବଢ଼ାଇବା କିମ୍ବା ଅଧିକ ସଦସ୍ୟ ସଂଗ୍ରହ କରିବା ଦିଗରେ ସେମାନଙ୍କର ଆଗ୍ରହ ନଥିଲା ।

ଅଧିକାଂଶ ଜିଲ୍ଲାରେ ସଂଗଠନର ଶାଖା ନଥିଲା । ଶାଖା ଖୋଲିବା ପାଇଁ ମଧ୍ୟ କେହି ଚାହୁଁ ନଥିଲେ । ଉତ୍କଳ ସାମ୍ବାଦିକ ସଂଘ, ସର୍ବଭାରତୀୟସ୍ତରରେ ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘ(ଆଇ.ଏଫ୍.ଡବ୍ଲ୍ୟୁ.ଜେ) ସହିତ ଆଫିଲିଏଟେଡ ହୋଇଥିଲା ।

ସର୍ବଭାରତୀୟ ସ୍ତରରେ ବିଭିନ୍ନ ସ୍ଥାନରେ ହେଉଥିବା ଅଧିବେଶନକୁ ଏଇମାନଙ୍କ ଭିତରୁ କେତେଜଣ ଓଡ଼ିଶାକୁ ପ୍ରତିନିଧିତ୍ୱ କରୁଥିଲେ । ଥରେ ଏନ.କେ.ସ୍ୱାମୀ ସଭାପତି ହେଉଥିଲା ବେଳେ ଆଉ ଥରେ ଗୋପାଳ ମିଶ୍ର ସଭାପତି ଦାୟିତ୍ୱ ନେଉଥିଲେ । ସେହିପରି ରାମପ୍ରସାଦ ମହାନ୍ତି ଓ ରାମକୃଷ୍ଣ ବେହେରାଙ୍କ ମଧ୍ୟରେ ସାଧାରଣ ସଂପାଦକ ପଦ ଅଦଳବଦଳ ହେଉଥିଲା ।

ବାର୍ଷିକ ସମ୍ମିଳନୀରେ ସମସ୍ତ କାର୍ଯ୍ୟକ୍ରମ ଶେଷରେ ରାତ୍ରିଭୋଜନ ପରେ କର୍ମକର୍ତ୍ତା ନିର୍ବାଚନ ହେବାର ବ୍ୟବସ୍ଥା ଥିଲା । ସେତେବେଳକୁ ଅନେକ ସଦସ୍ୟ ଚାଲିଯାଉଥିଲେ । ଯେଉଁମାନେ ରହୁଥିଲେ, ସେମାନଙ୍କ ମଧ୍ୟରୁ ଅନେକ ଥିଲେ ନିଶାସକ୍ତ । ନିର୍ବାଚନରେ ସମସ୍ତଙ୍କର ସ୍ୱାଧୀନ ମତ ପ୍ରତିଫଳିତ ହେଉନଥିଲା ।

ମୁଁ ୧୯୭୧ ମସିହାରେ ଭୁବନେଶ୍ୱରକୁ ବଦଳି ହୋଇଯିବା ପୂର୍ବରୁ ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘର ଜାତୀୟ ପରିଷଦକୁ ନିର୍ବାଚିତ ହୋଇସାରିଥିଲି । ସାମ୍ବାଦିକ ସଂଘର ଆଗଧାଡ଼ିର ନେତାମାନଙ୍କ ତାଲିକାରେ ମୋ ନାଁ ଚଢ଼ିଯାଇଥିଲା । କ୍ରମେ ମୁଁ ସଂଘ କାମରେ ମୁଣ୍ଡ ପୂରାଇଲି ।

ରାଜଧାନୀର ଖାରବେଳ ନଗର ଅଞ୍ଚଳରେ ଉତ୍କଳ ସାମ୍ବାଦିକ ସଂଘ ନାଁରେ ଗୋଟିଏ ସରକାରୀ ପ୍ଲଟ ମିଳିଥିଲା । କିନ୍ତୁ ସେ ପ୍ଲଟଟି କେଉଁଠି, ତା'ର ସାଇଜ୍ କ'ଣ, ସେ ବିଷୟରେ କେହି କିଛି ବୁଝି ନଥିଲେ । ବହୁତ ଖୋଜାଖୋଜି କରିବା ପରେ ସେ ଜମିର କବଲାଟି ମିଳିଲା । ତା'ପରେ ମୁଁ ସେ ଜମିର ଖୋଜ୍ ଖବର ନେଲି । ପଚରାପଚରି କରି ପ୍ଲଟଟିକୁ ଚିହ୍ନଟ କଲି ।

ସେ ପ୍ଲଟରେ ଦୁଇ, ତିନୋଟି ପରିବାର ଘରକରି ରହିଥିଲେ । ପ୍ଲଟ୍‌ଟି ପଡ଼ିଆ ପଡ଼ିଥିଲା । ସେ ବାଟେ ଲୋକେ ଯିବାଆସିବା କରୁଥିଲେ । ଚାରିପଟେ ବାଉଣ୍ଡରୀ ନଥିଲା ।

ପ୍ରଥମେ ସେ ପ୍ଲଟରେ ଘର କରି ରହିଥିବା ଲୋକଙ୍କୁ ଉଠାଇବା ବଡ଼ ସମସ୍ୟା ହୋଇଥିଲା । ସେମାନେ ସେଠାରୁ ଯିବା ପାଇଁ ଚାରିମାସ ସମୟ ନେଇଥିଲେ । ପରେ ସାଧାରଣ

ପ୍ରଶାସନ ବିଭାଗର ଆର.ଆଇଙ୍କୁ ଡକାଇ ପ୍ଲଟ୍‌ଟିର ମାପ ହେବା ପରେ କଂକ୍ରିଟ ଖୁଣ୍ଟ ପୋତାଯାଇ ତାରବାଡ଼ ଦିଆଗଲା ।

ସେଠାରେ ସଂଘର ଅଫିସ ପାଇଁ ଛୋଟ ଘରଟିଏ ତୋଳିବାକୁ ମୁଁ ଅନେକଙ୍କୁ ପ୍ରବର୍ତ୍ତାଇଲି । ହେଲେ ସେଥିରେ କେହି ମନ ଦେଇନଥିଲେ । ଓଲଟି କହିଥିଲେ, ସରକାରୀ ଜମି, କ'ଣ କିଏ ନେଇଯାଉଛି ?

ବହୁତ କୁହାବୋଲା ପରେ ସେଠାରେ ଘର ତିଆରି ପାଇଁ ଏକ ନୀତିଗତ ନିଷ୍ପତ୍ତି ନିଆଯାଇଥିଲା । ହେଲେ ଘରର ପ୍ଲାନ ତିଆରି ଓ ମଂଜୁରୀ ପାଇଁ ଦୁଇବର୍ଷରୁ ଅଧିକ ସମୟ ଅତିବାହିତ ହୋଇଗଲା ।

୧୯୭୫ ମସିହା ଜୁନ୍ ୨୫ ତାରିଖରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ନିଜ ଗାଦିର ସୁରକ୍ଷା ପାଇଁ ଦେଶରେ ଇମରଜେନ୍ସି ଜାରୀ କରିଥିଲେ । ପୂର୍ବରୁ ସେ, ସୋସାଲିଷ୍ଟ ନେତା ରାଜନାରାୟଣଙ୍କ ପାଖରୁ ଉଭୟ ଭୋଟରେ ଓ କୋର୍ଟରେ ହାରି ଯାଇଥିଲେ । ଓଡ଼ିଶାରେ ସେତେବେଳେ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିଲେ । ତାଙ୍କର ଅଖଣ୍ଡ ପ୍ରତିପତ୍ତି ଥିଲା ।

ନନ୍ଦିନୀ ଦେବୀ ନିଜକୁ 'ଏସିଆର ମୁକ୍ତିସୂର୍ଯ୍ୟ' ବୋଲି ବର୍ଣ୍ଣନା କରି ରାଜଧାନୀର କାନ୍ଥବାଡ଼ରେ ବିଭିନ୍ନ ଲେଖାମାନ ଲେଖାଇଥିଲେ । ନିଜର ପ୍ରତିପତ୍ତି ଜାହିର କରିବା ଉଦ୍ଦେଶ୍ୟରେ ଡ଼କ୍ଟର ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀଙ୍କ ଭଳି ନେତାମାନଙ୍କୁ ଜେଲରେ ପୂରାଇ ଦେଇଥିଲେ । ଚାରିଆଡ଼େ କୋକୁଆଭୟ ସୃଷ୍ଟି ହୋଇଥିଲା ।

ସେକ୍ରେଟେରିଏଟ୍ ଭିତରେ ସେ ବ୍ୟବହାର କରୁଥିବା ଇମ୍ପାଲା କାର ବ୍ୟତୀତ ଅନ୍ୟ କୌଣସି ଗାଡ଼ିକୁ ରଖିବାକୁ ଦିଆଯାଉ ନଥିଲା । ସେକ୍ରେଟେରିଏଟ ଭିତରେ ମୁଖ୍ୟମନ୍ତ୍ରୀ ପଶିବା ଓ ବାହାରିବା ବେଳେ ଚାରିଆଡ଼େ ଶୂନଶାନ ହୋଇ ଯାଉଥିଲା । କେବଳ 'ଇଣ୍ଟିମେଟ' ସେଣ୍ଟ ବାସନାରୁ ଲୋକେ ତାଙ୍କ ଯିବା ଆସିବା କଥା ଠଉରେଇ ପାରୁଥିଲେ ।

ସଭାସମିତି ମାନଙ୍କରେ ଉପସ୍ଥିତ ଥିବା ସାମ୍ବାଦିକମାନଙ୍କୁ ଲକ୍ଷ୍ୟକରି ସେ କହୁଥିଲେ, "ମୁଁ ଏ ସଂଶୟବାଦୀମାନଙ୍କୁ ସାବଧାନ କରିଦେଉଛି । ଭାରତବର୍ଷରେ ୧୯୭୫ ମସିହା ଜୁନ୍ ୨୫ ତାରିଖର ପୂର୍ବାବସ୍ଥା ଆଉ ଫେରି ଆସିବନାହିଁ । ସେମାନେ ନିଜ ମନକୁ ବୁଝାଇ ଜାତୀୟ ମହାସ୍ରୋତରେ ସାମିଲ୍ ହୋଇଯାଆନ୍ତୁ ।"

ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶରେ ରାଜ୍ୟର ବହୁସ୍ଥାନରୁ ଅନେକ ସାମ୍ବାଦିକଙ୍କୁ 'ମିସା' ଆଇନ ବଳରେ ଜେଲରେ ଠୁଙ୍କି ଦିଆଯାଇଥିଲା । ଅନେକଙ୍କ ଘର ରେଡ୍ ହୋଇଥିଲା । ସେତେବେଳେ ଆଇନ୍‌କାନୁନ୍‌ର ଆଶ୍ରୟ ନେବାର ଉପାୟ ନଥିଲା ।

ଇମରଜେନ୍ସି ପୂର୍ବରୁ ସାମ୍ବାଦିକ ଭବନର ନକ୍ସା ପ୍ରସ୍ତୁତ ହୋଇସାରିଥିଲା । ରୌପ୍ୟ ଜୁବୁଲି ଉତ୍ସବ ଉପଲକ୍ଷେ ସ୍ମରଣିକାଟିଏ ପ୍ରକାଶ କରିବାକୁ ସ୍ଥିର କରାଯାଇଥିଲା । ସେଥିରେ

ପ୍ରକାଶିତ ବିଜ୍ଞାପନ ବାବଦରେ ଯାହା ଆୟ ହୋଇଥିଲା, ଖର୍ଚ୍ଚ ଯାଇ ପଚିଶ ହଜାର ଟଙ୍କା ବଳିଥିଲା । ସେଇ ଅର୍ଥରେ ଘର ତିଆରି ଆରମ୍ଭ ହୋଇଥିଲା । ମୁଁ ଘର ତିଆରି ଦେଖାଶୁଣା କରୁଥିଲି । ବ୍ୟାଙ୍କରେ ଟଙ୍କା ଡିପୋଜିଟ୍ ଥିଲା । ସଭାପତିଙ୍କ ଅନୁମୋଦନ ପରେ ସାଧାରଣ ସମ୍ପାଦକ ଓ କୋଷାଧ୍ୟକ୍ଷ ଦସ୍ତଗତ କଲେ ବ୍ୟାଙ୍କରୁ ଟଙ୍କା ଉଠାଯାଉଥିଲା ।

ସେ ସମୟରେ ଉତ୍କଳ ସାମ୍ବାଦିକ ସଂଘର ସଭାପତି ଥିଲେ ଗୋପାଳ ମିଶ୍ର, ସାଧାରଣ ସଂପାଦକ ବାଳକୃଷ୍ଣ କାନୁନ୍‌ଗୋ ଓ କୋଷାଧ୍ୟକ୍ଷ ପି. ଦେବକୁମାର । ଶ୍ରୀ କାନୁନ୍‌ଗୋ 'ପ୍ରଜାତନ୍ତ୍ର'ର ପ୍ରତିନିଧି । ଦେବକୁମାର ୟୁ.ଏନ.ଆଇ.ର ପ୍ରତିନିଧି ଭାବରେ କାର୍ଯ୍ୟ କରୁଥିଲେ ।

ଉଭୟ ପ୍ରଜାତନ୍ତ୍ର ଓ ୟୁ.ଏନ.ଆଇ. ଇମରଜେନ୍ସିକୁ ବିରୋଧ କରୁଥିବାରୁ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀଙ୍କର କୋପଦୃଷ୍ଟି ସେମାନଙ୍କ ଉପରେ ଥିଲା । ସେମାନେ ଯେ କୌଣସି ମୁହୂର୍ତ୍ତରେ ଗିରଫ ହୋଇଯିବାର ଆଶଙ୍କା ମଧ୍ୟ ଉପୁଜିଥିଲା ।

ସେ ଦୁଇଜଣ ଦସ୍ତଖତ କଲେ ସାମ୍ବାଦିକ ସଂଘ ଆକାଉଣ୍ଟରୁ ଟଙ୍କା ଉଠାଇବାର ବ୍ୟବସ୍ଥା ଥିବାରୁ ମୁଁ ସେମାନଙ୍କ ଠାରୁ ଆଗତୁରା କେତେକ ଚେକ୍‌ରେ ଦସ୍ତଖତ କରିନେଇଥିଲି ।

ଘରର ପ୍ଲିନ୍ଥ ଏରିଆ ହଜାର ସ୍କୋୟାର ଫୁଟରୁ ଅଧିକ ଥିଲା । ଆମର ପାଣ୍ଠି ମାତ୍ର ପଚିଶ ହଜାର ଟଙ୍କା । ଘରକାମ ସରିବା ପାଇଁ ଆହୁରି ଅର୍ଥର ଆବଶ୍ୟକତା ପଡ଼ିଲା । ସେତେବେଳେ ସୋସାଲିଷ୍ଟ ପାର୍ଟିରୁ ଆସି କଂଗ୍ରେସରେ ଯୋଗ ଦେଇଥିବା ବାଙ୍କବିହାରୀ ଦାସ ରାଜସ୍ୱ ମନ୍ତ୍ରୀ ଥିଲେ ।

ମନ୍ତ୍ରୀ ହେବା ଆଗରୁ ସେ ସାମୟିକ ଭାବରେ ସାମ୍ବାଦିକତା କରୁଥିଲେ । ସେହି ଦୃଷ୍ଟିରୁ ସାମ୍ବାଦିକମାନଙ୍କ ପ୍ରତି ତାଙ୍କର ଦରଦ ଥିଲା । ଆମେ ତାଙ୍କୁ ଦେଖାକରି ସବୁକଥା କହିଥିଲୁ । ସେ ତତ୍‌କାଳୀନ ରାଜସ୍ୱ ବିଭାଗ ସଚିବ ସୁଧାଂଶୁ ମୋହନ ପଟ୍ଟନାୟକଙ୍କ ସହିତ ଆଲୋଚନା କରି ଦଶ ହଜାର ଟଙ୍କା ଦେବାର ବ୍ୟବସ୍ଥା କରିଦେଲେ । ସେତିକିରେ କାମ ଚଳିଗଲା । ଠିକ୍ ସମୟରେ ଘରକାମ ଶେଷ ହୋଇଗଲା । ଘର ତିଆରିରେ ମୋର ଅବଦାନକୁ ସମସ୍ତେ ତାରିଫ କରିଥିଲେ । ମାତ୍ର ମହନ୍ତମାନେ ସେତେଟା ଖୁସି ନଥିଲେ ।

ସଂଗଠନକୁ ଅଧିକ ସୁଦୃଢ଼ ଓ କ୍ରିୟାଶୀଳ କରିବା ଉଦ୍ଦେଶ୍ୟରେ ସଂବିଧାନରେ ଆବଶ୍ୟକ ସଂଶୋଧନ କରାଯାଇ ଜିଲ୍ଲା ଶାଖାଗୁଡ଼ିକୁ ଶକ୍ତିଶାଳୀ କରାଗଲା । ଜଣେ ସାମ୍ବାଦିକ ଜିଲ୍ଲା ଶାଖାକୁ ବାଦ୍‌ଦେଇ ରାଜ୍ୟ ସଂଗଠନର ସଦସ୍ୟ ହୋଇପାରିବେ ନାହିଁ ବୋଲି ସେଥିରେ ବ୍ୟବସ୍ଥା ରଖାଯାଇଥିଲା ।

ଏହା ଫଳରେ ମହନ୍ତମାନଙ୍କ ସ୍ଥିତି ଟିକିଏ ଦୋହଲି ଯାଇଥିଲା । ଜିଲ୍ଲାମାନଙ୍କରେ ସଭ୍ୟ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଲା । ଜିଲ୍ଲାମାନଙ୍କରୁ ଅଧିକ ପ୍ରତିନିଧି ବାର୍ଷିକ ସମ୍ମିଳନୀରେ ଯୋଗଦେବାକୁ ଲାଗିଲେ । କ୍ରମେ ପ୍ରତିନିଧିମାନେ ସଂଘରେ କିଛିଲୋକଙ୍କ ଏକଚାଟିଆ

କର୍ତ୍ତୃତ୍ୱକୁ ବିରୋଧ କରିବା ଆରମ୍ଭ କଲେ । ଅପେକ୍ଷାକୃତ ଯୁବ ସାମ୍ବାଦିକମାନେ ସଂଗଠିତ ହେବାକୁ ଲାଗିଲେ ।

ଦୀର୍ଘଦିନର ଉଦ୍ୟମ ପରେ ଉତ୍କଳ ସାମ୍ବାଦିକ ସଂଘର ନେତୃତ୍ୱ ଆମ ହାତକୁ ଆସିଲା । ୧୯୮୩ ମସିହାରେ ଅନୁଷ୍ଠିତ ସଂଘର ବାର୍ଷିକ ସମ୍ମିଳନୀ ପୂର୍ବରୁ ନଗେନ ବେଉରିଆଙ୍କୁ ସଭାପତି ଭାବରେ ନିର୍ବାଚିତ କରାଇବାରେ ଆମେ ସକ୍ଷମ ହୋଇଥିଲୁ । ସଂଘର ସମ୍ବିଧାନର ବ୍ୟବସ୍ଥା ଅନୁଯାୟୀ ସଭାପତି, ସାଧାରଣ ସଂପାଦକଙ୍କୁ ମନୋନୀତ କରିବାର ବ୍ୟବସ୍ଥା ଥିଲା । ସେହି ଧାରା ଅନୁସାରେ ଶ୍ରୀ ବେଉରିଆ, ମତେ ସାଧାରଣ ସଂପାଦକ ଭାବରେ ମନୋନୀତ କରିଥିଲେ । ଅନ୍ୟ ପଦବୀ ପାଇଁ ନିର୍ବାଚନ ହୋଇଥିଲା । ସେଥିରେ ଅଧିକ ଯୁବଗୋଷ୍ଠୀ ନିର୍ବାଚିତ ହୋଇଥିଲେ ।

ଶ୍ରୀ ବେଉରିଆ ଓ ମୁଁ ଆଲୋଚନା କରି ସଂଘର କାର୍ଯ୍ୟଧାରାକୁ ବଦଳାଇବାକୁ ସ୍ଥିର କଲୁ । ସଂଘର କାର୍ଯ୍ୟକାରୀ କମିଟି ବୈଠକ, ଭୁବନେଶ୍ୱରରେ ନହୋଇ ବିଭିନ୍ନ ଜିଲ୍ଲାରେ ହେବା ପାଇଁ ନିଷ୍ପତ୍ତି ହେଲା ।

ସେହି ଅନୁସାରେ ସୁଦୂର ଫୁଲବାଣୀ, ପାରଳାଖେମୁଣ୍ଡି, ରାଇରଙ୍ଗପୁର ଓ ଅନ୍ୟାନ୍ୟ ଅଞ୍ଚଳରେ କାର୍ଯ୍ୟକାରୀ କମିଟି ବୈଠକ ଅନୁଷ୍ଠିତ ହୋଇଥିଲା । ସେଥିରେ ଗ୍ରାମାଞ୍ଚଳରେ ଥିବା ସାମ୍ବାଦିକମାନଙ୍କ ଭିତରେ ନୂତନ ଉତ୍ସାହ ଦେଖାଦେଇଥିଲା ।

ସଂଘର ସାଧାରଣ ସଂପାଦକ ଦାୟିତ୍ୱ ନେବା ପରେ ଅନେକ ଲୋକଙ୍କର ମୋ ଉପରେ ଭରସା ବଢ଼ିବାରେ ଲାଗିଲା । ସେମାନେ କ୍ରମେ ସେମାନଙ୍କର ଦୀର୍ଘଦିନର ସମସ୍ୟା ସମ୍ପର୍କରେ ପ୍ରଥମ ଥର ପାଇଁ ପାଟି ଖୋଲିଥିଲେ । ମୁଁ ସେସବୁର ସମାଧାନ ପାଇଁ ଉଦ୍ୟମ କରିଥିଲି । କେତେକ ଉଦ୍ୟମ ସଫଳ ହୋଇଥିଲା । ନାନା କାରଣରୁ ଅନ୍ୟ କେତେକ ସମସ୍ୟାର ସମାଧାନ ହୋଇପାରିନଥିଲା ।

ସେତେବେଳେ କଟକରୁ ଯେତେଗୁଡ଼ିଏ ଦୈନିକ ପ୍ରକାଶ ପାଉଥିଲା, ସେଥିମଧ୍ୟରୁ 'ସମାଜ'ର ସାମ୍ବାଦିକମାନେ ଅଧିକ ନିର୍ଯାତିତ ହେଉଥିଲେ । ସଂପାଦକ ରାଧାନାଥ ରଥ ସେମାନଙ୍କୁ ଏପରି ଭାବରେ ଭୟଭୀତ କରି ରଖିଥିଲେ ଯେ, ପାଟି ଖୋଲିବା ପାଇଁ ମାନସିକ ଶକ୍ତି ସେମାନଙ୍କର ନଥିଲା ।

ଶ୍ରୀ ରଥ କେବଳ 'ସମାଜ'ର ସଂପାଦକ ନଥିଲେ, ଏକ ସମୟରେ ସେ ସର୍ବଭାରତୀୟ ସ୍ତରରେ ଲୋକସେବକ ମଣ୍ଡଳର ସଭାପତି ରହିବା ସହିତ ରାଜ୍ୟ ଶାଖାର ମଧ୍ୟ ଅଧ୍ୟକ୍ଷ ଥିଲେ । ହାତରେ ଅଖଣ୍ଡ କ୍ଷମତା ଥିଲା । ସେ ସମୟରେ 'ସମାଜ'ର ସାମ୍ବାଦିକମାନଙ୍କ ସହିତ ଅନ୍ୟାନ୍ୟ କର୍ମଚାରୀମାନେ ଏତେ ପରିମାଣରେ ଭୟଭୀତ ହୋଇ ରହିଥିଲେ ଯେ, ଯଦି ଶ୍ରୀ ରଥ ପୋର୍ଟିକୋରେ ଚଉକି ପକାଇ ବସୁଥିଲେ, ଛୁଟିପରେ ସେ

ରାସ୍ତାଦେଇ ଯିବାକୁ କେହି ସାହସ କରୁନଥିଲେ । ଘଣ୍ଟା ଘଣ୍ଟାଧରି ସେମାନଙ୍କୁ ଅପେକ୍ଷା କରିବାକୁ ପଡୁଥିଲା ।

ଶରତ ସରକାର ସେତେବେଳେ 'ସମାଜ'ର କଟକ ପ୍ରତିନିଧି ଭାବରେ କାର୍ଯ୍ୟ କରୁଥିଲେ । ସେ ନେତାଜୀ ସୁଭାଷ ବୋଷଙ୍କର ଜଣେ ସହକର୍ମୀ ଥିଲେ । ଜୀବନରେ ନୀତି ଓ ସିଦ୍ଧାନ୍ତ ସହିତ ସେ କେବେ ସାଲିସ୍ କରୁନଥିଲେ । ଜଣେ ନୀତିବାନ ବ୍ୟକ୍ତି ଭାବରେ ତାଙ୍କର ପ୍ରତିଷ୍ଠା ଥିଲା ।

ମାତ୍ର ଏସବୁ ସତ୍ତ୍ୱେ 'ସମାଜ' ପକ୍ଷରୁ ତାଙ୍କୁ ମାସକୁ କେବଳ ଶହେ ଟଙ୍କା ମିଳୁଥିଲା । ମୁଁ ରହୁଥିବା କଟକର ପୁରୁଣା ସେକ୍ରେଟେରିଏଟ ପାଖରେ ଥିବା କ୍ୱାଟରକୁ ଅନେକ ସମୟରେ ସେ ଆସୁଥିଲେ । କିପରି ଆର୍ଥିକ ଦୁଃସ୍ଥିତି ଭିତରେ ସେ ସଂସାର ଚଳାଉଥିଲେ ସେ ବିଷୟରେ କିଛି ନକହୁଥିଲେ ମଧ୍ୟ ମୁଁ ତା'ର ସୂଚନା ପାଉଥିଲି ।

ବେଳେବେଳେ ସାଧ୍ୟମତେ ମୁଁ ତାଙ୍କୁ ସାହାଯ୍ୟ କରୁଥିଲି । ମୁଁ ସ୍ଥିର କଲି ଶ୍ରୀ ସରକାରଙ୍କ ପ୍ରତି ହେଉଥିବା ଅବିଚାର ବିରୋଧରେ ଲେବର କୋର୍ଟରେ କେସ୍ କରିବି । ଶ୍ରୀ ସରକାର ପ୍ରଥମେ ଛାନିଆ ହୋଇଗଲେ । କହିଲେ, "ବାଘ ପାଟିରେ ମୁଣ୍ଡ ପୂରାଇବା ଯାହା, ରାଧାନାଥ ରଥଙ୍କ ବିରୋଧରେ ମକଦ୍ଦମା କରିବା ସେଇଆ ।"

ମୁଁ ତାଙ୍କୁ ସାନ୍ତ୍ୱନା ଦେଇ କହିଲି, 'ସମାଜ' ମ୍ୟାନେଜମେଣ୍ଟ ବିରୋଧରେ ମକଦ୍ଦମା ହେବ, ରାଧାନାଥ ରଥଙ୍କ ବିରୋଧରେ ନୁହେଁ । ବିଶିଷ୍ଟ ଶ୍ରମିକ ନେତା, ଆଡଭୋକେଟ ସତ୍ୟବାଦୀ ମିଶ୍ର, ଶ୍ରୀ ସରକାରଙ୍କ ପକ୍ଷରୁ ଲେବର କୋର୍ଟରେ ମକଦ୍ଦମା ଦାଏର କରିଥିଲେ । କିଛିଦିନ ପରେ 'ସମାଜ' କର୍ତ୍ତୃପକ୍ଷ କୋର୍ଟ ବାହାରେ ମକଦ୍ଦମାର ଫେସଲା କରିବା ଫଳରେ ଶରତ ବାବୁଙ୍କର ବେତନ ବୃଦ୍ଧି ପାଇଥିଲା ।

ଭାଗବତ ଗିରି ଥିଲେ ସମାଜର ପ୍ରୁଫ୍ ରିଡର । କାନୁନ୍ ଦୃଷ୍ଟିରୁ ପ୍ରୁଫ ରିଡରମାନଙ୍କୁ ସାମ୍ବାଦିକ ଭାବରେ ଗଣା ଯାଉଥିଲା । ଶ୍ରୀ ଗିରିଙ୍କ କାର୍ଯ୍ୟ ମଧ୍ୟ ସନ୍ତୋଷଜନକ ଥିଲା । ତା ସତ୍ତ୍ୱେ ସେ ସମାଜରୁ ପ୍ରୁଫ ରିଡରଙ୍କ ପାଇଁ ଉଦ୍ଦିଷ୍ଟ ପରିମାଣର ବେତନ ପାଉନଥିଲେ ।

'ସମାଜ' ପକ୍ଷରୁ ଯୁକ୍ତି ଦର୍ଶାଯାଇଥିଲା ଯେ, "ସମାଜ ପ୍ରକାଶନ ପାଇଁ ସତ୍ୟବାଦୀ ପ୍ରେସକୁ ଦାୟିତ୍ୱ ଦିଆଯାଇଛି । ଶ୍ରୀ ଗିରି, ସମାଜର ପ୍ରୁଫ ଦେଖୁଛନ୍ତି । ସେ ଦୃଷ୍ଟିରୁ ସାମ୍ବାଦିକମାନଙ୍କ ପାଇଁ ଘୋଷଣା କରାଯାଇଥିବା ବେତନ ବୋର୍ଡ ସୁପାରିଶ ଅନୁଯାୟୀ ପ୍ରୁଫ ରିଡର ଭାବେ ବେତନ ପାଇବାକୁ ଶ୍ରୀ ଗିରି ହକଦାର ନୁହନ୍ତି ।"

ଏହା ବିରୋଧରେ ପାଟି ଫିଟାଇବା ପାଇଁ ଶ୍ରୀ ଗିରିଙ୍କର ସାହସ ନଥିଲା । ସେ ଭାଗ୍ୟକୁ ଆଦରି ସବୁକଥା ସହି ଯାଉଥିଲେ । କ୍ରମେ ସେ କଥା ମୋ କାନକୁ ଆସିଥିଲା । ଏପରି ଅନ୍ୟାୟର ପ୍ରତିରୋଧ କରିବାକୁ ମୁଁ ନିଷ୍ପତ୍ତି କରିଥିଲି ।

'ସମାଜ' କର୍ତ୍ତୃପକ୍ଷଙ୍କ ବିରୋଧରେ ମକଦ୍ଦମା କରିବା ପାଇଁ ଶ୍ରୀ ଗିରିଙ୍କୁ ମନାଇବାକୁ ମତେ ଅନ୍ୟୂନ ପନ୍ଦର ଦିନ ସମୟ ଲାଗିଥିଲା । ଲେବର ଆକ୍ଟ ଅନୁଯାୟୀ ଉଭୟପକ୍ଷ ସହମତି ନହେଲେ ମକଦ୍ଦମା ଲଢ଼ିବା ପାଇଁ ଓକିଲ ଦେବାର ବ୍ୟବସ୍ଥା ନଥିଲା । ସାମ୍ବାଦିକ ସଂଘ ପକ୍ଷରୁ ଓକିଲ ଦିଆଯାଇ ପାରିବ ନାହିଁ ବୋଲି କୋର୍ଟକୁ ଜଣାଇବା ପରେ 'ସମାଜ' କର୍ତ୍ତୃପକ୍ଷ ଓକିଲ ନିଯୁକ୍ତି କରିପାରିନଥିଲେ । ସେ ମକଦ୍ଦମା ମୁଁ ନିଜେ ଲଢ଼ିଥିଲି । ଶେଷରେ ଶ୍ରୀ ଗିରି ଜୟଯୁକ୍ତ ହୋଇଥିଲେ । ଆଇନ ଅନୁଯାୟୀ ତାଙ୍କୁ ସଂଶୋଧିତ ବେତନ ମିଳିଥିଲା ।

ଦିବାକର ପଟ୍ଟନାୟକ ପିପିଲି ଅଞ୍ଚଳ ପାଇଁ 'ସମାଜ'ର ପ୍ରତିନିଧି ଭାବରେ କାର୍ଯ୍ୟ କରୁଥିଲେ । ସେଥିପାଇଁ ସମାଜ କର୍ତ୍ତୃପକ୍ଷ ତାଙ୍କୁ ମାସକୁ ମାତ୍ର ତିରିଶ ଟଙ୍କା ଦେଉଥିଲେ । ସେଥିରେ ସେ ଅତ୍ୟନ୍ତ ବ୍ୟଥିତ ହୋଇଥିଲେ ବି ଚୁପ୍‌ହୋଇ ରହିବାକୁ ଉଚିତ୍ ମନେ କରିଥିଲେ । ମୋ ସହିତ ସାକ୍ଷାତ ହେବାରୁ ଶ୍ରୀ ପଟ୍ଟନାୟକ ତାଙ୍କ ମନର ବ୍ୟଥା ମତେ ଜଣେଇଥିଲେ ।

'ସମାଜ' କର୍ତ୍ତୃପକ୍ଷଙ୍କ ବିରୋଧରେ ମାମଲା ଦାଏର କରିବାକୁ ମୁଁ ଶ୍ରୀ ପଟ୍ଟନାୟକଙ୍କୁ ପ୍ରବର୍ତ୍ତାଇ ଥିଲି । ମାତ୍ର ଦିବାକର ବାବୁ ପ୍ରଥମେ ମୋ ପ୍ରସ୍ତାବରେ ରାଜି ହୋଇନଥିଲେ । ତାଙ୍କୁ ବୁଝାବୁଝି କରି ଆମେ ଲେବର କୋର୍ଟରେ ମକଦ୍ଦମା ଦାଏର କରିଥିଲୁ । 'ସମାଜ' କର୍ତ୍ତୃପକ୍ଷ ନୋଟିସ୍ ପାଇଲା ପରେ ଦିବାକର ବାବୁଙ୍କ ପ୍ରାପ୍ୟ ବୃଦ୍ଧି କରିଥିଲେ । ମକଦ୍ଦମାର ଆବଶ୍ୟକତା ପଡ଼ିନଥିଲା ।

ଏ ତିନୋଟି ଘଟଣାରେ 'ସମାଜ' କର୍ତ୍ତୃପକ୍ଷ ମୋ ଉପରେ ବିଶେଷ କ୍ଷୁବ୍ଧ ହୋଇଥିଲେ । କେବଳ 'ସମାଜ' ନୁହେଁ ଅନ୍ୟାନ୍ୟ ସମ୍ବାଦପତ୍ରରେ କାର୍ଯ୍ୟ କରୁଥିବା ସାମ୍ବାଦିକମାନଙ୍କର କେତେକ ସମସ୍ୟାର ସମାଧାନ କରିବାରେ ମୁଁ ସଫଳ ହୋଇଥିଲି ।

ରାଜଧାନୀ ଭୁବନେଶ୍ୱରକୁ କେହି ଅଫିସର ବଦଳି ହୋଇ ଆସିଲେ ଯେପରି ପ୍ରଥମେ ପୁରୀ ଯାଇ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରନ୍ତି, ସେହିପରି କେହି ପ୍ରଥମେ କଟକ ଆସିଲେ ସମାଜ ଅଫିସକୁ ଯାଇ ରାଧାନାଥ ନାଥଙ୍କୁ ଫୁଲତୋଡା ଦେଇ ପ୍ରଣାମ ଜଣାଇବାର ବିଧି ବହୁଦିନ ଚଳି ଆସୁଥିଲା । ସେହି ପରମ୍ପରା ଓ ବିଧିକୁ ପାଳନ କରି ମୁଁ କଟକ ଯିବାର ପ୍ରଥମଦିନ ସମାଜ ଅଫିସ ଯାଇ ଶ୍ରୀରଥଙ୍କୁ ଦେଖା କରିଥିଲି ।

ଶ୍ରୀ ରଥ ଜଣେ ଉତ୍କଟ ବ୍ରାହ୍ମଣବାଦୀ ଥିଲେ । ସେ ବ୍ରାହ୍ମଣମାନଙ୍କୁ ଯେତିକି ଆଦର କରୁଥିଲେ, ଅବ୍ରାହ୍ମଣମାନଙ୍କୁ ତିରୋଧିକ ହତାଦର କରୁଥିଲେ । ସେଥିପାଇଁ ତାଙ୍କ ଜୀବନ ଦେଖାରେ 'ସମାଜ' ଅନୁଷ୍ଠାନରେ କୌଣସି ଅବ୍ରାହ୍ମଣଙ୍କୁ କୌଣସି ମର୍ଯ୍ୟାଦାଜନକ ପଦବୀରେ ଉପସ୍ଥାପିତ କରାଯାଇନଥିଲା । ସେମାନଙ୍କୁ ସବୁବେଳେ ନ୍ୟୁଜ୍ ଭାବରେ ରଖାଯାଉଥିଲା ।

ମୋର ସାଙ୍ଗିଆ 'ଦାସ' ହୋଇଥିବାରୁ କୋଉ ଗୋଷ୍ଠିର ସେକଥା ଶ୍ରୀ ରଥ ବୋଧେ ଠଉରେଇ ପାରିନଥିଲେ । ସେଥିପାଇଁ ମୋ କାନ୍ଧରେ ଯଜ୍ଞ ଉପବୀତ ଅଛି କି ନାହିଁ ସେ

ବିଷୟରେ ନିଶ୍ଚିତ ହେବା ପାଇଁ ମୋ କାନ୍ଧରେ ହାତ ବୁଲାଇଲେ । ଏହା ଶ୍ରୀ ରଥଙ୍କର ଏକ ନିଜସ୍ୱ କୌଶଳ । ଯଜ୍ଞ ଉପବୀତ ଥିବା ଦର୍ଶନାର୍ଥୀ ଓ ଅନ୍ୟମାନଙ୍କୁ ଭିନ୍ନ ଭିନ୍ନ ଭାବରେ ସେ ଥଟ୍ଟା କରିଥାନ୍ତି । ପ୍ରଥମ ଗୋଷ୍ଠିଙ୍କୁ ଜଳଖିଆ ଓ ଚା'ରେ ଆପାୟିତ କରାଯାଉଥିଲା ବେଳେ ଅନ୍ୟମାନଙ୍କୁ ଶୁଖିଲା କେଇପଦ କଥାରେ ସନ୍ତୋଷ ହେବାକୁ ପଡିଥାଏ ।

ସେ ମୋ ପିଠିରେ ହାତ ବୁଲାଉଥିଲା ବେଳେ ତାଙ୍କ ମୁଖମଣ୍ଡଳର ପରିବର୍ତ୍ତନ ମୁଁ ସେଦିନ ଠିକ୍ ବୁଝିପାରି ଥିଲି । ସେ ବିଶେଷ ସମୟ ନଦେଇ କହିଲେ, "ହଉ ବାପା, ଅନ୍ୟ କେତେବେଳେ ଆସିବ, ମୁଁ ଆଜି ଟିକେ ବ୍ୟସ୍ତ ଅଛି ।"

ଏତିକି କହି ସେ ବସିବା ସ୍ଥାନରୁ ଉଠିଲେ । ମୁଁ ତାଙ୍କୁ ନମସ୍କାର କରି ଫେରିଲି । ସେଦିନ ମୋର ଯାହା ମନେ ହେଲା, ବୋଧହୁଏ ମୋର କଟକରେ ଅବସ୍ଥାନକୁ ସେ ପସନ୍ଦ କରି ନଥିଲେ । ପରେ ଖବରନେଇ ବୁଝିଥିଲି, ମୁଁ ଡକ୍ଟର ହରେକୃଷ୍ଣ ମହତାବଙ୍କ ଗୋଷ୍ଠିର ଲୋକ ବୋଲି ଶ୍ରୀ ରଥଙ୍କୁ କିଏ ଜଣେ କାନ କୁହା କହିଥିଲେ । ସେତେବେଳେ ଡକ୍ଟର ମହତାବ ଓ ଶ୍ରୀ ରଥଙ୍କ ଭିତରେ ସମ୍ପର୍କ ଠିକ୍ ନଥିଲା ।

ବିଭିନ୍ନ ସମ୍ବାଦପତ୍ରରେ କାର୍ଯ୍ୟ କରି ଉଚିତ୍ ପ୍ରାପ୍ୟରୁ ବଞ୍ଚିତ ହୋଇଥିବା ସାମ୍ବାଦିକମାନଙ୍କର ସମସ୍ୟାର ସମାଧାନ କରି ମୁଁ ସେମାନଙ୍କର ଯେତିକି ବିଶ୍ୱାସଭାଜନ ହୋଇଥିଲି, ସମ୍ବାଦପତ୍ରର ବିଶେଷକରି 'ସମାଜ' କର୍ତ୍ତୃପକ୍ଷଙ୍କର ସେତିକି ରୋଷର ଶିକାର ହୋଇଥିଲି । ହେଲେ ସେଥିରେ ମୋର ଆନନ୍ଦ ଥିଲା । ଦୀର୍ଘଦିନ ହେଲା ନିଷ୍ପେଷିତ ହୋଇ ରହିଥିବା ସାମ୍ବାଦିକ ବନ୍ଧୁମାନଙ୍କୁ ସାହାଯ୍ୟ କରିପାରିଥିବାରୁ ମୁଁ ଅପାର ଆନନ୍ଦ ଲାଭ କରିଥିଲି ।

କଟକରେ ଅବସ୍ଥାନ କାଳରେ ଦୁଇଟି ଘଟଣାରୁ ମୁଁ ବିଶେଷ ଆତ୍ମସନ୍ତୋଷ ଲାଭ କରିଥିଲି । ପ୍ରଥମଟି ହେଲା ବାଇଶି ଜଣ ସାମ୍ବାଦିକଙ୍କ ଗୃହନିର୍ମାଣ ନିମନ୍ତେ ସରକାରୀ ଜମି ଯୋଗାଇ ଦେବା ଏବଂ ଅନ୍ୟଟି ହେଲା କଟକରେ ପ୍ରେସ୍ କ୍ଲବ ପ୍ରତିଷ୍ଠା ।

କଟକରେ କର୍ତ୍ତବ୍ୟରତ ସାମ୍ବାଦିକମାନଙ୍କୁ ଜମି ଯୋଗାଇଦେବାକୁ ସରକାରୀସ୍ତରରେ ଦୀର୍ଘଦିନ ହେଲା ନିଷ୍ପତ୍ତି ହୋଇଥିଲା । ସେଥିପାଇଁ ତୁଳସୀପୁର ଅଞ୍ଚଳରେ ଥିବା ଗୋରାକବର ସାମନାରେ ଜମି ଚିହ୍ନଟ ହୋଇଥିଲା । ସାମ୍ବାଦିକମାନେ ଆଫିଡେଭିଟ୍ ସହିତ ଦରଖାସ୍ତ ମଧ୍ୟ କରିଥିଲେ । କିନ୍ତୁ ସେ ଦରଖାସ୍ତ ସବୁ ଫାଇଲର ନାଲିଫିତା ତଳେ ଚାପି ହୋଇ ରହିଯାଇଥିଲା । ସାମ୍ବାଦିକମାନେ ଜମି ପାଇବାର ଆଶା ଛାଡ଼ି ଦେଇଥିଲେ ।

ପ୍ରସନ୍ନ କୁମାର ହୋତା ସେ ସମୟରେ ଅବିଭକ୍ତ କଟକର ଜିଲ୍ଲାପାଳ ଥିଲେ । କଲେଜରେ ସେ ଆମଠାରୁ ତିନିବର୍ଷ ଜୁନିଅର ଥିଲେ । ତା'ଛଡ଼ା ଶ୍ରୀ ହୋତାଙ୍କର ଓ ମୋର ଏକାଦିନେ ବାହାଘର ହୋଇଥିଲା ।

ମୁଁ କଟକରେ ଅବସ୍ଥାପିତ ହେବା ପରେ ତାଙ୍କ ସହିତ ସମ୍ପର୍କ ଦୃଢ଼ୀଭୂତ ହେଲା । ପ୍ରାୟ ସବୁଦିନେ ଦେଖାସାକ୍ଷାତ ହେଉଥିଲା । ଜମିଲ ଅହମ୍ମଦ ଖାଁ ସେତେବେଳେ କଟକର ତହସିଲଦାର ଥିଲେ । ଥରେ ଶ୍ରୀ ହୋତାଙ୍କ ସାଙ୍ଗରେ ମୁଁ ଓ ଶ୍ରୀ ଖାଁ ଏକାଠି ତୁଳସୀପୁର ବାଟେ ବିଡ଼ାନାସୀ ଗଲାବେଳେ ମୁଁ ସାମ୍ବାଦିକମାନଙ୍କୁ ଜମି ଦେବା କଥା ଉଠାଇଥିଲି । ସେଥିରେ ଜିଲ୍ଲାପାଳ ଆଗ୍ରହ ପ୍ରକାଶ କରିଥିଲେ ।

ଆମେ ଗୋରାକବର ପାଖରେ ଥିବା ସେ ଜମି ଦେଖିବାକୁ ଯାଇଥିଲୁ । ସେଠାରେ ଶ୍ରୀ ହୋତା ତହସିଲଦାରଙ୍କୁ ପଚାରିଥିଲେ, "କ'ଣ ଜମିଲ୍, ଏ ଜମି ସାମ୍ବାଦିକମାନଙ୍କୁ ଦେଇହେବ ?" କଲେକ୍ଟର ଚାହିଁଲେ କୋଉକଥା ନହେବ ? ଶ୍ରୀ ଖାଁ ତାଙ୍କ ଉତ୍ତରରେ ସ୍ପଷ୍ଟ କରିଦେଇଥିଲେ । କଥା ମଝିରେ ହସ୍ତକ୍ଷେପ କରି ମୁଁ କହିଥିଲି, ଏ ସଂକ୍ରାନ୍ତରେ ଯଦି ଭୁବନେଶ୍ୱରରେ କିଛି କାମ କରିବାକୁ ହେବ, ମୁଁ ତାକୁ ସମ୍ଭାଳି ନେବି ।

ସେକ୍ରେଟେରିଏଟ ଯାଇ ବୁଝାବୁଝି କରିବାରେ ଜଣାପଡ଼ିଥିଲା ଯେ, କଟକରେ ସାମ୍ବାଦିକମାନଙ୍କୁ ଜମିଦେବା ସଂକ୍ରାନ୍ତୀୟ ଫାଇଲଟି କୌଣସି କାରଣରୁ 'କ୍ଲୋଜ' ହୋଇଯାଇଥିଲା ।

ସାଧାରଣ ପ୍ରଶାସନ ବିଭାଗରେ ସେତେବେଳେ ସ୍ୱତନ୍ତ୍ର ସଚିବ ଥିବା ଅଓ୍ୱଧ ନାରାୟଣ ତିଓ୍ୱାରୀଙ୍କ ସହିତ ମୋର ଦୀର୍ଘଦିନର ସମ୍ପର୍କ ଥିଲା । ମୁଁ ତାଙ୍କୁ ଦେଖାକରି ସବୁକଥା କହିଲି । ଶ୍ରୀ ତିଓ୍ୱାରୀ, ସାମ୍ବାଦିକମାନଙ୍କ ପ୍ରତି ଅତ୍ୟନ୍ତ ସହାନୁଭୂତିଶୀଳ ଥିଲେ । ସେ ସାହାଯ୍ୟ କରିନଥିଲେ, ଇମରଜେନ୍ସି ସମୟରେ ଅନ୍ତତଃ ଭୁବନେଶ୍ୱରର ଚାରି ପାଞ୍ଚ ଜଣ ସାମ୍ବାଦିକଙ୍କୁ ଜେଲଦଣ୍ଡ ଭୋଗିବାକୁ ପଡ଼ିଥାନ୍ତା ।

ମୋ'ଠାରୁ ସବୁକଥା ଶୁଣି ସେ ଖୋଜ ଖବର ନେଇ ଫାଇଲର ସନ୍ଧାନ ପାଇଲେ । ଫାଇଲ ଆଉଥରେ ଖୋଲିବା ପାଇଁ ଆମେ ପୁଣି ଦରଖାସ୍ତ କଲୁ । ସେହି ଭିତ୍ତିରେ ଫାଇଲ୍ ରି-ଓପନ ହେଲା ।

ମୁଁ ଓ 'ପ୍ରଜାତନ୍ତ୍ର'ର ରବି ମହାନ୍ତି ଦୀର୍ଘ ଚାରିମାସ କାଳ ସେକ୍ରେଟେରିଏଟ୍‌କୁ ଦଉଡିବା ପରେ ଜମି ଆଲଟମେଣ୍ଟ ପାଇଁ ସରକାରୀସ୍ତରରେ ନିଷ୍ପତ୍ତି ହେଲା । ପାଖାପାଖି ଦେଢ଼ ଗୁଣ୍ଠ ଜମିକୁ ତିନିହଜାର ଟଙ୍କା । ଆଗରୁ ଦରଖାସ୍ତ କରିଥିବା ବାଇଶି ଜଣ ସାମ୍ବାଦିକଙ୍କୁ ତୁଳସୀପୁରରେ ଜମି ମିଳିଲା ।

ମୁଁ ପ୍ରଥମେ ସେଠାରେ ଘର ଆରମ୍ଭ କରିଥିଲି । ନଗର ଉନ୍ନୟନ ବିଭାଗରୁ ଅଠର ହଜାର ଟଙ୍କାର ଋଣ ଆଣିଥିଲି । ସାଙ୍ଗସାଥୀଙ୍କ ପାଖରୁ ଧାର ସୂତ୍ରରେ କିଛି ଟଙ୍କା ଆଣିଲି । ହଜାରେ ବର୍ଗଫୁଟର ଘର କୌଣସିମତେ ହୋଇଗଲା । ଘର ପ୍ରତିଷ୍ଠା ମଧ୍ୟ ହୋଇଥିଲା । ଖାଲି ରହିବା ପାଇଁ ବାକି ଥିଲା ।

କିନ୍ତୁ ବିଧିର ବିଧାନ ଆନ । ପରିଚାଳନାଗତ ତ୍ରୁଟି ଯୋଗୁ ଅମୃତ ବଜାର ପତ୍ରିକାର ପ୍ରକାଶନ ବନ୍ଦ ହୋଇଗଲା । ପୁଅ ଚନ୍ଦନ ସେତେବେଳେ ଜାଭିୟର୍ସ ଇନଷ୍ଟିଚ୍ୟୁଟରେ ପଢୁଥିଲା । ମୋର ସେତେବେଳେ ରୋଜଗାରର ଅନ୍ୟ କୌଣସି ବିକଳ୍ପ ପନ୍ଥା ନଥିଲା । ସେଥିପାଇଁ ଶାଗ, ମାଛ ଦରରେ ମତେ ସେ ଘରକୁ ବିକ୍ରି କରିବାକୁ ପଡ଼ିଲା ।

ଘର ଓ ଜମି ସହିତ ମାତ୍ର ତିନି ଲକ୍ଷ ଟଙ୍କା ପାଇଥିଲି । ଯଦି ମୁଁ ସେ ଘରକୁ ରଖି ପାରିଥାଆନ୍ତି ତେବେ ପରେ ଅନ୍ୟୁନ ତିରିଶ ଲକ୍ଷ ଟଙ୍କା ପାଇଥାଆନ୍ତି ।

କିନ୍ତୁ ଯାହା କୁହାଯାଏ, 'ଗୋ, କନ୍ୟା, ଭୂମି ଭାଗ୍ୟେ ଥିଲେ ପାଇ' ମୋ କ୍ଷେତ୍ରରେ ସେଇୟା ଘଟିଲା । ଏତେ ଦଉଡ଼ଧାପଡ଼ କରି ଜମି ପାଇବାର ବ୍ୟବସ୍ଥା କଲି । ଧାରଉଧାର କରି ଘର ତିଆରି କଲି, ମାତ୍ର ସେଠାରେ ରହିପାରିଲି ନାହିଁ । ପରେ କିନ୍ତୁ ମୁଁ ଅନୁଭବ କଲି, ଘର ସିନା ଚାଲିଗଲା, ହେଲେ ପୁଅ ତ ଯୋଗ୍ୟ ହେଲା ।

କଟକରୁ ପ୍ରକାଶ ପାଉଥିବା 'ସମାଜ' ଓ 'ପ୍ରଜାତନ୍ତ୍ର'ର ମାଲିକମାନଙ୍କ ମଧ୍ୟରେ ସୁସମ୍ପର୍କ ନଥିବା ଦୃଷ୍ଟିରୁ ସେ ଦୁଇ ସଂସ୍ଥାରେ କାମ କରୁଥିବା ସାମ୍ବାଦିକମାନେ ମଧ୍ୟ ପରସ୍ପରଠାରୁ ଦୂରରେ ରହୁଥିଲେ । ଯେଉଁମାନେ 'ଟେବୁଲ'ରେ କାମ କରୁଥିଲେ, ସେମାନଙ୍କର କୌଣସି ସମସ୍ୟା ନଥିଲା ।

ଅଫିସରୁ କାମ ସରିଲେ ଘର ଭଲ ତ ସେମାନେ ଭଲ । ଯେଉଁମାନେ ମଦ୍ୟପାନ କରୁଥିଲେ, ସେମାନଙ୍କ ସମୟ କେମିତି କଟିଯାଉଥିଲା ସେମାନେ ଜାଣିପାରୁନଥିଲେ । ମାତ୍ର ଫିଲ୍ଡରେ କାମ କରୁଥିବା ଅନ୍ୟ ଗୋଷ୍ଠୀଙ୍କ ପାଇଁ ସମୟ କାଟିବା ନିମିତ୍ତ କମ୍ ସୁଯୋଗ ଥିଲା । ଏପରିକି କୌଣସି ସ୍ଥାନରେ ଏକାଠି ବସି ଆଲୋଚନା କରିବା ପାଇଁ ଘରଟିଏ ନଥିଲା ।

ବହୁ ଉଦ୍ୟମ ପରେ କଟକରେ ପ୍ରେସ୍ କ୍ଲବଟିଏ ଗଢ଼ା ହେଲା । ସେଥିପାଇଁ କଟକ ମ୍ୟୁନିସପାଲିଟି ପକ୍ଷରୁ ଚୌଧୁରୀ ବଜାରରେ ଥିବା ଧର୍ମଶାଳା ନିକଟରେ  ଜାଗା ଖଣ୍ଡିଏ ଯୋଗାଇ ଦିଆଯାଇଥିଲା ।

ସେ ସମୟରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଚାଲୁଥିଲା । ବସନ୍ତ କୁମାର ବିଶ୍ୱାଳ ସେ ମନ୍ତ୍ରିମଣ୍ଡଳରେ ଜଣେ କ୍ଷମତାଶାଳୀ ମନ୍ତ୍ରୀ ଥିଲେ । ଯାହା ଚାହୁଁଥିଲେ କରିପାରୁଥିଲେ ।

ଥରେ ସହର ଭିତରେ ଗୋଟିଏ ସଭାରେ ତାଙ୍କ ସାଙ୍ଗରେ ଦେଖା ହୋଇଥିଲା । ସେ ଟିକିଏ ତୋଷାମୋଦ ପ୍ରିୟ ଥିଲେ । ଆମେ ତାଙ୍କୁ କହିଥିଲୁ, "ବସନ୍ତ ବିଶ୍ୱାଳଙ୍କ ଶାସନରେ କଟକରେ ସାମ୍ବାଦିକମାନଙ୍କର ବସିବା ପାଇଁ ଘର ଖଣ୍ଡେ ନାହିଁ । ଏଇଟା କ'ଣ ସୁନ୍ଦର ଦେଖାଯାଉଛି ?" ଆମ ଔଷଧ ଠିକ୍ କାମ କଲା । ସେ ନଗର ଉନ୍ନୟନ ବିଭାଗର ମନ୍ତ୍ରୀ ଥିବାରୁ ମ୍ୟୁନିସପାଲିଟି ପ୍ରଶାସନ ତାଙ୍କ ଅଧୀନରେ ଥିଲା । ସେ ସେତେବେଳର ଜିଲ୍ଲାପାଳ

ହରମୋହନ ପଟ୍ଟନାୟକଙ୍କୁ ଡାକି ମ୍ୟୁନିସପାଲିଟି ଜାଗାରେ ପ୍ରେସ୍ କ୍ଲବ ଘର ତିଆରି କରିବା ପାଇଁ ତତ୍କ୍ଷଣାତ ନିର୍ଦ୍ଦେଶ ଦେଇଥିଲେ । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଘର କାମ ସରିଲେ ସେ ଉଦ୍‌ଘାଟନ କରିବାକୁ ଆସିବେ ବୋଲି କହିଥିଲେ ।

ଜିଲ୍ଲାପାଳ ହରମୋହନବାବୁ ଜଣେ ଉଚ୍ଚକୋଟୀର ମଣିଷ ଥିଲେ । ସେ ଆମକୁ ସାହାଯ୍ୟ କରିବାକୁ ଚାହୁଁଥିଲେ ବି ତାଙ୍କ ପାଖରେ ସେ ସୁଯୋଗ ନଥିଲା । ମାତ୍ର ମନ୍ତ୍ରୀଙ୍କ ନିର୍ଦ୍ଦେଶ ତାଙ୍କ ପାଇଁ ସୁଯୋଗ ସୃଷ୍ଟି କରିଦେଇଥିଲା ।

ମ୍ୟୁନିସପାଲିଟି ଅର୍ଥରେ ପଚାଶ ଜଣ ବସିଲା ଭଳି ହଲ୍‌ଟିଏ ସେ ତିଆରି କରିଦେଲେ । ପ୍ରେସ୍ କ୍ଲବ ଉଦ୍‌ଘାଟନ ହେବା ପାଇଁ ଦିନ ସ୍ଥିର ହୋଇଗଲା । ଆମର ଟେବୁଲ୍, ଚେୟାର କିମ୍ବା ଅନ୍ୟ ଆସବାବପତ୍ର କିଛି ନଥିଲା । ମୁଁ ହରମୋହନବାବୁଙ୍କୁ ସବୁକଥା କହିଲି । ସେ ହସି କରି କହିଲେ, "ହଉ ବସନ୍ତ ବାବୁ, ଘର ଯଦି ହୋଇଗଲା, ଫର୍ଣ୍ଣିଚର କ'ଣ ବାକି ରହିବ ?" ସାଙ୍ଗେ ସାଙ୍ଗେ ଏକଜ୍ୟୁକ୍ୟୁଟିଭ ଅଫିସର, ପତିତ ପାବନ ମହାପାତ୍ରଙ୍କୁ ଡାକି କହିଲେ, ବସନ୍ତ ବାବୁ ଯାହା କହିବେ କିଣିଦେବେ । ମତେ ଅପେକ୍ଷା କରିବେ ନାହିଁ ।

କଲେଜରେ ପଢୁଥିଲା ବେଳେ ପତିତବାବୁଙ୍କ ସାଙ୍ଗରେ ପରିଚୟ ଥିଲା । ହରମୋହନବାବୁ ଚାଲିଯିବା ପରେ ସେ ମୋତେ କହିଥିଲେ, "କ'ଣ ଘର ମାଗଣା, ତା ସାଙ୍ଗରେ ଫର୍ଣ୍ଣିଚର ବି ମାଗଣା ?" ମୁଁ ତାଙ୍କୁ ଥଟ୍ଟା କରି କହିଥିଲି, "ଦାତା ତ ଘିଅ ଦଉଛନ୍ତି, ବ୍ରାହ୍ମଣଙ୍କୁ ସ୍ୱାହା  କରିବାରେ କ'ଣ ଅସୁବିଧା ହେଉଛି ?"

ମୁଁ ତାଙ୍କ ଅଫିସରେ ବସି ଲମ୍ବା ତାଲିକାଟିଏ ତିଆରି କରି ତାଙ୍କୁ ଧରେଇ ଦେଲି । ସେଥିରେ ଟେବୁଲ, ଚେୟାର ଠାରୁ ଆରମ୍ଭ କରି କବାଟ, ଝରକା ପାଇଁ ପରଦା, ଟେବୁଲ କ୍ଲଥ, ପେପର ୱେଟ, ପିନ୍ କୁସନ ଇତ୍ୟାଦି ଅନ୍ତର୍ଭୁକ୍ତ ଥିଲା । ଅନ୍ୟ ଉପାୟ ନପାଇ ପତିତବାବୁ ସେସବୁ ଉପକରଣ କିଣିଦେଇଥିଲେ ।

ନଗେନ ବେଉରିଆ ଦୁଇବର୍ଷ କାଳ ଉତ୍କଳ ସାମ୍ବାଦିକ ସଂଘର ସଭାପତି ରହିବା ପରେ ପରବର୍ତ୍ତୀ ସଭାପତି କିଏ ହେବେ ସେଥିପାଇଁ ଆଲୋଚନା ଆରମ୍ଭ ହୋଇଥିଲା । ସଂଘର ସମ୍ବିଧାନ ଅନୁଯାୟୀ ସଭାପତି ନିର୍ବାଚନ ପ୍ରଥମେ ହେଉଥିଲା । ସାଧାରଣ ଅଧିବେଶନରେ ଅନ୍ୟାନ୍ୟ କର୍ମକର୍ତ୍ତାମାନଙ୍କୁ ନିର୍ବାଚିତ କରାଯାଉଥିଲା ।

ଆମର ଅନ୍ୟାନ୍ୟ ଦାବି ମଧ୍ୟରେ ସାମ୍ବାଦିକ କଲ୍ୟାଣ ପାଣ୍ଠିକୁ ଏକଲକ୍ଷ ଟଙ୍କାର ସରକାରୀ ଅନୁଦାନ ଦେବାକୁ ଶ୍ରୀ ପଟ୍ଟନାୟକ ଅଧିବେଶନରେ ଘୋଷଣା କରିଥିଲେ । ମାତ୍ର ସେ ପାଣ୍ଠିର ପରିଣତି କ'ଣ ହେଲା, କେତେ ସାମ୍ବାଦିକ ସେ ପାଣ୍ଠିରୁ ଉପକୃତ ହେଲେ, ସେକଥା ମୁଁ ଗତ ତିରିଶ ବର୍ଷ ଭିତରେ ଜାଣିପାରିନଥିଲି ।

ରାଉରକେଲାରେ ସାମ୍ବାଦିକ ସଂଘର ଅଧିବେଶନ ପୂର୍ବରୁ ମୋ ବିରୋଧରେ ଗୋଟିଏ ଗୋଷ୍ଠୀ ଗଠନ ହୋଇଥିଲେ ବି ସେ ସମ୍ପର୍କରେ ମୁଁ ବିଶେଷ କିଛି ସୂଚନା ପାଇନଥିଲି । 'ସମାଜ'ର କର୍ତ୍ତବ୍ୟରତ ସାମ୍ବାଦିକମାନଙ୍କ ସ୍ୱାର୍ଥରକ୍ଷା ପାଇଁ ମୁଁ 'ସମାଜ' କର୍ତ୍ତୃପକ୍ଷଙ୍କ ବିରୋଧରେ ଏକାଧିକ ମକଦ୍ଦମା କରିଥିବାରୁ ସେମାନେ ମୋ ପ୍ରତି କ୍ଷୁବ୍ଧ ଥିଲେ ।

ବାଲେଶ୍ୱରର ସମାଜ ପ୍ରତିନିଧି ମିହିର ଆଚାର୍ଯ୍ୟ, ନଗେନ ବେଉରିଆଙ୍କ ପରେ ସଂଘର ସଭାପତି ହେବାକୁ ଚାହିଁଥିଲେ । ସେହିପରି ସମ୍ବଲପୁରରେ ଅବସ୍ଥାପିତ ସମାଜ ପ୍ରତିନିଧି ପ୍ରଶାନ୍ତ ମହାନ୍ତିଙ୍କର ମଧ୍ୟ ସଭାପତି ହେବାକୁ ଇଚ୍ଛା ଥିଲା ।

କିନ୍ତୁ ସେମାନଙ୍କର ସମର୍ଥକମାନଙ୍କ ଅପେକ୍ଷା ବିରୋଧୀଙ୍କ ସଂଖ୍ୟା ଅଧିକ ଥିବାରୁ ସେମାନଙ୍କର ଇଚ୍ଛା ପୂରଣ ହୋଇ ପାରିନଥିଲା । ମୁଁ ସେମାନଙ୍କୁ ସମର୍ଥନ ନକରିବାରୁ ସେମାନେ ସଭାପତି ହୋଇପାରିଲେ ନାହିଁ ବୋଲି ସେମାନଙ୍କର ଧାରଣା ଜନ୍ମିଥିଲା । ସେଥିପାଇଁ ସେମାନେ ସମାଜରେ କାର୍ଯ୍ୟ କରୁଥିବା କେତେକ ସାମ୍ବାଦିକ ବନ୍ଧୁଙ୍କୁ ମତାଇ ମତେ ଅପଦସ୍ଥ କରିବା ପାଇଁ ଉଦ୍ୟମ କରିଥିଲେ । ହେଲେ ଅନ୍ୟ ସାମ୍ବାଦିକ ବନ୍ଧୁମାନେ ସେ ଚକ୍ରାନ୍ତର ସୂଚନା ପାଇଯିବାରୁ ସେମାନଙ୍କର ଉଦ୍ୟମ ସଫଳ ହୋଇନଥିଲା ।

ବାର୍ଷିକ ସମ୍ମିଳନୀ ପରେ ପ୍ରଥମ କାର୍ଯ୍ୟକାରୀ କମିଟି ବୈଠକ ହେବା ପୂର୍ବରୁ ସଭାପତି, ସାଧାରଣ ସଂପାଦକଙ୍କୁ ମନୋନୀତ କରିବା କଥା । କିନ୍ତୁ ମୋ କ୍ଷେତ୍ରରେ ସେଥିରେ ବ୍ୟତିକ୍ରମ ହୋଇଥିଲା । ନୂତନ ସଭାପତି ଶ୍ରୀ ମୂଳିଆ ସାଦାସିଧା ଭଦ୍ରଲୋକ । ଛନ୍ଦକପଟ କିଛି ଜାଣିନଥିଲେ ।

ମାତ୍ର ତାଙ୍କର ଗୋଟିଏ ଦୁର୍ବଳତା ଥିଲା । ସନ୍ଧ୍ୟାବେଳେ ଟିକିଏ ମଦ୍ୟପାନ କରିଦେଲେ ସେ ସବୁକଥା ଭୁଲି ଯାଉଥିଲେ । ସେପରି ଏକ ସ୍ଥିତିରୁ ଫାଇଦା ଉଠାଇ ମୋ ବିରୋଧୀମାନେ ତାଙ୍କ ମୁଣ୍ଡରେ ନାନା କଥା ପୂରାଇଥିଲେ । ମତେ ସାଧାରଣ ସଂପାଦକ ନକରିବା ପାଇଁ ତାଙ୍କ ଉପରେ ଚାପ ପକାଇଥିଲେ । କିନ୍ତୁ ମହେଶ୍ୱରବାବୁଙ୍କର ଅନ୍ୟ ଚାରା ନଥିଲା । ଶେଷରେ ସେ ମତେ ସାଧାରଣ ସଂପାଦକ ଭାବରେ ମନୋନୀତ କରିବାକୁ ଏକପ୍ରକାର ବାଧ୍ୟ ହୋଇଥିଲେ ।

ଶ୍ରୀ ମୂଳିଆଙ୍କ ବ୍ୟବହାରରେ ମୁଁ ଅତ୍ୟନ୍ତ ବ୍ୟଥିତ ହୋଇଥିଲି । ମାତ୍ର ତାଙ୍କ ପ୍ରତି ମୋର ଶ୍ରଦ୍ଧା ଓ ସମ୍ମାନ କମିନଥିଲା । ମୁଁ ଦ୍ୱିତୀୟ ଥର ସାଧାରଣ ସଂପାଦକ ହେବା ପରେ ମୋର କଟକରୁ ଭୁବନେଶ୍ୱରକୁ ବଦଳି ହୋଇଥିଲା । ମୁଁ ଦ୍ୱିତୀୟ ଥର ପାଇଁ କଟକ ଛାଡିଥିଲି ।

ମୁଁ କଟକ ଛାଡିବା ପରେ ମତେ ବିରାଧ କରୁଥିବା ବନ୍ଧୁମାନେ ଅଧିକ ସଙ୍ଗଠିତ ହେବାକୁ ସୁଯୋଗ ପାଇଥିଲେ । ମାତ୍ର ସେଥିରେ ମୋର କିଛି କ୍ଷତି ହୋଇନଥିଲା । ସଂଘ କାମରେ ଯେତିକି ସମୟ ଦେବା କଥା, ମୁଁ ତା'ଠାରୁ ଅଧିକ ସମୟ ଦେଉଥିଲି । ବିଭିନ୍ନ ଜିଲ୍ଲାକୁ ଯାଇ ଜିଲ୍ଲା ଶାଖାଗୁଡିକ ମଜଭୁତ୍ କରିବାରେ ଲାଗିଥିଲି ।

ଦୁଇବର୍ଷ ପରେ ପୁଣି ସଭାପତି ନିର୍ବାଚନର ସମୟ ଆସିଲା । ଅଧିକାଂଶ ଜିଲ୍ଲାମାନଙ୍କରୁ ମୁଁ ସଭାପତି ହୁଏ ବୋଲି ପ୍ରସ୍ତାବ ଆସିଥିଲା । କଟକ, ଭୁବନେଶ୍ୱରର ଅଧିକାଂଶ ବନ୍ଧୁମାନେ ମଧ୍ୟ ମୁଁ ସଭାପତି ପଦ ପାଇଁ ପ୍ରାର୍ଥୀ ହେବାକୁ ମୋ ଉପରେ ଚାପ ସୃଷ୍ଟି କରିଥିଲେ । ବନ୍ଧୁ ଭାବିଚିନ୍ତି ମୁଁ ସଭାପତି ପଦ ପାଇଁ ରିଟର୍ଣ୍ଣ ଅଫିସରଙ୍କ ପାଖରେ ପ୍ରାର୍ଥୀପତ୍ର ଦାଖଲ କରିଥିଲି । ମୁଁ ସଭାପତି ହେବା ଏକପ୍ରକାର ନିଶ୍ଚିତ ହୋଇସାରିଥିଲା । ନିର୍ବାଚନଟା କେବଳ ଔପଚାରିକ ଥିଲା ।

ସଭାପତି ନିର୍ବାଚନ ପାଇଁ ରିଟର୍ଣ୍ଣିଂ ଅଫିସର ଥିଲେ ସମ୍ବଲପୁରର ବରିଷ୍ଠ ସାମ୍ବାଦିକ ବସନ୍ତ ମହାନ୍ତି । ସଂଘର ସମ୍ବିଧାନ ଓ ନିୟମ କାନୁନ ସମ୍ପର୍କରେ ସେ ବିଶେଷ ଅବଗତ ଥିଲେ । ସାମ୍ବିଧାନିକ ବ୍ୟବସ୍ଥା ଅନୁଯାୟୀ ଭୋଟର ତାଲିକା ସଂଘ ଅଫିସରେ ଟଙ୍ଗା ଯାଇଥିଲା । ଭୋଟ ଗ୍ରହଣ ପାଇଁ ଅଳ୍ପଦିନ ବାକିଥିଲା ।

ମୁଁ ସଭାପତି ହେବା ନିଶ୍ଚିତ ହେବା ଜାଣି ସମାଜର କେତେକ ବନ୍ଧୁ ଈର୍ଷାନ୍ୱିତ ହୋଇ ଭୋଟର ତାଲିକାରେ ତ୍ରୁଟି ଥିବା ଦର୍ଶାଇ ଭୋଟ ବନ୍ଦ କରିବାକୁ ସଭାପତି ଶ୍ରୀ ମୂଳିଆଙ୍କ ନିକଟରେ ଦାବି କରିଥିଲେ । ଏ ବିଷୟରେ ଆଲୋଚନା ପାଇଁ ସଭାପତି ଭୁବନେଶ୍ୱରସ୍ଥ ସଂଘ ଅଫିସରେ ଗୋଟିଏ ବୈଠକ ଡକାଇଥିଲେ ।

ବୈଠକରେ ମୋ ପ୍ରତି ସମର୍ଥନ ଦେଖି ସମାଜର ବନ୍ଧୁମାନେ ଚକିତ ହୋଇଯାଇଥିଲେ । ଯେ କୌଣସି ପରିସ୍ଥିତିରେ ମୁଁ ଯେପରି ସଭାପତି ନହୋଇପାରିବି ସେଥିପାଇଁ ସେମାନେ ବିଭିନ୍ନ କୌଶଳ ବିଷୟରେ ଚିନ୍ତା କରିଥିଲେ ।

କାର୍ଯ୍ୟକାରୀ କମିଟିର ଏକ ପୂର୍ଣ୍ଣାଙ୍ଗ ବୈଠକ ଅନୁଷ୍ଠିତ ହୋଇ ସଭାପତି ନିର୍ବାଚନ ସମ୍ପର୍କରେ ନିଷ୍ପତ୍ତି ଗ୍ରହଣ କରାଯିବା ପର୍ଯ୍ୟନ୍ତ ନିର୍ବାଚନ ସ୍ଥଗିତ ରହିବାକୁ ସମାଜର ବନ୍ଧୁମାନେ ଗୋଟିଏ ପ୍ରସ୍ତାବ ଦେଇଥିଲେ ।

ସାଧାରଣ ଭାବରେ ସେପରି ପ୍ରସ୍ତାବ ସେଦିନ ଗୃହୀତ ହୋଇପାରିନଥାନ୍ତା । କିନ୍ତୁ ସେମାନେ ଗୋପାଳ ବାବୁଙ୍କୁ ଧରି ମୋ ଉପରେ ଚାପ ସୃଷ୍ଟି କଲେ । ଗୋପାଳ ବାବୁ ମତେ କହିଲେ, "ତମର ତ ସଭାପତି ହେବାରେ କିଛି ଅସୁବିଧା ନାହିଁ । ଏଥିରେ ରାଜି ହୋଇଯାଉନ ?"

ମତେ ଏପରି କହିବା ପଛରେ ଗୋପାଳବାବୁଙ୍କର ଯେ ଗୋଟାଏ ମତଲବ ଥିଲା, ସେ କଥା ସେଦିନ ମୁଁ ବୁଝିପାରିନଥିଲି । ମତେ ବିରୋଧ କରୁଥିବା ବନ୍ଧୁମାନେ ସେତେବେଳକୁ ଗୋପାଳବାବୁଙ୍କୁ ସଭାପତି କରିବାର ଥୋପ ଦେଖାଇ ସାରିଥିଲେ । ଗୋପାଳବାବୁ ଦୀର୍ଘଦିନର ବ୍ୟବଧାନ ପରେ ଆଉ ଥରେ ସଭାପତି ହେବା ଲୋଭରେ ସେମାନଙ୍କ ଜାଲରେ ପଡ଼ିଯାଇଥିଲେ । ମୁଁ ଗୋପାଳବାବୁଙ୍କ କଥାରେ ରାଜି ହୋଇଯିବା ପରେ ପ୍ରସ୍ତାବଟି ଗୃହୀତ ହୋଇଯାଇଥିଲା ।

ସଭାପତିଙ୍କ ପରାମର୍ଶକ୍ରମେ ମୁଁ କାର୍ଯ୍ୟକାରୀ କମିଟିର ଏକ ପୂର୍ଣ୍ଣାଙ୍ଗ ବୈଠକ ଭୁବନେଶ୍ୱର କାର୍ଯ୍ୟାଳୟରେ ଡକାଇଥିଲି । ସେ ବୈଠକର ସଫଳତା ପାଇଁ ମୁଁ ଲାଗିପଡ଼ିଥିଲା ବେଳେ ମୋ ବିରୋଧରେ ଗୋଟିଏ ଷଡ଼ଯନ୍ତ୍ର ଆରମ୍ଭ ହୋଇଯାଇଥିଲା ।

ସେ ଷଡ଼ଯନ୍ତ୍ରର କେନ୍ଦ୍ରସ୍ଥଳୀ ଥିଲା ସମାଜର ଭୁବନେଶ୍ୱର ଅଫିସ୍ । ସେତେବେଳେ ସମାଜର ସ୍ୱତନ୍ତ୍ର ପ୍ରତିନିଧି ଥିବା ପ୍ରଦୋଷ ପଟ୍ଟନାୟକଙ୍କ ଖାରବେଳ ନଗରସ୍ଥ ବାସଭବନରେ ସମାଜ ଅଫିସ୍ କାର୍ଯ୍ୟ କରୁଥିଲା । ସକାଳ ହେଲେ ଷଡ଼ଯନ୍ତ୍ରର ନେତୃତ୍ୱ ନେଉଥିବା ସମାଜର ଆଠଗଡ଼ ପ୍ରତିନିଧି ରତ୍ନାକର ବେଉରା ଓ ଅନ୍ୟମାନେ ସେ ଅଫିସରେ ହାଜର ହୋଇଯାଉଥିଲେ ।

ବାସ୍ତବରେ ଶ୍ରୀ ବେଉରା ଜଣେ କଣ୍ଟ୍ରାକ୍ଟର ଥିଲେ ଏବଂ ନିଜ ବ୍ୟବସାୟର ସୁରକ୍ଷା ପାଇଁ ସାମ୍ବାଦିକତାକୁ ଏକ ଢ଼ାଲ ଭାବରେ ବ୍ୟବହାର କରୁଥିଲେ । ଅନ୍ୟମାନଙ୍କ ନାଁରେ ଖଟକହି ସେ ସମାଜ ସମ୍ପାଦକ ରାଧାନାଥ ରଥଙ୍କର ପ୍ରିୟପାତ୍ର ହୋଇପାରିଥିଲେ ।

ଶ୍ରୀ ବେଉରା, ଶ୍ରୀ ରଥଙ୍କୁ ବୁଝାଇ ଦେଇଥିଲେ ଯେ, "ବସନ୍ତ ଦାସ ଉତ୍କଳ ସାମ୍ବାଦିକ ସଂଘର ସଭାପତି ହେଲେ 'ସମାଜ' ଅନୁଷ୍ଠାନ ପାଇଁ ବିପଦ ସୃଷ୍ଟି ହେବ । ଯେ କୌଣସି ପ୍ରକାରେ ତାଙ୍କୁ ବିରୋଧ କରିବାକୁ ପଡ଼ିବ । ସେଥିପାଇଁ ଆପଣଙ୍କ ଆଶୀର୍ବାଦ ଦରକାର ।"

ସେଦିନ ଶ୍ରୀ ରଥ, ଶ୍ରୀ ବେଉରାଙ୍କୁ ଆଶୀର୍ବାଦ କରିଥିଲେ କି ନାହିଁ ମୋର ଜାଣିବାର ଉପାୟ ନଥିଲା । କିନ୍ତୁ ପରେ ଶୁଣିଥିଲି, ମତେ ହରାଇବା ପାଇଁ ଶ୍ରୀ ବେଉରା ଶ୍ରୀ ରଥଙ୍କ ପାଖରୁ କୁଆଡ଼େ ମୋଟା ଅଙ୍କର ଅର୍ଥ ପାଇଥିଲେ ।

କାର୍ଯ୍ୟକାରୀ କମିଟି ବୈଠକ ଦିନ ଅପରାହ୍ଣରେ ମୁଁ ଘରକୁ ଫେରିଲା ବେଳକୁ ମୋ କ୍ୱାଟର୍ସ ସାମନାରେ ଗୋଟିଏ ପୁଲିସ୍ ଜିପ୍ ଛିଡା ହୋଇଥିଲା । ଗାଡ଼ିରେ କ୍ୟାପିଟାଲ ଥାନାର ଇନସପେକ୍ଟର ଇନ୍‌ଚାର୍ଜ୍ଜ ଓ ଅନ୍ୟ ପାଞ୍ଚଜଣ ଅଫିସର ଥିଲେ । ବୈଠକ ପୂର୍ବରୁ ମତେ ଗିରଫ କରିବା ସେମାନଙ୍କର ଉଦ୍ଦେଶ୍ୟ ଥିଲା ।

ମୁଁ ସେମାନଙ୍କୁ ଡକାଇ ଆସିବାର କାରଣ ପଚାରିଥିଲି । ଇନ୍‌ସପେକ୍ଟର କିଛି କହିବା ପୂର୍ବରୁ ପକେଟରୁ ବାହାର କରି ଗୋଟିଏ ଏଫ.ଆଇ.ଆର କପି ମତେ ଦେଖେଇଥିଲେ । ସେଥିରେ ଲେଖାଥିଲା, 'ମୋର ବିରୋଧୀମାନଙ୍କୁ ମାରଧର କରିବା ପାଇଁ ମୁଁ ଗୁଣ୍ଡାମାନଙ୍କୁ ନିଯୁକ୍ତ କରିଥିଲି । ସାମ୍ବାଦିକ ସଂଘର ବୈଠକ ସ୍ଥାନକୁ ମୁଁ ଗଲେ ରକ୍ତପାତର ଆଶଙ୍କା ଥିବାରୁ ମତେ ସେଠାକୁ ଯିବାକୁ ଦିଆନଯାଉ ।'

ଏଫ.ଆଇ.ଆର୍.ରେ ଅନ୍ୟମାନଙ୍କ ମଧ୍ୟରେ ପି.ଟି.ଆଇ. ମ୍ୟାନେଜର ରାମକୃଷ୍ଣ ବେହେରା, ରତ୍ନାକର ବେଉରା, ପାରାଦୀପରେ ଥିବା 'ସମାଜ' ପ୍ରତିନିଧି ବାସୁଦେବ ସେଠୀଙ୍କ

ସମେତ ଆଉ ଚାରି ପାଞ୍ଚଜଣ ଦସ୍ତଖତ କରିଥିଲେ । ସେ ଏଫଆଇଆରଟି ପି.ଟି.ଆ.ଇ ଅଫିସରେ ରାମକୃଷ୍ଣ ବେହେରାଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇଥିଲା ।

ମତେ ଇନ୍‌ସପେକ୍ଟର କହିଥିଲେ, "ଏହି ଏଫଆଇଆର ବଳରେ ଆମେ ଆପଣଙ୍କୁ ପ୍ରିଭେଣ୍ଟିଭ ଆରେଷ୍ଟ କରିବାକୁ ଆସିଛୁ । ଆପଣ ଆମ ସାଙ୍ଗରେ ଥାନାକୁ ଚାଲନ୍ତୁ ।"

ତାଙ୍କର ଏପରି ଧମକପୂର୍ଣ୍ଣ କଥାରେ ମୁଁ ମୋ କ୍ରୋଧକୁ ସମ୍ଭାଳି ପାରିନଥିଲି । ମୁଁ ତାଙ୍କୁ ଏକାଭଳି ଚଢ଼ାଗଳାରେ କହିଥିଲି, "ଦେଖନ୍ତୁ ଇନିସପେକ୍ଟର, ଆପଣ ନିଜକୁ ନିଜେ କ'ଣ ବୋଲି ଭାବୁଛନ୍ତି ? ଯିଏ ଯାହା ଲେଖିଦେଲା, ଆପଣ ତାକୁ ଧରି ମତେ ଆରେଷ୍ଟ କରିବାକୁ ଚାଲି ଆସିଲେ ।"

"ମୁଁ ହେଉଛି ଉତ୍କଳ ସାମ୍ବାଦିକ ସଂଘର ସାଧାରଣ ସଂପାଦକ । ସଂଘର ସ୍ଥାୟୀ ଓ ଅସ୍ଥାୟୀ ସମ୍ପତ୍ତିର ଦାୟିତ୍ୱ ମୋ ଉପରେ ନ୍ୟସ୍ତ । ମୁଁ ତାଲା ଖୋଲିଲେ ବୈଠକ ହେବ । ସମଗ୍ର ରାଜ୍ୟରୁ ସାମ୍ବାଦିକମାନେ ଆସୁଛନ୍ତି । ପରିସ୍ଥିତିର ଗୁରୁତ୍ୱକୁ ଉପଲବ୍ଧ କରିବା ପରିବର୍ତ୍ତେ ଆପଣ ପକ୍ଷପାତ ବିଚାର କରୁଛନ୍ତି ? ଆପଣ ଯଦି ମୋ କଥା ଶୁଣି ଚାଲି ନଯିବେ, ତେବେ ଆପଣଙ୍କ ସାମନାରେ ମୁଁ ଡ଼ି.ଜି ସାହେବଙ୍କ ସାଙ୍ଗରେ କଥାବାର୍ତ୍ତା କରି ଆପଣ କିପରି ସାମ୍ବାଦିକ ସଂଘର ଆଭ୍ୟନ୍ତରୀଣ ବ୍ୟାପାରରେ ଅଯଥାରେ ମୁଣ୍ଡ ପୂରାଉଛନ୍ତି ସେ ବିଷୟ ଜଣାଇବି । ତା'ପରେ ଫଳାଫଳ ଯା ହେବ ଆପଣ ମତେ ଆଉ ଦୋଷ ଦେବେ ନାହିଁ ।"

ମୋର ପରୋକ୍ଷ ଧମକ ମନ୍ତ୍ର ଭଳି କାମ କଲା । ନିଆଁରେ ପାଣି ପଡ଼ିଲା ପରି ଇନସ୍‌ପେକ୍ଟର ହଠାତ୍ ନରମି ଯାଇଥିଲେ । 'ସରି' କହି ଯିବା ପୂର୍ବରୁ ମତେ ଗୋଟିଏ ଅନୁରୋଧ କରି କହିଥିଲେ, "ଆମେ ପୁଲିସ୍ ଅଫିସରମାନଙ୍କୁ ସାଦାପୋଷାକରେ ସଂଘ ଅଫିସ ସାମନାରେ ମୁତୟନ କରିବୁ । ଚେକ୍ କରି ମେମ୍ବରମାନଙ୍କୁ ଭିତରକୁ ଛାଡ଼ିବୁ । ଆପଣ ଆମକୁ ସେଥିରେ ଟିକିଏ ସାହାଯ୍ୟ କରିବେ ।"

ମୁଁ ଉତ୍ତର ଦେଇଥିଲି, "ନୋ ପ୍ରୋବ୍ଲେମ୍ । ଆପଣ ଯାହା ଖୁସି କରିପାରନ୍ତି, ସେଥିରେ ମୋର ଆପତ୍ତି ନାହିଁ ।" ଏହାପରେ ପୁଲିସ ଫଉଜ ଫେରି ଯାଇଥିଲେ । ମୁଁ ସେହିଦିନ ଦୃଢ଼ ନହୋଇଥିଲେ ନିଶ୍ଚିତ ଭାବରେ ଗିରଫ ହୋଇ ଥାନାକୁ ଯାଇଥାନ୍ତି, ସେଥିରେ ସନ୍ଦେହ ନଥିଲା ।

ମୋ ବିରୋଧରେ ପୁଲିସରେ ଏଫଆଇଆର ଦେଇ ବନ୍ଧୁମାନେ ଚୁପ୍ ହୋଇ ବସି ନଥିଲେ । ବୈଠକ ପୂର୍ବଦିନ ସଂଧ୍ୟାରେ ସେମାନଙ୍କ ପକ୍ଷରୁ ଗୋଟିଏ ନୈଶଭୋଜିର ବ୍ୟବସ୍ଥା ହୋଇଥିଲା । ସେଥିରେ ସୁରାପାନର ବ୍ୟବସ୍ଥା କରାଯାଇଥିଲା ।

ସେ ବୈଠକରେ ରାମକୃଷ୍ଣ ବେହେରା ଓ ଗୋପାଳ ମିଶ୍ର ପ୍ରମୁଖ ଉପସ୍ଥିତ ଥିଲେ । ମଦ୍ୟପାନ ଭିତରେ କପଟ କରି ଶ୍ରୀ ବେଉରା ସଭାପତି ପଦ ପାଇଁ ଗୋଟିଏ ପ୍ରାର୍ଥୀପତ୍ରରେ

ଗୋପାଳବାବୁଙ୍କ ସମ୍ମତି ନେଇ ତାଙ୍କୁ ନିର୍ଦ୍ୱନ୍ଦ୍ୱରେ ସଭାପତି କରାଯିବ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ତା'ପରଦିନ ଗୋପାଳବାବୁଙ୍କ ସାଙ୍ଗରେ ମୁଁ ଚାରିଘଣ୍ଟା ବିତେଇଥିଲେ ବି ପୂର୍ବରାତିର ବୈଠକ ସମ୍ପର୍କରେ ସେ ମତେ କିଛି ସୂଚନା ଦେଇନଥିଲେ । କେବଳ ପଚାରିଥିଲେ, କ'ଣ ଆଜି ମିଟିଂ ହେଉଛି ? ତମେ ଆସିବ ତ ? ମୁଁ କହିଲି, "ମୁଁ ମିଟିଂ ଡକାଇଚି, ନିଜେ ନଆସିଲେ କେମିତି ହେବ ?"

ବୈଠକ ଚାରିଟା ବେଳକୁ ଡକାଯାଇଥିଲା । ଯୋଉମାନେ ମୋ ବିରୋଧରେ ପୁଲିସରେ ଏଫଆଇଆର ଦେଇଥିଲେ, ସେମାନେ ନିଶ୍ଚିତ ଥିଲେ ଯେ ବୈଠକ ପୂର୍ବରୁ ମୁଁ ଗିରଫ ହୋଇ ସାରିଥିବି ଏବଂ ବୈଠକରେ ଭାଗ ନେଇପାରିବି ନାହିଁ ।

ମୁଁ କିନ୍ତୁ ମିଟିଂର ଘଣ୍ଟାକ ପୂର୍ବରୁ ତିନିଟାବେଳୁ ଅଫିସରେ ହାଜର ହୋଇଯାଇଥିଲି । କାଗଜପତ୍ର ସହିତ ମତେ ଅଫିସରେ ବସିଥିବାର ଦେଖି ସେମାନେ କେବଳ ହତାଶ ହୋଇନଥିଲେ, ଆଶ୍ଚର୍ଯ୍ୟ ହୋଇଯାଇଥିଲେ ।

ନିର୍ଦ୍ଧାରିତ ସମୟରେ ମିଟିଂ ଆରମ୍ଭ ହୋଇଥିଲା । ମୋ ବିରୋଧୀଙ୍କ ପକ୍ଷରୁ ରତ୍ନାକର ବେଉରା ଧାଡିକିଆ ପ୍ରସ୍ତାବଟିଏ ଆଣି କହିଲେ, ଆଗାମୀ ସାଧାରଣ ଅଧିବେଶନରେ ଉତ୍କଳ ସାମ୍ବାଦିକ ସଂଘର ସଭାପତି ନିର୍ବାଚନ କରାଯାଉ । ସଭାପତି ନିର୍ବାଚନର ପ୍ରକ୍ରିୟାକୁ ବର୍ତ୍ତମାନ ବନ୍ଦ କରାଯାଉ । ଏପରି ଏକ ପ୍ରସ୍ତାବ ଗ୍ରହଣ କରାଇବା ପାଇଁ ସେମାନେ ପ୍ରସ୍ତୁତ ହୋଇ ଆସିଥିଲେ । କିନ୍ତୁ ମୁଁ ତା'ର କିଛି ଟେର୍ ପାଇପାରିନଥିଲି ।

ଶ୍ରୀ ବେଉରାଙ୍କ ପ୍ରସ୍ତାବକୁ ବହୁ ସଦସ୍ୟ କରତାଳି ଦେଇ ସମର୍ଥନ ଜଣାଇଥିଲେ । ମୁଁ କିଛି କହିବା ପାଇଁ ଛିଡ଼ା ହେବାରୁ ଗୋପାଳବାବୁ ମତେ ବାଧାଦେଇ କହିଥିଲେ, "ବସନ୍ତ, ତମେ ଆଉ ଗଣ୍ଡଗୋଳ ସୃଷ୍ଟି କରନାହିଁ । ତମକୁ ଅନ୍ୟମାନଙ୍କ କଥା ମାନିବାକୁ ପଡ଼ିବ ।"

ଗୋପାଳବାବୁଙ୍କ କଥାରେ ପରୋକ୍ଷ ଧମକର ଇଙ୍ଗିତ ଥିଲା । ସେତେବେଳେ 'ଅମୃତ ବଜାର ପତ୍ରିକା' ବ୍ୟତୀତ ରୋଜଗାର ପାଇଁ ମୋ ପକ୍ଷରେ ଅନ୍ୟ କୌଣସି ବିକଳ୍ପ ପନ୍ଥା ନଥିଲା । ଗୋପାଳବାବୁଙ୍କୁ ବିରୋଧ କରି ପତ୍ରିକାରେ କାମ କରିବା ମଧ୍ୟ ସମ୍ଭବପର ନଥିଲା ।

ଗୋପାଳବାବୁଙ୍କୁ ବିରୋଧ କରି ଅମୃତ ବଜାର ପତ୍ରିକା ଚାକିରି ଚାଲିଯିବା ଭଳି ପରିସ୍ଥିତି ସୃଷ୍ଟି କରି 'ଉତ୍କଳ ସାମ୍ବାଦିକ ସଂଘ'ର ସଭାପତି ହେବା କିମ୍ବା ତାଙ୍କୁ ଖୁସି କରି ସଭାପତି ନିର୍ବାଚନ ଦଉଡ଼ରୁ ନିବୃତ୍ତ ରହିବା ଏ ଦୁଇଟି ମଧ୍ୟରେ ମୋ ପାଇଁ କୋଉଟା ଶୁଭଙ୍କର ହେବ ମୁଁ ତାକୁ ମନେ ମନେ ତଉଲିଲି । ନିର୍ବାଚନ ଦଉଡ଼ରୁ ଓହରିଯିବା ଉଚିତ୍ ହେବ ବୋଲି ମୋ ବିବେକ ମତେ ଚେତେଇ ଦେଇଥିଲା ।

ମୁଁ କହିଲି, "ଯଦି ଅଧିକାଂଶ ସଦସ୍ୟ, ସାଧାରଣ ଅଧିବେଶନରେ ସଭାପତି ନିର୍ବାଚନ ହେବାକୁ ଚାହୁଁଛନ୍ତି, ମୁଁ ସେମାନଙ୍କ ମତକୁ ସମ୍ମାନ ଦେଇ ମୋ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେଉଛି ।" ସମସ୍ତେ ମୋ କଥାକୁ ତାଳି ଦେଇ ସମର୍ଥନ କରିଥିଲେ ।

ଏହି ଘଟଣାର କିଛିଦିନ ପରେ କଟକ ଶ୍ରୀରାମଚନ୍ଦ୍ର ଭବନରେ ଉତ୍କଳ ସାମ୍ବାଦିକ ସଂଘର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସଭାପତି ହେବାପାଇଁ ମନେ ମନେ ଗୁଡ଼ ଖାଇ ଗୋପାଳବାବୁ ବେଶପୋଷାକ ହୋଇ ରାମକୃଷ୍ଣ ବେହେରା ଓ ଅନ୍ୟ କେତେକ ବନ୍ଧୁଙ୍କୁ ଧରି ଟାକ୍ସିରେ କଟକ ଯାଇଥିଲେ । ମାତ୍ର ସଭାପତି ନିର୍ବାଚନର ଫଳାଫଳ କ'ଣ ହେବ ବହୁପୂର୍ବରୁ ମୁଁ ତା'ର ସୂଚନା ପାଇସାରିଥିଲି । ଯୋଉମାନେ ଗୋପାଳବାବୁଙ୍କୁ ମଦ ପିଆଇ ତାଙ୍କୁ ସଭାପତି କରାଇବାର ମିଥ୍ୟା ପ୍ରତିଶ୍ରୁତି ଦେଇଥିଲେ, ଶେଷରେ ସେମାନେ ତାଙ୍କୁ 'ଶିଶୁପାଳ' କରିଥିଲେ । "ମହେଶ୍ୱର ମୂଳିଆ ଆଉଥରେ ସଭାପତି ହେବାକୁ ସମସ୍ତେ ଚାହୁଁଛନ୍ତି" ବୋଲି କହି ସେମାନେ ଗୋପାଳବାବୁଙ୍କୁ ହତାଶ କରିଥିଲେ । ସାମାନ୍ୟ କେଇ ପେଗ୍ ମଦ ପାଇଁ ସେମାନଙ୍କ ପାଲରେ ପଡ଼ି ଯାଇଥିବାରୁ ଗୋପାଳବାବୁଙ୍କୁ ଦୀର୍ଘ ଦିନ ପାଇଁ ମନସ୍ତାପ କରିବାକୁ ପଡ଼ିଥିଲା ।

ମୋ ବିରୋଧରେ ହୋଇଥିବା ଷଡ଼ଯନ୍ତ୍ରରେ ଗୋପାଳ ବାବୁ ଭାଗିଦାର ହୋଇଥିଲେ ବି ତାଙ୍କର ଶେଷନିଃଶ୍ୱାସ ପର୍ଯ୍ୟନ୍ତ ତାଙ୍କ ପ୍ରତି ମୋର ଶ୍ରଦ୍ଧା ଓ ସମ୍ମାନ ଅକ୍ଷୁଣ୍ଣ ଥିଲା । ଅଫିସ୍ କାମ ଛଡା ତାଙ୍କ ବ୍ୟକ୍ତିଗତ କାର୍ଯ୍ୟରେ ମୁଁ ତାଙ୍କୁ ସାଧ୍ୟ ମତେ ସାହାଯ୍ୟ କରୁଥିଲି ।

ସମୟ ବଦଳିବା ସହିତ ଉତ୍କଳ ସାମ୍ବାଦିକ ସଂଘର କର୍ମକର୍ତ୍ତାମାନେ ସାମ୍ବାଦିକମାନଙ୍କର ସାମୂହିକ ସ୍ୱାର୍ଥ ବଦଳରେ ବ୍ୟକ୍ତି ସ୍ୱାର୍ଥରେ ମାତିବା ଫଳରେ ସଂଘ ତାହାର ପ୍ରାସଙ୍ଗିକତା ହରାଇଥିଲା ।

# ଯେ ଦେଶ ଯାଇ ସେ ଫଳ ଖାଇ

କେତେକ ବନ୍ଧୁଙ୍କ ଚକ୍ରାନ୍ତ ଫଳରେ ମୁଁ ଉତ୍କଳ ସାମ୍ବାଦିକ ସଂଘର ସଭାପତି ହୋଇପାରିଲି ନାହିଁ ସତ, କିନ୍ତୁ ସେଥିରେ ମୋର ପ୍ରତିଷ୍ଠା ବା ସମ୍ମାନ କମି ଯାଇନଥିଲା । ବରଂ ସର୍ବଭାରତୀୟସ୍ତରରେ ମୁଁ ଅଧିକ ଜଣାଶୁଣା ହୋଇଗଲି ।

ସଭାପତି ନିର୍ବାଚନକୁ କେନ୍ଦ୍ରକରି ଯାହା ସବୁ ଘଟିଥିଲା, ସେକଥା ଆଜି ପର୍ଯ୍ୟନ୍ତ ମୁଁ ଭୁଲି ପାରିନାହିଁ । ମୁଁ ଟେଲିଫୋନ ଯୋଗେ ମହାସଂଘର ସଭାପତି ବିକ୍ରମ ରାଓଙ୍କୁ ସବୁକଥା ଜଣାଇଥିଲି । ସେ ଅତ୍ୟନ୍ତ ବ୍ୟଥିତ ହେବା ସଙ୍ଗେସଙ୍ଗେ ଧୈର୍ଯ୍ୟର ସହିତ ଅପେକ୍ଷା କରିବାକୁ ପରାମର୍ଶ ଦେଇଥିଲେ ।

୧୯୫୦ ମସିହାରେ ପ୍ରତିଷ୍ଠିତ ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘ ଦୀର୍ଘ କୋଡିଏ ବର୍ଷ କାଳ କମ୍ୟୁନିଷ୍ଟମାନଙ୍କ କବଳରେ ରହିଥିଲା । ଭାରତୀୟ କମ୍ୟୁନିଷ୍ଟ ପାର୍ଟି ସହାୟତାରେ ସେ ଦଳର ସଦସ୍ୟମାନେ ଏହି ସଂସ୍ଥାର କର୍ମକର୍ତ୍ତା ଭାବରେ ନିର୍ବାଚିତ ହେଉଥିଲେ ।

୧୯୭୦ ମସିହାରେ ଗୁଜୁରାଟର ଗାନ୍ଧୀନଗର ଠାରେ ଅନୁଷ୍ଠିତ ହୋଇଥିବା ମହାସଂଘ ସାଧାରଣ ଅଧିବେଶନରେ ବିକ୍ରମ ରାଓ ପ୍ରଥମଥର ପାଇଁ କମ୍ୟୁନିଷ୍ଟମାନଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ସେତେବେଳେ ସେ ସ୍ୱର ଖୁବ୍ କ୍ଷୀଣ ଥିଲା । ତାହା ଦାନା ଧରି ନଥିଲା । ହେଲେ ଶ୍ରୀ ରାଓ ତାଙ୍କ ଲଢ଼େଇରୁ ଓହରି ନଥିଲେ ।

ଦଶବର୍ଷର ଲଢ଼େଇ ପରେ ୧୯୮୦ ମସିହାରେ ମହାସଂଘର ନେତୃତ୍ୱ ପରିବର୍ତ୍ତନ ହେଲା । ମହାସଂଘ କମ୍ୟୁନିଷ୍ଟମାନଙ୍କ କବଳରୁ ମୁକ୍ତ ହେଲା ।

ଦେଶର ପ୍ରତିଷ୍ଠିତ ସାମ୍ବାଦିକ କେ. ରାମା ରାଓଙ୍କ ପୁଅ ବିକ୍ରମ ରାଓଙ୍କର ସୋସାଲିଷ୍ଟ ନେତାମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ଥିଲା । ଦେଶରେ ଜାରୀ କରାଯାଇଥିବା ଇମରଜେନ୍ସିକୁ ବିରୋଧ କରି ସେ ବହୁ ଯାତନାର ସମ୍ମୁଖୀନ ହୋଇଥିଲେ ।

ଜର୍ଜ ଫର୍ଣ୍ଣାଣ୍ଡିସଙ୍କ ସହିତ ତାଙ୍କୁ ବରୋଦା ଡିନାମାଇଟ କେସରେ ମିଥ୍ୟାରେ ଜଡ଼ିତ କରି ଜେଲରେ ଠୁଙ୍କି ଦିଆଯାଇଥିଲା । ତାଙ୍କ ଧର୍ମପତ୍ନୀ ରେଲବାଇର ଡାକ୍ତର ସୁଧା ରାଓ ଏବଂ ତାଙ୍କ ପରିବାରବର୍ଗଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରାଯାଇଥିଲା ।

ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘ ଦେଶର ଏକମାତ୍ର ସାମ୍ବାଦିକ ଅନୁଷ୍ଠାନ ହୋଇଥିବାରୁ ବିଭିନ୍ନ ରାଷ୍ଟ୍ର ଭ୍ରମଣରେ ଯିବାପାଇଁ ବରାବର ନିମନ୍ତ୍ରଣ ଆସୁଥିଲା । ମାତ୍ର କମ୍ୟୁନିଷ୍ଟମାନେ ଏକଚାଟିଆ ଭାବରେ ସେ ସବୁ ସୁଯୋଗକୁ ଉପଭୋଗ କରୁଥିଲେ ।

ଦିଲ୍ଲୀ, ବମ୍ବେ ଓ ଅନ୍ୟାନ୍ୟ ବଡ଼ ସହରରେ ରହୁଥିବା ସାମ୍ବାଦିକମାନଙ୍କ ବ୍ୟତୀତ ଅନ୍ୟମାନେ ତା'ର ଟେର ପାଉନଥିଲେ । ବିକ୍ରମ ରାଓ ମହାସଂଘର ସଭାପତି ହେବା ପରେ ସ୍ଥିତି ବଦଳି ଯାଇଥିଲା । ବିଦେଶ ରାଷ୍ଟ୍ର, ଭ୍ରମଣରେ ଯିବା ପାଇଁ ଆସୁଥିବା ଆମନ୍ତ୍ରଣ ସାର୍ବଜନୀନ ହେଲା । ସମସ୍ତେ ସବୁକଥା ଜାଣିବାର ସୁଯୋଗ ପାଇଲେ । ମହାସଂଘରେ ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରବର୍ତ୍ତନ ହେଲା ।

୧୯୮୪ ମସିହାରେ ଉତ୍ତରପ୍ରଦେଶର ଫଇଜାବାଦଠାରେ ମହାସଂଘର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଉତ୍କଳ ସାମ୍ବାଦିକ ସଂଘର ସାଧାରଣ ସଂପାଦକ ଭାବରେ ଅନେକ ସାଥୀଙ୍କୁ ସାଙ୍ଗରେ ନେଇ ସେ ଅଧିବେଶନକୁ ଯିବାପାଇଁ ମତେ ସୁଯୋଗ ମିଳିଥିଲା ।

ସେ ଅଧିବେଶନରେ ଓଡ଼ିଶାର ଯେଉଁ ପ୍ରମୁଖ ସାମ୍ବାଦିକମାନେ ଯୋଗ ଦେଇଥିଲେ, ସେମାନଙ୍କ ମଧ୍ୟରୁ ନଗେନ ବେଉରିଆ (ଭୁବନେଶ୍ୱର), ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ପୁରୀ), ମିହିର କୁମାର ଆଚାର୍ଯ୍ୟ (ବାଲେଶ୍ୱର), ବସନ୍ତ କୁମାର ମହାନ୍ତି (ସମ୍ବଲପୁର), ପ୍ରଶାନ୍ତ ଦାସ(ବ୍ରହ୍ମପୁର), ଶୁଭେନ୍ଦ୍ର ବର୍ମା(କଟକ) ପ୍ରମୁଖ ଆମ ପାଖରୁ ବିଦାୟନେଇ ଗଲେଣି ।

ଫଇଜାବାଦ ଅଧିବେଶନକୁ ଉତ୍ତର କୋରିଆ (ଡ଼ି.ପି.ଆର କୋରିଆ) ସମ୍ବାଦପତ୍ର ସଂସ୍ଥାର ମୁଖ୍ୟ କିମଜୀ ନାନ ଓ ତାଙ୍କର କେତେକ ସହଯୋଗୀ ସ୍ୱତନ୍ତ୍ର ନିମନ୍ତ୍ରିତ ସଦସ୍ୟ ଭାବରେ ଯୋଗଦେଇଥିଲେ ।

ଉତ୍ତର କୋରିଆ ଏକ କମ୍ୟୁନିଷ୍ଟ ରାଷ୍ଟ୍ର । ସେଠାରେ ସମ୍ବାଦପତ୍ରର ସ୍ୱାଧୀନତା ନାହିଁ । ସମ୍ବାଦପତ୍ର, ରେଡ଼ିଓ, ଟି.ଭି ଚ୍ୟାନେଲସବୁ ସରକାରୀ ନିୟନ୍ତ୍ରିତ । ଅଧିବେଶନ ସମୟରେ ଆମର ଏକ ପ୍ରତିନିଧିଦଳ ତାଙ୍କ ଦେଶକୁ ଯିବାପାଇଁ ଶ୍ରୀ ନାନ୍ ଆମନ୍ତ୍ରଣ କରିଥିଲେ ।

ଆମ ସଭାପତି, ବିକ୍ରମ ରାଓ ସେତେବେଳେ ଶ୍ରୀ ନାନ୍‌ଙ୍କ ଆମନ୍ତ୍ରଣକୁ ନୀତିଗତ ଭାବରେ ଗ୍ରହଣ କରିଥିଲେ । ମାତ୍ର ତାକୁ କାର୍ଯ୍ୟକାରୀ କରିବାକୁ ପ୍ରାୟ ବର୍ଷେ ସମୟ ଲାଗିଯାଇଥିଲା । ଏକ କମ୍ୟୁନିଷ୍ଟ ରାଷ୍ଟ୍ର ଭାବରେ ଉତ୍ତର କୋରିଆର ସେତେବେଳକାର ସୋଭିଏଟ୍ ଋଷ ଓ ଚୀନ୍ ସହିତ ଉତ୍ତମ ସମ୍ପର୍କ ଥିଲା । ସେ ଦୁଇ ରାଷ୍ଟ୍ରର ରାଜଧାନୀ ମସ୍କୋ ଓ ବେଜିଂକୁ ସେ ରାଷ୍ଟ୍ରର ବିମାନ ସଂଯୋଗ ରହିଥିଲା ।

ଭାରତୀୟ ପ୍ରତିନିଧି ଏ ଦୁଇ ସହର ମଧ୍ୟରୁ କୌଣସି ଗୋଟିଏ ସହରରେ ପହଞ୍ଚିଲେ ସେଠାରୁ ସେମାନଙ୍କୁ ନେବା, ଆଣିବା ସହ ଉତ୍ତର କୋରିଆର ରାଜଧାନୀ ପୋଙ୍ଗୟାଙ୍ଗ ସହରରେ ଅତିଥି କରିବା ପାଇଁ ଆମନ୍ତ୍ରଣ କରାଯାଇଥିଲା ।

କେବଳ ଏ ତିନୋଟି ସହର ସାମ୍ବାଦିକମାନଙ୍କ ଆକର୍ଷଣୀୟ ହୋଇନପାରେ ବୋଲି ଚିନ୍ତାକରି ଏହି ଗସ୍ତ ସହିତ ୟୁରୋପର ଆଉ ନଅଟି ରାଷ୍ଟ୍ର ଭ୍ରମଣରେ ଯିବାପାଇଁ ଶ୍ରୀ ରାଓ ଯୋଜନା କରିଥିଲେ ।

ସେ ସମୟରେ ବିଦେଶ ରାଷ୍ଟ୍ର ଭ୍ରମଣରେ ଯିବା ସହଜସାଧ୍ୟ ବ୍ୟାପାର ନଥିଲା । ସେତେବେଳେ ବିଦେଶ ରାଷ୍ଟ୍ର କହିଲେ ଲୋକେ ସାଧାରଣତଃ ଇଂଲଣ୍ଡକୁ ବୁଝୁଥିଲେ । ଯିଏ ଯେଉଁ ଦେଶକୁ ଯାଆନ୍ତୁ ନା କାହିଁକି, ଲୋକେ ତାଙ୍କୁ 'ବିଲାତ ଫେରନ୍ତା' ବୋଲି କହୁଥିଲେ ।

ବିଦେଶ ଯାଉଥିବା ଲୋକଙ୍କର ସମାଜରେ ସମ୍ମାନ ଓ ପ୍ରତିଷ୍ଠା ବୃଦ୍ଧି ପାଉଥିଲା । ସେମାନଙ୍କ ନାଁ ଆଗରେ 'ସାହେବ' ସମ୍ବୋଧନ ଯୋଡି ହୋଇଯାଉଥିଲା ।

ଆମ ରାଜ୍ୟର ବିଶିଷ୍ଟ ଶିକ୍ଷାବିତ୍ ଓ ବୈଜ୍ଞାନିକ ଡ଼କ୍ଟର ପ୍ରାଣକୃଷ୍ଣ ପରିଜା ବିଦେଶରେ ଅଧ୍ୟୟନ କରି ଫେରିବା ପରେ 'ପରିଜାସାହେବ' ନାଁରେ ଜଣାଶୁଣା ହୋଇଥିଲେ ।

ଜୀବନରେ ଥରେ ବିଦେଶ ଭ୍ରମଣରେ ଯିବା ପାଇଁ ମନରେ ଏକ ଆକାଂକ୍ଷା ପିଲାଦିନୁ ବସା ବାନ୍ଧିଥିଲା । ମାତ୍ର ମୋଭଳି ଏକ ମଧ୍ୟବିତ୍ତ ପରିବାରରେ ଜନ୍ମଲାଭ କରିଥିବା ବ୍ୟକ୍ତି ପକ୍ଷରେ ବ୍ୟୟବହୁଳ ବିଦେଶ ଯିବା ଯେ ସମ୍ଭବପର ନୁହେଁ, ସେ ସମ୍ପର୍କରେ ମଧ୍ୟ ମୁଁ ସଚେତନ ଥିଲି ।

ମାତ୍ର ଯାହା କୁହାଯାଏ, 'ଇଚ୍ଛା ଥିଲେ, ବାଟ ଆପେ ଆପେ ଫିଟିଥାଏ' ମୋ କ୍ଷେତ୍ରରେ ସେଇୟା ଘଟିଲା । ଅଚାନକ ଭାବରେ ବିଦେଶ ଯିବା ପାଇଁ ମୁଁ ମହାସଂଘ ସଭାପତି ଶ୍ରୀ ରାଓଙ୍କ ପାଖରୁ ଆମନ୍ତ୍ରଣ ପାଇଥିଲି ।

ମୁଁ ସେତେବେଳେ ଅମୃତ ବଜାର ପତ୍ରିକାର ପ୍ରତିନିଧି ଭାବରେ କଟକରେ ୱାଇ.ଏମ୍.ସି.ଏ. ନିକଟରେ ଗୋଟିଏ ସରକାରୀ କ୍ୱାଟରରେ ରହୁଥିଲି । ଜଣେ ସ୍ୱୀକୃତୀପ୍ରାପ୍ତ ସାମ୍ବାଦିକ ଭାବରେ କଟକ ସହରରେ ସରକାରୀ କ୍ୱାଟର ପାଇବାରେ ବୋଧହୁଏ ମୁଁ ପ୍ରଥମ ଏବଂ ଶେଷ ବ୍ୟକ୍ତି ।

୧୯୮୫ ମାର୍ଚ୍ଚ ମାସର ଘଟଣା । ପ୍ରବଳ ଗରମ ହେଉଥିବାରୁ ସନ୍ଧ୍ୟାବେଳେ ବାହାରେ ଚଉକି ପକାଇ ବସିଥିଲି । ହଠାତ୍ ଫୋନ ଘଣ୍ଟି ବାଜିଉଠିଲା । ଆଜିକାଲି ଭଳି ସେତେବେଳେ କର୍ଡଲେସ କିମ୍ବା ସେଲୁଲାର୍ ଫୋନର ପ୍ରଚଳନ ନଥିଲା ।

ଘରକୁ ଯାଇ ଫୋନ୍ ଧରିଲି । ଯାହା ଶୁଣିଲି, ପ୍ରଥମେ ନିଜକୁ ବିଶ୍ୱାସ କରିପାରନଥିଲି । ଏହା ସତ୍ୟ ନା ମୁଁ ସ୍ୱପ୍ନ ଦେଖୁଛି ? ଆରପାଖରୁ ବିକ୍ରମ ରାଓ କହୁଥିଲେ, "ବସନ୍ତ, ଭାରତୀୟ

ପେସାଦାର ସାମ୍ବାଦିକ ମହାସଂଘର ପ୍ରତିନିଧି ଦଳରେ ସାମିଲ ହୋଇ ବିଦେଶ ଗସ୍ତରେ ଯିବାପାଇଁ ତୁମେ ମନୋନୀତ ହୋଇଛ । ଶୀଘ୍ର ପ୍ରସ୍ତୁତ ହୋଇଯାଅ । ମୁଁ ସେଥିପାଇଁ କାଗଜପତ୍ର ସବୁ ତୁମ ପାଖକୁ ପଠାଉଛି । ତା'ଉପରେ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ କରି ସେଗୁଡ଼ିକ ଯଥାଶୀଘ୍ର ମୋ ପାଖକୁ ପଠାଇଦିଅ ।"

ମୁଁ କିଛି ଉତ୍ତର ଦେବା ପୂର୍ବରୁ ସେ କହି ଚାଲିଥିଲେ, "ବସନ୍ତ, ଆମ ହାତରେ ସମୟ କମ୍ । ଜୀବନରେ ସୁଯୋଗ ବାରମ୍ବାର ଆସେ ନାହିଁ । ଥରେ ସୁଯୋଗକୁ ହାତଛଡା କଲେ ଆଉଥରେ ସେ ସୁଯୋଗ ଆସିବ କି ନାହିଁ ତାହା ସନ୍ଦେହ । ସେଥିପାଇଁ କୌଣସି ନାହିଁ, ହଁ ଭିତରେ ନପଶି ପ୍ରସ୍ତୁତି କାର୍ଯ୍ୟରେ ଲାଗିପଡ଼ । ମୁଁ ତୁମ ଫୋନକୁ ଅପେକ୍ଷା କରିଛି ।"

ଶ୍ରୀ ରାଓଙ୍କ କଥା ଶୁଣିବା ପରେ ବିଦେଶ ଯିବାର ଯେଉଁ କାମନା ମନ ଭିତରେ ଦୀର୍ଘଦିନ ହେଲା ଚାପି ହୋଇଯାଇଥିଲା, ତାହା ପୁଣି ଉଦ୍ରେକ ହେଲା ।

ଏକାଥରକେ ୧୨ଟି ରାଷ୍ଟ୍ର ଯିବାର ମୋହକୁ ମୁଁ ହଠାତ୍ ଏଡ଼ାଇ ଦେଇପାରିନଥିଲି । ରାତିରେ ହାଇଦ୍ରାବାଦ୍ ଫୋନ୍ କରି ବିଦେଶ ଗସ୍ତରେ ଯିବାପାଇଁ ମୋର ସମ୍ମତି ବିକ୍ରମବାବୁଙ୍କୁ ଜଣାଇ ଦେଲି ।

ବିକ୍ରମ ରାଓ ଫୋନରେ କଥାବାର୍ତ୍ତା ବେଳେ ସୂଚନା ଦେଇଥିଲେ ଯେ, ବିମାନରେ ଯିବାଆସିବା, ହୋଟେଲ ଭଡ଼ା ଇତ୍ୟାଦି ପାଇଁ ଅନ୍ୟୁନ ହଜାରେ ଡଲାର ଆବଶ୍ୟକ ପଡ଼ିବ । ସେତେବେଳେ ଗୋଟିଏ ଡ଼ଲାରର ମୂଲ୍ୟ ଭାରତୀୟ ମୁଦ୍ରାରେ ବାର ଟଙ୍କା ଥିଲା ।

ତା' ଛଡା ପକେଟ୍ ଖର୍ଚ୍ଚ ଇତ୍ୟାଦି ପାଇଁ ଆଉ ଆଠ ଦଶ ହଜାର ଟଙ୍କା ଦରକାର ହୋଇପାରେ । ଦିଲ୍ଲୀରେ ଥିବା 'ସୀତା ଟ୍ରାଭେଲର୍ସ' ଏହି ବିଦେଶ ଗସ୍ତ ପାଇଁ ଆବଶ୍ୟକ ବନ୍ଦୋବସ୍ତ କରୁଥିଲେ ।

ଶ୍ରୀ ରାଓଙ୍କୁ ସମ୍ମତି ଜଣାଇଦେଲି । ମାତ୍ର କୋଡିଏ ହଜାର ଟଙ୍କା କୁଆଡୁ ଆସିବ ସେ କଥା ଚିନ୍ତା କରିପାରିଲି ନାହିଁ । ରାତିରେ ଭଲ ଭାବରେ ନିଦ ହେଲା ନାହିଁ ।

ସକାଳୁ ଗୋଟାଏ ବୁଦ୍ଧି ମୋ ମୁଣ୍ଡକୁ ଡୁକିଲା । କଟକ ଅର୍ବାନ କୋଅପରେଟିଭ ବ୍ୟାଙ୍କରେ ମୋର ଆକାଉଣ୍ଟ ଥିଲା । ବ୍ୟାଙ୍କର ପ୍ରତିଷ୍ଠାତା ଆଡଭୋକେଟ ଦେବେନ୍ଦ୍ର ମହାନ୍ତି ମତେ ଭଲ ଭାବରେ ଜାଣିଥିଲେ । ସେତେବେଳେ କଟକରେ ମୋର ନିଜର ଗୋଟିଏ ଘର ଥିଲା ।

ମୁଁ ସ୍ଥିର କଲି, ଘର ମରାମତି ପାଇଁ କିଛି ଟଙ୍କା ବ୍ୟାଙ୍କରୁ ଋଣ ଆକାରରେ ଆଣିବି । ସେଥିରେ କାମ ଚଳିଯିବ । ବିଦେଶରୁ ଫେରିଲେ ଋଣ ଶୁଝିବା କଥା ଚିନ୍ତା କରାଯିବ ।

ସକାଳେ ଯାଇ ଦେବେନ୍ଦ୍ର ବାବୁଙ୍କୁ ଦେଖାକଲି । ଏକାଥରେ ବାରଟି ରାଷ୍ଟ୍ର ଭ୍ରମଣରେ ଯିବାପାଇଁ ମତେ ସୁଯୋଗ ମିଳିଥିବା କଥା ଶୁଣି ସେ ଖୁସି ହୋଇଯାଇଥିଲେ । ସେ ବ୍ୟାଙ୍କ

ମ୍ୟାନେଜରଙ୍କ ସାଙ୍ଗରେ ଫୋନରେ କଥାବାର୍ତ୍ତା କରି କହିଲେ, "ଆମେ ଆପଣଙ୍କୁ ଦଶ ହଜାର ଟଙ୍କା ଋଣ ଆକାରରେ ଦେବୁ । ଅବଶିଷ୍ଟ ଟଙ୍କା ଆପଣ ଯୋଗାଡ଼ କରନ୍ତୁ ।"

ମୁଁ ଅର୍ବାନ ବ୍ୟାଙ୍କକୁ ଯାଇ ଆବଶ୍ୟକ କାଗଜପତ୍ର ସହିତ ଦରଖାସ୍ତଟିଏ ଦେଲି । ଘର ମରାମତି ନାଁରେ ଋଣ ନେଇ ବିଦେଶ ଗସ୍ତରେ ଯାଉଛି ବୋଲି ସେମାନଙ୍କୁ ଖୋଲାଖୋଲି ଭାବରେ କହିଥିଲି । ସେମାନେ ସହାନୁଭୂତି ପ୍ରକାଶ କରି ସାଙ୍ଗେ ସାଙ୍ଗେ କାଗଜପତ୍ର ପ୍ରୋସେସ କରିଦେଲେ । ଦୁଇଦିନ ମଧ୍ୟରେ ଋଣ ଟଙ୍କା ମିଳିଗଲା । ମୋ ମନରେ ସାହସ ହୋଇଗଲା । ଭାବିଲି, ବୋଧହୁଏ ଈଶ୍ୱର, ମୁଁ ବିଦେଶ ଯିବାକୁ ଚାହୁଁଛନ୍ତି ।

ଆଉ ଦଶ ହଜାର ଟଙ୍କା କୁଆଡୁ ଯୋଗାଡ଼ ହେବ ସେ କଥା ଚିନ୍ତା କଲାବେଳକୁ ଜଣେ ପ୍ରଶାସକ ବନ୍ଧୁ କହିଲେ, "ଆପଣଙ୍କୁ ପରା ମୁଖ୍ୟମନ୍ତ୍ରୀ ପିଲାଦିନୁ ଜାଣନ୍ତି । ତାଙ୍କୁ ବିଦେଶ ଯିବା କଥା କହୁନାହାନ୍ତି ।"

ସେ ଦିନ ଥିଲା ୧୯୮୫ ମସିହା ମାର୍ଚ୍ଚ ମାସ ୧୫ ତାରିଖ । ସେ ଦିନ ବିଧାନସଭା ନିର୍ବାଚନର ଭୋଟ ଗଣାହେଉଥିଲା । ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ତାଙ୍କ ସରକାରୀ ବାସଭବନରେ ଏକୁଟିଆ ଥିଲେ । ସବୁ ରାଜନେତାମାନେ ନିଜ ନିଜ ନିର୍ବାଚନମଣ୍ଡଳୀରେ ବ୍ୟସ୍ତ ଥିଲେ । ମୁଁ ଯାଇ ତାଙ୍କୁ ଦେଖାକଲି । ମତେ ଦେଖି ଜାନକୀବାବୁ ପଚାରିଲେ, "କୁଆଡ଼େ ଆସିଲୁ ? ଭୋଟ ଖବର କ'ଣ ?"

ମୁଁ ଆଗପଛ ନବିଚାରି କହିଦେଲି, ଆରଥରକ କଂଗ୍ରେସ ଯେତିକି ସିଟ୍ ପାଇଥିଲା, ଏଥର ସେତିକି ସିଟ୍ ନିଶ୍ଚୟ ପାଇବ । ସେ ମତେ ପ୍ରଶ୍ନ କରିଥିଲେ, "କ'ଣ ଭୁବନେଶ୍ୱରରେ ବସି ତୁ ସବୁକଥା ଜାଣିଗଲୁ ?"

ସାହସ ସଞ୍ଚୟ କରି କହିଲି, "ମୁଁ ଆଠଦିନ ହେଲା ବିଭିନ୍ନ ଅଞ୍ଚଳ ବୁଲୁଥିଲି, ଚାରିଆଡ଼େ 'ହାତ'ର ହାୱା । କଂଗ୍ରେସ ଆଉଥରେ ଆପଣଙ୍କ ନେତୃତ୍ୱରେ ସରକାର ଗଠନ କରିବାରେ କିଛି ଅସୁବିଧା ନାହିଁ ।"

ମୁଁ ଲକ୍ଷ୍ୟ କରିଥିଲି ଜାନକୀବାବୁ ବୋଧହୁଏ ମୋ ପାଖରୁ ସେହିପରି ଉତ୍ତର ଚାହୁଁଥିଲେ । ସେ ଖୁସି ହୋଇ ପଚାରିଲେ, ହଉ ହେଲା । କୁଆଡ଼େ ଆସିଛୁ କହ ।

ମୁଁ ବିକ୍ରମ ରାଓଙ୍କ ପାଖରୁ ପାଇଥିବା ବିଦେଶ ଗସ୍ତ ସଂକ୍ରାନ୍ତୀୟ ପତ୍ରଟି ତାଙ୍କୁ ବଢ଼ାଇଦେଲି । ଜାନକୀବାବୁ ତାକୁ ପଢ଼ି କହିଥିଲେ, "ତୁ ଓଡ଼ିଶା ଦେଖି ସାରିଲୁଣି ? ଆଗ ଓଡ଼ିଶାକୁ ଭଲ ଭାବରେ ଦେଖ୍ । ତା'ପରେ ଭାରତବର୍ଷକୁ ଦେଖିବୁ । ଶେଷରେ ବିଦେଶଯିବା କଥା ଚିନ୍ତା କରିବୁ ।"

ମୁଁ କହିଲି, "ଠିକ୍ କଥା ଯେ, ଆଉଥରେ କ'ଣ ମତେ ଏ ସୁଯୋଗ ମିଳିବ ? ଆପଣ ସାହାଯ୍ୟ କଲେ ମୋ କାମ ହୋଇଯାନ୍ତା ।"

ସେ କିଛି ସମୟ ଚିନ୍ତାକରି ଘର ଭିତରକୁ ଗଲେ । ଫେରିଆସି ଗଞ୍ଜି ପକେଟରୁ ପାଞ୍ଚ ହଜାର ଟଙ୍କା ମତେ ଧରେଇ ଦେଇ କହିଲେ, "ନିର୍ବାଚନରେ ସବୁ ଖର୍ଚ୍ଚ ହୋଇଯାଇଛି । ଏତିକି ଥିଲା, କାମ ଚଳେଇଦେ ।"

ସେ ମନ୍ତ୍ରିମଣ୍ଡଳରେ ବସନ୍ତ କୁମାର ବିଶ୍ୱାଳ ଜଣେ ହେଭିଓ୍ୱେଟ୍ ମନ୍ତ୍ରୀ ଥିଲେ । ଜାନକୀବାବୁଙ୍କ ସହିତ ତାଙ୍କର ଦୀର୍ଘଦିନ୍ରୁ ବନ୍ଧୁତା ଥିଲା । ମୁଖ୍ୟମନ୍ତ୍ରୀଙ୍କ କ୍ୱାଟର ନିକଟରେ ସେ କ୍ୱାଟର ନେଇଥିଲେ । ଦି କ୍ୱାଟର ମଝିରେ ଯିବାଆସିବା ପାଇଁ ଛୋଟିଆ ଗେଟ୍‌ଟିଏ ଥିଲା । ପ୍ରତିଦିନ ସେମାନଙ୍କ ମଧ୍ୟରେ ଦେଖାସାକ୍ଷାତ ହେଉଥିଲା । କିନ୍ତୁ କେଜାଣି କାହିଁକି ସେ ଦୁଇଜଣଙ୍କ ଭିତରେ ସମ୍ପର୍କ ତିକ୍ତ ହୋଇଯାଇଥିଲା । ୧୯୮୫ ମସିହା ବିଧାନସଭା ନିର୍ବାଚନରେ ଲଢ଼ିବା ପାଇଁ ବସନ୍ତ ବାବୁଙ୍କୁ କଂଗ୍ରେସ ଟିକେଟ୍ ମିଳିନଥିଲା ।

ମୁଁ ମୁଖ୍ୟମନ୍ତ୍ରୀଙ୍କ କ୍ୱାଟରରୁ ବାହାରିଲା ବେଳେ ଶ୍ରୀ ବିଶ୍ୱାଳ ଗାଡ଼ିରେ ତାଙ୍କ କ୍ୱାଟର ଭିତରକୁ ପଶୁଥିଲେ । ମୁଁ ବିଦେଶ ଯାଉଛି ବୋଲି ସେ କୌଣସି ସୂତ୍ରରୁ ଖବର ପାଇସାରିଥିଲେ ।

ମତେ ଦେଖି ଗାଡ଼ି ଅଟକାଇ ପଚାରିଲେ, "କ'ଣ ଆପଣ ପରା ଫରେନ୍ ଯାଉଛନ୍ତି ? କାହିଁ, ଆମକୁ କିଛି କହିନାହାନ୍ତି ? ହଁ, ଆମକୁ କାହିଁ କହିବେ ? ଆପଣ ତ ମୁଖ୍ୟମନ୍ତ୍ରୀଙ୍କ ପାଖ ଲୋକ ।"

ମୁଁ ତାଙ୍କୁ କହିଲି, "ଆପଣ ସବୁକଥା ଜାଣନ୍ତି । ପ୍ରୋଟୋକୋଲ ଦୃଷ୍ଟିରୁ ମୁଁ ପ୍ରଥମେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯାଇଥିଲି । ତା'ପରେ ଆପଣଙ୍କ ପାଖକୁ ଯାଇଥାଆନ୍ତି ।" ସେ ଟିକେ ହସିଲେ, "ହଉ ଯାଆନ୍ତୁ" ବୋଲି କହି କ୍ୱାଟର ଭିତରକୁ ଚାଲିଗଲେ । ମୁଁ ଘଣ୍ଟାଏ ପରେ ଘରକୁ ଫେରି ଆସି ଦେଖିଲାବେଳକୁ ପଚାଶ ଖଣ୍ଡ ଶହେଟଙ୍କିଆ ନୋଟ ଥାଇ ମୋ ନାଁ ଲେଖାଥିବା ଗୋଟିଏ ଲଫାପା ଆମ ଘରେ ଜଣେ ବ୍ୟକ୍ତି ଦେଇ ଯାଇଥିଲେ । ପରେ ଜାଣିଲି ସେ ଲଫାପାଟି ଶ୍ରୀ ବିଶ୍ୱାଳ ପଠାଇଥିଲେ ।

ଯାହା କୁହାଯାଏ, କୌଣସି ମହତ୍ କାମ ପାଇଁ ଅର୍ଥ ପ୍ରତିବନ୍ଧକ ହୁଏ ନାହିଁ, ମୋ କ୍ଷେତ୍ରରେ ତାହା ହିଁ ହୋଇଥିଲା । ମୋର ଗରମ ସୁଟ୍ ନଥିଲା । ସୁଟ୍ କନା କିଣିବା ଠାରୁ ଆରମ୍ଭ କରି ବିଦେଶ ଯିବାପାଇଁ ଆବଶ୍ୟକ ପଡୁଥିବା ଚକଲଗା ଭିଆଇପି ସୁଟ୍‌କେଶ କିଣିବା ଇତ୍ୟାଦି ସବୁ କାମରେ ମୁଁ ବନ୍ଧୁମାନଙ୍କ ପାଖରୁ ସବୁପ୍ରକାର ସାହାଯ୍ୟ ପାଇଥିଲି ।

ସେତେବେଳେ କଟକର ହିନ୍ଦୁସ୍ଥାନ ଟେଲର ସୁଟ୍ ତିଆରିରେ ଖୁବ୍ ନାଁ କରିଥିଲେ । ତା'ର ମାଲିକ ଖୁବ୍ ମିଜାଜି ଲୋକ । ସୁଟ୍ ତିଆରି କରିବାକୁ ଅନ୍ୟୁନ ଦୁଇମାସ ସମୟ ନେଉଥିଲେ । ଚାରିଦିନ ଭିତରେ ସୁଟ୍ ତିଆରି କରି ଦେବା କଥା ଶୁଣି ସେ ପ୍ରଥମେ ହସିଲେ ।

କିନ୍ତୁ ପରେ ଯେତେବେଳେ ସବୁ ଘଟଣା ଶୁଣିଲେ, କେଜାଣି କାହିଁକି ସୁଟ୍ ଅର୍ଡର ରଖିଲେ । ଚାରିଦିନ ମଧ୍ୟରେ ମୁଁ ସୁଟ୍ ପାଇଯାଇଥିଲି । ଏସବୁ କାମ ସପନ ଭଳି ଲାଗୁଥିଲା ।

ମନରେ ଅହେତୁକ ଆଶଙ୍କା ସୃଷ୍ଟି ହେଉଥିଲା । ମାତ୍ର ବିଦେଶ ଭ୍ରମଣରେ ଯିବାର ମୋହ ସେସବୁକୁ ଦବାଇ ଦେଉଥିଲା ।

ମୋର ଧାରଣା ଥିଲା, ଟଙ୍କା ଯୋଗାଡ଼, ପୋଷାକ ତିଆରି ହୋଇଗଲେ ବିଦେଶ ରାଷ୍ଟ୍ରକୁ ଯିବାପାଇଁ ବୋଧହୁଏ ଆଉ କିଛି ଅସୁବିଧା ହେବନାହିଁ । ମାତ୍ର ମୋର ସେ ଧାରଣା ଭୁଲ୍ ବୋଲି ପ୍ରମାଣିତ ହୋଇଥିଲା ।

କାରଣ ଯେଉଁସବୁ ରାଷ୍ଟ୍ରକୁ ଯିବା କଥା, ସେ ସବୁ ରାଷ୍ଟ୍ରର ଭିସା ଫର୍ମ ପୂରଣ କରିବା ଏବଂ ପାସପୋର୍ଟ ହାସଲ କରିବା ଯେ କେତେ କଷ୍ଟସାଧ୍ୟ ବ୍ୟାପାର ସେ କଥା ମୁଁ ଅନୁମାନ କରିପାରି ନଥିଲି ।

ଯେତେବେଳେ ଶ୍ରୀ ରାଓ ପଠାଇଥିବା ବାରଟି ରାଷ୍ଟ୍ରର ଭିସା ଫର୍ମ ମୋ ପାଖରେ ଆସି ପହଞ୍ଚିଲା, ମୁଁ ସେସବୁ ଦେଖି ବିଦେଶ ଯିବାର ଆଶା ଛାଡ଼ି ଦେଇଥିଲି ।

ପାସପୋର୍ଟ ପାଇବା ପାଇଁ ଯେଉଁ ବ୍ୟବସ୍ଥା ଥିଲା, ସେଥିରେ ଅନ୍ୟୁନ ଦୁଇମାସ ପୂର୍ବରୁ ପାସପୋର୍ଟ ହାସଲ କରିବା ସମ୍ଭବପର ନଥିଲା ।

ଜିଲ୍ଲା ଏସ୍.ପି ଏବଂ ସ୍ପେଶାଲବ୍ରାଞ୍ଚ ଏସ୍.ପିଙ୍କ ଅଫିସରୁ ଆବେଦନକାରୀଙ୍କ ସମ୍ପର୍କରେ ତଦନ୍ତ ରିପୋର୍ଟ ନପହଞ୍ଚିବା ପର୍ଯ୍ୟନ୍ତ ପାସ୍‌ପୋର୍ଟ ଇସ୍ୟୁ କରିବା ସମ୍ଭବ ନୁହେଁ ବୋଲି ଆଞ୍ଚଳିକ ପାସପୋର୍ଟ ଅଫିସରଙ୍କ ପାଖରୁ ଶୁଣିଲା ପରେ ମୁଁ ହତୋତ୍ସାହ ହୋଇଯାଇଥିଲି ।

ସେତେବେଳେ ପୁଲିସ୍ ଡ଼ି.ଜି ଥିଲେ ପ୍ରଫୁଲ୍ଲ ଚନ୍ଦ୍ର ରଥ । ଚେହେରା ଯେମିତି, କାମ ବି ସେମିତି । ଏକ ଅଭିଜାତ୍ୟ ବଂଶର ସନ୍ତାନ ଭାବରେ ପ୍ରଫୁଲ୍ଲବାବୁ ଅନ୍ୟମାନଙ୍କ ଠାରୁ ବାରି ହୋଇ ପଡୁଥିଲେ । ତାଙ୍କର ବଡ଼ ନିଶ ତାଙ୍କୁ ଖୁବ୍ ମାନୁଥିଲା । ତାଙ୍କର ତଳିଆ ଅଫିସରମାନେ ତାଙ୍କ ସମ୍ପର୍କରେ ଠାରରେ 'ମୁଷ୍ଟାସ' ବୋଲି ନିଜ ଭିତରେ କଥାବାର୍ତ୍ତା ହେଉଥିଲେ ।

ତାଙ୍କ ସହିତ ମୋର ଖୁବ୍ ସଦ୍ଭାବ ଥିଲା । ମୁଁ ତାଙ୍କୁ ମୋ ମନର ଆବେଗ ଜଣାଇଲି । ସେ ସାନ୍ତ୍ୱନା ଦେଇ କହିଥିଲେ, "ଓହୋଃ, ଡୋଣ୍ଟ ବଦର, ଦିସ୍ ୱିଲ୍ ବି ଡନ୍ ଇନ୍‌ଟାଇମ୍ । ଯଦି ଅନ୍ୟମାନେ ଆପଣଙ୍କୁ ବିଦେଶ ଯିବାପାଇଁ ସାହାଯ୍ୟ କରୁଛନ୍ତି, ତେବେ ପୁଲିସ୍ ସଂସ୍ଥା କାହିଁକି ପଛେଇବ ?"

ପ୍ରଫୁଲ୍ଲବାବୁଙ୍କର ପୁଲିସ ସଂସ୍ଥାରେ ପ୍ରତିଷ୍ଠା ଥିଲା । ଲୋକେ ତାଙ୍କୁ ଯେତିକି ଭୟ କରୁଥିଲେ, ସେତିକି ଶ୍ରଦ୍ଧା ମଧ୍ୟ କରୁଥିଲେ । ତଳିଆ ଅଫିସରମାନଙ୍କ ପାଇଁ ସେ ଆଦର୍ଶ ଥିଲେ ।

ପ୍ରଫୁଲ୍ଲବାବୁ ତାଙ୍କ କଥା ରକ୍ଷା କରି ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ମୋ ସମ୍ପର୍କରେ ପାସପୋର୍ଟ ଅଫିସ୍‌କୁ ରିପୋର୍ଟ ପଠାଇବାର ବନ୍ଦୋବସ୍ତ କରିଦେଲେ ।

ସେ ରିପୋର୍ଟ ଦେଖି ପାସପୋର୍ଟ ଅଫିସର ବିଶ୍ୱାସ କରିପାରିନଥିଲେ । ଏହା କିପରି ସମ୍ଭବ ହେଲା ? ଯେଉଁ ପୁଲିସ ଭେରିଫିକେସନ୍ ରିପୋର୍ଟ ଆସିବାକୁ ମାସ ମାସ ସମୟ ଲାଗୁଥିଲା, ତାହା ଏତେ ଶୀଘ୍ର କିପରି ଆସିଗଲା ? ତା'ପରେ ମୁଁ ପାସ୍‌ପୋର୍ଟ ପାଇଥିଲି ।

ପାସପୋର୍ଟ ମିଳିଲା ପରେ ମନରେ ନୂତନ ଉତ୍ସାହ ସୃଷ୍ଟି ହେଲା । ଠିକ୍ ସମୟରେ ଭିସାଫର୍ମ ପୂରଣ କରି ଦିଲ୍ଲୀରେ ଥିବା ମହାସଂଘ ଅଫିସକୁ ପଠାଇଦେଲି ।

ଏସବୁ ପରେ ସବୁ କାମ ସରିଗଲା ବୋଲି ଭାବିଥିଲି । କିନ୍ତୁ ପ୍ରକୃତରେ କାମ ସରି ନଥିଲା । ବିଦେଶଯିବା ପାଇଁ ରିଜର୍ଭ ବ୍ୟାଙ୍କ ପକ୍ଷରୁ ଆମକୁ ହଜାରେ ଡ଼ଲାର ଦେବା ପାଇଁ ଅନୁମତି ମିଳିଥିଲା ।

ଆଜିକାଲି ଭଳି ସେ ସମୟରେ ଦୋକାନ, ବଜାର କିମ୍ବା ହୋଟେଲରେ ଡଲାର ମିଳୁନଥିଲା । ଭୁବନେଶ୍ୱରରେ ଥିବା ରିଜର୍ଭବ୍ୟାଙ୍କରୁ ଡଲାର ସଂଗ୍ରହ ପାଇଁ ମତେ ପରାମର୍ଶ ଦିଆଯାଇଥିଲା ।

ମୁଁ ରିଜର୍ଭ ବ୍ୟାଙ୍କର ସଂପୃକ୍ତ ଅଧିକାରୀଙ୍କୁ ଦେଖାକରିଥିଲି । କୋଉ ପରିସ୍ଥିତିରେ ଟଙ୍କା ଯୋଗାଡ଼ ଓ ପାସପୋର୍ଟ ହାସଲ ହେଲା ସବୁକଥା ତାଙ୍କୁ ଜଣାଇଥିଲି । ସେ ସହାନୁଭୂତିଶୀଳ ହୋଇ ଅଗ୍ରାଧିକାର ଭିତ୍ତିରେ ଡଲାର ଦେବା ପାଇଁ ଉଦ୍ୟମ କରିଥିଲେ । ଦୁଇଦିନ ଭିତରେ ହଜାରେ ଡଲାର ମିଳିଯାଇଥିଲା ।

ଅପ୍ରେଲ ମାସ ଦଶ ତାରିଖରେ ଆମର ଦିଲ୍ଲୀରୁ ମସ୍କୋ ଯାଇ ସେଠାରୁ ଉତ୍ତର କୋରିଆ ରାଜଧାନୀ ପୋଙ୍ଗୟାଙ୍ଗ ଯିବାପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ମୁଁ ଆଠ ତାରିଖରେ ଦିଲ୍ଲୀରେ ପହଞ୍ଚିଥିଲି ।

ଅପ୍ରେଲ ମାସର ଗ୍ରୀଷ୍ମପ୍ରବାହରେ ଦିଲ୍ଲୀ ଏକପ୍ରକାର ଉତ୍ତପ୍ତ ତାୱା ପାଲଟି ଯାଇଥିଲା । ବିଦେଶ ରାଷ୍ଟ୍ରକୁ ନିଜ ନିଜ ରାଜ୍ୟର ସ୍ୱତନ୍ତ୍ର ଉପଢ଼ୌକନ କିଛି ସାଙ୍ଗରେ ନେବା ପାଇଁ ଆମକୁ କୁହାଯାଇଥିଲା ।

ବ୍ୟସ୍ତତା ଭିତରେ ମୁଁ ଭୁବନେଶ୍ୱରରୁ କିଛି କିଣି ପାରିନଥିଲି । ଦିଲ୍ଲୀରେ ମୋ ହାତରେ ଦିନେ ସମୟ ଥିଲା । ମୁଁ ବାବା ଖଡ଼ଗସିଂ ମାର୍ଗରେ ଥିବା ଓଡ଼ିଶା ଏମ୍ପୋରିୟମ ଷ୍ଟଲରୁ କିଛି ସମ୍ବଲପୁରୀ ରୁମାଲ ଓ ରୂପା ତାରକସୀ ମୁଦି, ଟାଇକ୍ଲିପ ସଂଗ୍ରହ କରିଥିଲି । ସେଥିସହିତ କନ୍ନଟପ୍ଲେସରୁ ଷ୍ଟୋନଓ୍ୱାସର ଜିନ୍ ପ୍ୟାଣ୍ଟ ଓ ଉଲେନ ସ୍ଲାକ୍ସ ମଧ୍ୟ କିଣିଥିଲି ।

ମୁଁ ପିଲାଦିନୁ ଖଦଡ଼ ଲୁଗା ପିନ୍ଧୁଥିଲି । ଏପରିକି ଗଞ୍ଜି, ଅଣ୍ଡରୱେର ଏବଂ ଗାମୁଛା ମଧ୍ୟ ଖଦୀର ଥିଲା । ମୋର ଗୋଟିଏ କାଣ୍ଡିଆ ସୁଟ୍ ଥିଲା ।

କଲେଜରେ ଆମ ତଳ କ୍ଲାସରେ ପଢୁଥିବା ଏବଂ ପରେ ଆଇ.ଏ.ଏସ. ହୋଇଥିବା ମଦନ ମୋହନ ମହାନ୍ତିଙ୍କ ପାଖରୁ ତାଙ୍କ ଓଭର କୋଟ୍‌ଟି ମାଗି ନେଇଥିଲି ।

ମସ୍କୋରେ ତାପମାତ୍ରା ଶୂନରୁ ମାଇନସ ପାଞ୍ଚ ଡିଗ୍ରୀ ସେଲସିଅସ ପର୍ଯ୍ୟନ୍ତ ରହୁଥିବାରୁ ଫୁଲ୍ ସ୍ୱେଟର ସହିତ ଉଲେନ ସୁଟ ପିନ୍ଧି ଯିବାକୁ ବିକ୍ରମବାବୁ ଆମକୁ ବାରମ୍ବାର ତାଗିଦ କରିଥିଲେ ।

ଅପ୍ରେଲ ମାସର ତାତିରେ ଖରାବେଳେ ଉଲେନ ସୁଟ୍ ପିନ୍ଧିଯିବା ଯେ କେତେ କଷ୍ଟକର ବ୍ୟାପାର ସେ କଥା ନ କହିବା ଭଲ । ତଥାପି ଆଉ କିଛି ଚାରା ନଥିଲା ।

ଆମେ ଠିକ୍ ସମୟରେ ବିମାନବନ୍ଦରରେ ପହଞ୍ଚିଥିଲୁ । ଯାଞ୍ଚ ଇତ୍ୟାଦି ଶେଷ ହେବା ପରେ ଏୟାର ଇଣ୍ଡିଆର ୭୦୭ ବୋଇଂ ବିମାନ 'ଧଉଳଗିରି' ଭାରତୀୟ ସମୟ ଅପରାହ୍ନ ଗୋଟାଏ ପଇଁତିରିଶ ମିନିଟ୍‌ରେ ପାଲାମ ବିମାନବନ୍ଦର ଛାଡିଥିଲା ।

ବିମାନଟି ଖୁବ୍ ପ୍ରଶସ୍ତ । ସେଥିରେ ଯାତ୍ରୀ ଥିଲେ ମାତ୍ର ପଇଁତିରିଶ ଜଣ । ଆମ ଚବିଶ ଜଣଙ୍କ ସାଙ୍ଗରେ ଥିଲେ ଭାରତ ସରକାରଙ୍କର କେତେଜଣ ଉଚ୍ଚପଦସ୍ଥ ଅଫିସର । ସେମାନଙ୍କ ଗହଣରେ ଥିଲେ ପ୍ରଥମ ମହାକାଶଚାରୀ ରାକେଶ ଶର୍ମା । ବିମାନ ଭିତରେ ତାଙ୍କ ସହିତ ଆଳାପ କରିବାର ଅପୂର୍ବ ସୁଯୋଗ ଆମକୁ ମିଳିଥିଲା ।

ଭାରତୀୟ ସମୟ ଓ ମସ୍କୋ ସମୟ ମଧ୍ୟରେ ଅନ୍ୟୁନ ଛଅଘଣ୍ଟାର ବ୍ୟବଧାନ ଥିବାରୁ ରାତି ନଅଟା ବେଳେ ବି ବାହାରେ ଖରା ପଡ଼ିଥିଲା । ରାତି ଏଗାରଟା ପାଞ୍ଚ ମିନିଟ୍‌ରେ ଧଉଳଗିରି ମସ୍କୋ ଆନ୍ତର୍ଜାତିକ ବିମାନ ବନ୍ଦରରେ ଅବତରଣ କରିଥିଲା ।

ଆମର ବିମାନ ଭିତରେ ରାତ୍ରିଭୋଜନ ଶେଷ ହୋଇଥିଲା । କିନ୍ତୁ ମସ୍କୋ ସମୟ ଅନୁସାରେ ସେତେବେଳକୁ ସମୟ ଅପରାହ୍ନ ଚାରିଟା ବାଜିଥିଲା ।

ସେ ସମୟରେ ସୋଭିଏଟ ଋଷରେ ଅଣକମ୍ୟୁନିଷ୍ଟମାନଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖାଯାଉଥିଲା । ଆମେ ସବୁ କମ୍ୟୁନିଷ୍ଟ ମତବାଦର ସାମ୍ବାଦିକ ନୁହଁ ବୋଲି ଦିଲ୍ଲୀରୁ କମ୍ୟୁନିଷ୍ଟ ବନ୍ଧୁମାନେ ଆମେ ମସ୍କୋରେ ପହଞ୍ଚିବା ପୂର୍ବରୁ ଗୋପନରେ ଖବର ପଠାଇ ଦେଇଥିଲେ ।

ସେମାନଙ୍କର ସେପରି କାର୍ଯ୍ୟ ଆମ ପାଇଁ ସମସ୍ୟା ସୃଷ୍ଟି କରିଥିଲା । ଆମ ସାଙ୍ଗରେ ଥିବା କେରଳର ବନ୍ଧୁମାନେ ଉପଢ଼ୌକନ ଆକାରରେ ପିତ୍ତଳର କିଛି ଖେଳନା ନେଇଥିଲେ । ବ୍ୟାଗେଜ ଚେକିଂ ବେଳେ ବିମାନ ବନ୍ଦରରେ ଥିବା କର୍ମଚାରୀମାନେ ସେସବୁ ସୁନା ବୋଲି ବିଚାରି ବ୍ୟାଗେଜ ଛାଡି ନଥିଲେ । ସୌଭାଗ୍ୟକ୍ରମ ଇଂରାଜୀଭାଷା ଜାଣିଥିବା ଜଣେ ଅଫିସର ସେଠାରେ ପହଞ୍ଚିବା ପରେ ପରିସ୍ଥିତି ସୁଧୁରିଥିଲା ।

ଆମ ସାଙ୍ଗରେ ଥିବା ନିରାମିଷ ଆହାରୀମାନେ ସାଙ୍ଗରେ ସୁସ୍ୱାଦୁ ଆଚାର ଓ କିଛି ଜିରାଲଙ୍କା ଗୁଣ୍ଡ ନେଇଥିଲେ । ଋଷବାସୀ ସେସବୁ ପଦାର୍ଥର ବ୍ୟବହାର ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ ଥିବାରୁ ପୁଣି ଭୁଲ ବୁଝାମଣା ସୃଷ୍ଟି ହୋଇଥିଲା । ଆଚାର ଓ ମସଲା ଯେ ଆମର ପ୍ରିୟଖାଦ୍ୟ, ସେକଥା ସେମାନେ ବୁଝିବା ଅବସ୍ଥାରେ ନଥିଲେ । ଶେଷରେ ଆମେ ସେମାନଙ୍କ

ଆଗରେ ଆଚାର ଖାଇବା ପରେ ସେମାନେ ବୁଝିଥିଲେ । ତା'ପରେ ବିମାନ ବନ୍ଦରରୁ ଆମକୁ ମୁକ୍ତି ମିଳିଥିଲା । କିନ୍ତୁ ସନ୍ଦେହରେ ସେମାନେ ଆମ ସଭାପତି ବିକ୍ରମ ରାଓଙ୍କ ଆଟାଚଟି ରଖି ଦେଇଥିଲେ । ଆମେ ପୋଙ୍ଗୟାଙ୍ଗରେ ପହଞ୍ଚିଲା ପରେ ସେ କଥା ଜଣାପଡିଥିଲା ।

ଭାରତୀୟ ସମୟ ରାତି ବାରଟା ପନ୍ଦର ମିନିଟ୍‌ରେ ଆମେ ଯାଇ 'ହୋଟେଲ ୟୁକ୍ରେନା'ରେ ପହଞ୍ଚିଥିଲୁ । ହୋଟେଲର ସତେଇଶି ମହଲାରେ ଆମ ପାଇଁ ରହିବାର ବ୍ୟବସ୍ଥା ହୋଇଥିଲା । ରୁମ୍‌ରେ ପହଞ୍ଚିଲା ପରେ ଶୀଘ୍ର ଜିନିଷପତ୍ର ରଖି ଦେଇ ତୁଷାରପାତ ଦେଖି ଯିବା ପାଇଁ ଖବର ଆସିଲା । ଶରୀର ଥକି ଯାଇଥିଲେ ବି ଯିବାକୁ ପଡ଼ିଥିଲା ।

ତୁଷାରପାତର ଅନୁଭୂତି ଥିଲା ଅତ୍ୟନ୍ତ ରୋମାଞ୍ଚକର । ତଳେ ବରଫର ଆସ୍ତରଣ । ଉପରୁ ଶିମିଳିତୁଳା ଭଳି ବରଫ ପଡୁଥିଲା । କିନ୍ତୁ ସେପରି ସ୍ଥିତିକୁ ଅଧିକ ସମୟ ସହ୍ୟ କରିବା ଅବସ୍ଥାରେ ଆମେ ନଥିଲୁ । ଯେତିକି ସମୟ ଆମେ ସେ ପରିବେଶରେ ବୁଲିଥିଲୁ, ତାହା ଜୀବନରେ ଅଭୁଲା ହୋଇ ରହିଯାଇଛି ।

ଆମେ ହୋଟେଲ ୟୁକ୍ରେନାକୁ ଫେରି଼ଲାବେଳକୁ ଭାରତୀୟ ସମୟ ରାତି ତିନିଟା ବାଜିଯାଇଥିଲା । ପେଟରେ ପ୍ରବଳ ଭୋକ । ମାତ୍ର କେହି ପାଟି ଫିଟାଇ କିଛି କହିପାରୁନଥିଲେ । ନିଜ ନିଜ ଭିତରେ ଫୁସ୍‌ଫାସ ହେଉଥିଲେ ।

ଖୋଜାଖୋଜି ପରେ ଦୁଇ, ଚାରି ପ୍ୟାକେଟ୍ ବିସ୍କୁଟ ଓ କିଛି ମିକ୍ସଚର ମିଳିଥିଲା । ସେଇଥିରେ କାମ ଚଳିଗଲା ।

ମସ୍କୋରେ ଆମର ଗୋଟିଏ ଦିନ ରହିବାର କାର୍ଯ୍ୟକ୍ରମ ଥିଲା । ହାତରେ କମ୍ ସମୟ । ମାତ୍ର ଦେଖିବାକୁ ଥିଲା ବହୁ ଦର୍ଶନୀୟ ସ୍ଥାନ । ତା'ରି ଭିତରେ ଭାରସାମ୍ୟ ରଖିବାକୁ ପଡ଼ିଥିଲା । ପରଦିନ ସକାଳୁ ଶୀଘ୍ର ନିତ୍ୟକର୍ମ ସାରି ମସ୍କୋ ସହର ଭ୍ରମଣରେ ବାହାରିଥିଲୁ ।

ପ୍ରଥମେ ପଡ଼ିଥିଲା ମସ୍କୋ ବିଶ୍ୱବିଦ୍ୟାଳୟ । ଲେନିନ୍-ହିଲସ ଉପରେ ୩୨ ମହଲା ବିଶିଷ୍ଟ ଏହି ବିଶ୍ୱବିଦ୍ୟାଳୟଟି 'ମସ୍କୋ ଷ୍ଟେଟ ୟୁନିଭରସିଟି' ନାମରେ ପରିଚିତ ଥିଲା ।

ସେଠାରେ ଚାଳିଶ ହଜାର ଛାତ୍ରଛାତ୍ରୀଙ୍କ ପାଇଁ ଅଧ୍ୟୟନର ସୁବିଧା ଉପଲବ୍ଧ ଥିଲା । ବିଶ୍ୱବିଦ୍ୟାଳୟକୁ ଯିବା ବାଟରେ ୟୁରୋପ ମହାଦେଶର ସବୁଠାରୁ ବଡ଼ ପାଠାଗାର ଲେନିନ୍ ଲାଇବ୍ରେରୀ ଦେଖିବାର ସୁଯୋଗ ମିଳିଥିଲା ।

ମସ୍କୋର ମୁଖ୍ୟ ଆକର୍ଷଣ ଥିଲା 'କ୍ରେମଲିନ' ଓ 'ରେଡ୍‌ସ୍କୋୟାର' । କ୍ରେମଲିନ୍‌କୁ ମସ୍କୋର ପ୍ରାଣକେନ୍ଦ୍ର ବୋଲି କୁହାଯାଏ । ତା' ଭିତରେ ରହିଛି ସୋଭିଏଟ ୟୁନିଅନର ପାର୍ଲାମେଣ୍ଟ । କ୍ରେମଲିନ୍‌ର ମୁଶୋଲିୟମ, ଦିଲ୍ଲୀର ରାଜଘାଟ ସଦୃଶ ।

ସେଠାରେ ଋଷର ମହାନ୍ ବିପ୍ଳବୀ ତଥା ଋଷିଆର ମୁକ୍ତିଦାତା ଲେନିନଙ୍କ ମର ଶରୀରକୁ ବୈଜ୍ଞାନିକ ପଦ୍ଧତିରେ ସଂରକ୍ଷିତ କରାଯାଇଛି । କ୍ରେମଲିନ୍ ସାମନାରେ 'ରେଡ୍‌ସ୍କୋୟାର' ।

ଋଷବାସୀଙ୍କର ଈଶ୍ୱର ପୂଜାରେ ବିଶ୍ୱାସ ନଥିଲେ ମଧ୍ୟ ରେଡ୍‌ସ୍କୋୟାରରେ ଅନେକଗୁଡ଼ିଏ ଗୀର୍ଜା (ଚର୍ଚ୍ଚ) ଥିବାର ଦେଖିବାକୁ ମିଳିଥିଲା ।

ଆମର ସ୍ୱଳ୍ପ ସମୟ ରହଣୀ ମଧ୍ୟରେ ସେତେବେଳେ ସୋଭିଏତ୍ ଋଷରେ ସୃଷ୍ଟି ହେଉଥିବା ଅର୍ଥନୈତିକ ସଙ୍କଟ ସମ୍ପର୍କରେ ଆମେ ସୂଚନା ପାଇଥିଲୁ । ଆନ୍ତର୍ଜାତିକ ବଜାରରେ ଋଷୀୟ ମୁଦ୍ରା 'ରୁବେଲ'ର ମୂଲ୍ୟ ହ୍ରାସ ପାଇଥିଲା ।

ହୋଟେଲକୁ ଫେରିବା ବାଟରେ ପଡ଼ିଥିଲା ଋଷିଆର ଗୁଇନ୍ଦା ସଂସ୍ଥା କେ.ଜି.ବିର ମୁଖ୍ୟ କାର୍ଯ୍ୟାଳୟ । ସେ ସଂସ୍ଥା ଜରିଆରେ ଅନ୍ୟ ରାଷ୍ଟ୍ରମାନଙ୍କର ଆଭ୍ୟନ୍ତରୀଣ ବ୍ୟାପାର ସମ୍ପର୍କରେ ଗୁପ୍ତ ତଥ୍ୟ ସବୁ ସଂଗ୍ରହ କରାଯାଉଥିଲା ।

ଆମେ କେ.ଜି.ବି ବିଲ୍ଡିଂ ଯିବାକୁ ଚାହିଁଥିଲେ ବି ନିରାପତ୍ତା ଦୃଷ୍ଟିରୁ ଆମକୁ ଅନୁମତି ମିଳିନଥିଲା ।

ସୋଭିଏଟ ଋଷର ଭବିଷ୍ୟତ ଅଧିକ ନିରାପଦ ନୁହେଁ ବୋଲି ଆମେ ଯାହା ଅନୁମାନ କରିଥିଲୁ, ତାହା ପରେ ସତ୍ୟରେ ପରିଣତ ହୋଇଥିଲା । ସୋଭିଏତ୍ ଋଷ କ୍ରମେ ଖଣ୍ଡବିଖଣ୍ଡିତ ହୋଇଗଲା । ବିଶ୍ୱରେ ସେ ରାଷ୍ଟ୍ରର ଯେଉଁ ମର୍ଯ୍ୟାଦା ଥିଲା ତାହା ମଧ୍ୟ କ୍ରମେ ହ୍ରାସ ପାଇଗଲା ।

ହୋଟେଲକୁ ଫେରି ଆମେ ଉତ୍ତର କୋରିଆର ରାଜଧାନୀ ପୋଙ୍ଗୟାଙ୍ଗ ଯିବାକୁ ପ୍ରସ୍ତୁତ ହେଲୁ । ମସ୍କୋରୁ ଫୋଙ୍ଗୟାଙ୍ଗର ଦୂରତ୍ୱ ଆଠହଜାର କିଲୋମିଟର । 'ଏରୋଫ୍ଲେଟ' ବିମାନରେ ସେ ପଥ ଅତିକ୍ରମ କରିବାକୁ ପ୍ରାୟ ବାର ଘଣ୍ଟା ସମୟ ଲାଗିଥିଲା । ବାଟରେ ଇନ୍ଧନ ନେବା ପାଇଁ ବିମାନଟି ନଭୋସକସ୍କ ବିମାନ ବନ୍ଦରରେ କିଛି ସମୟ ପାଇଁ ଅବତରଣ କରିଥିଲା ।

ପୋଙ୍ଗୟାଙ୍ଗ ବିମାନ ବନ୍ଦରରେ ପହଞ୍ଚିଲା ବେଳକୁ ସମୟ ଅପରାହ୍ନ ସାଢ଼େ ଚାରିଟା ବାଜିଥିଲା । ମନରେ ପୁନର୍ବାର ସଂଶୟ ସୃଷ୍ଟି ହୋଇଥିଲା । ବାରଘଣ୍ଟାର ବିମାନଯାତ୍ରା ପରେ ସାଢ଼େ ଚାରିଟା କିପରି ହେଲା ? ମସ୍କୋ ଓ ପୋଙ୍ଗୟାଙ୍ଗ ମଧ୍ୟରେ ପାଞ୍ଚଘଣ୍ଟାର ବ୍ୟବଧାନ ଥିବା କଥା ବିମାନ ପରିଚାଳକ ବୁଝାଇଦେବାରୁ ଆମ ସଂଶୟ ଦୂର ହୋଇଥିଲା ।

ଆମେ ଡ଼ି.ପି.ଆର କୋରିଆର ଅତିଥି ହୋଇଥିବାରୁ ବିମାନ ବନ୍ଦରରେ ଭିସା, ଇମିଗ୍ରେସନ ଚେକ୍ ଆଦି ଅଧଘଣ୍ଟାଏ ମଧ୍ୟରେ ଶେଷ ହୋଇଥିଲା ।

ଗୋଟିଏ ଅତ୍ୟାଧୁନିକ ହୋଟେଲରେ ଆମର ରହିବାର ବ୍ୟବସ୍ଥା ହୋଇଥିଲା । ଗୋଟିଏ ରୁମ୍‌ରେ ଦୁଇଜଣ ଲେଖାଏଁ ରହିଥିଲୁ । ମୋର ରୁମ୍‌ମେଟ୍ ଥିଲେ ଗୁଜରାଟର ଘନଶ୍ୟାମ ଭାଇ ଭାଓସାର । ଜାତିରେ ଗୁଜୁରାଟୀ । ସମ୍ପୂର୍ଣ୍ଣ ନିରାମିଷାଶୀ । ପାନ, ସିଗାରେଟ, ମଦ ଇତ୍ୟାଦିରୁ ବହୁଦୂରରେ ରହୁଥିଲେ । ସେଥିପାଇଁ ଆମେ ଏକାଠି ରହିବା ପାଇଁ ସ୍ଥିର କରିଥିଲୁ ।

ଡ଼ି.ପି.ଆର କୋରିଆର ରାଜଧାନୀ ପୋଙ୍ଗୟାଙ୍ଗ ଏବଂ ଅନ୍ୟାନ୍ୟ ସହରରେ ଆମେ ଗୋଟିଏ ସପ୍ତାହ କଟାଇଥିଲୁ । ବିଶ୍ୱଯୁଦ୍ଧ ସମୟରେ ଜାପାନ ଆକ୍ରମଣରେ ଅବିଭକ୍ତ କୋରିଆ ମାଟିରେ ମିଶିଯାଇଥିଲା । ଯୁକ୍ତରାଷ୍ଟ୍ର ଆମେରିକାର ଷଡ଼ଯନ୍ତ୍ର ଫଳରେ କୋରିଆ ବିଭାଜିତ ହୋଇ ଉତ୍ତର ଓ ଦକ୍ଷିଣ କୋରିଆରେ ପରିଣତ ହୋଇଥିଲା ।

ଆଠଦିନ ମଧ୍ୟରେ ଆମେ ଡ଼ି.ପି.ଆର କୋରିଆର ଅନେକ ଦର୍ଶନୀୟ ସ୍ଥାନ ଦେଖିଥିଲୁ । ଦିନେ ବୁଲିବା ସମୟରେ ଗୋଟିଏ କୌତୁହଳ ଘଟଣା ଘଟିଥିଲା । ଅବଶ୍ୟ ତାହାଥିଲା ଅପ୍ରତ୍ୟାଶିତ ।

ଆମେ ବିଦେଶ ଯିବା ସମୟରେ ମୁଁ ଓଡ଼ିଶାର ପ୍ରସିଦ୍ଧ ରୂପାର ତାରକସି ମୁଦି, ଟାଇକ୍ଲିପ୍ ଓ କିଛି ସମ୍ବଲପୁରୀ ରୁମାଲ ନେଇଥିଲି । ଯେକୌଣସି ସ୍ଥାନକୁ ପରିଦର୍ଶନରେ ଯିବା ସମୟରେ ସେଠାରେ ଥିବା ଗାଇଡ୍, ତତ୍ତ୍ୱାବଧାରକ ଏବଂ ଅନ୍ୟାନ୍ୟ କର୍ମକର୍ତ୍ତାଙ୍କୁ ବିଭିନ୍ନ ରାଜ୍ୟରୁ ଯାଇଥିବା କିଛି ଉପଢ଼ୌକନ ଆମେ ଦେଉଥିଲୁ ।

କେଉଁଠି କେଉଁ ପଦାର୍ଥ ଦିଆଯିବ, ସେକଥା ଆମେ ହୋଟେଲରୁ ବାହାରିବା ପୂର୍ବରୁ ସ୍ଥିର ହେଉଥିଲା । 'ଟାୱାର୍ ଅଫ୍ ଜୁଚି ଆଇଡିଆ'ରେ ଓଡ଼ିଶାର ଉପଢ଼ୌକନ ଦିଆଯିବ ବୋଲି ନିଷ୍ପତ୍ତି ହୋଇଥିବାରୁ ତଦନୁଯାୟୀ ମୁଁ ସାଙ୍ଗରେ ରୁପା ମୁଦି, ଟାଇକ୍ଲିପ୍ ଓ କିଛି ରୁମାଲ୍ ନେଇଥିଲି ।

ସେଦିନ ସେଠାରେ ଜଣେ ଯୁବତୀ ଓ ଦୁଇଜଣ ଯୁବକ କର୍ତ୍ତବ୍ୟରେ ନିୟୋଜିତ ଥିଲେ । ପ୍ରଥମେ ଯୁବକ ଦୁଇଜଣଙ୍କୁ ଟାଇକ୍ଲିପ୍ ଓ ରୁମାଲ୍ ଦେଲି । ପରେ ଯୁବତୀଙ୍କ ପାଳି ପଡିଲା । ମୁଁ ତାଙ୍କୁ ମୁଦିଟିଏ ଦେବାପାଇଁ ପ୍ରସ୍ତୁତ ହେଲାବେଳେ ଯୁବତୀଜଣକ ଆଗ୍ରହରେ ହାତ ବଢ଼ାଇ ଦେଇଥିଲେ ।

ତାଙ୍କୁ ମୁଦି ପିନ୍ଧାଇଦେବା ପାଇଁ ଅନେକ ବନ୍ଧୁ ମତେ ପ୍ରବର୍ତ୍ତାଇ ଥିଲେ । ମୁଁ କିଛି ନବୁଝି ତାଙ୍କୁ ମୁଦି ପିନ୍ଧାଇ ଦେବା ପରେ ଆମର ବନ୍ଧୁମାନେ ତାଳିମାରି ନାଚି ଉଠିଥିଲେ ।

ଯୁବତୀଜଣକ କିନ୍ତୁ ଏପରି ରହସ୍ୟର ମର୍ମ କିଛି ବୁଝି ନପାରି କେବଳ ଲୁଲୁଲୁଲୁ ହୋଇ ଚାହିଁ ରହିଥିଲେ । ଜଣେ ଯୁବକ, ଜଣେ ଯୁବତୀଙ୍କୁ ସାଧାରଣରେ ମୁଦି ପିନ୍ଧାଇବାର ଅନ୍ତର୍ନିହିତ ଉଦ୍ଦେଶ୍ୟ କ'ଣ, ସେକଥା ତାଙ୍କ ପକ୍ଷରେ ବୁଝିବା ସମ୍ଭବ ନଥିଲା । ଟାୱାର ଅଫ୍ ଜୁଚି ଆଇଡିଆ ବୁଲିବା ପରେ ଆମେ ହୋଟେଲକୁ ଫେରିଆସିଥିଲୁ ।

ଉତ୍ତରକୋରିଆ ଓ ଦକ୍ଷିଣକୋରିଆ ମଧ୍ୟରେ ଟଣା ଯାଇଥିବା ଆନ୍ତର୍ଜାତିକ ସୀମାରେଖା ପରିଦର୍ଶନରେ ଯିବାପାଇଁ ଆମେ ଆଗ୍ରହ ପ୍ରକାଶ କରିଥିଲୁ । ସାଧାରଣ ଭାବେ ଆନ୍ତର୍ଜାତିକ ସୀମାରେଖା ଦେଖିବାର ସୁଯୋଗ ଯେ, ଜୀବନରେ ଆଉ ଥରେ ଆସିବ ନାହିଁ ସେ ବିଷୟରେ ଆମେ ନିଶ୍ଚିତ ଥିଲୁ ।

ଆମେ ଆମର ମନୋଭାବ ସେମାନଙ୍କୁ ଜଣାଇବାରୁ ସେମାନେ ପ୍ରଥମେ ଆମକୁ ମନା କରିଦେଇଥିଲେ । କିନ୍ତୁ ଆମେ ଅନୁରୋଧ କଲାରୁ ଶେଷରେ ସେମାନେ ରାଜି ହୋଇଥିଲେ । ସୀମାରେଖା ଦେଖିବାର ଯେଉଁ ବିରଳ ଅନୁଭୂତି ହୋଇଥିଲା, ତାହା ଭୁଲିବାର ନୁହେଁ ।

ଉତ୍ତର କୋରିଆର ସାମରିକ ବାହିନୀର ବ୍ରିଗେଡିୟର ଜୁଙ୍ଗଙ୍କ ନେତୃତ୍ୱରେ କିଛି ସାମରିକ ଅଫିସରଙ୍କ ସହିତ ଆମେ ସକାଳେ ସୀମାରେଖା ଦେଖିବାକୁ ବାହାରିଥିଲୁ ।

ସୀମାରେଖା ଯେତିକି ପାଖ ହେଉଥିଲା, ମନରେ ଉତ୍କଣ୍ଠା ଓ ଉତ୍ତେଜନା ସେତିକି ବୃଦ୍ଧି ପାଉଥିଲା । ଆମ ଗାଡି ଆଗରେ ଗୋଟିଏ ରେଡ୍‌କ୍ରସ ଗାଡ଼ି ଯାଉଥିଲା । ରେଡ୍‌କ୍ରସ ଗାଡିରେ ରେଡ୍‌କ୍ରସ ଚିହ୍ନ ଥାଇ ଗୋଟିଏ ବଡ଼ ପତାକା ଉଡୁଥିଲା । କାଳେ କ'ଣ ଅଘଟଣ ଘଟିବ, ସେଥିପାଇଁ ମନରେ ଅହେତୁକ ଆଶଙ୍କା ମଧ୍ୟ ଜାତ ହେଉଥିଲା ।

ଆମ ଗାଡ଼ିଗୁଡିକ ସୀମାରେଖା ନିକଟରେ ପହଞ୍ଚିବା ପରେ ବ୍ରିଗେଡିୟରଙ୍କ ନିର୍ଦ୍ଦେଶରେ ଆମେସବୁ ଗାଡ଼ିରୁ ଓହ୍ଲାଇ ତାଙ୍କ ପଛେ ପଛେ ଚାଲିଥିଲୁ ।

କିଛିବାଟ ଯିବାପରେ ହଠାତ୍ ଏକ ଅଜଣା ଶବ୍ଦ ଆମ କାନରେ ବାଜିଥିଲା । ସେ ଶବ୍ଦ କ'ଣ ବୋଲି ଆମେ ପଚାରିବାକୁ ଯାଉଛୁ ବ୍ରିଗେଡିୟର ଜୁଙ୍ଗ୍ ଆମକୁ କହିଥିଲେ, "ସୀମା ଆରପଟେ ଥିବା ସେନାବାହିନୀ ଆମର ଉପସ୍ଥିତି ସମ୍ପର୍କରେ ସଚେତନ ହୋଇ ସଜାଗ ରହିବାକୁ ନିର୍ଦ୍ଦେଶ ପାଇଲେଣି । ଏହା ପ୍ରାୟ ଏକ ନିତିଦିନିଆ ଘଟଣା । ସୀମା ଆରପଟେ ମହଜୁଦ୍ ଥିବା ସାମ୍ରାଜ୍ୟବାଦୀ ସୈନ୍ୟମାନେ ବିନା କାରଣରେ ଉତ୍ତେଜନା ସୃଷ୍ଟି କରିବା ଏକ ପ୍ରକାର ଅଭ୍ୟାସରେ ପରିଣତ ହୋଇଗଲାଣି । ବର୍ଷକୁ ପ୍ରାୟ ଦଶହଜାର ଥର ଏପରି ଘଟଣା ଘଟୁଛି । ସାମ୍ରାଜ୍ୟବାଦୀମାନଙ୍କ ଗୁଳିଚାଳନାରେ ଅନେକ ମୃତାହତ ମଧ୍ୟ ହେଉଛନ୍ତି ।"

ବ୍ରିଗେଡିୟର ଆଗରେ ଯାଉଥିଲେ । ତାଙ୍କ ପଛରେ ଆମେ ସବୁ ଚାଲୁଥିଲୁ । ପରେ ଆମେ ଯାଇ ଗୋଟିଏ କୋଠାଘରେ ପହଞ୍ଚିଥିଲୁ । ସେ କୋଠାଟି 'ଅବ୍‌ଜରଭେସନ୍ ଟାୱାର' ବୋଲି ପରେ ଜାଣିଲୁ । ସୀମା ଆରପଟେ କ'ଣ ସବୁ ଘଟୁଛି, ଶତ୍ରୁପକ୍ଷ ସେନା କ'ଣ କରୁଛନ୍ତି, ତାକୁ ଲକ୍ଷ୍ୟ କରିବା ପାଇଁ ଏହି ଟାୱାର ନିର୍ମିତ ହୋଇଥିଲା ।

ସେଠାରେ ଦିନରାତି ପହରାର ବ୍ୟବସ୍ଥା ଥିଲା । ଟାୱାରର ସର୍ବୋଚ୍ଚ ସ୍ଥାନରେ ଏକ ଶକ୍ତିଶାଳୀ ବାଇନାକୁଲର୍ ଖଞ୍ଜା ଯାଇଥିଲା । ବାଇନାକୁଲର୍‌ଟି ଏତେ ଶକ୍ତିଶାଳୀ ଥିଲା ଯେ, ପ୍ରାୟ ଶହେ ମିଟର ଦୂରରେ ପିନ୍‌କଣ୍ଟାଟିଏ ପଡ଼ିଥିଲେ ମଧ୍ୟ ସ୍ପଷ୍ଟ ଦେଖାଯାଉଥିଲା ।

ଅବ୍‌ଜରଭେସନ୍ ଟାୱାରରେ ଅବସ୍ଥାପିତ ଯବାନମାନଙ୍କୁ ଦେଖିଲେ କର୍ତ୍ତବ୍ୟ ପରାୟଣତା କ'ଣ ତା'ର ସୂଚନା ମିଳୁଥିଲା । ସେମାନଙ୍କୁ ଦେଖିଲେ ମନେ ହୋଇଥିଲା ସତେ ଯେପରି କେବଳ କର୍ତ୍ତବ୍ୟ ପାଳନ ବ୍ୟତୀତ ଅନ୍ୟକିଛି ସେମାନେ ଜାଣିନଥିଲେ ।

ଡ଼ି.ପି.ଆର୍. କୋରିଆ ପଟରେ ସ୍ୱିଜରଲାଣ୍ଡ ସେନାବାହିନୀ ଜଗି ରହିଥିଲାବେଳେ ସୀମା ଆରପଟେ ଦକ୍ଷଣ କୋରିଆ, ଆମେରିକା ଓ ଅନ୍ୟ ଦେଶର ସୈନ୍ୟମାନେ ଜଗିଥିଲେ ।

ଦିନରାତି ପହରାର ବ୍ୟବସ୍ଥା ଥିଲା । ସେମାନଙ୍କ ଆଖିରୁ ସହଜରେ କିଛି ଖସିବାର ସୁଯୋଗ ନଥିଲା ।

ଆମ ଉପସ୍ଥିତି ସମ୍ପର୍କରେ ସଚେତନ ଥିବା ଅପରପକ୍ଷର ଯବାନମାନେ କାଳେ ସେମାନଙ୍କ ପ୍ରତି କିଛି ବିପଦ ପଡ଼ିବ ଭାବି ପରିସ୍ଥିତିର ମୁକାବିଲା ପାଇଁ ପ୍ରସ୍ତୁତ ହୋଇଯାଇଥିଲେ । ଆମେ ସୀମା ଏପଟୁ ବାଇନାକୁଲରରେ ଦେଖୁଥିଲା ବେଳେ ସେମାନେ ମଧ୍ୟ ଆମ ଗତିବିଧି ଲକ୍ଷ୍ୟ କରୁଥିଲେ । ଅବ୍‌ଜରଭେସନ ଟାୱାର ଭିତରେ ଅସ୍ୱାଭାବିକ ଭାବରେ ଏକକାଳୀନ ଏତେ ସଂଖ୍ୟକ ବେସାମରିକ ଲୋକଙ୍କ ଚଳାଚଳ ସେମାନଙ୍କ ମନରେ ସନ୍ଦେହ ସୃଷ୍ଟି କରିଥିଲା ।

କୋରିଆର ୨୪୦ କିଲୋମିଟର ବ୍ୟାପୀ ସୀମାରେ ଦୁଇଟି ସମାନ୍ତରାଳ ରେଖା ଟଣାଯାଇଛି । ସୀମାରେଖା କେତେକ ସ୍ଥଳରେ ଗାଁଗଣ୍ଡା, ଏପରିକି ଘର ଭିତରେ ଦେଇଯାଇଛି ।

ଗୋଟିଏ ଘର ଦୁଇଭାଗ ହୋଇଛି । ଗୋଟିଏ ପରିବାର ଦୁଇଟି ଦେଶର ଅଧିବାସୀ ପାଲଟିଯାଇଛନ୍ତି । ସେମାନଙ୍କ ମଧ୍ୟରେ ଦେଖାସାକ୍ଷାତ କିମ୍ବା କଥାବାର୍ତ୍ତା ହେବାର ସୁଯୋଗ ନାହିଁ । ଏଇକଥା କହିଲା ବେଳେ ସାମରିକ ଅଫିସରଙ୍କ ଆଖି ଛଳଛଳ ହୋଇଯାଇଥିଲା । ଯାହାହେଲେ ବି ସେମାନେ ତ ମଣିଷ ! ସେମାନଙ୍କ ମନରେ ମଧ୍ୟ ସ୍ନେହ, ମମତା, ସହାନୁଭୂତି ରହିଥିଲା ।

ଦୀର୍ଘଦିନ ହେଲା ସେମାନଙ୍କ ପକ୍ଷରେ ଆତ୍ମୀୟସ୍ୱଜନଙ୍କୁ ଦେଖିବାର ସୁଯୋଗ ନଥିଲା । କେହି କାହା ଖବର ରଖି ପାରୁନଥିଲେ । ବିଧିର ବିଧାନ ଏପରି ଯେ, ଗୋଟିଏ କୋରିଆ ଆମେରିକା କବଳରେ ଥିଲାବେଳେ ଅନ୍ୟଟି ଋଷିଆ ଦ୍ୱାରା ପ୍ରଭାବିତ ହେଉଥିଲା ।

ଯୋଉ ପୋଙ୍ଗୟାଙ୍ଗ ସହର, ଆମ ପାଇଁ ଅପରିଚିତ ଥିଲା, ଆଠଦିନର ରହଣି ଭିତରେ ତାହା ପରିଚିତ ହୋଇଗଲା । ଅଜଣା ପୋଙ୍ଗୟାଙ୍ଗବାସୀ ଆମର ଜଣାଶୁଣା ହୋଇଗଲେ । ସେମାନଙ୍କ ସମ୍ପର୍କରେ ଆମର ମନର ଭାବନା ବଦଳି ଯାଇଥିଲା । ଦେଖୁ ଦେଖୁ ଆଠଦିନ ସମୟ କୁଆଡ଼େ ଚାଲିଗଲା ।

ପୋଙ୍ଗୟାଙ୍ଗରୁ ଆମର ନେଦରଲ୍ୟାଣ୍ଡର ଆମଷ୍ଟରଡାମକୁ ଯିବାପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ଆମେ ମସ୍କୋ ବାଟେ ଆମଷ୍ଟରଡାମକୁ ଯିବାପାଇଁ ଯଥା ସମୟରେ ବିମାନ ବନ୍ଦରରେ ପହଞ୍ଚିଲୁ ।

ଆମକୁ ବିଦାୟ ଦେବା ନିମନ୍ତେ କିମଜୀ ନାନ୍ ଓ ଅନ୍ୟମାନେ ବିମାନ ବନ୍ଦରକୁ ଆସିଥିଲେ । ସେ ଦିନର ବିଦାୟକାଳୀନ ଦୃଶ୍ୟ ଥିଲା ଅତ୍ୟନ୍ତ ହୃଦୟସ୍ପର୍ଶୀ । ପରସ୍ପର ସହିତ କୋଳାକୋଳି ହୋଇ ବିଦାୟ ନେବାରେ କିଛି ସମୟ ବିଳମ୍ବ ହୋଇଯାଇଥିଲା ।

ଭାରତରୁ ଡ଼ି.ପି.ଆର୍. କୋରିଆ କାହିଁ କେତେ ଦୂର । ଦୁଇ ଦେଶବାସୀଙ୍କ ମଧ୍ୟରେ ଚାଲିଚଳଣ, ଭାଷା, ସଂସ୍କୃତି, ଖାଦ୍ୟପେୟରେ କାହିଁ କେତେ ତଫାତ୍ । ତଥାପି ସାମାଜିକ ପ୍ରାଣୀ ଭାବରେ ମଣିଷ ମନରେ ଯେଉଁ ଭାବାବେଗ, ସେଥିରେ ସମସ୍ତେ ବାନ୍ଧି ହୋଇଯାଇଥିଲେ ।

କେହି କାହା କଥା ବୁଝି ନପାରୁଥିଲେ ବି ମନର ଆବେଗ କେଇଦିନ ଭିତରେ ଏକ ବନ୍ଧୁତ୍ୱ ଭାବ ସୃଷ୍ଟି କରିଥିଲା । ପୋଙ୍ଗ୍‌ୟାଙ୍ଗ୍‌ରୁ ଫେରିଲା ବେଳେ ମନେହେଲା ସତେ ଯେପରି ଆମେ ନିଜଘର ଛାଡ଼ି କାହିଁ କେଉଁ ଅଜଣା ରାଇଜକୁ ଚାଲିଯାଉଥିଲୁ ।

ଆମକୁ ନେଇଯାଉଥିବା ଏରୋପ୍ଲେନ୍‌ଟି ରନ୍‌ୱେରୁ ଉପରକୁ ଉଠିଲାବେଳେ ମୁଁ ଝରକାରୁ ଲକ୍ଷ୍ୟ କରୁଥିଲି, ଶ୍ରୀ ନାନ୍ ଓ ତାଙ୍କ ସହକର୍ମୀମାନେ ଷ୍ଟାଚ୍ୟୁ ଭଳି ନିଜ ନିଜ ଜାଗାରେ ଛିଡ଼ାହୋଇ ହାତ ହଲାଉଥିଲେ ।

ମସ୍କୋରୁ କେ.ଏଲ.ଏମ୍ ବିମାନରେ ଯାଇ ଆମେ ଆମଷ୍ଟରଡାମ ବିମାନ ବନ୍ଦରରେ ଅପରାହ୍ନ ଦୁଇଟାବେଳେ ପହଞ୍ଚିଲୁ । ବିଶ୍ୱର ଆଧୁନିକ ବିମାନବନ୍ଦର ମଧ୍ୟରେ ଆମଷ୍ଟରଡାମ ଅନ୍ୟତମ । ତାକୁ ୟୁରୋପର 'ପ୍ରବେଶ ଦ୍ୱାର' ବୋଲି କୁହାଯାଏ । ବିମାନ ବନ୍ଦର ଡାଫୋଡିଲ ଫୁଲ ବଗିଚାର ଦୃଶ୍ୟ ଅତ୍ୟନ୍ତ ମନୋହର ଥିଲା ।

ସୀତା ଟ୍ରାଭେଲସ ଆମ ପାଇଁ ଆମଷ୍ଟରଡାମ ସହରର ଏକ ଆଧୁନିକ ହୋଟେଲରେ ବାରଟି ରୁମ୍ ରିଜର୍ଭ କରିଥିଲେ । ରୁମ୍‌ରେ କିଏ କାହା ସାଙ୍ଗରେ ରହିବେ ସେ କଥା ଆଗରୁ ସ୍ଥିର ହୋଇସାରିଥିଲା ।

ସେ ହୋଟେଲର ବିଶେଷତ୍ୱ ଥିଲା, ସେଠାରେ କେହି ୱାଚ୍‌ମ୍ୟାନ ନଥିଲେ । ହୋଟେଲ ଭିତରକୁ ପଶିଲେ ବାହାର କବାଟ ଆପେଆପେ ବନ୍ଦ ହୋଇଯାଉଥିଲା । ଆମକୁ ଯେଉଁ ରୁମ୍ ଚାବି ଦିଆଯାଇଥିଲା, ସେଥିରେ ହୋଟେଲର ମୁଖ୍ୟ କବାଟ ଖୋଲୁଥିଲା ।

ଆମେ ଚାବି ନେଇ ରୁମ୍ ଭିତରେ ପଶିଲୁ । ରୁମ୍ ଖୁବ୍ ପ୍ରଶସ୍ତ । ୱାଲ ଟୁ ୱାଲ କାରପେଟ । ମଝିରେ ଦାମୀ ସୋଫା ସାଙ୍ଗକୁ ସେଣ୍ଟର ଟେବୁଲ । ଗୋଟିଏ କଣରେ ରଙ୍ଗୀନ ଟିଭି ଓ ଇଣ୍ଟରକମ୍ ଟେଲିଫୋନ ରଖାଯାଇଥିଲା ।

ଏସବୁ ସରଞ୍ଜାମ ଥିଲା ବେଳେ ଆମେ ଶୋଇବା ପାଇଁ ଖଟ ଦେଖିବାକୁ ପାଇଲୁ ନାହିଁ । ମନରେ ଭ୍ରମ ସୃଷ୍ଟି ହେଲା । ଏତେ ବଡ଼ ହୋଟେଲ, ଏତେ ସାଜସଜା, ହେଲେ ରୁମ୍‌ରେ ବେଡ୍‌ର ବ୍ୟବସ୍ଥା ନାହିଁ ? ଅଧିକାଂଶ ସେହି ସନ୍ଦେହରେ ପଡ଼ିଥିଲେ ।

ମାତ୍ର ବମ୍ବେରେ ଅବସ୍ଥାନ କରୁଥିବା 'ନବଭାରତ ଟାଇମ୍‌ସ'ର ସ୍ୱତନ୍ତ୍ର ପ୍ରତିନିଧି ପ୍ରକାଶ ଦୁବେ ଆମ୍ଭମାନଙ୍କର ଭ୍ରମ ଦୂର କରିଥିଲେ । ସେ ରୁମ୍‌କୁ ଆସି କାନ୍ଥରେ ଥିବା ଗୋଟିଏ ସୁଇଚ୍‌ରେ ହାତ ମାରିଲେ । ସାଙ୍ଗେ ସାଙ୍ଗେ ବିନା ଶବ୍ଦରେ କାନ୍ଥରୁ ବାହାରି

ଆସିଲା ଦୁଇଟି ବେଡ୍ । ବେଡ୍ ଉପରେ ନରମ ଗଦି ସାଙ୍ଗକୁ ଗରମ କମ୍ବଳ ଓ ମୁଲାୟମ ତକିଆ ରହିଥିଲା ।

ଦୁଇଟି କମ୍ୟୁନିଷ୍ଟ ରାଷ୍ଟ୍ରରେ ପାଖାପାଖି ଦୁଇସପ୍ତାହ ରହିବା ପରେ ମନରେ ଯେଉଁ ବିଷାଦ ସୃଷ୍ଟି ହୋଇଥିଲା, ପାଶ୍ଚାତ୍ୟ ରାଷ୍ଟ୍ରରେ ପହଞ୍ଚିବା ପରେ ଆପେ ଆପେ ତାହା ଦୂର ହୋଇଯାଇଥିଲା । ମନରେ ନୂତନ ଉତ୍ସାହ ସୃଷ୍ଟି ହୋଇଥିଲା ।

ଆମ ପାଇଁ ଶୀତତାପ ନିୟନ୍ତ୍ରିତ କୋଚ୍ ସହିତ ଗାଇଡ୍ ଆଗରୁ ପ୍ରସ୍ତୁତ ହୋଇରହିଥିଲେ । ଗାଇଡ୍ ମେରୀ ମଧ୍ୟବୟସ୍କା । ଅବିବାହିତା । ଖୁବ୍ ମେଳାପୀ । ଇଂରାଜୀ ଭାଷାରେ ତାଙ୍କର ଖୁବ୍ ଦକ୍ଷତା ଥିଲା ।

ଆଲୋଚନା ପରେ ସ୍ଥିର ହୋଇଥିଲା, ଆମେ ସନ୍ଧ୍ୟାରେ 'ନାଇଟ୍ କ୍ଲବ' ଯିବୁ ଏବଂ ଫେରିଲା ବେଳେ ଭାରତୀୟ ରେଷ୍ଟୁରାଣ୍ଟ 'ଇଣ୍ଡିଆନ ତନ୍ଦୁରୀ'ରେ ରାତ୍ରୀଭୋଜନ କରିବୁ ।

ଆମ ସାଙ୍ଗରେ କେତେଜଣ ମହିଳା ପ୍ରତିନିଧି ଥିଲେ । ଫଇଜାବାଦ୍‌ର ବୟସ୍କ ସାମ୍ବାଦିକ ଶୀତଳା ସିଂ ପ୍ରସ୍ତାବ ଦେଲେ ସେ ମହିଳାମାନଙ୍କ ସହିତ ମାର୍କେଟ ଏରିଆକୁ ଯିବେ ଓ ଅନ୍ୟମାନେ 'ନାଇଟ କ୍ଲବ' ଦେଖିବେ ।

କିଛିବାଟ ଯିବା ପରେ ଆମ କୋଚଟି ରଖିବାକୁ ଗାଇଡ୍ ମେରୀ ଡ୍ରାଇଭରକୁ କହିଲେ । ଆମେ କୋଚରୁ ଓହ୍ଲାଇ ଦୁଇଟି ଗ୍ରୁପରେ ଦୁଇଆଡ଼କୁ ଗଲୁ ।

ରାସ୍ତାରେ କିଛିବାଟ ଯିବା ପରେ ପଡ଼ିଲା 'ରେଡ୍‌ଲାଇଟ୍ ଏରିଆ' । ଜୀବନକୁ ଉପଭୋଗ ପାଇଁ ଏକ ନଗ୍ନ କର୍ମଶାଳା । ସେ ଅଞ୍ଚଳରେ ବିଶ୍ୱର ବିଭିନ୍ନ ଦେଶର ରୂପଜୀବୀମାନେ ଆସି ସେମାନଙ୍କର ରୂପର ପସରା ମେଲାଇଥିଲେ ।

ଗ୍ରାହକମାନଙ୍କ ମନୋରଞ୍ଜନ ପାଇଁ ସବୁ ରକମର ଆକର୍ଷଣ ସେମାନଙ୍କ ପାଖରେ ଭରପୂର ଥିଲା । ସେମାନଙ୍କର ଦେହର ଅଧିକାଂଶ ଅଙ୍ଗ ଆବୃତ୍ତ ହୋଇନଥିଲା ।

ରାସ୍ତାରେ ଯାଉଥିବା ପର୍ଯ୍ୟଟକମାନଙ୍କର ମନରେ ଯୌନ ଆକାଙ୍‌କ୍ଷା ବୃଦ୍ଧି ଉଦ୍ଦେଶ୍ୟରେ ସେମାନେ ନାନା ପ୍ରକାର ଇଙ୍ଗିତ ଦେଉଥିଲେ । ପୁରୁଷମାନଙ୍କ ସହିତ ସମ୍ଭୋଗ କରି ତୃପ୍ତି ଲାଭ କରିବା ଅପେକ୍ଷା କିଛି ଅର୍ଥ ଉପାର୍ଜନ ସେମାନଙ୍କର ଧ୍ୟେୟ ଥିଲା ।

ସେ ଦୃଶ୍ୟ ଦେଖି ବ୍ୟାସକବି ଫକୀରମୋହନଙ୍କ 'ହାଟବାହୁଡ଼ା' କବିତାର କେଇପଦ ମୋର ମନେପଡ଼ିଗଲା ।

"ଦୋକାନ ଦୁଆରେ କେହି ରୂପସୀ
ଆପଣା ସଉଦା ବିକୁଛି ବସି ।
କୁତ୍ସିତ ବ୍ୟାଧି, ନିନ୍ଦା, ଅପକର୍ମ
ମାଲ୍ ବିକିବାଟି ତାହାର କାମ ।

ବାପ ଅରଜିଲା ବିତ୍ତକୁ ନେଇ
କିଣୁଅଛି ତାକୁ ଭେଣ୍ଡିଆ କେହି ।"

କେତେବର୍ଷ ତଳେ ବ୍ୟାସକବି ଯାହା ଲେଖିଥିଲେ, ଆମଷ୍ଟରଡାମର ରେଡ୍‌ଲାଇଟ୍ ଏରିଆ ଦେଖି ତାହା ଯେ କେତେ ବାସ୍ତବ, ସେକଥା ଉପଲବ୍ଧ ହେଲା ।

କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ନିଜର ଯୌନ ଆକାଂକ୍ଷା ପୂରଣ ପାଇଁ ସେଠାରେ କେତେ ଯେ ଯୁବକ ସେମାନଙ୍କ ଭବିଷ୍ୟତକୁ ନଷ୍ଟ କରିଦେଉଥିଲେ ତାହା ରେଡ୍‌ଲାଇଟ୍ ଏରିଆ ନଦେଖିଲେ ଜଣଙ୍କ ପକ୍ଷରେ ବିଶ୍ୱାସ କରିବା ସମ୍ଭବ ନୁହେଁ ।

ବହୁ ଆକାଂକ୍ଷିତ ନାଇଟ୍ କ୍ଲବର ନଗ୍ନ ଯୌନକ୍ରିୟା ଦେଖିବା ପରେ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ମାତ୍ର ପାଶ୍ଚାତ୍ୟ ଦେଶର 'ନାଇଟ୍ କ୍ଲବ' ଆଧୁନିକ ସଭ୍ୟତାର ଏକ ଅଙ୍ଗ ଥିଲା ।

ନାଇଟ୍ କ୍ଲବରେ ଯେଉଁ ପୁରୁଷ ଓ ମହିଳା ଯୌନକ୍ରିୟାର ଲାଇଭ୍‌ସୋ'ରେ ଲିପ୍ତ ଥିଲେ, ସେମାନେ କେହି କାହାରି ଆପଣାର ନଥିଲେ । ଅର୍ଥ ବିନିମୟରେ ସେମାନେ ଆସି ଅନ୍ୟମାନଙ୍କର ମନୋରଞ୍ଜନ ପାଇଁ ସେଥିରେ ଅଂଶଗ୍ରହଣ କରୁଥିଲେ ।

ନାଇଟ୍ କ୍ଲବରୁ ଫେରିଲା ବେଳକୁ ଡେରି ହୋଇଯାଇଥିଲା । ବାଟରେ ଇଣ୍ଡିଆନ ତନ୍ଦୁରୀରେ ରାତ୍ରୀଭୋଜନ ଶେଷ କଲୁ । ରେଷ୍ଟୁରାଣ୍ଟର ମାଲିକ ଜଣେ ସର୍ଦ୍ଦାର । ଏତେ ସଂଖ୍ୟାରେ ଭାରତୀୟଙ୍କୁ ଦେଖି ସେ ଖୁସି ହୋଇଯାଇଥିଲେ । ନିଜେ ଯତ୍ନ ନେଇ ଆମ ପାଇଁ ଖାଦ୍ୟ ପ୍ରସ୍ତୁତ କରିଥିଲେ । ବହୁ ଦିନ ପରେ ଭାରତୀୟ ଖାଦ୍ୟ ତୃପ୍ତି ଲାଗିଥିଲା ।

ପରଦିନ ଆମର ବ୍ୟସ୍ତ ବହୁଳ କାର୍ଯ୍ୟକ୍ରମ ଥିଲା । ସାରା ଦିନ ଆମେ ଆମଷ୍ଟରଡାମର କାଠଜୋତା କାରଖାନା, ନକଲି ହୀରା କାରଖାନା ବୁଲିବା ସହ ନେଦରଲ୍ୟାଣ୍ଡର ରାଜଧାନୀ ହେଗ୍ ସହରକୁ ଯାଇଥିଲୁ ।

ହେଗ୍‌କୁ ଯିବା ବାଟରେ ସେ ରାଷ୍ଟ୍ରର ଦ୍ୱିତୀୟ ବୃହତ୍ତମ ସହର ରୋଟରଡ୍ୟାମ ବୁଲିଥିଲୁ । ଗାଇଡ୍ ମେରୀ ଆମକୁ ସବୁକଥା ବୁଝାଉଥିଲେ । ରୋଟରଡ୍ୟାମର ପରିବେଶ ମନମୁଗ୍ଧକର ଥିଲା । ସେଠାରେ ଥିବା ଜଳାଶ୍ରୟରେ ନାନାଜାତିର ପକ୍ଷୀଙ୍କ ସନ୍ତରଣ ସ୍ଥାନର ସୌନ୍ଦର୍ଯ୍ୟ ବୃଦ୍ଧି କରୁଥିଲା ।

ହେଗ୍ ସହରରେ "ଇଣ୍ଟରନାସନାଲ କୋର୍ଟ ଅଫ୍ ଜଷ୍ଟିସ୍"ର ହେଡ୍‌କ୍ୱାର୍ଟସ ଥିଲା । ସେ ସମୟରେ ଜଣେ ଭାରତୀୟ ସେ ସଂସ୍ଥାର ଅଧ୍ୟକ୍ଷ ଥିଲେ । ସେ ସହରକୁ ଆମର ଯିବା ସମ୍ପର୍କରେ ତାଙ୍କୁ ଆଗରୁ ଖବର ମିଳିଥିଲା । ସେ ଆମ ପାଇଁ ଅପେକ୍ଷା କରିରହିଥିଲେ । ତାଙ୍କ ସହିତ ଚା' ପର୍ବ ଶେଷକରି ଆମେ ଫେରିଲୁ । ହୋଟେଲକୁ ଫେରିବା ବାଟରେ ରାତ୍ରୀଭୋଜନ ସାରିଥିଲୁ ।

ତା'ପରଦିନ ସକାଳେ ଆମର ପଶ୍ଚିମ ଜର୍ମାନୀର ଫ୍ରାଙ୍କଫର୍ଟ ସହରକୁ ଯିବା ପାଇଁ ସ୍ଥିର ହୋଇଥିଲା । ଜର୍ମାନୀର ବିଭାଜନ ପରେ ବନ୍ ସହରରେ ପଶ୍ଚିମ ଜର୍ମାନୀର ରାଜଧାନୀ ପ୍ରତିଷ୍ଠିତ ହୋଇଥିଲା ।

ବର୍ଲିନ ନଗରୀ ପୂର୍ବ ଜର୍ମାନୀର ରାଜଧାନୀ ଭାବରେ ରହିଥିଲା । ପୂର୍ବ ଜର୍ମାନୀ ଯିବାପାଇଁ ଆମକୁ 'ଭିସା' ମିଳିନଥିବାରୁ ଆମର ଭ୍ରମଣ ପଶ୍ଚିମ ଜର୍ମାନୀ ଭିତରେ ସୀମିତ ଥିଲା । ଆମଷ୍ଟରଡାମରୁ ଫ୍ରାଙ୍କଫର୍ଟ ଆମେ ସ୍ଥଳପଥରେ ନଯାଇ ବିମାନରେ ଯାଇଥିଲୁ । ଦୁଇ ସହରର ଦୂରତା ବେଶୀ ନୁହେଁ । ମାତ୍ର ୫୦ ମିନିଟ୍‌ର ଉଡାଣ । ଆମ କୋଚ୍‌ଟି ଆମକୁ ସ୍ଥଳପଥରେ ଫେରାଇ ଆଣିବା ଉଦ୍ଦେଶ୍ୟରେ ଫ୍ରାଙ୍କଫର୍ଟ ଯାଇଥିଲା ।

ଫ୍ରାଙ୍କଫର୍ଟ ସହରର ଅତ୍ୟାଧୁନିକ ହୋଟେଲ, 'ହୋଟେଲ ଲା'ବେରା'ରେ ଆମର ରହିବାର ବ୍ୟବସ୍ଥା ହୋଇଥିଲା । ଆମେ ବିମାନ ବନ୍ଦରରୁ ସିଧାସଳଖ ହୋଟେଲକୁ ଯାଇଥିଲୁ । ହୋଟେଲରେ ଭାରତର କନସଲ ଜେନେରାଲ ବାଲାକ୍ରିଷ୍ଣନ ଆମକୁ ଚା'ପାନରେ ଆପ୍ୟାୟିତ କରିବା ସହିତ ତାଙ୍କ ଘରେ ରାତ୍ରୀଭୋଜନ କରିବାକୁ ଆମନ୍ତ୍ରଣ କରିଥିଲେ ।

ତା'ପରେ 'ଫ୍ରି ଫର୍ ଅଲ' । ଅର୍ଥାତ ତିନିଘଣ୍ଟା ପାଇଁ ଯେ ଯୁଆଡ଼େ ବୁଲିଲେ । ମାର୍କେଟରୁ ଅନେକ ବନ୍ଧୁ କ୍ୟାମେରା କିଣିଥିଲେ । ମୁଁ ମଧ୍ୟ ଗୋଟିଏ ଅଟୋଫୋକସ-କାନନ କ୍ୟାମେରା କିଣିଥିଲି ।

ଲକ୍ଷ୍ନୌରୁ ଆସିଥିବା କିଛି ବନ୍ଧୁ କ୍ୟାମେରା ନକିଣି ଅଟୋମେଟିକ୍ ରିଭଲଭର କିଣିଲେ । ସେଥିପାଇଁ ସେମାନେ ଆବଶ୍ୟକ ଲାଇସେନ୍ସ ସାଙ୍ଗରେ ନେଇଥିଲେ ।

ପ୍ରଥମେ ମୋ ମନରେ କୌତୁହଳ ଜାତ ହୋଇଥିଲା । ସେମାନେ ରିଭଲଭର କାହିଁକି କିଣିଲେ ? ପରେ ଖବର ନେଇ ବୁଝିଲି, ସେମାନେ ଫ୍ରାଙ୍କଫର୍ଟରୁ ପାଞ୍ଚ ହଜାର ଟଙ୍କାରେ କିଣିଥିବା ରିଭଲଭରକୁ ଲକ୍ଷ୍ନୌରେ ଅତି କମ୍‌ରେ ପଚାଶ ହଜାର ଟଙ୍କାରେ ବିକ୍ରୀ କରିଥିଲେ । ସେଥିରେ ସେମାନଙ୍କର ବିଦେଶଗସ୍ତର ସମସ୍ତ ଖର୍ଚ୍ଚ ଉଠିଯାଇଥିଲା ।

ମାର୍କେଟରୁ ଫେରିଲା ବାଟରେ ଭାରତୀୟ ରେଷ୍ଟୁରାଣ୍ଟ 'ହୋଟେଲ ମହାରାଜା'ରେ ତୃପ୍ତିକର ଭୋଜନ କଲୁ । ଉପର ଓଳି କିଛି କାର୍ଯ୍ୟକ୍ରମ ନଥିଲା । ଖୁସିରେ ମାର୍କେଟରେ ବୁଲାବୁଲି ହେଲା ।

କନସଲ ଜେନେରାଲ ବାଲକ୍ରିଷ୍ଣନଙ୍କ ଘରକୁ ରାତ୍ରୀଭୋଜନ ପାଇଁ ଯିବା ପୂର୍ବରୁ ଆମେ ସେଠାକାର ପ୍ରେସ୍ କ୍ଲବକୁ କିଛି ସମୟ ପାଇଁ ଯାଇଥିଲୁ । ସେଠାରେ ପ୍ରେସ୍ ବନ୍ଧୁମାନଙ୍କ ସହିତ ଆଲୋଚନା ବେଳେ ପ୍ରେସ୍ ସ୍ୱାଧୀନତା କ'ଣ ସେ ସମ୍ପର୍କରେ ଆମର ଧାରଣା ହୋଇଥିଲା ।

ଆମେ ପାଖାପାଖି ଦଶଟା ବେଳେ ଶ୍ରୀ ବାଲକ୍ରିଷ୍ଣନଙ୍କ ଘରେ ପହଞ୍ଚିଲୁ । ଶ୍ରୀ ବାଲକ୍ରିଷ୍ଣନ ଓ ତାଙ୍କ ପତ୍ନୀ ଲକ୍ଷ୍ମୀ ଦେବୀ ଆମ ପାଇଁ ଅପେକ୍ଷା କରିଥିଲେ । ପହଞ୍ଚିଲା ମାତ୍ରେ ଆମକୁ ଘରକୁ ପାଛୋଟି ନେଲେ ।

ତାଙ୍କ ବଙ୍ଗଳାର ଡ୍ରଇଂ ରୁମ୍‌ଟି ଅପେକ୍ଷାକୃତ ବଡ଼ । କିନ୍ତୁ ଚବିଶିଜଣ ଅତିଥି ବସିବା ପାଇଁ ଯଥେଷ୍ଟ ନଥିଲା । ସେଥିପ୍ରତି କାହାର ନଜର ନଥିଲା । ଘରେ କ'ଣ କ'ଣ ଭାରତୀୟ ଖାଦ୍ୟ ମିଳିପାରିବ, ସେ ବିଷୟରେ ଚର୍ଚ୍ଚା ଆରମ୍ଭ ହୋଇଗଲା ।

ବାଲକ୍ରିଷ୍ଣନ୍‌ଙ୍କ ପତ୍ନୀ, ଆମର ଭାରତୀୟ ଖାଦ୍ୟ ପ୍ରତି ଥିବା ଦୁର୍ବଳତାକୁ ଠଉରେଇ ପାରିଥିଲେ । ତାଙ୍କ ଘରେ ଥିବା ବିଭିନ୍ନ ପ୍ରକାରର ମିକ୍ସଚର ଓ ବିସ୍କୁଟ୍ ଡବା ଆଣି ଆମ ଆଗରେ ଥୋଇଦେଲେ ।

ଜଣେ ଉଚ୍ଚପଦସ୍ଥ କୂଟନୀତିଜ୍ଞଙ୍କ ପତ୍ନୀ ହିସାବରେ ଅତିଥିମାନଙ୍କୁ ଖୁଆଇବାରେ ତାଙ୍କର ଦୀର୍ଘଦିନର ଅଭିଜ୍ଞତା ଥିଲା । ସେ ଭାବିଥିଲେ ଆମେ ସବୁ ବାହାର ଅତିଥିଙ୍କ ଭଳି ମାପିଚୁପି ଖାଇବୁ ।

କିନ୍ତୁ ଅଳ୍ପ ସମୟ ପରେ ତାଙ୍କ ଭାବନା ଭୁଲ୍ ବୋଲି ପ୍ରମାଣିତ ହେଲା । କେଇ ମିନିଟ୍ ବ୍ୟବଧାନରେ ସବୁ ଡବା ସଫା ହୋଇଗଲା । ଏତେବଡ଼ ଅଫିସରଙ୍କ ଘର । ବିଦେଶ ରାଷ୍ଟ୍ର । ସେଠାରେ ଆଦବକାଇଦା ଉପରେ ଅଧିକ ଧ୍ୟାନ ଦେବା କଥା । ହେଲେ କିଛିକ୍ଷଣ ପାଇଁ ଆମେ ସେସବୁ ଭୁଲିଯାଇଥିଲୁ ।

ବାଲକ୍ରିଷ୍ଣନ୍‌ଙ୍କ ଘରୁ ଆସି ହୋଟେଲରେ ପହଞ୍ଚିଲା ବେଳକୁ ଭାରତୀୟ ସମୟ ପ୍ରାୟ ରାତି ଗୋଟାଏ ହୋଇଯାଇଥିଲା । ଘଣ୍ଟାରେ ତାରିଖ ବଦଳି ଯାଇଥିଲା ।

ଆମେ ସବୁ ଗାଡ଼ିରୁ ଓହ୍ଲାଇ ସିଧା ନିଜ ନିଜ କୋଠରୀକୁ ଚାଲିଗଲୁ । ଅନ୍ୟଦିନ ଭଳି ସେଦିନ ରାତିରେ ଲାଉଞ୍ଜରେ ଆମର ଆଉ ବୈଠକ ହୋଇନଥିଲା । ଦିନ ତମାମ୍ ଖୁବ୍ ବୁଲାବୁଲି ସାଙ୍ଗକୁ ରାତିରେ ତୃପ୍ତିକର ଭୋଜନ ପରେ ଶାନ୍ତିରେ ନିଦ ହୋଇଯାଇଥିଲା ।

ପରଦିନ ସକାଳୁ ଆମର ସ୍ୱିଜରଲାଣ୍ଡ ଯିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ସେଥିପାଇଁ ଇଚ୍ଛା ନଥିଲେ ବି ସକାଳୁ ଶୀଘ୍ର ଉଠିବାକୁ ପଡ଼ିଥିଲା ।

ଫ୍ରାଙ୍କଫର୍ଟରୁ ବାହାରି ଆମେ ଜୁରିଚ୍‌ରେ ପହଞ୍ଚିଲା ବେଳକୁ ଭାରତୀୟ ସମୟ ରାତି ନଅଟା ହୋଇଯାଇଥିଲା । ୟୁରୋପର ଗୋଟିଏ ଦେଶରୁ ଆଉ ଗୋଟିଏ ଦେଶକୁ ସ୍ଥଳପଥରେ ଯିବାକୁ ହେଲେ 'ଅଟୋବାନ୍'ରେ ଯିବାକୁ ପଡେ ।

ରାସ୍ତାରେ ଯିବାପାଇଁ ଚାରୋଟି ଲେନ୍ ଓ ଫେରିବା ପାଇଁ ଆଉ ଚାରୋଟି ଲେନ୍ । ଆମଭଳି ଗୋଟିଏ ରାସ୍ତାରେ ସବୁ ରକମର ଗାଡ଼ି ଯିବାଆସିବା କରିବାର ବ୍ୟବସ୍ଥା ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ନଥାଏ ।

ଗାଡ଼ିଚାଳମାନଙ୍କ ପାଇଁ ସେସବୁ ରାଷ୍ଟ୍ରମାନଙ୍କରେ ଦୁଇଟି କଟକଣା ଥିଲା । ଘଣ୍ଟା ପ୍ରତି ପଚାଶ କିଲୋମିଟର ତଳକୁ ଗାଡ଼ି ଚଳାଇବା କିମ୍ବା ଗାଡ଼ି ଚଳାଇବା ସମୟରେ ହର୍ଣ୍ଣ ବଜାଇବାକୁ ନିଷିଦ୍ଧ କରାଯାଇଥିଲା ।

କେବଳ ହସ୍‌ପିଟାଲର ଆମ୍ବୁଲାନ୍ସ ଏବଂ ପୁଲିସ୍ ଗାଡ଼ିକୁ ରାସ୍ତାରେ ହର୍ଣ୍ଣ ବଜାଇବାକୁ ଅନୁମତି ଦିଆଯାଇଥିଲା ।

ୟୁରୋପୀୟ ରାଷ୍ଟ୍ରମାନଙ୍କରେ ଲାଇଟ୍ ସିଗ୍‌ନାଲ ମାଧ୍ୟମରେ ଗାଡ଼ିର ଗତିବିଧିକୁ ଜାଣିହୁଏ । ୟୁରୋପ ମହାଦେଶରେ କେବଳ ଇଂଲଣ୍ଡକୁ ଛାଡ଼ିଦେଲେ ଅନ୍ୟ ରାଷ୍ଟ୍ରମାନଙ୍କରେ ଗାଡ଼ି ସବୁ ବାଁ ପାଖରେ ପାସ୍ କରେ । ରାସ୍ତାର ଚାରୋଟି ଲେନ୍ ମଧ୍ୟରୁ ଯିଏ ଯେତେ ସ୍ପିଡ୍‌ରେ ଗାଡ଼ି ଚଳାଇବାକୁ ଚାହାନ୍ତି ସେହି ଅନୁଯାୟୀ ନିଜର ବାଁ ପଟ ଲେନ୍ ନେଇଥାନ୍ତି ।

ଫ୍ରାଙ୍କଫର୍ଟରୁ ଆସିଲା ବେଳେ ମୁଁ ଲକ୍ଷ୍ୟ କରୁଥିଲି ଆମ ଗାଡ଼ିର ହାରାହାରି ବେଗ ଘଣ୍ଟାକୁ ପ୍ରାୟ ଶହେ କିଲୋମିଟର ରହୁଥିଲା । ରାସ୍ତାର ସ୍ଥିତି ଖୁବ୍ ଭଲ ଥିଲା । ଆମେ ଏୟାରକଣ୍ଡିସନ୍ ଗାଡ଼ିରେ ଯାଉଥିବାରୁ ଯାତ୍ରାର କଷ୍ଟ ଜଣାପଡୁନଥିଲା ।

ଗାଡ଼ିରେ ବସିଲାବେଳେ ମୁଁ ଭାବୁଥିଲି, ଆମ ଜୀବଦ୍ଦଶାରେ କ'ଣ ଆମର ଏମିତି ରାସ୍ତା କି କୋଚ୍ ସାଧାରଣ ଯାତ୍ରା ପାଇଁ ଉପଲବ୍ଧ ହୋଇପାରିବ ନାହିଁ ?

କଟକରୁ ଭୁବନେଶ୍ୱରର ଦୂରତ୍ୱ ମାତ୍ର ପଚିଶି କିଲୋମିଟର । ସେତିକି ରାସ୍ତା ବସ୍‌ରେ ଯିବାପାଇଁ କିପରି ଘଣ୍ଟାକରୁ ଅଧିକ ସମୟ ଲାଗେ, ସେକଥା ମନେ ପଡ଼ିବାରୁ ଲଜ୍ଜା ଲାଗିଲା ।

ଜୁରିଚ୍ ସହରର ଅନ୍ୟତମ ସୌଖୀନ ହୋଟେଲ 'ହଲିଡେ ଇନ୍'ରେ ଆମର ରହିବାର ବ୍ୟବସ୍ଥା ହୋଇଥିଲା ।

ଆମର ସଫଳ ଯାତ୍ରାପାଇଁ ଯାହା ଯାହା ଆବଶ୍ୟକ, ସୀତା ଟ୍ରାଭେଲ୍‌ସ ପକ୍ଷରୁ ସେସବୁ ବନ୍ଦୋବସ୍ତ କରାଯାଇଥିଲା ।

ଆମେ ହୋଟେଲରେ ପହଞ୍ଚି ଅଭ୍ୟର୍ଥନା କକ୍ଷରୁ ଚାବି ସଂଗ୍ରହ କରି ନିଜ ନିଜ ରୁମ୍‌ରେ ବ୍ୟାଗେଜ୍‌ପତ୍ର ରଖି ସିଧା ଚାଲିଲୁ ଡାଇନିଂ ହଲ୍‌କୁ । ହୋଟେଲରେ ୟୁରୋପୀୟ ଖାଦ୍ୟ ସାଙ୍ଗକୁ ଅନ୍ୟାନ୍ୟ ଖାଦ୍ୟ ଥିବାରୁ ଆମ ପାଇଁ ବିଶେଷ ଅସୁବିଧା ହୋଇନଥିଲା ।

ପରଦିନ ସକାଳେ ଜଳଖିଆ ପର୍ବ ଶେଷ କରି ଆମେ ବାହାରି ପଡ଼ିଲୁ ଲୁଜେରନ୍ ସହର ଅଭିମୁଖେ । ଆମ୍‌ଷ୍ଟରଡାମ୍‌ରୁ ଗାଡ଼ି ଓ ଡ୍ରାଇଭର ଆମ ସାଙ୍ଗରେ ରହିଥିଲେ । ମାତ୍ର ଗାଇଡ୍ ବଦଳି ଯାଇଥିଲେ । ମେରୀଙ୍କୁ ଆମେ ଫ୍ରାଙ୍କଫର୍ଟରୁ ବିଦାୟ ଦେଇଥିଲୁ ।

ମାତ୍ର କେଇଦିନର ରହଣି ମଧ୍ୟରେ ତାଙ୍କ ସହିତ କେଜାଣି କାହିଁକି ଏକ ପ୍ରକାର ଆତ୍ମୀୟତା ବଢ଼ିଯାଇଥିଲା । ସେ ଆମଠାରୁ ବିଦାୟ ନେଲାବେଳେ ତାଙ୍କ ଆଖି ଛଳଛଳ ହୋଇଯାଇଥିଲା ।

ଆମ ଭିତରୁ ମଧ୍ୟ କେତେକ କିଛି ମୁହୂର୍ତ୍ତ ପାଇଁ ଭାବପ୍ରବଣ ହୋଇଯାଇଥିଲେ । ସୀତା ଟ୍ରାଭେଲ୍‌ସ ପକ୍ଷରୁ ମେରୀଙ୍କ ପ୍ରାପ୍ୟ ପ୍ରଦାନ କରାଯାଇଥିଲା । କିନ୍ତୁ ସୌଜନ୍ୟ ଦୃଷ୍ଟିରୁ ଆମେ ତାଙ୍କୁ ଉପଢୌକନ ପ୍ରଦାନ କରିଥିଲୁ ଏବଂ ସେ ତାକୁ ଆଦରରେ ଗ୍ରହଣ କରିଥିଲେ ।

ଲୁଜେରନ୍‌ରେ ଥିବା ଘଣ୍ଟା କାରଖାନା ପୃଥିବୀ ପ୍ରସିଦ୍ଧ । ଆଗକାଳରେ ଆମଦେଶରେ ଯେଉଁ 'ଓମେଗା', 'ସାଇମା', 'ଟି-ସଟ୍' ଇତ୍ୟାଦି ଘଣ୍ଟାସବୁ ମିଳୁଥିଲା, ସେସବୁ ଏଇଠି ତିଆରି ହେଉଥିଲା ।

ଦେଶ ସ୍ୱାଧୀନ ହେବାପରେ ସେସବୁ ଘଣ୍ଟାର ଦାମ୍ ବୃଦ୍ଧି ପାଇଲା । ଆମ ଦେଶରେ ନୂଆ ନୂଆ ଘଣ୍ଟା ମଧ୍ୟ ତିଆରି ହୋଇ ବଜାରକୁ ଆସିଲା । ଆଗେ ସମ୍ଭ୍ରାନ୍ତ ପରିବାରର ବାହାଘରମାନଙ୍କରେ ଓମେଗା ୱାଚ୍, ଗ୍ରୀନ୍‌ମଡେଲ୍ ରାଲେ ସାଇକେଲ ଓ ଫିଲିପ୍ସ ରେଡିଓ ଯୌତୁକ ଆକାରରେ ଦିଆଯାଉଥିଲା ।

ଲୁଜେରନ୍ ସହରରେ ହାତବନ୍ଧା ଘଣ୍ଟା ବ୍ୟତୀତ ଘରର ସମସ୍ତ ବ୍ୟବହାର୍ଯ୍ୟ ପଦାର୍ଥରେ ସାନ ବଡ଼ ଘଣ୍ଟା ଖଞ୍ଜାଯାଇଥିଲା । ଏପରିକି ସ୍ତ୍ରୀଲୋକଙ୍କ ଚୁଡ଼ିରେ ମଧ୍ୟ ଘଣ୍ଟା ଲାଗିଥିଲା । ମୁଁ ସର୍ବନିମ୍ନ ତିନି ଡଲାର ଦେଇ ଘଣ୍ଟାଟିଏ କିଣିଥିଲି । ସେ ଘଣ୍ଟା ଦୁଇବର୍ଷ ଚାଲି ବନ୍ଦ ହୋଇଯାଇଥିଲା । ସେ ଘଣ୍ଟାର ମରାମତି ହେବାର ବ୍ୟବସ୍ଥା ନଥିଲା ।

ଜୁରିଚ୍ ସହରରେ କେଇଘଣ୍ଟା କଟାଇ ଆମେ ଜେନେଭାକୁ ବାହାରିଲୁ । ଜେନେଭା ଯିବା ବାଟରେ ସୁଇଜରଲାଣ୍ଡ୍‌ର ରାଜଧାନୀ ବର୍ଣ୍ଣ ସହର ପଡ଼େ । ସେଠାରେ ସେ ଦେଶର ପାର୍ଲାମେଣ୍ଟ ଅବସ୍ଥିତ ।

ପାର୍ଲାମେଣ୍ଟ ଦେଖିବା ପାଇଁ ଆମ ମନରେ ଖୁବ୍ ଆଗ୍ରହ ଥିଲା । ତେବେ ମଧ୍ୟାହ୍ନଭୋଜନ ଶେଷକରି ପାର୍ଲାମେଣ୍ଟ ଦେଖିବୁ ନା ପ୍ରଥମେ ପାର୍ଲାମେଣ୍ଟ ବୁଲିସାରି ପରେ ମଧ୍ୟାହ୍ନଭୋଜନ କରିବୁ ସେଇକଥା ଉପରେ ଆଲୋଚନା କରୁକରୁ କିଛି ସମୟ ଡେରି ହୋଇଯାଇଥିଲା ।

ଆମେ ପାର୍ଲାମେଣ୍ଟ ହଲ୍ ପାଖରେ ପହଞ୍ଚିଲା ବେଳକୁ ସେଠାକାର ସମୟ ଅନୁସାରେ ଗୋଟାଏ ବାଜି ପାଞ୍ଚ ମିନିଟ୍ ହୋଇଯାଇଥିଲା । ଆମେ ଭାବିଥିଲୁ ଯାହାହେଉ, ଠିକ୍ ସମୟରେ ପହଞ୍ଚିଯାଇଛୁ, ପାର୍ଲାମେଣ୍ଟ ଭିତରେ ବୁଲାବୁଲି ସାରି ଦି'ଟାବେଳକୁ ଲଞ୍ଚ୍ ଖାଇହେବ ।

କିନ୍ତୁ ହାୟ ! ଆମେ ପହଞ୍ଚିବାର ମାତ୍ର ପାଞ୍ଚ ମିନିଟ୍ ପୂର୍ବରୁ ପାର୍ଲାମେଣ୍ଟ ହଲ୍‌ର ମେନ୍ ଗେଟ୍‌ଟି ବନ୍ଦ ହୋଇଯାଇଥିଲା । ସେଠାରେ ଥିବା ସିକ୍ୟୁରିଟି ଗାର୍ଡଙ୍କ ମୁଖ୍ୟ ଆମ ସମ୍ପର୍କରେ ଆଗରୁ କୌଣସି ଖବର ପାଇନଥିଲେ । ଆମକୁ ଦେଖି ତାଙ୍କଠାରେ କୌଣସି ପ୍ରତିକ୍ରିୟା ପ୍ରକାଶ ପାଇନଥିଲା ।

ତାଙ୍କର ବୟସ ପ୍ରାୟ ଷାଠିଏ ହେବ । ହୃଷ୍ଟପୁଷ୍ଟ ଚେହେରା । ଦେଖିଲେ ବୟସ ସୀମା କଳି ହେଉନଥିଲା ।

ଆମକୁ ଦେଖି ଆମର ଉଦ୍ଦେଶ୍ୟ ସମ୍ପର୍କରେ ପଚାରିଲେ । ଆମେ ପାର୍ଲାମେଣ୍ଟ ଭବନ ଦେଖିବାକୁ ଆସିଛୁ ବୋଲି କହିଲାରୁ ସେ ରୋକ୍‌ଠୋକ୍ ଭାବରେ କହିଲେ, "ମଧ୍ୟାହ୍ନ ବିରତି ସମୟ ହୋଇଥିବାରୁ ଭିତରକୁ କାହାରିକୁ ଛାଡ଼ିବା ପାଇଁ ସେ ଅକ୍ଷମ ।"

ଆମର ଯୁକ୍ତି ଥିଲା, ମାତ୍ର ପାଞ୍ଚମିନିଟ୍ ସମୟ ଡେରି ହୋଇଛି, ଆମକୁ ଭିତରକୁ ଛାଡ଼ିଦେଲେ କାହାର କ'ଣ ଅସୁବିଧା ହୋଇଯିବ ? ଏପରି ଯୁକ୍ତି ତାଙ୍କୁ ସନ୍ତୁଷ୍ଟ କରିପାରି ନଥିଲା ।

ସେ ବିସ୍ଫାରିତ ନେତ୍ରରେ ଆମ ଆଡ଼କୁ ଟିକିଏ ଚାହିଁଲେ । ତାଙ୍କ ମୁଖମଣ୍ଡଳ ଗମ୍ଭୀର ଜଣାପଡୁଥିଲା । ନିଜର ପ୍ରତିକ୍ରିୟାକୁ ପ୍ରକାଶ ନକରି ସେ କହିଲେ, "କ୍ଷମା କରିବେ, ମଧ୍ୟାହ୍ନ ବିରତି ସମୟରେ ଗେଟ୍ ଖୋଲିବାର ଅଧିକାର ମୋର ନାହିଁ । ଆପଣମାନେ ଅପରାହ୍ନ ତିନିଟାରେ ଆସିପାରନ୍ତି ।"

ଆମ ସଭାପତି ତାଙ୍କୁ ବୁଝାଇବା ପାଇଁ ଚେଷ୍ଟା କରିଥିଲେ । ତାଙ୍କର ବକ୍ତବ୍ୟ ଥିଲା, "ଦେଖନ୍ତୁ, ଆମେସବୁ ସୁଦୂର ଭାରତବର୍ଷରୁ ଆସିଛୁ । ଆମ ହାତରେ ସମୟ ସୀମିତ । ଦୁଇଘଣ୍ଟା ପରେ ଆଉଥରେ ଏଠାକୁ ଆସିବା ଆମ ପକ୍ଷରେ ସମ୍ଭବ ନୁହେଁ । ତେଣୁ ଆପଣଙ୍କ ଦେଶର ପାର୍ଲାମେଣ୍ଟ ଦେଖିବାରୁ ଆମକୁ ବଞ୍ଚିତ କରନ୍ତୁ ନାହିଁ । କାରଣ ଏହା ହୁଏତ ଆମପାଇଁ ଶେଷ ସୁଯୋଗ ହୋଇପାରେ ।"

ଆମର ଧାରଣା ଥିଲା ବୋଧହୁଏ ଶ୍ରୀ ରାଓଙ୍କ ଅନୁରୋଧକୁ ଗ୍ରହଣ କରି ସେ କୋହଳ ମନୋବୃତ୍ତି ପୋଷଣ କରିବେ । ସେ କିନ୍ତୁ ନଛୋଡ଼ବନ୍ଧା । ସେ ପାଲଟା ଯୁକ୍ତି ଦର୍ଶାଇ କହିଥିଲେ, "କ'ଣ ହେଲା ସେଇଠୁ ?"

ଏ ଦୁନିଆରେ ବହୁ ଲୋକ ବହୁ ଜାଗା ଦେଖିପାରୁ ନାହାନ୍ତି । ମୁଁ ଜଣେ ବୃଦ୍ଧ ବ୍ୟକ୍ତି । ଆପଣଙ୍କ ଦେଶରେ ଥିବା କାରୁକାର୍ଯ୍ୟ ଖଚିତ ମାର୍ବଲ୍ ପ୍ରସ୍ତର ନିର୍ମିତ ବିଶ୍ୱବିଖ୍ୟାତ ତାଜମହଲ ମୁଁ ଦେଖିନାହିଁ । ମୋ ଭାଗ୍ୟରେ ହୁଏତ ତାହା ଦେଖିବା ସମ୍ଭବ ହୋଇନପାରେ । ତାଜମହଲ ନଦେଖି ମୁଁ ମଧ ସଂସାରରୁ ବିଦାୟ ନେଇଯାଇପାରେ ।

ମୁଁ ଅତ୍ୟନ୍ତ ଦୁଃଖିତ ଯେ, ଆପଣମାନଙ୍କ ଅନୁରୋଧ ରକ୍ଷା କରିବା ମୋ ପକ୍ଷରେ ସମ୍ଭବ ନୁହେଁ ।" ବୃଦ୍ଧଙ୍କ ଯୁକ୍ତି ଆଗରେ ଆମେ ହାର୍ ମାନି ଯାଇଥିଲୁ । ସମୟାନୁବର୍ତ୍ତୀ ହୋଇ ନଥିବାରୁ ଆମକୁ ଲଜ୍ଜିତ ହେବାକୁ ପଡିଥିଲା ।

ଜେନେଭା ସହରର ହୋଟେଲ 'ଦର୍ଶନା'ରେ ଆମର ରହିବାର ବ୍ୟବସ୍ଥା ହୋଇଥିଲା । ଆମେ ହୋଟେଲରେ ପହଞ୍ଚିଲା ବେଳକୁ ଚାରିଟା ବାଜି ଯାଇଥିଲା । ସନ୍ଧ୍ୟାହେବା ପାଇଁ ପାଞ୍ଚଘଣ୍ଟା ବାକିଥିଲା । ଶୀତତାପନିୟନ୍ତ୍ରିତ କୋଚ୍‌ରେ ଯାଇଥିଲେ ମଧ ଶରୀର ଅବଶ ଲାଗୁଥିଲା । କିନ୍ତୁ ଉପରୁ ନିର୍ଦ୍ଦେଶ ଆସିଲା, "ଯେତେ ବୁଲିବ, ସେତେ ଦେଖିବ । ଶୋଇଲା ପୁଅର ଭାଗ ନାହିଁ ।"

'ଜେନେଭା ସହରରେ ରହିବା ଭିତରେ ଆମେ ସେଠାରେ ଥିବା ଜାତିସଂଘ କାର୍ଯ୍ୟାଳୟକୁ ଯାଇଥିଲୁ । ଜାତିସଂଘ ସଦର କାର୍ଯ୍ୟାଳୟର ଗୋଟିଏ ହଲ୍‌ରେ ଆମର ବସିବାର ବନ୍ଦୋବସ୍ତ ହୋଇଥିଲା ।

ଯେଉଁ ହଲ୍‌ରେ ବିଶ୍ୱର ବିଭିନ୍ନ ରାଷ୍ଟ୍ରର ପ୍ରତିନିଧିମାନେ ବସି ଆନ୍ତର୍ଜାତିକ ସମସ୍ୟା ସମ୍ପର୍କରେ ଆଲୋଚନା କରୁଥିଲେ, ସେଠାରେ ଆମେ ଯାଇ ଦିନେ ବସିବୁ, ସେକଥା ଚିନ୍ତା ବାହାରେ ଥିଲା । ନିଜ ପଇସାରେ ବିଦେଶ ଗଲେ ବି ଜାତିସଂଘ ଦପ୍ତର ହତା ଭିତରେ ପ୍ରବେଶ କରିବା ଏକ ଅସମ୍ଭବ ବ୍ୟାପାର । କିନ୍ତୁ ପରମେଶ୍ୱରଙ୍କର ଅପାର କରୁଣା । ଅସମ୍ଭବ ଘଟଣା ଆମ ପାଇଁ ସମ୍ଭବରେ ପରିଣତ ହୋଇଥିଲା ।

ଭାରତୀୟ ରାଷ୍ଟ୍ରଦୂତ ଶ୍ରୀ ଦୁବେ ଆମକୁ ମଧ୍ୟାହ୍ନ ଭୋଜନରେ ଆପ୍ୟାୟିତ କରିଥିଲେ । ଶ୍ରୀ ଦୁବେଙ୍କ ପ୍ରଚେଷ୍ଟା ଫଳରେ ଆମ ପାଇଁ ଭାରତୀୟ ଖାଦ୍ୟ ପ୍ରସ୍ତୁତ ହୋଇଥିଲା । ଫ୍ରାଏଡ ରାଇସ, ଡାଲଫ୍ରାଏ, ଚିକେନ ବଟର ମସଲା ସାଙ୍ଗକୁ ଫୁଲକୋବି ଫ୍ରାଏ, ସାଲାଡ ଓ ଦହି । ତୃପ୍ତିକର ଭୋଜନ । ଶ୍ରୀ ଦୁବେ ଆମ ସାଙ୍ଗରେ ଏକତ୍ର ଭୋଜନ କରିଥିଲେ ।

ଅପରାହ୍ନ ତିନିଟାରେ ବିଶ୍ୱ ଶ୍ରମ ସଂଗଠନ (ଇଣ୍ଟରନ୍ୟାସନାଲ ଲେବର ଅର୍ଗାନାଇଜେସନ)ର ଡେପୁଟି ଡାଇରେକ୍ଟର ଜେନେରାଲଙ୍କ ସହିତ ସାକ୍ଷାତ ଆଲୋଚନା ପାଇଁ ସମୟ ଧାର୍ଯ୍ୟ ହୋଇଥିଲା ।

ଆମେ ମଧ୍ୟାହ୍ନ ଭୋଜନ ଶେଷକରି ଆଉ ବାହାରକୁ ନଯାଇ ସିଧା ତାଙ୍କ ଦପ୍ତରକୁ ଯାଇଥିଲୁ । ସେଠାରେ ବିଭିନ୍ନ ବିଷୟରେ ଆଲୋଚନା ହୋଇଥିଲା ।

ବିଶେଷକରି ଭାରତବର୍ଷରେ ଶ୍ରମିକମାନଙ୍କର ସ୍ଥିତାବସ୍ଥା, ସେମାନଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ ଦିଗରେ ସରକାରୀ ପଦକ୍ଷେପ ସମ୍ପର୍କରେ ସେ ଆମଠାରୁ ଜାଣିବାକୁ ଚାହିଥିଲେ ।

ଆଲୋଚନା ପ୍ରସଙ୍ଗରେ ଆନ୍ତର୍ଜାତିକସ୍ତରରେ କର୍ମଜୀବୀ ସାମ୍ବାଦିକ ସଙ୍ଗଠନକୁ କିପରି ଅଧିକ କ୍ରିୟାଶୀଳ କରାଯାଇପାରିବ ଏବଂ ସାମ୍ବାଦିକମାନଙ୍କ ସ୍ୱାର୍ଥରକ୍ଷା ଦିଗରେ ଆଇଏଲ୍‌ଓ କିଭଳି ପଦକ୍ଷେପ ନେଇପାରିବ ସେ ସମ୍ପର୍କରେ ଆମେ ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲୁ ।

ସେଦିନର ଦୀର୍ଘ ଏକଘଣ୍ଟା ଆଲୋଚନା ବେଶ୍ ମନଛୁଆଁ ହୋଇଥିଲା । ଆଲୋଚନା ଶେଷରେ ଚା'ପର୍ବ । ଆମେ ସେଠାରୁ ଫେରିବା ସମୟରେ ଡାଇରେକ୍ଟର ଜେନେରାଲ୍‌ଙ୍କ ଦପ୍ତର ପକ୍ଷରୁ ଆମ ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ଛୋଟିଆ ଉପହାର ଦିଆଯାଇଥିଲା ।

ତା'ପରଦିନ ଆମର ସୌନ୍ଦର୍ଯ୍ୟମୟୀ ନଗରୀ ପ୍ୟାରିସ୍ ଯାଇ ୟୁନେସ୍କୋ କର୍ମଶାଳାରେ ଅପରାହ୍ନ ଦୁଇଟାରେ ଯୋଗଦେବାର ଥିଲା ।

ଜେନେଭାରୁ ପ୍ୟାରିସ୍‌ର ଦୂରତା ଆଠଶହ କିଲୋମିଟର । ସକାଳୁ ଯାଇ ଅପରାହ୍ନ ଦୁଇଟା ପୂର୍ବରୁ କିପରି ପହଞ୍ଚିବୁ ଆମର ସେଥିରେ ସନ୍ଦେହ ଥିଲା । ମାତ୍ର ତାହା ସମ୍ଭବ ହୋଇଥିଲା । ଆମେ ସକାଳ ଛଅଟାରେ ବାହାରି ଅପରାହ୍ନ ଦୁଇଟା ବେଳକୁ ପ୍ୟାରିସରେ ପହଞ୍ଚି ଯାଇଥିଲୁ । ସାଙ୍ଗରେ ବ୍ରେକଫାଷ୍ଟ ପାଇଁ ଫଳ ଇତ୍ୟାଦି ନେଇଥିବାରୁ ବାଟରେ ଅଟକିବାକୁ ପଡ଼ିନଥିଲା ।

ପୂର୍ବରୁ କାର୍ଯ୍ୟକ୍ରମ ସ୍ଥିରୀକୃତ ହୋଇଥିବାରୁ ଆମକୁ ପାଛୋଟି ନେବାପାଇଁ ୟୁନେସ୍କୋ ଦପ୍ତରର କର୍ମଚାରୀମାନେ ଗେଟ୍ ପାଖରେ ଅପେକ୍ଷା କରିରହିଥିଲେ । ଗାଡ଼ିରୁ ଓହ୍ଲାଇଲା ମାତ୍ରେ ଆମକୁ ଗୋଟିଏ କନ୍‌ଫରେନ୍ସ କକ୍ଷକୁ ନେଇଗଲେ ।

ସେ କକ୍ଷ ଦେଖି ମୋ ଆଖି ଟେରା ହୋଇଯାଇଥିଲା । ଅତୀତରେ ଆଧୁନିକ ନିର୍ମାଣକୌଶଳରେ ନିର୍ମିତ ଏପରି ଏକ ବିରାଟ କକ୍ଷ ଦେଖିବାର ସୁଯୋଗ ଆମକୁ କେବେ ମିଳିନଥିଲା ।

ସେଦିନ ଆଲୋଚନାର ବିଷୟବସ୍ତୁ ଥିଲା, "ବିଶ୍ୱର ଶାନ୍ତି ପ୍ରକ୍ରିୟାରେ ଗଣମାଧ୍ୟମର ଭୂମିକା ।" ଆମର ଆଲୋଚନା ଚାଲିଥିଲା ବେଳେ ସୁଦୃଶ୍ୟ ପ୍ୟାକେଟ୍‌ରେ ଆମକୁ 'ୱାର୍କିଂ ଲଞ୍ଚ୍' ଯୋଗାଇ ଦିଆଯାଇଥିଲା ।

ବିଦେଶ ରାଷ୍ଟ୍ରମାନଙ୍କରେ ଅନ୍ୟ ଲୋକଙ୍କ ପାଇଁ ଖାଦ୍ୟ ପରିବେଷଣର ପ୍ରଥା ନଥିଲେ ମଧ୍ୟ ଆମ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ହୋଇଥିଲା । ପ୍ୟାକେଟ୍‌ରେ ଥିଲା ସାଣ୍ଡୱିଚ୍, ଚିକେନ୍‌ତନ୍ଦୁରୀ ଓ ଆଳୁ ଚିପ୍‌ସ ।

ମୁଁ ଦେଖିଲି, ବନ୍ଧୁମାନେ ଆନନ୍ଦରେ ସେସବୁ ଗର୍ଭସ୍ଥ କରୁଥିଲେ । ଆମେ କେଇଜଣ ସାକାହାରୀ ଥିବାରୁ ସାଣ୍ଡୱିଚ୍ ଓ ଆଳୁ ଚିପ୍‌ସରେ ସନ୍ତୁଷ୍ଟ ରହିବାକୁ ପଡ଼ିଥିଲା ।

ସେଦିନ ସନ୍ଧ୍ୟାରେ ଭାରତୀୟ ହାଇକମିଶନର ଏୟାରମାର୍ଶାଲ ଲତିଫ୍, କକ୍‌ଟେଲ ପାର୍ଟି ପାଇଁ ଆମକୁ ଆମନ୍ତ୍ରଣ କରିଥିଲେ । କକ୍‌ଟେଲର ଭାଷାନ୍ତର କଲେ ଗଞ୍ଜା କୁକୁଡାର ଲାଞ୍ଜକୁ ବୁଝାଏ । ଗଞ୍ଜାର ଲାଞ୍ଜରେ ଯେଭଳି ବିଭିନ୍ନ ରଙ୍ଗର ପରଥାଏ, ସେହିଭଳି କକ୍‌ଟେଲରେ ଭଳି ଭଳି ମଦର ସମିଶ୍ରଣ ହୋଇଥାଏ ।

ଆମ ଭିତରୁ ମଦ୍ୟପାନ କରୁଥିବା ବନ୍ଧୁମାନେ ଗ୍ଲାସ ଧରି ବସିଗଲେ । ସେମାନଙ୍କ ମନର ଆନନ୍ଦ କହିଲେ ନସରେ ।

କକ୍‌ଟେଲ ପାର୍ଟି ଶେଷ ହେଲାବେଳକୁ ସମୟ ରାତି ନଅଟା । ଭାବିଲି, ଯାହାହେଉ, ହୋଟେଲ ଫେରିଯାଇ ଆରାମ କରିହେବ । କିନ୍ତୁ ବିକ୍ରମ ରାଓ "ବର୍ତ୍ତମାନ ଇଭ୍‌ନିଂ-ଇନ୍-ପ୍ୟାରିସ୍ ଦେଖିବାକୁ ଯିବାକୁ ହେବ" ବୋଲି କହିବା ପରେ ମୋର ସପନ ଭାଙ୍ଗି ଯାଇଥିଲା ।

ସେ କହି ଚାଲିଥିଲେ, "ଜୀବନରେ ଖାଇପିଇ ଶୋଇବାକୁ ବହୁତ ସମୟ ମିଳିବ । ମାତ୍ର ଆଉଥରେ କ'ଣ ସନ୍ଧ୍ୟାରେ ପ୍ୟାରିସ୍‌ର ସୌନ୍ଦର୍ଯ୍ୟକୁ ଉପଭୋଗ କରିବାର ସୁଯୋଗ ମିଳିବ ? ତା'ଛଡ଼ା ଆମେ ପ୍ରତି ମୁହୂର୍ତ୍ତ ପାଇଁ ଯେଉଁ ଟଙ୍କା ଖର୍ଚ୍ଚ କରୁଛେ, ତା'ର ସମ୍ପୂର୍ଣ୍ଣ ଫାଇଦା ଉଠାଇବା ଦରକାର ।"

ସନ୍ଧ୍ୟାରେ ପ୍ୟାରିସ୍ ସହରର ଦୃଶ୍ୟ ଅତ୍ୟନ୍ତ ମନମୁଗ୍ଧକର ଥିଲା । ସେଥିପାଇଁ କୁହାଯାଏ "ଇଭିନିଂ-ଇନ୍ ପ୍ୟାରିସ୍" । ରଙ୍ଗ ବେରଙ୍ଗର ନିଅନ ଟ୍ୟୁବ୍ ଲାଇଟରେ ଦୋକାନ ବଜାରର ସାଇନ୍‌ବୋର୍ଡ ସବୁ ସଜା ହୋଇଥିଲା ।

ସେଦିନ ସନ୍ଧ୍ୟାର ଅନୁଭୂତି ଜୀବନରେ ଅଭୁଲା ହୋଇ ରହିଗଲା । ସନ୍ଧ୍ୟାରେ ପ୍ୟାରିସ୍ ସହରରେ ଖୁବ୍ ବୁଲାବୁଲି ହୋଇଥିଲା । ବାଟରେ ରାତ୍ରୀଭୋଜନ ସାରି ହୋଟେଲକୁ ଫେରିଲା ବେଳକୁ ରାତି ଦୁଇଟା ବାଜି ଯାଇଥିଲା ।

ସକାଳୁ ଉଠିଲା ବେଳକୁ ଆଖିରୁ ନିଦ ଛାଡି ନଥିଲା । କିନ୍ତୁ ନିତ୍ୟକର୍ମ ସାରି ଆଠଟା ବେଳକୁ ପ୍ରସ୍ତୁତ ହେବାକୁ କୁହାଯାଇଥିବାରୁ ଇଚ୍ଛା ନଥିଲେ ବି ସମୟ ଅନୁସାରେ ବାହାରିବାକୁ ପଡ଼ିଲା ।

ଆମର କୋଚ ଡ୍ରାଇଭର ଟମ୍ ଜଣେ ଫରାସୀ ଯୁବକ । ଅତ୍ୟନ୍ତ ଆତ୍ମ ଅଭିମାନୀ । ନିଜ ଦେଶର ଗୌରବ ଓ ପରମ୍ପରା ସମ୍ପର୍କରେ ଅନ୍ୟକୁ ଜଣାଇବାରେ ଟମ୍ ଖୁବ୍ ଆନନ୍ଦ ଅନୁଭବ କରୁଥିଲା ।

ଇଂରାଜୀ ଭାଷାରେ ବୁଝିଲା ଭଳିଆ ସେ କଥାବାର୍ତ୍ତା କରିପାରୁଥିଲା । ଆମେ ବାହାରିବା ପୂର୍ବରୁ ଟିମ୍ ଗୋଟିଏ ପ୍ରସ୍ତାବ ଦେଇ କହିଲା, ହୋଟେଲ ଡାଇନିଂ ହଲରେ ଜଳଖିଆ ନଖାଇ ସିନ୍ ନଦୀରେ ଭାସମାନ ନୌକାରେ ଜଳଖିଆ ଖାଇଲେ ଅଧିକ ଉପଭୋଗ୍ୟ ହେବ । ଆମେ ତା' ପରାମର୍ଶକୁ ଗ୍ରହଣ କଲୁ ।

କିଛି ସମୟ ଭିତରେ ଆମ କୋଚ୍ ଯାଇ ସିନ୍ ନଦୀର ଗୋଟିଏ ଘାଟ ନିକଟରେ ଲାଗିଲା । ଘାଟରେ ଅନେକ ସୁଦୃଶ୍ୟ ନୌକା ଥିଲା । ନୌକା କହିଲେ ବୋଧେ ଠିକ୍ ହେବ ନାହିଁ । କାରଣ ନୌକା କହିଲେ ଆମେ ମହାନଦୀରେ ପଥର କିମ୍ବା କାଠ ବୋଝେଇ ହୋଇ ଯାଉଥିବା ଡଙ୍ଗାକୁ ବୁଝୁ । ସେଥିରେ ଚାରିଜଣ ନାଉରିଆ ଝାଳନାଳ ହୋଇ କାତମାରି ଡ଼ଙ୍ଗାଟିକୁ ବୋହୁଥାନ୍ତି । ଶ୍ରମ ଦୃଷ୍ଟିରୁ ଦେଖିଲେ ଭାରବାହୀ ପଶୁ ଓ ସେମାନଙ୍କ ଭିତରେ କିଛି ଫରକ ନଥାଏ । ପେଟ ପୋଷିବା ପାଇଁ ଖରା, ଶୀତ, ବର୍ଷାକୁ ଖାତିର୍ ନକରି ସେମାନେ କାତମାରି ଚାଲିଥାନ୍ତି ।

କିନ୍ତୁ ସିନ୍ ନଦୀ ପାଖରେ ଯେଉଁ ନୌକା ସବୁ ଲାଗିଥିଲା, ସେସବୁ କେବଳ ସୁଦୃଶ୍ୟ ନଥିଲା, ଅତ୍ୟନ୍ତ ମନୋରମ ମଧ୍ୟ ଥିଲା ।

ନୌକାର ଲମ୍ୱ ପଚାଶ ଫୁଟ ଓ ଚଉଡ଼ା ପ୍ରାୟ ତିରିଶ ଫୁଟ । ଏକାଥରରେ ଅନ୍ୟୁନ ତିରିଶ ଜଣଙ୍କ ବସିବା ପାଇଁ ଜାଗା ଥିଲା । ଫାଇବର ଗ୍ଲାସ୍‌ରେ ତିଆରି ସେସବୁ ନୌକାର ବାଡ଼ କାଚରେ ତିଆରି । ଭିତରେ ନରମ ଗାଲିଚା ସାଙ୍ଗକୁ ଆରାମଦାୟକ ଚଉକି । ଭିତରଟା ପୁଣି ଏୟାର କଣ୍ଡିସନ୍ । ଗରମ ଦିନରେ ଥଣ୍ଡା ଓ ଶୀତ ଦିନେ ଗରମର ବ୍ୟବସ୍ଥା ।

ତା'ଛଡା ନୌକାର ବିଶେଷତ୍ୱ ଥିଲା ସେଥିରେ ଥିବା କ୍ୟାଣ୍ଟିନ୍ । ସେଠାରେ ପସନ୍ଦ ମୁତାବକ ଖାଦ୍ୟ ମିଳୁଥିଲା । କ୍ୟାଣ୍ଟିନ୍‌ରେ ସୁନ୍ଦରୀ ଷୋଡ଼ଶୀ ଯୁବତୀମାନେ ପରିଚାରିକା ଭାବରେ କାର୍ଯ୍ୟ କରୁଥିଲେ । କ୍ୟାଣ୍ଟିନ୍‌ରେ ଥଣ୍ଡା ପାନୀୟଠାରୁ ଆରମ୍ଭ କରି ଉତ୍କୃଷ୍ଟ ଧରଣର ସୋମରସ ମଧ୍ୟ ଉପଲବ୍ଧ ହେଉଥିଲା ।

ଆମେ ସଂଖ୍ୟାରେ ପଚିଶି ଜଣ ଥିବାରୁ ଆଉ କାହାକୁ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ଆମ କୋଚ୍ ଡ୍ରାଇଭର ଯାଇ ଗୋଟିଏ ଗ୍ରୁପ୍ ଟିକେଟ୍ କାଟି ଆଣିଲା । ତା'ପରେ ଆମ ନୌକା ଚାଲିବାକୁ ଆରମ୍ଭକଲା ।

ନୌକା ଯେଉଁ ଯେଉଁ ବାଟଦେଇ ଯାଉଥିଲା, ସେଠାକାର ସମସ୍ତ ତଥ୍ୟ ଉଭୟ ଫରାସୀ ଓ ଇଂରାଜୀ ଭାଷାରେ ଆମ୍ଭମାନଙ୍କୁ ବୁଝାଇ ଦିଆଯାଉଥିଲା । ସ୍ଥାନଗୁଡ଼ିକର ଐତିହ୍ୟ, ପରମ୍ପରା, ବିଶେଷତ୍ୱ ଏବଂ ପର୍ଯ୍ୟଟନ ଦୃଷ୍ଟିରୁ ସେସବୁର ଗୁରୁତ୍ୱ ବିଷୟ ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରାଯାଉଥିଲା ।

ମଝିରେ ମଝିରେ ମନଖୁସି ପାଇଁ ଇଂରାଜୀ ସଙ୍ଗୀତର ମୂର୍ଚ୍ଛନା ମଧ୍ୟ ମାଇକ୍ରୋଫୋନ୍‌ରେ ଆସୁଥିଲା । ଆମେ ସେଥିରେ ମଜ୍ଜି ଯାଇଥିଲାବେଳେ ପରିଚାରିକା ବ୍ରେକ୍ ଫାଷ୍ଟ ଆଣି ଟେବୁଲ୍ ମଝିରେ ରଖି ଦେଇଯାଇଥିଲେ ।

ବ୍ରେକ୍ ଫାଷ୍ଟରେ ଥିଲା ବ୍ରେଡ୍, ବଟର, ଓମ୍‌ଲେଟ୍, ବଏଲ୍‌ଡ ଏଗ୍, କର୍ଣ୍ଣଫ୍ଲେକ୍ସ, ମିଲ୍କ । ଚିକ୍ ଟୋଷ୍ଟ୍ ଏବଂ ବିଭିନ୍ନ ରକମର ଫଳ । ତା'ସାଙ୍ଗରେ ଆପେଲ୍, ଅରେଞ୍ଜ ଓ ଗ୍ରେପ୍ ଜୁସ୍ । ପାଖରେ ପ୍ଲେଟ ଓ ଚାମଚ୍ ଥୁଆହୋଇଥିଲା । ଯାହାର ଯାହା ଇଚ୍ଛା ହେଲା ସେସବୁ ନେଇ ଖାଇଲେ । ଯେଉଁମାନଙ୍କର ଚା' ଅଭ୍ୟାସ, ସେମାନେ କଣ୍ଟେନରରୁ ନେଇ ଆନନ୍ଦରେ ପାନ କଲେ ।

ଯା ଭିତରେ ଆମର ପ୍ରାୟ ତିନିଘଣ୍ଟା ସମୟ ବିତିଯାଇଥିଲା । କିନ୍ତୁ ଥଟ୍ଟାମଜ୍ଜା କଥାବାର୍ତ୍ତାରେ ସମୟ ଜଣା ପଡ଼ିନଥିଲା । ନୌକାର ଫେରିବାର ସମୟ ହୋଇଯାଇଥିଲା । ଆଉ ଅଧିକ ଅଗ୍ରସର ନହେବା ପାଇଁ ସ୍ଥିର କରି ଆମେ ପୂର୍ବ ସ୍ଥାନକୁ ଫେରିଲୁ ।

ନୌକା ବିହାର ଓ ଜଳଖିଆ ପର୍ବ ଶେଷକରି ଫେରିଲା ବେଳକୁ ସମୟ ବାରଟା ଟପି ଯାଇଥିଲା । ଖରାବେଳେ ଲଞ୍ଚ ଖାଇବାର ଚିନ୍ତା ନଥିଲା ।

ଆମେ ଲୁଭଆର୍ଟ ମ୍ୟୁଜିଅମ୍ ଦେଖିଯିବାକୁ ସ୍ଥିର କଲୁ । କିଛି ସମୟ ମଧ୍ୟରେ ଆମ କୋଚ୍ ଯାଇ ଲୁଭ୍ ମ୍ୟୁଜିଅମ୍ ସାମନାରେ ପହଞ୍ଚିଥିଲା ।

ଆରେ ବାପ୍‌ରେ ବାପ୍ ! କି ବିରାଟ କୋଠା ! ଭିତରକୁ ଯିବାପାଇଁ ଲୋକଙ୍କର ଲମ୍ବା ଧାଡ଼ି । ବିଭିନ୍ନ ଦେଶରୁ ଆସିଥିବା ପର୍ଯ୍ୟଟକମାନଙ୍କର ଭିଡ଼ ! ହେଲେ ହୋ-ହାଲ୍ଲା କିମ୍ବା ଘୋ-ଘା କିଛି ଶୁଣା ଯାଉନଥିଲା । ସବୁକଥା ଶୃଙ୍ଖଳିତ । ଆମେ କୋଚ୍‌ରୁ ଓହ୍ଲାଇ ପ୍ରଥମେ ମିଉଜିଅମ୍ ଅଫିସ୍‌କୁ ଯାଇ ଆମର ପରିଚୟ ପ୍ରଦାନ କଲୁ ।

କେଜାଣି କାହିଁକି ମିଉଜିଅମ୍‌ର ସୁପରିନ୍‌ଟେଣ୍ଡେଣ୍ଟ ଆମପ୍ରତି ସଦୟ ହୋଇ ଆମକୁ ତାଙ୍କ କୋଠରୀକୁ ନେଇଗଲେ । ସେଠାରେ ଚା'ରେ ଆପ୍ୟାୟିତ କଲେ । ଆମେ କିଛି କହିବା ପୂର୍ବରୁ ସେ ଲୁଭ୍ ମିଉଜିଅମ୍‌ର ଇତିବୃତ୍ତ ସମ୍ପର୍କରେ ବର୍ଣ୍ଣନା କରିଚାଲିଲେ ।

ତାଙ୍କ କଥାରୁ ଆମେ ଏତିକି ବୁଝିଲୁ ଯେ, ଫ୍ରାନ୍ସର ରାଜପରିବାରଙ୍କ ଦାନ ଫଳରେ କ୍ରମେ ଏହି ମିଉଜିଅମ୍ ସମୃଦ୍ଧ ହୋଇଥିଲା । ରାଜାମାନେ ବିଭିନ୍ନ ଦେଶ ଜୟ କରି ଯେଉଁସବୁ ପଦାର୍ଥ ସାଙ୍ଗରେ ନେଇଆସୁଥିଲେ, ସେସବୁକୁ ଏହି ମିଉଜିଅମ୍‌ରେ ରଖୁଥିଲେ ।

ଲୁକ ଆର୍ଟ ମ୍ୟୁଜିଅମରେ ବିଶ୍ୱର ବିଭିନ୍ନ ଦେଶର ଦୁଷ୍ପ୍ରାପ୍ୟ ପଦାର୍ଥ ସବୁ ସଂଗୃହୀତ କରାଯାଇ ରଖାଯାଇଥିଲା । ମ୍ୟୁଜିଅମରେ ଅନେକ ଗୁଡିଏ କକ୍ଷ ଥିଲା । ସବୁ କକ୍ଷ ଦେଖିବା ସମ୍ଭବପର ନଥିଲା । ଆମ ସାଙ୍ଗରେ ଥିବା ଗାଇଡ୍ ସବୁ କକ୍ଷକୁ ନଯାଇ ଆର୍ଟ ଗ୍ୟାଲେରୀକୁ ଯିବାକୁ ପରାମର୍ଶ ଦେଇଥିଲେ ।

ଆମେ ତରବରରେ ଦୁଇଟି କକ୍ଷରେ ଥିବା ଦର୍ଶନୀୟ ପଦାର୍ଥମାନ ଦେଖି ଆର୍ଟ ଗ୍ୟାଲେରୀରେ ପ୍ରବେଶ କଲୁ । ଆର୍ଟ ଗ୍ୟାଲେରୀ ପ୍ରବେଶ ପଥରେ ଥିବା ଗାଇଡ୍ ହଲ୍ ଭିତରେ ଥିବା ଛବିଗୁଡ଼ିକର ଫଟୋ ଉଠାଇବା ପାଇଁ ବାରଣ କରିଥିଲେ ।

ବିଶେଷକରି ଗ୍ୟାଲେରୀର ମଧ୍ୟ ଭାଗରେ ଥିବା ମୋନାଲିସା ଛବିର ଫଟୋ ନେବା ଉପରେ କଟକଣା ରହିଥିବା କଥା ସେ ଆମକୁ ସୂଚାଇ ଦେଇଥିଲେ । ଆର୍ଟ ଗ୍ୟାଲେରୀରେ କେଉଁ ଶିଳ୍ପୀଙ୍କର ଛବି ନଥିଲା, ସେକଥା କହିହେବ ନାହିଁ । ଶିଓଟୋ, ଫ୍ରାବିଆନୋ, ଆଞ୍ଜେଲିଓ, ବୋଟିସେଲି, ଟାବଟିଆନ ର୍ୟାଫେନ୍, ପୁସିନ୍ ହେନେ, ଡେଲ୍କ୍ରୋରୟ ଆଦି ବିଶ୍ୱବିଖ୍ୟାତ ଚିତ୍ରଶିଳ୍ପୀମାନଙ୍କର ତୂଳୀର ଯାଦୁରେ ତିଆରି ଛବିମାନ ସେଠାରେ ଭରପୂର ଥିଲା । ଆର୍ଟ ଗ୍ୟାଲେରୀରେ କିନ୍ତୁ ସେସବୁ ମଧ୍ୟରେ ବାରି ହୋଇପଡୁଥିଲା ଲିଓନାର୍ଡୋ ଦା' ଭିନିସ୍‌ଙ୍କ ଦ୍ୱାରା ଅଙ୍କିତ 'ମୋନାଲିସା' ଛବିଟି ।

ମୁଁ ମାତ୍ର ପାଞ୍ଚଫୁଟ ଦୂରରୁ ମୋନାଲିସା ଛବିକୁ ନିରୀକ୍ଷଣ କରିବାର ସୁଯୋଗ ପାଇଥିଲି । ମୋ ପାଖରେ ଅନ୍ୟ ବନ୍ଧୁମାନେ ମଧ୍ୟ ଥିଲେ । ସମସ୍ତେ ଅନୁଭବ କରୁଥିଲେ ସତେ ଯେପରି ମୋନାଲିସା ଛବିଟି କାନ୍‌ଭାସ୍ ଭିତରୁ ସମସ୍ତଙ୍କୁ ଚାହିଁ ସ୍ମିତହାସ୍ୟ କରୁଛି ।

ବାସ୍ତବରେ ମୋନାଲିସା ଛବିଟି ଦେଖି ଲିଓନାର୍ଡୋଙ୍କ ପାଖରେ ସ୍ୱତଃ ମୁଣ୍ଡ ନଇଁ ଯାଇଥିଲା । ଧନ୍ୟ ସେ ଶିଳ୍ପୀ । ଯିଏ କୋଟି କୋଟି ଦର୍ଶକଙ୍କ ମନରେ ଭରି ଦେଉଥିଲେ ଅଫୁରନ୍ତ ଆନନ୍ଦ ।

ଲୁଭ ମିଉଜିଅମ୍ ବୁଲିବା ପରେ ସେଦିନ ଆମର ଆଇଫେଲ୍ ଟାୱାରକୁ ଯିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ସେଥିପାଇଁ ଆମେ ତରବରରେ ଆର୍ଟ ଗ୍ୟାଲେରୀରୁ ବାହାରିଲୁ ।

ଦୂରରୁ ଆଇଫେଲ୍ ଟାୱାର ଯେପରି ଦେଖାଯାଉଥିଲା, ପାଖକୁ ଆସିଲାରୁ ତାକୁ ଆମେ ଭିନ୍ନ ଭାବରେ ଦେଖିଲୁ । ସାପ୍-ଦେ-ମାରସ୍ ଆଉ ସିନ୍ ନଦୀ ମଝିରେ ଦଣ୍ଡାୟମାନ ଏହି ଟାୱାରକୁ 'ପ୍ୟାରିସ୍‌ର ହୃତ୍‌ପିଣ୍ଡ' ବୋଲି କୁହାଯାଏ । ଆଇଫେଲ୍ ଟାୱାରକୁ ନିଜ ଆଖିରେ ନଦେଖିଲେ ତା'ର ବିଶେଷତ୍ୱ ସମ୍ପର୍କରେ ଲେଖାରୁ ବୁଝି ହୁଏ ନାହିଁ ।

ଆଇଫେଲ୍ ଟାୱାର ଉପରୁ ପ୍ୟାରିସ୍ ସହରର ଦୃଶ୍ୟ ଅତ୍ୟନ୍ତ ମନମୁଗ୍ଧକର । ଉପରୁ ସହରର ବଡ଼ବଡ଼ କୋଠାଘର ସବୁ ଦିଆସିଲି ଖୋଳ ଭଳି ଦେଖାଯାଉଥିଲା । ପାଖରେ ବହିଯାଉଥିବା ସିନ୍ ନଦୀ ଏକ ସର୍ପର ଭ୍ରମ ସୃଷ୍ଟି କରୁଥିଲା ।

ସହର ମଧ୍ୟରେ ଥିବା ବଗିଚା ସବୁ ଗୋଟିଏ ଗୋଟିଏ ସବୁଜ ଗାଲିଚା ପରି ଦେଖାଯାଉଥିଲା । ସହରର ପ୍ରଶସ୍ତ ରାସ୍ତା ସବୁ ସରୁ ଚଲା ରାସ୍ତା ଭଳି ପ୍ରତୀୟମାନ ହେଉଥିଲା । ଅଳ୍ପ ସମୟ ମଧ୍ୟରେ ଆମେ ଟାୱାରର ଶେଷ ପର୍ଯ୍ୟାୟରେ ପହଞ୍ଚିଗଲୁ । ସେଠାରେ କିଛି ସମୟ ରହି ଆମକୁ ଫେରିବାକୁ ପଡ଼ିଥିଲା ।

ସେଦିନ ସନ୍ଧ୍ୟାରେ ଆମେ ମେଟ୍ରୋ ଟ୍ରେନରେ ବୁଲିଥିଲୁ । ମେଟ୍ରୋ ଟ୍ରେନରେ ପ୍ୟାରିସ୍‌ର ସାଧାରଣଲୋକ ଚଳାଚଳ କରନ୍ତି । ସକାଳ ସାଢ଼େ ପାଞ୍ଚଟାରୁ ରାତି ବାରଟା ପର୍ଯ୍ୟନ୍ତ ମେଟ୍ରୋ ଅନବରତ ଚାଲୁଥାଏ । ଷ୍ଟେସନରେ ଲାଗିଥିବା ମେସିନ୍‌ରେ କଏନ ପୂରାଇଦେଲେ ଟିକଟ୍ ଆପେଆପେ ବାହାରି ଯାଉଥିଲା । ପ୍ରବେଶ ପଥ ଗେଟ୍‌ରେ ସେନସର ଲଗାଇ ଦିଆଯାଇଥିବାରୁ ଟିକଟ ନଥିବା ବ୍ୟକ୍ତି କିମ୍ବା ପୁରୁଣା ଟିକଟ ଧରି ଭିତରକୁ ପଶିବା ସମ୍ଭବ ନଥିଲା । ମାଟି ତଳେ ଥିବା ଷ୍ଟେସନମାନଙ୍କରେ ଆଲୋକ ଓ ପବନ ଆସିବା ପାଇଁ ଅତ୍ୟାଧୁନିକ ବୈଜ୍ଞାନିକ କୌଶଳ ଅବଲମ୍ବନ କରାଯାଇଥିଲା ।

ଆମର ବିଦେଶ ଭ୍ରମଣର ସମୟ ଶେଷ ହୋଇ ଆସୁଥିଲା । ଶେଷ ପର୍ଯ୍ୟାୟରେ ଲଣ୍ଡନ ସହରକୁ ଯିବାର ଥିଲା ।

ଆଗେ ଲଣ୍ଡନକୁ 'ବିଲାତ' ବୋଲି କୁହାଯାଉଥିଲା ।

ସେହିପରି ଆମ ଦେଶକୁ ଆସୁଥିବା ଆଳୁକୁ ବିଲାତି ଆଳୁ ଓ ଟମାଟୋକୁ ବିଲାତି ବାଇଗଣ ବୋଲି କୁହାଯାଉଥିଲା । ଏପରି କାହିଁକି କୁହାଯାଉଥିଲା, ତା'ର କାରଣ ଜଣାପଡ଼େନାହିଁ ।

ସେହିପରି ପିଲାଦିନେ ଶୁଣିଥିଲୁ ଇଂରେଜ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହୁଅନ୍ତି ନାହିଁ । ସେ ବୟସରେ ସେକଥାର ଅର୍ଥ କିଛି ବୁଝି ହୋଇନଥିଲା । ହେତୁ ହେବା ପରେ ବୁଝିଲୁ ଯେ, ଇଂରେଜ ସାମ୍ରାଜ୍ୟ ଏତେ ବଡ଼ ଥିଲା ଯେ, ଗୋଟିଏ ଅଂଶରେ ସୂର୍ଯ୍ୟ ଅସ୍ତ ହେଲେ ଅନ୍ୟ ଅଂଶରେ ଉଦୟ ହେଉଥିଲେ ।

ଲଣ୍ଡନର ପ୍ରବେଶ ପଥ ଭାବରେ ଜଣାଶୁଣା ଡୋଭରକୁ ଯିବାକୁ ହେଲେ ତିନୋଟି ମାଧ୍ୟମ ଉପଲବ୍ଧ ହେଉଥିଲା । ପ୍ରଥମଟି ଥିଲା 'ହୋବରକ୍ରାଫ୍ଟ' । ଏହା ପାଣି ଉପରେ ଦ୍ରୁତଗତିରେ ଚାଲେ । ପ୍ୟାରିସ୍‌ର କାଲେପ୍ୟାରିସର ସହରରୁ ବ୍ରିଟିଶ ଚାନେଲ ପାର ହେବାକୁ ହୋବରକ୍ରାଫ୍ଟକୁ ମାତ୍ର ଘଣ୍ଟାଏ ସମୟ ଲାଗୁଥିଲା ।

ଦ୍ୱିତୀୟ ମାର୍ଗଟି ଥିଲା ଦ୍ରୁତଗାମୀ ଜାହାଜ । ସେଥିରେ ବ୍ରିଟିଶ ଚାନେଲ ପାରହେବାକୁ ଚାରି ଘଣ୍ଟା ସମୟ ଆବଶ୍ୟକ ହେଉଥିଲା । ତୃତୀୟ ଏବଂ ଶେଷ ମାଧ୍ୟମଟି ଥିଲା ଓଭରନାଇଟ୍ ସିପ୍ ଜର୍ଣ୍ଣି । ଅର୍ଥାତ୍ ରାତିରେ କାଲେ ସହରରୁ ଜାହାଜ ଚଢ଼ିଲେ ଆଠ ଘଣ୍ଟାରେ ଡୋଭରରେ ପହଞ୍ଚି ଯାଇହେଉଥିଲା ।

ଆମର ଚାରି ଘଣ୍ଟିଆ ଜାହାଜରେ ଆଗରୁ ସିଟ୍ ରିଜର୍ଭ ହୋଇଥିଲା । ଠିକ୍ ବାରଟା ବେଳେ ଆମ ଜାହାଜ କାଲେ ଉପକୂଳ ଛାଡ଼ିଲା ।

ଜାହାଜ ଛାଡ଼ିଲା ବେଳେ ପ୍ରଥମେ ମୁଣ୍ଡ ବୁଲାଇଲା ଭଳି ଲାଗିଥିଲା । ମାତ୍ର କିଛି ସମୟ ପରେ ସବୁ ଠିକ୍ ହୋଇଗଲା । ପ୍ରଥମେ ପରିଚାରିକା ଆମକୁ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ଡ୍ରିଙ୍କସ୍ ଆଣି ଦେଲେ । ଆମ ଭିତରୁ ଯେଉଁମାନେ ସୁରାପାନ କରୁଥିଲେ, ସେମାନଙ୍କ ଖୁସି କାହିଁରେ କ'ଣ । ସତେ ଯେପରି ସ୍ୱର୍ଗ ଆଉ ଦି'ଆଙ୍ଗୁଳ ।

ଆମେ କେଇଜଣ ସଫ୍ଟଡ୍ରିଙ୍କ ନେଇ ଆରାମରେ ବସି କିଛି ମାଗାଜିନ୍ ଉପରେ ଆଖି ପକାଇଲୁ । ମାଗାଜିନ୍ ପୃଷ୍ଠା ଓଲଟାଉ ଓଲଟାଉ ଇଂଲିଶ୍ ଚାନେଲ୍‌ର ଇତିବୃତ୍ତ ଲେଖାଥିବା ବିଷୟ ଉପରେ ଆଖି ଲାଖି ଯାଇଥିଲା ।

ସେଥିରେ ଅନ୍ୟାନ୍ୟ ବିଷୟ ମଧ୍ୟରେ ଆନ୍ତର୍ଜାତିକ ସନ୍ତରଣକାରୀ ମିହିର ସେନ୍‌ଙ୍କ କଥା ଉଲ୍ଲେଖ ଥିଲା । ସେଇ ଲେଖାରେ ମିହିର ସେନ୍ କିଭଳି ବିପଦଶଙ୍କୁଳ ଇଂଲିଶ୍ ଚାନେଲକୁ ପାର ହୋଇ ଏକ ବିରଳ ରେକର୍ଡ ସ୍ଥାପନ କରିଥିଲେ ସେ ସମ୍ପର୍କରେ ସଂକ୍ଷିପ୍ତ ବର୍ଣ୍ଣନା ଥିଲା ।

ମୁଁ ସେ ଲେଖାଟି ପଢୁପଢୁ ଆତ୍ମବିଭୋର ହୋଇଯାଇଥିଲି । କାରଣ ମିହିର ସେନ୍ ଥିଲେ ମୁଁ ବାସ କରୁଥିବା କଟକ ସହରର ବାସିନ୍ଦା । ତାଙ୍କ ଘର କାଳୀଗଳିରେ । ପିଲାଦିନେ ସେ କଲେଜିଏଟ୍ ସ୍କୁଲ୍‌ରେ ପଢୁଥିଲେ । କଟକ ସହରର ପାଣିପବନରେ ତାଙ୍କର ପିଲାଦିନ କଟିଥିଲା ।

ବାଲ୍ୟାବସ୍ଥାରୁ ସନ୍ତରଣରେ ତାଙ୍କର ଆଗ୍ରହ ଥିଲା । ମାତ୍ର ଦିନେ ସେ ଯେ ମଗର, ସାର୍କୁଶ ପରିପୂର୍ଣ୍ଣ ଇଂଲିଶ ଚାନେଲ୍‌କୁ ପହଁରି ବିଶ୍ୱ ରେକର୍ଡ ସ୍ଥାପନ କରିବେ, ତାହା କଳ୍ପନା ବାହାରେ ଥିଲା ।

ଡୋଭର୍ ଯେତିକି ପାଖେଇ ଆସୁଥିଲା, ମନର ଉଦ୍‌ବେଗ ସେହି ପରିମାଣରେ ବୃଦ୍ଧି ପାଉଥିଲା । ବିଲାତ ମାଟିରେ ପାଦଦେବା କଥା ଭାବି ମନରେ ଏକ ଶିହରଣ ମଧ୍ୟ ସୃଷ୍ଟି ହେଉଥିଲା ।

ଏଇ ସମୟରେ ଜାହାଜରେ ଲାଗିଥିବା ମାଇକ୍ରୋଫୋନ୍‌ରୁ ଏକ ସୂଚନା ମିଳିଲା । ସେଥିରେ କୁହାଯାଇଥିଲା ଯେ, "ଆଉ ଅଳ୍ପ ସମୟ ମଧ୍ୟରେ ଆମ୍ଭମାନଙ୍କୁ ନେଇ ଯାଉଥିବା ଜାହାଜଟି ଡୋଭର୍ କୂଳରେ ଲଙ୍ଗର ପକାଇବ । ଯାତ୍ରୀମାନେ ଦୟାକରି ନିଜ ନିଜର ବ୍ୟାଗେଜ୍ ଧରି ସୁରୁଖୁରୁରେ ଓହ୍ଲାଇ ଗନ୍ତବ୍ୟ ପଥରେ ଯାଆନ୍ତୁ । ଆଶା କରାଯାଏ, ଯାତ୍ରୀମାନଙ୍କର ଏହି ଯାତ୍ରା ଉପଭୋଗ୍ୟ ହୋଇଥିବ ।" ଏହି ସୂଚନା ପାଇବା ପରେ ଆମେସବୁ ଓହ୍ଲାଇବା ପାଇଁ ମାନସିକସ୍ତରରେ ପ୍ରସ୍ତୁତ ହୋଇରହିଲୁ ।

ଡୋଭର୍‌ରେ ଜାହାଜ ଲାଗୁ ଲାଗୁ ଗୋରା ଯାତ୍ରୀମାନେ ଆଗ ଓହ୍ଲାଇ ପଡ଼ିଲେ । ପଛରେ ଆମେ ଓହ୍ଲାଇଲୁ । ସୀତା ଟ୍ରାଭେଲ୍‌ସ ପକ୍ଷରୁ ଆଗରୁ ଆମ ପାଇଁ ସବୁ ବନ୍ଦୋବସ୍ତ କରାଯାଇଥିଲା ।

କୋଚ୍ ସହିତ ଗାଇଡ୍ ଆମକୁ ଅପେକ୍ଷା କରିରହିଥିଲେ । ଗାଇଡ୍ ଲୁସି ମଧ୍ୟବୟସ୍କା । ବେଶ୍ ଡଉଲଡାଉଲ ଚେହେରା । ଅନ୍ୟକୁ ଆକର୍ଷଣ କଲାଭଳି ସମସ୍ତ ବିଭବ ତାଙ୍କ ଚେହେରାରେ ଭରି ରହିଥିଲା । ମୁଁ ସେତେବେଳେ ଭାବୁଥିଲି, ସତରେ କ'ଣ ଆମେ ବିଲାତରେ ପହଞ୍ଚିଯାଇଛୁ ? ତେବେ କ'ଣ ଜୀବନର ଏକ ସ୍ୱପ୍ନ ଆଜି ସତରେ ପୂରଣ ହେଲା ? ପିଲାଦିନେ ବିଲାତ ବିଷୟରେ ବହୁ କଥା ଶୁଣିଥିଲି । କେତେକଙ୍କ ଦ୍ୱାରା ଲେଖାଯାଇଥିବା ଭ୍ରମଣକାହାଣୀ ମଧ୍ୟ ପଢ଼ିବାର ସୁଯୋଗ ମିଳିଥିଲା । ହେଲେ ନିଜେ ଯେ ଦିନେ ବିଲାତ ମାଟିରେ ପାଦ ଦେବି, ସେ ବିଶ୍ୱାସ ନଥିଲା ।

ଆଗରୁ ଅକ୍ସଫୋର୍ଡ ଷ୍ଟ୍ରୀଟ୍‌ରେ ଏକ ମର୍ଯ୍ୟାଦାପୂର୍ଣ୍ଣ ହୋଟେଲରେ ଆମର ରହିବାର ବ୍ୟବସ୍ଥା ହୋଇଥିଲା । ଲୁସିଙ୍କ ଇଙ୍ଗିତରେ କୋଚ୍ ଡ୍ରାଇଭର ଅଳ୍ପ ସମୟ ଭିତରେ ଆମକୁ ନେଇ ନିର୍ଦ୍ଦିଷ୍ଟ ହୋଟେଲ ସାମନାରେ ପହଞ୍ଚାଇଦେଲେ ।

ହୋଟେଲରେ କିଏ କେଉଁ ରୁମ୍‌ରେ ରହିବେ, ସେକଥା ଆଗକୁ ଠିକ୍ ହୋଇଥିବାରୁ କିଛି ଅସୁବିଧା ହୋଇନଥିଲା । କୋଚ୍‌ରୁ ଓହ୍ଲାଇଲା ବେଳେ ଆମେ ଭାବିଥିଲୁ ସେଠାରେ ଥିବା ଗାର୍ଡ ଆମକୁ ସଲାମ୍ ଦେଇ ଆମ ଜିନିଷପତ୍ରକୁ ବୋହି ନେଇ ରୁମ୍‌ରେ ରଖିଦେବ । କାରଣ ଆମର ହୋଟେଲ ମାନଙ୍କରେ ସାମାନ୍ୟ କେଇଟା ଟଙ୍କା ପାଇଁ ଆଟାଚି

ଉଠାଇବାକୁ ରୁମ୍ ବୟ ଓ ସିକ୍ୟୁରିଟି ଗାର୍ଡମାନଙ୍କ ମଧ୍ୟରେ ଏକପ୍ରକାର ପ୍ରତିଯୋଗିତା ଆରମ୍ଭ ହୋଇଥାଏ ।

ମାତ୍ର ସେ ଦେଶର ଚାଲିଚଳଣ, ସଂସ୍କୃତି ସବୁ ଅଲଗା । ସେଠାରେ କୌଣସି କାମକୁ କେହି ଘୃଣା କରନ୍ତି ନାହିଁ । କର୍ମର ମର୍ଯ୍ୟାଦା ପ୍ରତି ସମସ୍ତଙ୍କର ସମ୍ମାନ ଥାଏ । ଧନୀ ହେଉ କି ଗରିବ ହେଉ, ସମସ୍ତେ ନିଜ କାମ ନିଜେ କରନ୍ତି ।

ଯେଉଁ କ୍ଷେତ୍ରରେ ଅନ୍ୟର ସାହାଯ୍ୟ ଆବଶ୍ୟକ ପଡ଼େ, ସେଥିପାଇଁ ବହୁ ଅର୍ଥ ବ୍ୟୟ କରିବାକୁ ପଡ଼ିଥାଏ । ଆମର ଭାଗ୍ୟ ଭଲ, ଆମ ଗାଇଡ୍ ଆମକୁ ସେ ସମ୍ପର୍କରେ ଆଗରୁ ସବୁକଥା କହିଦେଇଥିଲେ ।

ସନ୍ଧ୍ୟାରେ ଆମେ ଲଣ୍ଡନର ପ୍ରସିଦ୍ଧ ହାଇଡ୍ ପାର୍କକୁ ଯାଇଥିଲୁ । ହାଇଡ୍ ପାର୍କର ଗୋଟିଏ ବିଶେଷତ୍ୱ ଥିଲା । ସେଠାରେ ଯିଏ ଯାହା ଚାହୁଁଥିଲେ କହିପାରୁଥିଲେ । ଏପରିକି ଇଂଲଣ୍ଡର ରାଣୀଙ୍କୁ ମଧ୍ୟ ଲୋକେ ସେଠାରେ ସମାଲୋଚନା କରିପାରୁଥିଲେ ।

ସେଠାରେ ଲୋକେ ବକ୍ତୃତା ଦେବାର କୌଶଳ ହାସଲ କରିଥାନ୍ତି ବୋଲି ଶୁଣିଲୁ । ଆମ ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ ଓ ପୂର୍ବତନ ବୈଦେଶିକ ମନ୍ତ୍ରୀ ଭି.କେ କ୍ରିଷ୍ଣମେନନ ଛାତ୍ରାବସ୍ଥାରେ ହାଇଡ୍ ପାର୍କରେ ବକ୍ତୃତା ଦେବାର ଦକ୍ଷତା ହାସଲ କରିଥିଲେ ।

ଆମ ଗ୍ରୁପ୍‌ରେ ଆନନ୍ଦ ବଜାର ପତ୍ରିକା ସଂସ୍ଥାର ସାପ୍ତାହିକ 'ରବିବାର'ର ପ୍ରତିନିଧି ରାଜୀବ ଶୁକ୍ଳା ଥିଲେ । ରାଜୀବ ସବୁକଥାରେ ଆଗୁଆ । ପୋଙ୍ଗ୍‌ୟାଙ୍ଗଠାରୁ ପ୍ୟାରିସ୍ ପର୍ଯ୍ୟନ୍ତ ସବୁଯାଗାର ଖବର ତାଙ୍କ ପାଖରେ ଥିଲା । ଆମ ହୋଟେଲ ପାଖରୁ ହାଇଡ୍ ପାର୍କ କେତେବାଟ ସେ ଆଗରୁ ବୁଝିଥିଲେ । ଶ୍ରୀ ଶୁକ୍ଳାଙ୍କର ରାଜୀବ ଗାନ୍ଧୀଙ୍କ ପରିବାର ସହ ନିବିଡ ସମ୍ପର୍କ ଥିଲା । ସେଇ ସମ୍ପର୍କକୁ ଆଧାର କରି ସେ ପରବର୍ତ୍ତୀ ସମୟରେ କେନ୍ଦ୍ରରେ ମନ୍ତ୍ରୀ ହେବା ସହିତ ଭାରତୀୟ କ୍ରିକେଟ୍ କଣ୍ଟ୍ରୋଲ୍ ବୋର୍ଡର ଉପସଭାପତି ହୋଇଥିଲେ । ଜଣେ ସାମ୍ବାଦିକ ଭାବରେ ନହେଲେ ମଧ୍ୟ ଜଣେ ରାଜନୈତିକ ବ୍ୟକ୍ତି ଭାବରେ ନିଜ ଉଦ୍ୟମରେ ସେ ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ ।

ହୋଟେଲରୁ ବାହାରି ରାସ୍ତାରେ ଗଲାବେଳେ ରୋଲସ ରୟେସ, ମର୍ସିଡେଜ୍ ବେଞ୍ଜ, ଫୋର୍ଡ, ଡିସୋଟ, ଅଷ୍ଟିନ କମ୍ପାନୀର କାର୍ ସବୁ ରାସ୍ତକଡ଼ରେ ଛିଡା ହୋଇଥିବାର ଦେଖିଲୁ । ବୁଝିଲାରୁ ଜଣାପଡିଲା, ସେସବୁ କାର୍ ସେଠାରେ ଟାକ୍ସି ଭାବରେ ବ୍ୟବହୃତ ହୁଏ । ଆମେ ସେସବୁ ଗାଡ଼ି ଚଢ଼ିବାର ଲୋଭ ସମ୍ବରଣ କରିପାରି ନଥିଲୁ । କିନ୍ତୁ ଯାହା କୁହାଯାଏ, "ହାତରେ ନାହିଁ ଧନ, ପୁଅ ବାହାଘର ପାଇଁ ମନ ।" ଆମର ସେଇ ଅବସ୍ଥା ହେଲା । ଆମେ ରୋଲସ ରୟେସ ଗାଡ଼ିରେ ମାତ୍ର ଦୁଇକିଲୋମିଟର ରାସ୍ତା ଯାଇ ମନର ଓରମାନ ମେଣ୍ଟାଇ ଥିଲୁ ।

ହାଇଡ୍ ପାର୍କର ଆଉ ଗୋଟିଏ ବିଶେଷତ୍ୱ ହେଲା, ସେଠାରେ କିଛି ବୟସ୍କ ଲୋକ ଉପସ୍ଥିତ ରହି ବକ୍ତାମାନଙ୍କୁ ବିଭିନ୍ନ ପ୍ରକାର ପ୍ରଶ୍ନ ପଚାରି ଅସ୍ତବ୍ୟସ୍ତ କରିପକାନ୍ତି । ସେମାନଙ୍କୁ ସେଠାରେ "ପ୍ରଫେସନାଲ ଅଡିଏନ୍ସ" ବୋଲି କୁହାଯାଏ ।

ସେମାନଙ୍କର ବିଶ୍ୱର ବିଭନ୍ନ ଦେଶ ସମ୍ପର୍କରେ ଜ୍ଞାନ ଥାଏ । କୋଉଠି କ'ଣ ଘଟୁଛି ସେ ଖବର ମଧ୍ୟ ସେମାନେ ରଖିଥାନ୍ତି । ଆମେ ସେହିପରି କେତେକ ବ୍ୟକ୍ତିଙ୍କ ହାବୁଡରେ ପଡ଼ିଥିଲୁ ।

ସେମାନେ ଆମକୁ ଭାରତରେ ଦେଖାଦେଉଥିବା ଖଲିସ୍ଥାନ ଆନ୍ଦୋଳନ ଓ ସନ୍ତ୍ରାସବାଦ ବିଷୟରେ ଅନେକ ପ୍ରଶ୍ନ ପଚାରିଥିଲେ । ଆମେ ଯଥାସାଧ୍ୟ ସେମାନଙ୍କୁ ଉତ୍ତର ଦେବାକୁ ଚେଷ୍ଟା କରିଥିଲୁ । କିନ୍ତୁ ସେଥିରେ ସେମାନେ ସନ୍ତୁଷ୍ଟ ହୋଇନଥିଲା ଭଳି ମନେ ହୋଇଥିଲା ।

ରାତିରେ ଫେରିଲା ବେଳେ ଗୋଟିଏ ବାଂଲାଦେଶୀ ହୋଟେଲରେ ରାତ୍ରୀଭୋଜନ କରିଥିଲୁ । ଖାଦ୍ୟ ଅତ୍ୟନ୍ତ ତୃପ୍ତିକର ଥିଲା ।

ଲଣ୍ଡନରେ ଆମେ ତିନିଦିନ କାଳ ରହିଥିଲୁ । ସେହି ସମୟ ମଧ୍ୟରେ ଆମେ ଲଣ୍ଡନ ଟାୱାରରେ ଥିବା ବିଶ୍ୱପ୍ରସିଦ୍ଧ କୋହିନୁର ହୀରା ଦେଖିବାର ଅପୂର୍ବ ସୁଯୋଗ ଲାଭ କରିଥିଲୁ । ସେ ହୀରା ଦେଖିଲା ବେଳେ ଶରୀର ରୋମାଞ୍ଚିତ ହୋଇଥିଲା । ଗୋରା ସାହେବମାନେ ଭାରତବର୍ଷକୁ ଦୀର୍ଘକାଳ ଧରି ଶାସନ କରିବା ସମୟରେ ଏହି ହୀରାକୁ ତାଙ୍କ ଦେଶକୁ ନେଇ ଯାଇଥିଲେ ।

ଅପରାହ୍ନ ଦି'ଟାରେ ଆମର ବ୍ରିଟିଶ ପାର୍ଲାମେଣ୍ଟ ଯିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ବ୍ରିଟିଶ ପାର୍ଲାମେଣ୍ଟର ଦୁଇଟି କକ୍ଷ ରହିଛି । ସେଥିମଧ୍ୟରୁ ଗୋଟିଏ ହେଉଛି "ହାଉସ୍ ଅଫ୍ ଲର୍ଡସ" ଏବଂ ଅନ୍ୟଟି "ହାଉସ୍ ଅଫ୍ କମନ୍ସ" । ଦେଶର ଜମିଦାର ଓ ଲର୍ଡସ ପରିବାର ସଦସ୍ୟଙ୍କୁ ନେଇ ହାଉସ୍ ଅଫ୍ ଲର୍ଡସ୍ ଗଠିତ ହୋଇଥିଲା ବେଳେ ସାଧାରଣଲୋକଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ଗଠିତ ହୋଇଛି ହାଉସ୍ ଅଫ୍ କମନ୍ସ । ହାଉସ୍ ଅଫ୍ ଲର୍ଡସର ସଦସ୍ୟମାନେ ବଂଶାନୁକ୍ରମେ ଏହି ଗୃହର ସଦସ୍ୟ ପଦ ଲାଭ କରିଥାନ୍ତି । ସେମାନଙ୍କ ପାଇଁ ନିର୍ବାଚନର ଆବଶ୍ୟକତା ପଡ଼େନାହିଁ ।

ପ୍ରାଥମିକ ଅବସ୍ଥାରେ ଏ ଦୁଇକକ୍ଷ ମଧ୍ୟରେ କ୍ଷମତା ପାଇଁ ଲଢ଼େଇ ଲାଗିଥିଲା । କିଏ ଅଧିକ ଶକ୍ତିଶାଳୀ, ସେଇ ପ୍ରଶ୍ନ ଉପରେ ଦୀର୍ଘଦିନ ବିତର୍କ ହୋଇଥିଲା । ଶେଷରେ ଲୋକ ପ୍ରତିନିଧିଙ୍କୁ ନେଇ ଗଠିତ ହାଉସ୍ ଅଫ୍ କମନ୍ସର ବିଜୟ ଘଟିଲା ।

ହାଉସ୍ ଅଫ୍ କମନ୍ସର ସଦସ୍ୟମାନେ ମନ୍ତ୍ରିମଣ୍ଡଳରେ ସଦସ୍ୟ ହୋଇଥାନ୍ତି । ବାସ୍ତବକ୍ଷେତ୍ରରେ ଇଂଲଣ୍ଡର ଶାସନ ଏଇମାନଙ୍କ ଦ୍ୱାରା ପରିଚାଳିତ ହୋଇଥାଏ । ରାଜା କିମ୍ବା ରାଣୀମାନେ ନାମକୁ ମାତ୍ର ରାଷ୍ଟ୍ରମୁଖ୍ୟ ଭାବରେ ଥାଆନ୍ତି ।

ହାଉସ୍ ଅଫ୍ କମନ୍ସର ସଦସ୍ୟ ନଥିବା ଅନ୍ୟ କେହି ସେଥିରେ ପ୍ରବେଶ ଅଧିକାର ପାଇନଥାନ୍ତି । ଏପରିକି ଇଂଲଣ୍ଡର ରାଜା କିମ୍ବା ରାଣୀ ମଧ୍ୟ ସ୍ୱାଭାବିକ ଭାବରେ ହାଉସ୍ ଅଫ୍ କମନ୍ସରେ ପ୍ରବେଶ କରିନଥାନ୍ତି ।

ଚାର୍ଲସ ପ୍ରଥମ, ପ୍ରଚଳିତ ବ୍ୟବସ୍ଥାକୁ ବେଖାତିର କରି କମନ୍ସ ସଭାଗୃହରେ ପ୍ରବେଶ କରିଥିଲେ । ଏପରି ଅନ୍ୟାୟ କାର୍ଯ୍ୟର ବିଚାର କରି ହାଉସ ଅଫ୍ କମନ୍ସ ତାଙ୍କୁ ପ୍ରାଣ ଦଣ୍ଡାଦେଶ ଦେଇଥିଲେ । ୱେଷ୍ଟ-ମିନିଷ୍ଟର-ହଲ୍ କକ୍ଷରେ ତାଙ୍କୁ ୧୬୪୯ ମସିହା ଜାନୁଆରୀ ଆଠ ତାରିଖ ଦିନ ଫାଶୀ ଦିଆଯାଇଥିଲା । ତାଙ୍କୁ ଯେଉଁଠାରେ ଫାଶୀ ଦିଆଯାଇଥିଲା ତାକୁ ଏକ ସ୍ମୃତି ଭାବରେ ରଖାଯାଇଛି ।

ତିନିଦିନର ରହଣୀ କାଳ ମଧ୍ୟରେ ଆମେ ଅକ୍ସଫୋର୍ଡ ୟୁନିଭରସିଟି, ପ୍ରସିଦ୍ଧ କବି ସେକ୍ସପିୟରଙ୍କ ଜନ୍ମସ୍ଥାନ ଷ୍ଟ୍ରାଟ୍‌ଫୋର୍ଡ-ଅନ୍-ଆଭନ ସହର ପରିଦର୍ଶନ କରିଥିଲୁ ।

ଷ୍ଟ୍ରାଟଫୋର୍ଡରେ ବର୍ଷରେ ମୁଖ୍ୟତଃ ଦୁଇଟି ଉତ୍ସବ ପାଳିତ ହୁଏ । ଅପ୍ରେଲ୍ ଦୁଇ ତାରିଖରେ ସେକ୍ସପିୟରଙ୍କ ଜନ୍ମଦିନ । ଜୁଲାଇରେ ଅନୁଷ୍ଠିତ ଷ୍ଟ୍ରାଟଫୋର୍ଡ ଉତ୍ସବ । ସେକ୍ସପିୟରଙ୍କ ଜନ୍ମ ଦିବସ ଉପଲକ୍ଷେ ଆୟୋଜିତ ଉତ୍ସବରେ ଲଣ୍ଡନ ଠାରେ ଅବସ୍ଥାପିତ ରାଷ୍ଟ୍ରଦୂତମାନଙ୍କର ପ୍ରତିନିଧିମାନେ ଷ୍ଟ୍ରାଟ୍‌ଫୋର୍ଡ ଆସି ନିଜ ନିଜର ଜାତୀୟ ପତାକା ଉତ୍ତୋଳନ କରିଥାନ୍ତି । ଆଭନ ଷ୍ଟ୍ରୀଟ୍‌ରେ ଥିବା କବିଙ୍କ ଜନ୍ମସ୍ଥାନରୁ ଏକ ଶୋଭାଯାତ୍ରା ବାହାରି ଟ୍ରିନିଟ୍ ଚର୍ଚ୍ଚରେ ଥିବା ତାଙ୍କ ସମାଧିପୀଠ ପର୍ଯ୍ୟନ୍ତ ଯାଇଥାଏ । ଟ୍ରିନିଟ ଚର୍ଚ୍ଚଟି ଆଭନ୍ ନଦୀକୂଳରେ ଅବସ୍ଥିତ ।

ଲଣ୍ଡନରୁ ସିଧା ଆମଷ୍ଟରଡାମ ଯାଇ ସେଠାରୁ ବିମାନ ଯୋଗେ ଦିଲ୍ଲୀ ଫେରିବା ପାଇଁ ଆମର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ମାତ୍ର କାର୍ଯ୍ୟକ୍ରମରେ ପରିବର୍ତ୍ତନ କରାଯାଇ ଆମେ ଲଣ୍ଡନରୁ ବ୍ରସେଲ୍ସ(ବେଲଜିଅମ) ବାଟ ଦେଇ ଫେରିଲୁ ।

ବ୍ରସେଲ୍ସ ସହରରେ ଗୋଟିଏ ଦିନ ରହିବା ସମୟରେ ଆମେ ବଟାନିକାଲ ଗାର୍ଡେନ, ଷ୍ଟକ୍ ଏକ୍ସଚେଞ୍ଜ ବିଲଡିଂ, ବେଲଜିଅମ ରାଜପ୍ରସାଦ, ରୟାଲ ମ୍ୟୁଜିଅମ ଅଫ୍ ଫାଇନ୍ ଆର୍ଟସ, ଗ୍ରାଣ୍ଡ ପ୍ଲେସ ଆଦି ବହୁ ଦର୍ଶନୀୟ ସ୍ଥାନ ବୁଲି ଦେଖିବାର ସୁଯୋଗ ପାଇଥଲୁ । ସେସବୁ ଜୀବନର ଅଭୁଲା ହୋଇରହିଯାଇଛି ।

ବ୍ରସେଲ୍ସ ଭ୍ରମଣ ପରେ ଆମର ବିଦେଶ ଯାତ୍ରାର ପରିସମାପ୍ତି ଘଟିଥିଲା । ଆମଷ୍ଟରଡାମ ବିମାନ ବନ୍ଦରରେ ପହଞ୍ଚିବା ପରେ ମୁଁ ମଦ୍ୟପାନ କରୁ ନଥିଲେ ମଧ୍ୟ ଅନ୍ୟମାନଙ୍କ ପାଇଁ ଗୋଟିଏ ମଦ ବୋତଲ କିଣିଥିଲି । ଆମ ହାତରେ ଚାରି ଘଣ୍ଟାର ସମୟ ଥିଲା । ସେହି ସମୟ ମଧ୍ୟରେ ଆମେ 'ଡିଉଟି ଫ୍ରି ସପ୍'ରୁ କିଛି ବିଦେଶୀ ଜିନିଷ କିଣାକିଣି କରିଥିଲୁ ।

ଦୀର୍ଘ ଆଠଘଣ୍ଟାର ବିମାନଯାତ୍ରା ପରେ କେ.ଏଲ୍.ଏମ୍ ବିମାନଟି ଦିଲ୍ଲୀର ପାଲାମ ବିମାନ ବନ୍ଦର ସ୍ପର୍ଶ କଲା । ସେତେବେଳକୁ ଭାରତୀୟ ସମୟ ଭୋର ଛଅଟା । ଦିଲ୍ଲୀ

ବିମାନ ବନ୍ଦର ଛାଡ଼ିବାର ମାତ୍ର ୪୫ ଦିନର ବ୍ୟବଧାନ । ମନେହେଲା ସତେ ଯେପରି ପାଞ୍ଚମାସ ସମୟ ବିତିଯାଇଥିଲା । ସମସ୍ତଙ୍କ ମନରେ ଆନନ୍ଦ ଓ ଉତ୍କଣ୍ଠା । କିପରି ନିଜ ନିଜର ଜିନିଷପତ୍ର ଧରି ଘରକୁ ଫେରିବେ । ଆତ୍ମୀୟସ୍ୱଜନଙ୍କୁ ସାକ୍ଷାତ କରିବେ ।

ଘଣ୍ଟାକ ପୂର୍ବରୁ ବିମାନ ଭିତରେ ମନ ଯେପରି ଭାବବିହ୍ୱଳ ଥିଲା, ତାହା କେତେକାଂଶରେ ଉଭେଇ ଯାଇଥିଲା । କିନ୍ତୁ ମନ ଭିତରେ ଥିବା ଆବେଗ କମିନଥିଲା ।

ବିମାନରୁ ଓହ୍ଲାଇ ଆମେ ସମସ୍ତେ ଗୋଟିଏ ଜାଗାରେ ଏକାଠି ହେଲୁ । ଯେଉଁମାନେ ସାଙ୍ଗରେ ଇଲେକ୍‌ଟ୍ରୋନିକ୍ ପଦାର୍ଥ ଆଣିଥିଲେ, ସେମାନେ ରେଡ୍ ଚାନେଲ୍ ଆଡ଼େ ଚାଲିଲେ । ଆମ୍ଭେମାନେ ଗ୍ରୀନ୍ ଚାନେଲ୍‌କୁ ମୁହାଁଇଲୁ । ମନରେ ଭୟ ଲାଗୁଥିଲା । ମୋ ପାଖରେ ଗୋଟିଏ ଟାଇପ୍ ରାଇଟର୍, କ୍ୟାମେରା, ଘଣ୍ଟା, ବିଲାତି ମଦ, ସିଗାରେଟ୍ ଇତ୍ୟାଦି ସବୁ ଥିଲା ।

ବିମାନ ବନ୍ଦରରେ ଉପସ୍ଥିତ ଥିବା କେନ୍ଦ୍ରୀୟ ଅବକାରୀ ଶୁଳ୍କ ଅଫିସରମାନେ ଆମେ ବିଦେଶରୁ ଫେରିବା ସମ୍ପର୍କରେ ପୂର୍ବରୁ ଅଭାସ ପାଇଥିଲେ । ଆମପ୍ରତି କଠୋର ମନୋଭାବ ପୋଷଣ ନକରିବା ପାଇଁ ସେମାନଙ୍କୁ ଉପରୁ ସୂଚନା ଦିଆଯାଇଥିଲା ।

ବିମାନବନ୍ଦରରୁ ଲଗେଜ ଧରି ବାହାରକୁ ଆସିଲା ବେଳେ ଦେଖିଲି ଡକ୍ଟର ଜୟଚନ୍ଦ୍ର ଦାସ ଆଉଜଣେ ବନ୍ଧୁଙ୍କ ସହିତ ଗାଡ଼ି ଧରି ସେଠାରେ ଉପସ୍ଥିତ ଥିଲେ ।

ଆମେ କେଉଁଦିନ କେଉଁ ଫ୍ଲାଇଟ୍‌ରେ ଦିଲ୍ଲୀ ଫେରିବୁ, ସେକଥା ସେ ଆଗରୁ ଜାଣିଥିଲେ । ମତେ ବିମାନ ବନ୍ଦରରୁ ଆସି ନେଇଯିବେ ବୋଲି କହିଥିଲେ । ମୁଁ କିନ୍ତୁ ନଆସିବା ପାଇଁ ତାଙ୍କୁ ବାରମ୍ବାର ଅନୁରୋଧ କରିଥିଲି ।

ଏକାଧିକ ଥର ଯିବାଆସିବା କରିବା ଫଳରେ ଦିଲ୍ଲୀର ରାସ୍ତାଘାଟ ମୋର ବିଶେଷ ଅପରିଚିତ ନଥିଲା । ତା'ଛଡା, ଦିଲ୍ଲୀ ବିମାନ ବନ୍ଦରରୁ ସହରକୁ ଯିବା ପାଇଁ ପ୍ରିପେଡ୍ ଟ୍ୟାକ୍ସିର ବ୍ୟବସ୍ଥା ମଧ୍ୟ ଥିଲା । କେଉଁ ଟ୍ୟାକ୍ସି କାହାକୁ ନେଇ କେଉଁ ସ୍ଥାନକୁ ଯାଏ ସେସବୁ ସେଠାରେ ପୁଲିସ ଲିପିବଦ୍ଧ କରୁଥିଲେ ।

ଦିଲ୍ଲୀର ମୌଲାନା ଆଜାଦ୍ ମେଡିକାଲ୍ କଲେଜ୍ ହତାରେ ଥିବା 'ଓଲ୍ଡ ଡକ୍ଟର୍ସ ମେସ୍'ର ଏକ ନମ୍ବର କ୍ୱାଟର୍‌ରେ ଡକ୍ଟର ଦାସ ପରିବାର ସହ ରହୁଥିଲେ ।

ପରିବାର କହିଲେ ପତ୍ନୀ ମୀନୁ(କଞ୍ଚନା ଦାସ) ଓ ଏକମାତ୍ର ଝିଅ ପଲୁ(ପଲ୍ଲବୀ) । କିନ୍ତୁ ସେ ଘରଟି ଛୋଟକାଟର 'ଓଡ଼ିଶା ଭବନ' ଥିଲା । ଓଡ଼ିଶାରୁ ବନ୍ଧୁବାନ୍ଧବ, ସାଙ୍ଗସାଥୀ ଯାହାର ଯାହା କାମ ପଡ଼େ ସେଇଠି ଡେରା ପକାନ୍ତି ।

ବିଶେଷକରି ଅଧିକାଂଶ ମେଡିକାଲ୍ କାମରେ ଯାଉଥିବା ଲୋକଙ୍କର ସେଠାରେ ଭିଡ଼ ଲାଗିଥାଏ । ସ୍ୱାମୀ, ସ୍ତ୍ରୀ ଉଭୟେ ଲୋକଙ୍କୁ ଦେଖିଲେ କୋଟିନିଧି ପାଇଲା ପରି ହୁଅନ୍ତି ।

ଅତିଥିମାନଙ୍କୁ ରୋଷେଇ କରି ଖାଇବାକୁ ଦେବା ଠାରୁ ଆରମ୍ଭ କରି ସେମାନଙ୍କର ମାର୍କେଟିଂ ପର୍ଯ୍ୟନ୍ତ ସବୁକାମ କରିବାରେ ମୀନୁର ଆନନ୍ଦ । ଅନ୍ୟପକ୍ଷରେ ଡାକ୍ତରୀ ପରୀକ୍ଷା ଠାରୁ ରୋଗ ସମ୍ପର୍କରେ ଡାକ୍ତରଙ୍କ ପରାମର୍ଶ କରାଇବାରେ ଡକ୍ଟର ଦାସ ତିଳେ ହେଲେ କୁଣ୍ଠାବୋଧ କରନ୍ତି ନାହିଁ ।

ଯୋଉଦିନ ମୁଁ ଆମଷ୍ଟରଡାମରୁ ଆସି ଦିଲ୍ଲୀରେ ପହଞ୍ଚିଥିଲି ସେହିଦିନ ସନ୍ଧ୍ୟାରେ ଭୁବନେଶ୍ୱର ଫେରି ଆସିବା ପାଇଁ ଭାବିଥିଲି । ମାତ୍ର ଡକ୍ଟର ଦାସ ଓ ତାଙ୍କ ପତ୍ନୀ ମୀନୁର ଅନୁରୋଧରେ ଦିଲ୍ଲୀରେ ଗୋଟିଏ ଦିନ ଅଟକି ଗଲି । ପରଦିନ ଦିଲ୍ଲୀରୁ ଇଣ୍ଡିଆନ ଏୟାରଲାଇନ୍ସ ବିମାନରେ ଭୁବନେଶ୍ୱର ଫେରିଲି । ଦିଲ୍ଲୀରୁ ଭୁବନେଶ୍ୱର ଦୁଇ ଘଣ୍ଟାର ଉଡାଣ ସମୟ ।

ବିମାନରୁ ଓହ୍ଲାଇ ଶିଢ଼ିରେ ଆସିଲା ବେଳେ କିଛି ଲୋକ ହାତ ହଲାଉଥିବାର ଦେଖିବାକୁ ମିଳିଥିଲା । ମୋର ଧାରଣା ଥିଲା, ବୋଧହୁଏ ଦିଲ୍ଲୀରୁ କିଏ ରାଜନେତା ସେ ବିମାନରେ ଆସିଥିଲେ । ତାଙ୍କୁ ପାଛୋଟି ନେବା ପାଇଁ କର୍ମୀମାନେ ହାତ ହଲାଉଥିଲେ ।

କିନ୍ତୁ ମୁଁ ରନୱେ ଟପି ଯେତେବେଳେ ଲାଉଞ୍ଜ୍ ଭିତରକୁ ପଶିଲି, ମୋର ବିସ୍ମୟର ସୀମା ରହି ନଥିଲା ।

ଆମ ପରିବାର ସଦସ୍ୟଙ୍କ ସହିତ କେତେକ ଶୁଭେଚ୍ଛୁ ଗାଡ଼ି କରି କଟକରୁ ମୋତେ ସ୍ୱାଗତ କରିବା ପାଇଁ ଭୁବନେଶ୍ୱର ଆସିଥିଲେ । ମୋର ମନେଅଛି, ସେଇ ଶୁଭଚିନ୍ତକମାନଙ୍କ ମଧ୍ୟରେ ଥିଲେ ବିଶିଷ୍ଟ ଫଟୋ ସାମ୍ବାଦିକ ହୃଦୟନାଥ ଦାସ, ଶ୍ରଦ୍ଧେୟ ବନ୍ଧୁ ଶୁଭେନ୍ଦ୍ର ବର୍ମା, ସାନଭାଇ ଅମୀୟ, ପତ୍ନୀ ପ୍ରମଦା, ପୁଅ ଚନ୍ଦନ ଓ କଟକ ଜିଲ୍ଲା ଲୋକ ସମ୍ପର୍କ ଅଫିସର ବିଶ୍ୱେଶ୍ୱର ଦେ ।

ସାଙ୍ଗରେ ଫୁଲତୋଡା ଆଣିବାକୁ ସେମାନେ ଭୁଲିନଥିଲେ । ଏସବୁ ଦେଖି ମତେ କେମିତି ଅଡୁଆ ଅଡୁଆ ଲାଗୁଥିଲା । ହେଲେ ମୋର କିଛି ଉପାୟ ନଥିଲା । ଇଚ୍ଛା ନଥିଲେ ବି ଫୁଲତୋଡ଼ା ସବୁ ଗ୍ରହଣ କରି ସେମାନଙ୍କ ସହିତ ଲାଉଞ୍ଜ୍ ବାହାରକୁ ଆସିଲି ।

କଟକରେ ନିଜ କ୍ୱାଟରରେ ପହଞ୍ଚିଲା ପରେ ମନରେ ଯେଉଁ ତୃପ୍ତି ଆସିଥିଲା, ତାହା ବିଦେଶ ଭ୍ରମଣର ଆନନ୍ଦକୁ ଟପି ଯାଇଥିଲା । ଘରେ ପହଞ୍ଚୁ ପହଞ୍ଚୁ ଆରମ୍ଭ ହୋଇଗଲା ଟେଲିଫୋନ୍ । ଆତ୍ମୀୟସ୍ୱଜନଙ୍କଠାରୁ ଆରମ୍ଭ କରି ରାଜନେତା ଓ ସରକାରୀ କର୍ମଚାରୀ, ସମସ୍ତଙ୍କ ଠାରୁ ଟେଲିଫୋନରେ ଶୁଭେଚ୍ଛା ବାର୍ତ୍ତାମାନ ପାଇ ସେଦିନ ମୁଁ ଖୁବ୍ ଆନନ୍ଦିତ ହୋଇଥିଲି । ହେଲେ ଆମ ପେସାରେ ଥିବା ବନ୍ଧୁମାନଙ୍କ ନିକଟରୁ ଆଶାନୁରୂପ ଶୁଭେଚ୍ଛା ପାଇନଥିଲି । ମୋ ବିଦେଶଯାତ୍ରାରେ କେତେକ ବନ୍ଧୁ ବୋଧହୁଏ ବିଶେଷ ଖୁସି ନଥିଲା ଭଳି ମୋର ମନେ ହୋଇଥିଲା ।

# କଟକରେ ସାମ୍ବାଦିକ ମହାସଂଘର ଅଧିବେଶନ

ସର୍ବଭାରତୀୟ ସାମ୍ବାଦିକ ପ୍ରତିନିଧିଦଳରେ ଦୀର୍ଘ ଦେଢ଼ମାସରୁ ଅଧିକ ସମୟ ବିଦେଶଗସ୍ତ କାଳରେ ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘର କର୍ମକର୍ତ୍ତାମାନଙ୍କ ସହିତ ମୋର ବନ୍ଧୁତା ସୁଦୃଢ଼ ହୋଇଥିଲା ।

ମହାସଂଘର ବର୍ଷକୁ ଅନ୍ୟୁନ ଚାରୋଟି ଅଧିବେଶନ ବସୁଥିଲା । ସେଥିମଧ୍ୟରୁ ଦୁଇଟି କାର୍ଯ୍ୟକାରୀ କମିଟି, ଗୋଟିଏ ଜାତୀୟ ପରିଷଦ ଓ ଅନ୍ୟଟି ବାର୍ଷିକ ସମ୍ମିଳନୀ । ଆଗରୁ ମହାସଂଘ କାର୍ଯ୍ୟକାରୀ କମିଟିର ଏକ ବୈଠକ ଓଡ଼ିଶାରେ ଅନୁଷ୍ଠିତ ହୋଇଥିଲା । ସେଥିପାଇଁ ଜାତୀୟ ପରିଷଦର ଏକ ବୈଠକ କଟକ ଠାରେ ଅନୁଷ୍ଠିତ କରିବା ପାଇଁ ସଭାପତି ବିକ୍ରମ ରାଓ ଏବଂ ଅନ୍ୟମାନେ ମୋତେ ଅନୁରୋଧ କରିଥିଲେ ।

ମାର୍ଚ୍ଚ ମାସ ଦ୍ୱିତୀୟ ସପ୍ତାହରେ ଏହି ଅଧିବେଶନ ହୋଇପାରେ ବୋଲି ଶ୍ରୀ ରାୟ ମତେ ସୂଚନା ଦେଇଥିଲେ । ସାତଦିନ ପରେ ବୈଠକ ସମ୍ଭବ ହେବ କି ନାହିଁ ସେ କଥା ବୁଝି ଜଣେଇବି ବୋଲି ମୁଁ ସେମାନଙ୍କୁ କହିଥିଲି ।

ଏ ପ୍ରସ୍ତାବଟି ଯେତେବେଳେ ଓଡ଼ିଶାର ସାମ୍ବାଦିକ ବନ୍ଧୁମାନଙ୍କୁ ଦେଲି, ସେମାନଙ୍କ ପାଖରୁ ବିଶେଷ ସକରାତ୍ମକ ଉତ୍ତର ପାଇନଥିଲି । କଟକରେ ଜାତୀୟ ପରିଷଦର ବୈଠକ ହେବା ସମ୍ଭବପର ନୁହେଁ କିମ୍ବା ଏପରି ଏକ ଚ୍ୟାଲେଞ୍ଜକୁ ଗ୍ରହଣ କରି କଟକରେ ବୈଠକ ଅନୁଷ୍ଠିତ ହୋଇପାରିବ ବୋଲି ସେମାନଙ୍କୁ ସମ୍ମତି ପ୍ରଦାନ କରିବା, ଏ ଦୁଇଟି ମଧ୍ୟରୁ କେଉଁଟି ମୁଁ ଗ୍ରହଣ କରିବି ସେ କଥା ଚିନ୍ତା କରିପାରିଲି ନାହିଁ ।

ଚିନ୍ତାରେ ଦିନେ, ଦି'ଦିନ କଟିଗଲା । ଶେଷରେ ନିଷ୍ପତ୍ତି କଲି, ଯେତେ ଅସୁବିଧା ହେଉ ପଛକେ ମହାସଂଘର ଜାତୀୟ ପରିଷଦ ବୈଠକ କଟକରେ ଆୟୋଜନ କରିବି । କାହାକୁ କିଛି ନକହି ବିକ୍ରମବାବୁଙ୍କୁ ଟେଲିଫୋନରେ ମୋ ନିଷ୍ପତ୍ତି ବିଷୟରେ ଜଣାଇଦେଲି ।

ସେ ଖୁସି ହୋଇଯାଇ କହିଲେ, "କଂଗ୍ରାଚ୍ୟୁଲେସନ । ମୁଁ ଜାଣିଥିଲି, ତମେ ନିଶ୍ଚୟ ଆମ ପ୍ରସ୍ତାବ ଗ୍ରହଣ କରିବ । ମୁଁ ତୁମକୁ ଅଳ୍ପଦିନ ଭିତରେ ଅଧିବେଶନର ସମୟ ଓ ଅନ୍ୟାନ୍ୟ ବିଷୟରେ ଜଣାଇଦେବି।"

ବିକ୍ରମବାବୁଙ୍କୁ ଜଣାଇଦେବା ପରେ ରାତିରେ ନିଦ ହେଲା ନାହିଁ । ଏତେ ବଡ଼ ସର୍ବଭାରତୀୟ ଅଧିବେଶନ । କେତେ ପ୍ରତିନିଧି ଆସିବେ । କୋଉଠି ରହିବେ ? କ'ଣ ଖାଇବେ ? ଟଙ୍କା ପଇସା କୋଉଠୁ ଯୋଗାଡ଼ ହେବ ? ଏଇ ସବୁ ଚିନ୍ତା ମତେ ଘାରିଲା ।

ସେତେବେଳକୁ ମୋ ବିରୋଧରେ ଉତ୍କଳ ସାମ୍ବାଦିକ ସଂଘରେ ଗୋଟିଏ ଗୋଷ୍ଠୀ ତିଆରି ହୋଇସାରିଥିଲା । ବିଶେଷକରି ସର୍ବଭାରତୀୟ ସାମ୍ବାଦିକ ପ୍ରତିନିଧି ଦଳରେ ବିଦେଶଗସ୍ତରେ ଯିବା ପରେ କେତେକ ସାମ୍ବାଦିକ ମୋ ପ୍ରତି ଈର୍ଷାନ୍ୱିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ଗୋପାଳବାବୁ ଅନ୍ତର୍ଭୁକ୍ତ ଥିଲେ । ହେଲେ ବାହାରକୁ କିଛି ଜଣାପଡୁନଥିଲେ । ସେଥିରେ ଗୋପାଳବାବୁଙ୍କର କିଛି ଦୋଷ ନଥିଲା । ଡକ୍ଟର ହରେକୃଷ୍ଣ ମହତାବଙ୍କ ପାଖରେ ଯେଉଁମାନେ କାମ କରୁଥିଲେ, ସେମାନଙ୍କ ଜୀବନଦର୍ଶନ ଭିନ୍ନ ଥିଲା । ସେମାନେ କାହାରି ଉତ୍‌ଥାନକୁ ଖୋଲାମନରେ ଗ୍ରହଣ କରିପାରୁନଥିଲେ । କେହି ଜଣେ ଅଧ୍ୟବସାୟ କରି ସମାଜରେ ପ୍ରତିଷ୍ଠା ଲାଭ କରୁ କିମ୍ବା ସେମାନଙ୍କ ସମକକ୍ଷ ହେଉ, ସେ କଥା ସେମାନେ ଚାହୁଁନଥିଲେ ।

ପ୍ରତିଦିନ ସନ୍ଧ୍ୟାରେ ଅମୃତ ବଜାର ପତ୍ରିକା ଅଫିସରେ ଆସର ଜମୁଥିଲା । ଆଠଟା ବାଜିଗଲେ ଗୋପାଳବାବୁଙ୍କର ଧୈର୍ଯ୍ୟଚ୍ୟୁତ ଘଟୁଥିଲା । ଘରୁ ଥଣ୍ଡାପାଣି, ବରଫ ସାଙ୍ଗକୁ କିଛି ଗରମ ଚାଖଣାର ବରାଦ ହେଉଥିଲା । ଟେବୁଲ ଡ୍ରରେ ଅଧିକାଂଶ ସମୟରେ ମଦ ବୋତଲ ରହୁଥିଲା। ମୁଁ ଲକ୍ଷ୍ୟ କରିଛି, ଦି'ତିନି ପେଗ୍ ହୋଇଗଲେ ଗୋପାଳବାବୁଙ୍କ ମନ ଖୋଲା ହୋଇଯାଉଥିଲା। ସେତିକିବେଳେ ଯାହା କହିଲେ ସେ ହଁ କରି ଦେଉଥିଲେ । ସେପରି ଏକ ମୁହୂର୍ତ୍ତରେ ସୁଯୋଗ ନେବାକୁ ମୁଁ ମନେମନେ ସ୍ଥିର କଲି ।

ମୁଁ ସେତେବେଳେ କଟକରେ ରହୁଥିଲି । କଟକରେ ଥିବା ଅଫିସରମାନଙ୍କ ସହିତ ମୋର ବନ୍ଧୁତା ଥିଲା । ମୁଁ କଟକ ସର୍କିଟ ହାଉସରେ ଗୋଟିଏ ଆସରର ଆୟୋଜନ କରି ଗୋପାଳବାବୁ, ନଗେନବାବୁ ଓ ବାଗ୍‌ଚିବାବୁଙ୍କୁ ଡ଼କାଇଲି । ସେମାନଙ୍କ ପାଇଁ ରାତିରେ ଖାଇବା ସହିତ ଭଲ ଡ୍ରିଙ୍କର ବ୍ୟବସ୍ଥା ହୋଇଥିଲା ।

ପ୍ରଥମରୁ ମୁଁ କିଛି ନକହି ସେମାନଙ୍କ ମିଜାସ ଚଢ଼ା ହୋଇଗଲା ପରେ କଥାଟା ପକେଇଲି । ପ୍ରଥମେ ନଗେନବାବୁ ମତେ ସମର୍ଥନ କଲେ । କିଛି ସମୟ ପରେ କୁକୁଡ଼ା ରୋଷ୍ଟ ଚୋବାଉଥିବା ବେଳେ ଅନ୍ୟ ଦିଜଣ ମଧ୍ୟ କଟକରେ ମହାସଂଘର ଜାତୀୟ ପରିଷଦ ଅଧିବେଶନ ହେବାପାଇଁ ମୋ ସହିତ ଏକମତ ହେଲେ ।

ମୁଁ ସେମାନଙ୍କୁ କହିଥିଲି, "ମୁଁ ଆଜି ଯାହା ହୋଇଛି, କେବଳ ଆପଣମାନଙ୍କ ସାହାଯ୍ୟ ସହଯୋଗ ଓ ସମର୍ଥନ ଯୋଗୁ । ଆପଣମାନେ ଚାହିଁଲେ ମୁଁ ମହାସଂଘକୁ ସମ୍ମତି ଜଣାଇବି । ନହେଲେ ନାହିଁ କରିଦେବି ।" ସେତେବେଳକୁ ପିଟରସ୍କଚ୍‌ର ନିଶା ଟିକେ ଧରିଆସିଥିଲା । ସମସ୍ତେ ଏକ ସ୍ୱରରେ କହିଲେ, "ଓଃ ୟେସ । ଅଧିବେଶନ ଜରୁର ହେବ । ଉଇ ଆର ଉଇଥ୍ ୟୁ । ୟୁ ଗୋ ଆହେଡ । ଡୋଣ୍ଟ ଓରି ।" ଏହା ଯେ ସେମାନଙ୍କ ଭାଷା ନଥିଲା ସେକଥା ବୁଝିବାକୁ ମତେ ଡ଼େରି ଲାଗିନଥିଲା । ସେମାନେ ଭୁବନେଶ୍ୱର ଫେରିଲା ବେଳକୁ ରାତି ଏଗାରଟା ବାଜି ଯାଇଥିଲା ।

ଘରକୁ ଫେରି ସନ୍ଧ୍ୟାବେଳର ଘଟଣାକୁ ମନେ ପକେଇଲି । ସେମାନେ କହିଥିବା କଥା କେତେଦୂର ରଖିବେ, ମୁଁ ସେମାନଙ୍କ ଉପରେ କେତେଦୂର ନିର୍ଭର କରିପାରିବି ସେ ବିଷୟରେ କିଛି ସିଦ୍ଧାନ୍ତରେ ପହଞ୍ଚି ପାରିନଥିଲି । ମହାସଂଘର ଗୋଟିଏ ପରମ୍ପରା ଥିଲା । ଯୋଉଠି ଅଧିବେଶନ ହେଉଥିଲା, ସେଥିପାଇଁ ସେମାନଙ୍କ ତରଫରୁ ଦୁଇ ତିନୋଟି ଲଞ୍ଚ, ଡିନରର ଯୋଗାଡ଼ କରି ଦିଆଯାଉଥିଲା ।

ପରଦିନ ସକାଳୁ ଉଠି ବିକ୍ରମ ରାଓଙ୍କ ପାଖକୁ ଟେଲିଫୋନ କରି ସବୁକଥା କହିଲି, ସେ ମତେ ପଚାରିଲେ, "ଓ ଲୋଗ କ୍ୟା ସଚ୍‌ମୁଚ୍ ତୁମକୋ ମଦଦ୍ କରେଙ୍ଗେ ? ଆଇ ହାଭ ନୋ ଫେଥ୍ ଅନ୍ ଦେମ୍ । ଦେ ଆର ଗ୍ରେଟ ଏକ୍ସପ୍ଲଏଟରସ ।"

ବିଶେଷକରି ଗୋପାଳବାବୁଙ୍କ ଉପରେ ଶ୍ରୀ ରାଓଙ୍କର ଭରସା ନଥିଲା । ଅତୀତରେ ତାଙ୍କୁ ସଭାପତି କରିବା ପାଇଁ ପ୍ରତିଶ୍ରୁତି ଦେଇ ସେମାନେ କିପରି ପ୍ରତାରିତ କରିଥିଲେ ସେକଥା ଶ୍ରୀ ରାଓ ଭୁଲି ନଥିଲେ । ମୁଁ ବ୍ୟକ୍ତିଗତ ଭାବରେ ଉଦ୍ୟମ କରିନଥିଲେ ସେ ଓଡ଼ିଶାରୁ କୌଣସି ଭୋଟ ପାଇନଥାନ୍ତେ । ସେ କଥା ଶ୍ରୀ ରାଓଙ୍କର ପାଶୋର ଯାଇନଥିଲା ।

ସକାଳ ଦଶଟାବେଳେ ମୁଁ ଭୁବନେଶ୍ୱର ବାହାରିଲି । ଗଲାବେଳେ ବକ୍ସିବଜାରରୁ ଗୋଟିଏ ବିଦେଶୀ ସିଗାରେଟ ପ୍ୟାକେଟ ନେଇଥିଲି । ସିଗାରେଟ ଦେଖି ଗୋପାଳବାବୁ ଖୁସି ହୋଇଯାଇଥିଲେ । ସାଙ୍ଗେସାଙ୍ଗେ ମତେ କହିଲେ, "କଟକରେ ଅଧିବେଶନ ହେବାର କଥା ହେଲା । ଆଉ କ'ଣ କହୁଛ ? କାମରେ ଲାଗିପଡ଼ । ପଛକଥା ଭୁଲିଯାଇ ସମସ୍ତଙ୍କୁ ସାଙ୍ଗରେ ରଖ । ଅଧିବେଶନ ପାଇଁ ଗୋଟାଏ କମିଟି କର । ସବୁକାମ କ'ଣ ଏକା କରିପାରିବ ? ସମାଜବାଲାଙ୍କ ସାଙ୍ଗରେ ଟିକେ କଥାବାର୍ତ୍ତା କର । କଟକରେ ସେମାନେ ସହଯୋଗ ନକଲେ ଅସୁବିଧା ହେବ ।" ଗୋପାଳବାବୁଙ୍କ କଥାରେ ସାମାନ୍ୟ ଇଙ୍ଗିତ ଥିବାର ମୁଁ ଅନୁଭବ କରିଥିଲି । ତାଙ୍କ ଅଧ୍ୟକ୍ଷତାରେ ଅଭ୍ୟର୍ଥନା କମିଟି ଗଠିତ ହେଉ, ବୋଧହୁଏ ସେକଥା ସେ ଚାହୁଁଥିଲେ ।

କଟକରେ କିଛିବର୍ଷ ରହିବା ଭିତରେ ମୋର ଗୋଟିଏ ଗୋଷ୍ଠୀ ସୃଷ୍ଟି ହୋଇଥିଲା । ସେଥିରେ 'ସମାଜ', 'ପ୍ରଜାତନ୍ତ୍ର' ଓ 'ମାତୃଭୂମି'ର କେତେକ ସାମ୍ବାଦିକ ସାମିଲ ଥିଲେ । ମୁଁ

ସେମାନଙ୍କ ସାଙ୍ଗରେ ଅଧିବେଶନ ସମ୍ପର୍କରେ ଆଲୋଚନା କଲି । ସେମାନେ ବହୁତ ଖୁସି ହୋଇଗଲେ ।

ସବୁ ବିଷୟରେ ଆଲୋଚନା କରି ଜଷ୍ଟିସ ହରିହର ମହାପାତ୍ରଙ୍କ ଅଧ୍ୟକ୍ଷତାରେ ଅଭ୍ୟର୍ଥନା କମିଟି ଗଠନ କରିବା ପାଇଁ ଆମେ ସ୍ଥିର କଲୁ । ଡକ୍ଟର ହରେକୃଷ୍ଣ ମହତାବ କିମ୍ବା ରାଧାନାଥ ରଥଙ୍କ ନେତୃତ୍ୱରେ ଅଭ୍ୟର୍ଥନା କମିଟି ଗଠନ କରିବା ପାଇଁ ମୁଁ ଇଚ୍ଛା କରିଥିଲି । ମାତ୍ର ସେମାନଙ୍କ ଭିତରେ ଥିବା ସମ୍ପର୍କ ଏତେ ତିକ୍ତ ଥିଲା ଯେ, ଏକାଠି ବସିବା ତ ଦୂରର କଥା, କେହି କାହା ସାଙ୍ଗରେ କଥାବାର୍ତ୍ତା କରିବା ସ୍ଥିତିରେ ନଥିଲେ ।

ସେହି ଅନୁସାରେ ଉଭୟ ସଂସ୍ଥାର ସାମ୍ବାଦିକମାନେ ମଧ୍ୟ ଦୁଇଟି ଗୋଷ୍ଠୀରେ ପରିଣତ ହୋଇଯାଇଥିଲେ । ଅନ୍ୟପକ୍ଷରେ ଜଷ୍ଟିସ ମହାପାତ୍ର, ପାଟଣା ହାଇକୋର୍ଟର ମୁଖ୍ୟ ବିଚାରପତି ପଦରୁ ଅବସର ଗ୍ରହଣକରି କଟକରେ ଅବସ୍ଥାନ କରୁଥିଲେ । କଟକର ସାମାଜିକସ୍ତରରେ ତାଙ୍କର ପ୍ରତିଷ୍ଠା ଥିଲା । ସହରର ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ଭାବରେ ସେ ଗଣା ହେଉଥିଲେ ।

ଦୁଇଦିନ ପରେ ବିକ୍ରମ ରାଓ ଫୋନକରି ଜଣାଇଥିଲେ ଯେ ମାର୍ଚ୍ଚମାସ ୧୫, ୧୬ ଓ ୧୭ ତାରିଖ ତିନିଦିନ ଧରି ଜାତୀୟ ପରିଷଦର ଅଧିବେଶନ ଅନୁଷ୍ଠିତ ହେବ । ସେଥିରେ ଦେଶର ବିଭିନ୍ନ ପ୍ରାନ୍ତରୁ ତିନିଶହରୁ ଅଧିକ ପ୍ରତିନିଧି ଯୋଗଦେବେ । ତିନିଦିନ ପାଇଁ ଦରକାର ପଡୁଥିବା ଛଅଟି ଲଞ୍ଚ, ଡିନର ମଧ୍ୟରୁ ସେ ତିନୋଟି ଯୋଗାଡ଼ କରିଦେବେ ।

ଅଧିବେଶନ ସମୟରେ ଡକ୍ଟର ମହତାବ ଓ ରାଧାନାଥ ରଥଙ୍କ ଭଳି ବୟୋଜ୍ୟେଷ୍ଠ ସାମ୍ବାଦିକଙ୍କୁ ସମ୍ମାନିତ କଲେ ଭଲ ହେବ ବୋଲି ସେ ମତେ ପରାମର୍ଶ ଦେଇଥିଲେ । ମୁଁ ତାଙ୍କୁ କହିଥିଲି, "ସେ ଦୁଇଜଣ ନିଶ୍ଚିତଭାବରେ ସମ୍ବର୍ଦ୍ଧିତ ହେବାପାଇଁ ଯୋଗ୍ୟ ବ୍ୟକ୍ତି । ମାତ୍ର ସେମାନଙ୍କ ଭିତରେ ସମ୍ପର୍କ ଏତେ ତିକ୍ତ ଯେ ସେମାନଙ୍କୁ ଏକାଠି କରାଇବା ସହଜସାଧ୍ୟ ବ୍ୟାପାର ନୁହଁ । ତଥାପି ମୁଁ ଚେଷ୍ଟା କରିବି ସେମାନଙ୍କୁ ଏକାଠି ଷ୍ଟେଜ ଉପରେ ବସାଇବା ପାଇଁ ।"

ଅଧିବେଶନର ସମୟ ଘୋଷଣା ହୋଇଯିବା ପରେ ମୋର ଚିନ୍ତା ବଢ଼ିଯାଇଥିଲା । ହାତରେ ମାତ୍ର ପନ୍ଦର ଦିନର ସମୟ ଥିଲା । ପାଖାପାଖି ତିନି ଲକ୍ଷ ଟଙ୍କାର ଆବଶ୍ୟକ । ହେଲେ ପାଖରେ ତିନି ଟଙ୍କା ବି ନଥିଲା ।

ମୁଁ ଜଣେ ଦି'ଜଣ ବନ୍ଧୁଙ୍କୁ ନେଇ ଜଷ୍ଟିସ୍ ମହାପାତ୍ରଙ୍କ ଘରକୁ ଗଲି । ସେ ଖୁବ୍ ସମୟାନୁବର୍ତ୍ତୀ ଥିଲେ । ତାଙ୍କ କଥାବାର୍ତ୍ତା ଓ ଚାଲିଚଳଣୀରେ ସାହେବ କାଇଦାର ଆଭାସ ମିଳୁଥିଲା । କାହାକୁ ସାକ୍ଷାତ କରିବାକୁ ଥିଲେ ଟାଇ, କୋଟ ପିନ୍ଧି ଦେଖା ଦେଉଥିଲେ । ସେଥିପାଇଁ ମୁଁ ତାଙ୍କୁ ଫୋନକରି ଆମର ସାକ୍ଷାତ ସମୟ ସ୍ଥିର କରିଥିଲି ।

ନିର୍ଦ୍ଧାରିତ ସମୟର ଦଶ ମିନିଟ୍ ପୂର୍ବରୁ ଆମେ ତାଙ୍କ ଘରେ ପହଞ୍ଚିଥିଲୁ । ଗେଟ୍ ପାଖରେ ତାଙ୍କ ଲୋକ ଆମ ପାଇଁ ଅପେକ୍ଷା କରିଥିଲା । ଗେଟ୍ ଖୋଲି ଭିତରକୁ ନେଇଗଲା ।

ଆମେ ଭିତରକୁ ଗଲା ମାତ୍ରେ ଜଷ୍ଟିସ୍ ମହାପାତ୍ର ଆମକୁ ସ୍ୱାଗତ କରି ଆସିବାର କାରଣ ପଚାରିଥିଲେ । ମୁଁ ତାଙ୍କୁ କହିଥିଲି "ଜାତୀୟସ୍ତରରେ ଆପଣଙ୍କ ସୁନାମ ଯୋଗୁଁ କଟକରେ ପ୍ରଥମଥର ପାଇଁ ଅନୁଷ୍ଠିତ ହେବାକୁ ଯାଉଥିବା ସର୍ବଭାରତୀୟ ସାମ୍ବାଦିକ ଅଧିବେଶନ ଉପଲକ୍ଷେ ଆପଣଙ୍କ ଅଧକ୍ଷତାରେ ଗୋଟିଏ ଅଭ୍ୟର୍ଥନା କମିଟି ଗଠନ କରିବାକୁ ସ୍ଥିର ହୋଇଛି । ଆମେ ଆପଣଙ୍କ ସମ୍ମତି ନିମନ୍ତେ ଆସିଛୁ ।"

କଥା ପ୍ରସଙ୍ଗରେ ସେ ଭାରତୀୟ ସାମ୍ବାଦିକ ମହାସଂଘର ଇତିବୃତ୍ତ, ଏହାର କାର୍ଯ୍ୟକ୍ରମ ଓ କର୍ମକର୍ତ୍ତାମାନଙ୍କ ସମ୍ପର୍କରେ ଜାଣିବାକୁ ଚାହିଁଥିଲେ । ଏହି ଅଧିବେଶନ କାଳରେ ଡକ୍ଟର ହରେକୃଷ୍ଣ ମହତାବ, ରାଧାନାଥ ରଥ ଓ ଲାଲା ମୁଲକରାଜ ସରାଫଙ୍କୁ ସମ୍ବର୍ଦ୍ଧିତ କରାଯିବାର କାର୍ଯ୍ୟକ୍ରମ ଥିବା ସମ୍ପର୍କରେ ମୁଁ ତାଙ୍କୁ ଜଣାଇଥିଲି ।

କଥାବାର୍ତ୍ତା ମଝିରେ ଆମପାଇଁ ଚା' ଜଳଖିଆ ଆସିଯାଇଥିଲା । ସବୁ ବିଷୟ ଶୁଣି ସାରିବା ପରେ ଜଷ୍ଟିସ ମହାପାତ୍ର ଅଭ୍ୟର୍ଥନା କମିଟିର ଅଧକ୍ଷ ହେବା ପାଇଁ ସମ୍ମତି ଜଣାଇଥିଲେ ।

ଗୋପାଳ ମିଶ୍ରଙ୍କୁ କମିଟିର କାର୍ଯ୍ୟକାରୀ ସଭାପତି କରାଯାଇଥିଲା । ମୁଁ ସାଧାରଣ ସଂପାଦକ ରହିଥିଲି । ଉତ୍କଳ ସାମ୍ବାଦିକ ସଂଘର କର୍ମକର୍ତ୍ତାମାନଙ୍କୁ ସେଥିରେ ସାମିଲ କରାଯାଇଥିଲା । ବାରବାଟୀ ଷ୍ଟାଡିୟମରେ ଅଧିବେଶନର ଆୟୋଜନ କରିବାକୁ ଆମେ ସ୍ଥିର କରିଥିଲୁ ।

ବସନ୍ତ କୁମାର ବିଶ୍ୱାଳ ସେତେବେଳେ ଓଡ଼ିଶା ଅଲମ୍ପିକ ଆସୋସିଏସନର ସଭାପତି ଥିଲେ । ଏକ ସମୟରେ ଓଡ଼ିଶା ରାଜନୀତିରେ ସେ ଜଣେ ହେଭିଓ୍ୱେଟ ନେତା ଭାବରେ ଜଣାଶୁଣା ଥିଲେ । ମାତ୍ର ତାଙ୍କର ଘନିଷ୍ଠ ବନ୍ଧୁ, ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହିତ ତାଙ୍କର ମତଭେଦ ଘଟିବାରୁ, ୧୯୮୫ ମସିହା ବିଧାନସଭା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ତାଙ୍କୁ କଂଗ୍ରେସ ଦଳରୁ ଟିକେଟ୍ ମିଳିନଥିଲା ।

ଶ୍ରୀ ବିଶ୍ୱାଳ ଜଣେ ଭାବପ୍ରବଣ ବ୍ୟକ୍ତି ଥିଲେ । ଛନ୍ଦକପଟ ତାଙ୍କୁ ଜଣାନଥିଲା । ମନକୁ ଯାହା ଆସୁଥିଲା, କହି ଦେଉଥିଲେ । ସେଥିପାଇଁ ରାଜନୀତିରେ ତାଙ୍କୁ ବହୁ ମୂଲ୍ୟ ଦେବାକୁ ପଡ଼ିଥିଲା ।

ମୁଁ ଗୋପାଳବାବୁ ଓ ନଗେନବାବୁଙ୍କୁ ନେଇ ଶ୍ରୀ ବିଶ୍ୱାଳଙ୍କୁ ଦେଖାକଲୁ । ସେ ବାରବାଟୀ ଷ୍ଟାଡିୟମରେ ଥିବା ତାଙ୍କ ଅଫିସରେ ବସିଥିଲେ । ଗୋପାଳବାବୁ ଓ ନଗେନବାବୁ 'ପ୍ରଜାତନ୍ତ୍ର'ରୁ ସେମାନଙ୍କ ସାମ୍ବାଦିକ ଜୀବନ ଆରମ୍ଭ କରିଥିଲେ । ଏକ ସମୟରେ ଶ୍ରୀ ବିଶ୍ୱାଳ ମଧ ପ୍ରଜାତନ୍ତ୍ର ପରିବାର ସହିତ ଓତପ୍ରୋତ ଭାବରେ ଜଡ଼ିତ ଥିଲେ ।

ଆମ୍ଭମାନଙ୍କୁ ଦେଖି ସେ ଖୁସି ହୋଇଯାଇଥିଲେ । ସାଙ୍ଗେସାଙ୍ଗେ କୋଲଡ୍ରିଙ୍କ ଆସିଗଲା । କୋଲଡ୍ରିଙ୍କ ପିଉପିଉ ଥଟ୍ଟାରେ କହିଲେ, "କ୍ଷମା କରିବେ, ଆପଣମାନଙ୍କ ଜିନିଷ ଏଠାରେ ନାହିଁ । ଅପେକ୍ଷା କଲେ ସବୁ ବ୍ୟବସ୍ଥା ହୋଇଯିବ ।"

ମୁଁ ଦେଖିଲି, ସେ ଖୁବ୍ ଖୁସ୍ ମିଜାଜରେ ଥିଲେ । ଆଉ ଡ଼େରି ନକରି ଆମର ତାଙ୍କ ପାଖକୁ ଆସିଥିବାର ଉଦ୍ଦେଶ୍ୟ ସମ୍ପର୍କରେ ଜଣାଇଥିଲି । "ଯଦି ଆପଣମାନେ ନିଷ୍ପତ୍ତି କରିଛନ୍ତି ବାରବାଟୀ ଷ୍ଟାଡିୟମରେ ସର୍ବଭାରତୀୟ ସାମ୍ୟାଦିକ ଅଧିବେଶନ ହେବ ବୋଲି, ନିଶ୍ଚୟ ହେବ । ସେଥିରେ ଅସୁବିଧା କ'ଣ ?"

ଏଇ କଥା କହି ସେ ଆମ ଆଡ଼କୁ ଚାହିଁଲେ । ମୁଁ କହିଲି, "ଅସୁବିଧା ହେଉଛି, ଆମ ପାଖରେ ଷ୍ଟାଡିୟମର ଭଡ଼ା ଦେବାକୁ ଅର୍ଥ ନାହିଁ । ଆମେ ଚାହୁଁଛୁ, ଆମକୁ ଷ୍ଟାଡିୟମ ପରିସର ନିଃଶୁଳ୍କରେ ମିଳୁ ।" ସେ କିଛିକ୍ଷଣ ଚିନ୍ତାକରି କହିଲେ, "ବିନାଅର୍ଥରେ ଷ୍ଟାଡିୟମ ପରିସର କାହାକୁ ଦେବାର ବ୍ୟବସ୍ଥା ନାହିଁ । ତଥାପି ମୁଁ ଚେଷ୍ଟା କରିବି ।"

ଆମେ ଜାଣିଥିଲୁ ଶ୍ରୀ ବିଶ୍ୱାଳଙ୍କ 'ଚେଷ୍ଟା କରିବି'ର ଅର୍ଥ ନିଶ୍ଚୟ ହେବ । ସତକୁସତ ଦି'ଦିନ ପରେ ସେ ଗୋପାଳବାବୁଙ୍କୁ ଫୋନ କରି କହିଲେ, "ଆପଣମାନଙ୍କ କାମ ହୋଇଗଲା । ଆପଣ ଟଙ୍କାଟିଏ ଭଡା ନଦେଇ ଷ୍ଟାଡିୟମର କ୍ଲବ୍ ହାଉସ ଓ ଅନ୍ୟାନ୍ୟ ସ୍ଥାନ ବ୍ୟବହାର କରିପାରିବେ । ଆପଣମାନେ ଆଉଥରେ ଆସି କ'ଣ କ'ଣ ଦରକାର ଦେଖିଦେଇ ଯାଆନ୍ତୁ । ମୁଁ ସେହି ଅନୁସାରେ ଅର୍ଡର କରିଦେବି ।"

ତା'ପରଦିନ ଆମେ ତାଙ୍କୁ ଷ୍ଟାଡିୟମ ଅଫିସରେ ଦେଖାକରି ତିନିଶହ ପ୍ରତିନିଧିଙ୍କ ରହିବା ଓ କ୍ଲବ ହାଉସରେ ସଭା କରିବା ପାଇଁ ବ୍ୟବସ୍ଥା କରିବାକୁ ଅନୁରୋଧ କରିଥିଲୁ ।

ଦେଶର ବିଭିନ୍ନ ରାଜ୍ୟରୁ ଆସୁଥିବା ପ୍ରତିନିଧିଙ୍କ ରହିବା ପାଇଁ ଷ୍ଟାଡିୟମରେ କ'ଣ କ'ଣ ସୁବିଧା ଉପଲବ୍ଧ ସେକଥା ଦେଖିବା ପାଇଁ ଆମକୁ ଧରି ସେ ବାହାରିଲେ । ରକ୍ଷଣାବେକ୍ଷଣ ଅଭାବରୁ ଷ୍ଟାଡିୟମ ଭିତରେ ଥିବା ଡର୍ମିଟୋରୀ, ବାଥରୁମ୍, ଲାଟ୍ରିନ ଇତ୍ୟାଦି ଭଲ ଅବସ୍ଥାରେ ନଥିଲା ।

ସେ ସାଙ୍ଗେସାଙ୍ଗେ ଇଞ୍ଜିନିୟରମାନଙ୍କୁ ଡ଼କାଇ ଯୁଦ୍ଧକାଳୀନ ଭିତ୍ତିରେ ସେସବୁର ମରାମତି ଶେଷ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ସେଥିସହିତ କ୍ଲବ ହାଉସର ରଙ୍ଗ କରିବାକୁ ମଧ୍ୟ କହିଥିଲେ । ଶ୍ରୀ ବିଶ୍ୱାଳଙ୍କର ଗୋଟିଏ ଭଲ ଗୁଣ ଥିଲା । ସେ ଯୋଉକାମ ଯୋଉଦିନ ଶେଷ କରିବାକୁ ସମୟ ଧାର୍ଯ୍ୟ କରିବାକୁ ଚାହୁଁଥିଲେ, ସେହି ସମୟ ଭିତରେ ସେ ତାକୁ ଶେଷ କରାଉଥିଲେ । ତାଙ୍କ କଥା ଅନୁସାରେ ଷ୍ଟାଡିୟମ ଚେହେରା ସାତଦିନ ଭିତରେ ବଦଳିଯାଇ ଚକାଚକ୍ ହୋଇଯାଇଥିଲା ।

ଅଧିବେଶନ ପାଇଁ ଅଭ୍ୟର୍ଥନା କମିଟି ଗଠିତ ହୋଇଗଲା । ସ୍ଥାନ ମଧ୍ୟ ଚୂଡାନ୍ତ ହୋଇଗଲା । ମାତ୍ର ସରକାରୀ ସହଯୋଗ ଓ ପ୍ରୋତ୍ସାହନ ବିନା ଯେ ଗୋଟିଏ ସର୍ବଭାରତୀୟ ଅଧିବେଶନ ସମ୍ଭବପର ନୁହେଁ, ସେ ସମ୍ପର୍କରେ ମୁଁ ସଚେତନ ଥିଲି ।

ସରକାର କହିଲେ ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ହିଁ ବୁଝାଉଥିଲା । ମୁଖ୍ୟମନ୍ତ୍ରୀ ନ ଚାହିଁଲେ ପତ୍ର ହଲୁ ନଥିଲା । ମୁଁ ମୁଖ୍ୟମନ୍ତ୍ରୀଙ୍କ ଅତିରିକ୍ତ ସେକ୍ରେଟାରୀ ହରମୋହନ ପଟ୍ଟନାୟକଙ୍କୁ ଦେଖାକରି ସବୁକଥା କହିଲି । ଶ୍ରୀ ପଟ୍ଟନାୟକ ଜଣେ ଲୋକପ୍ରିୟ ଅଫିସର ଥିଲେ । ପୂର୍ବରୁ ସେ କଟକର ଜିଲ୍ଲାପାଳ ଥିଲାବେଳେ ତାଙ୍କ ସହିତ ଘନିଷ୍ଠ ସମ୍ପର୍କ ଥିଲା ।

ସେ ଗୋପନରେ ମତେ ଗୋଟିଏ ଉପାୟ ବତାଇ କହିଲେ, "ମୁଖ୍ୟମନ୍ତ୍ରୀ ଦିଲ୍ଲୀ ଯାଉଛନ୍ତି, ଦୁଇ ତିନିଦିନ ରହିବେ । ଆପଣଙ୍କ ସଭାପତିଙ୍କୁ କୁହନ୍ତୁ, ସେ ଆସି ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରି ଅନୁରୋଧ କଲେ ସବୁକାମ ହୋଇଯିବ ।" ମୁଁ ତାଙ୍କ ଅଫିସରୁ ବିକ୍ରମ ରାଓଙ୍କୁ ଟେଲିଫୋନ୍ କରି ସବୁକଥା ଜଣାଇ ଦିଲ୍ଲୀ ଆସିବାକୁ ଅନୁରୋଧ କଲି ।

ଦିଲ୍ଲୀର ଓଡ଼ିଶା ଭବନରେ ଥିବା ମୁଖ୍ୟମନ୍ତ୍ରୀଙ୍କ କୋଠରୀରେ ଶ୍ରୀ ରାଓ, ଜାନକୀବାବୁଙ୍କୁ ଦେଖା କରିଥିଲେ । ସାଙ୍ଗରେ ମୁଁ ଓ ହରମୋହନବାବୁ ଉପସ୍ଥିତ ଥିଲୁ । ଜଣେ ପ୍ରବୀଣ ସାମ୍ବାଦିକ ଭାବରେ ରାଜନେତାମାନଙ୍କ ପାଖରୁ କିପରି କାମ ହାସଲ କରାଯାଏ, ସେ କଳା ଶ୍ରୀ ରାଓଙ୍କୁ ବେଶ୍ ମାଲୁମ୍ ଥିଲା ।

ପ୍ରସଙ୍ଗ ଆରମ୍ଭ କରି ସେ କହିଲେ, "ପଟ୍ଟନାୟକ ସାହେବ, ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘର ଜାତୀୟ ପରିଷଦ ଅଧିବେଶନ ପାଇଁ ଦେଶର ଚାରୋଟି ରାଜ୍ୟରୁ ପ୍ରସ୍ତାବ ଆସିଥିଲା । ମାତ୍ର ଓଡ଼ିଶାର ବସନ୍ତ ଦାସ ଯେତେବେଳେ ଆମକୁ କହିଲେ, ଓଡ଼ିଶାରେ ଏପରି ଜଣେ ମୁଖ୍ୟମନ୍ତ୍ରୀ ଅଛନ୍ତି, ସେ କେବଳ ସାମ୍ବାଦିକମାନଙ୍କର ବନ୍ଧୁ ନୁହନ୍ତି, ନିଜେ ଜଣେ ପ୍ରବୀଣ ସାମ୍ବାଦିକ ଓ ସୁସାହିତ୍ୟିକ । ଏହାପରେ ଆମେ କଟକରେ ଅଧିବେଶନର ଆୟୋଜନ କରିବାକୁ ଶ୍ରୀ ଦାସଙ୍କୁ ଜଣାଇଲୁ । ଜଣେ ସାମ୍ବାଦିକ ମୁଖ୍ୟମନ୍ତ୍ରୀଙ୍କ ପାଖରୁ ସବୁପ୍ରକାର ସାହାଯ୍ୟ, ସହଯୋଗ ଓ ପ୍ରୋତ୍ସାହନ ପାଇବା ସମ୍ପର୍କରେ ଆମେ ନିଃସନ୍ଦେହ । ଆମେ ଗର୍ବିତ ଯେ ଆମର ଜଣେ ସାଥି ଦୀର୍ଘ ଛଅବର୍ଷ ହେଲା ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ଭାବରେ ରହିଛନ୍ତି । ତାଙ୍କ ନେତୃତ୍ୱରେ ଓଡ଼ିଶାରେ ସର୍ବାଙ୍ଗୀନ ଉନ୍ନତିର ମୂଳଦୁଆ ପଡ଼ିଛି ।"

ଶ୍ରୀ ରାଓଙ୍କର ଏତିକି କଥା ମନ୍ତ୍ରବତ୍ କାମ କଲା । ଜାନକୀବାବୁ ଅତ୍ୟନ୍ତ ଖୁସି ଜଣାପଡୁଥିଲେ । ସେତିକିବେଳେ ଚା ଓ କିଛି ଜଳଖିଆ ଆସିଗଲା । ଚା' ପିଇବା ମଝିରେ ସେ କହିଲେ, "ଦେଖିଏ ମିଃ ରାଓ, ଓଡ଼ିଶା ସରକାର ସେ ଆପକୋ ଯୋ ମଦଦ୍ ଚାହିୟେ ଓ ସାରେ ମିଲ ଯାଏଗା । ହମାରେ ସେକ୍ରେଟାରୀ ୟହାଁ ବୈଠେ ହେଁ । ଆପକୋ କ୍ୟା ଚାହିୟେ ଉନ୍‌କୋ ବୋଲିୟେ । ଓ ଭୁବନେଶ୍ୱର ୱାପସ ଯା କେ ସାରେ ଇନ୍ତେଜାମ୍

କରଦେଙ୍ଗେ ।" ସେଠାରେ ଉପସ୍ଥିତ ଥିବା ହରମୋହନ ପଟ୍ଟନାୟକଙ୍କୁ ଲକ୍ଷ୍ୟକରି ମୁଖ୍ୟମନ୍ତ୍ରୀ କହିଲେ, "ଶ୍ରୀ ରାଓ ଯାହା କହୁଛନ୍ତି, ତାକୁ ଟିପି ଦିଅ । ଭୁବନେଶ୍ୱର ଯାଇ ଯାହାକୁ ଯାହା କହିବା କଥା ମୁଁ କହିଛି ବୋଲି କହି ସବୁକାମ କରିଦେବ ।"

ଚା'ପର୍ବ ସରିଲା ପରେ ଶ୍ରୀ ରାଓ ଓ ମୁଁ ଜାନକୀବାବୁଙ୍କ ପାଖରୁ ବିଦାୟ ନେଲୁ । ବାଟରେ ଶ୍ରୀରାଓ ମତେ କହିଲେ, "ବସନ୍ତ ତୁମାରା କାମ ତୋ ବନଗୟା । ତୁମାରା ମୁଖ୍ୟମନ୍ତ୍ରୀ ବଡ଼ଖୁସ ନଜର ଆତେଥେ ।"

ଆମେ ଦି'ଜଣ କନ୍ନର୍ଟପ୍ଲେସରେ ଥିବା ମହାସଂଘ ଅଫିସକୁ ଯାଇ ଅଧିବେଶନ ସମ୍ପର୍କରେ ଆଲୋଚନା କଲୁ । କେତେଦିନିଆ ଅଧିବେଶନ ହେବ, କେତେ ପ୍ରତିନିଧି ଯୋଗଦେବେ, କୁଆଡ଼େ କୁଆଡ଼େ ବୁଲିବାକୁ ଯିବେ ସେ ବିଷୟରେ ସବିଶେଷ ଆଲୋଚନା ହୋଇଥିଲା ।

ବିକ୍ରମବାବୁ ମତେ ସୂଚନା ଦେଇଥିଲେ "ମାର୍ଚ୍ଚ ୧୪, ୧୫ ଓ ୧୬ ତାରିଖ ତିନିଦିନ ଧରି ଅଧିବେଶନ ଚାଲିବ । ୧୭ ତାରିଖ ଦିନ ପ୍ରତିନିଧିମାନେ ନନ୍ଦନକାନନ, ଧଉଳି, କୋଣାର୍କ, ପୁରୀ ବୁଲିବାକୁ ଯିବେ । କେତେକ ବନ୍ଧୁ ପୁରୀରୁ ନିଜ ନିଜ ରାଜ୍ୟକୁ ଫେରିଯିବେ । ଅନ୍ୟମାନେ କଟକ ଫେରି ଟ୍ରେନ୍ ଧରିବେ ।"

ମୁଁ କଟକ ଫେରିଆସି ଚିନ୍ତାରେ ପଡ଼ିଲି । ପାଖରେ ପଇସା ନଥିଲା । ଯାହା କୁହାଯାଏ "ହାତରେ ନାହିଁ ଧନ, ଆଉ ପୁଅ ବାହାଘରେ ମନ ।" ସେଇ ଅବସ୍ଥା ହେଲା । ନଗେନ୍ ବେଉରିଆକୁ ମାଧ୍ୟମ କରି ମୁଁ ଗୋପାଳବାବୁଙ୍କୁ ଖୁସି ରଖିବା ପାଇଁ ଚେଷ୍ଟା କରୁଥିଲି । ମାର୍ଚ୍ଚ ୭ ତାରିଖ ଦିନ କଟକ ସର୍କିଟ ହାଉସରେ ଅଭ୍ୟର୍ଥନା କମିଟିର ପ୍ରଥମ ବୈଠକ ପାଇଁ ମୁଁ ଆୟୋଜନ କରିଥିଲି ।

ବୈଠକରେ ଜଷ୍ଟିସ ମହାପାତ୍ରଙ୍କ ସହିତ କଟକ ଜିଲ୍ଲାପାଳଙ୍କୁ ଆମନ୍ତ୍ରଣ କରାଯାଇଥିଲା । ଜିଲ୍ଲାପାଳ ଅକ୍ଷୟ କୁମାର ଦାସ ଓଏଏସ୍ ଅଫିସର ହେବା ପୂର୍ବରୁ କଟକର ପ୍ୟାରୀମୋହନ ଏକାଡ଼େମୀରେ ଆମର ଶିକ୍ଷକ ଥିଲେ । ସେ ମତେ ଭଲ ଭାବରେ ଜାଣିଥିଲେ ।

ବୈଠକରେ ଅନ୍ୟାନ୍ୟ ବିଷୟ ମଧ୍ୟରେ ଡକ୍ଟର ହରେକୃଷ୍ଣ ମହତାବ, ରାଧାନାଥ ରଥ ଓ ଲାଲା ମୁଲକରାଜ ସରାଫଙ୍କୁ ଅଧିବେଶନ ସମୟରେ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ସମ୍ବର୍ଦ୍ଧିତ କରିବା ପାଇଁ ନିଷ୍ପତ୍ତି ହୋଇଥିଲା । ଅଧିବେଶନରେ ପ୍ରତିନିଧିଙ୍କୁ ରାଜ୍ୟ ସରକାର, କଟକ ମ୍ୟୁନିସପାଲିଟି ପକ୍ଷରୁ ଡିନର, ଲଞ୍ଚ ଦେବା ପାଇଁ ଅନୁରୋଧ କରିବାକୁ ମତେ ଦାୟିତ୍ୱ ଦିଆଯାଇଥିଲା । ତା'ଛଡା, ଲୋକସେବକମଣ୍ଡଳ ଓ ପ୍ରଜାତନ୍ତ୍ର ପ୍ରଚାର ସମିତି କର୍ତ୍ତୃପକ୍ଷଙ୍କ ପ୍ରତିନିଧିମାନଙ୍କୁ ଚା'ପାନରେ ଆପ୍ୟାୟିତ କରିବା ନିମିତ୍ତ ଅନୁରୋଧ କରିବା ପାଇଁ ନିଷ୍ପତ୍ତି ହୋଇଥିଲା ।

ସେଦିନ ସନ୍ଧ୍ୟାରେ ଆନୁଷ୍ଠାନିକ ବୈଠକ ଶେଷ ହେବା ପରେ ଗୋଟିଏ ଘରୋଇ ବୈଠକ ବସିଥିଲା । ମୁଁ ଗୋଟିଏ 'ଜାନିଓ୍ୱାକର' ବୋତଲର ବ୍ୟବସ୍ଥା କରିଥିଲି । ତା' ସାଙ୍ଗରେ

ସ୍ନାକ୍ସ ଓ ରାତ୍ରୀଭୋଜନ ବ୍ୟବସ୍ଥା ମଧ୍ୟ ହୋଇଥିଲା । ଦୁଇ ରାଉଣ୍ଡ ଡ୍ରିଙ୍କସ ସରିଗଲା ପରେ ମୁଁ କଥାଟା ପକାଇଥିଲି ।

ଜିଲ୍ଲାପାଳଙ୍କୁ କହିଲି, "ସାର୍, ଆପଣ ତ ମୋ ଗୁରୁ । ଆପଣ ଟିକିଏ ମତେ ସାହାଯ୍ୟ ନକଲେ ଅଧିବେଶନ କାର୍ଯ୍ୟ ଆରମ୍ଭ ହୋଇପାରିବ ନାହିଁ । ଗାଡ଼ି ଷ୍ଟାର୍ଟ ହେଲେ ତ ପଇସା ଆସିବ । ମୋ ପାଖରେ ଏବେ ଶହେ ଟଙ୍କା ନାହିଁ । ଗାଡ଼ି ଷ୍ଟାର୍ଟ ହେବ କେମିତି ?"

ସେ ମତେ ଅନେଇ ପଚାରିଲେ ତମେ କ'ଣ କହିବାକୁ ଚାହୁଁଛ, ଖୋଲିକରି କୁହ । କଟକ ମ୍ୟୁନିସପାଲିଟି ପକ୍ଷରୁ ଆମେ ଗୋଟିଏ ଲଞ୍ଚ ଦେବୁ । ଆଉ ତମର ଅସୁବିଧା କ'ଣ ?

ମୁଁ କହିଲି, ଆପଣ ମ୍ୟୁନିସପାଲିଟି ପକ୍ଷରୁ ଯେଉଁ ଲଞ୍ଚ ଦେବେ, ସେ ବାବଦରେ ଅର୍ଥ ଯଦି ଅଗ୍ରୀମ ଦେଇ ଦିଅନ୍ତେ ତେବେ ମୋର ସବୁ ଅସୁବିଧା ଦୂର ହୋଇଯାନ୍ତା । ମୁଁ ଆପଣଙ୍କୁ ଉତ୍କଳ ସାମ୍ବାଦିକ ସଂଘ ପକ୍ଷରୁ ଷ୍ଟାମ୍ପ ରସିଦ ଦେଇଦେବି ।

ଶ୍ରୀ ଦାସ ଅଖି ତରାଟି ମତେ କହିଲେ, "ମ୍ୟୁନିସପାଲିଟି କ'ଣ ଗୋଟାଏ ଘରୋଇ ଦୋକାନ ? ସେଠି ପୁଣି କିଛି ନିୟମକାନୁନ ଅଛି ନା ନାହିଁ ? ଅଧିବେଶନ ଆରମ୍ଭ ହୋଇନାହିଁ । ପ୍ରତିନିଧିମାନେ ଆସିନାହାନ୍ତି । ତମେ କେମିତି ଆଶା କରୁଛ ମୁଁ ତମକୁ ଅଗ୍ରୀମ ଟଙ୍କା ଦେଇଦେବି ?"

ବହୁତ କୁହାବାଲା ପରେ ସେ କହିଲେ, ହଉ ଠିକ୍ ଅଛି । କିନ୍ତୁ ତମକୁ ମୁଁ ଟଙ୍କା ନଦେଇ ଚେକ୍ ଦେବି । ଯୋଉଦିନ ତମେ ମ୍ୟୁନିସପାଲିଟି ପକ୍ଷରୁ ଲଞ୍ଚ କିମ୍ବା ଡିନରର ବ୍ୟବସ୍ଥା କରିବ, ସେଦିନ ମ୍ୟୁନିସପାଲିଟିର ଗୋଟିଏ ବ୍ୟାନର ଲଗାଇ ତା'ର ଫଟୋ ଉଠାଇ ଆମ ଅଫିସରେ ବିଲ୍ ସହିତ ଦାଖଲ କରିବ । ମୁଁ ଜିଲ୍ଲାପାଳ ଭାବରେ ମ୍ୟୁନିସପାଲିଟି ଦାୟିତ୍ୱରେ ଅଛି । ଏ ସର୍ତ୍ତ ଖିଲାପ କଲେ ଜିଲ୍ଲାପାଳ ତାଙ୍କ କ୍ଷମତା ପ୍ରୟୋଗ କରିବାକୁ ବାଧ୍ୟ ହେବେ । ରାଜନୀତି ବିଜ୍ଞାନର ଛାତ୍ର ଭାବରେ ତମେ ଜିଲ୍ଲାପାଳଙ୍କ କ୍ଷମତା ବିଷୟରେ ନିଶ୍ଚୟ ଅବଗତ ଥିବ । ଆମର ଡ଼ିନର ସରୁ ସରୁ ରାତି ଏଗାରଟା ବାଜି ଯାଇଥିଲା । ତା' ପରଦିନ ମୁଁ ମ୍ୟୁନିସପାଲିଟି ଅଫିସକୁ ଯାଇ ଚେକ୍ ଆଣିଥିଲି ।

କଟକ ସହରରେ ସେ ସମୟରେ ଦୁଇଜଣ କାଟେରିଂ କଣ୍ଟ୍ରାକ୍ଟର ଥିଲେ । ଜଣେ ମହାବୀର ସାହୁ । ତାଙ୍କୁ ଲୋକେ ଟୁନା ସାହୁ ବୋଲି ଡାକନ୍ତି । ତାଙ୍କର ମହାବୀର କାଟେରିଂ ସର୍ଭିସ ନାମରେ ସଂସ୍ଥା ଥିଲା । ଆଉଜଣେ ହେଲେ ବିଷ୍ଣୁ ଚରଣ ବେହେରା । କିନ୍ତୁ ତାଙ୍କୁ ସମସ୍ତେ ଉଙ୍କୁ ବୋଲି ଜାଣନ୍ତି । ଉଙ୍କୁ ଘର ଦରଘା ବଜାରରେ । ତାଙ୍କର ଦରଘା ବଜାର ଛକ ପାଖରେ ଆନନ୍ଦ ମିଷ୍ଟାନ୍ନଭଣ୍ଡାର ନାଁରେ ଗୋଟିଏ ଜଳଖିଆ ଦୋକାନ ଥିଲା । ମୁଁ ପ୍ୟାରୀମୋହନ ଏକାଡେମୀରେ ପଢୁଥିଲା ବେଳେ ଅନେକଥର ସେ ଦୋକାନରେ ଖାଇଥିଲି ।

ଉଜ୍ଜ୍ୱଳ ଓଡ଼ିଶା ଫୁଟବଲ ଟିମ୍‌ର ଗୋଲ କିପର ଭାବରେ ସୁନାମ ଅର୍ଜନ କରିଥିଲା । ସେ ଆର.କେ କାଟରିଂ ନାମରେ ଗୋଟିଏ ସଂସ୍ଥା ଗଠନ କରିଥିଲା । ମୁଁ ଉଜ୍ଜ୍ୱଳକୁ ପିଲାଦିନୁ ଜାଣିଥିଲି । ତା'ବାପାଙ୍କୁ ମୁଁ ଭାଇ ଡାକୁଥିବାରୁ ସେ ମତେ ଦାଦା ବୋଲି ସମ୍ବୋଧନ କରୁଥିଲା ।

ଦିନେ ମୁଁ ଉଜ୍ଜ୍ୱଳକୁ ଘରକୁ ଡକାଇ ଅଧିବେଶନ ସମ୍ପର୍କରେ ସବୁକଥା କହିଲି । ସେ ମତେ ଭରସା ଦେଇ କହିଲା "ଦାଦା ଆପଣ ଚିନ୍ତା କରନ୍ତୁ ନାହିଁ । ମୁଁ ସବୁ କାମ ସମ୍ଭାଳି ଦେବି । ମୋ ପାଖରେ ଲୋକ ଅଛନ୍ତି । କିଛି ଜିନିଷପତ୍ର ପାଇଁ ଅଗ୍ରୀମ କିଛି ଟଙ୍କା ଦେଲେ ଚଳିଯିବ । କାମ ସରିଗଲେ ପୂରା ଟଙ୍କା ଦେବେ ।"

ମୁଁ ତାକୁ ବୁଝାଇ କହିଲି, ଦେଖ୍ ଉଜ୍ଜ୍ୱଳ, ସମଗ୍ର ଭାରତବର୍ଷରୁ ପ୍ରତିନିଧି ଆସିବେ । ସେମାନଙ୍କର ଖାଦ୍ୟ ସବୁ ଭିନ୍ନ ଭିନ୍ନ । ସେମାନଙ୍କ ମଧ୍ୟରେ ଥିବେ ସମ୍ପୂର୍ଣ୍ଣ ଶାକାହାରୀ । ଆଉ କେତେକଙ୍କର ଆମିଷ ନ ହେଲେ ଚଳୁନଥିବ । ଇଏ ବାହାଘର ଭୋଜି ନୁହେଁ ଯେ, ଗୋଟିଏ ରକମର ଖାଇବା କରିଦେଲେ ସମସ୍ତେ ଖୁସି ହୋଇ ଖାଇ ଚାଲିଯିବେ ।

ଯେଉଁମାନେ ଆସିବେ, ସେମାନଙ୍କ ସକାଳ ଜଳଖିଆ ମଧ୍ୟ ଅଲଗା ଅଲଗା । ଦକ୍ଷିଣରୁ ଆସୁଥିବା ପ୍ରତିନିଧିମାନେ ସକାଳେ ଇଡଲି, ଉପମା, ଦୋସା ଖାଉଥିଲା ବେଳେ ଉତ୍ତର ଭାରତ ବାଲା ପୁରୀ, ତରକାରୀ ଜିଲାବି ଇତ୍ୟାଦି ଖାଆନ୍ତି । ବଙ୍ଗଳା ଲୋକେ ବ୍ରେଡ, ବଟର, ଓମଲେଟକୁ ପସନ୍ଦ କରନ୍ତି । ସେମାନଙ୍କୁ କିପରି ସନ୍ତୁଷ୍ଟ କରିବାକୁ ହେବ ସେ କଥା ମୁଁ ଚିନ୍ତା କରିପାରୁନାହିଁ ।

ଉଜ୍ଜ୍ୱଳ କିନ୍ତୁ ଆଦୌ ବିଚଳିତ ନଥିଲା । ସେ ମତେ ସାହସ ଦେଇ କହିଲା, "ଦାଦା, ମୁଁ ପରା ଏଇ କେତେବର୍ଷ ଭିତରେ ଏକାଧିକ ସର୍ବଭାରତୀୟ ଟୁର୍ଣ୍ଣାମେଣ୍ଟରେ ପ୍ରତିନିଧି ଖେଳାଳିମାନଙ୍କୁ ଖାଇବାକୁ ଦେଇ ସାର୍ଟିଫିକେଟ ପାଇସାରିଛି । ଆପଣ ଡରୁଛନ୍ତି କାହିଁକି ? ମୋ ଉପରେ ଭରସା ରଖନ୍ତୁ ।"

ଉଜ୍ଜ୍ୱଳ କଥାରେ ମୋ ମନରେ ଥିବା ଆଶଙ୍କା ଅନେକ ପରିମାଣରେ ଦୂର ହୋଇଯାଇଥିଲା । ଆମେ ଦି'ଜଣ ବସି ତିନିଦିନର ବ୍ରେକ୍‌ଫାଷ୍ଟ, ଲଞ୍ଚ ଓ ଡିନରର ମେନୁ ତିଆରି କଲୁ । ଉଜ୍ଜ୍ୱଳର ସାହାଯ୍ୟ ଓ ସହଯୋଗ ଫଳରେ ପ୍ରତିନିଧିମାନଙ୍କର ଖାଇବା, ପିଇବା ଦିଗରେ ମୋର କୌଣସି ଚିନ୍ତା ରହିଲା ନାହିଁ ।

ଜିଲ୍ଲାପାଳ ଶ୍ରୀ ଦାସଙ୍କ ସହଯୋଗରେ କଟକ ସର୍କିଟ ହାଉସରେ ଆଠୋଟି ରୁମ୍ ଏବଂ ପାନ୍ଥନିବାସରେ ଚାରୋଟି ରୁମ୍ ମିଳିଯାଇଥିଲା । ପ୍ରଫୁଲ୍ଲ ଚନ୍ଦ୍ର ରଥ ସେତେବେଳେ ପୁଲିସ ଡିଆଇଜି ଥିଲେ । କଟକରେ ସର୍ବଭାରତୀୟ ସାମ୍ବାଦିକମାନଙ୍କର ଅଧିବେଶନ ହେଉଥିବା ଖବର ଶୁଣି ସେ ମତେ ଫୋନ କରି କହିଲେ, "କ'ଣ ପୁଲିସକୁ ନଜଣାଇ ଅଧିବେଶନ କରୁଛନ୍ତି ? ଆପଣଙ୍କୁ କ'ଣ ପୁଲିସର ସହାୟତା ଦରକାର ନାହିଁ ?"

ଶ୍ରୀ ରଥଙ୍କ ସହିତ ମୋର ଆନ୍ତରିକତା ଥିଲା । ତାଙ୍କୁ ଆଗରୁ ନ ଜଣାଇଥିବାରୁ ମନେମନେ ଲଜ୍ଜିତ ହେଲି । ମୁଁ ତାଙ୍କୁ କହିଲି, "ସବୁ କଥା ଭଲରେ ଚଳିଗଲେ ଲୋକେ କ'ଣ ପୁଲିସ ସାହାଯ୍ୟ ଖୋଜନ୍ତି ? ଆପଣଙ୍କୁ ବାଦ୍‌ଦେଇ କ'ଣ କିଛି ଫଙ୍କ୍‌ସନ ହୋଇପାରିବ ? ମୋର ଚାରୋଟି କାର୍ ଚାରିଦିନ ପାଇଁ ଦରକାର । ସେତିକି ହୋଇଗଲେ ଅନ୍ୟାନ୍ୟ କଥା ମୁଁ ଚଳାଇଦେବି ।"

ମୁଖ୍ୟମନ୍ତ୍ରୀଙ୍କ ଅତିରିକ୍ତ ସଚିବ ହରମୋହନବାବୁ ଭୁବନେଶ୍ୱର ଫେରିଆସି ମୋତେ ଡକାଇଥିଲେ । ମୁଁ ପହଞ୍ଚିଲା ପରେ ସୂଚନା ଓ ଲୋକସମ୍ପର୍କ ବିଭାଗ ସଚିବ ସମର ବଲ୍ଲଭ ମହାପାତ୍ରଙ୍କୁ ଡକାଇ ଗୋଟିଏ ବୈଠକ କଲେ । ଅଧିବେଶନ ପାଇଁ କ'ଣ କ'ଣ ସରକାରୀ ସାହାଯ୍ୟ ଦରକାର ତା'ର ଗୋଟିଏ ତାଲିକା ପ୍ରସ୍ତୁତ କରାଗଲା ।

ହରମୋହନବାବୁ ସମରବାବୁଙ୍କୁ କହିଲେ, ଦେଖନ୍ତୁ, ମୁଖ୍ୟମନ୍ତ୍ରୀ ଚାହୁଁଛନ୍ତି ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘ ଅଧିବେଶନ ପାଇଁ ଯାହା ସରକାରୀ ସାହାଯ୍ୟ ସମ୍ଭବ, ସେସବୁ ଯୋଗାଇ ଦିଆଯିବ । ଆପଣ ନୋଡାଲ ଅଫିସର ଭାବରେ ବିଭିନ୍ନ ବିଭାଗ ଓ ସଂସ୍ଥା ସହିତ ଯୋଗାଯୋଗ କରି ସେସବୁର ବ୍ୟବସ୍ଥା କରିବେ ।

ହରମୋହନବାବୁଙ୍କର ସେତିକି କଥା ମୋ ପାଇଁ ଯଥେଷ୍ଟ ଥିଲା । ମୋର ସମରବାବୁଙ୍କ ସହିତ ଆଗରୁ କଥାବାର୍ତ୍ତା ହୋଇଥିଲା । ସେ ଗୋଟିଏ ସର୍ତ୍ତ ରଖିଥିଲେ । ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ସାହାଯ୍ୟ କରିବା ପାଇଁ ତାଙ୍କୁ କୁହାଗଲେ ସବୁକାମ ସେ କରିଦେବେ । କଲେଜ ଜୀବନରୁ ତାଙ୍କ ସାଙ୍ଗରେ ପରିଚୟ ଥିଲା । ହରମୋହନବାବୁଙ୍କ ରୁମ୍‌ରୁ ବାହାରିଲା ବେଳେ ସେ ମତେ କହିଲେ, "ବସନ୍ତ, ତମ କାମ ସବୁ ହୋଇଯିବ । ତମର ବ୍ୟସ୍ତ ହେବାର କିଛି ନାହିଁ ।"

ବୈଠକରୁ ଫେରି ସମରବାବୁ ତାଙ୍କ କାମରେ ଲାଗିଗଲେ । ଆମର ସୁଯୋଗକୁ ସେହି ସମୟରେ ରାଜ୍ୟ ସଡ଼କ ପରିବହନ ନିଗମର ୧୦ଟି ନୂଆବସ କିଣା ହୋଇଥିଲା । ଆର.ଟି.ଓ ଅଫିସରେ ରେଜିଷ୍ଟ୍ରେସନ ହୋଇନଥିଲା । ସମରବାବୁ ନିଗମର ମ୍ୟାନେଜିଂ ଡାଇରେକ୍ଟର ପୀତବାସ ପଟ୍ଟନାୟକଙ୍କୁ ଫୋନ କରି କହିଲେ, "ଯୋଉ ନୂଆ ବସ୍ ସବୁ କିଣାଯାଇଛି, ସେଗୁଡିକ ମାର୍ଚ୍ଚ ୧୪ ତାରିଖରୁ ୧୭ ତାରିଖ ପର୍ଯ୍ୟନ୍ତ ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘ ପ୍ରତିନିଧିମାନଙ୍କୁ ନେବାଆଣିବା କାମରେ ଲାଗିବ ବୋଲି ମୁଖ୍ୟମନ୍ତ୍ରୀ କହିଛନ୍ତି । ଆପଣ ସାମ୍ବାଦିକ ବସନ୍ତ ଦାସଙ୍କ ସାଙ୍ଗରେ କଥାବାର୍ତ୍ତା କରି ସବୁକଥା ସ୍ଥିର କରିବେ ।"

ଅଧିବେଶନ କିପରି ସୁରୁଖୁରୁରେ ହେବ, ସେଥିପାଇଁ ମୁଁ ଲାଗି ପଡ଼ିଥିଲା ବେଳେ ଅଧିବେଶନକୁ ଭଣ୍ଡୁର କରିବା ପାଇଁ କିଛି ବନ୍ଧୁ ଚକ୍ରାନ୍ତ କରୁଥିଲେ । କାର୍ଯ୍ୟବ୍ୟସ୍ତତା ଭିତରେ ମୁଁ ତା'ର ଟେର୍ ପାଇପାରିନଥିଲି । ଏପରି ଚକ୍ରାନ୍ତର ନେତୃତ୍ୱ ନେଇଥିଲେ "ସମାଜ"ର କିଛି ସାମ୍ବାଦିକ ।

ମୋ ନେତୃତ୍ୱରେ କଟକରେ ସାମ୍ବାଦିକ ମହାସଂଘର ଅଧିବେଶନ ଅନୁଷ୍ଠିତ ହେଉଥିବା ଘଟଣା ସେମାନଙ୍କ ପାଇଁ ସୁଖକର ହୋଇନଥିଲା । ସମାଜର କେତେକ ଅବହେଳିତ ସାମ୍ବାଦିକମାନଙ୍କ ସ୍ୱାର୍ଥରକ୍ଷା ପାଇଁ ମୋର ଭୂମିକାକୁ ସେମାନେ ଭଲରେ ଗ୍ରହଣ କରିପାରି ନଥିଲେ । ସମାଜର ଏକପ୍ରକାର ମାଲିକ ଥିବା ରାଧାନାଥ ରଥଙ୍କ ମନକୁ ସେମାନେ ମୋ ବିରୋଧରେ ବିଷାକ୍ତ କରିଦେଇଥିଲେ ।

ଡକ୍ଟର ହରେକୃଷ୍ଣ ମହତାବ ଓ ରାଧାନାଥ ରଥଙ୍କୁ ଗୋଟିଏ ମଞ୍ଚରେ ଏକାଠି ବସାଇ ସମ୍ବର୍ଦ୍ଧିତ କରିବା କେବଳ କଷ୍ଟକର ବ୍ୟାପାର ନଥିଲା, ଦୁଃସାଧ ଥିଲା । ଦୀର୍ଘଦିନ ହେଲା ସେମାନେ ଗୋଟିଏ ସ୍ଥାନରେ ବସୁ ନଥିଲେ କିମ୍ବା ସେମାନଙ୍କ ମଧ୍ୟରେ ବାକ୍ୟାଳାପ ନଥିଲା ।

ଡକ୍ଟର ମହତାବଙ୍କୁ ସମ୍ବର୍ଦ୍ଧନା ଦେବା ସମ୍ପର୍କରେ ତାଙ୍କ ପାଳିତପୁତ୍ର ଭର୍ତ୍ତୃହରି ଯେତେବେଳେ ଶୁଣିଲେ, ମତେ କହିଲେ, "କ'ଣ ହେଲା, ଯୋଉ ଜାନକୀବାବୁ କାଲି ସକାଳେ ପ୍ରଜାତନ୍ତ୍ରରେ ଚାକିରି କରୁଥିଲେ, ବାବା ତାଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହେବେ ? ଏହା ସମ୍ଭବ ନୁହେଁ । ଏହା ଫଳରେ ବାବାଙ୍କର ସମ୍ମାନହାନୀ ଘଟିବ ।" ମୁଁ ତାଙ୍କୁ ବୁଝାଇବାକୁ ଚେଷ୍ଟାକରି କହିଥିଲି, ଡକ୍ଟର ମହତାବଙ୍କୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ସମ୍ବର୍ଦ୍ଧିତ କରିବେ । ସେ ଜାନକୀବାବୁ ହୋଇଥାଇ ପାରନ୍ତି । ମାତ୍ର ସେ ମୁଖ୍ୟମନ୍ତ୍ରୀ ବୋଲି ତ ଅସ୍ୱୀକାର କରିହେବନି ।

ଡକ୍ଟର ମହତାବ ଜଣେ ପ୍ରବୀଣ ରାଜନେତା । ଦୀର୍ଘବର୍ଷର ଅଭିଜ୍ଞତାର ଅଧିକାରୀ । ଜାନକୀବାବୁଙ୍କ ସହିତ ରାଜନୀତି କ୍ଷେତ୍ରରେ ତାଙ୍କର ମତପାର୍ଥକ୍ୟ ସୃଷ୍ଟି ହୋଇଥିଲା । ମାତ୍ର ସେ ନୀଚମନା ନଥିଲେ ।

ମୁଁ ତାଙ୍କୁ ସାକ୍ଷାତ କରି ଯେତେବେଳେ ମୋର ଅଭିପ୍ରାୟ ଜଣାଇଥିଲି, ସେ କୌଣସି ପ୍ରତିକ୍ରିୟା ପ୍ରକାଶ ନକରି ତାଙ୍କ ସମ୍ମତି ଦେଇଥିଲେ । ସେଥିସହିତ ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ କ'ଣ ସାହାଯ୍ୟ କରାଯାଇ ପାରିବ ବୋଲି ପଚାରିଥିଲେ ।

ମୁଁ ସେ ସୁଯୋଗକୁ ହାତଛଡା କରିବାକୁ ଚାହିଁନଥିଲି । ପ୍ରଜାତନ୍ତ୍ର ପକ୍ଷରୁ ଆପଣଙ୍କ ଉପସ୍ଥିତିରେ ଚା' ପାନରେ ସାମ୍ବାଦିକମାନଙ୍କୁ ଆପ୍ୟାୟିତ କରାଗଲେ ପ୍ରଜାତନ୍ତ୍ରର ସମ୍ମାନ ବୃଦ୍ଧି ହେବ ବୋଲି କହିବାରୁ, ଡକ୍ଟର ମହତାବ ରାଜି ହୋଇ କୋଉଦିନ ଦିଆଯିବ ସେ କଥା ଜଣାଇବାକୁ କହିଥିଲେ ।

ଅନ୍ୟପକ୍ଷରେ ରାଧାନାଥ ରଥ, ଡକ୍ଟର ମହତାବଙ୍କ ସହିତ ଏକତ୍ର ବସିବାକୁ ଅମଙ୍ଗ ଥିଲେ ବି ମୁହଁରେ ସେ କଥା ପ୍ରକାଶ କରିନଥିଲେ । ସେ ଜଣେ ତୋଷାମଦପ୍ରିୟ ବ୍ୟକ୍ତିଥିଲେ ବୋଲି ମୁଁ ଅନ୍ୟମାନଙ୍କ ଠାରୁ ଶୁଣିଥିଲି । ମୁଁ ସେଇ ଫର୍ମୁଲା ପ୍ରୟୋଗ କଲି । ମୁଁ ତାଙ୍କୁ କହିଲି, "ଆପଣ ସାମ୍ବାଦିକ ଜଗତରେ ଜଣେ ଗଣ୍ୟମାନ୍ୟ ବ୍ୟକ୍ତି । ଆପଣଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ସର୍ବଭାରତୀୟସ୍ତରରେ ନିଷ୍ପତ୍ତି ହୋଇଛି । ଆପଣଙ୍କୁ ସମ୍ବର୍ଦ୍ଧନା ଜଣାଇ ଭାରତୀୟ

ପେସାଦାର ସାମ୍ବାଦିକ ମହାସଂଘ ଗୌରବାନ୍ୱିତ ହେବ ବୋଲି ମହାସଂଘର କର୍ମକର୍ତ୍ତାମାନେ ମନେ କରନ୍ତି ।"

ମୋର ଏତିକି କଥାରେ ତାଙ୍କ ମୁଖମଣ୍ଡଳରେ ସ୍ମିତହାସ୍ୟ ଦେଖାଦେଇଥିଲା । ସେ କହିଲେ, "ହଉ ବାପା, ତମେମାନେ ଯଦି ନିଷ୍ପତ୍ତି କରିଛ, ମୁଁ ତାକୁ ମାନିବି । ଆଉ ଆମେ ଆପଣମାନଙ୍କ ପାଇଁ କ'ଣ କରିପାରୁବୁ ?"

ମୁଁ କହିଲି ସମାଜ ପକ୍ଷରୁ ଯଦି ଗୋଟିଏ ଚ' ଭୋଜିର ଆୟୋଜନ କରାଯାଇପାରିବ, ତାହା ଆମପାଇଁ ଯଥେଷ୍ଟ ହେବ । ସେ ମୋ ପ୍ରସ୍ତାବକୁ ଗ୍ରହଣ କରି କହିଲେ, "ହଉ ଆମେ ପ୍ରତିନିଧିମାନଙ୍କୁ କଟକରେ ଚ' ଦେବୁ । ତା' ସହିତ ଯଦି ସେମାନେ ପୁରୀ ଯିବେ, ତେବେ ଲୋକସେବକମଣ୍ଡଳ ପକ୍ଷରୁ ସାମ୍ବାଦିକମାନଙ୍କୁ ଆମେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅବଢ଼ା ଖୁଆଇବାର ବ୍ୟବସ୍ଥା ମଧ୍ୟ କରିବୁ ।" ମୁଁ ମୋର କୃତଜ୍ଞତା ଜଣାଇ ଶ୍ରୀ ରଥଙ୍କ ଠାରୁ ବିଦାୟ ନେଇଥିଲି ।

ଦେଶର ବିଭିନ୍ନ ପ୍ରାନ୍ତରୁ ପ୍ରତିନିଧିମାନେ ଟ୍ରେନ ଯୋଗେ ଆସି ବାରବାଟୀ ଷ୍ଟାଡିୟମରେ ପହଞ୍ଚିଥିଲେ । ଆମ ପକ୍ଷରୁ ସେମାନଙ୍କୁ ଷ୍ଟେସନରୁ ଆଣିବାର ବ୍ୟବସ୍ଥା ହୋଇଥିଲା । କଟକର ସହିଦଭବନ ଠାରେ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଆନୁଷ୍ଠାନିକ ଭାବରେ ଅଧିବେଶନକୁ ଉଦ୍‌ଘାଟନ କରିଥିଲେ ।

ସେଦିନ ସନ୍ଧ୍ୟାରେ ମୁଖ୍ୟମନ୍ତ୍ରୀଙ୍କ ପକ୍ଷରୁ ପ୍ରତିନିଧିମାନଙ୍କୁ ନୈଶ୍ୟଭୋଜିରେ ଆପ୍ୟାୟିତ କରାଯାଇଥିଲା । ଗୋଟିଏ ମଞ୍ଚରେ ଡକ୍ଟର ମହତାବ ଓ ରାଧାନାଥ ରଥଙ୍କୁ ଦେଖିବାପାଇଁ ଲୋକଙ୍କ ଭିତରେ ଉତ୍କଣ୍ଠା ସୃଷ୍ଟି ହୋଇଥିଲା । କୌଣସି ବିବାଦୀୟ ପ୍ରଶ୍ନ ନଥିଲେ ମଧ୍ୟ ନିଜ ନିଜର ଅହଂଭାବ ଯୋଗୁ ସେମାନେ ପରସ୍ପର ଠାରୁ ଦୂରେଇ ରହିଥିଲେ ।

ଅଧିବେଶନ ସମୟକାଳରେ ପ୍ରତିନିଧିମାନେ ନିଜନିଜ ରାଜ୍ୟଶାଖାର ବ୍ୟାନର ଧରି କଟକର ରାଜରାସ୍ତାରେ ମାର୍ଚ୍ଚ କରି ଗଲାବେଳେ ବିଭିନ୍ନ ସ୍ଥାନରେ ସେମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା ।

ଈଶ୍ୱରଙ୍କର ମୋ ପ୍ରତି ଅସୀମ କରୁଣା ଥିଲା । ତାଙ୍କରି କୃପାରେ ପଙ୍ଗୁ ଗିରି ଲଂଘିଲା ପରି ମୁଁ କେତେକ ବନ୍ଧୁଙ୍କ ବିରୋଧ ସତ୍ତ୍ୱେ ଏତେ ବଡ଼ ଅଧିବେଶନ କରାଇବାରେ ସକ୍ଷମ ହୋଇପାରିଥିଲି ।

କଟକରେ ଅଧିବେଶନ ସହିତ ନନ୍ଦନକାନନ, ଧଉଳି, କୋଣାର୍କ ଓ ପୁରୀ ପରିଦର୍ଶନ କରିବା ଇତ୍ୟାଦି ସବୁକାମ ସୁରୁଖୁରୁରେ ଶେଷ ହୋଇଥିଲା । ଶେଷରେ ପୁରୀଠାରେ ମହାପ୍ରସାଦ ସେବନକୁ ଦୀର୍ଘଦିନ ଧରି ସେମାନେ ଭୁଲିପାରି ନଥିଲେ । ସମସ୍ତପ୍ରକାର ଚକ୍ରାନ୍ତ ଓ ଷଡ଼ଯନ୍ତ୍ର ସତ୍ତ୍ୱେ ମହାସଂଘରେ ମୋର ଲୋକପ୍ରିୟତା ବୃଦ୍ଧି ପାଇଥିଲା । ଯାହାଫଳରେ ପରବର୍ତ୍ତୀକାଳରେ

ମୁଁ ମହାସଂଘର ଉପସଭାପତି ହେବାରେ ସକ୍ଷମ ହୋଇଥିଲି । କିନ୍ତୁ ସର୍ବଭାରତୀୟସ୍ତରରେ ମୋର ପ୍ରତିଷ୍ଠାରେ ବହୁ ବନ୍ଧୁ ମୋ ପ୍ରତି ଇର୍ଷାନ୍ୱିତ ହୋଇଥିଲେ । ଏପରିକି ଯେଉଁ ମହେଶ୍ୱର ମୂଳିଆଙ୍କୁ ଆତ୍ମହତ୍ୟା ଉଦ୍ୟମରୁ ମୁଁ ରକ୍ଷା କରିଥିଲି, ସାମାନ୍ୟ କେଇପେଗ୍ ମଦ ବିନିମୟରେ ସେ ମୋ ପ୍ରତି ବିଶ୍ୱାସଘାତକତା କରିବାକୁ ପଛେଇ ନଥିଲେ ।

# ଆଉଥରେ ଭାଗ୍ୟ ପରୀକ୍ଷା

୧୯୮୭ ମସିହାରେ ପୁଅ ଚନ୍ଦନ ପ୍ଲସ ଟେନ ପାସ୍ କଲା । ତା'ର ସାଇନସ ପଢ଼ିବା କଥା । ସେତେବେଳେ ସମଗ୍ର ରାଜ୍ୟରେ ବିଜେବି କଲେଜର ସୁନାମ ଥିଲା । ଚାରିଆଡୁ ପିଲା ଆସି ସେଠି ନାଁ ଲେଖାଉଥିଲେ । ବିଜେବି କଲେଜରେ ପଢ଼ିବା ଗୋଟାଏ ସମ୍ମାନର କଥା ବୋଲି ବିଚାର କରାଯାଉଥିଲା । ନବେ ପରସେଣ୍ଟ ଉପରେ ମାର୍କ ରଖିଥିବାରୁ ପ୍ରଥମ ସିଲେକସନରେ ଚନ୍ଦନର ଆଡମିଶନ ହୋଇଗଲା । ନାଁ ସିନା ଲେଖା ହୋଇଗଲା, ହେଲେ କଟକରୁ ପ୍ରତିଦିନ ଭୁବନେଶ୍ୱର ଯିବାଆସିବା କରିବା କେମିତି ? ତାହା ମୋ ପାଇଁ ଗୋଟାଏ ଚିନ୍ତାର ବିଷୟ ହେଲା ।

ଓଡ଼ିଆରେ ଗୋଟାଏ କଥା ଅଛି, 'ରଖେ ହରି ମାରେ କୋନ, ମାରେ ହରି ରଖେ କୋନ' । ଯାହାର ଅର୍ଥ ହେଉଛି, ଯଦି ପ୍ରଭୁ ରକ୍ଷାକରିବେ ତେବେ କିଏ ମାରିପାରିବ ? ଆଉ ଯଦି ପ୍ରଭୁ ମାରିବେ, ତେବେ କିଏ ରକ୍ଷା କରିପାରିବ ? ସେତେବେଳେ ମୋ କ୍ଷେତ୍ରରେ ସେଇୟା ଘଟିଲା । ପ୍ରଭୁ ମତେ ସହାୟତା କଲେ । ଯାହା କୁହାଯାଏ, ବିଲେଇ କପାଳକୁ ଶିକା ଛିଡ଼ିଲା ଭଳି ।

ଅମୃତ ବଜାର ପତ୍ରିକା ମ୍ୟାନେଜମେଣ୍ଟରେ ସେହି ସମୟରେ ପରିବର୍ତ୍ତନ ଘଟିଲା । ବୟସ୍କମାନଙ୍କ ବଦଳରେ ଯୁବଗୋଷ୍ଠୀଙ୍କ ହାତକୁ ପରିଚାଳନା ଭାର ଆସିଲା । ପତ୍ରିକା ହାଉସର ମାଲିକ ତୁଷାରକାନ୍ତି ଘୋଷଙ୍କ ନାତୁଣୀ ରୀତା ଦତ୍ତ ଓ ନାତୁଣୀ ବୋହୂ ସୁବର୍ଣ୍ଣା ଘୋଷ ସବୁ ବୁଝାବୁଝି କଲେ । ସେମାନେ ମତେ ଦୀର୍ଘଦିନୁ ଜାଣିଥିଲେ ।

ଚାକିରି କ୍ଷେତ୍ରରେ ମୋ ପ୍ରତି କିପରି ଅନ୍ୟାୟ କରାଯାଇଥିଲା, ଗୋପାଳବାବୁ ତଞ୍ଚକତା କରି କିପରି ମତେ ଷ୍ଟାଫ୍ କରେସପଣ୍ଡେଣ୍ଟ କରାଇ ଦେଉନଥିଲେ ସେକଥା ସେମାନେ

ବୁଝିଥିଲେ । ନୂଆ ମ୍ୟାନେଜମେଣ୍ଟରେ ଗୋପାଳବାବୁଙ୍କ କାଟ୍‌ତି କମିଗଲା । ମତେ ମଧ୍ୟ ଭାଗ୍ୟ ସହାୟତା କଲା ।

ମିସେସ ରୀତା ଦତ୍ତ ଓ ମିସେସ୍ ଘୋଷ ପୁରୀ ଆସିଥିଲେ । ମୁଁ ସେମାନଙ୍କ ସାଙ୍ଗରେ ଥିଲି । ପୁରୀ ସମୁଦ୍ରକୂଳରେ ବସିଥିଲା ବେଳେ ସେମାନଙ୍କ ସହିତ ଖୋଲାମନରେ କଥାବାର୍ତ୍ତା ହେଲା । ସେମାନେ ମତେ ଭୁବନେଶ୍ୱରକୁ ବଦଳି କରିବାକୁ ଚାହିଁଥିଲେ ।

ମୁଁ ସେଥିରେ ରାଜିହେବା ସଙ୍ଗେସଙ୍ଗେ ଗୋଟାଏ ସର୍ତ୍ତ ରଖିଥିଲି । "ମତେ ଷ୍ଟାଫ କରେସପଣ୍ଡେଣ୍ଟ ନକଲେ ମୁଁ ଭୁବନେଶ୍ୱର ଯିବିନାହିଁ । ବରଂ ଚାକିରି ଛାଡ଼ିଦେବି ।" ମୋ ସର୍ତ୍ତରେ ଦମ୍ ଥିଲା । କିଛି ସମୟ ଆଲୋଚନା ପରେ ସେମାନେ ମୋ ସର୍ତ୍ତକୁ ମାନିନେଇଥିଲେ ।

ସାତଦିନ ପରେ ମୋର ପ୍ରମୋସନ ସହିତ ଭୁବନେଶ୍ୱରକୁ ବଦଳି ହେଲା । ଗୋପାଳବାବୁଙ୍କ ପାଖକୁ ସେ ଅର୍ଡରର କପି ଆସିଲା । ସେ ସେଥିରେ ଖୁସି ନଥିଲେ । ମାତ୍ର ଉପରଠାଉରିଆ ଭାବରେ ଖୁସି ହୋଇଛନ୍ତି ବୋଲି ଦେଖେଇହୋଇଥିଲେ ।

ଅର୍ଡର ପାଇ ଦିନା କେତେ ମୁଁ କଟକରୁ ଯିବାଆସିବା କଲି । ସକାଳ ନଅଟା ବେଳେ ଘରୁ ବାହାରି ଫେରିଲା ବେଳକୁ ପୁଣି ରାତି ନଅଟା । ବୟସ ଥିବାରୁ ସବୁକଥା ଚଳିଯାଉଥିଲା । ହେଲେ କଷ୍ଟ ହେଉଥିଲା । ଖରାବେଳେ ଖାଇବାପିଇବାରେ ଠିକ୍‌ଠିକଣା ନଥିଲା । ଚନ୍ଦନ ମଧ୍ୟ କଲେଜକୁ ଯିବାଆସିବା କରୁଥିଲା । ଭୁବନେଶ୍ୱରରେ ଗୋଟିଏ କ୍ୱାଟର ପାଇବା ପାଇଁ ମୁଁ ଚେଷ୍ଟା କଲି । ବହୁତ ଖୋଜାଖୋଜି ଓ ଉଦ୍ୟମ ପରେ ଦି'ନମ୍ବର ୟୁନିଟ୍‌ରେ ଟାଇପ୍ ଫାଇଭ୍ ଘରଟିଏ ମିଳିଲା । ତିନିବଖରା ଘର । ରୋଷେଇ, ଗାଧୁଆ ଘର ଅଲଗା । ଆମ ପରିବାର ପାଇଁ ଯଥେଷ୍ଟ ଥିଲା ।

ମୁଁ କଟକରୁ ଡ଼େରା ଉଠାଇ ଭୁବନେଶ୍ୱର ଆସିଲି । କଟକରେ ୱାଇ.ଏସ୍.ସି.ଏ ସାମନାରେ ମୁଁ ଯେଉଁଠି କ୍ୱାଟର ପାଇଥିଲି, ସେଠାରେ ଛଅଟି କ୍ୱାଟର ଥିଲା । ମତେ ଛାଡ଼ିଦେଲେ ଅନ୍ୟମାନେ ସରକାରୀ ଅଫିସର । ପ୍ରଥମରୁ ସେମାନେ ଆମକୁ ନିମ୍ନଦୃଷ୍ଟିରେ ଦେଖିଥିଲେ । ଆମର ଆସବାବପତ୍ର ବିଶେଷ ନଥିବାରୁ ଆମେ ସେମାନଙ୍କ ସମକକ୍ଷ ନୁହଁ ବୋଲି ସେମାନେ ପ୍ରଥମେ ବିଚାରିଥିଲେ । କ୍ରମେ ସେମାନଙ୍କ ସହିତ ପରିଚୟ ହୋଇଥିଲା । ପରିଚୟରୁ ବନ୍ଧୁତା ଓ ଶେଷରେ ତାହା ଆତ୍ମୀୟତାରେ ରୂପାନ୍ତରିତ ହୋଇଥିଲା । ଏପରିକି ଆମ ଭିତରେ ତରକାରୀପତ୍ର ମଧ୍ୟ ଦିଆନିଆ ହେଉଥିଲା ।

ମୋର ଆଜି ମନେ ପଡୁଛି, ଆମେ ଯୋଉଦିନ କଟକ ଘର ଛାଡିଲୁ, ସେ କଲୋନୀର ସମସ୍ତେ କାନ୍ଦିକାନ୍ଦି ଆମକୁ ବିଦାୟ ଦେଇଥିଲେ । ବାହାହୋଇ ଝିଅ ଶାଶୂଘରକୁ ଗଲେ ଯେଭଳି ପରିସ୍ଥିତି ସୃଷ୍ଟି ହୋଇଥାଏ, ସେଦିନ ସେଇୟା ହୋଇଥିଲା । ମୁଁ ଯାଇ ଗାଡିରେ ବସିଲା ପରେ ବି ସେମାନେ ମୋ ପତ୍ନୀ ପ୍ରମଦାଙ୍କୁ ଛାଡୁନଥାନ୍ତି । ହାତ ଧରାଧରି ହୋଇ

କାନ୍ଦବୋବାଳି ଚାଲିଥିଲା । ଏହା ହିଁ ଦୁନିଆର ନିୟମ । ଭଲ ବ୍ୟବହାରରେ ପରଆପଣାର ହୋଇଯାଇଥାଏ । ଆଉ ଖରାପ ସମ୍ପର୍କ ହେଲେ ଆପଣାର ଲୋକେ ପର ପାଲଟିଯାଆନ୍ତି । ଶେଷରେ ଆମେ ସେମାନଙ୍କ ପାଖରୁ ବିଦାୟ ନେଇ ଭୁବନେଶ୍ୱର ଆସିଲୁ ।

ଭୁବନେଶ୍ୱରକୁ ଗୋଲାମ ନଗର ବୋଲି କୁହାଯାଏ । କାରଣ ଏ ସହରର ଅଧିକାଂଶ ହେଉଛନ୍ତି ସରକାରୀ ଚାକିରିଆ । ଏ ସହରରେ ଭାଇଚାରା ବ୍ୟବସ୍ଥା ନାହିଁ । ଅଫିସ କାମ ଶେଷରେ ଲୋକେ ଥରେ ଘରେ ପଶିଗଲେ ଆଉ ବାହାରନ୍ତି ନାହିଁ ।

ପଡ଼ିଶା ଘରେ କ'ଣ ହେଉଛି ଜାଣିବାକୁ କେହି ଚେଷ୍ଟା କରନ୍ତି ନାହିଁ । ଯାହା କୁହାଯାଏ, ଆପେ ବଞ୍ଚିଲେ ବାପର ନାଁ, ଠିକ୍ ସେଇୟା । କିନ୍ତୁ ଯେଉଁମାନେ କଟକ ସହରରେ ବଢ଼ିଛନ୍ତି, ସେମାନଙ୍କ ଜୀବନଦର୍ଶନ ଅଲଗା । ସାଙ୍ଗମେଳ, ବସାଉଠା, ଖାଇବାପିଇବା ନହେଲେ ସେମାନେ ଚଳିପାରନ୍ତି ନାହିଁ ।

ଭୁବନେଶ୍ୱରକୁ ଷ୍ଟାଫ କରେସପଣ୍ଡେଣ୍ଟ ହୋଇଆସିବା ପରେ ମୁଁ ଭାବିଥିଲି, ବୋଧହୁଏ ମୋର ଦୁଃଖର ଦିନ ସରିଗଲା । ଏଣିକି ସୁବିଧାରେ ଚଳିବି । ମାତ୍ର ସେ ଭାବନା କେବଳ ଭାବନାରେ ରହିଗଲା ।

ଅମୃତ ବଜାର ପତ୍ରିକାର ସଂପାଦକ ତୁଷାରକାନ୍ତ ଘୋଷଙ୍କର ଦେହାନ୍ତ ପରେ ସବୁ ଓଲଟପାଲଟ ହୋଇଗଲା । ତାଙ୍କ ପୁଅ ତରୁଣକାନ୍ତି ଘୋଷ ଜଣେ ରାଜନୈତିକ ବ୍ୟକ୍ତି ଥିଲେ । ସମ୍ବାଦପତ୍ର ଚଳାଇବା ଅପେକ୍ଷା ରାଜନୀତିରେ ତାଙ୍କର ଅଧିକ ଆଗ୍ରହ ଥିଲା । ପଶ୍ଚିମବଙ୍ଗରେ ରାଜନୀତି କ୍ଷେତ୍ରରେ ବାମପନ୍ଥୀମାନଙ୍କୁ ମୁକାବିଲା କରିବା ପାଇଁ ଅଧିକ ଟଙ୍କାର ଆବଶ୍ୟକ ପଡୁଥିଲା । ସେଥିପାଇଁ ତରୁଣବାବୁ ପିଲାଙ୍କ ପାଖରୁ ଅମୃତ ବଜାର ପତ୍ରିକାର ପରିଚାଳନା ଭାର କାଢ଼ି ନେବାକୁ ଚାହିଁଲେ । ସେ କଂପାନୀର ମ୍ୟାନେଜିଂ ଡାଇରେକ୍ଟର ଥିବାରୁ ନିୟମ ଦୃଷ୍ଟିରୁ ତାଙ୍କ ହାତରେ ସବୁ କ୍ଷମତା ଥିଲା । ସେ ପିଲାମାନଙ୍କ ନିଷ୍ପତ୍ତିରେ କ୍ରମେ ହସ୍ତକ୍ଷେପ କରିବାକୁ ଚାହିଁଲେ । ସେ ଘଟଣାରେ ତରୁଣବାବୁ ଓ ପିଲାମାନଙ୍କ ଭିତରେ ମନୋମାଳିନ୍ୟ ଘଟିଲା । ଶେଷରେ ରୀତା ଦତ୍ତ ଓ ସୁବର୍ଣ୍ଣା ଘୋଷ ପରିଚାଳନାରୁ ଅଲଗା ହୋଇଗଲେ ।

ଅନ୍ୟ ରାଜନେତାଙ୍କ ଭଳି ତରୁଣବାବୁ ମଧ୍ୟ ତୋଷାମଦପ୍ରିୟ ଥିଲେ । ଚାଟୁକାର ଓ ତୋଷାମଦକାରୀମାନେ ସର୍ବଦା ତାଙ୍କ ଚାରିପାଖେ ଘେରି ରହୁଥିଲେ । ସେମାନଙ୍କୁ ଖୁସି କରିବା ପାଇଁ ପ୍ରଚୁର ଅର୍ଥର ଆବଶ୍ୟକ ପଡୁଥିଲା । ତରୁଣବାବୁ ସେ ଅର୍ଥ ପତ୍ରିକା ପାଣ୍ଠିରୁ ଉଠାଇବାକୁ ଆରମ୍ଭ କଲେ । କ୍ରମେ ତାହା ଏକ ରୁଟିନରେ ପଡ଼ିଗଲା । କିଛିଦିନ ଭିତରେ ପତ୍ରିକାର ଆର୍ଥିକସ୍ଥିତି ଦୁର୍ବଳ ହୋଇଗଲା ।

ରୀତା ଦତ୍ତଙ୍କ ହାତରେ ପତ୍ରିକାର ମ୍ୟାନେଜମେଣ୍ଟ ଭାର ନ୍ୟସ୍ତ ଥିଲାବେଳେ ସେ ପତ୍ରିକା ହାଉସ୍‌ର ଆଧୁନିକୀକରଣ ପାଇଁ ଉଦ୍ୟମ କରିଥିଲେ । କମ୍ପ୍ୟୁଟରର ପ୍ରଚଳନ

କରାଯାଉଥିଲା । ସେତେବେଳେ ଅମୃତ ବଜାର ଓ ଯୁଗାନ୍ତରର କର୍ମଚାରୀ ସଂଖ୍ୟା ପାଖାପାଖି ପନ୍ଦର ଶହ ଥିଲା । କମ୍ପ୍ୟୁଟରର ପ୍ରଚଳନ ଫଳରେ ମାତ୍ର ତିନିଶହ କର୍ମଚାରୀଙ୍କ ଦ୍ୱାରା ସବୁକାମ ହୋଇପାରିବ ବୋଲି ଆକଳନ କରାଯାଇ ଅନ୍ୟମାନଙ୍କୁ ପର୍ଯ୍ୟାୟକ୍ରମେ ଚାକିରିରୁ ଅନ୍ତର କରିବା ପାଇଁ ଶ୍ରୀମତୀ ଦତ୍ତ ଏକ ଦୃଢ଼ ନିଷ୍ପତ୍ତି ନେଇଥିଲେ ।

ସେ ନିଷ୍ପତ୍ତି କାର୍ଯ୍ୟକାରୀ ହୋଇଥିଲେ ପତ୍ରିକାର ଦୁର୍ଦ୍ଦଶା ହୋଇନଥାନ୍ତା । ମାତ୍ର ନିଜର ରାଜନୈତିକ ସ୍ୱାର୍ଥ ପୂରଣ ପାଇଁ ତରୁଣବାବୁ ଝିଅର ନିଷ୍ପତ୍ତିକୁ ଗ୍ରହଣ କଲେନାହିଁ । ଫଳରେ କିଛିଦିନ ଚାଲିଲା ପରେ ଅମୃତ ବଜାର ପତ୍ରିକା ଓ ଯୁଗାନ୍ତରର ପ୍ରକାଶନ ବନ୍ଦ ହୋଇଗଲା । ଏହାର ଗୁରୁତର ପ୍ରଭାବ କର୍ମଚାରୀମାନଙ୍କ ଉପରେ ପଡ଼ିଲା । ଅନେକଙ୍କ ଘରେ ଚୁଲୀରୁ ନିଆଁ ଲିଭିଗଲା ।

କଲିକତାରେ ଘଟିଥିବା ଘଟଣାରେ ମୁଁ ମଧ୍ୟ ଗଭୀର ଭାବରେ ପ୍ରଭାବିତ ହୋଇଥିଲି । ପତ୍ରିକା ଚାକିରି ସେତବେଳେ ମୋର ରୋଜଗାରର ଏକମାତ୍ର ପନ୍ଥା ଥିଲା । ପାଖରେ ଯାହା ସାମାନ୍ୟ ସଂଚୟ ଥିଲା ତାହା ମଧ୍ୟ ସରିସରି ଆସିଲା ।

ଅପରପକ୍ଷରେ ଆବଶ୍ୟକ ଖର୍ଚ୍ଚ କମିଲା ନାହିଁ । ପରିବାର ଚଳାଇବା କଷ୍ଟକର ହୋଇ ପଡିଲା । କ'ଣ କରାଯିବ ସେ କଥା ମୁଁ ସ୍ଥିର କରି ପାରିନଥିଲି । ଅନେକ ବନ୍ଧୁ ଅନେକ ପରାମର୍ଶ ଦେଇଥିଲେ । ମାତ୍ର ମନଭିତରେ ଥିବା ସ୍ୱାଭିମାନ, ନୀତି ସହିତ ସାଲିସ୍ କରିବାକୁ ବାଧା ଦେଲା ।

ବନ୍ଧୁ ଆଲୋଚନା ପରେ ସ୍ୱାଧୀନ ଭାବରେ ସାପ୍ତାହିକ ସମ୍ବାଦପତ୍ରଟିଏ ବାହାର କରିବାକୁ ସ୍ଥିରକଲି । ରାଜଧାନୀର ଚାରିନମ୍ବର ୟୁନିଟ୍‌ରେ ମୋର ଗୋଟିଏ ଘର ଥିଲା । ତା'ର ମୁଖ୍ୟ ଅଂଶ ଭଡା ଲାଗିଥିଲା । ଗୋଟିଏ ପଟେ ଦୁଇବଖରା ଘର ଖାଲି ପଡିଥିଲା । ସେଇଠି ଗୋଟିଏ ଛୋଟ ମେସିନ୍ ପକାଇ ସାପ୍ତାହିକ ପ୍ରକାଶନ ସହିତ କିଛି ବାହାର କାମ କରିବାକୁ ସ୍ଥିରକଲି । ମାତ୍ର ସେଥିପାଇଁ ଆବଶ୍ୟକ ପଡୁଥିବା ଅର୍ଥ ସେଥିରେ ବାଧକ ହେଲା । ପ୍ରାରମ୍ଭିକ ଅବସ୍ଥାରେ କିଛି ବନ୍ଧୁ ସାହାଯ୍ୟର ହାତ ବଢ଼ାଇଥିଲେ ।

ସେତେବେଳେ ରାଜ୍ୟ ଅର୍ଥ ନିଗମରୁ ଋଣ ନେଇ ଯେଉଁମାନେ ପ୍ରେସ୍ କରିଥିଲେ ଓ ଠିକ୍ ସମୟରେ କିସ୍ତି ପଇଠ କରୁନଥିଲେ, ନିଗମ ପକ୍ଷରୁ ସେମାନଙ୍କ ମେସିନ୍ ଇତ୍ୟାଦି ଜବତ କରାଯାଉଥିଲା ।

ମୁଁ ଅର୍ଥ ନିଗମର ମ୍ୟାନେଜିଂ ଡାଇରେକ୍ଟର ତ୍ରୈଲୋକ୍ୟନାଥ ମହାପାତ୍ରଙ୍କୁ ଦେଖାକରି ସବୁକଥା କହିଲି । ସେ ମତେ ଭଲଭାବରେ ଜାଣିଥିଲେ । ମୋ ପ୍ରତି ସହାନୁଭୂତିଶୀଳ ହୋଇ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଇଥିଲେ । ବନ୍ଧୁ ମହଲରେ ଟି.ଏନ ଭାବରେ ଜଣାଶୁଣା ଶ୍ରୀ ମହାପାତ୍ର ଜଣେ ସାହାଯ୍ୟକାରୀ ବ୍ୟକ୍ତିଥିଲେ ।

ଦିନେ ସକାଳେ ମୁଁ ଘରେ ବସି ଖବରକାଗଜ ପଢୁଥିଲା ବେଳେ ଟି.ଏନଙ୍କ ଫୋନ ଆସିଲା । ସେ ମତେ କହିଲେ, "ବସନ୍ତ, ତମ କାମ ହୋଇଯିବ । ରବି ଟକିଜ୍ ପାଖରେ ଗୋଟିଏ ଟ୍ରେଡେଲ ମେସିନ୍ ଦୁଇଦିନ ତଳେ ସିଜ୍ ହୋଇଛି । ମେସିନ୍‌ଟି ଚାଲୁ ଅବସ୍ଥାରେ ଥିଲା । ଟ୍ରେଡେଲ ମେସିନ୍ ସହିତ ସେଠାରେ ଗୋଟିଏ କଟିଙ୍ଗ ମେସିନ୍ ଓ କିଛି ଅକ୍ଷର କେସ ମଧ୍ୟ ଅଛି । ସେତିକିରେ ତମ କାମ ଚଳିଯିବ । ସେସବୁ ମିଶି ଦାମ୍ ପ୍ରାୟ ୩୦ହଜାର ଟଙ୍କା ହେବ । ତମେ ପାଞ୍ଚ ହଜାର ଟଙ୍କା ଯୋଗାଡ଼ କର । ମୁଁ କିସ୍ତିରେ ସେ ପ୍ରେସଟି କରାଇଦେବି । ହଁ, ମନେରଖ, ଶୀଘ୍ର ନିଷ୍ପତ୍ତି ନନେଲେ ହୁଏତ ପ୍ରେସଟି ଆମ ହାତରୁ ଖସିଯାଇପାରେ ।"

ଟି.ଏନ୍.ଙ୍କ କଥା ମତେ ଯେତିକି ଆନନ୍ଦ ଦେଇଥିଲା, ତା'ଠାରୁ ଅଧିକ ଚିନ୍ତାରେ ପକାଇ ଦେଇଥିଲା । ପାଞ୍ଚହଜାର ଟଙ୍କା ହୁଏତ ମୁଁ ଯୋଗାଡ କରିଦେବି । ମାତ୍ର ସେତିକି ହେଲେ ତ ପ୍ରେସ ଚାଲିପାରିବ ନାହିଁ । ପ୍ରେସ୍ ପାଇଁ ଆହୁରି ଅନେକ ଆନୁଷଙ୍ଗିକ ସାମଗ୍ରୀ ଦରକାର । ସେଥିପାଇଁ ଟଙ୍କା କୁଆଡୁ ଆସିବ ?

ବହୁ ଚିନ୍ତାକରି ମୁଁ ନିଷ୍ପତ୍ତି କଲି କିଛି ଅନ୍ତରଙ୍ଗ ଲୋକଙ୍କ ଠାରୁ କିଛି ଟଙ୍କା ଧାର ସୂତ୍ରରେ ଆଣି ପ୍ରେସଟି ଆରମ୍ଭ କରିଦେବି । ପାଞ୍ଚଜଣଙ୍କୁ ବାଛି ମୋ ମନର କଥା କହିଲି । ସେମାନଙ୍କ ଭିତରୁ ଚାରିଜଣ ସାହାଯ୍ୟର ହାତ ବଢ଼େଇଲେ । ସେମାନଙ୍କ ପାଖରୁ କୋଡିଏ ହଜାର ଟଙ୍କା ମିଳିଗଲା । ଟଙ୍କା ମିଳିବା ପରେ ମନରେ ସାହସ ବଢ଼ିଗଲା ।

ମୁଁ ଟି.ଏନଙ୍କୁ ଦେଖାକରି ଆବଶ୍ୟକ କାଗଜପତ୍ର ଠିକ୍ କଲି । ଦୁଇ ତିନିଦିନ ଭିତରେ ଟଙ୍କାପଇସା ଦାଖଲ କରି ରବି ଟକିଜ୍ ଛକରୁ ପ୍ରେସଟି ଚାରି ନମ୍ବରରେ ଥିବା ଘରକୁ ଉଠାଇ ଆଣିଲି । କାମ ଚଳିଲା ଭଳି କଟକରୁ କିଛି ସୀସା ଅକ୍ଷର ଓ ଅକ୍ଷର ରଖିବା ପାଇଁ କେସ ଆସିଲା । ଦୁଇଜଣ କମ୍ପୋଜିଟର ମଧ୍ୟ ଯୋଗାଡ ହୋଇଗଲେ ।

ପନ୍ଦର ଦିନର ଉଦ୍ୟମ ପରେ ପ୍ରେସ ଚାଲୁ ଅବସ୍ଥାକୁ ଆସିଗଲା । ପାଖରେ ଥିବା ଗୋଟିଏ ପ୍ରେସର ଜଣେ ମେସିନ୍‌ମ୍ୟାନ ଥିଲେ । ସେ ଆସି ମେସିନ୍ ଚଳାଇବାକୁ ରାଜି ହୋଇଗଲେ । ପାଞ୍ଜି ଦେଖି, ପୂଜା କରି 'ଅପରାଜିତ୍' ପ୍ରେସ୍ ଆରମ୍ଭ ହେଲା । ମଝିରେ ମଝିରେ କିଛି କାମ ବି ଆସିଲା । ପତ୍ରିକା ବନ୍ଦ ପରେ ମନରେ ଯେଉଁ ବିଶାଦ ଭାବ ଥିଲା, ତା' କିଛି ପରିମାଣରେ ଦୂର ହୋଇଗଲା ।

ପ୍ରେସ ସିନା ଚାଲୁ ହୋଇଗଲା, ମାତ୍ର ଯେଉଁ ମୂଳ ଉଦ୍ଦେଶ୍ୟ ପାଇଁ ପ୍ରେସ କରାଯାଇଥିଲା, ସେ ଦିଗରେ ବିଶେଷ କିଛି ଅଗ୍ରଗତି ହୋଇପାରିଲାନାହିଁ । ଦୈନିକ ହେଉ ବା ସାପ୍ତାହିକ ହେଉ, ତା'ର ପ୍ରକାଶନ ପାଇଁ ଯେ ଏତେ ଅସୁବିଧାର ସମ୍ମୁଖୀନ ହେବାକୁ ହୁଏ, ସେ ବିଷୟରେ ମୋର ଧାରଣା ନଥିଲା ।

ପ୍ରଚଳିତ ପଦ୍ଧତି ଅନୁଯାୟୀ ସ୍ଥାନୀୟ ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ପାଖରେ ପ୍ରସ୍ତାବିତ କାଗଜ ପାଇଁ ଆବେଦନପତ୍ର ସହ ଛଅଟି ନାଁ ଦାଖଲ କରିବାକୁ ହୁଏ । ଏ.ଡି.ଏମ ସେ ଆବେଦନପତ୍ରକୁ ଦିଲ୍ଲୀରେ ଥିବା ଭାରତ ସରକାରଙ୍କ ଆର.ଏନ.ଆଇ (ରେଜିଷ୍ଟ୍ରାର ଅଫ୍ ନ୍ୟୁଜ୍ ପେପର ଅଫ ଇଣ୍ଡିଆ)ଙ୍କ ପାଖକୁ ପଠାଇଦିଅନ୍ତି । ଏଡିଏମ୍‌ଙ୍କ ଅଫିସରେ ଜଣାଶୁଣା ନଥିଲେ କିମ୍ବା ହାତଗୁଞ୍ଜା ନଦେଲେ ଦରଖାସ୍ତଟି ହୁଏତ ହଜିଯାଇପାରେ, ନଚେତ୍ ଦିଲ୍ଲୀକୁ ପଠାଇବାରେ ବିଳମ୍ବିତ ହୋଇଥାଏ ।

ଦିଲ୍ଲୀରେ ଆରଏନଆଇ ଦପ୍ତର ଏକ ଅଦ୍ଭୁତ ସଂସ୍ଥା । ସେଠାରେ ସବୁକାମ ପାଇଁ ବେପାର ହୁଏ । ଯାହା କୁହାଯାଏ, 'ପଇସା ଫେକୋ, ତାମସା ଦେଖୋ' । ସେ ଅଫିସର ସ୍ଥିତି ସେଇୟା । ଯିଏ ଯେତେ ହାତଗୁଞ୍ଜା ଦେବ, ତା'କାମ ସେତିକି ଶୀଘ୍ର ହେବ ।

ଅଫିସର ଉପରୁ ତଳ ପର୍ଯ୍ୟନ୍ତ ସମସ୍ତଙ୍କ ଜ୍ଞାତସାରରେ ସେଠାରେ ଗାନ୍ଧିମୁଣ୍ଡର କାରବାର ହୋଇଥାଏ । ସେ ଅଫିସରେ ନୂଆ ସମ୍ବାଦପତ୍ରର ନାଁ ନେବାପାଇଁ ଗୋଟିଏ ସେକ୍ସନ ରହିଛି । ସେଠାରେ ଭୋଗ ନଲଗାଇଲେ ଯେଉଁସବୁ ନାଁ ଏଡିଏମ୍‌ଙ୍କ ଅଫିସରୁ ଯାଇଥାଏ, ସେସବୁ ରଦ୍ଦ ହୋଇଯାଏ । ନାହିଁ କରିବା ପାଇଁ ଗୋଟିଏ ଛପା ଫର୍ମ ରହିଛି । ସେଥିରେ ଲେଖାଯାଇଛି ଯେ, "ଆପଣ ଯେଉଁ ନାଁ ମାଗିଛନ୍ତି, ତାହା ଖାଲି ନଥିବାରୁ ଆପଣଙ୍କୁ ଦିଆଯାଇପାରୁନାହିଁ ।"

ମୋର ଦୁଇଟି ଆବେଦନ ନାକଚ ହୋଇଯିବା ପରେ ମୁଁ ଟିକେ ବିବ୍ରତ ହୋଇପଡିଲି । ଦିଲ୍ଲୀ ଯାଇ ଆର.ଏନ୍.ଆଇ ଅଫିସରେ ଭୋଗ ଲଗାଇବାକୁ ମତେ ଜଣେ ବନ୍ଧୁ ପରାମର୍ଶ ଦେଲେ । ସେଥିସହିତ ସୂଚନା ଓ ପ୍ରସାରଣ ମନ୍ତ୍ରଣାଳୟରୁ ଚାପ ପ୍ରୟୋଗ କଲେ କାମଟି ସୁରୁଖୁରୁରେ ହୋଇଯିବ ବୋଲି ସେ ମତେ ସୂଚାଇ ଦେଇଥିଲେ ।

ମୁଁ ଦିଲ୍ଲୀ ଯାଇ କେଉଁସୂତ୍ରରେ ଆର.ଏନ.ଆଇ ଅଫିସରେ ଧରାଧରି କରି ହେବ, ତା'ର ଖୋଜଖବର ନେଲି । ଦୁଇଦିନର ଅନୁସନ୍ଧାନ ପରେ ଗୋଟିଏ ସୂତ୍ର ମିଳିଗଲା । ଆର.ଏନ୍.ଆଇ ଅଫିସରେ କୃପାକରନ୍ ନାମରେ ଜଣେ ଅଫିସର ଥିଲେ । ସେ ଖୁବ୍ ଆମାୟିକ ଲୋକ । ଟଙ୍କା ପଇସା ନେଣଦେଣ ସହିତ ତାଙ୍କର ସମ୍ପର୍କ ନଥିଲା । ସେଠାରେ ଥିଲାବେଳେ ଲୋକଙ୍କୁ ସାହାଯ୍ୟ କରୁଥିଲେ । ଅଳ୍ପଦିନ ହେଲା ତାଙ୍କର ଡିଏଭିପିକୁ ବଦଳି ହୋଇଥିଲା ।

ଦିଲ୍ଲୀର ଜଣେ ସାମ୍ବାଦିକ ବନ୍ଧୁଙ୍କ ମାଧ୍ୟମରେ ମୁଁ ଶ୍ରୀ କୃପାକରନ୍‌ଙ୍କୁ ସାକ୍ଷାତ କଲି । ମୋ ଆବେଦନକୁ କିପରି ନାକଚ କରି ଦିଆଯାଉଛି ସେ କଥା ଶୁଣି ମନଦୁଃଖ କଲେ । ମତେ କହିଲେ, "ମେଁ ଉସ୍ ଦପ୍ତର ଛୋଡ୍ ଦିୟା ହୈ । ଅଭି ମେରା ବାତ୍ ଉଦ୍ଧର କୋଇ ଶୁନେଙ୍ଗେ ଇସମେ ମେରା ସକ୍ ହୈ । ତବ୍‌ଭି ମେ କୋସିସ କରତା ହୁଁ ।"

ଏତିକି କହି ସେ ଫୋନ ଉଠାଇ କାହା ସହିତ କଥାବାର୍ତ୍ତା କଲେ । ସେ ଯାହା କହିଲେ ତା'ର ସାରାଂଶ ହେଉଛି, "ଆରେ ବାବା, ମୁଁ ସେ ଦପ୍ତରର ଡାଇରେକ୍ଟର ଥିଲି । ସେଠାରେ

କ'ଣ ସବୁ ହୁଏ, ସେସବୁ ବିଷୟରେ ମତେ ଜଣାଅଛି । ମୁଁ ଠିକ୍ ଭାବରେ ଜାଣିଛି ଶ୍ରୀ ଦାସ, ଯେଉଁ ନାଁ ପାଇଁ ଆବେଦନ କରିଛନ୍ତି, ସେସବୁ ଖାଲି ଅଛି । ସେଥିରୁ ଗୋଟାଏ ଦେଇଦିଅ । ଆଉ କିଛି କର ବା ନକର ଅନ୍ତତଃ ବୟସ୍କ ଲୋକଙ୍କୁ ଟିକିଏ ସମ୍ମାନ ଦିଅ ।" ଏତିକି କହି ସେ ଫୋନ ରଖିଦେଲେ । ମତେ କହିଲେ, "ଆପ୍‌କା କାମ ହୋ ଯାଏଗା । ଆପ୍ ଦପ୍ତର ଯା କେ ମିଃ ଚାଟାର୍ଜୀ ସେ ମିଲିୟେ ଓ୍ୱ ଆପ୍‌କା କାମ ବନାଦେଗା ।"

ମୁଁ ଆର.ଏନ୍.ଆଇ ଅଫିସ ଯାଇ ଶ୍ରୀ ଚାଟାର୍ଜୀଙ୍କୁ ଦେଖାକଲି । ତାଙ୍କ ଜାଲରୁ ଗୋଟାଏ ଶିକାର ଖସି ଯାଇଥିବାରୁ ସେ ଖୁସି ନଥିଲେ । ମୁଁ ଯାଇ ତାଙ୍କୁ ପରିଚୟ ଦେବାରୁ ସେ ଟିକେ ବିରକ୍ତ ହୋଇ କହିଲେ, "ଟାଇଟଲ ତ ମୁଁ ଦେବି, ଆପଣ କୃପାକରନ୍ଙ୍କ ପାଖକୁ କାହିଁ ଯାଇଥିଲେ ?"

ଏତିକିରେ ତାଙ୍କ କଥା ଅଟକି ନଥିଲା । ଓଡ଼ିଶାରେ ସେ କାହାକୁ କାହାକୁ କି ପ୍ରକାର ସାହାଯ୍ୟ କରିଛନ୍ତି, ତାର ମଧ୍ୟ ଏକ ଲମ୍ବା ତାଲିକା ମୋ ଆଗରେ ରଖିଥିଲେ । ତାଙ୍କ କଥାରେ କିଛି ଇସାରା ଥିବା କଥା ମୁଁ ଅନୁଭବ କରିଥିଲି । ମୁଁ ତାଙ୍କୁ ମୁହଁତୋଡ୍ ଜବାବ ଦେବି ବୋଲି ଭାବିଥିଲି । ମାତ୍ର ମନର କ୍ରୋଧ ମନରେ ରଖି ଚୁପ୍ ହେବାକୁ ଉଚିତ୍ ମନେ କଲି ।

ଦୀର୍ଘ ଦୁଇଘଣ୍ଟାରୁ ଅଧିକ ସମୟ ଅପେକ୍ଷା କଲା ପରେ ମୋ ଫାଇଲ ଖୋଲାଗଲା । ମୁଁ ଦେଇଥିବା ନାଁ ଭିତରୁ 'ଅନୁସନ୍ଧାନ' ନାଁ ଟା ମତେ ଦେବାକୁ ମୁଁ ଶ୍ରୀ ଚାଟାର୍ଜୀଙ୍କୁ ଅନୁରୋଧ କଲି । ସେ ମୋ ମୁହଁକୁ ଚାହିଁ ହସିଲେ । କହିଲେ, "ଠିକ୍ ଆଛେ, ନିୟେଜାନ୍ ।"

ନୂଆ ସାପ୍ତାହିକ ପାଇଁ ପସନ୍ଦ ମୁତାବକ ନାଁ ଟି ମିଳିଯିବାରୁ ସେଦିନ ମୁଁ ଖୁସି ହୋଇଯାଇଥିଲି । ଭୁବନେଶ୍ୱର ଫେରିବାର ଦି'ଦିନ ପରେ ଆର.ଏନ.ଆଇ ଅଫିସରୁ ଗୋଟିଏ ଚିଠି ପାଇଥିଲି । ସେଥିରେ ଲେଖାଥିଲା, "ଆପଣ ନୂଆ ଟାଇଟଲ ପାଇଁ ଯେଉଁସବୁ ନାଁ ପଠାଇଥିଲେ, ସେସବୁ ଖାଲି ନାହିଁ । ତେଣୁ ଆପଣଙ୍କ ଆବେଦନ ନାକଚ ହେଲା ।" ଚିଠିଟି ପଢ଼ି ମୁଁ ବିଚାରିଲି, ହାୟରେ ଭାରତ ସରକାର । ଧର୍ମକୁ ସାକ୍ଷୀ ରଖି କିପରି ଶାସନ ଚାଲିଛି ? କିନ୍ତୁ ସେତେବେଳକୁ ମୁଁ 'ଅନୁସନ୍ଧାନ' ଟାଇଟଲ୍‌ଟି ହାସଲ କରିସାରିଥିଲି । ଚିଠିଟି କେବଳ ରୁଟିନ୍ ମାଟର ଥିଲା ।

ଟାଇଟେଲ ମିଳିଗଲା ପରେ ଭଲଦିନ ଦେଖି 'ଅନୁସନ୍ଧାନ' ଆତ୍ମପ୍ରକାଶ କଲା । ପ୍ରଥମାବସ୍ଥାରେ ସବୁକାମ ମତେ କରିବାକୁ ପଡ଼ିଲା । ରାଜନୀତି ନ୍ୟୁଜ୍ ଠାରୁ ଆରମ୍ଭ କରି କ୍ରୀଡା, ସିନେମା, ସାହିତ୍ୟ ସବୁକଥା ମତେ ବୁଝିବାକୁ ପଡ଼ିଲା । ଯାହା କୁହାଯାଏ, ଅଲ୍ ଇନ୍ ଓ୍ୱାନ ।

ଅଳ୍ପଦିନ ଭିତରେ ଅନ୍ୟମାନେ ଆସି ଜୁଟିଲେ । ସିନେମା ପୃଷ୍ଠା ପାଇଁ ଦିଲ୍ଲୀପ ହାଲି, କ୍ରୀଡା ପାଇଁ ଶୀତଳ ତରଙ୍ଗ ବେଉରିଆ ଓ ସାହିତ୍ୟ ପୃଷ୍ଠା ପାଇଁ ନୀଳାମ୍ବର ରଥ ପ୍ରମୁଖ ବିନା

ପାରିଶ୍ରମିକରେ ମତେ ସାହାଯ୍ୟ କଲେ । ଘଟଣାକ୍ରମରେ ନୀଳାଚଳର ସାହିତ୍ୟ ପୃଷ୍ଠା ସହିତ ଅନ୍ୟ ପୃଷ୍ଠାର ମଧ୍ୟ ଦାୟିତ୍ୱ ନେଇଗଲେ । ମୋ ବୋଝ ହାଲୁକା ହୋଇଗଲା ।

ଅଳ୍ପଦିନ ଭିତରେ 'ଅନୁସନ୍ଧାନ'ର ଚାହିଦା ବଢ଼ିଲା । ସମାଜର ପ୍ରତିଷ୍ଠିତ ଲୋକମାନେ ତାକୁ ପଢ଼ିବା ଆରମ୍ଭ କଲେ । କାରଣ 'ଅନୁସନ୍ଧାନ'ରେ ଚରିତ୍ର ସଂହାର କିମ୍ବା ତୋଷାମଦ ନଥିଲା । ଆମେ ସବୁକଥା ଜଗିରଖି ଲେଖୁଥିଲୁ ।

'ଅନୁସନ୍ଧାନ'ର ଯେତିକି ଚାହିଦା ବଢୁଥିଲା ମୁଁ ସେତିକି ଆନନ୍ଦ ଅନୁଭବ କରୁଥିଲି । 'ଅନୁସନ୍ଧାନ' ମୋର ମାନସ ସନ୍ତାନ ଥିଲା । କ୍ରମେ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ବିଜ୍ଞାପନ ଆସିବାକୁ ଲାଗିଲା ।

ସେଥିସହିତ ପ୍ରେସ୍‌କୁ ମଧ୍ୟ କିଛି ଜବ୍ କାମ ଆସିଲା । ମୁଁ ଭାବିଥିଲି ଟ୍ରେଡେଲ ପ୍ରେସ୍ ବଦଳରେ ବଡ଼ପ୍ରେସ୍ ପକାଇ 'ଅନୁସନ୍ଧାନ'ର କଳେବର ବୃଦ୍ଧିକରିବି । ସେଥିପାଇଁ କେନ୍ଦ୍ର ସରକାରଙ୍କ ଶିକ୍ଷା ମନ୍ତ୍ରାଳୟରେ ଯୁଗ୍ମ ସଚିବ ଥିବା ମୋର ବନ୍ଧୁ ସମୟ ବଲ୍ଲଭ ମହାପାତ୍ରଙ୍କ ସହିତ ଯୋଗାଯୋଗ କରିଥିଲି ।

ଥରେ ଦିଲ୍ଲୀ ଯାଇଥିବା ସମୟରେ ନିଖିଳ ଭାରତ ପ୍ରିଣ୍ଟିଂ ପ୍ରେସ୍ ଆସୋସିଏସନର ସଭାପତି, ସରସ୍ୱତୀ ପ୍ରିଣ୍ଟିଂ ପ୍ରେସ୍‌ର ମାଲିକଙ୍କ ସହିତ ଦେଖା କରିଥିଲି । ସମୟବାବୁ ତାଙ୍କୁ କହିଦେଇଥିଲେ । ସେ ମତେ ଖୁବ୍ ଆଦର କଲେ । ପ୍ରେସ୍ ବସାଇବା ପାଇଁ ସବୁପ୍ରକାର ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ମାତ୍ର ଭାଗ୍ୟରେଖା ପୁଣି ବଦଳିଗଲା । ଦି'ବର୍ଷ ବନ୍ଦ ପରେ ଅମୃତ ବଜାର ପତ୍ରିକାର ନବକଳେବର ହେଲା । ପୁରୁଣା ମେସିନ୍ ବଦଳି ନୂଆ ମେସିନ୍ ବସିଲା । କମ୍ପ୍ୟୁଟର ମାଧ୍ୟମରେ ସବୁକାମ ହେଲା । ଏହା ୧୯୯୩ ମସିହାର ଘଟଣା । ସେତେବେଳକୁ ଗୋପାଳବାବୁଙ୍କର ଅବସର ଗ୍ରହଣ ସମୟ ହୋଇଯାଇଥିଲା । ସେ ଚାକିରିକାଳ ବୃଦ୍ଧି କରିବା ପାଇଁ ଚେଷ୍ଟା କରିଥିଲେ । ମାତ୍ର ପୁରୁଣା ମ୍ୟାନେଜମେଣ୍ଟ ବଦଳି ଯାଇଥିବାରୁ ତାହା ଆଉ ସମ୍ଭବପର ହୋଇ ନଥିଲା ।

୧୯୯୪ ମସିହା ଜାନୁଆରୀ ମାସରେ ମତେ ଅମୃତ ବଜାର ପତ୍ରିକା ଗ୍ରୁପ (ଅମୃତ ବଜାର ପତ୍ରିକା, ଯୁଗାନ୍ତର ଓ ନର୍ଦ୍ଦନ ଇଣ୍ଡିଆ ପତ୍ରିକା)ର ସ୍ୱତନ୍ତ୍ର ପ୍ରତିନିଧି ସହିତ ଓଡ଼ିଶାର ବ୍ୟୁରୋ ଚିଫ୍ ଭାବରେ ନିଯୁକ୍ତି ମିଳିଲା ।

ସ୍ୱାଭାବିକ ଭାବରେ ଅମୃତ ବଜାର ପତ୍ରିକାକୁ ମିଳିଥିବା ସରକାରୀ କ୍ୱାଟରରେ ପୂର୍ବଭଳି ପତ୍ରିକା ଅଫିସ୍ କାର୍ଯ୍ୟ କରିବା କଥା । କିନ୍ତୁ ଗୋପାଳବାବୁ ଧରାଧରି କରି ସେ ଘରେ ରହିଲେ । ସେଠାରେ ଅଫିସ କରିବା ପାଇଁ ସୁଯୋଗ ଦେଲେନାହିଁ । ସେ କ୍ୱାଟରରେ ପତ୍ରିକାର ଟେବୁଲ୍, ଚେୟାର, ଆଲମୀରା, ଟାଇପ୍ ମେସିନ, ଫ୍ୟାନ ଇତ୍ୟାଦି ସବୁ ଥିଲା ।

କାଳକ୍ରମେ ସେସବୁ ଗୋପାଳବାବୁଙ୍କର ବ୍ୟକ୍ତିଗତ ସମ୍ପତ୍ତି ହୋଇଗଲା । ବାଧ୍ୟହୋଇ ମୁଁ ଯୋଉ ସରକାରୀ କ୍ୱାଟରରେ ରହୁଥିଲି, ସେଇଠି ଅଫିସ୍ କଲି । ସେଇଠୁ ଟେଲେକ୍ସ ଓ ଫ୍ୟାକ୍ସ ଯୋଗେ କଲିକତାକୁ ନ୍ୟୁଜ୍ ପଠାଇଲି ।

ପତ୍ରିକାର ନବକଳେବର ସାଙ୍ଗକୁ ମୁଁ ବ୍ୟୁରୋ ଚିଫ୍ ଭାବରେ ଦାୟିତ୍ୱ ନେବା ପରେ ମୋ ଉପରେ କାମର ଚାପ ବଢ଼ିଲା । ନ୍ୟୁଜ୍ ସଂଗ୍ରହ, ବିଭିନ୍ନ ବ୍ୟକ୍ତିବିଶେଷଙ୍କ ସହିତ ସାକ୍ଷାତକାର, ସ୍ୱତନ୍ତ୍ର ଫିଚର ଆଦି ପ୍ରସ୍ତୁତ କରିବା ସାଙ୍ଗକୁ ବିଜ୍ଞାପନ ସଂଗ୍ରହ ଦାୟିତ୍ୱ ମଧ୍ୟ ମୋ ଉପରେ ପଡ଼ିଲା ।

ପତ୍ରିକା ବନ୍ଦ ସମୟରେ ମୁଁ 'ଅନୁସନ୍ଧାନ' ପାଇଁ ବିଜ୍ଞାପନ ଯୋଗାଡ଼ କରୁଥିଲି । ପତ୍ରିକାର ପୁନଃ ପ୍ରକାଶନ ପରେ ମାନସିକସ୍ତରରେ ଦ୍ୱନ୍ଦ୍ୱ ଉପୁଜିଲା । ମୋ ମନରେ ଚିନ୍ତା ଆସିଲା, ପତ୍ରିକାରୁ ମୁଁ ମୋଟା ଅଙ୍କର ଦରମା ପାଉଛି । ସେମାନେ ମତେ ଏତେବଡ଼ ପୋଜିସନ ଦେଇଛନ୍ତି, ଅଥଚ ମୁଁ ପତ୍ରିକା ପାଇଁ ବିଜ୍ଞାପନ ସଂଗ୍ରହ ନକରି 'ଅନୁସନ୍ଧାନ' ପାଇଁ ଯୋଗାଡ଼ କରିବି । ଏହା ନୈତିକତାର କାମ ନୁହେଁ । ତାଛଡା, ଉଭୟ ପତ୍ରିକା ଗ୍ରୁପ୍ ଏବଂ 'ଅନୁସନ୍ଧାନ' ପାଇଁ କାମ କରିବା ସମ୍ଭବ ହେଲା ନାହିଁ ।

ମୁଁ କାହାକୁ କିଛି ନକହି 'ଅନୁସନ୍ଧାନ'ର ପ୍ରକାଶନ ବନ୍ଦ କରିଦେଲି । ସେଥିସହିତ ମେସିନ୍ ଓ ଅନ୍ୟାନ୍ୟ ଆସବାବପତ୍ର ବିକ୍ରି କରିଦେଇ ଅର୍ଥ ନିଗମର ଋଣ ପରିଶୋଧ କରିଦେବାକୁ ନିଷ୍ପତ୍ତି କଲି ।

କେଇବର୍ଷ ଭିତରେ ପ୍ରେସ୍‌ର ସମ୍ପତ୍ତି ବଢ଼ିଯାଇଥିଲା । ଜବ୍ ୱାର୍କ ପାଇଁ ଚେନ୍ନାଇରୁ ବିଭିନ୍ନ ପ୍ରକାରର ଡିଜାଇନ୍ ଅକ୍ଷର ଆସିଥିଲା । ଅର୍ଥ ନିଗମର ଋଣ ବ୍ୟତୀତ ଅନ୍ୟ କିଛି ଋଣ ନଥିଲା । ଅର୍ଥ ନିଗମର ଭୁବନେଶ୍ୱର ଅଫିସକୁ ଯାଇ ବୁଝାବୁଝି କଲାରୁ ସୁଧ ସହିତ ଋଣର ପରିମାଣ ତିରିଶ ହଜାର ହୋଇଥିଲା ।

ମୁଁ ପ୍ରେସ୍ ବିକ୍ରି କରିଦେବା ପାଇଁ ମନସ୍ଥ କରି କେତେ ଲୋକଙ୍କୁ କହିଥିଲି । ଖବର ପାଇ ବ୍ରହ୍ମପୁର ଅଞ୍ଚଳର ଜଣେ ଭଦ୍ରଲୋକ ଦିନେ ମତେ ଆସି ଦେଖାକରି ପ୍ରେସ୍ କିଣିବା ପାଇଁ କହିଲେ । ମୁଁ ତାଙ୍କୁ କହିଲି, "ଆପଣ ଅର୍ଥ ନିଗମର ଋଣ ଟଙ୍କା ଶୁଝି ଦେବେ । ୱାର୍କରମାନଙ୍କୁ ପାଞ୍ଚହଜାର ଟଙ୍କା ଦେଇ ମେସିନ୍ ସହିତ ଯାହାସବୁ ଅଛି ଉଠାଇ ନେବେ ।"

ସେ ଭଦ୍ରଲୋକ ମୋ ପ୍ରସ୍ତାବରେ ରାଜିହୋଇ, ସାତଦିନ ଭିତରେ ସବୁ କାମ ଶେଷ କରିଦେବେ ବୋଲି କହି ବିଦାୟ ନେଲେ । ମୁଁ ତାଙ୍କୁ ଗୋଟିଏ ଅନୁରୋଧ କରି କହିଥିଲି, "ମୁଁ ଭୁବନେଶ୍ୱରରେ ନଥିଲା ବେଳେ ଆପଣ ମେସିନ୍ ଇତ୍ୟାଦି ନେଇଯିବେ । କାରଣ ଯୋଉ ହାତରେ ଏତେ କଷ୍ଟ କରି ମୁଁ ପ୍ରେସ୍‌ର କଳେବର ବୃଦ୍ଧି କରିଥିଲି, ଯୋଉ ପ୍ରେସ୍ ମୋ

ଅସୁବିଧା ସମୟରେ ମୋ ପରିବାରକୁ ଦାନା ଯୋଗାଇଥିଲା, ମୁଁ ତା'ର ଶେଷ ପରିଣତି ଦେଖି ପାରିବି ନାହିଁ।"

ମୋର ସେହି ସମୟରେ ପତ୍ନୀ ପ୍ରମଦାଙ୍କ ଚିକିତ୍ସା ପାଇଁ ଲକ୍ଷ୍ନୌରେ ଥିବା ପି.ଜି.ଆଇ (ସଂଜୟ ଗାନ୍ଧୀ ଇନଷ୍ଟିଚ୍ୟୁଟ୍ ଅଫ ମେଡିକାଲ ସାଇନ୍‌ସ)କୁ ଯିବାର ଥିଲା। ପ୍ରମଦା ଦୀର୍ଘଦିନ ରୁମାଟୟଡ୍ ଆର୍ଥ୍ରାଇଟସ୍‌ରେ ପୀଡିତ ହୋଇ କଷ୍ଟ ଭୋଗୁଥିଲେ। ଓଡ଼ିଶାରେ ଡାକ୍ତର ଦେବେନ୍ଦ୍ରେଶ୍ୱର ରାଓ, ରାଧା ମହାନ୍ତିଙ୍କ ଭଳି ପ୍ରତିଷ୍ଠିତ ଡାକ୍ତରମାନଙ୍କ ସମସ୍ତ ପ୍ରକାର ଉଦ୍ୟମ ସତ୍ତ୍ୱେ ପୀଡା ଉପଶମ ନହେବାରୁ ମତେ ବାଧହୋଇ ପି.ଜି.ଆଇ ଯିବାକୁ ପଡିଲା। ସେଠାରେ ଥିବା ଡାକ୍ତର ରାମନାଥ ମିଶ୍ରଙ୍କ ତତ୍ତ୍ୱାବଧାନରେ ଚିକିତ୍ସା ଆରମ୍ଭ ହୋଇଥିଲା।

ଡାକ୍ତର ମିଶ୍ର ଏହି ଚିକିତ୍ସାରେ ସମଗ୍ର ଦେଶରେ ସୁନାମ ଅର୍ଜନ କରିଥିଲେ। ତାଙ୍କ ପରାମର୍ଶରେ ଚିକିତ୍ସା ଆରମ୍ଭ ହେବାରୁ ରୋଗକୁ ନିୟନ୍ତ୍ରଣ କରାଯାଇପାରିଥିଲା। ସେଥିପାଇଁ ବର୍ଷକୁ ଦି'ଥର ଲକ୍ଷ୍ନୌ ଯିବାକୁ ପଡୁଥିଲା।

ଆମେ ଟ୍ରେନରେ ଲକ୍ଷ୍ନୌ ଯିବା ବାଟରେ ପତ୍ରିକା ଗ୍ରୁପ୍ ପକ୍ଷରୁ ପ୍ରକାଶ ପାଉଥିବା 'ନର୍ଦ୍ଦନ ଇଣ୍ଡିଆ ପତ୍ରିକା' ଖଣ୍ଡେ କିଣି ପଢ଼ିଲା ବେଳକୁ ଯାହା ଦେଖିଲି, ସେଥିରେ ମୋ ଗୋଡ଼ତଳୁ ମାଟି ଖସିଗଲା ଭଳି ଲାଗିଲା।

ସେଥିରେ ଲେଖାଥିଲା, ଅନିବାର୍ଯ୍ୟ କାରଣ ହେତୁ ଗତକାଲି ଠାରୁ ଅମୃତ ବଜାର ପତ୍ରିକା ଓ ଯୁଗାନ୍ତରରେ ଲକ୍‌ଆଉଟ ହୋଇଛି। ଏହା ମୋ ପାଇଁ ନିଶ୍ଚିତ ଭାବରେ ଦୁଃସମ୍ବାଦ ଥିଲା। କାରଣ ସେତେବେଳକୁ 'ଅନୁସନ୍ଧାନ'ର ପ୍ରକାଶନ ବନ୍ଦ ହେବା ସହିତ ପ୍ରେସ୍ ମଧ୍ୟ ବିକ୍ରି ସରିଥିଲା।

ଭାଗ୍ୟଚକ୍ରର ତାଡ଼ନାରେ ମୁଁ ପୁଣି ରାଜରାସ୍ତାକୁ ଆସିଗଲି। ହେଲେ ମୁଁ ଧୈର୍ଯ୍ୟ ହରାଇ ନଥିଲି। ଜୀବନର ନାନା ଘାତପ୍ରତିଘାତ ଭିତରେ ଯେତେବେଳେ ମୁଁ ଏତେ ବାଟ ଆସି ପାରିଛି, ଆଉ କ'ଣ ଅଧାବାଟରେ ଅଟକିବି? ମନରେ ସାହସ ବାନ୍ଧି ଭବିଷ୍ୟତକୁ ଅପେକ୍ଷା କରିରହିଲି। ଲକ୍ଷ୍ନୌରୁ ଫେରିଲା ପରେ କର୍ମପନ୍ଥା ସ୍ଥିର କରିବି ବୋଲି ମନକୁ ସାନ୍ତ୍ୱନା ଦେଲି।

କାଳକ୍ରମେ ସେସବୁ ଗୋପାଳବାବୁଙ୍କର ବ୍ୟକ୍ତିଗତ ସମ୍ପତ୍ତି ହୋଇଗଲା । ବାଧ୍ୟହୋଇ ମୁଁ ଯୋଉ ସରକାରୀ କ୍ୱାଟରରେ ରହୁଥିଲି, ସେଇଠି ଅଫିସ୍ କଲି । ସେଇଠୁ ଟେଲେକ୍ସ ଓ ଫ୍ୟାକ୍ସ ଯୋଗେ କଲିକତାକୁ ନ୍ୟୁଜ୍ ପଠାଇଲି ।

ପତ୍ରିକାର ନବକଳେବର ସାଙ୍ଗକୁ ମୁଁ ବ୍ୟୁରୋ ଚିଫ୍ ଭାବରେ ଦାୟିତ୍ୱ ନେବା ପରେ ମୋ ଉପରେ କାମର ଚାପ ବଢ଼ିଲା । ନ୍ୟୁଜ୍ ସଂଗ୍ରହ, ବିଭିନ୍ନ ବ୍ୟକ୍ତିବିଶେଷଙ୍କ ସହିତ ସାକ୍ଷାତକାର, ସ୍ୱତନ୍ତ୍ର ଫିଚର ଆଦି ପ୍ରସ୍ତୁତ କରିବା ସାଙ୍ଗକୁ ବିଜ୍ଞାପନ ସଂଗ୍ରହ ଦାୟିତ୍ୱ ମଧ୍ୟ ମୋ ଉପରେ ପଡ଼ିଲା ।

ପତ୍ରିକା ବନ୍ଦ ସମୟରେ ମୁଁ 'ଅନୁସନ୍ଧାନ' ପାଇଁ ବିଜ୍ଞାପନ ଯୋଗାଡ଼ କରୁଥିଲି । ପତ୍ରିକାର ପୁନଃ ପ୍ରକାଶନ ପରେ ମାନସିକସ୍ତରରେ ଦ୍ୱନ୍ଦ୍ୱ ଉପୁଜିଲା । ମୋ ମନରେ ଚିନ୍ତା ଆସିଲା, ପତ୍ରିକାରୁ ମୁଁ ମୋଟା ଅଙ୍କର ଦରମା ପାଉଛି । ସେମାନେ ମତେ ଏତେବଡ଼ ପୋଜିସନ ଦେଇଛନ୍ତି, ଅଥଚ ମୁଁ ପତ୍ରିକା ପାଇଁ ବିଜ୍ଞାପନ ସଂଗ୍ରହ ନକରି 'ଅନୁସନ୍ଧାନ' ପାଇଁ ଯୋଗାଡ଼ କରିବି । ଏହା ନୈତିକତାର କାମ ନୁହେଁ । ତାଛଡା, ଉଭୟ ପତ୍ରିକା ଗ୍ରୁପ୍ ଏବଂ 'ଅନୁସନ୍ଧାନ' ପାଇଁ କାମ କରିବା ସମ୍ଭବ ହେଲା ନାହିଁ ।

ମୁଁ କାହାକୁ କିଛି ନକହି 'ଅନୁସନ୍ଧାନ'ର ପ୍ରକାଶନ ବନ୍ଦ କରିଦେଲି । ସେଥିସହିତ ମେସିନ୍ ଓ ଅନ୍ୟାନ୍ୟ ଆସବାବପତ୍ର ବିକ୍ରି କରିଦେଇ ଅର୍ଥ ନିଗମର ଋଣ ପରିଶୋଧ କରିଦେବାକୁ ନିଷ୍ପତ୍ତି କଲି ।

କେଇବର୍ଷ ଭିତରେ ପ୍ରେସ୍‌ର ସମ୍ପତ୍ତି ବଢ଼ିଯାଇଥିଲା । ଜବ୍ ୱାର୍କ ପାଇଁ ଚେନ୍ନାଇରୁ ବିଭିନ୍ନ ପ୍ରକାରର ଡିଜାଇନ୍ ଅକ୍ଷର ଆସିଥିଲା । ଅର୍ଥ ନିଗମର ଋଣ ବ୍ୟତୀତ ଅନ୍ୟ କିଛି ଋଣ ନଥିଲା । ଅର୍ଥ ନିଗମର ଭୁବନେଶ୍ୱର ଅଫିସକୁ ଯାଇ ବୁଝାବୁଝି କଲାରୁ ସୁଧ ସହିତ ଋଣର ପରିମାଣ ତିରିଶ ହଜାର ହୋଇଥିଲା ।

ମୁଁ ପ୍ରେସ୍ ବିକ୍ରି କରିଦେବା ପାଇଁ ମନସ୍ଥ କରି କେତେ ଲୋକଙ୍କୁ କହିଥିଲି । ଖବର ପାଇ ବ୍ରହ୍ମପୁର ଅଞ୍ଚଳର ଜଣେ ଭଦ୍ରଲୋକ ଦିନେ ମତେ ଆସି ଦେଖାକରି ପ୍ରେସ୍ କିଣିବା ପାଇଁ କହିଲେ । ମୁଁ ତାଙ୍କୁ କହିଲି, "ଆପଣ ଅର୍ଥ ନିଗମର ଋଣ ଟଙ୍କା ଶୁଝି ଦେବେ । ୱାର୍କରମାନଙ୍କୁ ପାଞ୍ଚହଜାର ଟଙ୍କା ଦେଇ ମେସିନ୍ ସହିତ ଯାହାସବୁ ଅଛି ଉଠାଇ ନେବେ ।"

ସେ ଭଦ୍ରଲୋକ ମୋ ପ୍ରସ୍ତାବରେ ରାଜିହୋଇ, ସାତଦିନ ଭିତରେ ସବୁ କାମ ଶେଷ କରିଦେବେ ବୋଲି କହି ବିଦାୟ ନେଲେ । ମୁଁ ତାଙ୍କୁ ଗୋଟିଏ ଅନୁରୋଧ କରି କହିଥିଲି, "ମୁଁ ଭୁବନେଶ୍ୱରରେ ନଥିଲା ବେଳେ ଆପଣ ମେସିନ୍ ଇତ୍ୟାଦି ନେଇଯିବେ । କାରଣ ଯୋଉ ହାତରେ ଏତେ କଷ୍ଟ କରି ମୁଁ ପ୍ରେସ୍‌ର କଳେବର ବୃଦ୍ଧି କରିଥିଲି, ଯୋଉ ପ୍ରେସ୍ ମୋ

ଅସୁବିଧା ସମୟରେ ମୋ ପରିବାରକୁ ଦାନା ଯୋଗାଇଥିଲା, ମୁଁ ତା'ର ଶେଷ ପରିଣତି ଦେଖି ପାରିବି ନାହିଁ।"

ମୋର ସେହି ସମୟରେ ପତ୍ନୀ ପ୍ରମଦାଙ୍କ ଚିକିତ୍ସା ପାଇଁ ଲକ୍ଷ୍ନୌରେ ଥିବା ପି.ଜି.ଆଇ (ସଂଜୟ ଗାନ୍ଧୀ ଇନଷ୍ଟିଚ୍ୟୁଟ୍ ଅଫ ମେଡିକାଲ ସାଇନ୍‌ସ)କୁ ଯିବାର ଥିଲା। ପ୍ରମଦା ଦୀର୍ଘଦିନ ରୁମାଟୟଡ୍ ଆର୍ଥ୍ରାଇଟସ୍‌ରେ ପୀଡିତ ହୋଇ କଷ୍ଟ ଭୋଗୁଥିଲେ। ଓଡ଼ିଶାରେ ଡାକ୍ତର ଡେଭେଶ୍ୱର ରାଓ, ରାଧା ମହାନ୍ତିଙ୍କ ଭଳି ପ୍ରତିଷ୍ଠିତ ଡାକ୍ତରମାନଙ୍କ ସମସ୍ତ ପ୍ରକାର ଉଦ୍ୟମ ସତ୍ତ୍ୱେ ପୀଡା ଉପଶମ ନହେବାରୁ ମତେ ବାଧହୋଇ ପି.ଜି.ଆଇ ଯିବାକୁ ପଡିଲା। ସେଠାରେ ଥିବା ଡାକ୍ତର ରାମନାଥ ମିଶ୍ରଙ୍କ ତତ୍ତ୍ୱାବଧାନରେ ଚିକିତ୍ସା ଆରମ୍ଭ ହୋଇଥିଲା।

ଡାକ୍ତର ମିଶ୍ର ଏହି ଚିକିତ୍ସାରେ ସମଗ୍ର ଦେଶରେ ସୁନାମ ଅର୍ଜ୍ଜନ କରିଥିଲେ। ତାଙ୍କ ପରାମର୍ଶରେ ଚିକିତ୍ସା ଆରମ୍ଭ ହେବାରୁ ରୋଗକୁ ନିୟନ୍ତ୍ରଣ କରାଯାଇପାରିଥିଲା। ସେଥିପାଇଁ ବର୍ଷକୁ ଦି'ଥର ଲକ୍ଷ୍ନୌ ଯିବାକୁ ପଡୁଥିଲା।

ଆମେ ଟ୍ରେନରେ ଲକ୍ଷ୍ନୌ ଯିବା ବାଟରେ ପତ୍ରିକା ଗ୍ରୁପ୍ ପକ୍ଷରୁ ପ୍ରକାଶ ପାଉଥିବା 'ନର୍ଦ୍ଦନ ଇଣ୍ଡିଆ ପତ୍ରିକା' ଖଣ୍ଡେ କିଣି ପଢ଼ିଲା ବେଳକୁ ଯାହା ଦେଖିଲି, ସେଥିରେ ମୋ ଗୋଡ଼ତଳୁ ମାଟି ଖସିଗଲା ଭଳି ଲାଗିଲା।

ସେଥିରେ ଲେଖାଥିଲା, ଅନିବାର୍ଯ୍ୟ କାରଣ ହେତୁ ଗତକାଲି ଠାରୁ ଅମୃତ ବଜାର ପତ୍ରିକା ଓ ଯୁଗାନ୍ତରରେ ଲକ୍‌ଆଉଟ ହୋଇଛି। ଏହା ମୋ ପାଇଁ ନିଷ୍ଚିତ ଭାବରେ ଦୁଃସମ୍ବାଦ ଥିଲା। କାରଣ ସେତେବେଳକୁ 'ଅନୁସନ୍ଧାନ'ର ପ୍ରକାଶନ ବନ୍ଦ ହେବା ସହିତ ପ୍ରେସ୍ ମଧ୍ୟ ବିକ୍ରି ସରିଥିଲା।

ଭାଗ୍ୟଚକ୍ରର ତାଡ଼ନାରେ ମୁଁ ପୁଣି ରାଜରାସ୍ତାକୁ ଆସିଗଲି। ହେଲେ ମୁଁ ଧୈର୍ଯ୍ୟ ହରାଇ ନଥିଲି। ଜୀବନର ନାନା ଘାତପ୍ରତିଘାତ ଭିତରେ ଯେତେବେଳେ ମୁଁ ଏତେ ବାଟ ଆସି ପାରିଛି, ଆଉ କ'ଣ ଅଧାବାଟରେ ଅଟକିବି ? ମନରେ ସାହସ ବାନ୍ଧି ଭବିଷ୍ୟତକୁ ଅପେକ୍ଷା କରିରହିଲି। ଲକ୍ଷ୍ନୌରୁ ଫେରିଲା ପରେ କର୍ମପନ୍ଥା ସ୍ଥିର କରିବି ବୋଲି ମନକୁ ସାନ୍ତ୍ୱନା ଦେଲି।

# ପୁଅ ଯଦି ଯୋଗ୍ୟ ଧନ କାହିଁ ପାଇଁ ସଞ୍ଚୁ

ଚାରିଦିନ ପରେ ମୁଁ ଓ ପ୍ରମଦା ଲକ୍ଷ୍ନୌରୁ ଭୁବନେଶ୍ୱର ଫେରିଲୁ । ସେ ପର୍ଯ୍ୟନ୍ତ ପତ୍ରିକାରେ 'ଲକ୍‌ଆଉଟ' ବିଷୟରେ ମୁଁ ପ୍ରମଦାକୁ କିଛି ଜଣାଇ ନଥିଲି । କାରଣ ଜୀବନରେ ପ୍ରତିକୂଳ ପରିସ୍ଥିତିର ସାମନା କରିବାରେ ସେ ଅଭ୍ୟସ୍ତ ନଥିଲେ । ସାମାନ୍ୟ ସମାସ୍ୟାରେ ସେ ବିବ୍ରତ ହୋଇପଡୁଥିଲେ । ସେଥିପାଇଁ ମୁଁ କୌଣସି ସମସ୍ୟାରେ ତାଙ୍କୁ ଜଡ଼ିତ କରୁନଥିଲି । ସବୁ ଅସୁବିଧାକୁ ନିଜକାନ୍ଧକୁ ନେଇ ତା'ର ସମାଧାନ କରିବାକୁ ଉଦ୍ୟମ କରୁଥିଲି । ଘଟଣାକ୍ରମରେ ସମସ୍ୟାର ସମାଧାନ କରିବାରେ ମୁଁ ଅଭ୍ୟସ୍ତ ହୋଇଯାଇଥିଲି । ସେଥିରେ ମୋ ମନୋବଳ ବୃଦ୍ଧି ପାଉଥିଲା ।

ଲକ୍ଷ୍ନୌରୁ ଫେରିଲା ପରେ ତିନି ଚାରିଦିନ ମୁଁ ଚିନ୍ତାକଲି । ପରିସ୍ଥିତିର ମୁକାବିଲା ପାଇଁ କ'ଣ କରାଯାଇପାରେ ? ସେତେବେଳକୁ ପୁଅ ଚନ୍ଦନ ଆରଇସିରୁ ଇଂଜିନିୟରିଂ ପାସ୍ କରି ଜାଭିୟର୍ସ ଇନ୍‌ଷ୍ଟିଚ୍ୟୁଟ୍‌ରେ ମ୍ୟାନେଜମେଣ୍ଟରେ ଏମ୍.ବି.ଏରେ ନାଁ ଲେଖାଇଥିଲା । ପଢ଼ା ଆଉ ବର୍ଷେ ବାକି ଥିଲା ।

ଚନ୍ଦନ ଭଲ ପଢୁଥିଲା । କ୍ଲାସରେ ପୋଜିସନ ରଖୁଥିଲା । ବିଜେବି କଲେଜରେ ପ୍ଲସ ଟୁ ସାଇନ୍‌ସ ପଢ଼ିଲା ବେଳେ ମଧ୍ୟ ଭଲ ରେଜଲ୍ଟ କରିଥିଲା । ପ୍ଲସ ଟୁ ପରୀକ୍ଷାରେ ନାଇଣ୍ଟି ପରସେଣ୍ଟ ମାର୍କ ରଖିଥିଲା । ଆମର ଇଚ୍ଛା ଥିଲା ଚନ୍ଦନ ମେଡିକାଲରେ ପଢୁ । ଡାକ୍ତର ହେଲେ ଭଲରେ ନିଜ ପରିବାର ପୋଷଣ ସହିତ ସମାଜର କିଛି ସେବା କରିପାରିବ । ମାତ୍ର ସେଥିପ୍ରତି ତା'ର ଆଗ୍ରହ ନଥିଲା । ରକ୍ତ ଦେଖିଲେ ସେ ନର୍ଭସ ହୋଇଯାଉଥିଲା । ତା'ର ଇଚ୍ଛା ଥିଲା ଇଂଜିନିୟରିଂ ପଢ଼ିବାକୁ । ଆମେ ତା' ଇଚ୍ଛା ବିରୋଧରେ ଯିବାକୁ ଚାହିଁନଥିଲୁ ।

ସେ ଆର.ଇ.ସି ପାଇଁ ପ୍ରସ୍ତୁତ ହେଲା ଏବଂ ପରୀକ୍ଷାରେ କୃତକାର୍ଯ୍ୟ ହେଲା । ସେତେବେଳେ ଆର.ଇ.ସି ଅଧୀନରେ ରାଉରକେଲା, ବୁର୍ଲା, ଭୁବନେଶ୍ୱର ଓ ତାଳଚେର

ସରାଙ୍ଗଠାରେ ଚାରୋଟି କଲେଜ ପରିଚାଳିତ ହେଉଥିଲା । ଚନ୍ଦନର ଯାହା ର୍ୟାଙ୍କ ଥିଲା ସେଥିରେ ସ୍ୱାଭାବିକ ଭାବରେ ସେ ରାଉରକେଲା କିମ୍ୱା ବୁର୍ଲା ଇଞ୍ଜିନିୟରିଂ କଲେଜରେ ସିଟ୍ ପାଇବାରେ କିଛି ଅସୁବିଧା ନଥିଲା । କିନ୍ତୁ ସେ ସମୟରେ ଘଟିଥିବା ଗୋଟିଏ ଘଟଣା ତା' ଗତିପଥକୁ ବଦଳାଇ ଦେଇଥିଲା ।

୧୯୮୯ ମସିହାର ଘଟଣା । ବୁର୍ଲାରେ କେତେକ ବ୍ୟବସାୟୀ ଓ ଇଂଜିନିୟରିଂ କଲେଜ ଛାତ୍ରମାନଙ୍କ ମଧ୍ୟରେ ସାମାନ୍ୟ ଘଟଣାକୁ କେନ୍ଦ୍ରକରି ଗଣ୍ଡଗୋଳ ହୋଇଥିଲା । ସେହି ଗଣ୍ଡଗୋଳରେ ହୀରାକୁଦ ପାୱାର ଚ୍ୟାନେଲର ପଡି ଆଠଜଣ ଇଂଜିନିୟରିଂ ଛାତ୍ର ପ୍ରାଣ ହରାଇଥିଲେ । ଏହି ମର୍ମନ୍ତୁଦ ଘଟଣା ସମଗ୍ର ଓଡ଼ିଶାରେ ଚହଳ ପକାଇ ଦେଇଥିଲା । ଉପକୂଳବର୍ତ୍ତୀ ଅଞ୍ଚଳର ପିଲାମାନଙ୍କୁ ପାଠପଢ଼ିବା ପାଇଁ ବୁର୍ଲା ପଠାଇବା ପାଇଁ ବାପାମା'ମାନେ ଚାହୁଁନଥିଲେ ।

ସେହି ଘଟଣା ପ୍ରମଦାଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା । ଚନ୍ଦନକୁ ବୁର୍ଲା ପଠାଯିବ କି ନାହିଁ, ତାକୁନେଇ ଆମ ଘରେ ବହୁ ଯୁକ୍ତିତର୍କ ହୋଇଥିଲା । ପ୍ରମଦାଙ୍କ ଯୁକ୍ତି ଥିଲା, "ତୁମେ ଚେଷ୍ଟାକରି ତା'ର ଆଡମିଶନ ଭୁବନେଶ୍ୱରରେ ଥିବା ଆର.ଇ.ସି ଅଧୀନରେ ପରିଚାଳିତ କଲେଜ ଅଫ୍ ଇଂଜିନିୟରିଂ ଆଣ୍ଡ ଟେକ୍ନୋଲୋଜିରେ କରିଦିଅ ।" ମୁଁ ଯେତେ କହିଲେ ବି ସେ ବୁଝିବା ଅବସ୍ଥାରେ ନଥିଲେ । ଶେଷରେ ମା'ର ମମତା ଆଗରେ ମୋର ଯୁକ୍ତି ହାର ମାନିଥିଲା ।

ସେତେବେଳେ ରବି ନାରାୟଣ ଦାସ ଓଡ଼ିଶାର ଚିଫ୍ ସେକ୍ରେଟାରୀ ଥିଲେ । ଖୁବ୍ ଭଲ ମଣିଷ । କଥା କମ୍, କାମ ବେଶୀ । ଇଶାରାରେ ସବୁକାମ ହୋଇଯାଏ । ତାଙ୍କ ସାନଭାଇ ଆମର ସାଙ୍ଗ ହୋଇଥିବାରୁ ସେ ମତେ ସାନଭାଇ ଭଳିଆ ଦେଖୁଥିଲେ । ମୁଁ ତାଙ୍କୁ ଦେଖାକରି ସବୁକଥା କହିଲି ।

ମୋ କଥା ଶୁଣି ସେ ଭୀଷଣ ବିରକ୍ତ ହୋଇ କହିଲେ, "ଲୋକେ ସେମାନଙ୍କ ପିଲାକୁ ରାଉରକେଲା କିମ୍ୱା ବୁର୍ଲାରେ ପଢ଼ାଇବା ପାଇଁ ଲାଇନରେ ଅପେକ୍ଷା କରିଛନ୍ତି । କିନ୍ତୁ ତମେ ତମ ପୁଅକୁ ବୁର୍ଲାରୁ ଆଣି ଭୁବନେଶ୍ୱରରେ ପଢ଼ାଇବାକୁ ଚାହୁଁଛ । ତମେ ପରା ଜଣେ ପୁରୁଣା ସାମ୍ୱାଦିକ । ତମର ସାଧାରଣଜ୍ଞାନ ଟିକିଏ ନାହିଁ ।" ମୁଁ ତାଙ୍କୁ କହିଲି, "ଏଥିରେ ମୋର କିଛି ଦୋଷ ନାହିଁ । ବୁର୍ଲାରେ ଇଞ୍ଜିନିୟରିଂ ପିଲାଙ୍କ ମୃତ୍ୟୁ ପରେ ମୋ ସ୍ତ୍ରୀ ଚନ୍ଦନକୁ ବୁର୍ଲା ପଠାଇବାକୁ ଚାହୁଁନାହାନ୍ତି । ସବୁବେଳେ କାନ୍ଦୁଛନ୍ତି । ଘରେ କିଛିଦିନ ହେଲା ଅଶାନ୍ତି ଲାଗି ରହିଛି । ଆପଣ ମତେ ଟିକିଏ ସେଥିରୁ ଉଦ୍ଧାର କରନ୍ତୁ ।"

ଆଜିକାଲି ଭଳି ସେ ସମୟରେ ମୋବାଇଲ୍ ଫୋନର ଏତେଟା ପ୍ରଚଳନ ନଥିଲା । ରବିବାବୁ ତାଙ୍କ ପ୍ରାଇଭେଟ୍ ସେକ୍ରେଟାରୀଙ୍କୁ ରାଉରକେଲା ଇଂଜିନିୟରିଂ କଲେଜ ଅଧକ୍ଷ

ସୋମନାଥ ମିଶ୍ରଙ୍କୁ ଫୋନ ଲଗାଇବାକୁ କହିଲେ । ଅଳ୍ପ ସମୟ ପରେ ଫୋନ ଆସିଗଲା । ସେ ସୋମନାଥବାବୁଙ୍କୁ ସବୁକଥା ଜଣାଇ ମୋ କାମଟି କରିଦେବାକୁ କହିଲେ ।

ଆରଇସିରେ ନାଁ ଲେଖାଇବା ପାଇଁ ରାଉରକେଲା କାଉନସେଲିଂ ରାଉରକେଲାରେ ହେଉଥିଲା । ମୁ ତା' ପରଦିନ ଚନ୍ଦନକୁ ନେଇ ରାଉରକେଲା ଗଲି । ରାଉରକେଲା ଯିବା ବାଟରେ ବଡ଼ବିଲରେ ଥିବା ଆର.ଡି.ସି ଗେଷ୍ଟ ହାଉସରେ ଆମେ ରାତିରେ ରହିଥିଲୁ ।

ସକାଳେ ଆମେ ବଡ଼ବିଲରେ ଥିବା କାରଖାନା ବୁଲିବାକୁ ଯାଇଥିଲୁ । ସେ କାରଖାନାଟି ପ୍ରାରମ୍ଭିକ ଅବସ୍ଥାରେ ବିଜୁ ପଟ୍ଟନାୟକଙ୍କର ଥିଲା । ସେ ତାକୁ ବିନାମୂଲ୍ୟରେ ରାଜ୍ୟ ସରକାରଙ୍କୁ ହସ୍ତାନ୍ତର କରି ଦେଇଥିଲେ ।

ଆମେ ଆଇ.ଡି.ସିର ଗେଷ୍ଟ ହୋଇଥିବାରୁ ଆମକୁ ଖୁବ୍ ଆଦର ମିଳିଥିଲା । ସକାଳେ ଆମେ କାରଖାନା ଭିତରକୁ ବୁଲିବାକୁ ଗଲୁ । ସେଠାରେ ବଡ଼ବଡ଼ ଲୁହା ପାଇପ୍ ସବୁ ତିଆରି ହେଉଥିଲା । ସେଥିରେ ଇଂଜିନିୟରଙ୍କ ସହିତ ଶ୍ରମିକମାନେ ନିଯୁକ୍ତ ଥିଲେ । ଛାଞ୍ଚରୁ ପାଇପ୍ ବାହାରିବାରେ କିଛି ଅସୁବିଧା ହେଲେ ଇଂଜିନିୟରମାନେ ସହାୟତା କରୁଥିଲେ । ତତଲା ଲୁହା ଗୁଣ୍ଡ ଛିଟା ପଡ଼ି ଶ୍ରମିକ ଓ ଇଂଜିନିୟରମାନଙ୍କ ଗଞ୍ଜି ଓ ସାର୍ଟ ସବୁ ମଶାରୀ କନା ଭଳି ହୋଇଯାଉଥିଲା ।

ଚନ୍ଦନ ମେକାନିକାଲ ଇଂଜିନିୟରିଂରେ ନାଁ ଲେଖାଇବା ପାଇଁ ସ୍ଥିର କରିଥିଲା । କିନ୍ତୁ କାରଖାନା ଭିତରେ ଇଂଜିନିୟରମାନଙ୍କର ସେ ସ୍ଥିତି ଦେଖି ସେ ମତ ବଦଳାଇ ଇଲେକ୍ଟ୍ରିକାଲ ସବ୍‌ଜେକ୍ଟ ନେବାକୁ ସ୍ଥିର କଲା । ମୁଁ ସେଥିରେ ହସ୍ତକ୍ଷେପ କଲିନାହିଁ ।

ଦିନ ବାରଟା ପୂର୍ବରୁ ଆମେ ରାଉରକେଲାରେ ପହଞ୍ଚିଯାଇଥିଲୁ । ଆମର ରାଉରକେଲା ହାଉସରେ ରହିବାର ବନ୍ଦୋବସ୍ତ ହୋଇଥିଲା । ମୁଁ ଫୋନ କରି ସୋମନାଥ ମିଶ୍ରଙ୍କ ଘରକୁ ଯିବା ପାଇଁ କଥାବାର୍ତ୍ତା କଲି । ସନ୍ଧ୍ୟାରେ ତାଙ୍କ ଘରକୁ ଯିବାକୁ ସେ କହିଲେ ।

ଚିଫ୍ ସେକ୍ରେଟାରୀ ରବିବାବୁ ଆଗରୁ ତାଙ୍କୁ କହିଥିବାରୁ ତାଙ୍କ ସହିତ ସାକ୍ଷାତ ହେବାରେ ବିଶେଷ ଅସୁବିଧା ହେଲା ନାହିଁ । ଇଂଜିନିୟର ଶ୍ରୀ ମିଶ୍ର ଖୁବ୍ କଡା ମିଜାଜ୍‌ର ଲୋକ । ନୀତି ସହିତ ସାଲିସ୍ କରୁନଥିଲେ । ମତେ ଦେଖି ଫଁ କରି ହେଲେ । କହିଲେ, "ଦେଖନ୍ତୁ ଚିଫ୍ ସେକ୍ରେଟାରୀ ମତେ କହିଛନ୍ତି, ମୁଁ ଆପଣଙ୍କୁ ସାହାଯ୍ୟ କରିବି । କିନ୍ତୁ ଆପଣ ଯୋଉ ନିଷ୍ପତ୍ତି ନେଉଛନ୍ତି, ତାହା ଠିକ୍ ବାଟ ନୁହେଁ । ଆପଣ ଭାବପ୍ରବଣ ହୋଇ ପିଲାର ଭବିଷ୍ୟତ ସହିତ ଖେଳୁଛନ୍ତି ।" ମୁଁ କିଛି ପ୍ରତିବାଦ ନକରି ସବୁକଥା ନୀରବରେ ଶୁଣିଲି ।

ପରଦିନ ସକାଳେ ଚନ୍ଦନର ଭୁବନେଶ୍ୱରରେ ଥିବା ସିଇଟିର ଇଲେକ୍ଟ୍ରିକାଲ ବିଭାଗରେ ନାଁ ଲେଖା ହୋଇଗଲା । ଆମେ ହୀରାକୁଦ ବାଟ ଦେଇ ଭୁବନେଶ୍ୱର ଫେରିଆସିଲୁ । ଚନ୍ଦନ ଘରେ ରହି କଲେଜରେ ପଢ଼ିଲା । ମୁଁ କେବଳ ତା'ପାଇଁ ଗୋଟିଏ ଟିଭିଏସ୍ ମଟର ସାଇକେଲ୍ କିଣି ଦେଇଥିଲି ।

# ଅଭୁଲା ମୁହୂର୍ତ୍ତ



ବିଶିଷ୍ଟ ସାରସ୍ୱତ ସାଧକ 'ଜ୍ଞାନପୀଠ' ବିଜେତା ପଦ୍ମବିଭୂଷଣ ସୀତାକାନ୍ତ ମହାପାତ୍ର
'ଜ୍ଞାନପୀଠ' ବିଜୟିନୀ ପଦ୍ମଶ୍ରୀ ପ୍ରତିଭା ରାୟ ଓ ଅନ୍ୟମାନଙ୍କ ଗହଣରେ ବସନ୍ତ ଦାସ




ବରିଷ୍ଠ ସାହିତ୍ୟିକ 'ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର' ପ୍ରାପ୍ତ ମହାପାତ୍ର ନୀଳମଣି ସାହୁ ଓ
ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ବୈଷ୍ଣବ ଚରଣ ମହାନ୍ତିଙ୍କ ସହିତ



ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସଙ୍କୁ ନିଜ ପୁସ୍ତକ 'ଫୁଟ୍‌ପ୍ରିଣ୍ଟ୍‌ସ ଅଫ୍ ଇଭେଣ୍ଟଫୁଲ ଡେଜ୍'
ପ୍ରଦାନ ଅବସରରେ



ପଦ୍ମଶ୍ରୀ ପ୍ରତିଭା ରାୟ ଓ ପ୍ରଫେସର ସଂଘମିତ୍ରା ମିଶ୍ରଙ୍କ ସହିତ



'ସମ୍ବାଦ' ସମ୍ପାଦକ ଓ 'ଆମ ଓଡ଼ିଶା' ଅଧ୍ୟକ୍ଷ ସୌମ୍ୟରଂଜନ ପଟ୍ଟନାୟକଙ୍କ ସହିତ




ସଂଗୀତ ନିର୍ଦ୍ଦେଶକ ଡକ୍ଟର ପ୍ରଫୁଲ୍ଲ କରଙ୍କ ସହିତ



ବିଶିଷ୍ଟ ସାହିତ୍ୟିକ ହର ପ୍ରସାଦ ଦାସଙ୍କ ସହିତ ଅଲୋଚନା



ବିଶିଷ୍ଟ ଶିକ୍ଷକନେତା ଅଧ୍ୟାପକ ଅବନୀ କୁମାର ବରାଳଙ୍କ ସହିତ

# ସାରସ୍ୱତ ସମ୍ବର୍ଦ୍ଧନା




ମିଡିଆ ଏକଡେମୀ ପକ୍ଷରୁ ବିଶିଷ୍ଟ ସାହିତ୍ୟିକମାନଙ୍କୁ ସମ୍ବର୍ଦ୍ଧନା



'ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର' ପ୍ରାପ୍ତ ବିଶିଷ୍ଟ ସାରସ୍ୱତ ସାଧକଗଣ




ଉଚ୍ଚଶିକ୍ଷା ମନ୍ତ୍ରୀ ସମୀର ଦେଙ୍କ ଦ୍ୱାରା ଜର୍ମାନୀରେ ବାସକରୁଥିବା ବିଶିଷ୍ଟ ଓଡ଼ିଆ ଇଞ୍ଜିନିୟର ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସଙ୍କୁ ସମ୍ବର୍ଦ୍ଧନା



ଦିଲ୍ଲୀର ବିଶିଷ୍ଟ ଚକ୍ଷୁ ଚିକିତ୍ସକ ଡକ୍ଟର ଜୟଚନ୍ଦ୍ର ଦାସଙ୍କୁ ସମ୍ବର୍ଦ୍ଧନା




ମିଡିଆ ଏକାଡେମୀର ପ୍ରତିଷ୍ଠା ଦିବସ ଅବସରରେ ରାଜ୍ୟପାଳ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ ଦ୍ୱାରା 'ସମ୍ବାଦ' ସମ୍ପାଦକ ତଥା 'ଆମ ଓଡ଼ିଶା'ର ଅଧ୍ୟକ୍ଷ ସୌମ୍ୟରଂଜନ ପଟ୍ଟନାୟକଙ୍କୁ ସମ୍ବର୍ଦ୍ଧନା



ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ପଦ୍ମଶ୍ରୀ ପ୍ରତିଭା ରାୟ ଓ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ବିଜେତା ଡକ୍ଟର ଗୌରହରି ଦାସଙ୍କୁ ସମ୍ବର୍ଦ୍ଧନା



'ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର' ପ୍ରାପ୍ତ ଡକ୍ଟର ଧନେଶ୍ୱର ମହାପାତ୍ରଙ୍କୁ ସମ୍ବର୍ଦ୍ଧନା



'ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର' ପ୍ରାପ୍ତ ଅଧ୍ୟାପକ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କୁ ସମ୍ବର୍ଦ୍ଧନା

ଚନ୍ଦନ ଇଂଜିନିୟରିଂ ପଢ଼ିଲା ବେଳେ ତା ଉଦ୍ୟମରେ ଏମବିଏ ପାଇଁ ପ୍ରସ୍ତୁତ ହେଉଥିଲା । ଆମେ ତା'ର ସୂଚନା କିଛି ପାଇ ନଥିଲୁ । ଭୁବନେଶ୍ୱରରେ ଥିବା ଜାଭିୟର୍ସ ଇନ୍‌ଷ୍ଟିଚ୍ୟୁଟରେ ପରୀକ୍ଷା ଦେଇ ସେ କୃତକାର୍ଯ୍ୟ ହେଲା । ମୁଁ ତା'ର ନାଁ ଲେଖାଇଦେଲି ।

ଜାଭିୟର୍ସ ଇନଷ୍ଟିଚ୍ୟୁଟ୍ ଏକ ଆବାସିକ ସଂସ୍ଥା । ହଷ୍ଟେଲରେ ରହିବା ବାଧ୍ୟତାମୂଳକ । ଚନ୍ଦନର ହଷ୍ଟେଲରେ ରହିବା ପାଇଁ ସବୁପ୍ରକାର ବନ୍ଦୋବସ୍ତ କରାଗଲା । ମୋର ଯାହା ମନେପଡୁଛି, ହଷ୍ଟେଲ ଖର୍ଚ୍ଚ ମାସକୁ ବୋଧହୁଏ ଦୁଇ ହଜାର ଟଙ୍କା ପଡୁଥିଲା ।

ଚନ୍ଦନ ଜାଭିୟର୍ସରେ ପଢୁଥିଲା ବେଳେ ମୁଁ ଆର୍ଥିକ ସଙ୍କଟ ଭିତରେ ପଡ଼ିଯାଇଥିଲି । ଅମୃତ ବଜାର ପତ୍ରିକାରେ ଲକ୍‌ଆଉଟ ହୋଇଥିଲା । ତା'ପୂର୍ବରୁ ମୁଁ 'ଅନୁସନ୍ଧାନ'ର ପ୍ରକାଶନ ବନ୍ଦକରି ଅପରାଜିତ୍ ପ୍ରେସକୁ ବିକ୍ରି କରି ଦେଇଥିଲି । ପାଖରେ ବିଶେଷ କିଛି ସଂଚୟ ମଧ୍ୟ ନଥିଲା । ମାନସିକ ଦ୍ୱନ୍ଦ ଭିତରେ କିଛିଦିନ କଟିଗଲା ।

'ଚନ୍ଦନର ପାଠପଢ଼ା ଆଗ ନାଁ ସମ୍ପତ୍ତି ରଖିବା ଆଗ' ଏଇକଥା ମନର ଦ୍ୱନ୍ଦ୍ୱକୁ ବଢ଼ାଇଦେଲା । ସେତିକିବେଳେ ଜେଜେଙ୍କର ଗୋଟିଏ କଥା ମନେ ପଡ଼ିଗଲା । ସେ କହୁଥିଲେ, "ପୁଅ ଯଦି ଯୋଗ୍ୟ ତେବେ ଧନ କାହିଁ ସଞ୍ଚୁ ଓ ପୁଅ ଯଦି ଅଯୋଗ୍ୟ ତେବେ ଧନ କାହିଁ ସଞ୍ଚୁ ?" ଏହାର ଅର୍ଥ ପୁଅ ଯଦି ଯୋଗ୍ୟ ହେଲା ତେବେ ସେ ଚାକିରି କିମ୍ବା ବ୍ୟବସାୟ କରି ସମ୍ପତ୍ତି ଆହରଣ କରିପାରିବ । ଆଉ ପୁଅ ଯଦି ଅଯୋଗ୍ୟ ହୋଇଥିବ, ତେବେ ସଞ୍ଚିତ ସମ୍ପତ୍ତିକୁ ବିକି ଭାଙ୍ଗି ଖାଇଯିବ ।

ବହୁ ଚିନ୍ତା କରିବା ପରେ ନିଷ୍ପତ୍ତି କଲି କଟକରେ ତିଆରି କରିଥିବା ଘର ବିକ୍ରି କରିଦେଇ ପରିସ୍ଥିତିର ମୁକାବିଲା କରିବି । ପରେ ଯାହାହେବ ଦେଖାଯିବ । କଟକ ଘରଟି ମୁଁ ବହୁ କଷ୍ଟରେ କରିଥିଲି । ଜମି ପାଇବା ଠାରୁ ଆରମ୍ଭ କରି ଘର ତିଆରି ପର୍ଯ୍ୟନ୍ତ ସବୁକ୍ଷେତ୍ରରେ ଅସୁବିଧାର ସମ୍ମୁଖୀନ ହେବାକୁ ପଡିଥିଲା ।

ଶେଷରେ ମାତ୍ର ତିନି ଲକ୍ଷ ଟଙ୍କାରେ ଦେଢ଼ଗୁଣ୍ଠ ଜମି ଉପରେ ଥିବା ହଜାର ସ୍କୋୟାର ଫୁଟର କୋଠାଘରକୁ ବିକ୍ରି କରିଦେଲି । ମୋର ମନେ ପଡୁଛି, ଯୋଉଦିନ କଟକରେ ସବ୍‌ରେଜିଷ୍ଟ୍ରାରଙ୍କ ଅଫିସରେ ବିକ୍ରି କବଲାରେ ମୁଁ ଦସ୍ତଖତ କଲି, ମୋ ଅଜାଣତରେ ମୋ ଆଖିରୁ କେଇ ଟୋପା ଲୁହ ଗଡି ପଡ଼ିଥିଲା ।

ସେ ଘର ଯଦି ମୁଁ ସେତେବେଳେ ବିକ୍ରି କରି ନଥାନ୍ତି ତେବେ ବର୍ତ୍ତମାନର ବଜାର ଦରରେ ତା'ର ମୂଲ୍ୟ ପଚାଶ ଲକ୍ଷରୁ କମ୍ ହୋଇନଥାନ୍ତା । କିନ୍ତୁ ତା'ବଦଳରେ ମୁଁ ଯାହା ପାଇଲି ତାକୁ ଟଙ୍କାରେ ତଉଲି ପାରିବି ନାହିଁ । ମୋ ବିଚାରରେ ସେତେବେଳେ ଘର ବିକିବା ପାଇଁ ମୋ ନିଷ୍ପତ୍ତି ଠିକ୍ ଥିଲା । କାରଣ ପିଲାଦିନୁ ଚନ୍ଦନକୁ ମୋର ଆର୍ଥିକ ଅସୁବିଧା ଠାରୁ ସବୁବେଳେ ଦୂରେଇ ରଖୁଥିଲି । ତାକୁ କଲେଜରେ ପାଠ ପଢାଇବା ଠାରୁ

ଆରମ୍ଭ କରି ଭଲ ପୋଷାକପତ୍ର ଯୋଗାଇବାରେ ମୁଁ କେବେ ଅବହେଳା କରିନଥିଲି । ପାଠପଢ଼ା ଶେଷରେ ଚନ୍ଦନ ବାହାସାହା ହୋଇ ଆରସେଲର ମିତ୍ତଲ କମ୍ପାନୀରେ ମ୍ୟାନେଜର ହୋଇ ବିଦେଶରେ ରହୁଛି ।

ଅତୀତରେ ମୋ ଅସୁବିଧା ସମ୍ପର୍କରେ ଜାଣିବା ପାଇଁ ମୁଁ ଚନ୍ଦନକୁ କେବେ ସୁଯୋଗ ଦେଇନଥିଲେ ବି ସେ ମର୍ମେମର୍ମେ ସେସବୁ ଅନୁଭବ କରିପାରିଥିଲା । ତା'ପାଠ ପଢ଼ାପାଇଁ ମୁଁ କିପରି କଟକ ଘରକୁ ଶାଗମାଛ ଦରରେ ବିକି ଦେଇଥିଲି ସେ କଥା ମଧ୍ୟ ସେ ଭୁଲିନାହିଁ । ସେଥିପାଇଁ ଆମର ଯେପରି ସାମାନ୍ୟ ଅସୁବିଧା ନହୁଏ, ସେଥିପ୍ରତି ସେ ସବୁବେଳେ ସଜାଗ ରହିଛି । ଛୁଟିଦିନରେ (ପ୍ରତି ଶନିବାର ଓ ରବିବାର) ଆମେ କିପରି ସେମାନଙ୍କ ସହିତ ଚାଟିଂ କରିପାରିବୁ ତା'ର ବନ୍ଦୋବସ୍ତ କରିବା ଠାରୁ ଆରମ୍ଭ କରି ସପ୍ତାହରେ ଅନ୍ତତଃ ଦୁଇଥର ଫୋନ କରିବା ତା'ର ଗୋଟିଏ ରୁଟିନ୍ ହୋଇଯାଇଛି । ବେଳେବେଳେ ଜେଜେଙ୍କ କଥା ମନେ ପଡିଥାଏ, ପୁଅ ଯଦି ଯୋଗ୍ୟ ଧନ କାହିଁକି ସଞ୍ଚୁ ?

# ମୁକ୍ତବୃତ୍ତ ସାମ୍ବାଦିକ ଜୀବନ

ରାଜଧାନୀ ଭୁବନେଶ୍ୱର ସହରରେ ସରକାରୀ କ୍ୱାର୍ଟରରେ ରହିବାକୁ ହେଲେ ସରକାରୀ ସ୍ୱୀକୃତିପ୍ରାପ୍ତ ସାମ୍ବାଦିକ ହେବା ଆବଶ୍ୟକ ବୋଲି ନିୟମ କରାଯାଇଛି । ଯେଉଁ ସାମ୍ବାଦିକମାନେ ଦୀର୍ଘଦିନର ସାମ୍ବାଦିକତା କରି ଅବସର ନେଇଛନ୍ତି ଅଥଚ କାର୍ଯ୍ୟକ୍ଷମ ଅଛନ୍ତି, ସେହିଭଳି ବରିଷ୍ଠ ସାମ୍ବାଦିକଙ୍କୁ ଅଧିସ୍ୱୀକୃତି ଦେବା ପାଇଁ ସରକାରୀସ୍ତରରେ ବ୍ୟବସ୍ଥା ରହିଛି ।

ମୁକ୍ତବୃତ୍ତ ସାମ୍ବାଦିକ ବ୍ୟବସ୍ଥା କେବେଠାରୁ ପ୍ରଚଳନ କରାଗଲା, ତା'ର ସଠିକ୍ ବିବରଣୀ ମିଳେ ନାହିଁ । ତେବେ ମୋର ଯାହା ମନେ ପଡ଼ୁଛି, ଯୋଉ ସାମ୍ବାଦିକମାନେ ଅନ୍ୟୁନ ପଚିଶବର୍ଷ ଚାକିରି କଲାପରେ ଅବସର ନେଉଥିଲେ ଏବଂ ଅବସର ପରେ ବିଭିନ୍ନ ସମ୍ବାଦପତ୍ରରେ ଲେଖାଲେଖି କରୁଥିଲେ, ସମ୍ବାଦ ସଂଗ୍ରହ କ୍ଷେତ୍ରକୁ ଯିବାପାଇଁ ସୁଯୋଗ ଦେବା ଉଦ୍ଦେଶ୍ୟରେ ବିଶେଷ ବ୍ୟକ୍ତିମାନଙ୍କୁ ଏ ସୁବିଧା ପ୍ରଦାନ କରାଯାଉଥିଲା । ମାତ୍ର କ୍ରମେ ଏହାର ଦୁରୂପଯୋଗ ହେଲା । କେତେକ ପ୍ରଶାସକ ଓ ରାଜନେତାମାନେ ସେମାନଙ୍କ ଆତ୍ମୀୟସ୍ୱଜନମାନଙ୍କୁ ରାତାରାତି ବରିଷ୍ଠ ସାମ୍ବାଦିକ କରିଦେବା ପାଇଁ ଏହାକୁ ଏକ ଅସ୍ତ୍ରରୂପେ ବ୍ୟବହାର କଲେ । ମୁକ୍ତବୃତ୍ତ ସାମ୍ବାଦିକମାନଙ୍କ ପାଇଁ ଅନ୍ୟୁନ ପଚିଶବର୍ଷ ଅଭିଜ୍ଞତାର ଯେଉଁ ବ୍ୟବସ୍ଥା ଥିଲା, ତାକୁ କୌଶଳକ୍ରମେ ଉଠାଇ ଦିଆଗଲା । କେବଳ ପାଞ୍ଚବର୍ଷର ଅଭିଜ୍ଞତା ଥିଲେ ଜଣେ ମୁକ୍ତବୃତ୍ତ ସାମ୍ବାଦିକ ହେବାର ଯୋଗ୍ୟତା ପାଇଗଲେ । ଏହାଫଳରେ ଧୁଆମୂଳା, ଅଧୁଆମୂଳା ସମାନ ହୋଇଗଲେ । ବାଛବିଚାର କିଛି ରହିଲା ନାହିଁ ।

ରାଜ୍ୟ ସରକାରଙ୍କ ସୂଚନା ଓ ଲୋକସମ୍ପର୍କ ବିଭାଗ ଏସବୁ ନିୟନ୍ତ୍ରଣ କରେ । ଏ ବିଭାଗଟି ସ୍ୱାଧୀନତା ପରେ ସରକାରଙ୍କ ବିଭିନ୍ନ କାର୍ଯ୍ୟକଳାପକୁ ପ୍ରଚାର କରି ଲୋକଙ୍କ ପାଖରେ ପହଞ୍ଚାଇବା ଉଦ୍ଦେଶ୍ୟରେ ଗଢ଼ା ଯାଇଥିଲା । ଯେଉଁମାନେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ କିମ୍ବା କଂଗ୍ରେସଦଳର କର୍ମୀଥିଲେ ସେମାନଙ୍କ ଭିତରୁ କେତେକଙ୍କୁ ବାଛି

ଏହି ବିଭାଗରେ ନିଯୁକ୍ତି ମିଳିଥିଲା । ପ୍ରଥମ ଅବସ୍ଥାରେ ଯୋଉମାନେ ଏ ବିଭାଗରେ ଚାକିରି କରୁଥିଲେ, ସେମାନଙ୍କର ସରକାରୀ କାର୍ଯ୍ୟ ଓ ନୀତି ପ୍ରତି ନିଷ୍ଠା ଥିଲା ।

ଏକ ସମୟରେ ପୂର୍ବତନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ରାଜନୀତିରେ ଯୋଗଦେବା ପୂର୍ବରୁ ସୂଚନା ଅଧିକାରୀ (ଇନଫରମେସନ ଅଫିସର) ଚାକିରି ପାଇଁ ଇଣ୍ଟରଭ୍ୟୁ ଦେଇ ବିଫଳ ହୋଇଥିଲେ । ଜଣାଶୁଣା ସ୍ୱାଧୀନତା ସଂଗ୍ରାମୀ ଚିନ୍ତାମଣି ମିଶ୍ର ଓ ସୁଧୀର ଘୋଷ ଏହି ବିଭାଗର ମୂଳଦୁଆ ପକାଇଥିଲେ । ଦୀର୍ଘଦିନ ଧରି ଏହି ବିଭାଗଟି ଗୃହବିଭାଗର ଗୋଟିଏ ଅଂଶ ଭାବରେ କାମ କରୁଥିଲା । ଏହା ଗୋଟିଏ କମ୍ପୋଜିଟ୍ ବିଭାଗ ଭାବରେ କାର୍ଯ୍ୟକରେ । ଅନ୍ୟାନ୍ୟ ହେଡସ ଅଫ ଡିପାର୍ଟମେଣ୍ଟ ଭଳି ଏହାର ସ୍ୱତନ୍ତ୍ର ପରିଚୟ ନାହିଁ । ସେକ୍ରେଟାରିଏଟରୁ ଆସିଷ୍ଟାଣ୍ଟ ଏବଂ ଅନ୍ୟାନ୍ୟ କର୍ମଚାରୀମାନେ ଏ ବିଭାଗକୁ ଚଳାଇଥାନ୍ତି । ଏକ ସମୟରେ ଏ ବିଭାଗକୁ ସରକାରଙ୍କ ଆଇନ୍‌କାନୁନ୍ ବିଭାଗ ବୋଲି କୁହାଯାଉଥିଲା ।

ଅଶି ଦଶନ୍ଧିରେ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିଲାବେଳେ ଏହାକୁ ଗୋଟିଏ ସ୍ୱତନ୍ତ୍ର ବିଭାଗରେ ପରିଣତ କରାଯାଇ ଏହାର ନାମ ସୂଚନା ଓ ଲୋକସମ୍ପର୍କ ବିଭାଗ ରଖାଗଲା । ରାଜ୍ୟର ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ସମ୍ପର୍କୀୟ ସମ୍ବାଦ ପାଇବା ପାଇଁ ବିଭିନ୍ନ ସମ୍ବାଦପତ୍ର ଅନୁଷ୍ଠାନମାନେ ଏ ବିଭାଗ ଉପରେ ନିର୍ଭର କରୁଥିଲେ । ସେଥିସହିତ ଏହି ବିଭାଗ ମାଧ୍ୟମରେ ରାଜ୍ୟ ସରକାରଙ୍କର ବିଭିନ୍ନ ବିଭାଗର ସଫଳ କାହାଣୀ ଏହି ବିଭାଗ ଜରିଆରେ ସମ୍ବାଦପତ୍ରକୁ ଦିଆଯାଉଥିଲା ।

ଏହା ମୁଖ୍ୟତଃ ଗୋଟିଏ କିରାଣୀ ପ୍ରାଧାନ୍ୟ ବିଭାଗ ଭାବରେ ଜଣାଶୁଣା । ଆଗେ ଜନପ୍ରିୟ ଆଇ.ଏ.ଏସ ଅଫିସରମାନେ ଏ ବିଭାଗର ନିର୍ଦ୍ଦେଶକ ହେଉଥିଲେ । ମାତ୍ର ନବୀନ ପଟ୍ଟନାୟକଙ୍କ ଶାସନ କାଳରେ ସେ ବ୍ୟବସ୍ଥା ବଦଳିଗଲା । ଏବେ ସେ ବିଭାଗରେ ଓଏଏସ୍ ଅଫିସରମାନଙ୍କୁ ନିର୍ଦ୍ଦେଶକ ଭାବରେ ଅବସ୍ଥାପିତ କରାଯାଉଛି । ହାତଗୁଞ୍ଜା ମାଧ୍ୟମରେ ଏ ବିଭାଗରେ ସବୁ କିଛି କରିହୁଏ ।

ଅମୃତ ବଜାର ପତ୍ରିକା ଓ ଅନୁସନ୍ଧାନର ପ୍ରକାଶନ ବନ୍ଦ ହୋଇଯିବା ପରେ ମୁଁ ମୁକ୍ତବୃତ୍ତ ସାମ୍ବାଦିକ ଭାବରେ ରାଜ୍ୟ ସରକାରଙ୍କ ଅଧିସ୍ୱୀକୃତି ପାଇବା ପାଇଁ ଆବେଦନ କଲି । ରାଜ୍ୟ ସରକାରଙ୍କ ଘୋଷିତ ସମସ୍ତ ନିୟମ ପୂରଣ କରୁଥିବାରୁ ଅଧିସ୍ୱୀକୃତି ପାଇବା ପାଇଁ ବିଶେଷ କିଛି ଅସୁବିଧା ହୋଇନଥିଲା ।

୧୯୯୦ ମସିହାର ଜାନୁଆରୀ ମାସ । ମୁଁ ଯେଉଁ ସରକାରୀ କ୍ୱାଟରରେ ରହୁଛି, ସେଠାରେ ସାଲେପୁରର ବିଧାୟକ ମାୟାଧର ସେଠୀ ରହୁଥିଲେ । କୌଣସି କାରଣରୁ ସେ ଦ୍ୱାଦଶ ବିଧାନସଭା ନିର୍ବାଚନରେ ଅଂଶଗ୍ରହଣ କରିବେ ନାହିଁ ବୋଲି ନିଷ୍ପତ୍ତି କରିଥିଲେ । ମୁଁ ସେତେବେଳେ ଦୁଇନମ୍ବର ୟୁନିଟ୍‌ରେ ଗୋଟିଏ ଟାଇପ୍ ଫାଇଭ କ୍ୱାଟରରେ ରହୁଥିଲି ।

ଛୋଟ ଘର । ଆମ ଘରକୁ ସବୁବେଳେ ବନ୍ଧୁବାନ୍ଧବ ଆସୁଥିଲେ । ଚଳପ୍ରଚଳ ପାଇଁ ସୁବିଧା ହେଉନଥିଲା । ଯେତେବେଳେ ମୁଁ ଶୁଣିଲି ଶ୍ରୀ ସେଠୀ ନିର୍ବାଚନରେ ଲଢ଼ିବେ ନାହିଁ, ଏଇ ଘର ପାଇଁ ସରକାରଙ୍କୁ ଆବେଦନ କରିବାକୁ ମୁଁ ମନସ୍ଥ କଲି ।

ସେତେବେଳକୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଜାନକୀ ବଲ୍ଲଭ ପଟ୍ଟନାୟକ ଚାଲିଯାଇଥିଲେ । ତାଙ୍କ ସ୍ଥାନରେ ହେମାନନ୍ଦ ବିଶ୍ୱାଳ ମୁଖ୍ୟମନ୍ତ୍ରୀ ହୋଇଥିଲେ । ସାଧାରଣ ନିର୍ବାଚନ ଆଉ ତିନିମାସ ଥିଲା । ସେଥିପାଇଁ ଶ୍ରୀ ବିଶ୍ୱାଳଙ୍କୁ କାମଚଳା ମୁଖ୍ୟମନ୍ତ୍ରୀ ବୋଲି କୁହାଯାଉଥିଲା । ଶ୍ରୀ ବିଶ୍ୱାଳ ଜଣେ ଆଦିବାସୀ ନେତା । ବ୍ୟବହାର ଖୁବ୍ ଭଦ୍ର । କଥାବାର୍ତ୍ତା ମଧ୍ୟ ମାର୍ଜିତ । ରାଜଧାନୀର ଏ.ଜି. ଛକରୁ ରାଜଭବନ ଯିବା ବାଟରେ ଥିବା ଗୋଟିଏ ବଡ଼ କ୍ୱାଟରରେ ସେ ରହୁଥିଲେ । ସେ କ୍ୱାଟରଟି ସର୍କିଟ ହାଉସ ହେବା ପାଇଁ ତିଆରି ହୋଇଥିଲା । ୧୯୭୨ ମସିହାରେ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ହେବା ପରେ ତାକୁ ମୁଖ୍ୟମନ୍ତ୍ରୀଙ୍କ ବାସଭବନ କଲେ । ନନ୍ଦିନୀଙ୍କ ପରେ ଜାନକୀବାବୁ ମଧ୍ୟ ମୁଖ୍ୟମନ୍ତ୍ରୀ ଭାବରେ ସେଠାରେ ରହିଲେ ।

୧୯୯୦ ମସିହା ଫେବୃଆରୀ ମାସ । ତାରିଖ ମନେ ପଡୁନାହିଁ । ସନ୍ଧ୍ୟା ଛଅଟା ସମୟରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱାଳଙ୍କୁ ଦେଖା କରିବାକୁ ମନ ହେଲା । ମୁଁ ସିଧା ଭିତରକୁ ଗଲି । ସେତେବେଳେ ଆଜିକାଲି ଭଳି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯିବାକୁ ଏତେ କଟକଣା ନଥିଲା । ସିକ୍ୟୁରିଟି ଷ୍ଟାଫ ମତେ ଚିହ୍ନିଥିଲେ । ମୁଁ ସିଧା ଭିତରକୁ ଯାଇ ସିଡ଼ିରେ ଉପରକୁ ଉଠିଲି । ଶ୍ରୀ ବିଶ୍ୱାଳ ବାରଣ୍ଡାରେ ବସି ମୁଢ଼ି ଖାଉଥିଲେ । ପାଖରେ ଆଉ କେହି ନଥିଲେ । ସେ ମତେ ଦୀର୍ଘଦିନୁ ଜାଣିଥିଲେ । ଦେଖି ଖୁସି ହୋଇଗଲେ । ମୁଢ଼ି, ମିକଶ୍ଚର ଆଣିବାକୁ ସଙ୍ଗେସଙ୍ଗେ ଆଦେଶ ଦେଲେ । ମୁଢ଼ି ଖାଇବା ସମୟରେ ତାଙ୍କ ଆଡୁ ପଚାରିଲେ, କ'ଣ ବନ୍ଧୁ ! ମୁଁ ଆଉ ମାତ୍ର ଦି'ମାସ କ୍ଷମତାରେ ରହିବି । ତା'ପରେ ଆମ ଦଳ ସରକାର କରିବ କି ନାହିଁ ଠିକ୍ ନାହିଁ । ଅନେକ ଲୋକ ଆସି ଅନେକ କାମ କରି ନେଉଛନ୍ତି । କାହିଁ ତମେତ କିଛି କହିଲ ନାହିଁ ? ମୁଁ ତାଙ୍କୁ ସ୍ପଷ୍ଟ ଭାବରେ କହିଲି, "ତୋଷାମଦ କରି କୌଣସି ଫାଇଦା ନେବା ସପକ୍ଷରେ ମୁଁ ନାହିଁ । ହଉ ଯଦି କହୁଛ ମୋ କ୍ୱାଟରଟି ବଦଳାଇ ଦିଅ । ସବୁଦିନ ପାଇଁ ମନେ ଥିବ ।"

ମୁଁ ଖଣ୍ଡେ କାଗଜ ମଗାଇ ସେଇଠି ବସି ଦରଖାସ୍ତଟିଏ ଲେଖିଦେଲି । ମାର୍ଜିନରେ "This quater is alloted in favour of Basanta Das" ବୋଲି ଲେଖିବାକୁ ଶ୍ରୀ ବିଶ୍ୱାଳଙ୍କୁ କହିଲି । ସେ ମୋ ମୁହଁକୁ ଚାହିଁଲେ । କହିଲେ, "ଏମିତି କ'ଣ ଲେଖିହେବ ? ଫାଇଲ ଆସିଲେ ସିନା ଅର୍ଡର ହେବ ?" ମୁଁ ତାଙ୍କୁ ବୁଝାଇଲି । ମୁଖ୍ୟମନ୍ତ୍ରୀ ଭାବରେ ତମ ଆୟୁଷ ମାତ୍ର ପଚାଶ ଦିନ । ସେକ୍ରେଟାରୀରେ ଯାଇ ଫେରିଲା ବେଳକୁ ତମ ଆୟୁଷ ପୁରି

ଯାଇଥିବ । ନୂଆ ସରକାର ଆସି ଯାଇଥିବ । ସେଥିପାଇଁ ଜଣେ ବନ୍ଧୁଙ୍କୁ ଯଦି ସାହାଯ୍ୟ କରିବାକୁ ଚାହୁଁଛ ଏତିକି ଲେଖି ପଠାଇ ଦିଅ । ସେ ସାମାନ୍ୟ ହସିଲେ । ଦରଖାସ୍ତରେ ସୁପାରିଶ କରି ଦରଖାସ୍ତ କରିଦେଲେ ।

ନିର୍ବାଚନ ପରେ କଂଗ୍ରେସ ସରକାର ବଦଳରେ ଜନତାଦଳ ନେତା ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବେ ବୋଲି ଜଣାପଡି ଯାଇଥିଲା । ୧୯୬୩ ମସିହାରେ ଶ୍ରୀ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିଲେ । ୨୭ ବର୍ଷ ପରେ ଆଉଥରେ ଆସିବେ । ସେଥିପାଇଁ ସରକାରୀ ଦଳ ପ୍ରସ୍ତୁତ ହେଉଥିଲା । ସେତେବେଳେ ଡକ୍ଟର ରାଧାକାନ୍ତ ଡାଇରେକ୍ଟର ଥିଲେ । ପ୍ରଶାନ୍ତ କୁମାର ଚୌଧୁରୀ, ପ୍ରଦୀପ କୁମାର ପରିଜା ଡେପୁଟି ଡାଇରେକ୍ଟର ଭାବରେ କାର୍ଯ୍ୟ କରୁଥିଲେ । ସେମାନେ ମତେ ଭଲ ଭାବରେ ଜାଣିଥିଲେ ।

କୌଣସି ଘର ଖାଲି ନହେଲେ କାହାକୁ ଦିଆଯାଇ ପାରିବ ନାହିଁ ବୋଲି ଶ୍ରୀ ଚୌଧୁରୀ ଯୁକ୍ତି ଦର୍ଶାଇଲେ । ମୁଁ କହିଲି, "ଘର ଖାଲି କରିବେ ବୋଲି ମୁଁ ବିଧାୟକ ମାୟାଧର ସେଠୀଙ୍କ ପାଖକୁ ଲେଖି ଆଣିବି ।" ତଥାପି ଶ୍ରୀ ଚୌଧୁରୀ କୁନ୍ଥୁକୁନ୍ଥୁ ହେଲେ । ମୁଁ ଡକ୍ଟର ନାୟକଙ୍କୁ କହିଲି, "ଦେଖନ୍ତୁ, ସରକାର ବଦଳିଲେ ବି ମୁଁ ସେ ଘର ନେବି । ଆପଣ ସେଥିରେ ବାଧାଦେଇ କାହିଁକି ଜଣେ ବନ୍ଧୁଙ୍କୁ ହରାଇବେ ?" କଥାଟା ତାଙ୍କ ମନକୁ ଛୁଇଁଲା । ସେ ଶ୍ରୀ ଚୌଧୁରୀଙ୍କୁ କହିଲେ, "ବସନ୍ତଭାଇ ଯାହା କହୁଛି କରିଦେ, ସେ ଆମର କେତେଦିନର ବନ୍ଧୁ ।

ମୁଁ ଦିନେ ସକାଳେ ମୋ କ୍ୱାଟରରେ ବସିଥିଲି । ଡେପୁଟି ଡାଇରେକ୍ଟର ଶ୍ରୀ ପରିଜା ମତେ ଫୋନ କରି କହିଲେ, "ବସନ୍ତ, ତମେ ଯୋଉ କ୍ୱାଟର କଥା କହୁଛ, ସେଇଟା ଚିତ୍ରକୋଣ୍ଡା ବିଧାୟକ ଗଙ୍ଗାଧର ପାଢ଼ୀଙ୍କ ନାଁରେ ଅଛି । ଘର ବଦଳ କରି ମାୟାଧର ସେଠୀ ସେ କ୍ୱାଟରରେ ରହୁଛନ୍ତି । ଶ୍ରୀ ପାଢ଼ୀ ଚିତ୍ରକୋଣ୍ଡାରେ ରହୁଛନ୍ତି । ସେ ନିର୍ବାଚନ ଲଢ଼ିବେ କି ନାହିଁ ଜଣାନାହିଁ । ନିର୍ବାଚନରେ ଜିତିଲେ ଶ୍ରୀ ପାଢ଼ୀ ସେ କ୍ୱାଟର ରଖିପାରନ୍ତି । ତମେ ଅଫିସ ଆସ । କଥାବାର୍ତ୍ତା କରିବା ।"

ମୁଁ କଲେଜରେ ପଢ଼ିଲାବେଳୁ ଶ୍ରୀ ପରିଜା ମତେ ଜାଣିଥିଲେ । ତାଙ୍କ ସାନଭାଇ ସ୍ୱରୂପ ଚନ୍ଦ୍ର ପରିଜାଙ୍କ ସହିତ ମୋର ଅନ୍ତରଙ୍ଗ ବନ୍ଧୁତା ଥିଲା । ପରେ ବାଣୀବିହାରରେ ସେ ଆମର ଅଧ୍ୟାପକ ହୋଇଥିଲେ । ମୁଁ ସେକ୍ରେଟାରୀଏଟ୍ ଯାଇ ଶ୍ରୀ ପରିଜାଙ୍କୁ ଦେଖାକଲି । କଥାବାର୍ତ୍ତା ପରେ ସ୍ଥିର ହେଲା, ଶ୍ରୀ ପାଢ଼ୀଙ୍କ ଠାରୁ କ୍ୱାଟର ଖାଲି କରିଦେବେ ବୋଲି ଲେଖାଟିଏ ଆଣିବା ପାଇଁ । ଗୌରୀଶଙ୍କର ମହାପ୍ରଶସ୍ତ ସେତେବେଳେ ଅବିଭକ୍ତ କୋରାପୁଟ ଜିଲ୍ଲାର ଏଡିଏମ୍ ଥିଲେ । ଛାତ୍ର ଅବସ୍ଥାରୁ ତାଙ୍କ ସହିତ ବନ୍ଧୁତା ଥିଲା । ମୁଁ ତାଙ୍କୁ ସବୁକଥା କହିଲି । ଶ୍ରୀ ପାଢ଼ୀଙ୍କୁ ସେ ଭୁବନେଶ୍ୱର ପଠାଇ ଦେବାର ବ୍ୟବସ୍ଥା କରିବେ ବୋଲି ପ୍ରତିଶ୍ରୁତି ଦେଲେ ।

କଥାବାର୍ତ୍ତା ବେଳେ ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ଶ୍ରୀ ପାଢ଼ୀଙ୍କ ନାଁରେ ଦିଆଯାଇଥିବା କ୍ୱାଟରରେ ଦୀର୍ଘ ଦଶବର୍ଷ ହେଲା ଶ୍ରୀ ସେଠୀ କିପରି ରହୁଥିଲେ । ଶ୍ରୀ ପରିଡ଼ା କହିଲେ, "ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି । ଏହା ଶୋଷଣର ଏକ ଅଂଶ । ଶ୍ରୀ ସେଠୀଙ୍କୁ ଏମ୍‌ଏଲଏ କଲୋନୀରେ ୧୬/୪ କ୍ୱାଟର ମିଳିଥିଲା । ସେ କ୍ୱାଟରର ମାସକୁ ଭଡା ମାତ୍ର କୋଡିଏ ଟଙ୍କା। ଶ୍ରୀ ପାଢ଼ୀ ପୁରୁଣା ବିଧାୟକ ହୋଇଥିବାରୁ ତାଙ୍କୁ ଟାଇପ ମିକ୍ସ ଘର ଦିଆଯାଇଥିଲା । ସେ ଘରର ରିହାତି ଭଡା ଦୁଇଶହ ଟଙ୍କା । ଶ୍ରୀ ସେଠୀ କୌଶଳ କରି ଶ୍ରୀ ପାଢ଼ୀଙ୍କ ସାଙ୍ଗରେ ଘର ଅଦଳବଦଳ କରିଦେଲେ । ଫଳରେ ସେ ବଡ଼ ଘରେ ରହି ମାସକୁ କୋଡିଏ ଟଙ୍କା ଭଡା ଦେଲେ । ଅନ୍ୟପକ୍ଷରେ ଶ୍ରୀ ପାଢ଼ୀ, ଏମ୍‌ଏଲଏ କଲୋନୀରେ ରହିଲେ । ତାଙ୍କ ଦରମାରୁ ମାସକୁ ଦୁଇଶହ ଟଙ୍କା ଘରଭଡା ବାବଦକୁ କଟିଲା ।"

ଶ୍ରୀ ସେଠୀ, ସେ ବଡ଼ କ୍ୱାଟରଟିକୁ ଏକପ୍ରକାର କଲ୍ୟାଣମଣ୍ଡପରେ ପରିଣତ କରିଦେଇଥିଲେ । ଜୟନ୍ତୀ ପଟ୍ଟନାୟକଙ୍କ ଧରମ ପୁଅ ବୋଲି ବାହାରେ ପରିଚୟ ଦେଇ ସେ ସ୍ଥାନୀୟ ଅଫିସରମାନଙ୍କୁ ଭୟଭୀତ କରି ରଖିଥିଲେ । ବିଜୁଳି ଲାଇନରେ ହୁକ୍ ପକାଇ ଘରକୁ ବିଦ୍ୟୁତ୍ ସଂଯୋଗ କରାଯାଉଥିଲା । ଘର ସାମନାରେ ସବୁବେଳେ ଗୋଟିଏ ପାଣିଟାଙ୍କି ରହୁଥିଲା। ଫଳରେ ସେଠାରେ ବାହାଘର ପାଇଁ ବିଜୁଳି ଆଲୁଅ ଓ ପାଣିର ଅଭାବ ରହୁନଥିଲା ।

ବାହାଘର ଓ ଅନ୍ୟାନ୍ୟ ଉତ୍ସବ ପାଇଁ ଦିନକୁ ତିନିହଜାର ଟଙ୍କା ଭଡା ବାବଦକୁ ଆଦାୟ କରାଯାଉଥିଲା । ଆଖପାଖରେ ଟେଣ୍ଟହାଉସ ମାଲିକମାନେ ମଧ୍ୟ ସେ କ୍ୱାଟରର ସ୍ଥିତି ସମ୍ପର୍କରେ ପରିଚିତ ହୋଇଥିଲେ । ମାୟାଧର ସେଠୀଙ୍କ କ୍ୱାଟର କହିଲେ କୋଉଠି ବରଯାତ୍ରୀ ବସିବେ, କୋଉଠି ଖାଇବା ପିଇବା ହେବ ସେସବୁ ବନ୍ଦୋବସ୍ତ କରିଦେଉଥିଲେ ।

ଦି, ଚାରିଦିନର ଟଣାଓଟରା ପରେ ସେ କ୍ୱାଟରଟି ମୋ ନାଁରେ ଆଲଟମେଣ୍ଟ ହେଲା । ମାତ୍ର ସେତିକିରେ କାମ ସରିଲା ନାହିଁ । ମାୟାଧର ସେଠୀ କ୍ୱାଟର ଖାଲି କରିବାକୁ ଅମଙ୍ଗ ହେଲେ । ତାଙ୍କ ଘର ତିଆରି ଶେଷ ହେଲେ ଘର ଛାଡିବେ ବୋଲି କହିଲେ । ତାଙ୍କ କଥାରେ ପ୍ରଚ୍ଛନ୍ନ ଧମକର ଇଙ୍ଗିତ ଥିଲା । ମୁଁ ଟିକିଏ ଚିନ୍ତିତ ହୋଇ ପଡିଲି । ଏତେ କଷ୍ଟକରି କ୍ୱାଟରଟି ଆଲଟମେଣ୍ଟ କରାଇଲି । ଅଥଚ ସେ କ୍ୱାଟରରେ ରହିବାର ସୁଯୋଗ ମତେ ମିଳିବ ନାହିଁ । ଶ୍ରୀ ସେଠୀଙ୍କୁ ମୁକାବିଲା କରିବା ପାଇଁ ମୁଁ ଉପାୟ ଖୋଜିଲି ।

ପଟିଆର ଉମାଚରଣ ମହାନ୍ତି । ସେ ଅଞ୍ଚଳରେ ଲୋକେ ତାଙ୍କୁ ଖାତିର କରନ୍ତି । ବଦ୍‌ମାସ ଲୋକେ ଭୟ କରନ୍ତି । ତାଙ୍କ ପୁତୁରା ପ୍ୟାରୀ ମୋ ସାଙ୍ଗରେ ସ୍କୁଲରେ ପଢୁଥିଲେ । ସେଥିପାଇଁ ମୁଁ ତାଙ୍କୁ ଦାଦା ବୋଲି ଡାକେ । ସେ ଆମ ଘରକୁ ସବୁବେଳେ ଆସନ୍ତି । କଫି ପିଇ କିଛି ସମୟ ଗପସପ କରି ଯାଆନ୍ତି । ମୁଁ ତାଙ୍କୁ ସବୁକଥା କହିଲି । ସେ କହିଲେ,

"ଏଇ କଥା । ମୁଁ ଫୈସଲା କରିଦେବି । ତମ ନାଁରେ କ୍ୱାଟର ହୋଇଛି । ସେ ରହିବାକୁ କିଏ ? ଚାଲ ତାଙ୍କ ଘରକୁ ଯିବା ।"

ଆମେ ଦୁହେଁ ଶ୍ରୀ ସେଠୀଙ୍କ କ୍ୱାଟରକୁ ଗଲୁ । ଶ୍ରୀ ସେଠୀ ଘରେ ଥିଲେ । ଦାଦା ତାଙ୍କୁ କହିଲେ, "ହଇଓ ମାୟାଧରବାବୁ । ମୋ ପୁତୁରା ନାଁରେ ଏ ଘର ଆଲଟ ହୋଇଛି । ତମେ କେମିତି ରହିଛ ? ତମକୁ ମୁଁ ଦୁଇଦିନ ମହଲତ ଦେଲି । ଦି'ଦିନ ଭିତରେ ତମେ ଘର ଖାଲିକରି ଚାଲିଯିବ । ନହେଲେ ତମ ଘରୁ ମୁଁ ଜିନିଷପତ୍ର ବାହାର କରିଦେବି । ମୋ ନାଁ କୁଞ୍ଜ ମହାନ୍ତି । ଆମ ଘର ପଟିଆ । ଏଇ କଥା ମନେ ରଖିଥିବ ।"

କୁଞ୍ଜ ଦାଦାଙ୍କ ଧମକ କାମ ଦେଲା । ମୋ ସାଙ୍ଗରେ କଥାବାର୍ତ୍ତା କରି ଶ୍ରୀ ସେଠୀ ଆଉ ଦୁଇଦିନ ସମୟ ନେଲେ । ତା'ପରେ ଘର ଖାଲି କରିଦେଲେ । ଗଲାବେଳେ ସରକାରୀ କର୍ମଚାରୀମାନଙ୍କୁ ଧମକଚମକ ଦେଇ ଘରୁ ପଙ୍ଖା, ଆଲମାରୀ ଓ ଅନ୍ୟାନ୍ୟ ସରକାରୀ ଜିନିଷ ସବୁ ନେଇଗଲେ ।

ସେ କ୍ୱାଟରକୁ ଆସିବା ପୂର୍ବରୁ ଯୋଉଦିନ ପତ୍ନୀ ପ୍ରମଦାଙ୍କୁ ଆଣି ସେ ଘର ଦେଖାଇଲି, ସେ ନୂଆଘରକୁ ଆସିବେ ନାହିଁ ବୋଲି ସିଧାସଳଖ ନାହିଁ କରିଦେଲେ । ତାଙ୍କ ନାହିଁ କରିବାର ଯଥାର୍ଥତା ଥିଲା । କାରଣ ଘର ଭିତରେ ଥିବା ମାଟି ଅଗଣାରେ କୁଢ଼ କୁଢ଼ ଅଇଁଠା ଖଲିପତର ଓ ମାଟିସରା । ବାହାରେ ଥିବା ପାଣିକୁଣ୍ଡ ମାଛ କାତି ଓ ପୁଟିରେ ଭର୍ତ୍ତି । ସେଥିରୁ ଉତ୍କଟ ଗନ୍ଧ ବାହାରୁଥାଏ । ମୁଁ ପ୍ରମଦାଙ୍କୁ ବୁଝାଇବାକୁ ଚେଷ୍ଟା କରି କହିଲି, ଏସବୁ ସଫା ହୋଇଯିବ । ସେଥିପାଇଁ ଚିନ୍ତାକର ନାହିଁ ।

ମ୍ୟୁନିସପାଲିଟି ସହାୟତାରେ ଅଗଣାରୁ ଖଲିପତର, ସରା ଓ ଦାନ୍ତକାଠି ଏବଂ ସାମନା ପାଣି କୁଣ୍ଡରୁ ମାଛକାତି ସବୁ ସଫା ହୋଇଗଲା । ହେଲେ କ୍ୱାଟରକୁ ଆସିବାରେ ଆଉ ଗୋଟିଏ ଅସୁବିଧା ଦେଖାଦେଲା । କ୍ୱାଟରର ତଳ ମହଲାରେ ଥିବା ଦୁଇମହଲା ଘର ଭିତରୁ ଗୋଟିଏ ବଖରାକୁ କିଛି ଲୋକ ଅକ୍ତିଆର କରି ରଖିଥିଲେ । ଖୋଜ୍ ନେବାରୁ ବୁଝିଲି ସେମାନେ ହେଉଛନ୍ତି ଅଣବନ୍ଦୀ ସ୍ୱାଧୀନତା ସଂଗ୍ରାମୀ । ସେ କ୍ୱାଟରରେ ଯୋଉଦିନ ବାହାଘର ଇତ୍ୟାଦି ହୁଏ, ମାଗଣା ଭୋଜନ କରନ୍ତି । ବାହାଘର ପରେ ବାହାଘରରୁ ବଳିଥିବା ଚାଉଳ, ଡାଲି, ଆଳୁ, କଦଳୀ, କଖାରୁ ଇତ୍ୟାଦି ଯାହାସବୁ ଛାଡିଦେଇ ଯାଇଥାନ୍ତି, ଏମାନେ ତାକୁ ଆଣି ଅବଶିଷ୍ଟ ଦିନ ଚଳିଯାଆନ୍ତି ।

ମୁଁ ସେମାନଙ୍କୁ ଘର ଖାଲି କରିବା ପାଇଁ ଯେତେବେଳେ କହିଲି, ସେମାନଙ୍କର ରୋକ୍‌ଠୋକ୍ ଜବାବ ଥିଲା, "ଆମେ ସ୍ୱାଧୀନତା ସଂଗ୍ରାମୀ । ସରକାର ଏ ପର୍ଯ୍ୟନ୍ତ ଆମକୁ ଭତ୍ତା ଦେଇନାହାନ୍ତି । ଆମର ରାଜଧାନୀରେ ଘରଦ୍ୱାର ନାହିଁ । ଆମେ କୁଆଡ଼େ ଯିବୁ ?" ଯାହାହେଉ କିଛି ଦିନର କଥାବାର୍ତ୍ତା ପରେ ସେମାନେ ଘର ଖାଲି କଲେ । ଆମେ ସେ କ୍ୱାଟରକୁ ଆସିଗଲୁ ।

କ୍ୱାଟରକୁ ଆସି ତାକୁ ବାସୋପଯୋଗୀ କରିବା ପାଇଁ ଆମକୁ ପ୍ରାୟ ମାସେ ଲାଗିଲା । କଲ୍ୟାଣମଣ୍ଡପ ଢ଼ାଞ୍ଚା ବଦଳାଇ ଫୁଲ ଗଛ ଲାଗିଲା । ମୋରମ ବିଛା ଯାଗାକୁ ହାଣି ଲନ୍ ତିଆରି କଲି । ଏବେ ସେ ଘରକୁ ଯିଏ ଆସୁଛନ୍ତି ଫୁଲ, ଫଳ ଗଛ ଦେଖି ପସନ୍ଦ କରୁଛନ୍ତି ।

ମୁକ୍ତବୃତ୍ତ ସାମ୍ବାଦିକଙ୍କୁ ଅଧିସ୍ୱୀକୃତି ଦେବାପାଇଁ ସରକାର ଯେଉଁ ନିୟମ ରଖିଛନ୍ତି ତାହା ଏକ ଜଙ୍ଗଲ ଆଇନ୍ ସଦୃଶ । ପ୍ରତିବର୍ଷ ଏହାର ନବୀକରଣ ବ୍ୟବସ୍ଥା ବାଧ୍ୟତାମୂଳକ କରାଯାଇଛି । ନବୀକରଣ ପାଇଁ ଆବେଦନପତ୍ର ସହିତ ନିଜ ନାମରେ ପ୍ରକାଶ ପାଇଥିବା ଲେଖା ସହିତ ସାମ୍ବାଦିକତା ବୃତ୍ତିରୁ ବର୍ଷକୁ ତିରିଶ ହଜାର ଟଙ୍କା ପାଇଥିବାର ଏକ ସାର୍ଟିଫିକେଟ ଦେବା ବାଧ୍ୟତାମୂଳକ କରାଯାଇଛି । ଏକଥା କହିବା ଅନାବଶ୍ୟକ ଯେ, ଓଡ଼ିଶାରେ କୌଣସି ମୁକ୍ତବୃତ୍ତ ସାମ୍ବାଦିକ ସେମାନଙ୍କ ଲେଖା ପାଇଁ ବର୍ଷକୁ ତିନିହଜାର ଟଙ୍କା ମଧ୍ୟ ପାଇନଥାନ୍ତି । ଏକଥା ସରକାରଙ୍କୁ ଅଛପା ନାହିଁ । ତା' ସତ୍ତ୍ୱେ ସାର୍ଟିଫିକେଟ ଉପରେ ଗୁରୁତ୍ୱ ଦିଆଯାଉଛି । ସରକାରଙ୍କ ଏପରି ନିଷ୍ପତ୍ତି ଦୁର୍ନୀତିର ଆଶ୍ରୟ ନେବାକୁ ପରୋକ୍ଷରେ ଉତ୍ସାହିତ କରୁଛି । ଓଡ଼ିଶାରେ ଯେତେଜଣ ରାଜ୍ୟସ୍ତରୀୟ ଅଧିସ୍ୱୀକୃତି ପ୍ରାପ୍ତ ମୁକ୍ତବୃତ୍ତ ସାମ୍ବାଦିକ ଅଛନ୍ତି, କେଇଜଣ ହାତଗଣତି ସାମ୍ବାଦିକଙ୍କୁ ବାଦ୍‌ଦେଲେ ଅଧିକାଂଶଙ୍କର ଲେଖା କୌଣସି ସମ୍ବାଦପତ୍ରରେ ପ୍ରକାଶ ପାଏ ନାହିଁ । ସେମାନେ କିଛି ଦିଆନିଆ କରି ସେମାନଙ୍କ କାମ କରିଦେଉଛନ୍ତି ।

ନବୀନ ପଟ୍ଟନାୟକଙ୍କ ଶାସନକାଳରେ ସାମ୍ବାଦିକମାନଙ୍କୁ ପୂର୍ବରୁ ଦିଆଯାଇଥିବା ସବୁପ୍ରକାର ସୁବିଧା ସୁଯୋଗକୁ ବନ୍ଦ କରିଦିଆଯାଇଛି । ପୂର୍ବଭଳି ସାମ୍ବାଦିକମାନେ ଆଉ ସରକାରୀ ଡାକ୍ତରଖାନାରେ ମାଗଣାରେ ଚିକିତ୍ସାର ସୁବିଧା ପାଉନାହାନ୍ତି । ସେମାନଙ୍କ ଉଦ୍ଦେଶ୍ୟରେ ଗଠିତ ସାମ୍ବାଦିକ କଲ୍ୟାଣ ପାଣ୍ଠିର ରାଶି ବୃଦ୍ଧି କରାଯାଉନାହିଁ । ସରକାରୀ ବସରେ ମାଗଣାରେ ଯାତାୟାତ ବ୍ୟବସ୍ଥା ବନ୍ଦ ହୋଇଯାଇଛି ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି, ଗତ ଚଉଦବର୍ଷ ହେଲା ସାମ୍ବାଦିକମାନେ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିବାରୁ ବଞ୍ଚିତ ହୋଇଛନ୍ତି । ତାଙ୍କୁ କୌଣସି ପ୍ରଶ୍ନ ପଚାରିବାର ନୈତିକ ଅଧିକାର ସେମାନେ ହରାଇ ବସିଛନ୍ତି । ଖଣ୍ଡେ ଟାଇପକରା କାଗଜକୁ ମୁଖ୍ୟମନ୍ତ୍ରୀ କେତେବେଳେ ପଢ଼ିବେ, ସେଥିପାଇଁ ସାମ୍ବାଦିକମାନଙ୍କୁ ଘଣ୍ଟା ଘଣ୍ଟା ଧରି ଚାତକପରି ଅପେକ୍ଷା କରିବାକୁ ପଡୁଛି ।

ଗତ ୧୪ବର୍ଷର ଶାସନ କାଳରେ ମୁଖ୍ୟମନ୍ତ୍ରୀ ଥରେ ହେଲେ ଗୋଟିଏ ସାମ୍ବାଦିକ ସମ୍ମିଳନୀ ଡାକିବା ପାଇଁ ଉଚିତ୍ ମନେ କରିନାହାନ୍ତି । ଏହାଦ୍ୱାରା ଗଣତନ୍ତ୍ରର ଚତୁର୍ଥସ୍ତମ୍ଭ କ୍ରମେ ଦୁର୍ବଳ ହୋଇଯାଉଛି ।

ରାଜ୍ୟ ସରକାରଙ୍କ ସ୍ୱୀକୃତିପ୍ରାପ୍ତ ଏକାଧିକ ସମ୍ବାଦପତ୍ରରେ ମୋ ଲେଖା ଗତ କିଛି ବର୍ଷ ହେଲା ନିୟମିତ ଭାବରେ ପ୍ରକାଶ ପାଉଛି । ଅନେକ କ୍ଷେତ୍ରରେ ଲୋକେ ତା' ଉପରେ ଆଲୋଚନା କରୁଛନ୍ତି । ମତେ ଟେଲିଫୋନ କରି ବଧେଇ ଦେଉଛନ୍ତି ।

ମାତ୍ର ମୁକ୍ତବୃତ୍ତ ସାମ୍ବାଦିକ ଭାବରେ ମୋର ଅଧିସ୍ୱୀକୃତିର ନବୀକରଣ ପାଇଁ ତାହା ଯଥେଷ୍ଟ ହେଉନାହିଁ । ପ୍ରତିବର୍ଷ ଖଣ୍ଡିଏ ମିଥ୍ୟା ସାର୍ଟିଫିକେଟ୍ ଆଣିବାକୁ ବାର ଦୁଆର ଯିବାକୁ ପଡୁଛି । ମୁଁ ଗତ ପନ୍ଦରବର୍ଷ ଭିତରେ ଅନ୍ୟୁନ ପାଞ୍ଚଟି ସମ୍ବାଦପତ୍ର ମାଲିକଙ୍କ ଠାରୁ ଏହି ସାର୍ଟିଫିକେଟ୍ ଯୋଗାଡ କରିଛି । ଏପରି ବ୍ୟବସ୍ଥା ଯେ, ଏକ ପ୍ରହସନ ସେକଥା ସମସ୍ତେ ଜାଣୁଛନ୍ତି । ଜାଣି ନଜାଣିଲା ପରି ରହୁଛନ୍ତି ।

# ୟୁରୋପ ଯାତ୍ରା

ଆମର ଏକମାତ୍ର ପୁଅ ଚନ୍ଦନ ବିଶ୍ୱର ଲୌହସମ୍ରାଟ ଲକ୍ଷ୍ମୀ ମିତ୍ତଲଙ୍କ କମ୍ପାନୀରେ ମାର୍କେଟିଂ ମ୍ୟାନେଜର ଭାବରେ ନିଯୁକ୍ତି ପାଇ ଚେକ୍ ରିପବ୍ଲିକ୍‌ର ଅଷ୍ଟ୍ରୋଭା ସହରରେ ବୋହୂ ସାଲୋନୀ ଓ ନାତୁଣୀ ଏଲିନା ସହ ରହୁଥିଲା । ସେମାନଙ୍କ ପାଖକୁ ଯିବାପାଇଁ ପିଲାମାନେ ବାରମ୍ବାର ଅନୁରୋଧ କରୁଥିଲେ। କୌଣସି ନା କୌଣସି ବାହାନା ଦେଖାଇ ମୁଁ ତାକୁ ଏଡ଼ାଇ ଚାଲିଥିଲି।

୨୦୦୭ ମସିହା ଜୁନ୍ ୧୨ ତାରିଖ ରଜ ପୂର୍ବଦିନ, ବୋହୂ ସାଲୋନୀ ଫୋନ୍ କରି କହିଲା, "ବାବା! ଏତେଥର କହିଲାପରେ ଆପଣମାନେ କେହି ଆସୁନାହାନ୍ତି । ଏଠାରେ ସମସ୍ତେ ଆମକୁ ପଚାରୁଛନ୍ତି, ତମର କ'ଣ କେହି ଆତ୍ମୀୟସ୍ୱଜନ ନାହାନ୍ତି ? ସମସ୍ତଙ୍କର କେହି ନା କେହି ଆସୁଛନ୍ତି, ଆଉ ତମର କାହିଁ କେହି ଆସୁନାହାନ୍ତି ?"

ସାଲୋନୀର ଏଇକଥା ମନରେ ଗଭୀର ରେଖାପାତ କଲା । ଫୋନ୍‌ରେ ତା' କଥାରୁ ପିଲାମାନଙ୍କ ମନର ଆବେଗ ଓ ମନସ୍ତାତ୍ତ୍ୱିକ ସ୍ଥିତିର ସ୍ପଷ୍ଟ ଆଭାସ ମିଳିଥିଲା । ମୁଁ ସ୍ଥିରକଲି, ନା, ଆଉ ପିଲାଙ୍କୁ ଠକିହେବ ନାହିଁ । ଏଥର ଯିବାକୁ ପଡ଼ିବ ।

ଫୋନ୍ କଥା ପତ୍ନୀ ପ୍ରମଦାଙ୍କୁ ଜଣାଇଲି । ତାଙ୍କର ପ୍ରତିକ୍ରିୟା ଥିଲା, "ଯାଉନା ? ପିଲାମାନେ କେତେଥର ଫୋନ୍ କଲେଣି ।" ମୁଁ କହିଲି, "କ'ଣ ମୋର ଏକା ଯିବାକଥା ପଡ଼ିଛି ? ଆମେ ଦି'ଜଣ ଯିବାପାଇଁ ପରା ପିଲାଏ ଚାହୁଁଛନ୍ତି ?" "ମୋର ଗୋଡ଼ ଖରାପ, ମୁଁ କୁଆଡ଼େ ଯିବି ? ମୁଁ ପିଲାଙ୍କୁ ବୁଝେଇଦେବି, ତମେ ଏକାଯାଇ ବୁଲିଆସ ।" ଏପରି ଏକ ସ୍ୱାଭାବିକ ଉତ୍ତର ପାଇବି ବୋଲି ମୁଁ ଆଶା କରିଥିଲି ।

ଆର୍ଥ୍ରାଇଟିସ୍ ଯୋଗୁଁ ପ୍ରମଦାଙ୍କ ଚାଲିବାରେ କଷ୍ଟ ହୁଏ । ସେଥିପାଇଁ କୁଆଡ଼େ ଯିବାପାଇଁ ସେ ପ୍ରାୟ ଇଚ୍ଛା କରିନଥାନ୍ତି । ମୁଁ ତାଙ୍କୁ ବୁଝାଇ କହିଲି, "ପ୍ଲେନକୁ ଯିବାପାଇଁ ଏବଂ ଓହ୍ଲାଇଲା

ପରେ ହ୍ୱିଲ୍ ଚେୟାର୍‌ର ବ୍ୟବସ୍ଥା ରହିଛି । ଚାଲିବାକୁ ପଡ଼ିବ ନାହିଁ । ପୁରୀ ଯିବା ଅପେକ୍ଷା ବିଦେଶ ଯିବା ଅଧିକ ସୁବିଧା । ଚାଲ ଦି'ଜଣ କିଛିଦିନ ବୁଲିଆସିବା ।" ସେ କହିଲେ, "ହଉ ଦେଖିବା, ସେ ସମୟ ଆସୁ ।"

ସେଦିନର କଥାବାର୍ତ୍ତା ପରେ ଆମେ ପିଲାଙ୍କ ପାଖକୁ ଯିବାପାଇଁ ଏକପ୍ରକାର ସ୍ଥିର ହୋଇଗଲା । ମୁଁ ଆମର ନିଷ୍ପତ୍ତି ଫୋନ ଯୋଗେ ଚନ୍ଦନକୁ ଜଣାଇଦେଲି । ତା'ପରେ ଆରମ୍ଭ ହେଲା ଟିକଟ୍ କିଣା, 'ଭିସା' ପାଇଁ ଦରଖାସ୍ତ ଇତ୍ୟାଦି ଇତ୍ୟାଦି ।

ପିଲାଙ୍କ ପାଇଁ ସାଙ୍ଗରେ କିଛି ଜିନିଷ ନେବାକୁ ଇଚ୍ଛା ହେଲା । ଦେଶ ବାହାରେ ଆମ ଖାଇବା ପଦାର୍ଥ ସେମାନଙ୍କୁ ମିଳୁନଥିଲା । ଆମେ ଗୋଟିଏ ଚିଠା ତିଆରି କଲୁ । ଚିଲିକା ଚିଙ୍ଗୁଡ଼ି ସାଙ୍ଗକୁ ବାରିପଦା ମୁଢ଼ି ଓ କେନ୍ଦୁଝର ବଡ଼ି, କଟକ ବାରମଜା, ପୁରୀର ଲଡୁ, ସାଲେପୁର ରସଗୋଲା ଏବଂ ଘରତିଆରି ଆଚାରସବୁ ସେ ଚିଠାରେ ପଶିଲା । ତା'ସାଙ୍ଗକୁ ସିଆଡୁ ବରାଦ ଆସିଥିଲା ସାଙ୍ଗରେ ପୋଟଳ, ଧନିଆପତ୍ର, ଭୃସଙ୍ଗପତ୍ର ନେବାପାଇଁ । ଏସବୁ ଯୋଗାଡ଼ କରିବାକୁ ସାତଦିନରୁ ଅଧିକ ସମୟ ଲାଗିଲା ।

ଦିଲ୍ଲୀରୁ ଅଷ୍ଟ୍ରୋଭାକୁ ସିଧାସଳଖ ବିମାନ ଚଳାଚଳ ନାହିଁ । ଅଷ୍ଟ୍ରୋଭାକୁ ଯିବାକୁ ହେଲେ ଦିଲ୍ଲୀରୁ ଭିଏନା ଯାଇ ସେଠାରୁ କାର୍‌ରେ ଯିବାକୁ ପଡ଼େ । ଦୁଇ ସହର ଭିତରେ ଦୂରତା ୪୦୦ କିଲୋମିଟର । କିନ୍ତୁ ଚାରି ଘଣ୍ଟା ଭିତରେ ସେତିକି ରାସ୍ତା ଯାଇହୁଏ ।

ଆମେ ଭୁବନେଶ୍ୱରରୁ ବିମାନରେ ଯାଇ ଦିଲ୍ଲୀରେ ରହୁଥିବା ପ୍ରମଦାଙ୍କ ଭାଇ ଡକ୍ଟର ଜୟଚନ୍ଦ୍ର ଦାସଙ୍କ ଘରେ ଗୋଟିଏ ଦିନ ରହିଲୁ । ସେଠାରୁ ଆଉ କିଛି ଖାଦ୍ୟପଦାର୍ଥ ଆମ ବ୍ୟାଗେଜରେ ପଶିଲା । ସାଧାରଣତଃ ବିଦେଶ ଖାଦ୍ୟପଦାର୍ଥ ନେବା ମନା । କିନ୍ତୁ ଆମେ ଓଡ଼ିଶା ଭବନର ଜଣେ ଅଫିସରଙ୍କ ସହଯୋଗରେ ସେତକ ନେଇପାରିଥିଲୁ ।

ଭିଏନା ଆନ୍ତର୍ଜାତିକ ବିମାନ ରାତି ସାଢ଼େ ଦଶଟାରେ ଦିଲ୍ଲୀ ଇନ୍ଦିରା ଗାନ୍ଧୀ ଆନ୍ତର୍ଜାତିକ ବିମାନ ବନ୍ଦରରୁ ଛାଡ଼େ । ବିମାନ ଛାଡ଼ିବାର ଦୁଇଘଣ୍ଟା ପୂର୍ବରୁ ବିମାନବନ୍ଦରରେ ପହଞ୍ଚିବା ଆବଶ୍ୟକ ।

ଆମେ ଶୀଘ୍ର ରାତ୍ରିଭୋଜନ ଶେଷକରି ସନ୍ଧ୍ୟା ସାଢ଼େସାତଟା ବେଳେ ଘର ଛାଡ଼ିଲୁ । ଆମର ସମସ୍ତ ପ୍ରକାର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଡକ୍ଟର ଜୟଚନ୍ଦ୍ର ଦାସ, ତାଙ୍କ ପତ୍ନୀ କଞ୍ଚନା ଓ କନ୍ୟା ପଲ୍ଲବୀ ଆମକୁ ବିଦାୟ ଦେବା ପାଇଁ ବିମାନ ବନ୍ଦରକୁ ଯାଇଥିଲେ ।

ନିର୍ଦ୍ଧାରିତ ସ୍ଥାନୀୟ ସମୟ ସକାଳ ସାଢ଼େ ଆଠଟାରେ ବିମାନ ଭିଏନା ବିମାନ ବନ୍ଦରରେ ଅବତରଣ କଲା । ଆମେ ବିମାନରୁ ବାହାରିଲା ବେଳକୁ ମୋ ପତ୍ନୀଙ୍କ ପାଇଁ ହୁଇଲ୍ ଚେୟାର ସହିତ ସହାୟକ ଅପେକ୍ଷା କରିରହିଥିଲେ । ଶାରୀରିକ ଭିନ୍ନକ୍ଷମମାନଙ୍କୁ ବିଦେଶ ରାଷ୍ଟ୍ରରେ ଲୋକେ ଯଥେଷ୍ଟ ସମ୍ମାନ ଦିଅନ୍ତି । ବିମାନ ବନ୍ଦରଠାରୁ ଆରମ୍ଭ କରି ସହରବଜାର ଏବଂ ଗାଡ଼ି ପାର୍କିଂ ପାଇଁ ସେମାନଙ୍କୁ ସ୍ୱତନ୍ତ୍ର ସୁବିଧା ଦିଆଯାଏ ।

ବିମାନ ବନ୍ଦରରେ ଭିନ୍ନକ୍ଷମମାନଙ୍କ ନିମିତ୍ତ ଇମିଗ୍ରେସନ୍ ଚେକ୍, ପାସପୋର୍ଟ ଚେକ୍ ଇତ୍ୟାଦି ପାଇଁ ସ୍ୱତନ୍ତ୍ର କାଉଣ୍ଟର ବ୍ୟବସ୍ଥା ରହିଛି। ଆମେ ସେସବୁ ସମାପ୍ତ କରି ତଳେ ପହଞ୍ଚିଲା ବେଳକୁ କନ୍‌ଭେୟର୍ ବେଲ୍ଟରେ ଆମ ବ୍ୟାଗେଜ୍ ଆସିଯାଇଥିଲା । ଆମ ମନରେ ଆଶଙ୍କା ଥିଲା, ଯଦି ଆମ ବ୍ୟାଗ୍ ଖୋଲିବାକୁ କହିବେ, ତେବେ ଏତେ କଷ୍ଟରେ ପିଲାଙ୍କ ପାଇଁ ନେଇଥିବା ଖାଇବା ଜିନିଷସବୁ ନିଶ୍ଚିତଭାବରେ ସେମାନେ ଫୋପାଡ଼ିଦେବେ । ମାତ୍ର ଏକ ଅଦୃଶ୍ୟ ଶକ୍ତି ଆମ ଆଶଙ୍କାକୁ ଦୂର କରିଦେଇଥିଲା ।

ବିମାନ ବନ୍ଦର ଲାଉଞ୍ଜ୍ ବାହାରେ ପୁଅ ଚନ୍ଦନ ଅପେକ୍ଷା କରିଥିଲା । ଆମକୁ ଦେଖୁଦେଖୁ ସେ ଏତେ ଖୁସି ହୋଇଯାଇଥିଲା ଯେ, ପ୍ରଥମେ କିଛି କହିପାରି ନଥିଲା। ପ୍ରମଦା ମଧ୍ୟ ଏତେଦିନ ପରେ ଚନ୍ଦନକୁ ଦେଖି କିଛିକ୍ଷଣ ପାଇଁ ଭାବବିହ୍ୱଳ ହୋଇଯାଇଥିଲେ।

ଆମେ ବାହାରକୁ ଆସି ପ୍ରଥମେ ଦାନ୍ତ ଘଷିଲୁ । ବୋହୂ ଘରୁ ପୁରୀ, ଆଳୁଭଜା, ମିଠାସବୁ ପ୍ୟାକ୍ କରି ପଠାଇଥିଲା। ଗାଡ଼ିରେ ବସୁବସୁ ମୁଁ ସେ ପ୍ୟାକେଟ୍ ସବୁ ଖୋଲିବା ଆରମ୍ଭ କରିଦେଲି । ସେତେବେଳକୁ ସେଠାକାର ସମୟ ସାଢ଼େନଅଟା ହୋଇଥିଲା ।

ଅପରାହ୍ନ ଦୁଇଟା ପୂର୍ବରୁ ଆମେ ଅଷ୍ଟ୍ରୋଭାରେ ପହଞ୍ଚିଗଲୁ । ଏକ ତିନିମହଲା ଘର ସାମନାରେ ଆମ ଗାଡ଼ି ଯାଇରହିଲା । ଗେଟ୍ ପାଖରେ ଗାଡ଼ି ପହଞ୍ଚିଲା ମାତ୍ରେ ଗେଟ୍‌ଟି ମନକୁ ମନ ଖୋଲିଗଲା । ଗାଡ଼ି ଭିତରେ ପଶିଲା ପରେ ପୁଣି ବନ୍ଦ ହୋଇଗଲା । ମୁଁ ତା'ର ରହସ୍ୟ ପ୍ରଥମେ ବୁଝି ପାରିନଥିଲି । କିନ୍ତୁ ପରେ ବୁଝିଲି, ଗେଟ୍‌ରେ ଥିବା ତାଲା ଗାଡ଼ି ଭିତରୁ ରିମୋଟ କଣ୍ଟ୍ରୋଲ୍ ମାଧମରେ ନିୟନ୍ତ୍ରଣ କରାଯାଉଥିବାରୁ ଗେଟ୍ ଆପେଆପେ ଖୋଲେ ଓ ବନ୍ଦ ହୁଏ ।

ସକାଳ ଜଳଖିଆ କାମ ସରିଯାଇଥିଲା । ମୁଁ ଘରେ ପହଞ୍ଚି ଗାଧୁଆପାଧୁଆ କଲି । ବାଥରୁମ୍‌ରୁ ବାହାରିଲା ବେଳକୁ ଡାଇନିଂ ଟେବୁଲ୍ ଉପରେ ଖାଇବା ବଢ଼ା ହୋଇଥିଲା । ସକାଳେ ହେଭି ବ୍ରେକଫାଷ୍ଟ ହୋଇଥିବାରୁ ମଧ୍ୟାହ୍ନଭୋଜନ ପାଇଁ ବିଶେଷ ଆଗ୍ରହ ନଥିଲା । କିନ୍ତୁ ଟେବୁଲ୍ ଉପରେ ଫ୍ରାଏଡ୍ ରାଇସ୍, ଆଳୁକୋବି କଷା, ଦହି ବାଇଗଣ, ଭେଣ୍ଡିଭଜା ଦେଖି ମୁଁ ଖାଇବାକୁ ବସିଗଲି ।

"ଆମ ରାଜ୍ୟରେ ମିଳୁଥିବା ପରିବା ବିଦେଶ ରାଷ୍ଟ୍ରରେ କୁଆଡୁ ଆସିଲା" ବୋଲି ପଚାରିଲାରୁ ବୋହୂ କହିଲା, "ଆପଣମାନେ ଆସିବେ ବୋଲି ଆମେ ଭିଏନା ଯାଇ ଏସବୁ ଆଣିଥିଲୁ । ଅଷ୍ଟ୍ରୋଭାରେ ଏ ପରିବା ସାତସପନ । ଆମକୁ ଆଳୁ, ପିଆଜ, ଫୁଲକୋବି ଖାଇଖାଇ ଅରୁଆ ଲାଗିଲାଣି । ଆମେ ଚିକେନ୍ ମଟନ୍ ଖାଉଛୁ ବୋଲି ଚଳିଯାଉଛି ।"

ଆମେ ଶୁକ୍ରବାର ଦିନ ଅଷ୍ଟ୍ରୋଭାରେ ପହଞ୍ଚିଥିଲୁ । ପରଦିନ ଚନ୍ଦନର ଅଫିସ୍ ବନ୍ଦ ଥିଲା । ସକାଳେ ଜଳପାନ ପର୍ବ ଶେଷ କରି ଅଷ୍ଟ୍ରୋଭାର ମାର୍କେଟ ସେଣ୍ଟରକୁ ଗଲୁ । କଥା ହେଲା, ଖରାବେଳେ ଘରକୁ ନଫେରି ସେଣ୍ଟର ଭିତରେ ସ୍ନାକ୍ସରେ ମଧ୍ୟାହ୍ନଭୋଜନ ସାରିଦେବା ।

ସେଦିନ ଶନିବାର ହୋଇଥିବାରୁ ଚିରାଚରିତ ଭାବରେ ମୋର କୌଣସି ସମସ୍ୟା ନଥିଲା । ମୁଁ ଶନିବାର ଦିନବେଳା କିଛି ରନ୍ଧା ଖାଦ୍ୟ ଖାଉ ନଥିବାରୁ ଫଳ ଓ ଜୁସ୍ ମୋ ପାଇଁ ଯଥେଷ୍ଟ ଥିଲା ।

ଚନ୍ଦନକୁ କଂପାନୀ ପକ୍ଷରୁ ମିଳିଥିଲା ଅକ୍ଟାଭିଆ ଗାଡ଼ି । ଅକ୍ଟାଭିଆ ଗାଡ଼ି, ସ୍କୋଡ଼ା କମ୍ପାନୀ ଦ୍ୱାରା ନିର୍ମିତ । ସେ କମ୍ପାନୀର ମୁଖ୍ୟ କାରଖାନା ଚେକ୍ ରିପବ୍ଲିକ୍‌ରେ ଅଛି । ସେଠାକାର କାନୁନ୍ ଅନୁଯାୟୀ ଛୋଟ ପିଲାଙ୍କ ପାଇଁ ସ୍ୱତନ୍ତ୍ର ବେବିସିଟ୍‌ର ବ୍ୟବସ୍ଥା ଥାଏ । ଗାଡ଼ିର ପଛ ସିଟରେ ସେ ବେବିସିଟ୍‌କୁ ଫିଟ୍ କରିଦିଆଯାଏ । ସେଥିରେ ପିଲାଙ୍କୁ ବସାଇ ବେଲ୍ଟ ଭିଡ଼ିଦିଆଯାଏ । ସୁରକ୍ଷା ଦୃଷ୍ଟିରୁ ଏପରି ବ୍ୟବସ୍ଥାକୁ ବାଧ୍ୟତାମୂଳକ କରାଯାଇଛି ।

ଅଷ୍ଟ୍ରୋଭା ସେଣ୍ଟ୍ରାଲ ମାର୍କେଟର ପରିକଳ୍ପନା ଅତ୍ୟନ୍ତ ମନୋମୁଗ୍ଧକର । ଚାରିଆଡ଼େ ବହୁତଳ ପ୍ରାସାଦ । ମଝିରେ ଖୋଲା ଜାଗା । ବେଶ୍ ପରିଷ୍କାର, ପରିଚ୍ଛନ୍ନ । ପର୍ଯ୍ୟଟକମାନଙ୍କ ବସିବା ପାଇଁ ଦୁଇ ଲାଇନ୍‌ର ସିମେଣ୍ଟ ବେଞ୍ଚ । ମଝିରେ ପାଣି ଫୁଆରା । ଫୁଆରାଗୁଡ଼ିକରୁ କୋଡ଼ିଏ ଫୁଟ୍ ଉଚ୍ଚରେ ପାଣି ବାହାରୁଥିଲା । ସାଙ୍ଗେସାଙ୍ଗେ ପାଣି କୁଆଡ଼େ ଚାଲିଯାଉଥିଲା ଜଣାପଡୁ ନଥିଲା । ସାନସାନ ପିଲାମାନେ ସେଠାରେ ଖେଳି ମଜା କରୁଥିଲେ । ପାଖରେ ପାରା ଭଳି କେତେ ଜାତିର ପକ୍ଷୀ ବୁଲୁଥିଲେ । ସେମାନଙ୍କୁ ଖାଇବାକୁ ଦେବା ପାଇଁ ପାଖରେ ଲୋଫ୍ ବିକ୍ରି ହେଉଥିଲା । ଅନେକ ପର୍ଯ୍ୟଟକ ସେସବୁ କିଣି ପକ୍ଷୀମାନଙ୍କୁ ଖୁଆଇ ଆନନ୍ଦ ଅନୁଭବ କରୁଥିଲେ ।

ଗାଡ଼ିରୁ ଓହ୍ଲାଇ ଆମେ ଗୋଟିଏ ଦୋକାନ ଭିତରେ ପଶିଲୁ । ଦୋକାନଟି ଆମର ବିଗ୍‌ବଜାର ଭଳି । ସବୁ କିସମର ଗ୍ରାହକଙ୍କ ମନକୁ ପସନ୍ଦ ହେଲାଭଳି ସାମଗ୍ରୀମାନ ସେଠାରେ ରହିଥିଲା ।

ଆମେ ସାଙ୍ଗରେ ନେଇଥିବା ଗରମପୋଷାକ ସେଠାକାର ଶୀତ ପାଇଁ ଯଥେଷ୍ଟ ନଥିଲା । ଚନ୍ଦନ ମୋ ପାଇଁ ଗୋଟିଏ ଜ୍ୟାକେଟ୍ କିଣିବାକୁ ପ୍ରସ୍ତାବ ଦେଲା । ମୁଁ ପ୍ରଥମେ ଅରାଜି ହେଉଥିଲି । ପରେ ପରିସ୍ଥିତିର ଗମ୍ଭୀରତାକୁ ଉପଲବ୍ଧି କରି ସମ୍ମତି ଜଣାଇଲି । ଯୋଉ ଜ୍ୟାକେଟ୍ ଆମ ରାଜ୍ୟରେ ଶୀତଦିନେ ପିନ୍ଧିହେବ, ସେପରି ଗୋଟିଏ ପତଳା ଜ୍ୟାକେଟ୍ ବାଛିଲି । ଦାମ୍ ଥିଲା ପଚିଶି ୟୁରୋ । ତା'ର ଅର୍ଥ ଭାରତୀୟ ମୁଦ୍ରାରେ ଦେଢ ହଜାର ଟଙ୍କାରୁ ଅଧିକ ।

ଦିନ ବଢିବା ସହିତ ଲୋକଙ୍କ ଭିଡ଼ ବଢୁଥିଲା । ସ୍ଥାନୀୟ ଲୋକଙ୍କ ସହିତ କିଛି ବିଦେଶୀ ପର୍ଯ୍ୟଟକ ଥିଲେ । ଆମେ ଫେରିବା ବାଟରେ ଗୋଟିଏ ଦୋକାନ ପାଖରେ ଅଟକିଲୁ । ବୋହୂ ସାଲୋନୀ କହିଲା, "ଏଇଟା ହେଉଛି ଗୋଟାଏ ପ୍ରେଜେଣ୍ଟେସନ୍ ସପ୍ । ଆପଣ ଯଦି କାହାକୁ କିଛି ପ୍ରେଜେଣ୍ଟ ଦେବାକୁ ଚାହୁଁଛନ୍ତି, ତେବେ ଏଠାରୁ ନେଇପାରନ୍ତି ।"

ସେ ଆଗେଆଗେ ଚାଲିଲା । ଆମେ ତା' ପଛରେ ଚାଲିଲୁ । ଦୋକାନଟି ବାହାରୁ ଯେଉଳି ଦେଖାଯାଉଥିଲା, ଭିତରେ ତା'ର ପରିବେଶ ଭିନ୍ନ ଥିଲା । ବହୁ ରକମର ସୌଖୀନ ପଦାର୍ଥରେ ଦୋକାନଟି ବେଶ୍ ଆକର୍ଷଣୀୟ ହୋଇଥିଲା । ଚନ୍ଦନ ଚାହୁଁଥିଲା, ଆମର ଯାହା ଦରକାର ସବୁ ଆଣିବାକୁ । ମୁଁ କିନ୍ତୁ ର୍ୟାକ୍‌ରେ ଝୁଲା ହୋଇଥିବା ମୂଲ୍ୟ ତାଲିକାକୁ ବାରମ୍ବାର ଚାହୁଁଥିଲି ।

ଚନ୍ଦନ ବୋଧହୁଏ ମୋ ମନକଥା ବୁଝିପାରିଲା । କହିଲା, "ବିଦେଶରେ ଭାରତୀୟ ମୁଦ୍ରାର ମୂଲ୍ୟ ସମ୍ପର୍କରେ ଭାବିଲେ ନା କିଛି ଖାଇହେବ ନା କିଛି କିଣିହେବ । ଏଠି ବାଇଗଣ କିଲୋ ତିନିଶହ ଟଙ୍କା ବୋଲି ଜାଣିଲେ ଭାରତରୁ ଆସିଥିବା କେହି କ'ଣ ବାଇଗଣ ଖାଇବାକୁ ଇଚ୍ଛା କରିବ ? ସେଥିପାଇଁ ମୂଲ୍ୟସୂଚୀକୁ ନଦେଖି କ'ଣ ପସନ୍ଦ ହେଉଛି ତାକୁ ଦେଖିବା କଥା ।" ମୁଁ ତା' କଥାର ଗୁରୁତ୍ୱ ଅନୁଭବ କରି କେତୋଟି ଜିନିଷ ପସନ୍ଦ କଲି । ସେ କାଉଣ୍ଟରକୁ ଯାଇ କ୍ରେଡିଟ୍ କାର୍ଡରେ ସେସବୁର ମୂଲ୍ୟ ଦେଇଦେଲା । ଆମେ ବଜାର ବୁଲି ଫେରିଲାବେଳକୁ ସ୍ଥାନୀୟ ସମୟ ଛଅଟା ବାଜିଯାଇଥିଲା ।

ତା' ପରଦିନ ସକାଳେ ଆମେ ଚେକ୍ ରିପବ୍ଲିକର ରାଜଧାନୀ ପ୍ରାଗ ସହରକୁ ବୁଲିଯିବାର ଥିଲା । ସକାଳେ ନିଦ ଭାଙ୍ଗିଲାବେଳକୁ ରାତି ତିନିଟା ହୋଇଥିଲା । ଏତେ ଶୀଘ୍ର କାହିଁକି ନିଦ ଭାଙ୍ଗିଲା ? ଏଇକଥା ଭାବିଲା ବେଳକୁ ମନେ ପଡିଗଲା ସ୍ଥାନୀୟ ସମୟ ଭାରତୀୟ ସମୟ ଠାରୁ ଚାରିଘଣ୍ଟା ପଛରେ । ସେତେବେଳକୁ ଭାରତୀୟ ସମୟ ଅନୁସାରେ ସାତଟା ବାଜିଥିଲା । ପିଲାମାନେ କେହି ଉଠିନଥିଲେ । ମୁଁ ପୁଣିଥରେ ଘୋଡ଼େଇ ହୋଇ ଶୋଇପଡ଼ିଲି ।

ନାତୁଣୀ ପାଟିରେ ନିଦ ଭାଙ୍ଗିଗଲା । ଉଠି ଦେଖିଲାବେଳକୁ ଅନ୍ୟମାନେ ପ୍ରସ୍ତୁତ ହୋଇସାରିଥିଲେ । ଆମର ସ୍ଥିର ହୋଇଥିଲା, ଆମେ ସକାଳେ ଜଳଖିଆ ଖାଇ ବାହାରିବୁ । ମଧ୍ୟାହ୍ନଭୋଜନ ପାଇଁ ସାଙ୍ଗରେ କିଛି ଖାଦ୍ୟ ନେଇଯିବୁ । ରାତିରେ ପ୍ରାଗ୍‌ରେ ଗୋଟିଏ ଗେଷ୍ଟ୍ ହାଉସରେ ରହିବୁ । ସେଠାରେ ଯାହା ଖାଦ୍ୟ ମିଳିବ ତାକୁ ଖାଇବୁ । କିନ୍ତୁ ପରେ ସ୍ଥିରକଲୁ ଘରେ ଜଳଖିଆ ତିଆରି କରି ସାଙ୍ଗରେ ନେବୁ । ବାଟରେ କୋଉଠି ସୁବିଧା ଦେଖି ଜଳଖିଆ ପର୍ବ ସାରିବୁ ।

ଅଷ୍ଟ୍ରୋଭାରୁ ପ୍ରାଗ୍ ସହରର ଦୂରତା ଚାରିଶହ କିଲୋମିଟରରୁ ଅଧିକ । ଆମ ହିସାବରେ ହାରାହାରି ଦଶଘଣ୍ଟାର ଯାତ୍ରା । ମୁଁ ଭାବିଲି, ଯଦି ଆମେ ସକାଳ ଆଠଟାବେଳେ ବାହାରିବୁ, ତେବେ ପ୍ରାଗ୍‌ରେ ପହଞ୍ଚିଲାବେଳକୁ ସନ୍ଧ୍ୟା ଛଅଟା ବାଜିଯାଇଥିବ । ମଧ୍ୟାହ୍ନଭୋଜନ କୋଉଠି, କେତେବେଳେ ଖାଇବୁ ?

ମୁଁ ଭାବିଥିଲି, ଏତେ ରାସ୍ତା ଯିବା ପାଇଁ ଚନ୍ଦନ ବୋଧହୁଏ ଜଣେ ଡ୍ରାଇଭରଙ୍କ ବ୍ୟବସ୍ଥା କରିଥିବ । ଚନ୍ଦନ ଯେତେବେଳେ ଗାଡି ଷ୍ଟାର୍ଟ କଲା, ମୁଁ ତାକୁ ପଚାରିଲି, "କିରେ, ତୁ

କ'ଣ ଗାଡ଼ି ଚଳାଇଲୁଣି ? ଡ୍ରାଇଭରର କୁଆଡ଼େ ଗଲା ?" ସେ ମତେ କହିଲା, "ଆମ ଦେଶ ଭଳି ଏଠାରେ ଡ୍ରାଇଭରର ବ୍ୟବସ୍ଥା ନାହିଁ। ସମସ୍ତେ ନିଜ ନିଜ ଗାଡି ଚଳାନ୍ତି। ବିଦେଶ ରାଷ୍ଟ୍ରରେ ତାହାହିଁ ସାଧାରଣ ବ୍ୟବସ୍ଥା।"

ଗାଡି ଷ୍ଟାର୍ଟ ହେବା ମାତ୍ରେ ଜଣେ କିଏ 'ଗୁଡ୍ ମର୍ଣ୍ଣିଂ, ୟୁ ୱାଣ୍ଟ ଟୁ ଗୋ ଟୁ ପ୍ରାଗ୍। ଅଲ୍ ରାଇଟ୍। ଆଇ ଉଇଲ୍ ଗାଇଡ୍ ୟୁ। ହାଭ୍ ଏ ନାଇସ୍ ଜର୍ଣ୍ଣିଂ' କହିଲା ଭଳି ଶୁଣାଗଲା। ମୁଁ ଚାରିଆଡକୁ ଅନାଇଲି। କେହି କୁଆଡେ ନଥିଲେ। ତେବେ ଆମକୁ 'ଗୁଡ୍ ମର୍ଣ୍ଣିଂ' କହିଲା କିଏ ? ଗାଡିଟି ଲେଫ୍ଟ ହ୍ୟାଣ୍ଡ ଡ୍ରାଇଭ୍ ଥିଲା। ଆଗରେ ଡାହାଣ ପଟ ସିଟ୍‌ରେ ମୁଁ ବସିଥିଲି। ଚନ୍ଦନ ବୋଧହୁଏ ମୋ ମନର ଭାବନାକୁ ବୁଝିପାରିଲା। ମତେ କହିଲା, "ଏ ଗାଡିରେ ଜିପିଏସ୍ (ଗ୍ଲୋବାଲ୍ ପୋଜିସନିଂ ସିଷ୍ଟମ) ଫିଟ୍ ହୋଇଛି। ସାଟେଲାଇଟ୍ ମାଧ୍ୟମରେ ଜିପିଏସ୍ ସବୁ ବିଷୟରେ ସୂଚନା ଦେବାର ବ୍ୟବସ୍ଥା ଅଛି।"

ଦୁଇଘଣ୍ଟା ଯାତ୍ରା ପରେ ରାସ୍ତାକଡ଼ରେ ଥିବା ଗୋଟିଏ ପେଟ୍ରୋଲ ପମ୍ପରେ ଚନ୍ଦନ ଗାଡ଼ି ରଖିଲା । ମୁଁ କିଛି ପଚାରିଲା ପୂର୍ବରୁ ସେ କହିଲା, "ଆମେ ଆଉ ଦୁଇଘଣ୍ଟାରେ ପ୍ରାଗ୍‌ରେ ପହଞ୍ଚିଯିବା । ଏଇଟା ଅଧାବାଟ ।"

ସେ ପେଟ୍ରୋଲପମ୍ପରୁ ଗାଡ଼ିରେ ତେଲ ଭରିଲା। ନିଜେ କାରର ସାମନା କାଚରେ ପାଣି ମାରି ପୋଛିଲା। ସବୁକାମ ଦଶ ମିନିଟରେ ସରିଗଲା। ସେ ପ୍ରସ୍ତାବ ଦେଲା, "ନିକଟରେ ଗୋଟିଏ ପାର୍କ ଅଛି, ସେଠାରେ ବସି ଆମେ ଖୁସିରେ ପ୍ରାତଃଭୋଜନ କରିପାରିବା ।" ମୁଁ ତା'କଥାରେ ରାଜି ହୋଇଗଲି । ତା'ପରେ ସେ ଗାଡ଼ି ଷ୍ଟାର୍ଟ କଲା ।

ପାଞ୍ଚ ମିନିଟ୍ ଭିତରେ ଆମେ ସେ ପାର୍କରେ ପହଞ୍ଚିଗଲୁ। ପାର୍କର ଗୋଟିଏ କୋଣରେ ଗୋଟିଏ ଛୋଟିଆ ରେଷ୍ଟୁରାଣ୍ଟ ଥିଲା । ରେଷ୍ଟୁରାଣ୍ଟ ଚାରିପାଖେ କେବଳ ପଟାରେ ତିଆରି ଟେବୁଲ୍ ବେଞ୍ଚ୍ ପଡ଼ିଥିଲା। ବିଦେଶୀ ପର୍ଯ୍ୟଟକମାନେ ଅର୍ଦ୍ଧନଗ୍ନ ବସ୍ତ୍ର ପିନ୍ଧି ସେଠାରେ ସକାଳର ଖରାକୁ ଉପଭୋଗ କରୁଥିଲେ ।

ଆମେ ଟେବୁଲର ଗୋଟିଏ ପାଖରେ ବସି ହଟ୍‌କେସ୍ ଫିଟାଇ ଜଳଖିଆ ପର୍ବ ଆରମ୍ଭ କଲୁ। ଆଳୁପରଟା ସାଙ୍ଗକୁ କୋବିକଷା। ମନେହେଲା ସତେ ଯେପରି ଆମ ଭୁବନେଶ୍ୱରର କୌଣସି ଏକ ସ୍ଥାନରେ ବସି ଏକାଠି ଖାଉଛୁ। ଜଳଖିଆ ଶେଷରେ ଅନ୍ୟମାନେ ଥର୍ମୋଫ୍ଲାସ୍କରୁ କଫି ଢ଼ାଳି ପିଇଲେ। ମୁଁ ଗୋଟିଏ ମାଙ୍ଗୋ ଜୁସ୍ ମଗାଇଲି। ଅଧଘଣ୍ଟା ଭିତରେ ଜଳଖିଆ ପର୍ବ ଶେଷ ହେଲା। ସେଠାକାର ବ୍ୟବସ୍ଥା ଅନୁଯାୟୀ ବାଥରୁମ୍ ଗେଟ୍ ପାଖରେ କଏନ୍ ପକାଇବାରୁ ରୁମ୍‌ଟି ଆପେଆପେ ଖୋଲିଗଲା। ଆମେ ଟଏଲେଟ୍ କାମ ସାରି ପୁଣି ଆଗେଇଲୁ।

ପ୍ରାଗ୍ ସହରର ପ୍ରବେଶପଥରେ ଆମେ ବାଉଳା ହୋଇ ଅନ୍ୟ ରାସ୍ତାରେ ଚାଲିଗଲା ବେଳେ ଗାଡ଼ିରେ ଲାଗିଥିବା ଜି.ପି.ଏସ୍ ଠିକ୍ ବାଟ ସୂଚାଇଦେଲା । ମୁଁ ଭାବୁଥିଲି ବିଜ୍ଞାନ

ଆସି କୋଉଠି ପହଞ୍ଚିଲାଣି । ଆଉ ଆମେ କୋଉଠି ଅଛୁ ! ଭୁବନେଶ୍ୱରରୁ ବାଙ୍କୀ ଗଲେ ଆମକୁ ବାଟ ପଚାରିବାକୁ ପଡୁଛି ।

ପ୍ରାଗର ପ୍ୟାଲେସ ବା ରାଜପ୍ରାସାଦ ଏକ ମୁଖ୍ୟ ଆକର୍ଷଣ । ପ୍ରାଗ୍‌କୁ ଯାଉଥିବା ପ୍ରାୟ ସବୁ ପର୍ଯ୍ୟଟକ ପ୍ୟାଲେସ ଦେଖିବାକୁ ପସନ୍ଦ କରିଥାଆନ୍ତି । ଟୟଟ୍ରେନ୍ ବା ଖେଳନା ରେଳଗାଡ଼ିରେ ପ୍ୟାଲେସ୍ ଦେଖିବାକୁ ଗଲେ ଘଣ୍ଟାଏ ଲାଗେ । ଟ୍ରେନ୍‌ଟି ଫେରିଆସି ଅଧଘଣ୍ଟାଏ ବିଶ୍ରାମ ପରେ ପର୍ଯ୍ୟଟକମାନଙ୍କୁ ନେଇ ପୁନର୍ବାର ଗନ୍ତବ୍ୟ ପଥରେ ଚାଲେ । ଟ୍ରେନରେ ଜଣପିଛା ୨୫୦କ୍ରାଉନ୍ ଅର୍ଥାତ୍ ଭାରତୀୟ ମୁଦ୍ରାରେ ପାଞ୍ଚଶହ ଟଙ୍କା ଦେବାକୁ ପଡ଼େ । ଟ୍ରେନର ନାମ ଟୟଟ୍ରେନ୍ ରଖାଯାଇଥିଲେ ବି ବାସ୍ତବରେ ତାହା ଏକ ବସ୍ ସଦୃଶ ଥିଲା ।

ଆମେ ବସିଥିବା ରେଳଗାଡ଼ିଟି ଉଠାଣିଆ ରାସ୍ତାରେ ଆସ୍ତେଆସ୍ତେ ଉପରକୁ ଉଠିଲାବେଳେ ପ୍ରାଗ୍ ସହରର ଦୃଶ୍ୟ ଅତ୍ୟନ୍ତ ମନୋରମ ଦେଖାଯାଉଥିଲା । ସହର ଭିତରେ ଥିବା ନଦୀରେ ଲଞ୍ଚରେ ପର୍ଯ୍ୟଟକମାନେ ନୌକାବିହାର କରୁଥିଲେ । ହଜାର ହଜାର ସଂଖ୍ୟାରେ ପୁରୁଣା କୋଠାର ଗମ୍ବୁଜସବୁ ଚିକ୍‌ଚିକ୍ କରୁଥିଲା । ରାସ୍ତାର ଦୁଇପାଖରେ ଥିବା ଫୁଲବଗିଚା କ୍ରମେ ଅସ୍ପଷ୍ଟ ହୋଇଯାଉଥିଲା ।

ଆମେ ପ୍ୟାଲେସରୁ ଫେରିବା ପରେ ଚନ୍ଦନ ପ୍ରସ୍ତାବ ଦେଲା ଓଲ୍ଡ ଟାଉନ୍ ସ୍କୋୟାର୍ ବେଞ୍ଚରେ ବସି ମଧ୍ୟାହ୍ନ ସୂର୍ଯ୍ୟକୁ ଉପଭୋଗ କରି କିଛି ସ୍ନାକ୍ସ ନେବାକୁ । ଆମେ ସବୁ ସେଥିରେ ରାଜି ହେଲୁ । ପାଖରେ ଥିବା ମ୍ୟାକ୍‌ଡୋନାଲ୍ଡ ରେଷ୍ଟୁରାଣ୍ଟରୁ ସ୍ନାକ୍ସ ସଂଗ୍ରହ କରାଗଲା । ମୁଁ ଗୋଟିଏ ପଟାଟୋ ଚିପ୍ସ ପ୍ୟାକେଟ୍ ଓ ଅରେଞ୍ଜ୍ ଜୁସ୍ ଧରିଲି । ଅନ୍ୟମାନେ ସାଣ୍ଡୱିଚ୍ ନେଲେ ।

ଆମେ ଖାଇସାରିଲା ବେଳକୁ ଗୋଟିଏ ସ୍ଥାନରେ ଜନଗହଳି ଲାଗିଥିଲା । କାରଣ ପଚାରିବାରୁ ଜଣାଗଲା ଯେ, ଓଲ୍ଡଟାଉନ୍ ସ୍କୋୟାରରେ ଥିବା ଓଲ୍ଡଟାଉନହଲ୍ ଟାୱାରରେ ଲାଗିଥିବା ବିରାଟ ଘଣ୍ଟାରେ ଦିନ ଗୋଟାଏ ବେଳେ କେତେକ ଦୃଶ୍ୟ ଦେଖିବାକୁ ମିଳିବ । ନାନା ଦେଶରୁ ଆସିଥିବା ପର୍ଯ୍ୟଟକମାନେ ସେଥିପାଇଁ ସେଠାରେ ଜମିଥିଲେ । ସେ ଘଣ୍ଟାଟିକୁ 'ଆଷ୍ଟ୍ରୋନମି କ୍ଲକ୍' ବୋଲି କୁହାଯାଏ । ସେଥିରେ ତିଥିନକ୍ଷତ୍ର ସମ୍ପର୍କରେ ନାନାରକମର ସୂଚନା ଦିଆଯାଇଥିଲା ।

ସ୍ଥାନୀୟ ସମୟ ଠିକ୍ ଗୋଟାଏ ବେଳେ, କିଛି ଶବ୍ଦ ହେଲା । ସାଙ୍ଗେସାଙ୍ଗେ ଘଣ୍ଟା ଭିତରୁ ମଣିଷ ଆକୃତିର କେତୋଟି ମୂର୍ତ୍ତି ବାହାରିଆସିଲେ । ସେମାନଙ୍କ ମଧ୍ୟରୁ ଜଣକ ହାତରେ ଗୋଟିଏ ଖଣ୍ଡା ଥିଲା । ଆଉ ଦୁଇଟି ମୂର୍ତ୍ତି ଅନ୍ୟକିଛି ପଦାର୍ଥ ଧରିଥିଲେ । ଖଣ୍ଡା ଧରିଥିବା ମୂର୍ତ୍ତିଟି ଗୋଟିଏ ସ୍ଥାନକୁ ଛୁଇଁଦେବା ମାତ୍ରେ ସେଥିରୁ କେତେକ ଶବ୍ଦ ବାହାରିଥିଲା । କିନ୍ତୁ ପ୍ରବଳ ଜନଗହଳି ମଧ୍ୟରେ ଆମେ ସେ ଶବ୍ଦ ସ୍ପଷ୍ଟ ଭାବେ ଶୁଣିପାରିନଥିଲୁ । ସେ ଘଣ୍ଟାରେ ଯେଉଁ ଘଣ୍ଟା, ମିନିଟ୍ ଓ ସେକେଣ୍ଡ କଣ୍ଟା ଲାଗିଥିଲା ସେସବୁ ସୂର୍ଯ୍ୟ, ଚନ୍ଦ୍ର ଓ

ଅନ୍ୟାନ୍ୟ ଗ୍ରହର ସ୍ଥିତିକୁ ସୂଚାଉଥିଲା । ଏହି ଘଣ୍ଟାଟି ବହୁ ପୁରୁଣା ହେଲେ ବି ଅକ୍ଷତ ଅବସ୍ଥାରେ ଥିଲା ।

ସେଠାରୁ ଫେରି ଆମେ କାରରେ ବସି ଚାର୍ଲସ୍ ବ୍ରିଜ୍ ଦେଖିବାକୁ ବାହାରିଲୁ । ଏହି ବ୍ରିଜ୍‌ଟି ୧୪ଶହ ମସିହାରେ ତିଆରି ହୋଇଥିଲା । ମଝିରେ ମଝିରେ ବନ୍ୟା ଦ୍ୱାରା ସାମାନ୍ୟ କ୍ଷତିଗ୍ରସ୍ତ ହୋଇଥିଲା । ତାସତ୍ତ୍ୱେ ଦୀର୍ଘ ଛଅଶହ ବର୍ଷ ଧରି ଏହି ବ୍ରିଜ୍ ଉପରେ ହଜାର ହଜାର ଯାନବାହନ ଚଳାଚଳ କରୁଥିଲା ।

ଚାର୍ଲସ ବ୍ରିଜ୍ ଉପରେ ଆମେ ବୁଲାବୁଲି କରୁଥିଲାବେଳେ ପଶ୍ଚିମ ଆକାଶରେ ସୂର୍ଯ୍ୟକିରଣର ପ୍ରଖରତା କମି ଆସୁଥିଲା । ଈଷତ୍ ଲୋହିତରଙ୍ଗର କିରଣ ନଦୀଜଳରେ ପ୍ରତିଫଳିତ ହୋଇ ଏକ ମନୋରମ ଦୃଶ୍ୟ ସୃଷ୍ଟି କରୁଥିଲା । ଆମଭଳି ଅନେକ ପର୍ଯ୍ୟଟକ ମନଭରି ସେ ଦୃଶ୍ୟ ଉପଭୋଗ କରୁଥିଲେ । ଆମେ ସେଦିନ ପ୍ରାଗ୍‌ର ନ୍ୟାସନାଲ ମ୍ୟୁଜିୟମ, ଚର୍ଚ୍ଚ ଓ ଆଉ କେତେକ ସ୍ଥାନ ବୁଲି ଦେଖିଥିଲୁ ।

ସେଦିନ ପ୍ରାଗ୍ ସହରରେ ରାତ୍ରିଯାପନ କରିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ସେହି ଅନୁସାରେ ଆଗରୁ ଗୋଟିଏ ଗେଷ୍ଟ ହାଉସରେ ରହିବା ଓ ଖାଇବା ପାଇଁ ବନ୍ଦୋବସ୍ତ କରାଯାଇଥିଲା ।

ଚାର୍ଲସ୍ ବ୍ରିଜ୍ ଉପରେ ବୁଲିଲାବେଳେ ଚନ୍ଦନ କହିଲା, "ଆମର ପ୍ରାଗ୍ ସହର ତ ବୁଲା ହୋଇଗଲା । ଅଷ୍ଟ୍ରୋଭା ଫେରିଗଲେ କେମିତି ହୁଅନ୍ତା ?" ମୁଁ ପ୍ରଥମେ କିଛି ବୁଝିପାରିଲି ନାହିଁ । ଘଣ୍ଟା ଦେଖିଲାବେଳକୁ ଛଅଟା ବାଜି ସାରିଥିଲା । ମୁଁ ପଚାରିଲି, "ତୁ ସକାଳେ ଚାରିଶହ କିଲୋମିଟର ରାସ୍ତା ଡ୍ରାଇଭିଂ କରିଆସିଛୁ । ଫେରିବାକୁ ଆହୁରି ଚାରିଶହ କିଲୋମିଟର । ଡ୍ରାଇଭର ନାହିଁ । ଛଅଟା ବାଜିଲାଣି । ତୁ ଫେରିବା କଥା କେମିତି କହୁଛୁ ?"

ଚନ୍ଦନ ସ୍ମିତହାସ୍ୟ ଦେଇ କହିଲା, "ଡ୍ରାଇଭିଂ କଥା ଚିନ୍ତା କରନାହିଁ । ଏଇଟା ଆମର ସବୁଦିନିଆ ରାସ୍ତା । କମ୍ପାନୀ କାମରେ ମୁଁ ଅଧିକାଂଶ ଦିନ ଅଷ୍ଟ୍ରୋଭାରୁ ସକାଳେ ପ୍ରାଗ୍ ଆସି ସନ୍ଧ୍ୟାରେ ପୁଣି ଫେରିଯାଏ । ମୋ କଥା ଚନ୍ତା ନକରି ଫେରିଗଲେ ତମର କିଛି ଅସୁବିଧା ହେବକି, ସେକଥା କୁହ ? ରାତିରେ ଏଠାରେ ରହିଲେ ସକାଳୁ ଉଠି ନିତ୍ୟକର୍ମ ସାରି ବାହାରିଲାବେଳକୁ ଅନ୍ତତଃ ନଅଟା ହୋଇଯିବ । ପ୍ରାୟ ଗୋଟାଏ ବେଳେ ଅଷ୍ଟ୍ରୋଭାରେ ପହଞ୍ଚିବା । ବର୍ତ୍ତମାନ ଚାଲିଗଲେ ରାତି ଦଶଟା ଭିତରେ ପହଞ୍ଚିଯାଇ ଆରାମରେ ଘରେ ବିଶ୍ରାମ ନେଇହେବ ।"

ଚନ୍ଦନ କଥାରେ ଯଥାର୍ଥ ଯୁକ୍ତି ରହିଥିଲା । ତେବେ ସେ ନିଜେ ଗାଡ଼ି ଚଲାଇ ଗଲେ କାଳେ ଥକିଯିବ, ସେଥିପାଇଁ ସନ୍ଧ୍ୟାରେ ଫେରିବା ପାଇଁ ମୁଁ ନାହିଁ କରୁଥିଲି ।

ପ୍ରାଗ୍ ସହର ଛାଡ଼ିଲାବେଳକୁ ସନ୍ଧ୍ୟା ହୋଇନଥିଲା । ୟୁରୋପୀୟ ରାଷ୍ଟ୍ରମାନଙ୍କରେ ସାଧାରଣତଃ ବିଳମ୍ବରେ ସନ୍ଧ୍ୟା ହୁଏ । ରାତି ବଡ଼ ହୋଇ ଦିନ ଛୋଟ ହୋଇଥାଏ । ଗାଡ଼ିରେ ଆଗପଟ ବାଁ ପାଖ ସିଟ୍‌ରେ ବସି ଚନ୍ଦନ ଗାଡ଼ି ଚଳାଉ ଥିଲା । ସେ ଦେଶମାନଙ୍କରେ ଗାଡ଼ିଗୁଡ଼ିକ ମୁଖ୍ୟତଃ 'ଲେଫ୍‌ଟ୍‌ହ୍ୟାଣ୍ଡ ଡ୍ରାଇଭ' । ବାଁ ପାଖରେ ଷ୍ଟିଅରିଂ । ପଛରେ ଥିବା ଗାଡ଼ିସବୁ ବାଁ ପଟରେ ଓଭରଟେକ୍ କରନ୍ତି । ଆମଦେଶରେ ଗାଡ଼ି ରାଇଟ୍‌ହ୍ୟାଣ୍ଡ୍ ଡ୍ରାଇଭ୍ ହୋଇଥିବାରୁ ପ୍ରଥମେ ପ୍ରଥମେ ଗାଡ଼ିରେ ବସିବାକୁ କେମିତି ଟିକିଏ ଅଡୁଆ ଲାଗୁଥିଲା । ମାତ୍ର ପରେ ଠିକ୍ ହୋଇଗଲା ।

ରାସ୍ତାରେ ଗାଡ଼ି ଚାଲୁଥିବା ବେଳେ ଚନ୍ଦନ କହିଲା, "ବାବା ଦେଖିଲ, ଗାଡ଼ି କେତେ ସ୍ପିଡ୍‌ରେ ଯାଉଛି ?" ମୁଁ ମାଇଲ୍ ମିଟରକୁ ଦେଖିଲାବେଳକୁ ମିଟରକଣ୍ଟା ୧୪୦ କିଲୋମିଟର ଉପରେ ଥିଲା । ମୁଁ ନିଜକୁ ନିଜେ ବିଶ୍ୱାସ କରିପାରିଲିନାହିଁ । କିନ୍ତୁ ଯାହା ନିଜ ଆଖିରେ ଦେଖିବା, ତାକୁ ତ ବିଶ୍ୱାସ କରିବାକୁ ହେବ ।

ରାସ୍ତାର ଦୁଇକଡ଼ରେ ଥିବା ଆପେଲ୍ ଗଛର ପାଚିଲା ଆପେଲ୍ ସବୁ ଆଲୁଅରେ ଚକ୍‌ଚକ୍ ଦେଖାଯାଉଥିଲା । ମନ ହେଉଥିଲା ଗାଡ଼ିରୁ ଓହ୍ଲାଇ ମନଇଚ୍ଛା ଆପେଲ୍ ତୋଳିଆଣିବାକୁ । ମନର ଲୋଭ ସମ୍ବରଣ କରିନପାରି ଚନ୍ଦନକୁ ମନର କଥା ଜଣାଇଲି । ସେ ଯାହା ସୂଚନା ଦେଲା, ସେଥିରେ ମୋ ମନବୋଧ ହୋଇଗଲା । ସେ କହିଲା, "ଆପେଲ୍ ତୋଳିବା ତ ଦୂରର କଥା, ରାସ୍ତା କଡ଼ରେ ଗାଡ଼ି ରଖିବା ଆଇନ୍‌ବିରୁଦ୍ଧ କାମ । ଆମକୁ ଡ୍ରାଇଭିଂ ଲାଇସେନ୍ସ ଦେବା ସମୟରେ ଏ ଦିଗପ୍ରତି ସାବଧାନ ରହିବା ପାଇଁ ସଚେତନ କରିଦିଆଯାଇଥିଲା ।

ସତକୁ ସତ ରାତି ଦଶଟା ବାଜିବା ପୂର୍ବରୁ ଆମେ ଯାଇ ଅଷ୍ଟ୍ରୋଭା ସହର ଉପକଣ୍ଠରେ ପହଞ୍ଚିଗଲୁ । ଅଷ୍ଟ୍ରୋଭା ସହର ଭିତରେ ମିତ୍ତଲ କଂପାନୀର ଗୋଟିଏ ଗେଷ୍ଟ ହାଉସ୍ ଥିଲା । ସେଠାରେ 'ନାନା' ବୋଲି ଜଣେ ବାଂଲାଦେଶୀ ରୋଷେୟା ଥିଲେ । ଆମ ଅଜାଣତରେ ଚନ୍ଦନ କେତେବେଳେ ନାନାକୁ ଆମପାଇଁ ରାତ୍ରିଭୋଜନ ପ୍ରସ୍ତୁତ କରିବା ପାଇଁ କହିଥିଲା ଆମେ ଜାଣିନଥିଲୁ ।

ଗାଡ଼ି ମେନ୍‌ରୋଡ୍ ଛାଡି ଆଉ ଗୋଟିଏ ରାସ୍ତାରେ ଚାଲିଲାବେଳେ ଚନ୍ଦନ ତା'ର ଅଭିପ୍ରାୟ ଜଣାଇଥିଲା । ଅଳ୍ପ ସମୟ ମଧ୍ୟରେ ଆମେ ଗେଷ୍ଟ ହାଉସରୁ ଆଳୁ ପରଟା, ଡାଲଫ୍ରାଏ, କୋବିମଟର କଷା ଧରି ଘରକୁ ଫେରିଲୁ ।

ଘରେ ପହଞ୍ଚି ମୁଁ ଦିନଯାକର ଅନୁଭୂତିକୁ ଅନୁଧ୍ୟାନ କରୁଥିଲା ବେଳେ ସେସବୁ ମୋତେ ସ୍ୱପ୍ନଭଳି ଲାଗୁଥିଲା । ଗୋଟିଏ ଦିନରେ ଆଠଶହ କିଲୋମିଟର ଯାତ୍ରା ଆମ ପାଇଁ ଏକପ୍ରକାର ଅସମ୍ଭବ ବ୍ୟାପାର ଥିଲା । ଆମେ ସେ ପଥ ଅତିକ୍ରମ କରିଥିଲୁ । ମାତ୍ର ଟିକିଏ ହେଲେ କ୍ଲାନ୍ତି ଅନୁଭବ କରିନଥିଲୁ ।

ମୋର ଅଷ୍ଟ୍ରୋଭାରୁ ଡୁସେଲଡର୍ଫ ଯିବାର ଥିଲା । ଡୁସେଲଡର୍ଫରେ ରାଜେନ୍ଦ୍ର ଭାଇ (ବିଶିଷ୍ଟ ଇଞ୍ଜିନିୟର ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ) ସପରିବାର ରହୁଥିଲେ । ଆମେ ଭୁବନେଶ୍ୱର ଛାଡିବା ପୂର୍ବରୁ ସେ ଆମକୁ ଡୁସେଲଡର୍ଫ ଯିବାକୁ ଅନୁରୋଧ କରିଥିଲେ ।

ଅଷ୍ଟ୍ରୋଭାରୁ ଡୁସେଲଡର୍ଫ ଯିବାକୁ ହେଲେ ପ୍ରଥମେ ଅଷ୍ଟ୍ରୋଭାରୁ ପ୍ରାଗ୍ ଯାଇ ସେଠାରୁ ବିମାନ ବଦଳାଇବାକୁ ପଡ଼ିଥାଏ । ସେଥିପାଇଁ ଦୁଇଟି ପୃଥକ୍ ଟିକେଟ୍‌ର ଆବଶ୍ୟକତା ଥିଲାବେଳେ ଲଗେଜ୍ ଏକାଥରେ ବୁକିଂ ହୋଇଥିଲା ।

ମୁଁ ଅଷ୍ଟ୍ରୋଭାରେ ଘର ଛାଡ଼ିବା ପୂର୍ବରୁ ରାଜେନ୍ଦ୍ରଭାଇ ଫୋନ୍ କରି ବିମାନ ସମୟ ବିଷୟରେ ବୁଝି ଡୁସେଲ୍‌ଡର୍ଫ ବିମାନରେ ମତେ ନେବା ପାଇଁ ଅପେକ୍ଷା କରିଥିବେ ବୋଲି ଆଶ୍ୱାସନା ଦେଇଥିଲେ । ସେଥିପାଇଁ ମୁଁ ନିଶ୍ଚିନ୍ତ ଥିଲି । ଚନ୍ଦନ ମତେ ନେଇ ଅଷ୍ଟ୍ରୋଭା ବିମାନ ବନ୍ଦରରେ ଛାଡି ଦେଇଆସିଲା । ସେଠାରୁ ମୁଁ ପ୍ରାଗ୍ ଯାଇ ଡୁସେଲଡର୍ଫ ବିମାନ ଧରିଥିଲି ।

ଡୁସଲଡର୍ଫ ବିମାନ ବନ୍ଦରରେ ଲମ୍ବାଲାଇନ୍ ଲାଗିଥିଲା । ଯେଉଁମାନେ ଲାଇନ୍‌ରେ ଛିଡ଼ା ହୋଇଥିଲେ ସେମାନଙ୍କ ଭିତରେ ବୋଧହୁଏ ମୁଁ ଏକୁଟିଆ ଭାରତୀୟ ଯାତ୍ରୀ ଥିଲି । ସେଥିପାଇଁ ସେଠାରେ ଥିବା ଅଫିସର ଜଣକ ମୋ ପାସ୍‌ପୋର୍ଟ ଓ ଭିସାକୁ ଟିକିନିଖି କରି ଦେଖିବାକୁ ଲାଗିଲେ । ମୁଁ କାହିଁକି ଡୁସେଲ୍‌ଡର୍ଫ ଆସିଛି, କେଉଁଠିକି ଯିବି, କାହାପାଖରେ ରହିବି, ମୋ ଖର୍ଚ୍ଚ କିଏ ବହନ କରିବେ, ତାଙ୍କର ମୋ ପାଖରେ କ'ଣ ସ୍ୱାର୍ଥ ନିହିତ ଅଛି ଇତ୍ୟାଦି ବହୁ ପ୍ରଶ୍ନ ପଚାରି ମତେ ଏକପ୍ରକାର ବିବ୍ରତ କରିପକାଇଲେ । ମୁଁ ଧୀରସ୍ଥିର ଭାବରେ ସେସବୁ ପ୍ରଶ୍ନର ଉତ୍ତର ଦେଇଥିଲି । ଏଇ ପ୍ରକ୍ରିୟାରେ ପ୍ରାୟ ଦଶମିନିଟ୍ ସମୟ ଅତିବାହିତ ହୋଇଯାଇଥିଲା ।

ଡୁସେଲ୍‌ଡର୍ଫ ବିମାନବନ୍ଦରଟି ଜର୍ମାନୀର ଏକ ପ୍ରମୁଖ ଆନ୍ତର୍ଜାତିକ ବିମାନ ବନ୍ଦର ଭାବରେ ଖ୍ୟାତ । ବିମାନ ବନ୍ଦରର ଆକାର ଓ କୋଳାହଳ ଦେଖି ମୁଁ ଏକପ୍ରକାର ହଜିଯାଇଥିଲି । ଲଗେଜ୍ କୋଉଠୁ ସଂଗ୍ରହ କରିବି ପ୍ରଥମେ ସେ ବିଷୟରେ ବୁଝିପାରିଲି ନାହିଁ । ପଚାରି ପଚାରି ଲଗେଜ୍ ସଂଗ୍ରହ ସ୍ଥାନରେ ପହଞ୍ଚିଲାବେଳକୁ କନଭେୟର୍ ବେଲ୍ଟ ବନ୍ଦ ହୋଇଯାଇଥିଲା । ମୋ ଲଗେଜ୍‌ଟି ସେତେବେଳକୁ ଅଫିସରେ ଜମା ହୋଇସାରିଥିଲା ।

ରାଜେନ୍ଦ୍ରଭାଇ ଲଗେଜ୍ ସଂଗ୍ରହସ୍ଥାନରେ ମତେ ନପାଇ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲେ । ମୋ ବିଷୟ ଜାଣିବା ପାଇଁ ଅଷ୍ଟ୍ରୋଭାକୁ ଫୋନ କରି ବିମାନରେ ମୁଁ ଆସିଥିବା କଥା ଜାଣିଲା ପରେ ତାଙ୍କ ବ୍ୟସ୍ତତା ବଢ଼ିଯାଇଥିଲା । ତାଙ୍କର ସନ୍ଦେହ ହୋଇଥିଲା ବୋଧହୁଏ ଅସାବଧାନତାବଶତଃ ମୁଁ ପ୍ରାଗ୍‌ରୁ ଡୁସେଲ୍‌ଡର୍ଫ ବିମାନରେ ଚଢ଼ିପାରି ନଥିବି । ତାଙ୍କର ବ୍ୟସ୍ତତା ଭିତରେ ମୁଁ ଯେତେବେଳେ ଯାଇ ତାଙ୍କୁ ପ୍ରଣାମ କଲି, ତାଙ୍କ ପାଟିରୁ ବାହାରିପଡିଲା, "ଥ୍ୟାଙ୍କ୍ ଗଡ୍, ୟୁ ହାଭ୍ ଆରାଇଭ୍‌ଡ୍ ।"

ରାଜେନ୍ଦ୍ରଭାଇଙ୍କର ବି.ଏମ୍.ଡବ୍ଲ୍ୟୁ ଗାଡ଼ି । ଭାରତୀୟ ମୁଦ୍ରାରେ ପ୍ରାୟ ୪୦ଲକ୍ଷ ଟଙ୍କା ହେବ । ଗାଡ଼ିରେ ବସିଲେ ବିମାନରେ ବସିଲାଭଳି ମନେହେଲା । କୁଆଡ଼େ ଟିକିଏ ଖୁଡ଼୍‌ଖାଡ୍ ନଥିଲା । ଆମେ ବସିବା ମାତ୍ରେ ଗାଡ଼ିର ସ୍ପିଡ୍ ବଢ଼ି ଶହେ କୋଡ଼ିଏ କିଲୋମିଟର ଛୁଇଁଲା । ଆଗରୁ ଚନ୍ଦନ ଗାଡ଼ିରେ ବସିଥିବାରୁ ହାଇସ୍ପିଡ୍ ଡ୍ରାଇଭ ମୋ ମନରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରିନଥିଲା ।

ଅଧଘଣ୍ଟା ଡ୍ରାଇଭ୍ ପରେ ଗୋଟିଏ ଘର ସାମନାରେ ବି.ଏମ୍.ଡବ୍ଲ୍ୟୁ କାର୍ ଛିଡ଼ାହେଲା । ମୁଁ ଗାଡ଼ିରୁ ଓହ୍ଲାଇବାକୁ ଯାଉଥିଲି, ରାଜେନ୍ଦ୍ରଭାଇ କହିଲେ, "ଅପେକ୍ଷା କର ।" ଦେଖୁଦେଖୁ ଗ୍ୟାରେଜ୍‌ର ସାମ୍‌ନା ଦରଜାଟି ଆପେଆପେ ଖୋଲିଯାଇ ସମାନ୍ତରାଳ ଭାବେ ଛାତରେ ଲାଗିଗଲା ଓ ଗାଡ଼ିଟି ତା ଭିତରକୁ ପଶିଗଲା ।

ଆମେ ଗ୍ୟାରେଜ୍‌ରୁ ବାହାରିବା ମାତ୍ରେ ରାସ୍ତାର ଆଲୁଅ ଆପେଆପେ ଜଳିଉଠିଲା ଏବଂ ଆମେ ଯିବା ପରେ ପୁଣି ଲିଭିଗଲା । ମୁଁ କିଛି ବୁଝିପାରିଲି ନାହିଁ । କିଛି ପଚାରିବା ପୂର୍ବରୁ ରାଜେନ୍ଦ୍ରଭାଇ କହିଲେ, "ଏସବୁ ଦେଶରେ କାମ କରିବାକୁ ଲୋକ ମିଳନ୍ତି ନାହିଁ । ସେଥିପାଇଁ ଇଲେକ୍‌ଟ୍ରିକ୍ ଠାରୁ ପାଣି ପର୍ଯ୍ୟନ୍ତ ସବୁକଥାରେ ପ୍ରୋଗ୍ରାମିଂ କରାଯାଇଛି । ସବୁକଥା ମନକୁ ମନ ହୁଏ ।

କାନ୍ଥରେ ଥିବା ଗୋଟିଏ ସ୍ଥାନରେ ରାଜେନ୍ଦ୍ରଭାଇ ହାତମାରିବାରୁ ଘର ଭିତର ଲାଇଟ୍ ଜଳିଉଠିଲା । ଭିତରୁ ଜଣେ ମହିଳା କବାଟ ଖୋଲିଲେ । ଘର ଭିତରେ ମୁଁ ପାଦ ଦେଇଛି କି ନାହିଁ, ରାଜେନ୍ଦ୍ରଭାଇ କହିଲେ, "ଇଏ ଇତି, ତମ ଭାଉଜ ।" ମତେ ଚିହ୍ନା କରିବା ପୂର୍ବରୁ ଇତିଭାଉଜ କହିଲେ, "ବସନ୍ତବାବୁଙ୍କୁ ଚିହ୍ନା କରିବା ଦରକାର ନାହିଁ । ମୁଁ ତାଙ୍କ ବିଷୟରେ ପୂର୍ବରୁ ସବୁ ଶୁଣିଛି ।"

ଇତିଭାଉଜ ଉଚ୍ଚଶିକ୍ଷିତା ଓ ଆଧୁନିକା । ଜର୍ମାନରେ ଚାରି ଦଶନ୍ଧିରୁ ଅଧିକ କାଳ ରହିଥିଲେ ମଧ୍ୟ ତାଙ୍କ ପାଖରେ ଓଡ଼ିଆତ୍ୱ ଭରିରହିଛି । ସେ କଟକ ସହରର ପ୍ରତିଷ୍ଠିତ ଓ ସମ୍ଭ୍ରାନ୍ତ ପରିବାର ଚନ୍ଦ୍ର କିଶୋର ଦାସ(ବେଙ୍ଗବାବୁ)ଙ୍କ ଝିଅ ଓ ବିଶିଷ୍ଟ ଜମିଦାର ରାଜକିଶୋର ଦାସଙ୍କ ନାତୁଣୀ ।

ମୋର ଡୁସେଲଡର୍ଫରେ ଚାରିଦିନ ରହିବାର ସ୍ଥିର ହୋଇଥିଲା । ସେଥିପାଇଁ ଦିନେ ସେ ସହରର ଆଖପାଖରେ ଥିବା ଦର୍ଶନୀୟ ସ୍ଥାନ ଦେଖିବା ପାଇଁ ରାଜେନ୍ଦ୍ର ଭାଇଙ୍କୁ କହିଲି । ସେ କହିଲେ, "ପାଶ୍ଚାତ୍ୟରେ ପଚାଶ କିଲୋମିଟର ଦୂରତାକୁ ପାଖ ବୋଲି ଧରାଯାଏ । ହଉ ଠିକ୍ ଅଛି । ଆମ ଘର ପାଖରୁ ଶହେ କିଲୋମିଟର ଭିତରେ ଯାହାସବୁ ଅଛି, ତମକୁ ଆଜି ମୁଁ ସେସବୁ ବୁଲେଇ ଦେଖେଇଦେବି ।"

ରାଜେନ୍ଦ୍ର ଭାଇ ଗ୍ୟାରେଜରୁ ଗାଡି କାଢ଼ିଲେ । ଆମେ ପ୍ରଥମେ ଏସେନ୍‌ରେ ଥିବା ଇସ୍ପାତ ସମ୍ରାଟ ଫ୍ରେଡେରିକ୍ ଆଲ୍‌ଫ୍ରେଡ କ୍ରୁପଙ୍କ ସାମ୍ରାଜ୍ୟ(ବାସଭବନ) ଦେଖିବାକୁ ଗଲୁ । ମୁଁ ଭାବୁଥିଲି, ଜଣେ ଲୋକର ଘର ଦେଖିବାକୁ କ'ଣ ଯିବା ? ସେଠି କ'ଣ ଥିବ ? ଅଯଥାରେ ସମୟ ନଷ୍ଟ ହେବ।

ମାତ୍ର ସେଠାରେ ପହଞ୍ଚିଲା ପରେ ମୋର ଭାବନା ବଦଳି ଯାଇଥିଲା । କ୍ରୁପ ପରିବାରର ବାସଭବନଟି 'ଭିଲା ହୁଗେଲ' ନାମରେ ପରିଚିତ । ୧୮୭୦ ମସିହା ଅପ୍ରେଲ ମାସରେ ଏହି ସୌଧର ଶିଳାନ୍ୟାସ କରାଯାଇଥିଲା । ୧୮୭୩ ମସିହା ଜାନୁଆରୀ ମାସରେ କ୍ରୁପ ପରିବାର ସେଠାରେ ଆସି ରହିଥିଲେ । ଏଥିରେ ୨୩୯ଟି କୋଠରୀ ଥିଲା ।

ଘଟଣାକ୍ରମେ କ୍ରୁପ ପରିବାରର ପତନ ପରେ ଗୋଟିଏ 'ଫାଉଣ୍ଡେସନ' ଦ୍ୱାରା ସେ ପ୍ରାସାଦର ରକ୍ଷଣାବେକ୍ଷଣ କରାଯାଉଛି । ସମ୍ପୂର୍ଣ୍ଣ ଭାବରେ କାଠରେ ତିଆରି ସେ ସୌଧଟି ଉପଯୁକ୍ତ ଯତ୍ନ ଯୋଗୁଁ ଅକ୍ଷତ ଅବସ୍ଥାରେ ରହିଛି ।

'ଭିଲା ହୁଗେଲ' ହତା ମଧ୍ୟରେ ପ୍ରାୟ ୩୦ ହେକ୍ଟର ଜମି ଉପରେ ଲୋଭନୀୟ ବଗିଚା ଦର୍ଶକମାନଙ୍କୁ ଆକୃଷ୍ଟ କରିଥାଏ । ଏହି ହତା ଭିତରେ ବିରାଟ ହ୍ରଦ ଖୋଳାଯାଇ ଦର୍ଶକମାନଙ୍କ ପାଇଁ ନୌବିହାରର ସୁବିଧା କରାଯାଇଛି ।

ସେଠାରୁ ଆମେ ଆଧୁନିକ ଇସ୍ପାତ ନଗରୀ ଭାବରେ ଜଣାଶୁଣା ଡୁଇସବର୍ଗକୁ ଯାଇଥିଲୁ । ସେଠାରେ ଅତିକମ୍‌ରେ ଦଶଟି ଇସ୍ପାତ କାରଖାନା ରହିଛି । ମାତ୍ର କୌଣସି କାରଖାନାର ଚିମନୀରୁ କଳାଧୂଆଁ ବାହାରୁ ନଥିଲା । ଆଧୁନିକ ଜ୍ଞାନକୌଶଳ ପ୍ରୟୋଗ କରାଯାଇ କାରଖାନାରୁ ବାହାରୁଥିବା ଧୂଆଁକୁ ନିୟନ୍ତ୍ରଣ କରାଯାଉଛି।

ଆମେ ଗାଡିରୁ ଓହ୍ଲାଇବା ମାତ୍ରେ ରାଜେନ୍ଦ୍ରଭାଇ ପାଖରେ ଥିବା ଗୋଟିଏ ଇସ୍ପାତ କାରଖାନା ଆଡକୁ ହାତ ଦେଖାଇ କହିଲେ, "ଆଜିକୁ ୪୭ବର୍ଷ ପୂର୍ବେ ମୁଁ ଯେତେବେଳେ ଜଣେ ଶିକ୍ଷାନବୀଶ ଭାବରେ ଜର୍ମାନୀ ଆସିଥିଲି, ଏଇ କାରଖାନାରେ ମୋର ପ୍ରାକ୍ଟିକାଲ ଟ୍ରେନିଂ ପଡ଼ିଥିଲା । ସାମାନ୍ୟ ପାରିଶ୍ରମିକ ବଦଳରେ କାରଖାନା କର୍ତ୍ତୃପକ୍ଷ ଆମକୁ ଶ୍ରମିକ ଭଳି ଖଟାଉଥିଲେ । ଆମ କାନ୍ଧରେ ଲୁହା ବୁହାଇଥିଲେ । ପରବର୍ତ୍ତୀ କାଳରେ ସମାଜରେ ମୁଁ ପ୍ରତିଷ୍ଠିତ ହୋଇଥିଲେ ବି ଅତୀତର ସେଇ ସ୍ମୃତିକୁ ଭୁଲିପାରିନାହିଁ । ସେଦିନର ସେଇ ଟ୍ରେନିଂ ଅନୁଭୂତି ମତେ ଭବିଷ୍ୟତ ଜୀବନ ଗଢ଼ିବା ପାଇଁ ପ୍ରେରଣା ଯୋଗାଇଥିଲା । ଆଜି ସେକଥା କହିଲେ ହୁଏତ ଲୋକେ ବିଶ୍ୱାସ କରିନପାରନ୍ତି ।"

ମଝିରେ ଆମେ ପାଖରେ ଥିବା ଗୋଟିଏ ରେଷ୍ଟୁରାଣ୍ଟରୁ କିଛି ସ୍ନାକ୍ସ ଖାଇ ରାଇନ୍ ନଦୀ କୂଳକୁ ଗଲୁ । ସେଠାରେ ପର୍ଯ୍ୟଟକମାନେ ଟିକଟ୍ କରି ଛୋଟ ଜାହାଜରେ ନୌବିହାର ପାଇଁ ଅପେକ୍ଷା କରିଥିଲେ ।

ସେତେବେଳକୁ ସମୟ ତିନିଟା ବାଜିଯାଇଥିଲା । ମୋର ଟିକିଏ ନଈରେ ବୁଲିବା ପାଇଁ ଇଚ୍ଛା ଥିଲା । ଖବର ନେଇ ବୁଝିଲି, ନଈରେ ବୁଲିବା ପାଇଁ ଗୋଟିଏ ଟ୍ରିପକୁ ପ୍ରାୟ ଘଣ୍ଟାଏ ସମୟ ଲାଗିଯିବ । ଆମର ରୋପ୍‌ୱେରେ ଯିବାର କାର୍ଯ୍ୟକ୍ରମ ଥିଲା । ରାଜେନ୍ଦ୍ରଭାଇ ପଚାରିଲେ, "ବସନ୍ତ ! ତମେ କାହାକୁ ଆଗ୍ରାଧିକାର ଦେବ ? ନଈରେ ବୁଲିବା ନା ରୋପ୍‌ୱେରେ ଯିବା ? ପିଲାଦିନେ ତ ଅନେକଥର ଡଙ୍ଗାରେ ବୁଲିଛ । କେତେଥର ରୋପ୍‌ୱେର ମଜ୍ଜା ନେଇଛ ? ରୋପୱେ ଉପରୁ ରାଇନ୍ ନଦୀ ଓ ସହରର ଦୃଶ୍ୟ ଅତ୍ୟନ୍ତ ମନୋରମ । ଥରେ ହାତଛଡା କରିଦେଲେ ହୁଏତ ସେ ସୁଯୋଗ ଜୀବନରେ ଜୁଟିନପାରେ । ସମୟ ଅଭାବ ଯୋଗୁଁ ଆମେ ଦି'ଟାର ସୁଯୋଗ ନେବା ସମ୍ଭବ ନୁହେଁ ।"

ମୁଁ ଆଉ ବାକ୍ୟ ବିନିମୟ ନକରି ଗାଡ଼ିରେ ଯାଇବସିଲି । ଆମେ ଯାଇ ପହଞ୍ଚିଲାବେଳକୁ ରୋପ୍‌ୱେରେ ଯିବାର ସମୟ ପ୍ରାୟ ଶେଷ ହୋଇ ଆସୁଥିଲା । ଆଠଟି କେବିନ୍ ମଧ୍ୟରେ ମାତ୍ର ଗୋଟିଏ କେବିନ୍ ଯିବାକୁ ବାକି ଥିଲା ।

ସେମାନେ ଖୁବ୍ ସମୟାନୁବର୍ତ୍ତୀ । ରାଜେନ୍ଦ୍ରଭାଇ ଗାଡ଼ି ପାର୍କିଂ କରି ଦଉଡ଼ିଦଉଡ଼ି ଯାଇ ଦୁଇଟି ଟିକଟ୍ କରିଦେଲେ । ସେଠାରେ ଥିବା ପଦାଧିକାରୀ ଜର୍ମାନୀ ଭାଷାରେ ରାଜେନ୍ଦ୍ରଭାଇଙ୍କୁ କହିଲେ, "ଆପଣମାନେ ଭାଗ୍ୟବାନ । ଆଉ ଦୁଇମିନିଟ୍ ବିଳମ୍ବ ହୋଇଥିଲେ, ଆଜି ଆଉ ଆପଣମାନେ ରୋପୱେରେ ଯିବାର ସୁଯୋଗ ପାଇପାରି ନଥାନ୍ତେ ।" ମୋର ଅଜାଣତରେ ପାଟିରୁ ବାହାରିପଡ଼ିଲା, "ଯାହାହେଉ, ଈଶ୍ୱର ବଡ଼ଲୋକ, ଆମକୁ ସୁଯୋଗରୁ ବଞ୍ଚିତ କଲେନାହିଁ ।"

ସେଠାରେ ଥିବା ଆଠଟି ରୋପୱେରେ ଷୋଳଟି କେବିନ୍ ଖଞ୍ଜାଯାଇଥିଲା । ପନ୍ଦରମିନିଟ୍ ବ୍ୟବଧାନରେ ଏକ ସମୟରେ ଗୋଟିଏ କେବିନ୍ ଯାଉଥିଲା । ସେହିପରି ଅନ୍ୟପଟୁ ଗୋଟିଏ କେବିନ୍ ଫେରୁଥିଲା । ଗୋଟିଏ କେବିନ୍‌ରେ ଚାରିଜଣ ବସିଲା ଭଳି ବ୍ୟବସ୍ଥା ଥିଲା । ଆମେ ଯେଉଁ କେବିନ୍‌ରୁ ଯାଉଥିଲୁ, ସେଥିରେ ଆଉ ଦୁଇଜଣ ଯାତ୍ରୀ ଥିଲେ । ବୋଧହୁଏ ସ୍ୱାମୀ ସ୍ତ୍ରୀ ହେବେ ।

ମୁଁ କେବିନରୁ ତଳକୁ ଅନାଇଁ ଦେଖିଲି, ରାଇନ୍ ନଦୀର ଈଷତ୍ ନୀଳବର୍ଣ୍ଣ ଜଳରାଶି ଉପରେ ସୂର୍ଯ୍ୟକିରଣ ପଡ଼ି ଚିକ୍‌ଚିକ୍ ଦେଖାଯାଉଥିଲା । ନଦୀଜଳରେ ବିରାଟ ପୋତମାନ ଯାତାୟାତ କରି ଶୋଭାବର୍ଦ୍ଧନ କରୁଥିଲା ।

ମୋର କବିବର ରାଧାନାଥ ରାୟଙ୍କ ଚିଲିକା କାବ୍ୟରୁ ଗୋଟିଏ ପଦ ମନେପଡ଼ିଗଲା– 'ସୁନ୍ଦର ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ' । ସତରେ କେତେ ନିବିଡ଼ ଅନୁଭୂତି ପରେ କବି ଏହି ପଦକ ତାଙ୍କ କାବ୍ୟରେ ଅନ୍ତର୍ଭୁକ୍ତ କରିଥିଲେ ! କେଇମିନିଟ୍ ଭିତରେ ଆମ କେବିନ୍ ରାଇନ୍ ନଦୀ ପାରହୋଇ ଆରପଟକୁ ଚାଲିଯାଇଥିଲା । ପାଞ୍ଚମିନିଟ୍ ବ୍ୟବଧାନରେ ଫେରିବା ପାଇଁ ଆମକୁ ସଙ୍କେତ ଦିଆଗଲା ।

ତା' ପରଦିନ ଡୁସେଲ୍‌ଡର୍ଫରୁ ଆମର ବର୍ଲିନ ଯିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା। ମୁଁ ପୂର୍ବରୁ ଜର୍ମାନ ଭ୍ରମଣରେ ଯାଇଥିଲି। କିନ୍ତୁ ସେତେବେଳେ ବର୍ଲିନ ସହରଟି ସୋଭିଏଟ୍ ରଷ୍ଟ୍ ଅଧୀନରେ ଥିବାରୁ ଆମକୁ ସେଠାକୁ ଯିବା ପାଇଁ ସୁଯୋଗ ମିଳିନଥିଲା।

ଡୁସେଲଡର୍ଫ ବିମାନ ବନ୍ଦରରୁ ବର୍ଲିନ୍ ଯିବାପାଇଁ ସକାଳ ସାତଟାରେ ବିମାନସେବା ଥିଲା। ସେଥିପାଇଁ ଆମେ ସକାଳ ପାଞ୍ଚଟାରୁ ଉଠି ନିତ୍ୟକର୍ମ ସାରି ଛଅଟାବେଳକୁ ବାହାରିପଡ଼ିଲୁ।

ଯଥା ସମୟରେ ଆମ ବିମାନଟି ଆକାଶକୁ ଉଠିଲା। ସାଙ୍ଗେସାଙ୍ଗେ ଲାଲ୍ ରଙ୍ଗର ସ୍କର୍ଟ୍‌ପିନ୍ଧା ସୁନ୍ଦରୀ ଏୟାରହୋଷ୍ଟେସ୍‌ମାନେ ଯାତ୍ରୀମାନଙ୍କ ସେବାରେ ଲାଗିପଡ଼ିଲେ। ଘଣ୍ଟାକର ଉଡ଼ାଣ ପରେ ଆମ ବିମାନଟି ବର୍ଲିନ୍ ବିମାନ ବନ୍ଦରରେ ଅବତରଣ କଲା। ସେଥିରେ ସବୁ ଯାତ୍ରୀ ବର୍ଲିନ୍ ଯାଉଥିଲେ।

ବିମାନ ବନ୍ଦରରୁ ବର୍ଲିନ୍ ସହରର ଦୂରତା ପ୍ରାୟ ୪୦ କିଲୋମିଟର। ସେଠାରୁ ଟ୍ରେନ ଯୋଗେ ସହର ଭିତରକୁ ଯିବାକୁ ହୁଏ। ବିମାନ ବନ୍ଦରର ପ୍ରସ୍ଥାନ ଦ୍ୱାରରୁ ନିକଟସ୍ଥ ରେଲଷ୍ଟେସନର ଅବସ୍ଥିତି ବେଶୀ ଦୂର ନୁହେଁ। ଚାଲିବା ରାସ୍ତା। ଆମେ ଗୋଟିଏ ଟ୍ରଲିରେ ଆମ ବ୍ୟାଗ୍ ରଖି ଷ୍ଟେସନ ଅଭିମୁଖେ ଚାଲିଲୁ।

ମୋର ଧାରଣା ଥିଲା, ଆମେ ଯାଇ କାଉଣ୍ଟରରୁ ଟିକଟ୍ କିଣି ଟ୍ରେନ୍ ଧରିବୁ। ସେଠାରେ ଦେଖିଲି, ବ୍ୟବସ୍ଥା ସମ୍ପୂର୍ଣ୍ଣ ଅନ୍ୟ ପ୍ରକାରର। କାଉଣ୍ଟରରେ କେହି ଲୋକ ନଥିଲେ। କେବଳ ଦୁଇଟି କମ୍ପ୍ୟୁଟର ଥିଲା। କେଉଁ ଟ୍ରେନରେ, କେଉଁ ଷ୍ଟେସନରୁ କେଉଁ ଷ୍ଟେସନକୁ ଯିବାକୁ ହେବ ଏବଂ ସେଥିପାଇଁ କେତେ ମାର୍କର ଟିକଟ୍ ଲାଗିବ ବଟମ୍ ଦବାଇଲେ ତାହା କମ୍ପ୍ୟୁଟର ପରଦାରେ ଆପେଆପେ ଦେଖାଯାଉଥିଲା। ମୁଁ ସେପରି ବ୍ୟବସ୍ଥା ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ ଥିବାରୁ ଅନ୍ୟମାନଙ୍କ ସାହାଯ୍ୟରେ ଟିକଟ୍ କିଣିଲି।

ଟ୍ରେନ୍‌ରୁ ଓହ୍ଲାଇ ପ୍ଲାଟଫର୍ମ ବାହାରକୁ ଆସିବାମାତ୍ରେ ରାସ୍ତାରେ ଅନେକଗୁଡ଼ିଏ କାର୍ ଥୁଆ ହୋଇଥିଲା। ସେଥିମଧ୍ୟରୁ ଅଧିକାଂଶ ଥିଲା ମର୍ସିଡେଜ୍ ବେଞ୍ଜ କାର୍। ଗୋଟିଏ ମର୍ସିଡେଜ୍ ସାମନାରେ ଜଣେ ପୁରୁଷ ଓ ଜଣେ ମହିଳା ଛିଡ଼ା ହୋଇଥିଲେ। ରାଜେନ୍ଦ୍ରଭାଇ ସେମାନଙ୍କୁ ଜର୍ମାନ୍ ଭାଷାରେ କ'ଣ କହିଲେ ସେକଥା ମୋର ବୁଝିବାର ଉପାୟ ନଥିଲା। ତା'ପରେ ସେ ପୁରୁଷଜଣକ ଆମର ଦୁଇଟି ବ୍ୟାଗନେଇ ଗାଡ଼ି ଡିକିରେ ରଖି ଆମକୁ ଗାଡ଼ିରେ ବସିବା ପାଇଁ ଅନୁରୋଧ କଲେ।

ଆମେ ଦି'ଜଣ ଗାଡିର ପଛ ସିଟ୍‌ରେ ବସିଲୁ। ସେଠାରେ ଛିଡ଼ା ହୋଇଥିବା ମହିଳା ଡ୍ରାଇଭର ସିଟ୍‌ରେ ବସି ସିଟ୍‌ବେଲ୍ଟ ବାନ୍ଧିଲେ ଓ ଗାଡ଼ି ଷ୍ଟାର୍ଟ କଲେ। ମତେ ଟିକିଏ କେମିତି କେମିତି ଲାଗୁଥିଲା। ମର୍ସିଡେଜ୍ ବେଞ୍ଜ୍ କାର, ମହିଳା ଡ୍ରାଇଭର, ଏସବୁରେ ମୁଁ ଅଭ୍ୟସ୍ତ

ନଥିଲି, । କାରଣ ଭୁବନେଶ୍ୱର ରାଜଧାନୀ ସହର ହେଲେ ବି ହାତଗଣତିରେ କେଇଖଣ୍ଡ ମର୍ସିଡେଜ୍ ଗାଡ଼ି ସେଠାରେ ଚାଲେ ।

ହୋଟେଲ 'କମେଟ୍'ରେ ଆମର ରହିବା ପାଇଁ ରିଜରଭେସନ୍ ହୋଇଥିଲା । ହୋଟେଲଟି ପଞ୍ଚତାରକା ବିଶିଷ୍ଟ ଅନ୍ତର୍ଜାତୀୟ ସ୍ତରର । ବିଶ୍ୱର ବିଭିନ୍ନ ପ୍ରାନ୍ତରୁ ଲୋକେ ଆସି ସେଠାରେ ରହୁଥିଲେ । ଅଳ୍ପ ସମୟ ମଧ୍ୟରେ ଆମେ ଯାଇ ହୋଟେଲ ସାମ୍ନାରେ ପହଞ୍ଚିଗଲୁ । ଆମ ଦେଶଭଳି ସେଠାରେ ଗେଟ୍ ଖୋଲିବାକୁ ଦରୱାନ୍ କିମ୍ବା ବ୍ୟାଗ୍ ନେବା ପାଇଁ କେହି 'ବୟ' ନଥିଲେ । ଗାଡ଼ିରୁ ଓହ୍ଲାଇଲା ବେଳେ କମ୍ପ୍ୟୁଟର ବ୍ୟବସ୍ଥାରେ ଆମେ କେଉଁଠୁ କେତେବେଳେ ଗାଡ଼ିରେ ବସିଥିଲୁ, କେଉଁଠିକି ଆସିଲୁ ଏବଂ ସେଥିପାଇଁ କେତେ ପ୍ରାପ୍ୟ ଦେବାକୁ ହେବ ସେସବୁ କଥା ଥାଇ ଚିଠାଟିଏ ବାହାରି ଆସିଲା । ସେତକ ଦେୟ ଦେଇ ଆମେ ହୋଟେଲ ଭିତରେ ପଶିଲୁ ।

ବର୍ଲିନ୍‌ରେ ତିନିଦିନ ରହଣି ସମୟ ମଧ୍ୟରେ କେତେ ଜାଗା ବୁଲିହେବ, କେତେ ଅନୁଷ୍ଠାନକୁ ଯାଇହେବ, ରାଜେନ୍ଦ୍ରଭାଇ ତା'ର ଏକ ଲମ୍ବା ତାଲିକା ଆଗରୁ ପ୍ରସ୍ତୁତ କରି ରଖିଥିଲେ । ସେଇ ତାଲିକା ଭିତରେ ଥିଲା 'ଫ୍ରି ୟୁନିଭରସିଟି' ପରିଦର୍ଶନ । ମୁଁ ପଚାରିଲି, ସେ ୟୁନିଭରସିଟିରେ ଏପରି କ'ଣ ଅଛି ଯେ ଆମେ ଅର୍ଥବ୍ୟୟ କରି ସେଠାକୁ ଯିବା ? ତାଙ୍କର ଉତ୍ତର ଥିଲା, "ତମେ ପରା ଶ୍ରୀରାମବାବୁ (ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ)ଙ୍କ ଛାତ୍ର ଏ ୟୁନିଭରସିଟି ସହିତ ଆମର କ'ଣ ସମ୍ପର୍କ ସେକଥା ଜାଣିନାହଁ ? ଇଏ ହେଉଛି ସେଇ ୟୁନିଭରସିଟି, ଯେଉଁଠାରୁ ଡଃ. ଦାଶ ତାଙ୍କର ଡି.ଲିଟ୍ ଉପାଧି ପାଇଥିଲେ ।"

ବିଶ୍ୱବିଦ୍ୟାଳୟ ଯେଉଁ କୋଠରିରେ ଡଃ ଦାଶ ଦୀର୍ଘ ୫୩ ବର୍ଷ ପୂର୍ବେ ଗବେଷଣା କରୁଥିଲେ, ସେଠାରେ ପ୍ରବେଶ କରିବାମାତ୍ରେ ଶରୀର ରୋମାଞ୍ଚିତ ହେଲା । ଅବିଭକ୍ତ କଟକ ଜିଲ୍ଲା ଅନ୍ତର୍ଗତ ବାଲିକୁଦା ଥାନା ଅଞ୍ଚଳର ଅଖ୍ୟାତ ପଲ୍ଲୀ ବୀରରସିଂହପୁରରେ ଏକ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ଜନ୍ମଲାଭ କରିଥିବା ଜଣେ ଯୁବକ କିପରି ଏବଂ କେଉଁ ପରିସ୍ଥିତିରେ ଆସି ବର୍ଲିନ୍‌ରେ ଗବେଷଣା କରି ଡି.ଲିଟ୍ ଡିଗ୍ରୀ ଲାଭ କରିଥିଲେ, ସେକଥା ଭାବିଲାବେଳେ ତାଙ୍କ ସ୍ମୃତିପ୍ରତି ମୁଣ୍ଡ ଆପେ ଆପେ ନଇଁଗଲା ।

ଆମର ବର୍ଲିନରେ ଶେଷ କାର୍ଯ୍ୟକ୍ରମ ଥିଲା ବର୍ଲିନ ୱାଲ୍‌ର ଧ୍ୱଂସାବଶେଷ ଦେଖିବା । ଆମେ ଟୁରିଷ୍ଟବସରେ ସହର ବୁଲିବା ସମୟରେ ସେ ବାଟଦେଇ ଯାଇଥିଲେ ବି ବର୍ଲିନ୍‌ୱାଲ୍‌କୁ ପାଖରୁ ଦେଖିବାର ସୁଯୋଗ ପାଇନଥିଲୁ । ବିଶ୍ୱଯୁଦ୍ଧ ପରେ କିଭଳି ବର୍ଲିନ୍‌ସହର ବିଭାଜିତ ହୋଇ ସହର ଭିତରେ ପ୍ରାଚୀର ନିର୍ମିତ ହେଲା ସେସବୁ ବିଷୟରେ ପୁସ୍ତକରୁ ପଢ଼ିବାକୁ ମିଳିଥିଲା । କିଛିକ୍ଷଣ ପରେ ସେ ପ୍ରାଚୀରକୁ ସ୍ୱଚକ୍ଷୁରେ ଦେଖିହେବ, ଏଇକଥା ଭାବିଲାବେଳକୁ ମନ ଭିତରେ ଏକ ଆବେଗ ସୃଷ୍ଟି ହେଉଥିଲା ।

ଅତୀତର ଇତିହାସକୁ ଭାବୁଭାବୁ ଆମେ ଯାଇ ବର୍ଲିନ୍ ୱାଲ୍ ନିକଟରେ ପହଞ୍ଚିଯାଇଥିଲୁ । ଗାଡ଼ି ଅଟକାଇ ଡ୍ରାଇଭର ଅଲ୍ଲି ଆମକୁ କହିଲେ, "ସାବ୍ ଓ ଏହି ଦିବାର ହୈ, ଯିସ୍ କେ ଲିୟେ ହଜାରୋଁ ଜାନ୍ କୁର୍ବାନ୍ ହୁଆ ଥା ।" ମୁଁ ଗାଡ଼ିରୁ ଓହ୍ଲାଇଲାବେଳେ ଭାବୁଥିଲି ମୁଁ କ'ଣ ସ୍ୱପ୍ନ ଦେଖୁଛି ନା ବାସ୍ତବ ଦୁନିଆରେ ରହିଛି ? ସମଗ୍ର ସହରକୁ ଭାଗଭାଗ କରୁଥିବା କଂକ୍ରିଟ୍ ନିର୍ମିତ ପ୍ରାଚୀରକୁ ଲୋକେ କିପରି ଭାଙ୍ଗି ଛିନ୍‌ଛତର କରିଦେଲେ ସେକଥା ଭାବିପାରି ନଥିଲି ।

ଆମେ ବର୍ଲିନ୍‌ରୁ ଫେରିବା ଦିନ ଆମ ହାତରେ ଯଥେଷ୍ଟ ସମୟ ଥିଲା । ଫେରନ୍ତା ବିମାନ ସମୟ ଅପରାହ୍ନ ପାଞ୍ଚଟାରେ । ଏଇ ସମୟ କେମିତି କଟିବ ଏଇକଥା ଭାବୁଭାବୁ ରାଜେନ୍ଦ୍ରଭାଇ କହିଲେ "ବର୍ଲିନ୍‌ରେ ଟ୍ୟାକ୍ସି, ବସ୍, ଟ୍ରେନ୍, ପ୍ଲେନ୍ ସବୁ ଚଢ଼ାହେଲା, ଆଉ ଛୋଟ ଜାହାଜରେ ବୁଲିବାଟା କାହିଁକି ବାକି ରହିବ ? ଜାହାଜରେ ବର୍ଲିନ୍ ସହରର ସୌନ୍ଦର୍ଯ୍ୟ ଉପଭୋଗ କରିବାର ମଜା ଅଛି । ଚାଲଯିବା ।"

'ବ୍ରୁକୋ ଉଇଙ୍କ୍‌ଲର୍' ଜାହାଜ କମ୍ପାନୀ ପକ୍ଷରୁ ପର୍ଯ୍ୟଟକମାନଙ୍କ ପାଇଁ ତିନିଘଣ୍ଟିଆ କାର୍ଯ୍ୟକ୍ରମ କରାଯାଇଥିଲା । ଆମେ ଯେଉଁ ଦି'ମହଲା ବିଶିଷ୍ଟ ଜାହାଜରେ ଯାଉଥିଲୁ, ତା' ନାଁ ଥିଲା 'ଓ୍ୱିଙ୍କ୍‌ଲରଡି' । ଯାହାର ଇଚ୍ଛା ସେ ତଳେ ବସୁଥିଲେ, ଆଉ କେତେକ ଡେକ୍ ଉପରେ ଖରା ଉପଭୋଗ କରୁଥିଲେ । ଜାହାଜରେ ଗୋଟିଏ ଚଳନ୍ତା କ୍ୟାଣ୍ଟିନ୍ ଥିଲା । ସ୍ନାକ୍‌ଠାରୁ ଆରମ୍ଭ କରି ସବୁପ୍ରକାର ପାନୀୟ ସେଠାରେ ଉପଲବ୍ଧ ହେଉଥିଲା । ଅଧିକାଂଶ ଯାତ୍ରୀ ହାର୍ଡଡ୍ରିଙ୍କ୍‌ସ ନେଇ ମନକୁ ହାଲୁକା କରୁଥିଲେ । କେବଳ ଆମ ଦି'ଜଣଙ୍କ ହାତରେ ଥିଲା ମାଙ୍ଗୋଜୁସ୍ ଗ୍ଲାସ୍ ।

ଆମେ ବର୍ଲିନରୁ ବିମାନରେ ଆସି ଆମେ ଡୁଲରଡର୍ଫ ବିମାନ ବନ୍ଦରରେ ଛଅଟା ବେଳେ ପହଞ୍ଚିଲୁ । ସେଠାରୁ କାରରେ ଆସି ରାଜେନ୍ଦ୍ର ଭାଇଙ୍କ ଘରେ ପହଞ୍ଚିଲା ବେଳକୁ ରାତି ଆଠଟା ବାଜି ଯାଇଥିଲା ।

ତା' ପରଦିନ ମୋର ପ୍ରାଗ୍ ବାଟଦେଇ ଅଷ୍ଟ୍ରୋଭା ଫେରି ଆସିବା କଥା । ସକାଳ ଆଠଟାରେ ପ୍ରାଗ ଯିବାପରେ ବିମାନ ଛାଡିବାର ଥିବାରୁ ସକାଳୁ ସକାଳୁ ଜଳଖିଆ ପର୍ବ ଶେଷ ହୋଇଗଲା ।

ପୂର୍ବରୁ ରାଜେନ୍ଦ୍ର ଭାଇ ମୋ ପାଇଁ ଗୋଟିଏ ବ୍ଲେଜର କିଣି ଦେଇଥିଲେ । ମୁଁ ବାହାରିଲା ବେଳକୁ ସେ ବ୍ଲେଜର ସହିତ ମ୍ୟାଚ୍ କଲାଭଳି ଗୋଟିଏ ଟାଇ ଆଣି ନିଜ ହାତରେ ପିନ୍ଧାଇ ଦେଇ କହିଲେ, "ବସନ୍ତ, ୟୁ ଆର୍ ରିଅଲି ସ୍ମାର୍ଟ ।"

ଯା ଭିତରେ ଇତିଭାଉଜ ଗୋଟିଏ ଜରିମୁଣିରେ କିଛି ଆପେଲ୍, କାସ୍ୟୁନଟ୍ ପ୍ୟାକ୍ କରି ରଖିସାରିଥିଲେ । ସେଇଟି ମୋ ହାତରେ ଧରାଇଦେଇ କହିଲେ, "ବାଟରେ ପ୍ରାଗ୍‌ରେ ଅଟକିବାକୁ ପଡ଼ିବ । ଏଇଟା ପାଖରେ ଥିଲେ କାମରେ ଲାଗିବ ।" ଇତିଭାଉଜଙ୍କ ସାଙ୍ଗରେ

ମାତ୍ର ତିନି-ଚାରିଦିନର ଦେଖା । ପାଶ୍ଚାତ୍ୟ ଚଳଣି ଓ ସଭ୍ୟତାରେ ତାଙ୍କ ଜୀବନ କଟିଛି । ସମାଜରେ ଉଚ୍ଚବର୍ଗଙ୍କ ସହିତ ତାଙ୍କର ମିଳାମିଶା । ତଥାପି ସେ ଓଡ଼ିଆ ଘରର ସଣ୍ଢଣାକୁ ଭୁଲିନାହାନ୍ତି ।

ମୁଁ ବ୍ୟାଗ ଆଣି କାର୍‌ରେ ରଖିଲି ଓ ଇତି ଭାଉଜଙ୍କୁ ପ୍ରଣାମ କରି ରାଜେନ୍ଦ୍ରଭାଇଙ୍କ ସହିତ ସେଥିରେ ବସିଲି । କାର୍ ୧ ୨ ୦ କିଲୋମିଟର ବେଗରେ ଚାଲୁଥିଲା । ଅଧଘଣ୍ଟାକରେ ଆମେ ବିମାନ ବନ୍ଦରରେ ପହଞ୍ଚିଲୁ । ସେତେବେଳକୁ କାର୍ ପାର୍କିଂ ପାଇଁ ବିଶେଷ ଅସୁବିଧା ନଥିଲା । ରାଜେନ୍ଦ୍ର ଭାଇ ପାର୍କିଂରେ ଗାଡ଼ି ରଖି ମୋର ଚେକିଂ କରିଦେଲେ ।

ତାଙ୍କଠାରୁ ବିଦାୟ ନେଲାବେଳେ ଆଖିରେ ଲୁହକୁ ରୋକି ପାରିନଥିଲି ମୁଁ । ଯେତେ ଲୁଚେଇବାକୁ ଚେଷ୍ଟା କରିଥିଲେ ବି କେଇଟୋପା ଲୁହ ଆଖିରୁ ଗଡ଼ିପଡିଥିଲା । ରାଜେନ୍ଦ୍ରଭାଇ ଦୂରରେ ଛିଡ଼ାହୋଇ ହାତ ହଲେଇ ମତେ ବିଦାୟ ଜଣାଇଥିଲେ । ସେ ଦୃଶ୍ୟ ମୋ ପାଇଁ ଅଭୁଲା ହୋଇ ରହିଗଲା ।

ମୋର ବିମାନ ଟିକେଟ୍ ଡୁସେଲ୍‌ଡର୍ଫରୁ ଅଷ୍ଟ୍ରୋଭା ପର୍ଯ୍ୟନ୍ତ ହୋଇଥିଲା । ବାଟରେ ପ୍ରାଗ୍‌ଠାରେ ଯାହା ବିମାନ ବଦଳାଇବାକୁ ପଡ଼ିଲା । ପୂର୍ବାହ୍ଣ ୧ ୧ଟାରେ ମୁଁ ଅଷ୍ଟ୍ରୋଭାରେ ପହଞ୍ଚିଗଲି । ଚନ୍ଦନ କାର୍ ଆଣି ବାହାରେ ଅପେକ୍ଷା କରିଥିଲା । ଆମେ ଦୁହେଁ କାର୍‌ରେ ଘରକୁ ଫେରିଲୁ । ବାଟରେ ଗତ ପାଞ୍ଚଦିନର ଅନୁଭୂତି ବିଷୟରେ ଚନ୍ଦନକୁ କହୁକହୁ ଆମ କାର୍ ଘରପାଖରେ ପହଞ୍ଚିଯାଇଥିଲା ।

ଆମେ ବିଦେଶ ଗସ୍ତରୁ ଫେରିଲା ପରେ ମୋ ପତ୍ନୀ ଭାବିଥିଲେ ଆଉ ବୋଧେ ଦେଶ ବାହାରକୁ ଯିବାକୁ ପଡ଼ିବ ନାହିଁ । କିନ୍ତୁ ଆମକୁ ଆଉଥରେ ଯେ, ବିଦେଶ ଯିବା ପାଇଁ ଈଶ୍ୱର ନିଷ୍ପତ୍ତି କରିଛନ୍ତି ସେତେବେଳେ ସେ ତାହା ଜାଣିପାରିନଥିଲେ ।

ଆମେ ଅଷ୍ଟ୍ରୋଭାରୁ ଫେରିବାର କେଇମାସ ପରେ ଚନ୍ଦନର ଚେକ୍ ରିପବ୍ଲିକରୁ ପୋଲାଣ୍ଡ ବଦଳି ହେଲା । କମ୍ପାନୀ ପକ୍ଷରୁ ଘର ଓ ଆସବାବପତ୍ର ମିଳିଗଲା ପରେ ଏଥର ପୁଅର ଅନୁରୋଧ ଆସିଲା । ବାପା ଆମେ ନୂଆ ଘର ନେଇଛୁ । ଦେଖିବାକୁ ଆସିବ ନାହିଁ ? ଚନ୍ଦନ କଥା ଶୁଣି ମାନସିକ ଦ୍ୱନ୍ଦ୍ୱ ସୃଷ୍ଟି ହେଲା । ଥରେ ଯାଇ ପିଲାଙ୍କୁ ଦେଖି ଆସିଲୁ । ଆଉଥରେ ଯିବୁ ? ପୁଣି ଭାବିଲୁ, ପିଲାଟା କହୁଛି ଯେତେବେଳେ ତା କଥା ନରଖିଲେ ମନରେ କଷ୍ଟ ହେବ । ଘରେ ଆମେ ଦି'ଜଣ କଥାବାର୍ତ୍ତା ହୋଇ ସ୍ଥିର କଲୁ, ଆମେ ପୋଲାଣ୍ଡ ଯିବୁ ।

ପୁଣି ସେଇ ଝମେଲା । ଭିସା ପାଇଁ ଦରଖାସ୍ତ କର । କିନ୍ତୁ ସେଥର ଆମକୁ କିଛି କରିବାକୁ ପଡ଼ିନଥିଲା । ଚନ୍ଦନ ସବୁ ବ୍ୟବସ୍ଥା କରିଦେଲା । ଆମେ ଦିଲ୍ଲୀ ନଯାଇ ଭିସା ପାଇଗଲୁ । ମୁଁ ସୀତା ଟ୍ରାଭେଲ୍ସକୁ ଟିକଟ ପାଇଁ କହିଲି । ସେପଟୁ ଉତ୍ତର ଆସିଲା, "ଆପଣଙ୍କ

ଟିକଟ ହୋଇଯାଇଛି । ଆପଣଙ୍କ ଘରକୁ ଟିକଟ ପଠାଇ ଦିଆଯିବ । ଟଙ୍କା ପେମେଣ୍ଟ ହୋଇଯାଇଛି । ଆପଣ ବ୍ୟସ୍ତ ହେବେ ନାହିଁ ।"

ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଏକାସାଙ୍ଗରେ ଭିସା ଓ ଟିକଟ୍ ? ଆମେ ପ୍ରସ୍ତୁତ ହେଲୁ । ସାଙ୍ଗରେ ଅଳ୍ପ ଜିନିଷ ନେବାକୁ ସ୍ଥିର କଲୁ । ଭୁବନେଶ୍ୱରରୁ ଦିଲ୍ଲୀ ଯାଇ ଗୋଟିଏ ଦିନ ରହଣୀ । ତା ପରଦିନ ରାତିରେ ବିମାନରେ ଦିଲ୍ଲୀରୁ ଭିଏନା । ଭିଏନାରୁ କ୍ରାକୋ । ଭିଏନାରୁ କ୍ରାକୋ ଯାଉଥିବା ବିମାନଟି ଛୋଟ । ଡୋମେଷ୍ଟିକ୍ ଫ୍ଲାଇଟ୍ । ଘଣ୍ଟାଏ ଲାଗେ ।

ସେ ବମାନରେ କେବଳ ପ୍ରମଦା ଓ ମୁଁ ଭାରତୀୟ ଯାତ୍ରୀ ଥିଲୁ । ପ୍ରମଦା ଶାଢ଼ୀ ପିନ୍ଧିଥିବାରୁ ଆମେ ଅନ୍ୟମାନଙ୍କ ଠାରୁ ବାରି ହୋଇପଡୁଥିଲୁ । ଭିଏନା ପର୍ଯ୍ୟନ୍ତ ସବୁ ଠିକ୍‌ଠାକ୍ ଥିଲା । କ୍ରାକୋରେ ଓହ୍ଲାଇଲା ପରେ ସମସ୍ୟା ଆରମ୍ଭ ହେଲା ।

ବିମାନ ବନ୍ଦରରେ ଜଣେ, ଦି'ଜଣ ଇଂରାଜୀ ବୁଝୁଥିଲେ । ସେ ଆମକୁ ଚନ୍ଦନର ଠିକଣା ପଚାରିଲେ । କିନ୍ତୁ ଆମ ପାଖରେ ଠିକଣା ନଥିଲା । ଆମେ କେବଳ ତା ଟେଲିଫୋନ ନମ୍ବର ଜାଣିଥିଲୁ । ମୁଁ ମୋବାଇଲରୁ ତା' ନମ୍ବର ଖୋଜି ଅଫିସରଙ୍କୁ ଦେଲି । ଏହି ସମୟ ମଧ୍ୟରେ ସବୁ ଯାତ୍ରୀ ସେମାନଙ୍କ ଗନ୍ତବ୍ୟସ୍ଥଳକୁ ଚାଲିଯାଇଥିଲେ ।

ଆମର ଭାଗ୍ୟ ଭଲ । ଆମେ ବାହାରକୁ ଆସିଲାବେଳକୁ ଚନ୍ଦନ ଓ ସାଲୋନୀ ବାହାରେ ଅପେକ୍ଷା କରିଥିଲେ । ଚନ୍ଦନ ତା'ର ଆଇ.ଡି. କାଢ଼ି ଦେଖାଇଲା । ସେଥିରେ ତା' ଅଫିସ ଠିକଣା ଥିଲା । ଦଶ, ପନ୍ଦର ମିନିଟ୍ ପରେ ଆମେ ଅଫିସରଙ୍କ ପାଖରୁ ଛୁଟି ପାଇଗଲୁ ।

ଚନ୍ଦନ ଘରେ ପହଞ୍ଚିଲା ବେଳକୁ ସମୟ (ଭାରତୀୟ ସମୟ) ଆଠଟା ବାଜିଥିଲା । ଆମେ ଧୁଆଧୋଇ ହୋଇ ଆସି ଖାଇଲୁ । ତାଙ୍କର ସେତେବେଳକୁ ଚାରିଟା ବାଜିଥିଲା ।

ସେଦିନ ଥିଲା ଶୁକ୍ରବାର । ଶନିବାର, ରବିବାର ଚନ୍ଦନର ଛୁଟି । କଥା ହେଲା ସେ ଦି'ଦିନ ଆମେ ଯୁଆଡ଼େ ବୁଲି ଯାଇପାରିବା । ମୁଁ କହିଲି, ନାଁ ଶନିବାର ଦିନ ବିଶ୍ରାମ । ତା'ପରେ ଯାହାହେବ । ଶେଷରେ ସ୍ଥିରହେଲା ଶନିବାର ଦିନ ଆଖପାଖରେ ଯାହା ଥିବ ଦେଖି ରବିବାର ଦିନ ଦୂର ଯାଗାକୁ ଯିବା ।

ପୋଲାଣ୍ଡର ଦୁଇଟି ବଡ଼ ସହର କ୍ରାକୋ ଓ ୱାର୍ସ । ଏ ଦୁଇଟି ସହରର ଗୁରୁତ୍ୱ ରହିଛି । କ୍ରାକୋ ବିଶ୍ୱର ଏକ ପ୍ରମୁଖ ପର୍ଯ୍ୟଟନସ୍ଥଳୀ । ସେହିପରି ୱାର୍ସ ଏକ ଐତିହାସିକ ସହର ।

ଦୀର୍ଘ ୨୨ବର୍ଷ ପୂର୍ବେ ମସ୍କୋରୁ ଆମଷ୍ଟରଡାମ୍ ଯିବାବେଳେ ଇନ୍ଧନ ସଂଗ୍ରହ ପାଇଁ ଆମର କେ.ଏଲ୍.ଏମ୍. ବିମାନଟି ୱାର୍ସ ବିମାନଘାଟିରେ ଅବତରଣ କରିଥିଲା । ମାତ୍ର ଆମକୁ ସେ ଦେଶ ମାଟିରେ ପାଦ ଥାପିବାକୁ ଅନୁମତି ଦିଆଯାଇନଥିଲା । ସେଠାରେ ସେତେବେଳେ ଏକଛତ୍ରବାଦ ଶାସନ ଚାଲିଥିଲା । ବିଦେଶୀ ରାଷ୍ଟ୍ରର ଅଧିବାସୀଙ୍କ ଯାତାୟାତ ଉପରେ କଟକଣା ଜାରି କରାଯାଇଥିଲା । ପୋଲାଣ୍ଡ ଭ୍ରମଣ ବିଷୟ ମୁଁ ଏକପ୍ରକାର ଭୁଲିଯାଇଥିଲି । ଜୀବନରେ

ଆଉ କେତେବେଳେ ପୋଲାଣ୍ଡ ଯିବାର ସୁଯୋଗ ଜୁଟିବ, ସେକଥା ମଧ୍ୟ ଭାବି ନଥିଲି । କିନ୍ତୁ ସେ ସୁଯୋଗ ଆପେଆପେ ଆସିଗଲା ।

ପରଦିନ ସକାଳେ ବିଛଣା ଛାଡିଲା ବେଳକୁ ଭାରତୀୟ ସମୟ ନଅଟା ବାଜିଥିଲା । ସେଠାକାର ସମୟ ଭୋର ପାଞ୍ଚଟା । ପିଲାମାନେ କେହି ଉଠି ନଥିଲେ । ସାଧାରଣତଃ ଶନିବାର, ରବିବାର ଦୁଇଦିନ ସେମାନେ ଟିକିଏ ରିଲାକ୍ସ କରନ୍ତି ।

ଛୁଟିଦିନରେ ସକାଳୁ ପିଲାଏ ଟା' ସାଙ୍ଗରେ ମୁଢ଼ି, ମିକଶ୍ଚର ଖାଆନ୍ତି । ଆମ ପାଇଁ ତିଆରି ହେଲା କୋବି, ମଟର, ଗାଜର ପକାଇ ଉପମା । ମୋର ଶନିବାର ଉପବାସ ଥିବାରୁ ମୁଁ କିଛି ଫଳ ଖାଇଲି । ପରେ ଜୁସ୍ ପିଇଲି । ଜଳଖିଆ ପର୍ବ ଶେଷ ହେବାପରେ ଚନ୍ଦନ ପ୍ରସ୍ତାବ କଲା "ଲେଟ ଅସ ଗୋ ଏ ଲୋକାଲ ଡ୍ରାଇଭିଂ । ଖାଲି ଘରେ ବସିଲେ କ'ଣ ହେବ ?"

ଆମ ଦେଶଭଳି ୟୁରୋପ ରାଷ୍ଟ୍ରରେ ଖୋଲା ମାର୍କେଟର ବ୍ୟବସ୍ଥା ନାହିଁ । ବଡ଼ ବଡ଼ ମଲ । ସେଠାରୁ ସବୁ ଜିନିଷ ଆଣିବାକୁ ହୁଏ । ରାସ୍ତାଘାଟରେ ଦୋକାନ ଦେଖାଯାଏ ନାହିଁ ।

ଉପରଓଳି କଥାବାର୍ତ୍ତାରେ କଟିଗଲା । ଭାରତୀୟ ସମୟ ଓ ପୋଲାଣ୍ଡ ସମୟ ମଧ୍ୟରେ ୪ ଘଣ୍ଟାର ତାରତମ୍ୟ । ଖାଇବା, ଉଠିବାରେ ଦିନେ ଦି'ଦିନ ଟିକିଏ ଅସୁବିଧା ହୋଇଥିଲା । ହେଲେ ପରେ ସବୁ ସ୍ୱାଭାବିକ ହୋଇଯାଇଥିଲା ।

ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟସୂଚୀ ଅନୁଯାୟୀ ରବିବାର ସକାଳୁ କ୍ରାକୋର ମୁଖ୍ୟ ଦର୍ଶନୀୟ ସ୍ଥାନ ଦେଖିବାକୁ ଆମେ ବାହାରିଲୁ ।

କ୍ରାକୋର ପ୍ରାକୃତିକ ବିଭବ ସମ୍ପର୍କରେ ଜାଣିବା ପାଇଁ ଆଗରୁ ଗୋଟିଏ ଗାଇଡ୍‌ବୁକ୍ ସଂଗ୍ରହ କରିଥିଲି । ଅତୀତର ଅଭିଜ୍ଞତାରୁ ଏଥିପାଇଁ ମୁଁ ପ୍ରେରଣା ପାଇଥିଲି । ମୁଁ ଦେଖିଥିଲି ବିଦେଶରୁ ଯେତେଜଣ ପର୍ଯ୍ୟଟକ ଆମ ରାଜ୍ୟକୁ ବୁଲିବାକୁ ଆସୁଥିଲେ, ସମସ୍ତଙ୍କ ହାତରେ ପର୍ଯ୍ୟଟନସ୍ଥଳୀ ସମ୍ପର୍କୀୟ ତଥ୍ୟ ଥିବା ଗୋଟିଏ ଗୋଟିଏ ଗାଇଡ୍‌ବୁକ୍ ଥିଲା ।

ଆମେ ପ୍ରଥମେ ଯାଇ 'ମେନ୍ ମାର୍କେଟ୍ ସ୍କୋୟାର'ରେ ପହଞ୍ଚିଲୁ । ୧୨୫୭ ମସିହାରେ ଯେତେବେଳେ କ୍ରାକୋ ସହରକୁ ମ୍ୟୁନିସିପାଲ୍‌ର ମର୍ଯ୍ୟାଦା ମିଳିଥିଲା, ସେହି ସମୟରେ ଏହା ନିର୍ମିତ ହୋଇଥିଲା । ଏହି ସ୍କୋୟାରଟି ସାରାବର୍ଷ କର୍ମଚଞ୍ଚଳ ଥାଏ । ନାନାଦେଶରୁ ସହସ୍ରାଧିକ ପର୍ଯ୍ୟଟକ ଏହି ସ୍ଥାନର ସୌନ୍ଦର୍ଯ୍ୟକୁ ଉପଭୋଗ କରି ଆନନ୍ଦିତ ହୋଇଥାନ୍ତି ।

ସେଠାରେ ପହଞ୍ଚିଲା ପରେ ଆମ ଆଖି ଖୋସି ହୋଇଗଲା । ଚାରିଆଡ଼େ ସୁଦୃଶ୍ୟ ଅଟ୍ଟାଳିକା । ସେଥିରେ ସବୁ ରହିଥିଲା । ରେଷ୍ଟୁରାଣ୍ଟ, କ୍ଲବ, ବାର୍ ସହିତ ସଂଗ୍ରହାଳୟ, ଆର୍ଟ ଗ୍ୟାଲେରୀ । ଐତିହାସିକ କୀର୍ତ୍ତିରାଜି ସପ୍ତଦଶ ଶତାବ୍ଦୀର ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ ସୌଧମାନ ଶୋଭା ପାଉଥିଲା ।

ଆମେ ନିର୍ଦ୍ଦିଷ୍ଟ ସ୍ଥାନରେ ଗାଡ଼ି ପାର୍କିଂ କରି ମାର୍କେଟ୍ ସ୍କୋୟାରରେ ଚାଲିଚାଲି ବୁଲିଲୁ । ସ୍କୋୟାର ମଝିରେ ପର୍ଯ୍ୟଟକମାନଙ୍କର ଚିତ୍ତବିନୋଦନ ନିମିତ୍ତ ଖୋଲା ଜାଗାଟିଏ ଥିଲା । ପାଖରେ ପାଣିଫୁଆରାରୁ ପାଣି ବାହାରି ସ୍ଥାନର ସୌନ୍ଦର୍ଯ୍ୟକୁ ବୃଦ୍ଧି କରୁଥିଲା । ପାଣିରେ ନାନାପ୍ରକାର ଚଢ଼େଇମାନେ ଗାଧୋଉଥିଲେ । ଚାରିପାଖରେ ପଥର ବେଞ୍ଚ୍ ପଡ଼ିଥିଲା । ଆମେ ଦୁଇଟି ବେଞ୍ଚ୍ ଦଖଲ କରି ବସିଲୁ । ସେତେବେଳକୁ ସମୟ ପାଖାପାଖି ଦୁଇଟା ହୋଇଯାଇଥିଲା । ସେଠାରେ ମଧ୍ୟାହ୍ନଭୋଜନ ଶେଷ କରିବା ପାଇଁ ଚନ୍ଦନ ପ୍ରସ୍ତାବ ଦେଲା ।

ପରେ ଆମେ ପୋଲାଣ୍ଡ ରାଜବଂଶଦ୍ୱାରା ନିର୍ମିତ ଦୁର୍ଗ ଦେଖିବାକୁ ଯାଇଥିଲୁ । ସେଠାରେ ଥିବା ପୁରୁଣା ରାଜପ୍ରସାଦର ସ୍ଥାପତ୍ୟ ଓ ନିର୍ମାଣ କଳା ଆମକୁ ବିମୋହିତ କରିଥିଲା । ଏକ ସମୟରେ ସେଠାରେ ପୋଲାଣ୍ଡର ରାଜାରାଣୀମାନଙ୍କର ସିଂହାସନ ଆରୋହଣ ଉତ୍ସବ ଅନୁଷ୍ଠିତ ହେଉଥିଲା । ସେମାନଙ୍କୁ ସେହି ପରିସ ମଧ୍ୟରେ କବର ମଧ୍ୟ ଦିଆଯାଉଥିଲା । ସେ ସ୍ଥାନଟି ରାଜପରିବାର ପାଇଁ ଆରାଧନାକ୍ଷେତ୍ର ଭାବରେ ପରିଗଣିତ ଥିଲା ।

ପୋଲାଣ୍ଡରୁ ରାଜତନ୍ତ୍ରର ବିଲୋପ ଘଟିଥିଲେ ସୁଦ୍ଧା ସେ ରାଜପ୍ରସାଦର ଗୁରୁତ୍ୱ କମିନଥିଲା । ବାଟରେ ଗଲାବେଳେ ଅନେକ ଗୀର୍ଜା ଆମର ଦୃଷ୍ଟିଗୋଚର ହୋଇଥିଲା । ସେଥିମଧ୍ୟରୁ ପ୍ରଧାନ ଗୀର୍ଜା (କାଥେଡ୍ରାଲ ଚର୍ଚ୍ଚ) ପାଖରେ ଆମେ କିଛି ସମୟ ଅଟକିଥିଲୁ । ଗୀର୍ଜାର କାରୁକାର୍ଯ୍ୟ ଅତି ଚମତ୍କାର ଥିଲା । ସେ ଗୀର୍ଜାରେ ଲାଗିଥିବା ବଡ଼ ଘଣ୍ଟିଟି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା । ୧୫୨୦ ଖ୍ରୀଷ୍ଟାବ୍ଦରେ ନିର୍ମିତ ଛଅଫୁଟ ଗୋଲେଇ ବିଶିଷ୍ଟ ଏହି ଘଣ୍ଟିର ଓଜନ ପ୍ରାୟ ୧୧ଟନ୍ ଥିଲା । ପୋଲାଣ୍ଡର ସେଇ ଘଣ୍ଟିଟି ସବୁଠାରୁ ବଡ଼ ବୋଲି ଶୁଣିଲୁ ।

ଆମେ ଯେତେ ବୁଲୁଥିଲୁ ସବୁ ଜାଗାରେ ଆମକୁ ଆନନ୍ଦ ମିଳୁଥିଲା । ଏକ ସମୟରେ ପୋଲାଣ୍ଡର ରାଜଧାନୀ ଭାବରେ କ୍ରାକୋ ସହର ପ୍ରତିଷ୍ଠା ଥିଲା । ପରବର୍ତ୍ତୀ ସମୟରେ ପୋଲାଣ୍ଡ ଭାଗ ଭାଗ ହୋଇଯିବା ପରେ କ୍ରାକୋ ସହରଟି ଅଷ୍ଟ୍ରିଆର ଶାସକବର୍ଗଙ୍କ ହାତରେ ରହିଥିଲା । ସେହି ସମୟରେ କ୍ରାକୋ ସହରରେ ଅନେକ କୋଠାବାଡ଼ି ନିର୍ମିତ ହୋଇଥିଲା । ପରବର୍ତ୍ତୀ ସମୟରେ ପୋଲାଣ୍ଡର ରାଜଧାନୀ ୱାର୍ସକୁ ଉଠିଯାଇଥିଲେ ମଧ୍ୟ ଆଧ୍ୟାତ୍ମିକନଗର ଭାବରେ କ୍ରାକୋର ଗୁରୁତ୍ୱ କମିନଥିଲା । ୧୯୭୮ ମସିହାରେ ୟୁନେସ୍କୋ ପକ୍ଷରୁ କ୍ରାକୋକୁ 'ବିଶ୍ୱ-ଐତିହ୍ୟ'ର ମର୍ଯ୍ୟାଦା ପ୍ରଦାନ କରାଯାଇଥିଲା ।

କ୍ରାକୋ ସହରରେ ବୁଲିଲା ବେଳେ ବହୁ ଦେଶର ଲୋକ ବୁଲାବୁଲି କରୁଥିବାର ନଜରରେ ପଡ଼ିଥିଲା । ମୁଁ ଭାବୁଥିଲି ଜଣେ ଅଧେ କିଏ ଓଡ଼ିଆ ଲୋକ ଦେଖା ହୋଇଯାଆନ୍ତେ କି ? ଦି'ପଦ କଥାବାର୍ତ୍ତା ହୋଇପାରନ୍ତି । କିନ୍ତୁ ଯୋଉ ଲୋକଙ୍କର ଅଧିକାଂଶ ସମୟ ଖାଇବା ଓ ଶୋଇବାରେ କଟିଯାଏ, ସେମାନଙ୍କୁ ସୁଦୂର କ୍ରାକୋ ସହରରେ କୁଆଡୁ ଦେଖିବାକୁ ମିଳିବ ?

ସହର ଭିତରେ ଗାଡ଼ିରେ ଗଲେ ବି ବିଭିନ୍ନ ସ୍ଥାନରେ ଗାଡ଼ିରୁ ଓହ୍ଲାଇ ଚାଲିଚାଲି ଯିବା ଓ ପୁଣି ଗାଡ଼ିରେ ବସିବା ଭିତରେ ମୁଁ ଥକି ଯାଇଥିଲି । ଆଉ ଯିବାପାଇଁ ଇଚ୍ଛା ହେଉନଥିଲା । କିନ୍ତୁ ଚନ୍ଦନର ଇଚ୍ଛା, ଆମେ ଯେତେ ଜାଗା ଯାଇପାରିବୁ ସେତେ ଭଲ । କାରଣ ସେ ଭଲଭାବରେ ବୁଝିଥିଲା ଯେ, ଆଉଥରେ କ୍ରାକୋ ବୁଲିଯିବା ହୁଏତ ଆମପକ୍ଷରେ ସମ୍ଭବ ହୋଇନପାରେ । ମୁଁ ଦେଖିଲି ଦିନଯାକ ଗାଡ଼ି ଡ୍ରାଇଭ୍ କରି ସେ ମଧ୍ୟ କ୍ଲାନ୍ତ ହୋଇପଡ଼ିଥିଲା । ସେକଥା ସେ ମୁହଁରେ ପ୍ରକାଶ କରୁନଥିଲେ ବି, ତା' ମୁଖମଣ୍ଡଳରୁ ତାହା ବାରିହୋଇ ପଡୁଥିଲା ।

ସନ୍ଧ୍ୟା ପୂର୍ବରୁ ଆମେ ଘରକୁ ଫେରି ଆସିଥିଲୁ । ବୁଲାବୁଲି କରି ଥକି ଯାଇଥିବାରୁ ଖାଇବା ସାଙ୍ଗେସାଙ୍ଗେ ନିଦ ହୋଇଯାଇଥିଲା । ପରଦିନ ଆମର ପୋଲାଣ୍ଡର ରାଜଧାନୀ ୱାର୍ସ ଯିବାର ଥିଲା ।

ୱାର୍ସ ସହରଟି ମୁଖ୍ୟତଃ ତିନିଭାଗରେ ବିଭକ୍ତ ହୋଇଥିଲା । ଆମେ ଯେଉଁଠି ଓହ୍ଲାଇଥିଲୁ ତା ନାଁ ଥିଲା 'ଓଲ୍ଡ ଆଣ୍ଡ୍ ନିଉ ଟାଉନ୍' । ତା'ଛଡା 'ରୟାଲ୍‌ରୁଟ୍' ଏବଂ 'ସିଟି ସେଣ୍ଟର' ନାମରେ ଆଉ ଦୁଇଟି ମୁଖ୍ୟସ୍ଥାନ ଥିଲା । ଏ ତିନୋଟି ମୁଖ୍ୟସ୍ଥାନ ପରସ୍ପର ସହିତ ସଡ଼କପଥରେ ସଂଯୁକ୍ତ ଥିଲା ।

ଓଲ୍ଡଟାଉନ ବୋଲି ଯେଉଁସ୍ଥାନକୁ କୁହାଯାଉଥିଲା, ତାହା ୱାର୍ସର ସର୍ବପୁରାତନ ସହର । ସହରଟି ମଧ୍ୟଯୁଗୀୟ ସ୍ଥାପତ୍ୟରେ ଭରପୂର । ସହରର ଚାରିପାଖରେ ଗଢ଼ାଯାଇଥିବା ମଧ୍ୟଯୁଗୀୟ ପ୍ରାଚୀର ସୁରକ୍ଷିତ ଥିଲା ।

ଓଲ୍ଡଟାଉନ୍‌ର ସବୁଠାରୁ ଆକର୍ଷଣୀୟ ସ୍ଥାନ ଥିଲା ମାର୍କେଟ୍ ସ୍କୋୟାର । ସେଠାରେ ଥିବା ଗୀର୍ଜା ଏବଂ ରାଜପ୍ରାସାଦ ଦେଖିବା ପାଇଁ ପ୍ରତ୍ୟହ ଶତାଧିକ ଲୋକଙ୍କର ସମାଗମ ହେଉଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଏଗୁଡିକ ସବୁ ଭାଙ୍ଗିରୁଜି ନଷ୍ଟ ହୋଇଯାଇଥିଲା । ପରବର୍ତ୍ତୀ କାଳରେ ସେସବୁର ପୁନରୁଦ୍ଧାର କରାଗଲା । ରାସ୍ତାର ଉଭୟପାର୍ଶ୍ୱରେ ଅତ୍ୟାଧୁନିକ ରେଷ୍ଟୁରାଣ୍ଟ, ବାର୍‌ରେ ପର୍ଯ୍ୟଟକମାନଙ୍କର ମନୋରଞ୍ଜନ ପାଇଁ ସବୁପ୍ରକାର ବ୍ୟବସ୍ଥା ଥିଲା ।

ୱାର୍ସର ଓଲ୍ଡଟାଉନ୍ କେବଳ ଯେ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରୁଥିଲା, ତା' ନୁହେଁ, ସନ୍ଧ୍ୟା ପରେ ସେଠାରେ ପ୍ରେମିକପ୍ରେମିକାମାନେ ପରସ୍ପରର ବାହୁବନ୍ଧନରେ ଆବଦ୍ଧ ହୋଇ ଜୀବନକୁ ଉପଭୋଗ କରୁଥିଲେ ।

ୱାର୍ସ ସହରରେ ଅନେକ ଲୋକ ଇଂରାଜୀ ବୁଝୁଥିଲେ । ସେଥିପାଇଁ ଆମର ବିଶେଷ ଅସୁବିଧା ହୋଇନଥିଲା । ୱାର୍ସରେ ଥିବା ଗୀର୍ଜାଗୁଡିକ ପର୍ଯ୍ୟଟକମାନଙ୍କ ମୁଖ୍ୟ ଆକର୍ଷଣ ଥିଲା । ସେଗୁଡ଼ିକ ଦେଖିବା ପାଇଁ ମନରେ ଆଗ୍ରହ ଜନ୍ମିବାରୁ ଆମେ ପାଖରେ ଥିବା ସେଣ୍ଟ ଜନ୍ ଗୀର୍ଜାକୁ ଗଲୁ । ଆଗରୁ କୌଣସି ଗୀର୍ଜା ଭିତରକୁ ଯିବାପାଇଁ ସୁଯୋଗ ଜୁଟିନଥିଲା ।

କାରଣ ଆମଦେଶରେ ଅଣଖ୍ରୀଷ୍ଟିଆନ୍‌ମାନଙ୍କୁ ଗୀର୍ଜା ଭିତରକୁ ଯିବାକୁ ସାଧାରଣ ଭାବେ ସୁଯୋଗ ଦିଆଯାଏ ନାହିଁ । ଏପରିକି ଗୀର୍ଜାର ପ୍ରାର୍ଥନାଗୃହର ଫଟୋଟିଏ ଉଠାଇବା ପାଇଁ ମଧ୍ୟ ଅନୁମତି ମିଳେ ନାହିଁ । ହେଲେ ସେଠାରେ ଥିବା ଗୀର୍ଜାରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ହଜାର ହଜାର ଲୋକଙ୍କ ସମାବେଶ ଆମକୁ ମୁଗ୍ଧ କରିଥିଲା । ସେଣ୍ଟଜନ୍ ଗୀର୍ଜାଟି ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଥିଲା । ପରେ ଅତ୍ୟାଧୁନିକ ନିର୍ମାଣଶୈଳୀରେ ଏହାର ପୁନଃନିର୍ମାଣ କରାଯାଇଥିଲା ।

ସେଣ୍ଟଜନ୍ ଗୀର୍ଜା ବୁଲା ସରିଲା ବେଳକୁ ସମୟ ଗୋଟାଏ ହୋଇଥିଲା । ଚନ୍ଦନ ବ୍ୟସ୍ତ ହୋଇପଡ଼ିଲା । ମୁଁ ତାକୁ ବୁଝାଇ କହିଲି, "ଏପରି ପରିସ୍ଥିତି ଉପୁଜିବ ବୋଲି ଜାଣି ମୁଁ ବିଦେଶଗସ୍ତରେ ଆସିଛି । ଯୋଉଠି ଯାହା ମିଳିବ, ତାକୁ ଖାଇବା ପାଇଁ ମୁଁ ମାନସିକସ୍ତରରେ ପ୍ରସ୍ତୁତ ଅଛି । ମୋ'ପାଇଁ ବ୍ୟସ୍ତ ହେବାର କିଛି ନାହିଁ । ପଟାଟୋ ଚିପ୍ସ, ଫ୍ରୁଟ୍‌ଜୁସ୍ ହୋଇଗଲେ ମୋର ଚଳିଯିବ । ତମେ ସବୁ ଯାହା ଖାଇବା କଥା ଖାଅ ।"

ବୋହୂ ସାଲୋନୀ ଆସି କହିଲା, " ବାବା ! ଏ ରେଷ୍ଟୁରାଣ୍ଟରେ ଗୋଟିଏ ପିଜା କର୍ଣ୍ଣର ଅଛି । ଯଦି ଚାହିଁବେ ମୁଁ ପିଜା ଆପଣଙ୍କ ପାଇଁ ନେଇଆସିବି । ପିଜାରେ କିଛି ଆମିଷ ପଦାର୍ଥ ମିଶିନଥିବା କଥା କହିବାରୁ ମୁଁ ତାକୁ ପିଜା ଆଣିବାକୁ କହିଲି ।

ମଧ୍ୟାହ୍ନଭୋଜନ ପର୍ବ ଶେଷ କରି ଆମେ ୱାର୍ସ ସହର ଭିତରେ ଥିବା ନିଉଟାଉନ୍, ରୟାଲ୍‌ରୁଟ୍, ନ୍ୟାସନାଲ ମ୍ୟୁଜିଅମ୍ ଓ ଶେଷରେ ସିଟିସେଣ୍ଟର ଇତ୍ୟାଦି ସ୍ଥାନ ବୁଲିଲୁ । ସିଟିସେଣ୍ଟରଟି ୱାର୍ସର ଏକ ସାଂସ୍କୃତିକ ଓ ବାଣିଜ୍ୟ କେନ୍ଦ୍ର ଭାବରେ ପ୍ରତିଷ୍ଠା ଅର୍ଜନ କରିଥିଲା । ସିଟିସେଣ୍ଟର ମଧ୍ୟଭାଗରେ ଥିବା 'ଗ୍ରାଣ୍ଡ୍ ଥିଏଟର'ଟି ୟୁରୋପର ଅନ୍ୟତମ ବୃହତ ଥିଏଟର୍ ହଲ୍ ବୋଲି ଆମେ ଜାଣିବାକୁ ପାଇଲୁ । ସହରର ପଶ୍ଚିମପାଖର ଏକାଧିକ ଟାୱାର ଏବଂ ପୂର୍ବପଟରେ ଅନେକ ଐତିହାସିକ କୀର୍ତ୍ତି ସବୁ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରୁଥିଲା ।

ଆମେ ଅପରାହ୍ଣ ପାଞ୍ଚଟାରେ ୱାର୍ସ ସହର ଛାଡ଼ି ଅଷ୍ଟ୍ରୋଭାରେ ରାତି ସାଢ଼େ ନଅଟାରେ ପହଞ୍ଚିଗଲୁ । ବାଟରେ ଗୋଟିଏ ପେଟ୍ରୋଲ ପମ୍ପରେ ଆମକୁ ଅଧଘଣ୍ଟାଏ ବିଶ୍ରାମ ନେବାକୁ ପଡ଼ିଥିଲା । ସେଇ ସମୟରେ ଚନ୍ଦନ ଗାଡ଼ିରେ ତେଲ ପୂରାଇଥିଲା । ଆମେ ସବୁ କିଛି ସ୍ନାକ୍ସ ସଂଗ୍ରହ କରିଥିଲୁ । ଦୁଇଦିନର ବୁଲାବୁଲି କରି ଫେରିବା ପରେ ସାଲୋନୀ ରାତିରେ କିଛି ଖାଇବା ପ୍ରସ୍ତୁତ କରିବା ସପକ୍ଷରେ ମୁଁ ନଥିଲି । କିନ୍ତୁ ସେ ନଛୋଡ଼ବନ୍ଦା । ଅଳ୍ପସମୟ ମଧ୍ୟରେ ଭାତ, ଡାଲି, ସାଦା ତରକାରି, ଭଜା ସବୁ ତିଆରି କରିଦେଲା । ଆଉ କାହାର କିଛି ହେଉ ବା ନହେଉ, ମୋ ପାଇଁ ସେ ରାତିର ଖାଇବା ଅତି ତୃପ୍ତିକର ଥିଲା । ସାଧାରଣ ଭାବରେ ରାତିରେ ମୁଁ ଭାତ ନଖାଉଥିଲେ ବି ସେଦିନ ରାତିରେ ଭାତ ଖାଇ ମୁଁ ସନ୍ତୋଷ ଲାଭ କରିଥିଲି ।

ଦୁଇଦିନ କାଳ ବୁଲାବୁଲିରେ ମୁଁ ଥକିଯାଇଥିଲି । ରାତ୍ରିରେ ଉତ୍ତମ ଭୋଜନ ପରେ ନିଘୋଡ଼ ନିଦରେ ଶୋଇପଡ଼ିଲି । ସକାଳୁ ଉଠିଲାବେଳକୁ ଆଠଟା ବାଜିଯାଇଥିଲା । ଚନ୍ଦନ କେତେବେଳୁ ନିତ୍ୟକର୍ମ ସାରି ଅଫିସ୍ ଚାଲିଯାଇଥିଲା । ପ୍ରମଦା ଓ ସାଲୋନୀ ଡାଇନିଂ ଟେବୁଲ୍‌ରେ ବସି ଚା ପିଉଥିଲେ । ନାତୁଣୀ ଏଲିନା ଟି.ଭି ପାଖରେ ବସି କାର୍ଟୁନ୍ ଦେଖିବାରେ ମଜ୍ଜିଯାଇଥିଲା । ମୁଁ ଶେଯରୁ ଉଠି ନିତ୍ୟକର୍ମ ସାରି ସେମାନଙ୍କ ସହିତ ଯୋଗଦେଲି ।

ସନ୍ଧ୍ୟାରେ ଚନ୍ଦନ ଫେରିବା ପରେ ଏକାଠି ବସି ଗପ ଆରମ୍ଭ ହୋଇଗଲା । ଆମର ଭାରତ ଫେରିବାକୁ ଆଉ ମାତ୍ର ଚାରିଦିନ ବାକି ଥିଲା । ଶୁକ୍ରବାର ସକାଳେ ଭିଏନାରୁ ବିମାନରେ ଦିଲ୍ଲୀ ଆସିବା ପାଇଁ ଆଗରୁ ଟିକଟ୍ ହୋଇଥିଲା ।

ଚନ୍ଦନ ପ୍ରସ୍ତାବ ଦେଲା, "ଆଉ ସପ୍ତାହେ ରହିଗଲେ ହୁଅନ୍ତା ନାହିଁ ? ଦେଖୁଦେଖୁ ମାସେ ସମୟ କୁଆଡ଼େ ଚାଲିଗଲା, ଜଣା ପଡ଼ିଲା ନାହିଁ । ତମେ ହଁ କଲେ, ମୁଁ ଟିକେଟ୍ ବଦଳାଇଦେବି ।" ପିଲାଙ୍କୁ ଛାଡ଼ିଆସିବା ପାଇଁ ଆମର ମଧ୍ୟ ଆନ୍ତରିକ ଇଚ୍ଛା ନଥିଲା । କିନ୍ତୁ କ'ଣ କରାଯିବ, ପରିସ୍ଥିତି ସହିତ ଖାପଖୁଆଇବାକୁ ତ ପଡ଼ିବ । ମୁଁ ତାଙ୍କୁ କହିଲି, "ଦେଖ ଆଉ କେଇମାସ ପରେ ତମେ ତ ଓଡ଼ିଶା ଯିବ, ଆଉ ଆମକୁ କାହିଁକି ମାୟାରେ ପକାଉଛ ? ଭୁବନେଶ୍ୱରରେ ଆମ ଛୋଟ ସଂସାରକୁ ଆମେ ଅନ୍ୟ ହାତରେ ଛାଡ଼ିଦେଇ ଆସିଛୁ । ସେଠାରେ କ'ଣ ହେଉଥିବ କିଏ ଜାଣେ ? ଆମ କଥାକୁ ଚନ୍ଦନ ଓ ସାଲୋନୀ ମାନିଗଲେ । ଆମେ ଯେଉଁଦିନ ଫେରିବୁ ବୋଲି ଟିକଟ୍ ହୋଇଥିଲା, ସେଦିନ ଫେରିଆସିବୁ ବୋଲି ସ୍ଥିର ହେଲା ।

ଭିଏନା ବନ୍ଦରରୁ ଅପରାହ୍ନ ଗୋଟାଏ ବେଳେ ଦିଲ୍ଲୀକୁ ବିମାନ ଛାଡୁଥିଲା । କ୍ରାକୋରୁ ଭିଏନାକୁ ଘଣ୍ଟାକର ଉଡାଣ । ସେଥିପାଇଁ ଆମେ ସକାଳେ ଭଲ ଭାବରେ ଜଳଖିଆ ଖାଇ ଦଶଟା ବେଳେ ଘର ଛାଡିଲୁ ।

ଭିଏନାରେ ବିମାନ ଛାଡ଼ିବାକୁ କିଛି ସମୟ ବାକିଥିଲା । ଚନ୍ଦନ ବିମାନ ଛାଡ଼ିବା ପର୍ଯ୍ୟନ୍ତ ରହିବାକୁ କହୁଥିଲା । ଆମେ ତାକୁ ବୁଝାବୁଝି କରି ଫେରାଇ ଦେଲୁ । ବାଟରେ ଖାଇବା ପରେ ସାଲୋନୀ ଆମ ପାଇଁ ପରଟା ଓ ଭଜା ପ୍ୟାକିଂ କରି ଦେଇଥିଲା । ଆମେ ଖାଇକରି ସେତିକି ଶେଷକଲୁ ।

ସ୍ଥାନୀୟ ସମୟ ଠିକ୍ ଗୋଟାଏ ବେଳେ ଲୁଫ୍‌ଥାନ୍‌ସା ବିମାନଟି ଭିଏନା ବିମାନ ବନ୍ଦରରୁ ଉଡ଼ାଣ ଆରମ୍ଭ କଲା । ସେତେବେଳକୁ ଭାରତୀୟ ସମୟ ସାଢ଼େ ପାଞ୍ଚଟା ହୋଇଥିଲା । ମୁଁ ହିସାବ କରି ଦେଖିଲି, ଇନ୍ଦିରାଗାନ୍ଧୀ ଆନ୍ତର୍ଜାତିକ ବିମାନ ବନ୍ଦରରେ ପହଞ୍ଚିଲାବେଳକୁ ତାରିଖ ବଦଳିଯାଇଥିବ । ସେଠାରେ କଷ୍ଟମ କ୍ଲିଅରାନ୍ସ ପାସ୍‌ପୋର୍ଟ ତନଖି ଇତ୍ୟାଦି କାମସାରି ବାହାରିଲା ବେଳକୁ ରାତି ଦୁଇଟାରୁ କମ୍ ହେବନାହିଁ । ସେଠାରୁ ଘରକୁ ଅତି କମ୍‌ରେ ଘଣ୍ଟାଏ ସମୟ ଲାଗିବ । ତା'ର ଅର୍ଥ ସେଦିନ ରାତିରେ ଆଉ ଶୋଇହେବ ନାହିଁ । ଆମ ପାଇଁ ଅନ୍ୟମାନଙ୍କୁ

ମଧ୍ୟ ଉଜାଗର ରହିବାକୁ ପଡ଼ିବ । କିନ୍ତୁ ସମୟର ଗତିକୁ ବଦଳାଇବା ଆମ ସାଧ୍ୟରେ ନଥିବାରୁ ଚୁପ୍ ହୋଇ ବସିରହିବା ଛଡ଼ା ଅନ୍ୟ ଉପାୟ ନଥିଲା ।

ବିମାନ ଛାଡ଼ିବା ପରେ ପରିଚାରିକାମାନେ ଯାତ୍ରୀମାନଙ୍କ ସେବାରେ ଲାଗିପଡ଼ିଲେ । ପ୍ରଥମେ ବିଭିନ୍ନ ପ୍ରକାର ପାନୀୟ ଦିଆଗଲା । ଆମେ ଅରେଞ୍ଜ୍ ଜୁସ୍ ନେଲୁ । ପାଖରେ ବସିଥିବା ଅଧିକାଂଶ ଯାତ୍ରୀ କିନ୍ତୁ ହ୍ୱିସ୍କି ଗ୍ଲାସ୍ ଧରିଲେ । ମୁଁ ଲକ୍ଷ୍ୟ କରୁଥିଲି, ବିମାନ ବନ୍ଦରରେ ମଦ୍ୟପାନ କରି ସେମାନେ ଯେପରି ଚରମ ତୃପ୍ତି ଲାଭ କରୁଥିଲେ । ମଦ ପାଇଁ ସେମାନଙ୍କର ବାରମ୍ବାର ଅନୁରୋଧରେ ପରିଚାରିକାମାନେ ଅସ୍ତବ୍ୟସ୍ତ ହୋଇଯାଉଥିଲେ ।

ବିମାନରେ ଅଧିକାଂଶ ଭାରତୀୟ ଯାତ୍ରୀ ଥିବାରୁ ମଧ୍ୟାହ୍ନଭୋଜନରେ ଆମକୁ ଭାରତୀୟ ଖାଦ୍ୟ ପରିବେଷଣ କରାଯାଇଥିଲା । ବିମାନ ଚଢ଼ିବା ପୂର୍ବରୁ ପ୍ରାତଃଭୋଜନ ନାଁରେ ଆମେ ଯାହା ଖାଇଥିଲୁ, ସେଥିରେ ଆମର ଏକପ୍ରକାର ମଧ୍ୟାହ୍ନଭୋଜନ କାମ ଚଳିଯାଇଥିଲା । ତେବେ ଅନ୍ୟମାନଙ୍କ ଖାଇବା ଦେଖି ଆମେ ଦୁଇଟି ପ୍ୟାକେଟ୍ ନେଲୁ । ସେଥିରେ ଡେରାଡୁନ୍ ଚାଉଳରେ ଫ୍ରାଏଡ୍ ରାଇସ୍ ଓ ପନିର ,ବଟର୍ ମସଲା ତରକାରି ସାଙ୍ଗକୁ ଆଉ ଗୋଟିଏ ସବ୍‌ଜି ଥିଲା । ଆମେ ସେଥିରୁ ଅଳ୍ପ ଖାଇ କିଛି ସମୟ ପାଇଁ ଶୋଇଯାଇଥିଲୁ ।

ବିମାନ ଅବତରଣର ପୂର୍ବ ସୂଚନା ଦେଉଥିବା ପରିଚାରିକାଙ୍କ ଘୋଷଣାରେ ନିଦ ଭାଙ୍ଗିଗଲା । ବିମାନ ଅବତରଣ ପୂର୍ବରୁ ସେମାନେ ଆମକୁ ଗୋଟିଏ ଗୋଟିଏ ଫର୍ମ ଦେଇ ତାକୁ ପୂରଣ କରି ନିଜ ନିଜ ପାଖରେ ରଖିବାକୁ ଅନୁରୋଧ କଲେ । ଦିଲ୍ଲୀ ବିମାନ ବନ୍ଦର ବାହାରକୁ ଯିବାପୂର୍ବରୁ କଷ୍ଟମ କ୍ଲିଅରାନ୍ସ ସମୟରେ ସେ ଫର୍ମଟି ଦାଖଲ କରିବା ପାଇଁ ସେମାନେ ଆମକୁ ପରାମର୍ଶ ଦେଇଥିଲେ । ତା' ପୂର୍ବରୁ ସେମାନେ ରାତ୍ରିଭୋଜନ ଦେଇସାରିଥିଲେ ।

ରାତି ଗୋଟାଏ ବେଳେ ଆମ ବିମାନ ଇନ୍ଦିରା ଗାନ୍ଧୀ ଆନ୍ତର୍ଜାତିକ ବିମାନ ବନ୍ଦରରେ ଭୂମି ସ୍ପର୍ଶ କଲା । ଓହ୍ଲାଇବା ପାଇଁ ଯାତ୍ରୀମାନେ ପ୍ରସ୍ତୁତ ହୋଇଗଲେ ।

କିନ୍ତୁ ଇଏ କ'ଣ । ବିମାନ ଭିତରେ ଏତେ କୋଳାହଳ ଓ ଠେଲାପେଲା କାହିଁକି ? ଆମେ ତ ଏତେ ଜାଗା ବୁଲିଲୁ, କୋଉଠି ତ ଏପରି ଦୃଶ୍ୟ ଦେଖିବାକୁ ମିଳିନଥିଲା ? ପଛରେ ଥିବା ଯାତ୍ରୀ ଅନ୍ୟକୁ ଠେଲି ଆଗକୁ ଯବାପାଇଁ ଉଦ୍ୟମ କରିବା ଫଳରେ ବିଶୃଙ୍ଖଳା ସୃଷ୍ଟି ହୋଇଥିଲା । ସାମାନ୍ୟ କେଇ ମିନିଟ୍ ଅପେକ୍ଷା କରିବା ପାଇଁ କାହାରି ଧୈର୍ଯ୍ୟ ନଥିଲା । ଯାହାହେଉ, ଆମେ କିଛି ସମୟ ଅପେକ୍ଷା କରି ବିମାନରୁ ବାହାରିଲୁ । ଟନେଲ୍ ମୁହଁରେ ହ୍ୱିଲ୍ ଚେୟାର୍ ଧରି ପୋର୍ଟରମାନେ ଅପେକ୍ଷା କରିଥିଲେ । ମୁଁ ସେଥିରୁ ଗୋଟିକରେ ପ୍ରମଦାକୁ ବସାଇ ବାହାରକୁ ଆସିଲି ।

ବାହାରେ କଷ୍ଟମ କ୍ଲିଅରାନ୍ସ ପାଇଁ ସେତେବେଳକୁ ଲମ୍ବା ଧାଡ଼ି ଲାଗିଯାଇଥିଲା । ମୁଁ ଭାବିଲି, ବୋଧହୁଏ ସେଠାରେ କାମ ସାରିବାକୁ ଘଣ୍ଟାଏରୁ ଅଧିକ ସମୟ ଲାଗିଯିବ । କିନ୍ତୁ

ହୁଇଲ୍ ଚେୟାର ନେଇ ଯାଉଥିବା ପୋର୍ଟର ଆମକୁ ସାହାଯ୍ୟ କଲା । ସେ କହିଲା, "ଆପଣମାନଙ୍କର ଲାଇନ୍‌ରେ ଛିଡ଼ାହେବାର ଆବଶ୍ୟକତା ନାହିଁ । ଶାରୀରିକ ଭିନ୍ନକ୍ଷମ ଲୋକଙ୍କ ପାଇଁ ପୃଥକ୍ କାଉଣ୍ଟର ରହିଛି । ସେଠାରେ ଶୀଘ୍ର କାମ ସରିଯିବ । ଆପଣ ମୋ ପଛରେ ଆସନ୍ତୁ ।"

ଦିଲ୍ଲୀରେ ଦୁଇଦିନ ବିଶ୍ରାମ ପରେ ଭୁବନେଶ୍ୱର ଫେରିବା ପାଇଁ ଆମର କାର୍ଯ୍ୟକ୍ରମ ସ୍ଥିର ହୋଇଗଲା ଓ ସେହି ଅନୁଯାୟୀ ଦିଲ୍ଲୀରୁ ଭୁବନେଶ୍ୱରକୁ ବିମାନ ଟିକେଟ୍ କଟାଯାଇଥିଲା । ରାତିଅନିଦ୍ରା ଯୋଗୁ ସକାଳୁ ଉଠୁଉଠୁ ନଅଟ ପାଖାପାଖି ହୋଇଯାଇଥିଲା । ନିତ୍ୟକର୍ମ ସାରି ବ୍ରେକ୍‌ଫାଷ୍ଟ ଟେବୁଲ୍‌କୁ ଆସିବା ପରେ ଟପ ଆରମ୍ଭ ହୋଇଗଲା । ଦୁଇଦିନର ପ୍ରୋଗ୍ରାମ କ'ଣ ହେବ, କୁଆଡ଼େ କୁଆଡ଼େ ଯାଇହେବ, ସେ ବିଷୟରେ ଚର୍ଚ୍ଚା ଚାଲିଲା । କଥା ହେଲା, ସନ୍ଧ୍ୟାରେ ଦିଲ୍ଲୀ ହାଟ, ରବିବାର ସକାଳେ ନଏଡ଼ାର 'ମଲ୍' ଓ ସନ୍ଧ୍ୟାରେ ସରୋଜିନୀ ମାର୍କେଟ୍, ରାତିରେ ସାଉଥ୍ ଏକ୍‌ଟେନ୍‌ସନ୍‌ରେ ଥିବା ଚାଇନିଜ୍ ରେଷ୍ଟୁରାଣ୍ଟରେ ଡିନର ଓ ରେଷ୍ଟ୍ । ପରଦିନ ସକାଳେ ଆଠଟାରେ ଦିଲ୍ଲୀ ବିମାନବନ୍ଦର ଅଭିମୁଖେ ଯାତ୍ରା ।

ସୋମବାର ସକାଳେ ଏଗାରଟାବେଳେ ଦିଲ୍ଲୀରୁ ଭୁବନେଶ୍ୱରକୁ ଇଣ୍ଡିଆନ୍ ଏୟାର୍‌ଲାଇନ୍ସ ବିମାନ ଛାଡ଼ିବାକୁ ଥିବାରୁ ଆମକୁ ସକାଳୁ ପ୍ରସ୍ତୁତ ହେବାକୁ ପଡ଼ିଲା । ନିୟମ ଦୃଷ୍ଟିରୁ ବିମାନ ଛାଡ଼ିବାର ଦୁଇଘଣ୍ଟା ପୂର୍ବରୁ ଲଗେଜ୍ ଚେକିଂ ବ୍ୟବସ୍ଥା ଥିବାରୁ ଆମେ ଆଠଟାବେଳେ ଘର ଛାଡ଼ିଲୁ ।

ଆମର ଲଗେଜ୍ କିଛି ଅଧିକ ଥିଲା । କାଳେ ବିମାନବନ୍ଦର ଅଧିକାରୀମାନେ ଆପତ୍ତି ଉଠାଇବେ, ସେଥିପାଇଁ ମନରେ ଶଙ୍କା ଥିଲା । କିନ୍ତୁ ସୌଭାଗ୍ୟକୁ ସେଦିନ ସକାଳେ ଓଡ଼ିଶା କ୍ୟାଡରର ଦୁଇଜଣ ଆଇ.ଏ.ଏସ୍ ଅଫିସର ଦିଲ୍ଲୀରୁ ଭୁବନେଶ୍ୱର ଫେରୁଥିଲେ । ତାଙ୍କର ଖୁବ୍ କମ୍ ଓଜନର ବ୍ୟାଗେଜ୍ ଥିଲା । ତାଙ୍କୁ ଛାଡ଼ିବା ପାଇଁ ଦିଲ୍ଲୀରେ ଥିବା ଓଡ଼ିଶାଭବନର ଜଣେ ଅଫିସର୍ ବିମାନବନ୍ଦର ଆସିଥିଲେ । ସେ ମୋର ଜଣାଶୁଣା ଥିଲେ । ମୁଁ ତାଙ୍କୁ ଆମର ଅଧିକ ଲଗେଜ୍ ଥିବାକଥା କହିଲି । ଦୁଇଜଣ ଅଫିସରଙ୍କ ଲଗେଜ୍ ସହିତ ଆମ ଲଗେଜ୍ ମିଶିଯିବାରୁ ଆଉ ସମସ୍ୟା ରହିଲା ନାହିଁ । ଆମେ ସେ ଅଫିସରଙ୍କୁ କୃତଜ୍ଞତା ଜଣାଇ ସିକ୍ୟୁରିଟି ଚେକିଂ ପାଇଁ ଭିତରେ ପଶିଲୁ ।

ଭୁବନେଶ୍ୱର ବିମାନବନ୍ଦରରେ ଲଗେଜ୍ ସଂଗ୍ରହ କରିବ ସବୁଠାରୁ କଷ୍ଟଦାୟକ ବ୍ୟାପାର । ମନ୍ତ୍ରୀ, ଯନ୍ତ୍ରୀ, ବଡ଼ ପ୍ରଶାସକମାନଙ୍କର ଲଗେଜ୍ ନେବାପାଇଁ ସିନା ସରକାରୀ ତହବିଲ୍‌ରୁ ଦରମା ପାଇ ଲୋକେ ଆସିଥାନ୍ତି, ହେଲେ ସାଧାରଣ ଲୋକଙ୍କୁ ଅଧଘଣ୍ଟାକାଳ ଅପେକ୍ଷା କରିବାକୁ ପଡ଼ିଲା ।

ଯାହାହେଉ, କନ୍‌ଭେୟର୍ ବେଲ୍ଟରୁ ବ୍ୟାଗ୍ ଦୁଇଟି ଆଣି ଆମେ ବାହାରକୁ ଆସିଲୁ । ବାହାରେ ସେଇ ପୁରୁଣା ଦୃଶ୍ୟ । ପାସେଞ୍ଜର ନେବା ପାଇଁ ପୁରୁଣା ଆମ୍ବାସାଡାର୍ ଗାଡ଼ି ଆଣିଥିବା କିଛି ଟ୍ୟାକ୍ସି ଡ୍ରାଇଭରଙ୍କ ଭିତରେ କଳିତକରାଳ । ଦୂରରାସ୍ତା ଯିବାପାଇଁ ସେମାନଙ୍କ ଭିତରେ ପ୍ରତିଯୋଗିତା । କିଛି ସମୟ ଅପେକ୍ଷା କଲାପରେ ଆମେ ଗୋଟିଏ ଟ୍ୟାକ୍ସି ଧରି ଘରକୁ ଫେରିଲୁ । ଘର ଯେତିକି ପାଖେଇଥିଲା, ଆମର ଭ୍ରମଣର ଅନୁଭୂତି ସେତିକି ବିସ୍ମୃତିଗର୍ଭକୁ ଚାଲିଯାଉଥିଲା ଓ ଘରର ଦୃଶ୍ୟ ଆଖିଆଗରେ ଭାସିଉଠୁଥିଲା ।

# ଯାତ୍ରା ଦେଖା କଦଳୀ ବିକା

ୟୁରୋପ ମହାଦେଶର ଅଧିକାଂଶ ରାଷ୍ଟ୍ର ବିଭିନ୍ନ ପର୍ଯ୍ୟାୟରେ ବୁଲାବୁଲି କରିଥିଲି । କିନ୍ତୁ ଯୁକ୍ତରାଷ୍ଟ୍ର ଆମେରିକା ଯାଇ ନଥିବାରୁ ବିଦେଶ ଭ୍ରମଣ ଅଧୁରା ଲାଗୁଥିଲା । ଜର୍ମାନୀର ବର୍ଲିନ ସହରରେ ବୁଲିଲା ବେଳେ ମୁଁ ରାଜେନ୍ଦ୍ରଭାଇଙ୍କୁ ମୋ ମନର ଅଭିଳାଷ ଜଣାଇଥିଲି । ଆମେରିକା ଯିବା ପାଇଁ ସେ ବ୍ୟବସ୍ଥା କରିବେ ବୋଲି ମତେ ପ୍ରତିଶ୍ରୁତି ଦେଇଥିଲେ ।

ବିଦେଶ ଗସ୍ତରୁ ଫେରି ସଂସାର ଜଞ୍ଜାଳ ଭିତରେ ଆମେରିକା ଯିବା କଥା ମୁଁ ଏକ ପ୍ରକାର ଭୁଲିଯାଇଥିଲି । ଅତୀତରେ ଆମେରିକା ଯିବା ପାଇଁ ଏକାଧିକ ସୁଯୋଗ ମିଳିଥିଲା । କିନ୍ତୁ ମୁଁ ସେସବୁର ସଦ୍‌ବିନିଯୋଗ କରିପାରିନଥିଲି ।

ଆମ ପରିବାରର ଅନ୍ୟୁନ ଦଶ ଜଣ ଆମେରିକାର ବିଭିନ୍ନ ସ୍ଥାନରେ ଉଚ୍ଚ ପଦପଦବୀରେ ଅବସ୍ଥାପିତ । ଆମ ପଡ଼ୋଶୀ ଚାଷୀଖଣ୍ଡ ଗ୍ରାମର ବିଶିଷ୍ଟ ପଶୁ ଚିକିତ୍ସାବିତ୍ ଡକ୍ଟର କୃଷ୍ଣମୋହନ ଦାସ ପଚାଶ ବର୍ଷରୁ ଅଧିକ କାଳ ଧରି ଆମେରିକାରେ ବସବାସ କରୁଥିଲେ । ମୋର କଲେଜ ବନ୍ଧୁ ଡକ୍ଟର ଦିଗମ୍ବର ମିଶ୍ର ଚାରିଦଶନ୍ଧି ହେଲା ଆମେରିକାରେ ଅଧ୍ୟାପନାରତ ଅଛନ୍ତି ।

ଏମାନଙ୍କ ପାଖରୁ ଆମେରିକା ଯିବା ପାଇଁ ଆମନ୍ତ୍ରଣ ମିଳିଥିଲା । ଆମେରିକାର ଓଡ଼ିଆ ସୋସାଇଟି(ଓଶା) ପକ୍ଷରୁ ଗତ ୨୦୦୪ ମସିହାରେ ୩୪ତମ ଅଧିବେଶନରେ ଅତିଥି ଭାବରେ ଯୋଗଦେବା ପାଇଁ ଆନୁଷ୍ଠାନିକ ନିମନ୍ତ୍ରଣ ମିଳିଥିଲା । କିନ୍ତୁ କୌଣସି ନା କୌଣସି କାରଣରୁ ଆମେରିକା ଯିବା ସମ୍ଭବ ହୋଇପାରି ନଥିଲା । ସମୟ ଅତିବାହିତ ହେବା ସହିତ ଆମେରିକା ଯିବାର ନିଶା ମନରୁ ଓହ୍ଲାଇ ଯାଇଥିଲା ।

୨୦୦୮ ମସିହା ମାର୍ଚ୍ଚ ମାସ ୨୭ ତାରିଖ । ସେଦିନ ସନ୍ଧ୍ୟାରେ ଘରେ ବସିଥିଲି । ହଠାତ୍ ଫୋନ୍ ବାଜି ଉଠିଲା । ସେପଟୁ ଶୁଣାଗଲା, "ମୁଁ ରାଜେନ୍ଦ୍ର କହୁଛି, ତମର ଆମେରିକା ବୁଲିଯିବା ପାଇଁ ଠିକ୍ ହୋଇଯାଇଛି । ଆସନ୍ତା ଜୁଲାଇ ଚାରି ତାରିଖରେ କାନାଡ଼ାର ଟରେଣ୍ଟୋରେ

ହେବାକୁ ଥିବା ଓଶାର ୩୯ତମ ଅଧିବେଶନରେ ତମେ ଜଣେ ନିମନ୍ତ୍ରିତ ଅତିଥି ଭାବେ ଯୋଗଦେବ।"

ରାଜେନ୍ଦ୍ରଭାଇ ଫୋନ କରିବାର ପରଦିନ 'ଓଶା' ସମ୍ପାଦକ ଡକ୍ଟର ଗଗନ ବିହାରୀ ପାଣିଗ୍ରାହୀଙ୍କ ଠାରୁ ଗୋଟିଏ ଇ-ମେଲ୍ ପାଇଲି ।

ସେ ଲେଖିଥିଲେ, 'ଶ୍ରଦ୍ଧେୟ ବସନ୍ତବାବୁ, ଆମେରିକାରେ ଥିବା ଓଡ଼ିଶା ସୋସାଇଟି(ଓଶା) ତା"ର ୩୯ତମ ଅଧିବେଶନ ଟରଣ୍ଟୋଠାରେ ଆସନ୍ତା ଜୁଲାଇ ୩ ତାରିଖ ଠାରୁ ୫ ତାରିଖ ପର୍ଯ୍ୟନ୍ତ ପାଳନ କରିବାକୁ ଯାଉଛି । ଏଥର ଅଧିବେଶନର ମୁଖ୍ୟ ଆଲୋଚ୍ୟ ବିଷୟ ରହିଛି ଓଡ଼ିଶା : ଆମ ମାଟି ଓ ଆମ ମଣିଷ । ଏହି ଉଦ୍ଦେଶ୍ୟରେ ଆମେ ଓଡ଼ିଶାର ଉନ୍ନୟନ ଉପରେ କେତେକ ଆଲୋଚନାଚକ୍ରର ଆୟୋଜନ କରୁଛୁ । ମୁଁ ଅତ୍ୟନ୍ତ ଆନନ୍ଦର ସହିତ ଆପଣଙ୍କୁ ଜଣାଉଛି ଯେ, ଅଧିବେଶନର ଆଲୋଚନାଚକ୍ର କମିଟି ଆପଣଙ୍କୁ ଏହି ଅଧିବେଶନରେ ଜଣେ ଅତିଥି ଭାବରେ ଯୋଗଦେବା ପାଇଁ ନିମନ୍ତ୍ରଣ କରିବା ପାଇଁ ନିଷ୍ପତ୍ତି କରିଛନ୍ତି । ଆପଣ ସେଥିରେ ଯୋଗଦେଲେ ଆମ୍ଭେମାନେ ପ୍ରୀତ ହେବୁ । ଦୟାପୂର୍ବକ ଆପଣଙ୍କ ବକ୍ତବ୍ୟର ସାରାଂଶ ଆଲୋଚନାଚକ୍ର ଦାୟିତ୍ୱରେ ଥିବା ଶ୍ରୀ ପରାଶର ମିଶ୍ରଙ୍କ ପାଖକୁ ପଠାଇବାକୁ ଅନୁରୋଧ ।"

ଧନ୍ୟବାଦ ସହ
ଆପଣଙ୍କର ଶ୍ରଦ୍ଧେୟ
ଗଗନ ବିହାରୀ ପାଣିଗ୍ରାହୀ
(ଓଶା ଅଧିବେଶନ ଆବାହକ)

ତାଙ୍କ ପରାମର୍ଶକ୍ରମେ ମୁଁ ପରାଶର ମିଶ୍ରଙ୍କ ପାଖକୁ ମେଲ୍ ପଠାଇ ଲେଖିଲି -

ଶ୍ରଦ୍ଧେୟ ପରାଶର ବାବୁ,

'ଓଶା'ର ୩୯ତମ ଅଧିବେଶନରେ ଯୋଗଦେବା ପାଇଁ ମତେ ଆମନ୍ତ୍ରଣ କରିଥିବାରୁ ମୁଁ ଆପଣଙ୍କୁ ଓ ଅନ୍ୟ ବନ୍ଧୁମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । ଅଧିବେଶନରେ ଆଲୋଚନା ପାଇଁ ଆପଣ ବ୍ୟାପକ ବିଷୟବସ୍ତୁ ରଖିଛନ୍ତି । ମୁଁ କେଉଁ ବିଷୟରେ କହିବି, ଆପଣ ସେ ସମ୍ପର୍କରେ ସୂଚନା ପ୍ରଦାନ କଲେ ଉପକୃତ ହେବି । ସଶ୍ରଦ୍ଧ ପ୍ରଣାମ ସହ

-ବସନ୍ତ ଦାସ

ତାଙ୍କର ଉତ୍ତର ଥିଲା, "ଶ୍ରଦ୍ଧେୟ ବସନ୍ତ ବାବୁ, ଆମେ ଓଡ଼ିଶାର ଉନ୍ନୟନ କାର୍ଯ୍ୟକ୍ରମ ଉପରେ ଆଲୋଚନା ପାଇଁ ଗୁରୁତ୍ୱ ଦେଉଛୁ । ଆପଣ 'ଓଡ଼ିଶାର ଶିକ୍ଷା ସ୍ଥିତି' ସମ୍ପର୍କରେ ଆପଣଙ୍କ ବକ୍ତବ୍ୟ ଉପସ୍ଥାପନା କରିପାରନ୍ତି । ଧନ୍ୟବାଦ ସହ ।"

-ପରାଶର ମିଶ୍ର

ଏହିପରି ଭାବରେ ପତ୍ରାଳାପ ଚାଲିଥିଲା ବେଳେ ମନରେ ପୁଣି ଦ୍ୱନ୍ଦ୍ୱ ସୃଷ୍ଟି ହେଲା । ଯିବି କି ନଯିବି । ଏକ ସପ୍ତାହବ୍ୟାପୀ ଏହି ମାନସିକ ଦ୍ୱନ୍ଦ୍ୱ ମତେ ଭାରାକ୍ରାନ୍ତ କରିଥିଲା ।

ଦିନେ ସନ୍ଧ୍ୟାରେ ଗୋଟିଏ ଅନ୍ତର୍ଜାତୀୟ ଟେଲିଫୋନ କଲ୍ ଆସିଲା । ମୁଁ ଖୁସିରେ ଉଠାଇବା ମାତ୍ରେ ସେପଟୁ ରାଜେନ୍ଦ୍ରଭାଇ କହିଲେ, "କଣ କାନାଡ଼ା ଭିସା ପାଇଁ ଆପ୍ଲାଇ କଲଣି ? ତମ ହାତରେ କମ୍ ସମୟ ଅଛି । ଚାହୁଁଚାହୁଁ ଚାଲିଯିବ । ପଛରେ ହୁଏତ ହଇରାଣ ହୋଇପାର । ଶୀଘ୍ର ଭିସା ପାଇଁ କାଗଜପତ୍ର ପଠାଇଦିଅ ।"

କିଛିଦିନ ପରେ ଦିନେ ସନ୍ଧ୍ୟାରେ ଘରେ ବସି ଟିଭି ସିରିଏଲ ଦେଖୁଥିବା ବେଳେ ରାଜେନ୍ଦ୍ରଭାଇ ଟେଲିଫୋନ କରି କହିଲେ, "ତମର କାନାଡ଼ା ଓ ଆମେରିକା ଗସ୍ତ କାର୍ଯ୍ୟକ୍ରମ ସ୍ଥିର ହୋଇସାରିଛି । ବାଗଲପୁରର ଡକ୍ଟର ମନୋରଞ୍ଜନ ପଟ୍ଟନାୟକ ତମର କାନାଡ଼ାରେ ରହିବାର ବ୍ୟବସ୍ଥା କରିଛନ୍ତି । ତମର ବନ୍ଧୁ ପ୍ରଫେସର ଦିଗମ୍ବର ମିଶ୍ର, ଆମେରିକାରେ ତିନି ସପ୍ତାହ ଭ୍ରମଣ ସମୟରେ ତମେ କାହା କାହା ଘରେ ରହିବ, କାହା ସାଙ୍ଗରେ କୁଆଡ଼େ କୁଆଡ଼େ ଯିବ, ତମକୁ ବିମାନ ବନ୍ଦରରୁ କିଏ ଆସି ନେବ ଓ କିଏ ଆଣି ଛାଡ଼ିବ ସେସବୁ ବିଷୟ ଠିକ୍ କରିସାରିଛନ୍ତି । ଓଡ଼ିଶାର ରାଜ୍ୟପାଳଙ୍କ ଆମେରିକା ଗସ୍ତ କାର୍ଯ୍ୟସୂଚୀ ଭଳି ତମର ଗସ୍ତ କାର୍ଯ୍ୟକ୍ରମ ସବୁ ପ୍ରସ୍ତୁତ କରାଯାଇଛି । ମୁଁ ତିନି ଚାରିଦିନ ଅଛି, ଦେଖାହେଲେ ସବୁ କଥା କହିବି ।"

ରାଜେନ୍ଦ୍ରଭାଇଙ୍କ ଟେଲିଫୋନ ମୋର ମନର ଦ୍ୱନ୍ଦ୍ୱକୁ ଅନେକ ପରିମାଣରେ କମାଇ ଦେଲା । 'ଓଶା' ଅଧିବେଶନରେ ଯୋଗ ଦେବା ପାଇଁ କାନାଡ଼ା ଓ ବୁଲିବା ପାଇଁ ଆମେରିକା ଯିବାକୁ ମୁଁ ଏକପ୍ରକାର ମନସ୍ଥିର କରିନେଲି ।

ମୁଁ ପୂର୍ବରୁ ଦୁଇଥର ବିଦେଶ ଗସ୍ତରେ ଯିବା ସମୟରେ ଭୁବନେଶ୍ୱରରେ ଥିବା ସୀତା ଟ୍ରାଭେଲ୍‌ସ ସବୁ ଆନୁଷଙ୍ଗିକ ବ୍ୟବସ୍ଥା କରିଦେଇଥିଲେ । ତେଣୁ ସେଇ ଟ୍ରାଭେଲ ଏଜେନ୍ସୀ ମାଧ୍ୟମରେ ଏଥରର ଗସ୍ତ କାର୍ଯ୍ୟକ୍ରମ ଚୂଡ଼ାନ୍ତ କରିବା ଉଦ୍ଦେଶ୍ୟରେ ମୁଁ ତାଙ୍କ ପାଖକୁ ଯାଇଥିଲି ।

ସୀତା ଟ୍ରାଭେଲ୍ସର ଅଫିସର ଦୀପ୍ତିଙ୍କ ପରାମର୍ଶ ଅନୁଯାୟୀ ପରଦିନ ମୁଁ ଆବଶ୍ୟକ କାଗଜପତ୍ର ସହ ପୁନର୍ବାର ତାଙ୍କ ଅଫିସରେ ପହଞ୍ଚିଲି । ସେ ସବୁ କାଗଜପତ୍ର ଯାଞ୍ଚ କରି ଭିସା ପାଇଁ ଆବଶ୍ୟକ ପଡୁଥିବା ଫଟୋ ନଥିବା କଥା ଦର୍ଶାଇଥିଲେ । ଆତଙ୍କବାଦୀଙ୍କ ଦ୍ୱାରା ନ୍ୟୁୟର୍କ ନଗରୀରେ ଥିବା ବିଶ୍ୱ ବାଣିଜ୍ୟ କେନ୍ଦ୍ର ଧ୍ୱଂସ ପାଇଯିବା ପରେ ଭିସା ଦେବା ଉପରେ ଅଧିକ କଟକଣା ଜାରି ହୋଇଥିଲା ଏବଂ ସେଥିପାଇଁ ବିଭିନ୍ନ ଦେଶ ପାଇଁ ବିଭିନ୍ନ ଧରଣର ପାସପୋର୍ଟ ଫଟୋର ଆବଶ୍ୟକତା ପଡୁଥିଲା ।

ଫଟୋ ଆଣିବା ପରେ ଭିସା ଫର୍ମ ପୂରଣ କରି ଦୀପ୍ତି ପରବର୍ତ୍ତୀ ପଦକ୍ଷେପ ନେବା ପାଇଁ ତାଙ୍କ ଦିଲ୍ଲୀ ଅଫିସକୁ ସବୁ କାଗଜପତ୍ର ପଠାଇଦେଲେ ।

ମୁଁ ଭାବିଲି ଯାହା ହେଉ, ଗୋଟାଏ ଝାମେଲା କାମ ସରିଲା । କାନାଡ଼ା ଭିସା ମିଳିଗଲେ ଯୁକ୍ତରାଷ୍ଟ୍ର ଆମେରିକା ଭିସା ମିଳିବା ସୁଗମ ହେବ ବୋଲି ବିଚାରି ଆମେ ପ୍ରଥମେ କାନାଡ଼ା ହାଇକମିଶନର ଅଫିସକୁ ଭିସାଫର୍ମ ପଠାଇଥିଲୁ । ଫର୍ମ ପଠାଇବାର ଦଶଦିନ ପରେ ଦୀପ୍ତି ମନଦୁଃଖରେ ଫୋନ୍ କରି କହିଲେ, ସାର୍ ! ଗୋଟାଏ ଖରାପ ଖବର ଅଛି । ଆପଣଙ୍କୁ କହିବି କି ନାହିଁ ସେଇ କଥା ଭାବୁଛି । କାନାଡ଼ା ଭିସା ରିଜେକ୍ଟ ହୋଇଯାଇଛି । ଆପଣ ଆସିଲେ ମୁଁ ସବୁ ବିଷୟ କହିବି ।"

କାର୍ଯ୍ୟବ୍ୟସ୍ତତା ଯୋଗୁଁ ମୁଁ ଦୁଇଦିନ ପରେ ସୀତା ଟ୍ରାଭେଲ୍ସ ଯାଇ କାଗଜପତ୍ର ସବୁ ଦେଖିଲି । ଆମ ଦରଖାସ୍ତ ଉପରେ ହାଇକମିଶନ ଦପ୍ତରରୁ ଯେଉଁ ଆପତ୍ତି ଦର୍ଶାଯାଇଥିଲା, ସେଥିରେ କୁହାଯାଇଥିଲା ଯେ, "ଆପଣ 'ଓଶା' ଅଧିବେଶନରେ ଯୋଗଦେବା ପରେ ନିଜ ଦେଶକୁ ଫେରିଆସିବା ସପକ୍ଷରେ ଯେଉଁ କାଗଜପତ୍ର ଦାଖଲ କରିଛନ୍ତି, ସେସବୁ ଆମର ବିଶ୍ୱାସଯୋଗ୍ୟ ହେବା ପାଇଁ ଯଥେଷ୍ଟ ନୁହେଁ । ଆପଣ ଯେ ଆମଦେଶରେ ସବୁଦିନ ପାଇଁ ନ ରହିଯିବେ ସେ ସମ୍ପର୍କରେ ଆମର ହୃଦ୍‌ବୋଧ ହେଲାଭଳି ପ୍ରାମାଣିକ ତଥ୍ୟ ନାହିଁ । ଆପଣଙ୍କ ନିଜ ରାଜ୍ୟରେ ଥିବା ସ୍ଥାବର ଓ ଅସ୍ଥାବର ସମ୍ପତ୍ତି ଏବଂ ଆପଣଙ୍କ ନିର୍ଦ୍ଦିଷ୍ଟ ଆୟ ସମ୍ପର୍କରେ ମଧ୍ୟ ଠିକ୍ ବିବରଣୀ ନାହିଁ । ସେ ଦୃଷ୍ଟିରୁ ଆପଣଙ୍କ ଆବେଦନପତ୍ରକୁ ଅଗ୍ରାହ୍ୟ କରାଗଲା ।" ବାହାରକୁ ମନର ଭାବ ପ୍ରକାଶ ନ କରିଥିଲେ ମଧ୍ୟ ହାଇକମିଶନଙ୍କ ପତ୍ରଟି ପଢ଼ିବା ପରେ ମନ କିଛିକ୍ଷଣ ପାଇଁ ବିଷାଦଗ୍ରସ୍ତ ହୋଇଯାଇଥିଲା ।

କାନାଡ଼ା ହାଇକମିଶନଙ୍କ ହୃଦ୍‌ବୋଧ ହେବା ପାଇଁ ମୁଁ ଦାଖଲ କରିଥିବା ଆୟକର ଦେୟର ନକଲ, ବ୍ୟାଙ୍କ ଜମାଖାତାର ନକଲ, ବିଭିନ୍ନ ସମ୍ବାଦପତ୍ର ଓ ଇଲେକ୍‌ଟ୍ରୋନିକ୍ ମିଡିଆରୁ ମିଳୁଥିବା ଅର୍ଥର ବିବରଣୀ ସହିତ ଭୁବନେଶ୍ୱର ତହସିଲଦାରଙ୍କ ଅଫିସରୁ ମୋ ନାମରେ ଥିବା ସ୍ଥାବର ସମ୍ପତ୍ତିର ମୂଲ୍ୟ ନିର୍ଦ୍ଧାରଣ ବିବରଣୀ ଏବଂ 'ଓଶା' ନିମନ୍ତ୍ରଣ ପତ୍ରର ନକଲ ସବୁ ସଂଗ୍ରହ କରି ଆଉଥରେ ଭିସା ଫର୍ମ ପଠାଇଲି ।

ପାଞ୍ଚଦିନ ପରେ ଦୀପ୍ତି ଫୋନ୍ କରି ମତେ କହିଲେ, " ସାର୍ ! ଆପଣ ଶୀଘ୍ର ମିଠା ନେଇ ଆମ ଅଫିସକୁ ଆସନ୍ତୁ, ଆପଣଙ୍କ ପାଇଁ ଖୁସି ଖବର ଅଛି । ଆପଣଙ୍କର କାନାଡ଼ା ଭିସା ହୋଇଯାଇଛି ।" ସେ ଖବର ପାଇବା ମାତ୍ରେ ମୁଁ ସୀତା ଟ୍ରାଭେଲ୍ସକୁ ସାଙ୍ଗେସାଙ୍ଗେ ଯାଇଥିଲି । ସାଙ୍ଗରେ କିଛି ମିଠା ନେବାକୁ ଭୁଲି ନଥିଲି ।

କାନାଡ଼ା ଭିସା ମିଳିବା ପରେ ମୁଁ ଆମେରିକା ଭିସା ପାଇଁ ଆବେଦନ କଲି । ମତେ ପ୍ରଥମ ସପ୍ତାହରେ ସାକ୍ଷାତକାର ପାଇଁ ତାରିଖ ଧାର୍ଯ୍ୟ କରିବାକୁ କଲିକତାରେ ଥିବା ଆମେରିକାର କନସଲ ଜେନେରାଲଙ୍କ ଦପ୍ତରକୁ ଅନୁରୋଧ କରିଥିଲି ।

ଜୁନ୍ ପହିଲା ଦିନ ସୀତା ଟ୍ରାଭେଲ୍ସରୁ ଫୋନ୍ ମିଳିଲା, ଦୁଇଦିନ ପରେ ଜୁନ୍ ତିନି ତାରିଖ ଦିନ କୋଲକତାରେ ଥିବା ଆମେରିକା କନସୁଲେଟ୍‌କୁ ଇଣ୍ଟରଭ୍ୟୁ ପାଇଁ ଯିବାକୁ ଖବର ଆସିଛି । ଭିସା ଦରଖାସ୍ତ ଫର୍ମରେ ଯେଉଁସବୁ କାଗଜପତ୍ରର ନକଲ ଦିଆଯାଇଥିଲା ସେସବୁର ମୂଳ କପି ସାଙ୍ଗରେ ଧରି ତିନି ତାରିଖ ଏଗାରଟା ବେଳେ ଦେଖା କରିବା ପାଇଁ କନସୁଲେଟ ଅଫିସରୁ ପରାମର୍ଶ ଦିଆଯାଇଥିଲା ।

କନସଲ ଜେନେରାଲଙ୍କ ଅଫିସ ଇଣ୍ଟରଭ୍ୟୁ ସ୍ଥାନରେ ପହଞ୍ଚିଲା ବେଳକୁ କୋଡ଼ିଏ ପଚିଶି ଜଣ ଭିସା ଆବେଦନକାରୀ ପହଞ୍ଚିସାରିଥିଲେ । ସେମାନଙ୍କୁ ଦେଖିଲା ପରେ ମୁଁ କାମ ସାରି ରାତିରେ ଭୁବନେଶ୍ୱର ଫେରିପାରିବି ନାହିଁ ବୋଲି ମନରେ ଆଶଙ୍କା ଜନ୍ମିଥିଲା ।

ଅଧଘଣ୍ଟାକ ପରେ ମୋ ପାଳି ପଡ଼ିଲା । ମୁଁ କାଉଣ୍ଟରକୁ ଯାଇ କାଗଜପତ୍ର ସବୁ ଦାଖଲ କଲି । ସେଥିରେ ପ୍ରଫେସର ଦିଗମ୍ବର ମିଶ୍ର କନସଲ ଜେନେରାଲଙ୍କ ପାଖକୁ ଲେଖିଥିବା ଚିଠିଟି ଥିଲା । ସେଥିରେ ମୁଁ ଆମେରିକାରେ ରହିବା ସମୟରେ, ସେ ମୋର ସମସ୍ତ ଖର୍ଚ୍ଚ ବହନ କରିବେ ବୋଲି ସ୍ପଷ୍ଟ ଭାବରେ ଉଲ୍ଲେଖ କରିଥିଲେ । ସେସବୁ ଯାଞ୍ଚ କଲାପରେ ଅଧିକାରୀ ଜଣକ ମତେ ଅପେକ୍ଷା କରିବାକୁ କହିଲେ । ବେଳକୁବେଳ ମନର ଉତ୍ତେଜନା ବଢୁଥିଲା । ମୁଁ ଆସି ଅନ୍ୟମାନଙ୍କ ସହିତ ହଲ୍‌ରେ ଅପେକ୍ଷା କଲି ।

ମୋ ନାଁ ଡକା ହେଲା ପରେ ଅତି ସନ୍ତର୍ପଣରେ ମୁଁ କାଉଣ୍ଟର ପାଖକୁ ଗଲି । ସେଠାରେ ଦୁଇ ହାତର ଦଶଟିଯାକ ଆଙ୍ଗୁଠିର ଛାପ ନିଆଗଲା । ଆଖି ତୋଳାର ଫଟୋ ଉଠିଲା ।

ମୋର ଯେଉଁ କାଉଣ୍ଟରରେ ଇଣ୍ଟରଭ୍ୟୁ ହୋଇଥିଲା ସେଠାରେ ଜଣେ ଆମେରିକୀୟ ଭଦ୍ର ମହିଳା ଥିଲେ । ସେ ଜାଣିବାକୁ ଚାହିଁଥିଲେ, ଆମେରିକା ଯିବା ପାଇଁ ଖର୍ଚ୍ଚ କିଏ ଦେବେ ଓ ସେଠାରେ ମତେ କିଏ କିଏ ଅତିଥି କରିବେ ? ମୁଁ ବୁଲାବୁଲି କରି ଫେରିଆସିବି ନା ସେ ଦେଶରେ ରହିବା ପାଇଁ ଉଦ୍ୟମ କରିବି ?

ମୁଁ ସବୁ ପ୍ରଶ୍ନର ସ୍ପଷ୍ଟ ଉତ୍ତର ଦେଇଥିଲି । ଭଦ୍ର ମହିଳା ସବୁ ଶୁଣି କହିଲେ, " ବେଷ୍ଟ ଅଫ ଲକ୍ । ଆଇ ଉଇସ୍, ୟୁ ଉଇଲ୍ ଏଞ୍ଜୟ ୟୋର ଆମେରିକା ଟ୍ରିପ୍ । ୟୁ ଉଇଲ୍ ଗେଟ୍ ୟୋର୍ ଭିସା ନେକ୍ସଟ ଉଇକ୍ । ବାଇ ବାଇ ।" ଭଦ୍ର ମହିଳାଙ୍କ କଥା ଶୁଣିଲା ପରେ ମତେ ଆକାଶର ଚାନ୍ଦ ମିଳିଗଲା ଭଳି ଲାଗିଥିଲା ।

କଲିକତାରୁ ଫେରିଲା ପରେ ମନ ଅନେକ ପରିମାଣରେ ହାଲୁକା ହୋଇଯାଇଥିଲା । ମୁଁ ସୀତା ଟ୍ରାଭେଲ୍ସକୁ ଯାଇ ଦୀପ୍ତିଙ୍କୁ ସବୁକଥା ଜଣାଇଲି । ସେ ଭାରି ଖୁସି ହୋଇଥିଲେ । ଚାରିଦିନ ପରେ ଭିସା ଷ୍ଟାମ୍ପ ଥାଇ ମୋ ପାସପୋର୍ଟ ଆମେରିକା କନସୁଲେଟ ଅଫିସରୁ ଆସିଗଲା ।

ମୁଁ ଜୁଲାଇ ପହିଲାରେ ଇଣ୍ଡିଆନ ଏୟାରଲାଇନ୍ସ ବିମାନରେ ଭୁବନେଶ୍ୱରରୁ ଦିଲ୍ଲୀ ଗଲି । ସେଠାରୁ ଦୁଇ ତାରିଖ ରାତିରେ ନ୍ୟୁୟର୍କ ପାଇଁ ବିମାନ ଧରିବା କଥା । ମୋର କଣ୍ଟିନେଣ୍ଟାଲ ଏୟାରଲାଇନ୍ସରେ ଟିକେଟ ହୋଇଥିଲା ।

ରାତି ଏଗାରଟାରେ ଦିଲ୍ଲୀରୁ ନ୍ୟୁୟର୍କ ବିମାନ ଛାଡିବାର ଥିଲା । ମୁଁ ରହୁଥିବା ବସୁନ୍ଧରା ଏନକ୍ଲେଭରୁ ଇନ୍ଦିରା ଗାନ୍ଧୀ ଅନ୍ତର୍ଜାତୀୟ ବିମାନ ବନ୍ଦରକୁ ଯିବାପାଇଁ ଘଣ୍ଟାକରୁ ଅଧିକ ସମୟ ଲାଗୁଥିବାରୁ ମୁଁ ରାତି ଆଠଟାରେ ବାହାରିପଡିଥିଲି ।

ବିମାନ ବନ୍ଦରରେ ଲଗେଜ ବୁକିଂ କରି ସିକ୍ୟୁରିଟି ଚେକ୍ ପାଇଁ ଭିତରେ ପଶିଲା ବେଳକୁ ଜଣେ ଅପରିଚିତା ଯୁବତୀ ପଛରୁ ପଚାରିଲେ, "ମାଫ୍ କରେଙ୍ଗେ, ନ୍ୟୁୟର୍କ ଯାନେ କେ ଲିୟେ କହାଁ ପର ସିକ୍ୟୁରିଟି ଚେକିଂ ହୋତା ହୈ ।" ମୁଁ ତାଙ୍କୁ ବାଟ ଦେଖାଇ ଚାଲିଗଲି ।

କିଛି ସମୟ ପରେ ପୁଣି ସେ ଯୁବତୀଙ୍କ ସହିତ ଦେଖାହେଲା । କୌତୂହଳବଶତଃ ତାଙ୍କ ଘର କେଉଁଠି ବୋଲି ମୁଁ ତାଙ୍କୁ ପଚାରିଲାରୁ ସେ ଗୋଟିଏ ଛୋଟିଆ ଉତ୍ତର ଦେଲେ, "ଓଡ଼ିଶା ।" ମୁଁ କହିଲି, "ତା'ହେଲେ କ'ଣ ଆପଣ ଓଡ଼ିଆ, କୋଉଠୁ ଆସିଛନ୍ତି ?" "ଭୁବନେଶ୍ୱରରୁ । ମୋ ବାପା ଜଣେ ଅବସରପ୍ରାପ୍ତ ସାମରିକ ଅଫିସର । ମୁଁ ସ୍ୱାମୀଙ୍କ ପାଖକୁ କଲମ୍ବିଆ ଯାଉଛି । ଆଜି ସକାଳେ ଏୟାରଲାଇନ୍ସ ଫ୍ଲାଇଟରେ ଭୁବନେଶ୍ୱରରୁ ଆସିଛି ।"

ଏକା ନିଃଶ୍ୱାସରେ ଯୁବତୀଜଣକ ତାଙ୍କର ସବୁ ପରିଚୟ ଦେଇଦେଲେ । ଚାରିମାସ ତଳେ ତାଙ୍କର ବିବାହ ହୋଇଛି । ସ୍ୱାମୀ ଏବେ କଲମ୍ବିଆରେ । ମୁଁ ଲକ୍ଷ୍ୟ କରୁଥିଲି, ଗତ ଚାରିମାସର ବିରହ ପରେ ସ୍ୱାମୀଙ୍କ ସହିତ ମିଳନ ପାଇଁ ସେ ଯେପରି ଅଧୈର୍ଯ୍ୟ ହୋଇପଡୁଥିଲେ ।

ବିମାନରେ ମୋର ଉଇଣ୍ଡୋସିଟ୍ ଥିଲା । ବୋର୍ଡିଂ ପାସ୍ ନେଲାବେଳେ ଅନୁରୋଧ କରି ମୁଁ ସେ ସିଟ୍‌ଟି ପାଇଥିଲି । ସେଥିରେ ଦୁଇଟି ସୁବିଧା ଥିଲା । ପ୍ରଥମତଃ ରାତିରେ ଟିକିଏ ଆରାମରେ ଶୋଇହେବ ଏବଂ ଦ୍ୱିତୀୟରେ ଦିନରେ ବାହାରର ଦୃଶ୍ୟ ବିମାନ ଭିତରୁ ଉପଭୋଗ କରିହେବ ।

ମୋ ପାଖ ସିଟ୍‌ରେ କିଏ ଆସିବେ ଏଇକଥା ଭାବୁଭାବୁ ଦୁଇଜଣ ବିଦେଶୀ ମହିଳା ଆସି ପହଞ୍ଚିଗଲେ । ପ୍ରଥମେ ଆଳାପ ଓ ଆଳାପରୁ ପରିଚୟ ହେଲା । ସେମାନେ ଥିଲେ ମା' ଓ ଝିଅ । ମା' ମାର୍ସୀ କଲମ୍ବିଆରେ ଜଣେ ସ୍କୁଲ ଶିକ୍ଷୟିତ୍ରୀ । ଝିଅ ଟାନେସା ଜଣେ କଲେଜ ଛାତ୍ରୀ । ସେମାନେ ଭାରତବର୍ଷର କେତେକ ଦର୍ଶନୀୟ ସ୍ଥାନ ବୁଲିବାକୁ ଆସିଥିଲେ । ଦିଲ୍ଲୀ, ଆଗ୍ରା, ଜୟପୁର ଇତ୍ୟାଦି ବୁଲି ଦେଖିଲା ପରେ ସେଦିନ ନିଜ ଦେଶକୁ ଫେରୁଥିଲେ ।

ଏୟାର ହୋଷ୍ଟେସଙ୍କ ଘୋଷଣାରେ ନିଦ ଭାଙ୍ଗିଗଲା । ଆଉ ଅଧଘଣ୍ଟାକ ମଧ୍ୟରେ ଆମ ବିମାନ ନିଉଜର୍ସି(ନ୍ୟୁୟର୍କ) ବିମାନ ବନ୍ଦରରେ ଅବତରଣ କରିବା ଶୁଣି ଯାତ୍ରୀମାନେ ସଚେତନ

ହୋଇଗଲେ । ସ୍ଥାନୀୟ ସମୟ ସାଢ଼େ ପାଞ୍ଚଟାରେ ଆମେ ବିମାନ ଭିତରୁ ବାହାରିଲୁ । ଚଉଦ ଘଣ୍ଟାର ଯାତ୍ରାରେ ଶରୀର ଅବଶ ହୋଇଯାଇଥିଲା ।

ବିମାନରୁ ଓହ୍ଲାଇବା ପୂର୍ବରୁ ମୁଁ ଗୋଟିଏ ସମସ୍ୟାର ସମ୍ମୁଖୀନ ହୋଇଥିଲି । ଦୀର୍ଘ ସମୟ ଗୋଡ ଲମ୍ବାଇ ବସିବା ଫଳରେ ପାଦ ସାମାନ୍ୟ ଫୁଲିଯାଇଥିଲା । ଗୋଡରେ ମୋଜା ଥିଲା । ଗୋଡ ଆଉ ଜୋତାରେ ପଶିଲା ନାହିଁ । ହାତରେ ସମୟ ନଥିଲା । ଅନ୍ୟ ଯାତ୍ରୀମାନେ ବାହାରିବା ପାଇଁ ତରତର ହେଉଥିଲେ । ମୁଁ ଅନ୍ୟ ଉପାୟ ନପାଇ ଗୋଡରୁ ମୋଜା କାଢି ପକେଟ୍‌ରେ ପୂରାଇଲି । ଖାଲି ଜୋତା ପିନ୍ଧି ବାହାରକୁ ଆସିଲି ।

ମୋର ସେଠୁ କ୍ରାମଟନ (ଟରଣ୍ଟୋ) ଯିବା କଥା । ହାତରେ ଦୁଇଘଣ୍ଟା ସମୟ ଥିଲା । ବ୍ୟାଗେଜ୍ ଦିଲ୍ଲୀରୁ କ୍ରାମଟନ ବୁକ୍ ହୋଇଥିଲେ ବି ନିରାପତ୍ତା ଦୃଷ୍ଟିରୁ ନ୍ୟୁୟର୍କ ବିମାନ ବନ୍ଦରରେ ତାକୁ ସଂଗ୍ରହ କରି ଆଉଥରେ ବୁକିଂ କରିବାର ଆବଶ୍ୟକତା ପଡ଼ିଲା ।

ବିମାନ ବନ୍ଦରରେ ସମସ୍ତ ଆନୁଷଙ୍ଗିକ କାର୍ଯ୍ୟ ଶେଷ ହେଲାବେଳକୁ ଟରଣ୍ଟୋ ବିମାନ ଛାଡିବାକୁ ଆହୁରି ଅଧଘଣ୍ଟା ବାକି ଥିଲା । ରାତିରେ ଭଲ ନିଦ ହୋଇନଥିବାରୁ ନିଦୁଆନିଦୁଆ ଲାଗୁଥିଲା । ଠିକ୍‌ଭାବରେ ଦାନ୍ତଘଷା ହୋଇ ନଥିଲା । ମୁଁ ଆଉ କୁଆଡ଼େ ନଯାଇ ସିଧା ବିମାନ ଭିତରକୁ ଚାଲିଗଲି । କଣ୍ଟିନେଣ୍ଟାଲ ଏୟାରଲାଇନ୍‌ସର ସେ ବିମାନଟି ଅପେକ୍ଷାକୃତ ସାନ ଥିଲା । ବା'ସ୍ତରୀ ଆସନ ବିଶିଷ୍ଟ । ସେଦିନ ସେଥିରେ ଦୁଇଜଣ ଭାରତୀୟଙ୍କ ସମେତ ମାତ୍ର ପଚାଶଜଣ ଯାତ୍ରୀ ଥିଲେ । ଅନ୍ୟ ଆସନଗୁଡ଼ିକ ଖାଲି ପଡ଼ିଥିଲା ।

ସମସ୍ତ ଆଶା ଓ ଆଶଙ୍କାର ଅବସାନ ଘଟାଇ କଣ୍ଟିନେଣ୍ଟାଲ ବିମାନଟି କ୍ରାମଟନ ବିମାନ ବନ୍ଦରରେ ଅବତରଣ କଲା । କ୍ରାମଟନ ବିମାନ ବନ୍ଦରଟି ଛୋଟିଆଟିଏ ହୋଇଥିବ ବୋଲି ପୂର୍ବରୁ ଭାବୁଥିଲି । ସେଠାରେ ପହଞ୍ଚିବା ପରେ ସେ ଧାରଣା ବଦଳିଗଲା ।

ବିମାନ ବନ୍ଦରରୁ ଟରଣ୍ଟୋ ସହରକୁ ନେବା ପାଇଁ ସେଠାକାର ବିଶିଷ୍ଟ ବୈଜ୍ଞାନିକ ଓ ଶିଳ୍ପପତି ଶ୍ରଦ୍ଧାନନ୍ଦ ମିଶ୍ର ଆସିବେ ବୋଲି ମତେ କୁହାଯାଇଥିଲା ।

କିଛି ସମୟ ଅପେକ୍ଷା କରିବା ପରେ ଗୋଟିଏ ଲମ୍ବା କାର୍ ଆସି ମୋ ପାଖରେ ଛିଡ଼ା ହେଲା । ସେଥିରୁ ଜଣେ ପୌଢ଼ ବ୍ୟକ୍ତି ବାହାରି ମୋ ପାଖକୁ ଆସି ପ୍ରଶ୍ନ କଲେ, "ଆର୍ ୟୁ ବସନ୍ତ ଦାସ, ପ୍ଲିଜ୍ କମ୍ ଉଇଥ ମି ।" କାର୍‌ରେ ବସିଲା ବେଳେ ସେ ନିଜର ପରିଚୟ ଦେଇ କହିଲେ, " ମୁଁ ଶ୍ରଦ୍ଧାନନ୍ଦ ମିଶ୍ର, ଏଠାରେ ଗୋଟିଏ ଆଇଟି ଫାର୍ମ ଖୋଲିଛି । ଆପଣଙ୍କୁ ଏଠାରୁ ନେଇ ହୋଟେଲରେ ଛାଡ଼ିବା ପାଇଁ ମତେ ଦାୟିତ୍ୱ ଦିଆଯାଇଛି ।"

ଠିକ୍ ଏଗାରଟା ବେଳେ ଶ୍ରଦ୍ଧାନନ୍ଦବାବୁ ମୋତେ ନେଇ ହୋଟେଲ 'ମେରିଅଟ୍'ରେ ପହଞ୍ଚାଇଦେଲେ । ହୋଟେଲ୍ କାଉଣ୍ଟରରେ ଚେକ୍ ଇନ କରାଇ ମତେ ରୁମ୍ ଚାବି ଧରାଇ ସେ ମୋଠାରୁ ବିଦାୟ ନେଇଗଲେ ।

ନିତ୍ୟକର୍ମ ସାରିଲା ବେଳକୁ ସ୍ଥାନୀୟ ସମୟ ବାରଟା ହୋଇଥିଲା । ସକାଳେ କିଛି ଖାଇ ନଥିବାରୁ ଭୋକ ଲାଗୁଥିଲା । ଯୋଉ ହୋଟେଲରେ ମୁଁ ରହୁଥିଲି, ସେଠାରୁ 'ଓଶା' ଅଧିବେଶନ ସ୍ଥାନ କେତେବାଟ, ସେଠାକାର ଟେଲିଫୋନ ନମ୍ବର କେତେ ସେ ବିଷୟରେ ମୋର କୌଣସି ଧାରଣା ନଥିଲା । ରେଷ୍ଟୁରାଣ୍ଟକୁ ଗଲାବେଳକୁ ବ୍ରେକଫାଷ୍ଟ ସରିଯାଇଥିଲା ।

କ'ଣ କରାଯିବ ?

ଏଇକଥା ଭାବୁଭାବୁ ମନେପଡ଼ିଗଲା ମୁଁ ଭୁବନେଶ୍ୱରରୁ ବ୍ୟାଗରେ କିଛି ମିକ୍ସଚର ଏବଂ ଚୁଡ଼ାଭଜା ସାଙ୍ଗରେ ଆଣିଥିଲି । ଚନ୍ଦନ ମତେ ସତର୍କ କରିଦେଇ କହିଥିଲା, "ତମେ ଭେଜିଟାରିଆନ । ବିଦେଶରେ ଅଧିକାଂଶ ଜାଗାରେ ଭେଜ୍ ଖାଦ୍ୟ ପାଇବା କଷ୍ଟ । ସାଙ୍ଗରେ କିଛି ବିସ୍କୁଟ, ଚୁଡ଼ାଭଜା ଓ ମିକ୍ସଚର ନେଇଗଲେ ଜରୁରୀ ଅବସ୍ଥାରେ କାମ ଚଳିଯିବ ।"

ବ୍ୟାଗ ଖୋଲି ଡବା ଦୁଇଟି ବାହାର କଲି । ପଞ୍ଚତାରକା ହୋଟେଲ ହୋଇଥିଲେ ବି ମତେ ଦେଖିବାକୁ କେହି ନଥିଲେ । ଭୋକରେ ଚୁଡ଼ାଭଜା ଓ ମିକ୍ସଚର ଅମୃତ ଭଳି ଲାଗୁଥିଲା । ସେଥିରୁ କିଛି ଖାଇ ପାଣି ପିଇଦେବାରୁ ଆମ ସମୟ ଅନୁସାରେ ଡିନର ଓ ସେଠାକାର ସମୟ ଅନୁଯାୟୀ ଲଞ୍ଚ କାମ ଚଳିଗଲା ।

ପାଖରେ ପଡ଼ିଥିବା ମାଗାଜିନ ଉପରେ ଆଖି ପକାଉପକାଉ କେତେବେଳେ ନିଦ ହୋଇଯାଇଥିଲା ଜାଣି ପାରିନଥିଲି ।

ହଠାତ୍ ଫୋନ୍ ବାଜିବାରୁ ନିଦ ଭାଙ୍ଗିଗଲା । ଘଣ୍ଟା ଦେଖିଲା ବେଳକୁ ଆଠଟା ବାଜି ଯାଇଥିଲା । କିନ୍ତୁ ବାହାରେ ଖରା ଦେଖି ମନରେ ଭ୍ରମ ସୃଷ୍ଟି ହେଲା । ସେପଟୁ ପ୍ରଫେସର ଦିଗମ୍ବର ମିଶ୍ର କହୁଥିଲେ, "କ'ଣ କାନାଡ଼ା ଶୋଇବା ପାଇଁ ଆସିଛ ? କାହାସାଙ୍ଗରେ ଟେଲିଫୋନରେ କଥା ହୋଇନାହିଁ ?"

ମୁଁ କୌଣସି ଟେଲିଫୋନ ନମ୍ବର ଜାଣିନଥିବା କଥା କହିବାରୁ ସେ ମତେ ଦୁଇଟି ନମ୍ବର ଦେଇ କହିଲେ, "ମୁଁ ସେମାନଙ୍କୁ କହିଦେଇଛି, ଗାଡ଼ିରେ ସେମାନେ ତମକୁ ନେଇଯିବେ । ଯଦି ଡ଼େରି ହେବ, ସେମାନଙ୍କୁ ଫୋନ କରି କହିବ ଗାଡ଼ି ପଠାଇବେ । ହଁ, ଖରାବେଳେ ତମେ କୋଉଠି କ'ଣ ଖାଇଲ ?" ମୋ ଉତ୍ତର ଶୁଣି ସେ ବହୁତ ମନ ଖରାପ କଲେ ।

କିଛିସମୟ ପରେ ମୋ ରୁମ୍‌ର କଲିଂବେଲ୍ ବାଜି ଉଠିଲା । ମୁଁ କବାଟ ଖୋଲି ଦେଖିଲାବେଳକୁ ଜଣେ ଯୁବତୀ ଛିଡ଼ା ହୋଇଥିଲେ । ସେ ମତେ ଦେଖି ନମ୍ରତାର ସହିତ ପଚାରିଲେ, "ଆପଣ ବସନ୍ତ ଦାସ ? ମୁଁ ଆପଣଙ୍କୁ 'ଓଶା' ଅଧିବେଶନ ସ୍ଥାନକୁ ନେବାକୁ ଆସିଛି । ମୁଁ ତଳେ ଲାଉଞ୍ଜରେ ଅପେକ୍ଷା କରିଛି । ଆପଣ ପ୍ରସ୍ତୁତ ହୋଇ ଆସନ୍ତୁ ।"

ଯୁବତୀଙ୍କ ସହିତ ଯାଇ ଅଧିବେଶନ ସ୍ଥାନରେ ପହଞ୍ଚିଲି । ବାଟରେ ଗଲାବେଳେ ଗାଡ଼ି ଡ୍ରାଇଭିଂ କରୁଥିବା ଯୁବତୀଙ୍କ ପରିଚୟ ପଚାରି ବୁଝିଲି । ସେ ଥିଲେ ଜଷ୍ଟିସ ଗୋପାଳ ଦାସଙ୍କ ନାତୁଣୀ । ସେ ଯେପରି ଭଦ୍ର, ସେପରି ମାର୍ଜିତ ଥିଲେ । ତାଙ୍କ ବ୍ୟବହାର ମତେ ଖୁବ୍ ପ୍ରଭାବିତ କରିଥିଲା ।

ସେଦିନ ସନ୍ଧ୍ୟାରେ ଅନେକ ପ୍ରବାସୀ ଓଡ଼ିଆଙ୍କ ସହିତ ଦେଖାହେଲା । ଅଧିବେଶନରେ ଯୋଗଦେବା ପାଇଁ ମୁଁ ଯାଇଥିବାରୁ ସେମାନେ ମତେ ଅଭିନନ୍ଦନ ଜଣାଇଥିଲେ । ଓଡ଼ିଶାରେ ଥିବା ସେମାନଙ୍କ ପରିବାରବର୍ଗଙ୍କ ସହିତ ମୋର ଘନିଷ୍ଠ ସମ୍ପର୍କ ଥିବାରୁ ଖୁବ୍ କମ୍ ସମୟରେ ଆମର ଗପ ଜମିଗଲା । ମୁଁ ସେମାନଙ୍କ ପରିବାର ସମ୍ପର୍କରେ ଏତେକଥା ଜାଣିଥିବା ଘଟଣା ସେମାନଙ୍କୁ ଆଶ୍ଚର୍ଯ୍ୟ କରିଥିଲା । ରାତି ପ୍ରାୟ ଦଶଟା ବେଳେ ଡିନର ସାରି ମୁଁ ହୋଟେଲକୁ ଫେରିଲି ।

୨୦୦୮ ମସିହା ଜୁଲାଇ ୪ତାରିଖ ଦିନ ସକାଳ ଦଶଟା ବେଳେ 'ଓଶା' ଅଧିବେଶନ ଉଦ୍‌ଘାଟନ ପାଇଁ ସମୟ ଧାର୍ଯ୍ୟ ହୋଇଥିଲା । ଓଡ଼ିଶାର ରାଜ୍ୟପାଳ ମୂରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଏହି ଅଧିବେଶନକୁ ଉଦ୍‌ଘାଟନ କରିବା ପାଇଁ ସ୍ୱତନ୍ତ୍ର ଭାବେ ନିମନ୍ତ୍ରିତ ହୋଇ ଯାଇଥିବାରୁ କର୍ମକର୍ତ୍ତାମାନଙ୍କ ମଧ୍ୟରେ ଅଧିକ ଉତ୍ସାହ ସୃଷ୍ଟି ହୋଇଥିଲା ।

ରାଜ୍ୟପାଳ ଶ୍ରୀ ଭଣ୍ଡାରେ ପ୍ରଦୀପ ପ୍ରଜ୍ୱଳନ କରି 'ଓଶା'ର ୩୯ତମ ଅଧିବେଶନକୁ ଉଦ୍‌ଘାଟନ କରିବା ସମୟରେ 'ରାମଟନ ହଲ'ରେ ଭରପୂର ଦର୍ଶକ କରତାଳି ଦେଇ ତାଙ୍କୁ ସ୍ୱାଗତ କରିଥିଲେ ।

ରାଜ୍ୟପାଳ ତାଙ୍କ ଭାଷଣରେ କହିଥିଲେ, "ଆପଣମାନେ ବିଦେଶରେ ନିଜନିଜ କ୍ଷେତ୍ରରେ ସୁପ୍ରତିଷ୍ଠିତ ହୋଇ ଯେପରି ସୁନାମ ଅର୍ଜନ କରିଛନ୍ତି, ସେଥିରେ ମୁଁ ବିଶେଷ ଆନନ୍ଦିତ । ଏହା ଯେ କୌଣସି ଭାରତୀୟଙ୍କ ପାଇଁ ଗର୍ବ ଓ ଗୌରବର ବିଷୟ । କିନ୍ତୁ ସେଥିସହିତ ଆପଣମାନେ ଗୋଟିଏ ବିଷୟ ଭୁଲିଯିବା ଉଚିତ ନୁହେଁ । ଆପଣମାନେ ଯେଉଁ ମାଟିରୁ ଆସିଛନ୍ତି ସେ ମାଟି ପ୍ରତି ଆପଣ ପ୍ରତ୍ୟେକଙ୍କର କିଛି କର୍ତ୍ତବ୍ୟ ରହିଛି । ନିଜେ ସବୁପ୍ରକାର ସୁଖସୁବିଧା ଉପଭୋଗ କଲାବେଳେ ଓଡ଼ିଶାର କିପରି ସାମୂହିକ ବିକାଶ ଘଟିବ ସେ ଦିଗରେ ସର୍ବଦା ସଚେତନ ରହିବା ଆବଶ୍ୟକ ।"

'ଓଶା' ଅଧିବେଶନ ସମୟରେ 'ଆମ ମାଟି, ଆମ ମଣିଷ' ସମ୍ପର୍କରେ ଏକାଧିକ ଆଲୋଚନାଚକ୍ରର ଆୟୋଜନ କରାଯାଇଥିଲା । ସେଥିରେ ଅଂଶଗ୍ରହଣ ନିମିତ୍ତ ଓଡ଼ିଶାରୁ ମୁଁ ଏବଂ ଭୁବନେଶ୍ୱରର ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟ ଧୀରେନ ପଟ୍ଟନାୟକ ନିମନ୍ତ୍ରିତ ହୋଇଥିଲୁ । ଜୁଲାଇ ଚାରି ତାରିଖ ଶନିବାର ଦିନ 'ଓଡ଼ିଶାର ଶିକ୍ଷା ପଦ୍ଧତି' ସମ୍ପର୍କରେ ଆଲୋଚନାଚକ୍ରରେ ମୋର ଅଂଶଗ୍ରହଣ କରିବାର କାର୍ଯ୍ୟକ୍ରମ ଥିଲା ।

ମୁଁ ପହଞ୍ଚିଲାବେଳକୁ ହଲ୍‌ରେ ଶ୍ରୋତା ପହଞ୍ଚିସାରିଥିଲେ । ଆମେରିକାରେ ଦୀର୍ଘଦିନ ହେଲା ବସବାସ କରୁଥିଲେ । ଏହାସତ୍ତ୍ୱେ ଓଡ଼ିଶା ସହିତ ସେମାନଙ୍କର ଘନିଷ୍ଠ ସମ୍ପର୍କ ଥିଲା । ଓଡ଼ିଶାର ବିଭିନ୍ନ ସମସ୍ୟା, ବିଶେଷକରି ଶିକ୍ଷା, ସ୍ୱାସ୍ଥ୍ୟ କ୍ଷେତ୍ରରେ ଯେଉଁସବୁ ତ୍ରୁଟିବିଚ୍ୟୁତି ଘଟୁଛି ସେ ବିଷୟରେ ସେମାନଙ୍କ ମଧ୍ୟରୁ ଅଧିକାଂଶ ସଚେତନ ଥିଲେ ।

ମୁଁ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ସୃଷ୍ଟି ହୋଇଥିବା ସମସ୍ୟା ସମ୍ପର୍କରେ ଏକ ବିସ୍ତୃତ ଚିତ୍ର ପ୍ରଦାନ କଲାବେଳେ ଶ୍ରୋତାମାନଙ୍କ ପାଖରୁ ପ୍ରଶ୍ନ ପରେ ପ୍ରଶ୍ନ ପଚରା ଯାଇଥିଲା । "ଯଦି ଶିକ୍ଷା କ୍ଷେତ୍ରରେ ଏପରି ବିଶୃଙ୍ଖଳା ସୃଷ୍ଟି ହେଉଛି, ତେବେ ରାଜ୍ୟ ସରକାର କରୁଛନ୍ତି କ'ଣ ? ସରକାର କିଛି କରୁନାହାନ୍ତି ବୋଲି ଆପଣଙ୍କର ଯଦି ହୃଦ୍‌ବୋଧ ହେଉଛି, ତେବେ ଆପଣମାନେ କାହିଁକି ସରକାରଙ୍କୁ ବଦଳାଇ ଦେଉନାହାନ୍ତି ? ଭାରତୀୟ ଗଣତନ୍ତ୍ର ତ ସେ ଅଧିକାର ଆପଣମାନଙ୍କୁ ଦେଇଛି ।"

ଏକାସାଙ୍ଗରେ ଏତେ ପ୍ରଶ୍ନ । ତା' ପୁଣି ଭେଟେରାନମାନଙ୍କ ପକ୍ଷରୁ । ମୁଁ ସେମାନଙ୍କୁ ବିନମ୍ରତାର ସହିତ କହିଲି, "ଆପଣମାନେ ଯାହା ପଚାରିବା କଥା ପଚାରନ୍ତୁ, ମୁଁ ସେ ସବୁର ଉତ୍ତର ଦେବାକୁ ଯଥାସାଧ୍ୟ ଚେଷ୍ଟା କରିବି ।" ମୋର ଉତ୍ତର ଥିଲା, "ଗଣତାନ୍ତ୍ରିକ ଅଧିକାର ସାବ୍ୟସ୍ତ କରି ଆମେ ପାଞ୍ଚବର୍ଷରେ ଥରେ ସରକାର ବଦଳାଉଛୁ । କିନ୍ତୁ ଦୁର୍ଭାଗ୍ୟର କଥା ଯେ, ପରବର୍ତ୍ତୀ ସରକାରମାନେ ପୂର୍ବ ସରକାର ଅପେକ୍ଷା ଅଧିକ ଖରାପ ହେଉଛନ୍ତି ।"

ଆଲୋଚନାଚକ୍ର ପରେ ମଧ୍ୟାହ୍ନଭୋଜନ ପାଇଁ ବିରତି ହୋଇଥିଲା । ସନ୍ଧ୍ୟାରେ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ ହୋଇଥିଲା । ଆରମ୍ଭରେ ସେଠାରେ ବାସ କରୁଥିବା ଗୋପାଳ ମହାନ୍ତିଙ୍କ କନ୍ୟା ନିହାରିକା ଦଶାବତାର ନୃତ୍ୟ ପରିବେଷଣ କରିଥିଲେ । ଓଡ଼ିଶୀ ନୃତ୍ୟର ଜନ୍ମସ୍ଥାନ ଓଡ଼ିଶା ମାଟିରୁ ସେ ନୃତ୍ୟ କ୍ରମେ ଲୋପ ପାଇଯାଉଥିବା ବେଳେ ସୁଦୂର କାନାଡାରେ ନିହାରିକାଙ୍କ ନୃତ୍ୟ ଦେଖି ମୁଁ ମୁଗ୍ଧ ହୋଇଯାଇଥିଲି ।

ସେଦିନ ସନ୍ଧ୍ୟାର ଅନ୍ୟ ଆକର୍ଷଣ ଥିଲା 'ନୃତ୍ୟନାଟିକା କର୍ଣ୍ଣବଧ' । ଏହାର ପରିବେଷଣ ଖୁବ୍ ଉଚ୍ଚକୋଟୀର ହୋଇଥିଲା । ମାଟିରେ ପୋତି ହୋଇପଡ଼ିଥିବା ନିଜ ରଥକୁ ଟେକିବା ପାଇଁ ଉଦ୍ୟମ କରୁଥିବା ବେଳେ ସାରଥୀ ଶ୍ରୀକୃଷ୍ଣଙ୍କ ଇଙ୍ଗିତରେ ଅର୍ଜୁନଙ୍କ ଦ୍ୱାରା କର୍ଣ୍ଣ ବଧ ଦୃଶ୍ୟ ଦେଖି ଦର୍ଶକମାନେ କାନ୍ଦି ପକାଇଥିଲେ ।

'କର୍ଣ୍ଣବଧ' ରଚୟିତା ଗଣକବି ବୈଷ୍ଣବ ପାଣି ଏ ଧରାଧାମରୁ ବିଦାୟ ନେଇସାରିଲେଣି । ତାଙ୍କ ରଚନାକୁ ଗୀତିନାଟ୍ୟରେ ଉପସ୍ଥାପନା କରିଥିବା ଗୋପାଳ ଛୋଟରାୟ ମଧ୍ୟ ବାହୁଡ଼ି ଗଲେଣି । ସେଥି ସହିତ ଓଡ଼ିଶା ମାଟିରୁ ଗୀତିନାଟ୍ୟ ପରିବେଷଣ ମଧ୍ୟ କମି ଗଲାଣି । କିନ୍ତୁ ସୁଦୂର ଆମେରିକାର ପ୍ରବାସୀ ଓଡ଼ିଆମାନେ ସେ କଳାକୁ ନିଜ ଭିତରେ ବଞ୍ଚାଇ ରଖିଥିବାରୁ ସେମାନଙ୍କ ପାଖରେ ମୁଣ୍ଡ ଆପେଆପେ ନୋଇଁଗଲା ।

ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକ ସହରରୁ ଚିତ୍ରାଳୟ ସବୁ ମରିହଜି ଯାଉଥିବା ବେଳେ କାନାଡାରେ ପୌରାଣିକ ନୃତ୍ୟନାଟିକା ପରିବେଷଣ ପାଇଁ ପୋଷାକପତ୍ର କିପରି କେଉଁଠୁ ଆଣିଲେ ବୋଲି ପଚାରିଥିଲି। 'ଓଶା'ର ସାଂସ୍କୃତିକ ସମ୍ପାଦକ ଗୋପାଳ ମହାନ୍ତି କହିଥିଲେ, "ଆମେରିକାରେ ବାସ କରୁଥିବା ଓଡ଼ିଆମାନଙ୍କ ଭିତରୁ ଯିଏ ଯେତେବେଳେ ନିଜ ଜନ୍ମମାଟିକୁ ଯାଆନ୍ତି, ସେମାନେ ଫେରିଲାବେଳେ କିଛି ପୋଷାକ ସାଙ୍ଗରେ ନେଇ ଆସନ୍ତି।"ସାଂସ୍କୃତିକ କାର୍ଯ୍ୟକ୍ରମ ଶେଷ ହେଲା ବେଳକୁ ରାତି ନଅଟା ବାଜିଯାଇଥିଲା । ରାତ୍ରିଭୋଜନ ସମୟ ଟପିଯାଇଥିଲା ।

ଭାବିଥିଲି ସେଠାରେ କେବଳ ଆମିଷ ଭୋଜନର ବ୍ୟବସ୍ଥା ହୋଇଥିବ। ଶନିବାର ହୋଇଥିବାରୁ ମୋର ଖାଇବାର କିଛି ନଥିଲା । ତଥାପି କ'ଣ କ'ଣ ସବୁ ରନ୍ଧା ଯାଇଛି ଜାଣିବା ପାଇଁ ଅନ୍ୟମାନଙ୍କ ସହିତ ଯାଇ ଲାଇନରେ ଛିଡ଼ା ହେଲି । ଖାଇବା ପାଇଁ ଦୁଇଶହ ଲୋକ ଜମା ହୋଇଥିଲେ। କିଛି ପାଟିତୁଣ୍ଡ ନଥିଲା । 'ଓଶା'ର ସଦସ୍ୟମାନେ ପୂର୍ବରୁ ସେମାନଙ୍କର ଖାଇବା କୁପନ ସଂଗ୍ରହ କରିଥିଲେ । ଆମ ଭଳି କେଇଜଣ ଅତିଥିଙ୍କୁ ଗେଷ୍ଟ କୁପନ ଦିଆଯାଇଥିଲା ।

ଖାଇବା କାଉଣ୍ଟର ପାଖରେ ପହଞ୍ଚି ମୁଁ ନିଜ ଆଖିକୁ ବିଶ୍ୱାସ କରିପାରିଲି ନାହିଁ। ବିଭିନ୍ନ ବାଓ୍ୱଲରେ ବଢ଼ାଯାଇଥିଲା ଫ୍ରାଏଡ୍ ରାଇସ, ହରଡ ଡାଲି, ଆଳୁ ପୋଟଳ ରସା, ଘାଣ୍ଟ ତରକାରୀ, ଆମ୍ବଖଟା, ପାମ୍ପଡ, ସାଲାଡ୍, ଆଚାର ଇତ୍ୟାଦି ନାନା ସୁସ୍ୱାଦୁ ଓଡ଼ିଆ ଖାଦ୍ୟ । ତାକୁ ପରିବେଷଣ କରୁଥିଲେ ଶାଢୀ ପରିହିତା ଓଡ଼ିଆ ଗୃହିଣୀମାନେ । ଅନ୍ୟପାଖରେ ଥୁଆ ହୋଇଥିଲା ଛେନାପୋଡ଼ ।

'ଓଶା' ଅଧିବେଶନରେ ହସଖୁସି, ମଉଜ ମଜଲିସରେ ତିନିଦିନ କାଳ କଟିଯିବା ପରେ ରବିବାର ସକାଳୁ ଯିଏ ଯାହା କର୍ମକ୍ଷେତ୍ରକୁ ଫେରିଯିବାକୁ ବାହାରିଲେ । ତିନିଦିନ ଭିତରେ ଯେଉଁମାନଙ୍କ ସାଙ୍ଗରେ ସାକ୍ଷାତ ଆଲୋଚନାର ସୁଯୋଗ ଜୁଟି ନଥିଲା, ବାହୁଡ଼ା ସମୟରେ ତାହା ସମ୍ଭବ ହୋଇଥିଲା ।

ଆୟୋଜକମାନେ ଅଧିବେଶନର ସଫଳତା ପାଇଁ ବ୍ୟସ୍ତ ରହୁଥିବାରୁ ଖୁସିଗପ ପାଇଁ ସେମାନଙ୍କ ପାଖରେ ସମୟ ନଥିଲା । ସଫଳତାର ସହିତ ଅଧିବେଶନ ଶେଷ ହେବାପରେ ସେମାନେ ଶାନ୍ତିରେ ନିଃଶ୍ୱାସ ମାରିଥିଲେ । କିଏ କେତେ ଦୂରରୁ ଅଧିବେଶନରେ ଯୋଗଦେବାକୁ ଆସିଥିଲେ । ଆରବର୍ଷ ପୁଣି ଆସିବା ସେମାନଙ୍କ ପକ୍ଷରେ ସମ୍ଭବ ହେବ କି ନାହିଁ ସେ କଥା ଅଧିକାଂଶଙ୍କୁ ବ୍ୟଥିତ କରୁଥିଲା । ବ୍ରେକଫାଷ୍ଟ ପାଇଁ ରେଷ୍ଟୁରାଣ୍ଟରେ ଏକାଠି ହେଲାବେଳେ କଥାରେ ନ କହିଲେ ମଧ୍ୟ ସେମାନଙ୍କର ମନର ଭାବନା ମୁଖମଣ୍ଡଳରୁ ସ୍ପଷ୍ଟ ବାରି ହୋଇପଡୁଥିଲା।

ମୁଁ ରେଷ୍ଟୁରାଣ୍ଟରେ କିଛି କର୍ଣ୍ଣଫ୍ଲେକ୍ସ ଓ ମିଲ୍କ ନେଇ ଗୋଟିଏ ଟେବୁଲ ଉପରେ ରଖିବା ସମୟରେ ଡଃ ମନୋରଂଜନ ପଟ୍ଟନାୟକ ମତେ ଦେଖି କହିଲେ, "ମୁଁ ଆପଣଙ୍କୁ କେତେବେଳୁ ଖୋଜିଲିଣି। ଆପଣଙ୍କର ନ୍ୟୁଜର୍ସି ଯିବାର ବନ୍ଦୋବସ୍ତ ହୋଇଯାଇଛି । ଆପଣ ଆମ ଭାଇସ ପ୍ରେସିଡେଣ୍ଟ ଆଶୁବାବୁଙ୍କ ସାଙ୍ଗରେ ଯିବେ । ସିଏ କଟକର ବାସିନ୍ଦା। ଖୁବ୍ ଭଲ ଲୋକ । ଆପଣଙ୍କର କିଛି ଅସୁବିଧା ହେବ ନାହିଁ ।"

କିଛି ସମୟ ପରେ ମନୋରଞ୍ଜନବାବୁ ଜଣେ ସୌମ୍ୟ ଯୁବକଙ୍କୁ ସାଙ୍ଗରେ ନେଇ ମୋ ପାଖକୁ ଆସି କହିଲେ, "ଇଏ ହେଉଛନ୍ତି ଆଶୁତୋଷ ବାବୁ । 'ଓଶା'ର ଉପସଭାପତି । ସେ କଟକର ମୂଳବାସିନ୍ଦା । ଆମେରିକାରେ ଦୀର୍ଘଦିନ ଧରିରହିଛନ୍ତି । ଆପଣ ତାଙ୍କ ସାଙ୍ଗରେ ଯାଆନ୍ତୁ । ଆମେରିକାରେ ଆପଣଙ୍କର ରହିବାର ସବୁ ବ୍ୟବସ୍ଥା ହୋଇଛି ।"

ସେ କହିଚାଲିଥିଲେ, "ଆପଣ ନ୍ୟୁଜର୍ସିରେ ଆଜି ରହିବେ । ଆସନ୍ତାକାଲି ନ୍ୟୁୟର୍କ ସହର ବୁଲି ଦେଖିଲା ପରେ ଡକ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକଙ୍କ ଘରକୁ ଯିବେ । ସେଠାରୁ ଆପଣ ସାନଜୋସେ ଯିବେ । ସେଠାରେ ଡକ୍ଟର ଗୌରୀ ଦାସ ଆପଣଙ୍କୁ ତାଙ୍କ ଘରେ ରହିବା ପାଇଁ ଆଗ୍ରହର ସହିତ ଅପେକ୍ଷା କରିଛନ୍ତି ।

ସାନଜୋସେରେ ତିନିଦିନ ରହଣୀ ସମୟ ମଧ୍ୟରେ ଆପଣ ଉଭୟ ସାନଜୋସେ ଓ ସାନ୍‌ଫ୍ରାନସିସ୍କୋ ସହର ବୁଲିପାରିବେ । ସାନଜୋସେରୁ ଆପଣ ୱାଶିଂଟନ ଡି.ସି. ଯିବେ । ସେଠାରେ ଡକ୍ଟର ନରେଶ ଦାସ ଓ ତାଙ୍କ ପତ୍ନୀ ଡକ୍ଟର ବିଜ୍ଞାନୀ ଦାସ ଆପଣଙ୍କୁ ଅତିଥି କରିବେ। ଆପଣଙ୍କ ଶେଷପର୍ଯ୍ୟାୟ କାର୍ଯ୍ୟକ୍ରମରେ ଆପଣ ୱାଶିଂଟନ ଡିସିରୁ ବର୍ମିଙ୍ଗହାମ ଯାଇ ପ୍ରଫେସର ଦିଗମ୍ବର ମିଶ୍ରଙ୍କ ଘରେ ରହିବେ । ସେଠାରୁ ପୁଣି ନ୍ୟୁଜର୍ସି ବାଟେ ଦିଲ୍ଲୀ ଫେରିବେ। ଆପଣଙ୍କର ପ୍ଲେନ ଟିକଟ ସବୁ କନଫର୍ମ ହୋଇଛି । ଆଇ ଉଇସ ୟୁ ଅଲ ଦି ବେଷ୍ଟ ।"

ଏତିକି କହି ହାଣ୍ଡସେକ୍ କରିବା ପାଇଁ ଡକ୍ଟର ପଟ୍ଟନାୟକ ଅପେକ୍ଷା କରିଥିଲେ । ପାଖରେ ତାଙ୍କ ପତ୍ନୀ ଶ୍ରୀମତୀ (ଡକ୍ଟର) ପଟ୍ଟନାୟକ ଛିଡା ହୋଇଥିଲେ। ମୁଁ ସେମାନଙ୍କ ପାଖରୁ ବିଦାୟ ନେବା ପୂର୍ବରୁ ମୋ ବ୍ୟାଗରେ ଥିବା ତାରକସୀ ଖଚିତ ରୁପା କଣ୍ଠିମାଳର ପ୍ୟାକେଟ୍‌ଟିଏ ଶ୍ରୀମତୀ ପଟ୍ଟନାୟକଙ୍କ ହାତକୁ ବଢ଼ାଇଦେଲି ।

ସେ ପ୍ୟାକେଟଟି ଦେଖି ଏତେ ଖୁସି ହୋଇଯାଇଥିଲେ ଯେ, ତାକୁ ତାଙ୍କ ଭ୍ୟାନିଟ ବ୍ୟାଗରେ ରଖିବା ପୂର୍ବରୁ ବାରମ୍ବାର ଦେଖିଥିଲେ। ସ୍ମିତହାସ୍ୟ ସହ ଧନ୍ୟବାଦ ଦେଇ ପଟ୍ଟନାୟକ ଦମ୍ପତିଙ୍କ ପାଖରୁ ମୁଁ ବିଦାୟ ନେଇଥିଲି ।

ଅନେକ ଦିନରୁ ନାଏଗ୍ରା ଫଲ (ଜଳପ୍ରପାତ) ଦେଖିବା ପାଇଁ ମନରେ ଏକ ଦୁର୍ବଳତା ମନରେ ଥିଲା । ଯେଉଁମାନେ ଆମେରିକା ଯାଉଥିଲେ, ସେମାନେ ନାଏଗ୍ରା ଫଲ୍‌ର ଫଟୋ

# ତୀର୍ଥ ଦର୍ଶନ



ଦ୍ୱାରକାଧୀଶ (ଦ୍ୱାରକା) ମନ୍ଦିର ସାମନାରେ ପତ୍ନୀଙ୍କ ସହିତ



ସୋମନାଥ ମନ୍ଦିର ସାମନାରେ ପତ୍ନୀ ପ୍ରମଦାଙ୍କ ସହିତ




ମଦୁରାଇର ପ୍ରସିଦ୍ଧ ମୀନାକ୍ଷୀ ମନ୍ଦିର ପରିସରରେ



ଚାମୁଣ୍ଡା ହିଲ୍ ସ୍ଥିତ ଚାମୁଣ୍ଡେଶ୍ୱରୀ ମନ୍ଦିର ସାମନାରେ



ଗୌହାଟୀର କାମାକ୍ଷା ଦେବୀଙ୍କ ମନ୍ଦିର ସାମନାରେ

# ଶ୍ରଦ୍ଧା ଓ ସମ୍ମାନ



ସଂସ୍କୃତି ମନ୍ତ୍ରୀ ମହେଶ୍ୱର ମହାନ୍ତି ଓଡ଼ିଶା ସାହିତ୍ୟ ଏକାଡେମୀ ସମ୍ମାନ ପ୍ରଦାନ କରୁଛନ୍ତି । ପାଖରେ ଅଛନ୍ତି ବିଶିଷ୍ଟ କବି ପଦ୍ମଭୂଷଣ ରମାକାନ୍ତ ରଥ



'ଉତ୍କଳ ସାହିତ୍ୟ ସମାଜ' ପକ୍ଷରୁ ପୁରସ୍କାର ଓ ସମ୍ମାନ ଗ୍ରହଣ



ସାଂସଦ ପ୍ୟାରୀମୋହନ ମହାପାତ୍ରଙ୍କଠାରୁ 'ପ୍ରାଣନାଥ ପଟ୍ଟନାୟକ ସମ୍ମାନ' ଗ୍ରହଣ



ସାଂସଦ ବୈଷ୍ଣବ ଚରଣ ପରିଡ଼ାଙ୍କଠାରୁ 'ଗୌରୀଶଙ୍କର ସମ୍ମାନ' ଗ୍ରହଣ




କଟକ ଶତାବ୍ଦୀ ଭବନରେ 'କଟକ ନଗର ଧବଳ ଟଗର' ପୁସ୍ତକ ଲୋକାର୍ପିତ




'ସମ୍ବାଦ' ସମ୍ପାଦକ ସୌମ୍ୟରଂଜନ ପଟ୍ଟନାୟକଙ୍କ ଦ୍ୱାରା ଭ୍ରମଣ କାହାଣୀ ପୁସ୍ତକ
'ଯେ ଦେଶ ଯାଇ ସେ ଫଳ ଖାଇ' ଲୋକାର୍ପିତ




ପ୍ରଦୀପ ପ୍ରଜ୍ୱଳନ କରି ବିଖ୍ୟାତ ଲେଖକ ମନୋଜ ଦାସ ମିଡିଆ ଏକାଡେମୀ ପ୍ରକାଶିତ
'ପ୍ରବନ୍ଧ ପୟୋଧି' ପୁସ୍ତକ ଲୋକାର୍ପଣ ଉତ୍ସବର ଶୁଭାରମ୍ଭ କରୁଛନ୍ତି




ଓଡ଼ିଶା ହାଇକୋର୍ଟର ନ୍ୟାୟମୂର୍ତ୍ତି ବିମଳ ପ୍ରସାଦ ଦାସ ଇଂରାଜୀ ପୁସ୍ତକ
'ପ୍ଲାଟିନମ୍ ଜୁବିଲି ଅଫ୍ ଓଡ଼ିଶା ପଲିଟିକ୍ସ'ର ଲୋକାର୍ପଣ କରୁଛନ୍ତି



ଶ୍ରୀନଗର ନିକଟବର୍ତ୍ତୀ ପହେଲଗାଓଁ ନିକଟରେ ପତ୍ନୀ ପ୍ରମଦା ଓ ଡ. ସତ୍ୟ ରାୟଙ୍କ ସହିତ



ଗୁଲ୍‌ମାର୍ଗର ପର୍ଯ୍ୟଟନ କେନ୍ଦ୍ରରେ ଅଶ୍ୱାରୋହଣ

# ପୁସ୍ତକ ଲୋକାର୍ପଣ




ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା 'ଓଡ଼ିଶା' ପୁସ୍ତକର ଲୋକାର୍ପଣ



ଓଡ଼ିଶା ବିଧାନସଭା ବାଚସ୍ପତି ଶରତ କୁମାର କର ଓ ଅନ୍ୟ ନେତୃବୃନ୍ଦଙ୍କ ଦ୍ୱାରା
'ଓଡ଼ିଶା ରାଜନୀତିର ଗୋପନ କଥା' ପୁସ୍ତକର ଲୋକାର୍ପଣ




ସ୍ୱାସ୍ଥ୍ୟମନ୍ତ୍ରୀ ଦେବୀ ପ୍ରସାଦ ମିଶ୍ରଙ୍କ ଦ୍ୱାରା 'ଅକୁହା କଥା' ପୁସ୍ତକର ଲୋକାର୍ପଣ



ସୁପ୍ରିମ୍ କୋର୍ଟର ନ୍ୟାୟମୂର୍ତ୍ତି ଅନଙ୍ଗ କୁମାର ପଟ୍ଟନାୟକ ଇଂରାଜୀ ପୁସ୍ତକ
'ଫୁଟ୍ ପ୍ରିଣ୍ଟସ ଅଫ୍ ଇଭେଣ୍ଟଫୁଲ୍ ଡେଜ୍'କୁ ଉନ୍ମୋଚିତ କରି ପତ୍ନୀ ପ୍ରମଦାଙ୍କୁ ପ୍ରଦାନ କରୁଛନ୍ତି

# ପର୍ଯ୍ୟଟନ କେନ୍ଦ୍ର ଭ୍ରମଣ



ଅଜନ୍ତା ଗୁମ୍ଫା ସମ୍ମୁଖରେ



ଏଲୋରା ଗୁମ୍ଫା ସମ୍ମୁଖରେ ଇଞ୍ଜିନିୟର ମୁରଲୀଧର ଶତପଥୀ ଓ କ୍ୟାପ୍‌ଟେନ୍ ଈଶ୍ୱର ଚନ୍ଦ୍ର ମଲ୍ଲିକଙ୍କ ସହିତ



ବୃନ୍ଦାବନ ଗାର୍ଡେନ୍‌ରେ ଏକ ମନୋରମ ସନ୍ଧ୍ୟାରେ



ଗ୍ୟାଙ୍ଗଟକ୍ ଯିବା ରାସ୍ତାରେ ଛାମ୍ଗୁ ଲେକ୍ ନିକଟରେ ଇଂ. ମୁରଲୀଧର ଶତପଥୀଙ୍କ ସହିତ



କନ୍ୟାକୁମାରୀ ମନ୍ଦିର ପରିସରରେ ଆତ୍ମୀୟସ୍ୱଜନଙ୍କ ସହିତ



ଓଁକାରେଶ୍ୱର ମନ୍ଦିର ସମ୍ମୁଖରେ ବନ୍ଧୁ ବିଜୟ ମହାପାତ୍ର,
ପଞ୍ଚାନନ କାନୁନ୍‌ଗୋ ଓ ଶରତ ଦାଶଙ୍କ ସହିତ



ରାମେଶ୍ୱର ମନ୍ଦିର ସମ୍ମୁଖରେ ପରିବାରବର୍ଗଙ୍କ ସହିତ



ମାଉଣ୍ଟ ଆବୁ ସ୍ଥିତ ବ୍ରହ୍ମାକୁମାରୀ କାର୍ଯ୍ୟାଳୟ ସମ୍ମୁଖରେ




'ବସନ୍ତ ଦାସ ଅଭିନନ୍ଦନିକା କମିଟି' ପକ୍ଷରୁ ଅଭିନନ୍ଦନ ଗ୍ରହଣ



ଜାନକୀ ବଲ୍ଲଭ ପଟ୍ଟନାୟକଙ୍କଠାରୁ 'ରାଜଧାନୀ ପୁସ୍ତକମେଳା ସମ୍ମାନ' ଗ୍ରହଣ




ଜାତୀୟ ସାମ୍ବାଦିକ କଲ୍ୟାଣ ବୋର୍ଡ ପକ୍ଷରୁ ନ୍ୟାୟମୂର୍ତ୍ତୀ ଅନଙ୍ଗ କୁମାର ପଟ୍ଟନାୟକଙ୍କଠାରୁ
ଜାତୀୟ ପ୍ରେସ୍ ଦିବସ ସମ୍ମାନ ଗ୍ରହଣ



ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇବା ପରେ 'ସମ୍ବାଦ' ସମ୍ପାଦକ ସୌମ୍ୟରଂଜନ ପଟ୍ଟନାୟକଙ୍କ
ଦ୍ୱାରା ଏକ ଉତ୍ସବରେ ସମ୍ବର୍ଦ୍ଧିତ

ଆଣି ଦେଖାଉଥିଲେ । ଜଳପ୍ରପାତର ମନୋରମ ଦୃଶ୍ୟ ସମ୍ପର୍କରେ ବର୍ଣ୍ଣନା କରୁଥିଲେ । କିନ୍ତୁ ଦିନେ ଯେ ସେ ସ୍ଥାନକୁ ଯାଇହେବ, ସେ ବିଶ୍ୱାସ ମୋର ନଥିଲା ।

ଏଇକଥା ଭାବୁଭାବୁ ମୁଁ ଟିକିଏ ଅନ୍ୟମନସ୍କ ହୋଇଯାଇଥିଲି । ଆଶୁତୋଷ କହିଲେ, "ଅଙ୍କଲ ! ଆମେ ବର୍ତ୍ତମାନ ଅଣ୍ଟାରିଓ ସହରରେ ପହଞ୍ଚିଗଲୁଣି । ନ୍ୟାସନାଲ ହାଇୱେରୁ ବାଟ ଭାଙ୍ଗି କିଛିଦୂର ଗଲେ ଆମେ ନାଏଗ୍ରା ଫଲ୍ ଦେଖିପାରିବା ।

ଆମେ ପ୍ରଥମେ କିଛି ସ୍ନାକ୍ସ ନେଇ ନାଏଗ୍ରା ଫଲର ଦୃଶ୍ୟ ଉପଭୋଗ କଲୁ । ଅପୂର୍ବ ସେ ଦୃଶ୍ୟ । ନାଏଗ୍ରା ନଦୀ ଆମେରିକା ପଟରୁ ଆସି କାନାଡ଼ାରେ ପ୍ରବେଶ କରିବା ସମୟରେ ଗୋଟିଏ ପାହାଡ଼ ଦ୍ୱାରା ଦୁଇଭାଗରେ ବିଭକ୍ତ ହୋଇଯାଇଛି । କାନାଡ଼ା ପଟରେ ଥିବା ଶାଖାଟି ବଡ଼ ହୋଇଥିଲା ବେଳେ ଆମେରିକା ପଟ ଶାଖାଟି ଅପେକ୍ଷାକୃତ ସାନ । ଆମେରିକାରୁ ସଡ଼କ ପଥରେ ଗଲେ ଫଲ୍ ପାଖକୁ ଯାଇହୁଏ । କିନ୍ତୁ କାନାଡା ପଟରୁ ଦୂରରୁ ଦେଖିବାକୁ ପଡ଼େ ।

ଏ ଦୁଇଟିଯାକ ଫଲ୍ କିନ୍ତୁ ଗୋଟିଏ ନଦୀରୁ ସୃଷ୍ଟି ହୋଇଛି । ନାଏଗ୍ରା ନଦୀରୁ ଉତ୍ପତ୍ତି ହୋଇଥିବାରୁ ଏହି ଫଲ୍‌ର ନାଁ ନାଏଗ୍ରା ଫଲ୍ ହୋଇଛି ।

ଅଣ୍ଟାରିଓ ସହର ପରେ ଆମେରିକାର ପ୍ରବେଶ ପଥ ବଫାଲୋ ଠାରେ ଆମର କାଗଜପତ୍ର ତନଖି ହେଲା । ସେଠାରୁ ଆମକୁ ଆହୁରି ଚାରିଶହ ମାଇଲ ବାଟ ଯିବାକୁ ଥିଲା ।

ଶର୍ମିଷ୍ଠାଙ୍କ ହାତରେ ଷ୍ଟିଅରିଂ ଧରିବା ପରେ ମୁଁ ଟିକିଏ ଆତଙ୍କିତ ହୋଇଯାଇଥିଲି । ଆଶୁତୋଷ ବୋଧେ ମୋ ମନର ଭାବନାକୁ ବୁଝିପାରିଲେ । ମତେ ପଚାରିଲେ, "ଅଙ୍କଲ, ଆପଣ କାହିଁକି ଚିନ୍ତିତ ଥିଲା ଭଳି ଦେଖାଯାଉଛନ୍ତି, ଦେହ ଭଲ ନାହିଁ କି ? ଶର୍ମିଷ୍ଠା ଗାଡ଼ି ଡ୍ରାଇଭ କରିପାରିବ କି ନାହିଁ, ସେ କଥା ଚିନ୍ତା କରୁଛନ୍ତି କି ? ପାଶ୍ଚାତ୍ୟ ରାଷ୍ଟ୍ରରେ ଉଭୟ ସ୍ୱାମୀ ଓ ସ୍ତ୍ରୀ ଗାଡ଼ି ଚଳାଇବାକୁ ଏକପ୍ରକାର ବାଧ୍ୟ । ଏଠାରେ କେହି କାହା ଉପରେ ନିର୍ଭରଶୀଳ ନୁହନ୍ତି । ସେଥିପାଇଁ ପରିବାରର ସବୁ ସଦସ୍ୟମାନଙ୍କ ପାଇଁ ଅଲଗା ଅଲଗା ଗାଡ଼ି ଥାଏ । ଏପରିକି ପିଲା ଟିକେ ବଡ଼ ହୋଇଗଲେ, ସେମାନେ ନିଜେ ତାଙ୍କ ଗାଡ଼ି ଚଳାନ୍ତି । ସେ ଦୃଷ୍ଟିରୁ ଶର୍ମିଷ୍ଠା ଗାଡ଼ି ଚଳାଇବାରେ ବେଶ୍ ଦକ୍ଷ । ଆପଣ ନିର୍ଭୟରେ ଗାଡ଼ିରେ ଆରାମ କରନ୍ତୁ ।

ଗାଡ଼ି ଘଣ୍ଟାକୁ ଶହେ ମାଇଲରୁ ଅଧିକ ବେଗରେ ଚାଲୁଥିଲା । ରୋଡ୍ ସରଫେସ୍ ଏତେ ଭଲ ଥିଲା ଯେ ଗାଡ଼ି ଟିକିଏ ହେଲେ ହଲୁ ନଥିଲା । ମୋ ଅଜାଣତରେ ମୁଁ ଗାଡ଼ି ଭିତରେ ଘୁମେଇ ପଡ଼ିଥିଲି ।

ଆଶୁବାବୁଙ୍କ ଘରେ ପହଞ୍ଚିଲାବେଳକୁ ରାତି ନଅଟା । ବାଟରେ ଆମେ ଗୋଟିଏ ପିଜାହଟ୍‌ରୁ କିଛି ପିଜା ଖାଇଥିଲୁ । ମୁଁ ପୂରା ଥକି ଯାଇଥିଲି । ଗୋଟିଏ ଦିନରେ ଆଠଶହ

ମାଇଲ୍ କାରରେ ଯିବା ଜୀବନରେ ଥିଲା ପ୍ରଥମ । ବୋଧହୁଏ ଶେଷ । ରାତିରେ ଖାଇବା ଅବସ୍ଥାରେ ମୁଁ ନଥିଲି । କିନ୍ତୁ ଶର୍ମିଷ୍ଠା ଅଳ୍ପ ସମୟ ଭିତରେ ରୁଟି, ବୁଟ ଡାଲି ଓ ବାଇଗଣ ଭଜା ପ୍ରସ୍ତୁତ କରିଦେଲା । ଇଛା ନଥିଲେ ବି ସେମାନଙ୍କ ଶ୍ରଦ୍ଧା ଭାଙ୍ଗି ନପାରି ସେମାନଙ୍କ ସହିତ ଡିନରରେ ଯୋଗଦେଲି ।

ଖାଇବା ପରେ ମୁଁ ଭୁବନେଶ୍ୱରରୁ ନେଇଥିବା ରୁପା କଣ୍ଠିମାଳଟି ଶର୍ମିଷ୍ଠାଙ୍କୁ ଦେଲି । ସେ ବହୁତ ଖୁସି ହେଲେ ।

ମତେ କହିଲେ, ଆପଣ ଏତେଟଙ୍କା ଖର୍ଚ୍ଚ କରି ମୋ ପାଇଁ କାହିଁକି ଏପରି ଏକ ଦାମିକା କଣ୍ଠିମାଳ ଆଣିଲେ ? ଆପଣଙ୍କର ବହୁତ ଜାଗା ଯିବାର ଅଛି । ଅନେକ ଲୋକଙ୍କ ଘରେ ରହିବେ । ଏଇଟା ମତେ ନଦେଇ ବରଂ ସେମାନଙ୍କୁ ଦେଲେ ଭଲ ହେବ ।

ମୁଁ କହିଲି, "ଦେଖ ଶର୍ମିଷ୍ଠା, ତମେ ସବୁ ପ୍ରାଚୁର୍ଯ୍ୟ ଭିତରେ ଜୀବନ ବିତାଉଛ । ତମର ଅଭାବ ବୋଲି କିଛି ନାହିଁ । ଈଶ୍ୱରଙ୍କର ତମ ପ୍ରତି ଆଶୀର୍ବାଦ ରହିଛି । ତମେ ଏତେ ଶ୍ରଦ୍ଧାରେ ମତେ ଘରକୁ ଆଣିଛ । ରାତି ଅଧରେ ମୋ ଖୁସି ପାଇଁ ରୋଷେଇ କରୁଛ । ମୁଁ ସାମାନ୍ୟ ଗିଫ୍ଟିଏ ଦେଲେ ତାକୁ ଗ୍ରହଣ କରିବ ନାହିଁ ?"

ସକାଳେ ଉଠିଲା ବେଳକୁ ଆଶୁତୋଷଙ୍କ ପରିବାର ଲୋକେ ଗାଧୁଆପାଧୁଆ ସାରି ପ୍ରସ୍ତୁତ ହୋଇସାରିଥିଲେ । ମୋର ସେଦିନ ବୁଲାବୁଲି କରିବାର ଥିବାରୁ ମୁଁ କିଛି ଖାଇବି ନାହିଁ ବୋଲି ନମ୍ରତାର ସହିତ ଜଣାଇଥିଲି । ଶର୍ମିଷ୍ଠା ମୋ ହାତକୁ ଗୋଟିଏ ପ୍ୟାକ୍ଡ ଲଞ୍ଚ ବଢ଼ାଇଦେଇ କହିଲେ, ଏଥିରେ ସାଣ୍ଡୱିଚ୍, ବିସ୍କୁଟ, ଆପଲ ଓ କାସ୍ୟୁ ରହିଛି । ଆମେ ଗତ ଚାରିଦିନ ହେବ କେହି ଘରେ ନଥିଲୁ । ଯାହା ଥିଲା ତାକୁ ପ୍ୟାକ୍ କରିଦେଇଛି । ଆପଣ ସାଙ୍ଗରେ ନେଇଯାଆନ୍ତୁ । ଯେତେବେଳେ ଭୋକ ଲାଗିବ ଖାଇନେବେ ।"

"ଶର୍ମିଷ୍ଠାଙ୍କ କଥାରେ ଆତ୍ମୀୟତା ଭରି ରହିଥିଲା । ମୋ ପାଇଁ ଏତେ କଷ୍ଟ କରିଥିବାରୁ କୃତଜ୍ଞତା ଜଣାଇ ପ୍ୟାକେଟଟି ଗ୍ରହଣ କଲି ।

ପୂର୍ବ କାର୍ଯ୍ୟସୂଚୀ ଅନୁଯାୟୀ ମୋ ସାଙ୍ଗରେ କାନାଡା ଯାଇଥିବା ଓଏଏସ୍ ଅଫିସର ଧୀରେନ୍ ପଟ୍ଟନାୟକ ଜଣେ ବନ୍ଧୁଙ୍କ ସହିତ ଆଶୁବାବୁଙ୍କ ଘରେ ପହଞ୍ଚିଗଲେ ।

ପନ୍ଦର ମିନିଟ୍ ଡ୍ରାଇଭ ପରେ ଆମେ ଯାଇ ନ୍ୟୁ ବର୍ଣ୍ଣଉଇକ୍ ଷ୍ଟେସନରେ ପହଞ୍ଚିଗଲୁ । ସେଠାରୁ ଟିକଟ କରି ଟ୍ରେନରେ ନ୍ୟୁୟର୍କ ଯିବାକଥା । ଟ୍ରେନ ଟିକଟ କୋଉଠୁ ମିଳିବ, ସେଇକଥା ଭାବୁଭାବୁ ଜଣେ ଭାରତୀୟଙ୍କ ସାଙ୍ଗରେ ଦେଖାହୋଇଗଲା ।

ତାଙ୍କ ନାଁ ହର୍ଷ ସୁଦ୍ । ଜନ୍ମ ହରିଆନାରେ । ଗତ ୩୫ ବର୍ଷ ଧରି ନ୍ୟୁଜର୍ସିରେ ରହୁଛନ୍ତି । ଆମକୁ ଦେଖି ସେ ଭାରି ଖୁସି ହୋଇଗଲେ । କ'ଣ ସାହାଯ୍ୟ କରିବେ ବୋଲି ପଚାରିଲେ । ଆମେ ନ୍ୟୁୟର୍କ ଯିବା ପାଇଁ କାଉଣ୍ଟରକୁ ଯାଇ ଟିକଟ କିଣଦେଲେ । ତିନିଜଣଙ୍କ ପାଇଁ ଛତିଶି

ଡଲାର ମୂଲ୍ୟର ଟିକଟ ଲାଗିଥିଲା । ପାଞ୍ଚ ମିନିଟ୍ ମଧ୍ୟରେ ଟ୍ରେନ ଆସିଗଲା । ଆମେ ଟ୍ରେନ୍‌ରେ ତିନୋଟି ଆସନ ଦଖଲ କଲୁ ।

ଟ୍ରେନରେ ବସିଲାବେଳେ ବାରଟି ଷ୍ଟେସନ ପରେ ଓହ୍ଲାଇ ଅନ୍ୟ ଟ୍ରେନ ଧରିବା ପାଇଁ ଶ୍ରୀ ସୁଦ ଆମକୁ ପରାମର୍ଶ ଦେଇଥିଲେ । ସେଥିପାଇଁ ମୁଁ ପ୍ରତ୍ୟେକ ଷ୍ଟେସନକୁ ଗଣୁଥିଲି ।

ଠିକ୍ ବାରଟି ଷ୍ଟେସନ ପରେ ଆସିଲା ୩୪-ପେନ୍ ଷ୍ଟେସନ । ଆମେ ସେଠାରେ ଓହ୍ଲାଇ ଆଉ ଗୋଟିଏ ପ୍ଲାଟଫର୍ମରୁ ୧-ଡାଉନ-ଟାଉନ ଟ୍ରେନରେ ବସିଲୁ । ସେଥିପାଇଁ ଜଣ ପିଛା ୭ ଡଲାର ଦେଇ ଅଲଗା ଟିକଟ କରିବାକୁ ପଡ଼ିଲା । ସେ ଟିକଟ ଦିନସାରା ଯେ କୌଣସି ଟ୍ରେନ କିମ୍ବା ବସ୍ ଯାତାୟାତ ପାଇଁ ପ୍ରଯୁଜ୍ୟ ଥିଲା ।

ଆମେ ପ୍ରଥମେ ଏମ୍ପାୟାର ଷ୍ଟେଟ ବିଲଡିଂକୁ ଯାଇ ନ୍ୟୁୟର୍କ ନଗରର ଦୃଶ୍ୟକୁ ଉପଭୋଗ କଲୁ । ସେଠାରୁ ଫେରି ବିଶ୍ୱ ବାଣିଜ୍ୟ କେନ୍ଦ୍ରର ଧ୍ୱଂସାବିଶେଷ ଦେଖିବାକୁ ଭୁଲିନଥିଲୁ । ଖରାବେଳେ ଆମେ ବାଟେରି ପାର୍କ ପାଖରେ ଥିବା ଆଡଭେଞ୍ଚର ହର୍ଣ୍ଣ ବ୍ଲୋୟର ଫେରି ଘାଟକୁ ଷ୍ଟିମରରେ ଷ୍ଟାଚ୍ୟୁ ଅଫ୍ ଲିବର୍ଟି ଦେଖିବାକୁ ଯାଇଥିଲୁ । ଷ୍ଟାଚ୍ୟୁ ଅଫ ଲିବର୍ଟିରୁ ଫେରିଲା ବେଳକୁ ଚାରିଟା ବାଜି ଯାଇଥିଲା ।

ସକାଳେ ଡାଉନ-ଟାଉନ ଟ୍ରେନରେ ଯିବା ପାଇଁ ଯେଉଁ ଟିକଟ କିଣିଥିଲୁ, ସେଥିରେ ବସ୍‌ରେ ଯାତ୍ରା କରିହେବ ବୋଲି ଶ୍ରୀ ସୁଦ୍ ଆମକୁ କହିଥିଲେ । ତାଙ୍କର ପରାମର୍ଶ ଅନୁସାରେ ଆମେ ଗୋଟିଏ ସିଟି ବସରେ ବସି ପ୍ରଥମେ ୱାଲଷ୍ଟ୍ରିଟକୁ ଗଲୁ ।

ସେଠାରେ ଯୁକ୍ତରାଷ୍ଟ୍ର ଆମେରିକା ସରକାରଙ୍କ କେତେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟାଳୟ ରହିଥିଲା । ସଶସ୍ତ୍ର ପ୍ରହରୀମାନେ ତାକୁ ଜଗି ରହିଥିଲେ । ନିକଟରେ ଥିବା ଆମେରିକାର ପୂର୍ବତନ ରାଷ୍ଟ୍ରପତି ଜର୍ଜ ୱାଶିଂଟନଙ୍କର ଏକ ପୂର୍ଣ୍ଣାବୟବ ମୂର୍ତ୍ତି ରହିଥିଲା । ଆମେ ସେଠାରେ କିଛି ଫଟୋ ଉଠାଇ ପୁଣି ଆଉ ଗୋଟିଏ ବସ୍‌ରେ ଯାଇ ଟାଇମ ସ୍କୋୟାରରେ ଓହ୍ଲାଇଲୁ ।

ମୁଁ ଟରଣ୍ଟୋରୁ ଚେଷ୍ଟର ସହରରେ ରହୁଥିବା ବିଶିଷ୍ଟ ପ୍ରବାସୀ ଓଡ଼ିଆ ଡକ୍ଟର ବୀରେନ୍ଦ୍ର ପଟ୍ଟନାୟକଙ୍କ ଘରକୁ ଯିବାପାଇଁ ଆଗରୁ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ମାତ୍ର ଘଟଣାକ୍ରମରେ ଆଶୁତୋଷ ଦତ୍ତଙ୍କ ପରିବାର ସହିତ ସଡ଼କ ପଥରେ ଟରଣ୍ଟୋରୁ ନ୍ୟୁଜର୍ସି ଯାତ୍ରା ଏବଂ ବନ୍ଧୁ ଧୀରେନ ପଟ୍ଟନାୟକଙ୍କ ସାଙ୍ଗରେ ନ୍ୟୁୟର୍କ ସହର ବୁଲାରେ ଚବିଶ ଘଣ୍ଟା କଟିଗଲା ।

ଆଶୁତୋଷଙ୍କ ଘରଠାରୁ ଡକ୍ଟର ପଟ୍ଟନାୟକଙ୍କ ଘରର ଦୂରତା ପ୍ରାୟ ପଚିଶ ମାଇଲ୍ । ରାତି ନ'ଟାରେ ଗାଡ଼ିରେ ନେଇ ମତେ ଡକ୍ଟର ପଟ୍ଟନାୟକଙ୍କ ଘରେ ଛାଡ଼ିଦେଇ ଆସିବାକୁ ଆଶୁତୋଷ ବାହାରିଲେ ।

ରାତି ଦଶଟା ବେଳକୁ ଆମେ ଡକ୍ଟର ପଟ୍ଟନାୟକଙ୍କ ଘର ସାମନାରେ ପହଞ୍ଚିଗଲୁ । ରାସ୍ତାଠାରୁ ତାଙ୍କ ଘରଟି ପ୍ରାୟ ୩୦ଫୁଟ ଉଚ୍ଚରେ ଥିଲା । ଆମ ଗାଡ଼ି ମେନ୍‌ରୋଡ ଛାଡ଼ି

ତାଙ୍କ ରାସ୍ତାରେ ପହଞ୍ଚିବା ମାତ୍ରେ ତାଙ୍କ ଘରର ବାହାର ଆଲୁଅ ଜଳି ଉଠିଲା । ଗ୍ୟାରେଜ ପାଖରେ ପହଞ୍ଚିଲାରୁ ଆଉ ଦୁଇଟି ଆଲୁଅ ଜଳିଲା ।

ମୁଁ ଭାବିଲି ବୋଧହୁଏ ଡକ୍ଟର ପଟ୍ଟନାୟକ ଆମ ଆସିବା ଖବର ପାଇ ବାହାର ଆଲୁଅ ଜଳାଇଲେ । ଅଳ୍ପ ସମୟ ମଧ୍ୟରେ ସେ କବାଟ ଖୋଲିବେ । କିନ୍ତୁ ଆମେ ପହଞ୍ଚିବାର ଦଶମିନିଟ୍ ପର୍ଯ୍ୟନ୍ତ କବାଟ ନଖୋଲିବାରୁ ମୁଁ ଆଶ୍ଚର୍ଯ୍ୟ ହେଲି । ଆଶୁତୋଷ ଗାଡ଼ିରୁ ଓହ୍ଲାଇ କଲିଂବେଲ୍ ଟିପିବାରୁ ଡକ୍ଟର ପଟ୍ଟନାୟକ ଆସି କବାଟ ଖୋଲିଲେ ।

ମୁଁ ଆଶୁତୋଷଙ୍କୁ ବିଦାୟ ଦେଇ ଡକ୍ଟର ପଟ୍ଟନାୟକଙ୍କ ସହିତ ଘର ଭିତରକୁ ଗଲି । ସେ ମତେ ଉପର ମହଲାରେ ଥିବା ଗେଷ୍ଟରୁମ୍‌କୁ ନେଇଗଲେ । ତାଙ୍କ ଘରେ ମଧ୍ୟ ସେଇ ଏକା ବ୍ୟବସ୍ଥା । ୱାଲ-ଟୁ-ୱାଲ ଦାମୀ କାରପେଟ । କାଠ ସିଡ଼ି ଉପରେ ନରମ ଗାଲିଚାର ଆବରଣ । କଷ୍ଟେମଷ୍ଟେ ଆଟାଚଟି ଉଠାଇ ଉପରକୁ ଗଲି ।

ସକାଳୁ ଉଠି ନିତ୍ୟକର୍ମ ସାରି ତଳକୁ ଆସିଲା ବେଳକୁ ଡକ୍ଟର ପଟ୍ଟନାୟକଙ୍କ ପତ୍ନୀ ମିସେସ୍ ନବନୀତା ପଟ୍ଟନାୟକ ତାଙ୍କ କର୍ମକ୍ଷେତ୍ରକୁ ଚାଲିଯାଇଥିଲେ । ଯିବା ପୂର୍ବରୁ ଆମ ପାଇଁ କିଛି ବ୍ରେକଫାଷ୍ଟ ରଖିଯାଇଥିଲେ ।

ଶ୍ରୀମତୀ ପଟ୍ଟନାୟକ ଉଚ୍ଚଶିକ୍ଷିତା ଓ ଆଧୁନିକା । ରେଭେନ୍ସା କଲେଜରେ ପୂର୍ବତନ ଅଧ୍ୟକ୍ଷ ବିଶିଷ୍ଟ ପ୍ରଫେସର ଡକ୍ଟର ମହେନ୍ଦ୍ର ରାଉତଙ୍କ ଝିଆରୀ । ଦୀର୍ଘ ପଇଁଚାଳିଶ ବର୍ଷ ପୂର୍ବେ ସ୍ୱାମୀଙ୍କ ସହିତ ଆମେରିକା ଯାଇଥିଲେ । ଘଟଣାକ୍ରମରେ ସେଠାକାର ପରିବେଶ ଓ ପରିସ୍ଥିତିକୁ ଆଦରି ନେଲେ ।

ମୁଁ ଡକ୍ଟର ପଟ୍ଟନାୟକଙ୍କ ଘରେ ତିନିଦିନ ରହିଥିଲି । ସେହି ସମୟର ଆତ୍ମୀୟତା ମୁଁ ଆଜି ପର୍ଯ୍ୟନ୍ତ ଭୁଲିପାରି ନାହିଁ । ତାଙ୍କ ଘରେ ଥିବା ସମୟରେ ଡକ୍ଟର ପଟ୍ଟନାୟକ ନିଜେ ଗାଡ଼ି ଡ୍ରାଇଭ୍ କରି ତାଙ୍କ ଘର ଠାରୁ ୫୦ ମାଇଲ ଦୂରରେ ଥିବା ‘ଦେଲୱାର ୱାଟର କ୍ୟାମ୍ପ’ ପର୍ଯ୍ୟଟନସ୍ଥଳୀକୁ ମତେ ନେଇଗଲେ । ପ୍ରାକୃତିକ ପରିବେଶ ମଧ୍ୟରେ ସ୍ଥାନଟି ଖୁବ୍ ଉପଭୋଗ୍ୟ ଥିଲା । ଚେଷ୍ଟରରୁ ମୋର କାଲିଫର୍ଣ୍ଣିଆର ସାନଜୋସେକୁ ଯିବାର ଥିଲା । ଡକ୍ଟର ପଟ୍ଟନାୟକଙ୍କ ଘର ପାଖରୁ ବିମାନ ବନ୍ଦରର ଦୂରତା ୫୦ ମାଇଲ୍ । ଡକ୍ଟର ପଟ୍ଟନାୟକଙ୍କ ମତେ ନେଇ ବିମାନବନ୍ଦରରେ ଛାଡି ଦେଇଆସିଲେ ।

ଆମେରିକାର ଅନ୍ୟାନ୍ୟ ରାଜ୍ୟ ତୁଳନାରେ କାଲିଫର୍ଣ୍ଣିଆ ଅଧିକ ପ୍ରଗତିଶୀଳ । ସେଠାକାର ବାସିନ୍ଦାମାନେ ଅଧିକ ସଚେତନ । ସ୍ୱାଧୀନ ଭାବରେ ଜୀବନ ଉପଭୋଗ କରିବାକୁ ପସନ୍ଦ କରିଥାନ୍ତି । ସେ ରାଜରେ ସମଲିଙ୍ଗୀ ବିବାହକୁ ଆନୁଷ୍ଠାନିକ ସ୍ୱୀକୃତି ପ୍ରଦାନ କରାଯାଇଛି ।

ନ୍ୟୁୟର୍କରୁ ସାନଜୋସେ ସାଢ଼େ ତିନିଘଣ୍ଟାର ବିମାନ ଯାତ୍ରା । ସ୍ଥାନୀୟ ସମୟ ରାତି ସାଢ଼େ ନଅଟା ସମୟରେ କଣ୍ଟିନେଣ୍ଟାଲ ବିମାନଟି ସାନଜୋସେ ବିମାନ ବନ୍ଦରରେ ଅବତରଣ କଲା ।

ଆଭ୍ୟନ୍ତରୀଣ ବିମାନଯାତ୍ରା ହୋଇଥିବାରୁ ସେଠାରେ ପାସପୋର୍ଟ କିମ୍ବା ଭିସା ଇତ୍ୟାଦି ତନଖି କରିବାର ଆବଶ୍ୟକତା ପଡ଼ିନଥିଲା । ବ୍ୟାଗେଜ ସଂଗ୍ରହ କରି ମୁଁ ବାହାରକୁ ଆସିଲି ଓ ଡକ୍ଟର ଗୌରୀ ଦାସ ମୋତେ ଯେଉଁସ୍ଥାନରେ ଛିଡ଼ାହେବାକୁ ପରାମର୍ଶ ଦେଇଥିଲେ, ସେଇଠି ଅପେକ୍ଷା କରି ରହିଲି ।

କିଛି ସମୟ ପରେ ଗୋଟିଏ ଲାନସର ଗାଡ଼ି ଆସି ମୋ ସାମନାରେ ଅଟକିଲା । ଜଣେ ବୟସ୍କବ୍ୟକ୍ତି ସେଥିରୁ ମୋ ଆଡ଼କୁ ଆସିଲେ । ସେ ଯେ ଡକ୍ଟର ଗୌରୀ ଦାସ ସେଥିରେ ମୋର କୌଣସି ସନ୍ଦେହ ନଥିଲା । ଡକ୍ଟର ଦାସ ଆଗରୁ ମୋ ଫଟୋ ପାଇଥିଲେ । ତେଣୁ ମତେ ଚିହ୍ନିବାକୁ ତାଙ୍କ ପକ୍ଷରେ କିଛି ଅସୁବିଧା ହୋଇନଥିଲା ।

ସେ ଆସି ମୋ ସହିତ କରମର୍ଦ୍ଦନ କରି ଟ୍ରାଫିକ୍ ଜାମ ପାଇଁ ଟିକିଏ ଡେରି ହୋଇଗଲା ବୋଲି କହିଲେ । ଅଧଘଣ୍ଟାଏ ଭିତରେ ଆମେ ତାଙ୍କ ଘରେ ପହଞ୍ଚିଗଲୁ । ତାଙ୍କର ଦୋତାଲା ଘରଟିର ପରିପାଟୀରୁ ତାଙ୍କ ରୁଚିର ସୂଚନା ମିଳିଥିଲା ।

ଡକ୍ଟର ଦାସଙ୍କ ପତ୍ନୀ ଜଣେ କର୍ମଜୀବୀ ମହିଳା ହେଲେ ବି ଗୃହକର୍ମରେ ନିପୁଣା । ଅତିଥି ସେବା ତାଙ୍କର ଏକପ୍ରକାର 'ହବି' । ପରଦିନ ସକାଳେ ମୋର ସାନଫ୍ରାନସିସ୍କୋ ସହରକୁ ବୁଲିବାକୁ ଯିବାର କାର୍ଯ୍ୟକ୍ରମ ଥିବାରୁ ଆମେ ସମସ୍ତେ ଶୀଘ୍ର ଡିନର ଶେଷ କରିଦେଲୁ । ଶୋଇବାକୁ ଯିବା ପୂର୍ବରୁ ଶ୍ରୀମତୀ ଦାସ ମୋ ପାଇଁ ବିସ୍କୁଟ୍, କାସ୍ୟୁ ଓ କିଛି ଫଳ ପ୍ୟାକେଟ୍ ରଖିଥିଲେ ।

ଟୁରିଷ୍ଟ ବସରେ ସାନଫ୍ରାନସିସ୍କୋ ସହର ବୁଲିଯିବା ପାଇଁ ମୋର ଆଗରୁ ଆଡ୍‌ଭାନ୍ସ ଟିକଟ୍ କରାଯାଇଥିଲା । ମଧ୍ୟାହ୍ନ ଭୋଜନ ସହ ଆରାମଦାୟକ ବାତାନୁକୂଳ ବସ୍‌ରେ ଗୋଟିଏ ଦିନ ପାଇଁ ଜଣ ପିଛା ସତୁରୀ ଡଲାର (ଭାରତୀୟ ମୁଦ୍ରାରେ ୨୮୦୦ଟଙ୍କା) ଲାଗୁଥିଲା ।

ବସଟି ସକାଳ ସାତଟାରେ ଛାଡ଼ି ସାନଫ୍ରାନସିସ୍କୋ ସହରର ମୁଖ୍ୟ ଦର୍ଶନୀୟ ସ୍ଥାନ ବୁଲାଇ ଦେଖାଇଲା ପରେ ଅପରାହ୍ନ ପାଞ୍ଚଟା ବେଳେ ଆଣି ସାନଜୋସେରେ ପର୍ଯ୍ୟଟକମାନଙ୍କୁ ଓହ୍ଲାଇ ଦେଉଥିଲା ।

ଆମେ ଯାଇ ୧୭୦୧-ଲମ୍ବି ଆଭେନ୍ୟୁରେ ଥିବା 'ପ୍ରାଇମା ଟେଷ୍ଟ ରେଷ୍ଟୁରାଣ୍ଟ' ସାମନାରେ ପହଞ୍ଚିଲା ବେଳକୁ ଟୁରିଷ୍ଟବସ୍ ସେଠାରେ ଅପେକ୍ଷା କରିଥିଲା । ମୋର କାଳେ କିଛି ଅସୁବିଧା ହେବ, ସେଥିପାଇଁ ଡକ୍ଟର ଦାସ ଗୋଟିଏ ମୋବାଇଲ୍ ଫୋନ ମତେ ଦେଇଥିଲେ । ସେଥିରେ କେତେକ ଜରୁରୀ ଟେଲିଫୋନ ସହିତ ଆହୁରି ଅନେକ ଡାଟା ଫିଡ୍ ହୋଇଥିଲା ।

ଆମ ପାଖରେ ଦଶଘଣ୍ଟା ସମୟ ଥିଲା । ସାନଫ୍ରାନସିସ୍କୋ ନଗରର ଅନୁସାରୀ ପର୍ଯ୍ୟଟନସ୍ଥଳୀ । ସେଥିପାଇଁ ସମୟ ସହିତ ତାଳଦେଇ ଆମକୁ ଗତି କରିବାକୁ ପଡୁଥିଲା ।

ସହର ଭିତରେ ବୁଲିବା ଭିତରେ ଆମେ ସାନଫ୍ରାନସିସ୍କୋ ସହିତ ମାଇନ୍ କାଉଣ୍ଟିର ସଂଯୋଗ ପରେ ଗୋଲଡେନ୍ ଗେଟ୍ ବ୍ରିଜ୍ ଦେଖିବାର ସୁଯୋଗ ପାଇଥିଲୁ । ଫେରିବା ବାଟରେ ଆମେ ଚାଇନା ଟାଉନ୍ ଓ ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ଦେଖିଥିଲୁ ।

ସମୟ ଠିକ୍ ପାଞ୍ଚଟାବେଳେ ଟୁରିଷ୍ଟ ବସଟି ଯାଇ ପ୍ରାଇମା ଟେଷ୍ଟ ରେଷ୍ଟୁରାଣ୍ଟ ସାମନାରେ ଅଟକିଲା । ବସ୍‌ରେ ବସିଥିଲାବେଳେ ମୁଁ ଭାବୁଥିଲି, ଯଦି ତାଙ୍କ ଘରକୁ ଫୋନ ନଲାଗିବ, ତେବେ ମୁଁ କ'ଣ କରିବି ?

ମାତ୍ର ବସ୍‌ରୁ ଓହ୍ଲାଇବା ସମୟରେ ଯେତେବେଳେ ଗୌରୀବାବୁ 'ଟୁର୍ କିପରି ହେଲା' ବୋଲି ପଚାରିଲେ, ମୋର ସମସ୍ତ ଚିନ୍ତାର ଅବସାନ ଘଟିଲା ।

ଆମେ ଘରେ ପହଞ୍ଚିଲାବେଳକୁ ମିସେସ ଦାସ ଆସି ଘରେ ପହଞ୍ଚିଯାଇଥିଲେ । "ଖରାବେଳେ କିଛି ଖାଇନଥିବେ, କ'ଣ ଖାଇବେ" ବୋଲି ମୋତେ ପଚାରିଲେ । ମୁଁ କିଛି ଉତ୍ତର ଦେବା ପୂର୍ବରୁ, ସେ କିଛି ଫଳ ଆଣି ଟେବୁଲ ଉପରେ ଥୋଇଦେଲେ । ସେଥିରେ ତରଭୁଜ ଭଳି କିଛି ଫଳ ଦେଖାଯାଉଥିଲା । କିନ୍ତୁ ତାର ସ୍ୱାଦ ଭିନ୍ନ ଥିଲା । ମିସେସ ଦାସ କହିଲେ, "ଏଇଟା ହେଉଛି 'କାଣ୍ଟଲେପ' । ଏଠାରେ ପ୍ରାୟ ସମସ୍ତେ ଏହି ଫଳ ଖାଇଥାନ୍ତି । ଏହା ଖୁବ୍ ସୁସ୍ୱାଦୁ ।"

ଡାଇନିଂ ଟେବୁଲରେ ବସି ଗପ କରିବା ଭିତରେ ମିସେସ ଦାସ ଡିନର ପ୍ରସ୍ତୁତ କରିସାରିଥିଲେ । ମୁଁ ରୁପାର ଯେଉଁ କଣ୍ଠିମାଳଟି ତାଙ୍କୁ ପ୍ରେଜେଣ୍ଟ କରିଥିଲି, ସେଇଟା ତାଙ୍କର ଖୁବ୍ ପସନ୍ଦ ହୋଇଥିବାରୁ ମୋତେ ଧନ୍ୟବାଦ ଦେଇ କହିଲେ, "ଅପଣ କ'ଣ ଏଇଟି ନ ଆଣିଥିଲେ ଚଳି ନଥାନ୍ତା । ଏଇଟି ଖୁବ୍ ସୁନ୍ଦର ହୋଇଛି । ଆପଣଙ୍କ ପସନ୍ଦକୁ ମାନିବାକୁ ପଡ଼ିବ ।"

ଆମେରିକାରେ ସାଧାରଣତଃ ଆମଭଳି କେହି ମଧ୍ୟାହ୍ନଭୋଜନ କରି ଦି'ଘଣ୍ଟା ବିଶ୍ରାମ ନେବାର ପ୍ରଥା ନାହିଁ । ଖରାବେଳେ କିଛି ସ୍ନାକ୍ସ ହେଲେ ସେମାନଙ୍କର ଚଳିଯାଏ । ସନ୍ଧ୍ୟା ପରେ ସେମାନେ ମୁଖ୍ୟ ଭୋଜନ କରିଥାନ୍ତି ।

ଗୌରୀବାବୁଙ୍କ କଥାରେ ମୁଁ ସମ୍ମତି ଜଣାଇଲା ପରେ ଆମେ ଗୁରୁଦ୍ୱାର ଆଡ଼େ ଚାଲିଲୁ । ପ୍ରାୟ କୋଡିଏ ମାଇଲ୍ ବାଟ ଯିବା ପରେ ଗୋଟିଏ ପାହାଡ଼ ଉପରେ ଥିବା ଗୁରୁଦ୍ୱାର ପାଖରେ ଆମ ଗାଡ଼ି ଅଟକିଲା । ଗାଡ଼ିକୁ ପାର୍କିଂ ସ୍ଥାନରେ ରଖି ଗୌରୀବାବୁ ଓ ମୁଁ ଗୁରୁଦ୍ୱାରର ଅଭ୍ୟର୍ଥନା କକ୍ଷ ଆଡ଼େ ଚାଲିଲୁ ।

ଭୁବନେଶ୍ୱରରେ ଥିବା ଗୁରୁଦ୍ୱାରକୁ ଏକାଧିକବାର ଯିବାର ସୁଯୋଗ ମିଳିଥିବାରୁ ଶିଖଧର୍ମର ପରମ୍ପରା ସମ୍ପର୍କରେ ମୁଁ ଉଣାଅଧିକେ ପରିଚିତ ଥିଲି । ସେଥିପାଇଁ ଅଭ୍ୟର୍ଥନା କକ୍ଷରେ ପହଞ୍ଚିବା ପୂର୍ବରୁ ପକେଟରୁ ରୁମାଲ କାଢ଼ି ମୁଣ୍ଡରେ ବାନ୍ଧିଲି । ଖରାରେ ଝାଳ

ବାହାରୁଥିବାରୁ ରୁମାଲ ପକେଟରେ ରଖିବା ଆମ ସମସ୍ତଙ୍କର ଏକ ଅଭ୍ୟାସ । କିନ୍ତୁ ପାଶ୍ଚାତ୍ୟ ଦେଶମାନଙ୍କରେ ବର୍ଷର ଅଧିକାଂଶ ସମୟରେ ଥଣ୍ଡାର ପ୍ରଭାବ ଥିବାରୁ ସାଧାରଣ ଭାବେ କନା ରୁମାଲ କେହି ବ୍ୟବହାର କରିନଥାନ୍ତି ।

ଲିଙ୍ଗରରେ ଭାତ, ରୁଟି, ଡାଲି, କୋବି ତରକାରି, ଭେଣ୍ଡିଭଜା, ଆଚାର, ପାମ୍ପଡ଼, ସାଲାଡ ସବୁ ମିଳୁଥିଲା । ହଲ୍‌ରେ ଟେବୁଲ ଚେୟାର ଓ ତଳେ ବସି ଖାଇବା ପାଇଁ ଦରି ପଡ଼ିଥିଲା । ଗୁରୁଦ୍ୱାରର ଶୃଙ୍ଖଳା ଦୃଷ୍ଟିରୁ ଲୋକେ ଲାଇନରେ ଯାଇ ଖାଇବା ଜିନିଷ ନେଇ ନିଜ ପସନ୍ଦ ମୁତାବକ ଜାଗାରେ ବସୁଥିଲେ ।

ଗୁରୁଦ୍ୱାରର ନିୟମ ଓ ପରମ୍ପରା ଦୃଷ୍ଟିରୁ ଯେଉଁ ଅଣ-ପଞ୍ଜାବୀମାନଙ୍କୁ ଭିତରକୁ ଯିବାକୁ ପଡୁଥିଲା, ସେମାନେ ସମସ୍ତେ ମୁଣ୍ଡରେ ରୁମାଲ ବାନ୍ଧୁଥିଲେ ।

ଗୌରୀବାବୁଙ୍କ ପାଖରେ ରୁମାଲ ନଥିଲା । ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ଝାଳ ବୋହୁ ନଥିବାରୁ କେହି ରୁମାଲ ବ୍ୟବହାର କରନ୍ତି ନାହିଁ । ସେମାନଙ୍କର ଝାଡାଫେରି ଶୌଚ ହେବାଠାରୁ ଆରମ୍ଭ କରି ଖାଇସାରି ହାତ ମୁହଁ ପୋଛିବା ପର୍ଯ୍ୟନ୍ତ ସବୁକାମ କାଗଜରେ ଚଳିଯାଏ ।

ଅନ୍ୟମାନଙ୍କ ସହିତ ଲାଇନରେ ଯାଇ ଖାଦ୍ୟ ପଦାର୍ଥ ଆଣି ଚେୟାରରେ ବସି ଖାଇଲି । ଡାଇନିଂ ହଲରେ ଗୌରୀବାବୁଙ୍କର ଦେଖା ମିଳିଲା ନାହିଁ । ମୁଣ୍ଡରେ ବାନ୍ଧିବା ପାଇଁ ରୁମାଲ ନଥିବାରୁ ସେ ଭିତରକୁ ଯାଇ ନଥିଲେ ।

ଗୁରୁଦ୍ୱାରର କର୍ମଚାରୀମାନେ ଗୋଟିଏ ବାକ୍ସରେ କେତେକ ରଙ୍ଗୀନ ରୁମାଲ ଆଣି ଗୌରୀବାବୁଙ୍କୁ ଦେଖାଇଥିଲେ । କିନ୍ତୁ ଅନ୍ୟ ବ୍ୟବହୃତ ରୁମାଲକୁ ସେ ମୁଣ୍ଡରେ ବାନ୍ଧି ପାରିବେ ନାହିଁ ବୋଲି  ବିନମ୍ରତାର ସହିତ ମନା କରି ଦେଇଥିଲେ ।

ସେ ଘଟଣା ମତେ ବିବ୍ରତ କରିଥିଲା । ଗୁରୁଦ୍ୱାରରେ ଭୋଜନ ପାଇଁ ସେ ମତେ ନେଇଥିଲେ । ମୁଁ ଖାଇଲି । ଅଥଚ ସେ ଖାଇପାରିଲେ ନାହିଁ । ମଧ୍ୟାହ୍ନଭୋଜନ ସହିତ ଅଭ୍ୟସ୍ତ ନଥିବାରୁ ଗୁରୁଦ୍ୱାରରେ ନଖାଇବା ଘଟଣା ତାଙ୍କ ଉପରେ କୌଣସି ପ୍ରଭାବ ପକାଇ ନଥିଲା ।

ତା' ପରଦିନ ମୋର ଆଲବାମା ଯିବା କଥା । ସେଥିରେ ଗୋଟିଏ ଅସୁବିଧା ଥିଲା । ସାନଜୋସେରୁ ସିଧାସଳଖ ଆଲବାମାକୁ ବିମାନ ସେବାର ସୁବିଧା ନଥିଲା । ପ୍ରଥମେ ସାନଜୋସେରୁ ହାଷ୍ଟନ ଓ ହାଷ୍ଟନ ବିମାନ ବନ୍ଦରରୁ ବର୍ମିଂହାମ୍ ଯିବାକୁ ପଡୁଥିଲା ।

ସାନଜୋସେରୁ ହାଷ୍ଟନ ଯାଉଥିବା ବିମାନଟି ସକାଳ ୬ଟା ୧୫ ମିନିଟ୍‌ରେ ଛାଡୁଥିଲା । ସେଥିପାଇଁ ଆମକୁ ରାତି ସାଢ଼େ ତିନିଟାରେ ଘର ଛାଡିବାକୁ ପଡିଥିଲା । ଗୌରୀବାବୁ ନିଜେ ଡ୍ରାଇଭ କରି ମତେ ବିମାନ ବନ୍ଦରରେ ଛାଡି ଦେଇଥିଲେ ।

ବିମାନ ବନ୍ଦରରେ ସେଇ ପୁରୁଣା ଘଟଣାର ପୁନରାବୃତ୍ତି । ଜିନିଷର ଓଜନ ବେଶି ନଥିଲେ ବି ଦ୍ୱିତୀୟ ବ୍ୟାଗ ପାଇଁ ପଚାଶ ଡଲାର ଦେବାକୁ ପଡ଼ିଲା । ପ୍ରଫେସର ଦିଗମ୍ବର

ମିଶ୍ରଙ୍କ ପାଇଁ ମୁଁ ସାଙ୍ଗରେ ନେଇଥିବା ସାମାନ୍ୟ ଚୁଡ଼ାଭଜା, ସେଉ ଓ ମିକ୍ସର ପାଇଁ ଦୁଇଟି ଷ୍ଟାନରେ ପଚାଶ ଡଲାର (ଭାରତୀୟ ମୁଦ୍ରାରେ ଦୁଇ ହଜାର ଟଙ୍କା) ଦେବାପାଇଁ ପଡ଼ିବାରୁ ମନଟା ଖରାପ ହୋଇଗଲା । ଅଧିକ ଦେୟ ପଡ଼ିବ ବୋଲି ଜାଣିଥିଲେ ମୁଁ ଗୋଟିଏ ବଡ଼ ବ୍ୟାଗରେ ସବୁ ଜିନିଷ ନେଇ ପାରିଥାନ୍ତି ବୋଲି ଭାବିଲି । 'ଗତସ୍ୟ ଶୋଚନା ନାସ୍ତି' ବିଚାରି, ଲଗେଜ ବୁକିଂ କରି ବୋର୍ଡିଂ କାର୍ଡ ଧରି ମୁଁ ଭିତରେ ପଶିଲି ।

ଆମ ବିମାନଟି ହାଷ୍ଟନ ବିମାନ ବନ୍ଦରର ଟର୍ମିନାଲ୍ 'ଏ'ରେ ଓହ୍ଲାଇଲା । ସେଠାରୁ ଯାଇ ଟର୍ମିନାଲ୍ 'ବି'ରେ ବର୍ମିଂହାମ୍ ପାଇଁ ବିମାନ ଧରିବା କଥା । ଟର୍ମିନାଲ 'ଏ'ରୁ 'ବି'କୁ କିପରି ଯିବି, କେତେବାଟ ହୋଇଥିବ, ଯିବାପାଇଁ କିଛି ଯାନବାହନର ସୁବିଧା ଥିବ କି ନାହିଁ ବିମାନରେ ବସିଥିବା ସମୟରେ ସେଇସବୁ କଥା ମୁଣ୍ଡରେ ଢୁକିଥିଲା ।

କିନ୍ତୁ ବିମାନ ବନ୍ଦରରେ ଥିବା ବ୍ୟବସ୍ଥା ଦେଖି ସେ ଚିନ୍ତା ଆପେଆପେ ଚାଲିଗଲା । ବିମାନରୁ ଓହ୍ଲାଇ ଏସ୍କାଲେଟରରେ ଉପରକୁ ଯିବାପରେ ଟର୍ମିନାଲ 'ବି'କୁ ନେବାପାଇଁ ସେଠାରେ ଗୋଟିଏ ଟ୍ରେନ ଅପେକ୍ଷା କରି ରହିଥିଲା । ଆମେ ଯେଉଁମାନେ ବର୍ମିଂହାମ୍ ଯିବାକଥା ସେମାନେ ଟ୍ରେନରେ ବସିସାରିଲା ପରେ ଟ୍ରେନଟି ଆମକୁ ନେଇ ଟର୍ମିନାଲ 'ବି'ରେ ଛାଡ଼ିଦେଲା ।

ଆମେରିକା ଗସ୍ତ ସମୟରେ କୌଣସି ସମ୍ପର୍କୀୟଙ୍କ ଘରକୁ ଯାଇ ସେମାନଙ୍କ ବ୍ୟସ୍ତବହୁଳ ଜୀବନଯାତ୍ରାରେ ବାଧା ସୃଷ୍ଟି କରିବାକୁ ମୁଁ ଚାହିଁନଥିଲି । କିନ୍ତୁ ଦିଗା ଭାଇନା(ପ୍ରଫେସର ଦିଗାମ୍ବର ମିଶ୍ର) ଆଲବାମାରେ ଥିବା ମୋ ପୁତୁରା ବାଦଲ ଓ ତା' ସ୍ତ୍ରୀ ଅସୀମାକୁ ମୋ ଯିବା ସମ୍ପର୍କରେ ଜଣାଇ ଦେଇଥିଲେ । ହାଷ୍ଟନ ବିମାନ ବନ୍ଦରରୁ ମୁଁ ବ୍ୟାଗେଜ ସଂଗ୍ରହ କରି ବାହାରକୁ ଆସିଲା ବେଳକୁ ବାଦଲ ଓ ଅସୀମା ଆସି ପହଞ୍ଚି ଯାଇଥିଲେ । ବାଦଲକୁ ମୁଁ ଗତ ପଚିଶ ବର୍ଷ ହେଲା ଦେଖିନଥିଲି । ତା' ସ୍ତ୍ରୀ ଅସୀମା ମଧ୍ୟ ମୋ'ପାଇଁ ସମ୍ପୂର୍ଣ୍ଣ ଅପରିଚିତ ଥିଲା । ତା' ସତ୍ତ୍ୱେ ସେମାନଙ୍କ ପକ୍ଷରେ ମତେ ଚିହ୍ନିବା ପାଇଁ କିଛି ଅସୁବିଧା ହୋଇ ନଥିଲା ।

ବାଦଲର ଗୋଟିଏ ପୁଅ ଓ ଗୋଟିଏ ଝିଅ । ଝିଅ ବଡ଼, ମେଡିକାଲ କଲେଜରେ ନାମ ଲେଖାଇବା ପାଇଁ ମନୋନୀତ ହୋଇଥିଲା । ପୁଅ ସ୍କୁଲରେ ପଢୁଥିଲା । ମୁଁ ତାଙ୍କ ଘରକୁ ଯିବା ସମୟରେ ଝିଅ ସାଙ୍ଗ ଘରକୁ ଯାଇଥିଲା ବେଳେ ପୁଅ ମାଉଣ୍ଟେନିୟରିଂ ଟ୍ରେନିଂ ପାଇଁ କ୍ୟାମ୍ପରେ ଥିଲା । ଘରେ କେବଳ ବାଦଲ ଓ ଅସୀମା ରହୁଥିଲେ ।

ଅସୀମା ପିପିଲି ପାଖ ଅରିସୋଲ ଗାଁ'ର ଝିଅ । ଗାଁ' ଚାଟଶାଳୀରୁ ପାଠପଢ଼ା ଆରମ୍ଭ । ଆମ ଗାଁ' ମଇଁନ୍ଦିପୁରର ବୋହୂ । ମଇଁନ୍ଦିପୁରରୁ ବର୍ମିଂହାମ୍, କାହିଁ କେତେଦୂର ! ଚାଲିଚଳଣି, କଥାବାର୍ତ୍ତା, ଖାଇବାପିଇବାରେ କେତେ ଫରକ । ଅସୀମା ନିଜ ଅଧ୍ୟବସାୟ ବଳରେ ସବୁ ପ୍ରତିକୂଳ ପରିସ୍ଥିତିର ସାମନା କରି ପଲିମର୍ କମ୍ପାନୀର ଏକ୍‌ଜିକ୍ୟୁଟିଭ୍ ହୋଇପାରିଛି ।

ଆମେରିକାରେ ଦୀର୍ଘଦିନ ରହିଥିଲେ ସୁଦ୍ଧା ବାଦଲ ଓ ଅସୀମା ନିଜ ସଂସ୍କୃତିକୁ ଭୁଲି ନାହାନ୍ତି । ଘରେ ଜଗନ୍ନାଥଙ୍କ ଫଟୋ ରଖି ପୂଜାର୍ଚ୍ଚନା କରୁଛନ୍ତି । ଓଡ଼ିଆ ଖାଦ୍ୟ ଖାଉଛନ୍ତି । ଓଡ଼ିଆରେ କଥାବାର୍ତ୍ତା ହେଉଛନ୍ତି । ଅଥଚ ବାହାରକୁ ଗଲେ ଆମେରିକାବାସୀଙ୍କ ସହିତ ସମକକ୍ଷ ହୋଇପାରୁଛନ୍ତି । ସେମାନଙ୍କୁ ଟକ୍କର ଦେଇ ଜୀବନ ସଂଗ୍ରାମରେ ଜିତୁଛନ୍ତି ।

ଅସୀମା ୧୯୮୨ ମସିହାରେ ବାହା ହୋଇ ଆମ ଗାଁକୁ ବୋହୂ ହୋଇ ଗଲାବେଳେ ପ୍ରଳୟଙ୍କରୀ ବନ୍ୟା । ଗାଁ' ଦାଣ୍ଡରେ ଆଣ୍ଠୁଏ ପାଣି । ଗାଡ଼ିମଟର ଯିବାର ଉପାୟ ନଥିଲା । ଆଣ୍ଠୁଏ ପାଣିରେ ପଶି ନୂଆବୋହୂ ହୋଇଯାଇଥିବା ଅନୁଭୂତିକୁ ଅସୀମା ଭୁଲି ପାରିନଥିଲା । ଆମେରିକାର ପ୍ରାଚୁର୍ଯ୍ୟ ମଧ୍ୟରେ ଜୀବନ ବିତାଉଥିଲେ ମଧ୍ୟ ସେଦିନର ସେ ସ୍ମୃତି ତା' ମନରେ ଅପାସୋରା ହୋଇରହିଯାଇଥିଲା ।

ପରଦିନ ସକାଳେ ବର୍ମିଂହାମ ଠାରୁ ଶହେ ମାଇଲ ଦୂରରେ ଥିବା ଏଥେନ୍ସ ସହରରେ ରଥଯାତ୍ରା ଦେଖିବାକୁ ଯିବାପାଇଁ ଆମର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା ।

ଆମେ ଜଳଖିଆ ଖାଇ ବାହାରିଲା ବେଳକୁ ଆଠଟା ବାଜିଥିଲା । ଅସୀମା ଗ୍ୟାରେଜ ଖୋଲି ଟୟୋଟା ଗାଡ଼ି କାଢ଼ିଲା । ମୁଁ ପଚାରିଲି, ଗାଡ଼ି କ'ଣ ଅସୀମା ଚଳାଇବ ? ସବୁଜାଗାରେ ମହିଳାମାନେ ଗାଡ଼ି ଚଳାଉଥିବାର ଦେଖି ମଧ୍ୟ ମନ ବୁଝୁନଥିଲା । ଆମେରିକା ଭଳି ଦେଶମାନଙ୍କରେ ମହିଳାମାନେ ଗାଡ଼ି ଚଳାଇବା ଅପରିହାର୍ଯ୍ୟ, ସେକଥା ମୁଁ ଭୁଲିଯାଉଥିଲି ।

ଅସୀମା ହାତରେ ଷ୍ଟିଅରିଂ । ପାଖରେ ବାଦଲ । ପଛସିଟ୍‌ରେ ମୁଁ ଓ ଆଇଟି କମ୍ପାନୀରେ ନୂଆଭାବେ ଯୋଗ ଦେଇଥିବା ସମ୍ବଲପୁରର ଅବିବାହିତ ଯୁବକ ରଞ୍ଜନ । ଗାଡ଼ି ଚାଲିଲା ବେଳେ ମୋର ଦୃଷ୍ଟି ଅଧିକାଂଶ ସମୟରେ ମାଇଲ ମିଟର ଉପରେ ରହୁଥିଲା । ସ୍ପିଡୋମିଟର କଣ୍ଟା ସବୁବେଳେ ଅଶି ମାଇଲ୍ ଉପରେ ଥିଲା ।

ଦେଢ଼ ଘଣ୍ଟା ପରେ ଆମେ ଏଥେନ୍ସ ସହରରେ ପହଞ୍ଚିଗଲୁ । ଏଥେନ୍ସ ସହରରେ ସେ ବର୍ଷ ପ୍ରଥମଥର ପାଇଁ ରଥଯାତ୍ରାର ଆୟୋଜନ କରାଯାଇଥିଲା । ଓଡ଼ିଶାର ତତ୍‌କାଳୀନ ରାଜ୍ୟପାଳ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ସେଥିରେ ମୁଖ୍ୟ ପୁରୋଧା ଭାବରେ ଯୋଗଦେଇଥିଲେ ।

ସେଦିନ ଜଗନ୍ନାଥ ମନ୍ଦିରରେ ସମସ୍ତଙ୍କ ପାଇଁ ପ୍ରସାଦ ତିଆରି ହୋଇଥିଲା । ରାଜ୍ୟପାଳଙ୍କ ସମେତ ସମସ୍ତେ ଆନନ୍ଦରେ ପ୍ରସାଦ ସେବନ କରିଥିଲେ । ପ୍ରସାଦ ସେବନ ପରେ କିଛି ସମୟ ବିଶ୍ରାମ ନେଇ ଆମେ ବର୍ମିଂହାମ୍ ଫେରିଲୁ ।

ସନ୍ଧ୍ୟାରେ ମୋର ଦିଗାଭାଇନାଙ୍କ ଘରକୁ ଯିବାର କାର୍ଯ୍ୟକ୍ରମ ଥିଲା । ସେହି ଅନୁସାରେ ସନ୍ଧ୍ୟା ସାତଟାରେ ଦିଗାଭାଇନା ଆସି ବାଦଲ ଘରେ ପହଞ୍ଚିଲେ । ଅସୀମା ଓଡ଼ିଆ ଢଙ୍ଗରେ ଚକୁଳି ପିଠା ଓ ସନ୍ତୁଳା କରିଥିଲା । ଆମେ ସମସ୍ତେ ଏକାଠି ଖାଇଲୁ । ଖାଇବା ଟେବୁଲ

ଉପରେ ଗପ ଆରମ୍ଭ ହୋଇଗଲା । ଅତୀତ ସ୍ମୃତିର ରୋମନ୍ଥନ । ରାତି ନଅଟା ବାଜିଯାଇଥିଲା । ବାଦଲ ଓ ଅସୀମାଙ୍କଠାରୁ ବିଦାୟ ନେଇ ମୁଁ ଦିଗାଭାଇନାଙ୍କ ସାଙ୍ଗରେ ତାଙ୍କ ଘରକୁ ଗଲି ।

ଭାଇନା ନିଜ ଅର୍ଜିତ ଧନରେ ଘରଟିଏ କିଣିଛନ୍ତି । ସମସ୍ତଙ୍କ ପାଇଁ ସ୍ୱତନ୍ତ୍ର ରୁମ୍‌ର ବ୍ୟବସ୍ଥା ସାଙ୍ଗକୁ ଡ୍ରଇଁ ଓ ଡାଇନିଂ ହଲ୍ । ବାଡ଼ିରେ ଫଳବଗିଚା । ସେଥିରେ କାକୁଡ଼ି, ବାଇଗଣ, ଲଙ୍କା, ପୋଇ, କଖାରୁ ସବୁ ଲାଗିଛି । ସାମନାରେ ଫୁଲବଗିଚା, ଦେଶୀବିଦେଶୀ ଗଛର ସମ୍ଭାର । ଗତ ପଇଁତିରିଶ ବର୍ଷ ମଧ୍ୟରେ ଓଡ଼ିଶାରୁ ଯିଏ ଆମେରିକା ଯାଇଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ଭାଇନାଙ୍କ ଘରେ ଅତିଥି ହୋଇଛନ୍ତି । ତାଙ୍କ ଗାଡ଼ିରେ ବୁଲିଛନ୍ତି । ଭାଉଜଙ୍କ ହାତରନ୍ଧା ଖାଇଛନ୍ତି । ଉଭୟେ ଭାଇନା ଓ ଭାଉଜ ଆମେରିକାରେ ଓଡ଼ିଆମାନଙ୍କର ଏକପ୍ରକାର ରାଷ୍ଟ୍ରଦୂତ ପାଲଟିଯାଇଛନ୍ତି ।

ଦିଗାଭାଇନାଙ୍କ ଘରେ ପାଞ୍ଚଦିନ ରହିଥିଲି । ଘରେ ରହିଲା ଭଳିଆ ଲାଗୁଥିଲା । ଭାଇନାଙ୍କ ପତ୍ନୀ ଜ୍ୟୋତ୍ସ୍ନା ଭାଉଜ ଭାରି ସ୍ନେହୀ । ଦୀର୍ଘ ୩୫ ବର୍ଷକାଳ ଆମେରିକାରେ ରହିଥିଲେ ସୁଦ୍ଧା ଓଡ଼ିଆ ସଂସ୍କୃତିକୁ ଭୁଲି ନଥିଲେ । ଘରେ ଠାକୁର ପୂଜା । ପ୍ରତିଦିନ ଭିକାରୀ ବଳଙ୍କ ଭଜନ ବୋଲାଯାଏ ।

ଭାଇନାଙ୍କ ଘରେ ରହିବା ସମୟ ଭିତରେ ତାଙ୍କ କର୍ମକ୍ଷେତ୍ର ମାଇଲ୍ସ କଲେଜ, ଟସ୍କାଲୁସା ବିଶ୍ୱବିଦ୍ୟାଳୟ, ସିଭିଲ ଲିବର୍ଟି ଇନଷ୍ଟିଚ୍ୟୁଟ୍ ଇତ୍ୟାଦି ବୁଲି ଦେଖିବାର ସୁଯୋଗ ମିଳିଥିଲା ।

ଭାଇନାଙ୍କ ଘରେ ପାଞ୍ଚଦିନ ସମୟ କୁଆଡ଼େ କଟିଗଲା, କିଛି ଜାଣିହେଲା ନାହିଁ । ବର୍ମିଂହାମରୁ ବିଦାୟ ନେଇ ୱାଶିଂଟନ ଡି.ସି. ଯିବାପାଇଁ ୱଲଟିମୋର୍ ଯାଇ ସେଠାରୁ ୱାଶିଂଟନ ଡି.ସି. ଯିବା କଥା ।

ୱାଶିଂଟନରୁ କାହାଘରେ ରହିବା ବ୍ୟବସ୍ଥା ହୋଇଥିବେ, ପ୍ରଶ୍ନ ପୁନର୍ବାର ମୁଣ୍ଡଟେକିଲା । ଟରେଣ୍ଟୋରେ 'ଓଶା' ଅଧିବେଶନ ସମୟରେ ଡକ୍ଟର ମନୋରଞ୍ଜନ ପଟ୍ଟନାୟକ, ବିଶିଷ୍ଟ ବୈଜ୍ଞାନିକ ଡକ୍ଟର ନରେଶ ଦାସ ସେମାନଙ୍କର ଅତିଥି ହେବି ବୋଲି ମୋତେ ବୁଝାଇଦେଇଥିଲେ ବି ମନଭିତରେ ଏକ ଚାପା ଉତ୍ତେଜନା ସୃଷ୍ଟି ହୋଇଥିଲା ।

ୱାଶିଂଟନ ଡି.ସି. (ୱାଶିଂଟନ-ଡିଷ୍ଟ୍ରିକ୍ଟ କଲମ୍ବିଆ) ହେଉଛି ବିଶ୍ୱର ସବୁଠାରୁ ଧନଶାଳୀ ଦେଶ ଯୁକ୍ତରାଷ୍ଟ୍ର ଆମେରିକାର ରାଜଧାନୀ । ଏହି ମହାନ୍ ନଗରୀର ଗୋଟିଏ ପାଖରେ ପୋଟମାକ୍ ନଦୀ ଏବଂ ଅନ୍ୟପଟେ ମେରିଲାଣ୍ଡ ରହିଛି ।

ମଧ୍ୟାହ୍ନଭୋଜନ ପରେ ପ୍ରଫେସର ଦିଗମ୍ବର ମିଶ୍ର ମତେ ନେଇ ବର୍ମିଂହାମ୍ ବିମାନ ବନ୍ଦରରେ ଛାଡ଼ି ଦେଇଆସିଲେ । କାଳେ ଦୁଇଟି ବ୍ୟାଗେଜ ହେଲେ ଅଧିକା ଭଡ଼ା ଲାଗିବ ସେଥିପାଇଁ ମୁଁ ଗୋଟିଏ ବ୍ୟାଗ ଚେକିଂ କରାଇ ଅନ୍ୟଟି କ୍ୟାବିନ ବ୍ୟାଗ ଭାବରେ ସାଙ୍ଗରେ ନେଇଥିଲି ।

ବର୍ମିଂହାମ ବିମାନ ବନ୍ଦରରୁ ଆମ ବିମାନଟି ଅପରାହ୍ନ ୨ଟା ୫ମିନିଟ୍‌ରେ ଛାଡ଼ିଲା। ୱାଶିଂଟନ (ୱଲଟିମୋର) ବିମାନବନ୍ଦରରେ ଠିକ୍ ପାଞ୍ଚଟା ବେଳେ ଅବତରଣ କଲା । ମୁଁ ବ୍ୟାଗେଜ ନେଇ ବାହାରକୁ ଆସିବାର ଅଳ୍ପ ସମୟ ମଧ୍ୟରେ ଡକ୍ଟର ନରେଶ ଦାସ ଗାଡ଼ିରେ ଆସି ମତେ ସାଙ୍ଗରେ ନେଇଗଲେ ।

ଡକ୍ଟର ଦାସ ଜଣେ ବୈଜ୍ଞାନିକ ଭାବରେ ଆମେରିକାରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ତାଙ୍କ ପତ୍ନୀ ଡକ୍ଟର ବିଜ୍ଞାନୀ ଦାସ 'ନାସା'ରେ ଜଣେ ଖାତନାମା ବୈଜ୍ଞାନିକ ଭାବରେ କାର୍ଯ୍ୟରତ । ଛାତ୍ର ଜୀବନରୁ ସ୍ୱାମୀସ୍ତ୍ରୀ ଉଭୟ କୃତୀ ଛାତ୍ର ଭାବରେ ସୁନାମ ଅର୍ଜନ କରିଥିଲେ । ପରିବାରରେ ତିନିଜଣ ଝିଅ, ବାଗ୍ମୀ, ମୃଣାଳୀ ଓ ଶାଶ୍ୱତୀ । ବାଗ୍ମୀ ଜଣେ ଉଚ୍ଚକୋଟୀର ଓଡ଼ିଶୀ ନୃତ୍ୟଶିଳ୍ପୀ। ମୃଣାଳୀ ସଙ୍ଗୀତଜ୍ଞ ।

ସହରରୁ ଟିକିଏ ଦୂରରେ ସୁଦୃଶ୍ୟ ଘରଟିଏ ତୋଳିଛନ୍ତି । ହତା ମଧ୍ୟରେ ମାଛ ପୋଖରୀ ଓ ଫୁଲବଗିଚା । ଦୋତାଲାରେ ରାଧାକୃଷ୍ଣଙ୍କର ମନ୍ଦିରଟିଏ କରିଛନ୍ତି । ପରିବାରର ପ୍ରତ୍ୟେକ ସଦସ୍ୟ ସେଠି ପ୍ରତ୍ୟହ ଭଜନକୀର୍ତ୍ତନ କରନ୍ତି । ଏକପକ୍ଷରେ ଆଧୁନିକ ବୈଜ୍ଞାନିକ କୌଶଳର ପ୍ରୟୋଗ, ଅନ୍ୟପକ୍ଷରେ ଭକ୍ତିଯୋଗର ଅଭ୍ୟାସ। ଏ ଦୁଇଟି ସ୍ରୋତର ମିଶ୍ରଣ ଘଟିଛି ସେ ପରିବାରରେ ।

ଡକ୍ଟର ଦାସଙ୍କ ଘରେ ଯେଉଁ ଆତିଥେୟତା ମିଳିଥିଲା, ତା'ର ତୁଳନା ନାହିଁ । ତାଙ୍କ ଘରର ଖାଦ୍ୟ ଖାଇ ମୁଁ ଅନୁଭବ କରୁଥିଲି ମୁଁ ଆମେରିକାର ରାଜଧାନୀ ବିଭବଶାଳୀ ୱାଶିଂଟନ ନଗରୀରେ ନଥିଲି, ଘରେ ରହୁଥିଲି ।

ପରଦିନ ମୋର ୱାଶିଂଟନ ସହରକୁ ବୁଲିଯିବାର ଥିଲା । ରାତିରେ ଖାଇସାରି ବିଛଣାକୁ ଯିବା ପୂର୍ବରୁ ଡକ୍ଟର ଦାସ ମତେ କହିଥିଲେ, "ଦେଖନ୍ତୁ ବସନ୍ତବାବୁ, ଆପଣ ଆମେରିକା ଗସ୍ତର ଶେଷ ପର୍ଯ୍ୟାୟରେ ଆସି ଏଠାରେ ପହଞ୍ଚିଛନ୍ତି । ଆପଣଙ୍କ ହାତରେ ମାତ୍ର ତିନିଦିନ ସମୟ । ଏ ସହର ଏତେ ବ୍ୟାପକ ଯେ, ମାସମାସ ଧରି ବୁଲୁଥିଲେ ମଧ୍ୟ ସବୁ ଜାଗା ଦେଖିହେବ ନାହିଁ । ତେବେ ଯେତେଟା ଦେଖିହେବ, ସେଇ ଅନୁସାରେ ମୁଁ ଆପଣଙ୍କ ପାଇଁ କାର୍ଯ୍ୟକ୍ରମ ସ୍ଥିର କରିଛି ।

ସକାଳେ ଆମେ ଏକାଠି ଜଳଖିଆ ଖାଇଲୁ । ଡକ୍ଟର ଦାସଙ୍କ ଝିଅ ବାଗ୍ମୀ ମତେ ସାଙ୍ଗରେ ନେଇ ୱାଶିଂଟନ ସିଟିକୁ ବାହାରିଲା । ମିସେସ ଦାସ ଆମକୁ ଷ୍ଟେସନ ପାଖରେ ଛାଡିଦେଇ ଚାଲିଗଲେ । ବାଗ୍ମୀ ଓଡ଼ିଆ ଝିଅ ହେଲେ ବି ଆମେରିକାରେ ଜନ୍ମ ହୋଇଥିଲା । ସେ ଯେପରି ଭାବରେ ଇଂରାଜୀରେ କଥାବାର୍ତ୍ତା କରୁଥିଲା ସେଥିରୁ ଅଧାଅଧି ମୁଁ ବୁଝି ପାରୁନଥିଲି । ସେ ଫଟାଫଟ୍ ସିଡିରେ ଓହ୍ଲାଇ ଚାଲିଯାଉଥିଲା। ପୁଣି ଦରକାର ହେଲେ ସେହିପରି ସିଡ଼ିରେ ଉଠିଯାଉଥିଲା । ତା'ସାଙ୍ଗରେ ତାଳ ଦେଇ ଚାଲିବା ମୋ ପକ୍ଷରେ ସମ୍ଭବ ନଥିଲା ।

ଏତେବଡ଼ ସହର । କେହି ଜଣେ ହେଲେ ମୋର ଜଣାଶୁଣା ନଥିଲେ । କୁଆଡ଼େ ଯିବି, କାହାକୁ ପଚାରିବି, ଏଇକଥା ଭାବି ଭାବି ଚାଲୁଥିଲି । ହଠାତ୍ ସାମନାରେ ଦେଖିଲି ଗୋଟାଏ ଯାଗାରେ କିଛି ଲୋକ ଲାଇନରେ ଛିଡ଼ାହୋଇଥିଲେ । ମୁଁ କାହାକୁ କିଛି ନପାରି ଲାଇନରେ ଛିଡ଼ା ହୋଇଗଲି । କାଉଣ୍ଟର ପାଖରେ ପହଞ୍ଚି ବୁଝିଲି ୱାଶିଂଟନ ମନୁମେଣ୍ଟ ଉପରକୁ ଯିବା ପାଇଁ ସେଠାରେ ପର୍ଯ୍ୟଟକମାନଙ୍କୁ ବିନାମୂଲ୍ୟରେ ଅଗ୍ରୀମ କୁପନ ଦିଆଯାଉଥିଲା ।

ଅପରାହ୍ନ ସାଢ଼େ ବାରଟା ବେଳେ ୱାଶିଂଟନ ମନୁମେଣ୍ଟ ଉପରକୁ ଯିବା ପାଇଁ ମୁଁ କୁପନ ପାଇଥିଲି । ସେତେବେଳକୁ ସମୟ ବାରଟା ହୋଇଯାଇଥିଲା । ମୁଁ ସମୟ ନଷ୍ଟ ନକରି ମନୁମେଣ୍ଟ ପାଖକୁ ଚାଲିଲି । ଯେଉଁମାନେ ମୋ ଭଳି ସାଢ଼େ ବାରଟାରେ ଉପରକୁ ଯିବା ପାଇଁ କୁପନ ପାଇଥିଲେ, ସେଠାରେ ଆଗରୁ ଅପେକ୍ଷା କରିଥିଲେ । ମୁଁ ସେମାନଙ୍କ ସାଙ୍ଗରେ ଯାଇ ବସିଲି । ମନୁମେଣ୍ଟ ଉପରକୁ ଯିବା ପାଇଁ ସୂଚନା ମିଳିଲା ପରେ ଆମେ ଅଭ୍ୟର୍ଥନା କକ୍ଷରେ ପଶିଲୁ ।

ସେଦିନ ୱାଶିଂଟନ ସହରରେ ଉତ୍ତାପ ଥିଲା ୩୦ ଡିଗ୍ରୀ ସେଲସିଅସ । ଯେଉଁମାନେ ସୁଟ୍ ପିନ୍ଧି ଘରୁ ବାହାରିଥିଲେ ସେମାନଙ୍କର ଦୁର୍ଦ୍ଦଶା ବଢ଼ିଯାଇଥିଲା । ଗୋଟିଏ ହାତରେ ଲାପଟପ୍ ବ୍ୟାଗ ଓ ଅନ୍ୟ ହାତରେ ପିନ୍ଧିଥିବା କୋଟଟି ଧରି ସେମାନେ ରାସ୍ତାରେ ଚାଲୁଥିଲେ ।

ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ସହିତ ସେ ଦିନ ଭିଏତ୍‌ନାମ ଭେଟେହାନ୍ସ ମେମୋରିଆଲ ଦେଖିବା ସହିତ ହ୍ୱାଇଟ୍ ହାଉସକୁ ଦୂରରୁ ନୀରକ୍ଷଣ କରିବାର ସୁଯୋଗ ପାଇଥିଲି । ତାଙ୍କ ଘରେ ରହିବାର ଦୁଇଦିନ କଟି ଯାଇଥିଲା ।

ପରଦିନ ଥିଲା ଜୁଲାଇ ମାସର ତୃତୀୟ ଶନିବାର । ଆମେରିକା ଭ୍ରମଣ ସମୟରେ ଯେତେ କମ୍ ଶନିବାର ପଡ଼ିବ ସେଥିପ୍ରତି ମୁଁ ଦୃଷ୍ଟି ଦେଇଥିଲି । ତା' ସତ୍ତ୍ୱେ ତିନୋଟି ଶନିବାର ପଡ଼ିଥିଲା । ପ୍ରଥମ ଶନିବାରଟି ଟରଣ୍ଟୋରେ ଏବଂ ଦ୍ୱିତୀୟ ଶନିବାରଟି ବର୍ମିଂହାମ୍‌ରେ ବାଦଲ ଘରେ ସୁରୁଖୁରୁରେ କଟିଯାଇଥିଲା ।

ତୃତୀୟ ଶନିବାରଟି କିପରି କଟିବ ସେ ଚିନ୍ତା ମୁଣ୍ଡ ଭିତରେ ଥିଲା । କାରଣ ଶନିବାର ମୁଁ କୌଣସି ରନ୍ଧା ଖାଦ୍ୟ ନଖାଇ କେବଳ ଫଳ ଉପରେ ନିର୍ଭର କରିଥାଏ । ରାତିରେ ବିନା ପିଆଜ ରସୁଣରେ ପ୍ରସ୍ତୁତ କିଛି ଖାଦ୍ୟ ଖାଇଥାଏ । ବିଦେଶ ରାଷ୍ଟ୍ରରେ ଏସବୁ ସମ୍ଭବ ହେବ କି ନାହିଁ, ସେଥିପାଇଁ ମନ ଚିନ୍ତାଗ୍ରସ୍ତ ଥିଲା ।

ସେଦିନ ସକାଳେ ନିତ୍ୟକର୍ମ ସାରି ରାମାୟଣ ପଢ଼ି ବାହାରକୁ ଆସିଲା ବେଳକୁ ଡକ୍ଟର ଦାସଙ୍କ ଘରେ କୋଳାହଳ ଆରମ୍ଭ ହୋଇଯାଇଥିଲା । ତାଙ୍କର ତିନିଝିଅ ସେଦିନ ଘରେ ଏକାଠି ହୋଇଥିଲେ । ବିଭିନ୍ନ ବିଷୟରେ ସେମାନଙ୍କ ମଧ୍ୟରେ ଯୁକ୍ତିତର୍କ ଚାଲିଥିଲା । ଜଣେ ଅନ୍ୟର ମତକୁ ମାନି ନେବାକୁ ପ୍ରସ୍ତୁତ ନଥିଲେ ।

ମୁଁ ଆଗରୁ ତାଙ୍କ ବଡ଼ ଝିଅ ବାସ୍ମୀକୁ ଦେଖିଥିଲି । ଅନ୍ୟ ଦୁଇଝିଅ ବାହାରେ ରହୁଥିବାରୁ ସେମାନଙ୍କ ସାଙ୍ଗରେ ଦେଖାହୋଇ ନଥିଲା । ଡ୍ରଇଂରୁମ୍‌କୁ ଆସିଲା ପରେ ସେମାନେ ମତେ ମୁଣ୍ଡ ନଆଁଇ ନମସ୍କାର କଲେ । ମୁଁ ପ୍ରଥମେ କିଛି ବୁଝି ପାରି ନଥିଲି । ଆମେରିକାରେ ଜନ୍ମହୋଇ ନଗ୍ନ ଆଧୁନିକ ସଭ୍ୟତାରେ ଚଳି ସେମାନେ ଯେ ଭାରତୀୟ ସଂସ୍କୃତି ଓ ପରମ୍ପରାକୁ ଭୁଲିନାହାନ୍ତି ସେ କଥା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି ।

ଅପରାହ୍ନରେ ଚାଳିଶ ମାଇଲ ଦୂରରେ ୱ୍ଵଲଟିମୋର ସହରରେ ଥିବା ହିନ୍ଦୁ ମନ୍ଦିରରେ ସେମାନଙ୍କର ଗୋଟିଏ ଭଜନ କାର୍ଯ୍ୟକ୍ରମ ଥିଲା । ମୋର ସେଥିରେ ଯୋଗଦେବାର କିଛି ଆପତ୍ତି ଅଛି କି ବୋଲି ସେମାନେ ମତେ ପଚାରିଲେ । ମୁଁ କହିଲି, ଇଏତ ଭାଗ୍ୟର କଥା । ବିଦେଶ ମାଟିରେ ଭଜନ କାର୍ଯ୍ୟକ୍ରମରେ ସାମିଲ୍ ହେବା କେତେ ଲୋକଙ୍କ ଭାଗ୍ୟରେ ଜୁଟୁଛି ? ଆପଣମାନେ ପଚାରୁଛନ୍ତି କ'ଣ ?

ଡକ୍ଟର ନରେଶ ଦାସଙ୍କ ପରିବାର ଓ ଅନ୍ୟମାନଙ୍କ ସହାୟତାରେ ସେ ମନ୍ଦିର ଭିତରେ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ପ୍ରତିଷ୍ଠା କରାଯାଇଥିଲା । ଦୀର୍ଘ ସତର ବର୍ଷ ହେଲା ଆୟୋଜକମାନେ ମାସର ତୃତୀୟ ଶନିବାର ଦିନ ଶ୍ରୀଜୀଉଙ୍କ ସମ୍ମୁଖରେ ଭଜନକୀର୍ତ୍ତନ ସହିତ ଏକତ୍ର ସାକାହ୍ନ ଭୋଜନ କରୁଥିଲେ । ସେଦିନ ସେ ମନ୍ଦିରରେ ଆମକୁ ମିଶାଇ ପଚିଶଜଣ ଭକ୍ତଙ୍କର ସମାଗମ ହୋଇଥିଲା । ଡକ୍ଟର ଦାସଙ୍କ ଝିଅ ମୃଣାଳୀ ଯେତେବେଳେ 'ଆହେ ନୀଳ ଶଇଳ, ପ୍ରବଳ ମତ୍ତ ବାରଣ' ଭଜନ ବୋଲିଲେ ତାକୁ ଶୁଣି କିଛି କ୍ଷଣ ପାଇଁ ମୁଁ ଚକିତ ହୋଇଯାଇଥିଲି ।

ଭଜନକୀର୍ତ୍ତନ ଶେଷରେ ମହାପ୍ରଭୁଙ୍କ ପାଖରେ 'ବାଳଭୋଗ' ହୋଇଥିଲା । ପରେ ଆମେ ସବୁ ଗୋଟିଏ ହଲ୍‌ରେ ବସି ଏକତ୍ର ଭୋଜନ କଲୁ । ସେଦିନ ଭୋଜନ ସାମଗ୍ରୀରେ ଥିଲା ଅରୁଆ ଚାଉଳ ଅନ୍ନ, ହରଡ ଡାଲି, ସାଦା ତରକାରି, ଦହି ବାଇଗଣ ଓ ତା' ସାଙ୍ଗକୁ କାଲାକନ୍ଦ ମିଠା ।

ଭୋଜନ ଶେଷବେଳକୁ ଦଶଟା ବାଜିଥିଲା । ଆମେ ଅନ୍ୟମାନଙ୍କ ଠାରୁ ବିଦାୟ ନେଇ ଘରକୁ ଫେରିଥିଲୁ ।

ମୁଁ ଯେଉଁ ସହରରେ ରହୁଥିଲି, ତା'ର ନିକଟବର୍ତ୍ତୀ ବିମାନ ବନ୍ଦର ଥିଲା ୱାଶିଂଟନ ଡି.ସି । କିନ୍ତୁ ମୋର ଡଲାସ ବିମାନ ବନ୍ଦର ବାଟ ଦେଇ ଫେରିବାର ଥିଲା । ଡଲାସ ବିମାନ ବନ୍ଦରଟି ଡକ୍ଟର ନରେଶ ଦାସଙ୍କ ଘରୁ ପଚାଶ ମାଇଲ ଦୂରରେ ଥିଲା । ମତେ ତାଙ୍କ କାର୍‌ରେ ନେଇ ଡଲାସ ବିମାନ ବନ୍ଦରରେ ଛାଡ଼ିଦେଇ ଆସିବେ ବୋଲି ଡକ୍ଟର ଦାସ ଆଗରୁ ସୂଚାଇଥିଲେ ।

ଡଲାସରୁ ନ୍ୟୁୟର୍କ ବାଟେ ଦିଲ୍ଲୀ ଫେରିବା ପାଇଁ ଦୁଇଟି ପୃଥକ ବିମାନ ଟିକଟ କଟାଇଯାଇଥିଲେ ବି ଡଲାସ ବିମାନ ବନ୍ଦରରୁ ସିଧାସଳଖ ଦିଲ୍ଲୀ ପର୍ଯ୍ୟନ୍ତ ବ୍ୟାଗେଜ ବୁକିଂ

ହୋଇଥିଲା । ଦୁଇଟି ବୋର୍ଡିଂ ପାସ୍ ଯୋଗାଇ ଦିଆଯାଇଥିଲା । ବୋର୍ଡିଂ ପାସ୍ ନେଲାବେଳେ ବିମାନରେ ମୁଁ ଦୁଇଟି ଉଇଣ୍ଡୋ ସିଟ୍ ପାଇଁ ଅନୁରୋଧ କରିଥିଲି ।

ନ୍ୟୁୟର୍କ ବିମାନ ବନ୍ଦରରେ ପହଞ୍ଚିଲା ପରେ ଏକ ଭିନ୍ନ ଦୃଶ୍ୟ ଆଖିରେ ପଡିଲା । କିଛି ସମୟ ପରେ ଘୋଘୋ ଶୁଣାଗଲା । ମୁଁ କିଛି ବୁଝିପାରିଲି ନାହିଁ । ଶୃଙ୍ଖଳିତ ବିମାନ ବନ୍ଦରରେ ପୁଣି ପାଟିତୁଣ୍ଡ କାହିଁକି ? ଘଟଣାସ୍ଥଳକୁ ଯାଇ ଦେଖିଲି ସିକ୍ୟୁରିଟି ଚେକିଂ ପାଇଁ ବିମାନଯାତ୍ରୀମାନଙ୍କ ମଧ୍ୟରେ ଚାଲିଥିଲା ଠେଲାପେଲା । କିଏ ଆଗ ଯିବ ।

ମୁଁ ବୋର୍ଡିଂ ପାସ୍ କାଢ଼ି ମୋ ଆସନ ନିକଟକୁ ଯାଇ ଦେଖିଲି ତିନିଟିକିଆ ଆସନରେ ମୋ ଆସନଟି ମଝିରେ ଥିଲା । ତାକୁ ଦେଖି ମନ ଫିକା ପଡିଗଲା । ଭାବିଲି, ମଝି ଆସନରେ ବସି କିପରି ଚଉଦ ଘଣ୍ଟା କଟାଇବି ? ଏଇ କଥା ଭାବୁଛି ପଛରୁ ଜଣେ ଶ୍ୱେତାଙ୍ଗୀ ଯୁବତୀ ଆସି ମତେ ପ୍ରଶ୍ନ କଲେ, "ସାର୍ ଏକ୍ସକ୍ୟୁଜ୍ ମିଁ, ଡୁ ୟୁ ହାବ୍ ଏନି ପ୍ରବ୍ଲେମ । କ୍ୟାନ ଆଇ ହେଲ୍ପ ୟୁ ।" ଏପରି ପ୍ରଶ୍ନରେ ମୁଁ ଟିକିଏ ହତବତ୍ତ୍ୱେଇ ଯାଇଥିଲି । କାରଣ ସେ ଯୁବତୀ ମୋର ପରିଚିତା ନଥିଲେ କିମ୍ବା ମୁଁ ତାଙ୍କ ସାହାଯ୍ୟ ଲୋଡି ନଥିଲି ।

ମୁଁ ତାଙ୍କୁ କହିଲି, "ଥ୍ୟାଙ୍କ ୟୁ ମ୍ୟାଡାମ୍ ଫର ଇୟୋର ଗୁଡ୍ ଗେଶ୍ଚର । ଆଇ ଓ୍ୱାଜ୍ ଆକଚୁଆଲି ଇଣ୍ଟରଷ୍ଟେଡ୍ ଫର ଦି ଉଇଣ୍ଡୋ ସିଟ୍ । ବଟ୍ ଆଇ ଡୋଣ୍ଟ ନୋ ହ୍ୱେଦର ଆଇ ଉଇଲ୍ ହାବ୍ ଇଟ୍ ।" ସେ ସାଙ୍ଗେସାଙ୍ଗେ କହିଲେ, "ଦିସ୍ ଇଜ୍ ନୋ ପ୍ରବ୍ଲେମ । ଦ୍ୟାଟ୍ ଇଉଣ୍ଡୋ ସିଟ୍ ଇଜ୍ ମାଇନ୍ । ୟୁ କ୍ୟାନ୍ କମ୍ଫର୍ଟେବଲି ସିଟ୍ ଦେୟାର । ଆଇ କ୍ୟାନ୍ ମ୍ୟାନେଜ୍ ଇନ୍ ଦି ମିଡିଲ ସିଟ୍ ।" ଏହା କହି ସେ ଉଇଣ୍ଡୋ ସିଟ୍‌ରୁ ନିଜ ହାଣ୍ଡବ୍ୟାଗଟି କାଢ଼ିନେଲେ । ମୁଁ ତାଙ୍କୁ ଧନ୍ୟବାଦ ଦେଇ କହିଲି, "ଥ୍ୟାଙ୍କ ୟୁ ଭେରିମଚ୍ ଫର ଦି କାଇଣ୍ଡ୍ ହେଲ୍ପ ।" ଭାରତୀୟ ସମୟ ଠିକ୍ ରାତି ନଅଟା ବେଳେ କଣ୍ଟିନେଣ୍ଟାଲ ଏୟାରଲାଇନ୍ସରେ ବିମାନଟି ଇନ୍ଦିରା ଗାନ୍ଧୀ ଆନ୍ତର୍ଜାତିକ ବିମାନ ବନ୍ଦରରେ ଅବତରଣ କଲା । ଆଗରୁ ବିମାନ ଭିତରେ ଇମିଗ୍ରେସନ ଫର୍ମ ପୂରଣ ହୋଇସାରିଥିଲା । ସେଥିପାଇଁ ବିମାନ ବନ୍ଦରରେ ଆନୁଷଙ୍ଗିକ କାର୍ଯ୍ୟ ସମ୍ପାଦନ କରିବା ପାଇଁ ଅଧିକ ସମୟ ଲାଗି ନଥିଲା ।

ଆଗରୁ ଫେରିବା କାର୍ଯ୍ୟକ୍ରମ ସ୍ଥିର ହୋଇଥିବାରୁ ଡକ୍ଟର ଜୟଚନ୍ଦ୍ର ଦାସଙ୍କ ଡ୍ରାଇଭର କାର ଆସି ବିମାନ ବନ୍ଦର ବାହାରେ ମତେ ଅପେକ୍ଷା କରିଥିଲା । ରାତି ଏଗାରଟା ବେଳେ ଡକ୍ଟର ଦାସଙ୍କ ଘରେ ପହଞ୍ଚିଲୁ । ସ୍ୱାଭାବିକ ଭାବରେ ଡିନର ହେଲା । ଡିନର ଟେବୁଲରେ କେତେ କଥା ପଡ଼ିଲା । ଡିନର ପରେ ଡକ୍ଟର ଦାସଙ୍କ ଗେଷ୍ଟରୁମ୍‌କୁ ଶୋଇବାକୁ ଗଲି । କିନ୍ତୁ ସମୟ ଅଦଳବଦଳ ହୋଇଯାଇଥିବାରୁ ରାତିରେ ନିଦ ହେଲା ନାହିଁ ।

ତା'ପରଦିନ ମୁଁ ଇଣ୍ଡିଆନ ଏୟାର ଲାଇନ୍ସ ବିମାନରେ ଭୁବନେଶ୍ୱର ଫେରିଥିଲି । ଘଟଣାକ୍ରମରେ ସେଦିନ ସେ ବିମାନରେ ମୁଁ ଆମେରିକାରୁ ଫେରି ଯେଉଁଦିନ ଦିଲ୍ଲୀରେ

ରହିଥିଲି, ସେଦିନ ଭାରତୀୟ ରାଜନୀତିରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଥିଲା । ଆଣବିକ ଚୁକ୍ତି ସ୍ୱାକ୍ଷରକୁ କେନ୍ଦ୍ର କରି ଶାସନ କ୍ଷମତାରେ ଥିବା ଭାରତୀୟ ଜାତୀୟ କଂଗ୍ରେସ ଓ ସିପିଏମ୍ ମଧ୍ୟରେ ମତଭେଦ ସୃଷ୍ଟି ହୋଇଥିଲା । ସିପିଏମ୍ ପ୍ରତିକ୍ରିୟା ସ୍ୱରୂପ ମନମୋହନ ସିଂହଙ୍କ ନେତୃତ୍ୱରେ ପରିଚାଳିତ ୟୁପିଏ (ୟୁନାଇଟେଡ୍ ପ୍ରୋଗ୍ରେସିଭ୍ ଆଲାଏନ୍ସ) ସରକାରରୁ ସମର୍ଥନ ପ୍ରତ୍ୟାହାର କରିନେବା ଫଳରେ କେନ୍ଦ୍ର ସରକାର ସଂଖ୍ୟାଲଘୁରେ ପରିଣତ ହୋଇଯାଇଥିଲା । କଂଗ୍ରେସ ଦଳ ପକ୍ଷରୁ ଏହାକୁ ଏକ ସମ୍ମାନର ପ୍ରଶ୍ନ ବୋଲି ବିଚାର କରାଯାଇ ପାର୍ଲାମେଣ୍ଟରେ ସରକାରଙ୍କ ପଛରେ ବହୁମତ ଥିବା କଥା ପ୍ରମାଣ କରିବାକୁ ଉଦ୍ୟମ ହୋଇଥିଲା । ସମସ୍ତ ନୀତି ଓ ଆଦର୍ଶକୁ ଜଳାଞ୍ଜଳି ଦେଇ ପଞ୍ଚାୟତସ୍ତର ଭଳି କଂଗ୍ରେସ ଦଳ ପକ୍ଷରୁ ଘୋଡ଼ାବେପାର ଆରମ୍ଭ ହେଲା ।

ପାର୍ଲାମେଣ୍ଟରେ ଭୋଟ୍‌ର ଫଳାଫଳ ଯାହା ହେବ ବୋଲି ଆଶା କରାଯାଉଥିଲା ତାହା ହିଁ ଘଟିଲା । କ୍ଷମତା ଓ ଅର୍ଥର ପ୍ରଲୋଭନକୁ ଏଡ଼ାଇ ନପାରି ଅନେକ ଘୋଡ଼ାବେପାରରେ ଧରା ହେଲେ । ଫଳରେ ୟୁପିଏ ସରକାର ନିଜ ସଂଖ୍ୟାଗରିଷ୍ଠତା ପ୍ରମାଣ କରିପାରିଲା ।

ବିରୋଧୀଦଳର ଯେଉଁ ସାଂସଦମାନେ ଦଳୀୟ ହୁଇପ୍ ନ ମାନି କଂଗ୍ରେସ ସରକାର ସପକ୍ଷରେ ଭୋଟ୍ ଦେଇଥିଲେ ସେମାନଙ୍କ ମଧ୍ୟରେ ଆସ୍କା ନିର୍ବାଚନମଣ୍ଡଳୀରୁ ବିଜେଡ଼ି (ବିଜୁ ଜନତା ଦଳ)ର ସଦସ୍ୟ ହରିହର ସ୍ୱାଇଁ ଅନ୍ତର୍ଭୁକ୍ତ ଥିଲେ ବୋଲି ଜଣାପଡ଼ିଥିଲା । ସେମାନେ ଏହି ବିମାନରେ ଭୁବନେଶ୍ୱର ଫେରୁଥିଲେ ।

ସେମାନେ ସମସ୍ତେ ଏକଜିକ୍ୟୁଟିଭ୍ କ୍ଲାସରେ ବସିଥିଲେ । ମୁଁ ଇକୋନମି କ୍ଲାସରେ ଥିଲି । ସେମାନଙ୍କ ଡାକରାରେ ମୁଁ ଯାଇ ସେମାନଙ୍କ ପାଖରେ କିଛି ସମୟ ପାଇଁ ବସିଲି । ଶ୍ରୀ ସ୍ୱାଇଁ ମୋଟା ଅଙ୍କର ଧନ ନେଇ ଦଳବଦଳ କରିଥିଲେ ବୋଲି ସେତେବେଳେ ଗୁଜବ ଶୁଣିବାକୁ ମିଳିଥିଲା ।

ମୁଁ ତାଙ୍କୁ ପରିହାସରେ ପଚାରିଲି, "ହଇ କିଏ ସ୍ୱାଇଁବାବୁ, ମାଲ୍ ସବୁ କୋଉଠୁ ରଖିଲ ହେ, ସେଥିରୁ ଆମକୁ କିଛି ମିଳୁ ।" ସେ ସାଙ୍ଗେସାଙ୍ଗେ ଉତ୍ତର ଦେଲେ, "ଅଖା ମୁଣା ନେଇ ଆସ ହେ, ମାଲ ନେଇଯିବ । ଶୁଖିଲାରେ କଥା ହେଲେ କିସ ହେବ ?" ଶ୍ରୀ ସ୍ୱାଇଁଙ୍କ ମନ୍ତବ୍ୟରେ ରାଜନୀତି ଦୃଷ୍ଟିକୋଣରୁ ତାଙ୍କୁ ବିରୋଧ କରୁଥିବା ସଦସ୍ୟମାନେ ମଧ୍ୟ ହସି ପକାଇଥିଲେ ।

ଯୁକ୍ତରାଷ୍ଟ୍ର ଆମେରିକା ଭଳି ପ୍ରାଚୁର୍ଯ୍ୟପୂର୍ଣ୍ଣ ଦେଶରେ ପାଖାପାଖି ମାସେ କାଳ ବୁଲିବା ଭିତରେ, ଯେଉଁ ରୋମାଞ୍ଚକର ଅନୁଭୂତି ହୋଇଥିଲା, ଭୁବନେଶ୍ୱର ବିମାନ ବନ୍ଦର ପାଖେଇବା ସହିତ ସେସବୁ ଅତୀତରେ ପରିଣତ ହୋଇଗଲା । ପୁଣି ମନ ଭିତରେ ଭାସିଆସିଲା ସେହି ପୁରୁଣା ଦୃଶ୍ୟ – ନିଜ ଘର, ପରିବାର ଓ ସାଥୀ ସହୋଦରଙ୍କ କଥା ।

# ସାହିତ୍ୟ ସାଧନା ଓ ସ୍ୱୀକୃତି

ସ୍କୁଲରେ ପଢ଼ିଲାବେଳୁ ଲେଖାଲେଖି ପ୍ରତି ମୋର ଟିକିଏ ଆଗ୍ରହ ଥିଲା । ୧୯୯୩ ମସିହାରେ ମୁଁ ପ୍ୟାରୀ ମୋହନ ଏକାଡ଼େମୀର ନବମ ଶ୍ରେଣୀରେ ପଢୁଥିଲି ।

ଦାଦା 'ପ୍ରଜାତନ୍ତ୍ର' ସହିତ ସଂପୃକ୍ତ ଥିବାରୁ ସେ ସଂସ୍ଥା ସହିତ ମୋର ସମ୍ପର୍କ ଯୋଡି ହୋଇଯାଇଥିଲା । ସେତେବେଳେ ପାଠକମାନଙ୍କୁ ଆକୃଷ୍ଟ କରିବା ପାଇଁ ପ୍ରଜାତନ୍ତ୍ରରେ ସପ୍ତାହଯାକ ଭିନ୍ନ ଭିନ୍ନ ଦିନରେ ଭିନ୍ନ ଭିନ୍ନ ବିଭାଗ ପ୍ରକାଶ ପାଉଥିଲା ।

କୋଉଦିନ ରବିବାସରୀୟ ପ୍ରଜାତନ୍ତ୍ର, ଅନ୍ୟ କୋଉଦିନ ନାରୀ ଜଗତ, କ୍ରୀଡା ବିଭାଗ, ମୀନା ବଜାର ଇତ୍ୟାଦି । ମୀନାବଜାର ପରିଚାଳନା କରୁଥିବା ରାମବାବୁ (ରାମପ୍ରସାଦ ମହାନ୍ତି) 'ଜହ୍ନୁରୀ' ଭାଇ ନାମରେ ପରିଚିତ ଥିଲେ ।

ରାମବାବୁଙ୍କ ସାଙ୍ଗରେ ମୋର ଜଣାଶୁଣା ଥିଲା । ସାପ୍ତାହିକ ମୀନାବଜାର ପାଇଁ ଗୋଟିଏ କବିତା ଲେଖିବାକୁ ସେ ମତେ କହିଲେ । ଗୀତ, ସଙ୍ଗୀତ, କବିତା ଏହା ଭିତରେ ଥିବା ପାର୍ଥକ୍ୟ ବିଷୟରେ ବୁଝିବା ସେତେବେଳେ ମୋ ପକ୍ଷରେ ସମ୍ଭବ ନଥିଲା ।

ଘରେ ବସି ଭାବିଲି କ'ଣ ଲେଖିବି ? କୋଉଠୁ ଆରମ୍ଭ କରିବି । କୋଉଠି ଶେଷ କରିବି । ଖାତା କଲମ ଧରିଲି । କଲମ ଚାଲିଲା ନାହିଁ । ବାରମ୍ବାର ଅଟକିଲା । ଶେଷରେ ସ୍ଥିର କଲି, ଆମର ଯୋଉ ଛୋଟ ବଗିଚାଟି ଅଛି, ତା'ରି ଉପରେ କିଛି ଲେଖିବି ।

ବାରବାର ଉଦ୍ୟମ ପରେ କଲମ ଚାଲିଲା । ବହୁ କାଗଜ ଚିରାହେଲା । ଶେଷରେ ବାରଧାଡିରେ କବିତାଟିଏ ଲେଖିଲି । ନାଁ ଦେଲି 'ଟିକି ବଗିଚା' । ରାମବାବୁଙ୍କ ଦେଲି । ସେ ତାକୁ ଛାପିଦେଲେ । ମୁଁ କଳ୍ପନା କରିନଥିଲି, ମୁଁ କବିତା ଲେଖିବି, ସେ ପୁଣି ପ୍ରଜାତନ୍ତ୍ର ଭଳିଆ କାଗଜରେ ପ୍ରକାଶିତ ହେବ ।

ବାସ୍ତବରେ ସେ କବିତା ପ୍ରକାଶ ପାଇବା ପରେ ମନରେ ଯେଉଁ ଆନନ୍ଦ ମୁଁ ଅନୁଭବ କରିଥିଲି, ଜୀବନରେ ଅନ୍ୟ କୌଣସି ପୁରସ୍କାର ମତେ ସେ ଆନନ୍ଦ ଦେଇପାରିନାହିଁ ।

କିନ୍ତୁ କେଜାଣି କାହିଁକି, କବିତା ଆଡକୁ ମନ ଗଲା ନାହିଁ । ଗପ ଓ ଫିଚର ଆଡକୁ ଟାଣି ହୋଇଗଲି । ସ୍କୁଲ ଜୀବନରେ ସ୍କୁଲ ମାଗାଜିନରେ ଥରେଅଧେ ଲେଖା ବାହାରିଥିଲା ।

ଛାତ୍ର ୟୁନିଅନରେ ସକ୍ରୀୟ ଭାବରେ କାର୍ଯ୍ୟ କରିବା ସମୟରେ ୟୁନିଅନର ମୁଖପତ୍ର 'ରଶ୍ମୀ'ର ସଂପାଦକ ହେଲି । ସ୍ୱର୍ଗତ ସନ୍ତୋଷ କୁମାର ସାହୁ ଓ ରମେଶ ଚନ୍ଦ୍ର ଧଳ ଏହି ପତ୍ରିକାଟି ପ୍ରକାଶ କରାଇବା ଦିଗରେ ବିଶେଷ ଉଦ୍ୟମ କରିଥିଲେ । ସେଥିପାଇଁ ସେ ଦୁଇଜଣଙ୍କ ନାମରେ ଆଗର ଅକ୍ଷରକୁ ନେଇ ଏହାର ନାମ 'ରଶ୍ମୀ' ରଖାଯାଇଥିଲା ।

ରଶ୍ମୀରେ ସେତେବେଳେ ଲେଖାଲେଖି କରୁଥିବା ଲେଖକଙ୍କ ମଧ୍ୟରେ କବି ରାଜେନ୍ଦ୍ର ପଣ୍ଡା, ପ୍ରସନ୍ନ କୁମାର ପାଢ଼ଶାଣୀ ପ୍ରମୁଖ ଅନ୍ତର୍ଭୁକ୍ତ ଥିଲେ । 'ରଶ୍ମୀ'ରୁ ସେମାନଙ୍କ ଲେଖାର ମୂଳଦୁଆ ପଡ଼ିଥିଲା ।

କଲେଜ ଜୀବନ କାଳରେ ବିଭିନ୍ନ ସମ୍ବାଦପତ୍ରରେ ଅନେକ ଲେଖା ପ୍ରକାଶ ପାଇଛି । ମାତ୍ର ସେସବୁ ରାଜନୈତିକ ଧର୍ମୀ, ରାଜନୈତିକ ସମୀକ୍ଷା, ରାଜନୈତିକସ୍ଥିତିର ବିଶ୍ଳେଷଣକୁ କେନ୍ଦ୍ରକରି ଲେଖାସବୁ ପ୍ରକାଶ ପାଉଥିଲା ।

୧୯୯୬ ମସିହାର ଘଟଣା । ଡକ୍ଟର ବମଳେନ୍ଦୁ ମହାନ୍ତି ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ନିର୍ଦ୍ଦେଶକ ଥାଆନ୍ତି । ମୁଁ ଅମୃତ ବଜାର ପତ୍ରିକାର ଓଡ଼ିଆ ବ୍ୟୁରୋ ଚିଫ୍ ଥିଲି । ବେଳେବେଳେ ତାଙ୍କ ଅଫିସକୁ ଯାଉଥିଲି । ସେଠାରେ ବିଖ୍ୟାତ ଔପନ୍ୟାସିକ ଡକ୍ଟର ବିଭୂତି ପଟ୍ଟନାୟକ, ଡକ୍ଟର ହରେକୃଷ୍ଣ ପାତ୍ର ପ୍ରମୁଖ ସଂପୃକ୍ତ ଥିଲେ । ସମସ୍ତଙ୍କ ସହିତ ମୋର ଘନିଷ୍ଠ ସମ୍ପର୍କ ଥିଲା ।

ସେମାନଙ୍କ ସହିତ ଆଳାପ ଆଲୋଚନା ହୁଏ । କେତେ କଥା ପଡେ । ସାହିତ୍ୟ, ସାମ୍ବାଦିକତା, ରାଜନୀତି କେତେ କ'ଣ ? ଚା' ଜଳଖିଆର ଆସର ହୁଏ । ଦିନେଦିନେ ଆଲୋଚନା ଖରାବେଳ ପର୍ଯ୍ୟନ୍ତ ଚାଲୁଥିଲା । ଅନ୍ୟ ଦିନେ ସନ୍ଧ୍ୟା ହୋଇଯାଉଥିଲା ।

ନିର୍ଦ୍ଦେଶକ ଡକ୍ଟର ମହାନ୍ତିଙ୍କ ମୁଣ୍ଡକୁ ଗୋଟାଏ ଝୁଙ୍କ ଜୁଟିଲା । ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜୀବନୀ ଲେଖା ହେବ । ତାଙ୍କ ମୁଣ୍ଡରେ ଗୋଟାଏ ଚିନ୍ତା ପଶିଲେ ସେ ଅସ୍ତବ୍ୟସ୍ତ ହୋଇଯାଉଥିଲେ ।

ପ୍ରଥମେ ସ୍ଥିର ହୋଇଥିଲା, ଜନଶିକ୍ଷା ସାଧନ କେନ୍ଦ୍ରର ଷ୍ଟାଫମାନଙ୍କ ଦ୍ୱାରା ସେସବୁ ପୁସ୍ତକ ଲେଖାଯିବ । କିନ୍ତୁ ବାସ୍ତବକ୍ଷେତ୍ରରେ ତାହା ସମ୍ଭବ ହୋଇନଥିଲା । ସେଥିପାଇଁ କିଛି ଲେଖକଙ୍କ ନାମ ତାଲିକା କରାଗଲା । ମୁଁ ଲେଖକ ଭିତରେ ଗଣା ହେଉନଥିବାରୁ ସେ ତାଲିକାରେ ମୋ ନାଁ ନଥିଲା ।

ଦିନେ ମୁଁ ତାଙ୍କ ଅଫିସକୁ ଯାଇଥିବା ସମୟରେ ବିମଳେନ୍ଦୁବାବୁ କଥା ପ୍ରସଙ୍ଗରେ ଜାତୀୟ କବି ବୀରକିଶୋର ଦାସଙ୍କ ଏକ ସଂକ୍ଷିପ୍ତ ଜୀବନୀ ଲେଖିବା ପାଇଁ ମତେ କହିଲେ । ସେତେବେଳକୁ ସେ ଦୁଇ, ତିନିଜଣଙ୍କୁ ସେଥିପାଇଁ ଅନୁରୋଧ କରିଥିଲେ । କିନ୍ତୁ ସଫଳ ହୋଇନଥିଲେ ।

ସ୍ୱାଧୀନତା ସଂଗ୍ରାମୀ ଦୋଳଗୋବିନ୍ଦ ପ୍ରଧାନ ଜାତୀୟ କବିଙ୍କର ଘନିଷ୍ଠ ଥିଲେ । ତାଙ୍କର କେତେକ ଲେଖା ସଂଗ୍ରହ କରି ଗୋଟିଏ ଗ୍ରନ୍ଥାବଳୀ ପ୍ରକାଶ କରିଥିଲେ । ସେ ଗ୍ରନ୍ଥାବଳୀରେ ଜାତୀୟ କବିଙ୍କର ମା'ଙ୍କ ନାମ ଉଲ୍ଲେଖ ନଥିଲା । ସେଥିପ୍ରତି ମୁଁ ଶ୍ରୀ ପ୍ରଧାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲି । ତାଙ୍କର ଯୁକ୍ତିଥିଲା, ଯେହେତୁ ଜାତୀୟ କବିଙ୍କର ଦୁଇଜଣ ମା' ଥିଲେ ସେଥିପାଇଁ ତାଙ୍କ ନାମ ଗ୍ରନ୍ଥାବଳୀରେ ଉଲ୍ଲେଖ କରାଯାଇ ନାହିଁ ।

ମୁଁ ବିମଳେନ୍ଦୁବାବୁଙ୍କୁ ନାହିଁ କରିପାରିଲିନାହିଁ । ବୀରବାବୁଙ୍କ ଜୀବନଟି ଲେଖିଦେବି ବୋଲି ତାଙ୍କୁ ଜବାବ ଦେଇ ମୁଁ ଘରକୁ ଫେରିଲି ।

ମୋର ଚିନ୍ତା ବଢ଼ିଗଲା । ଜୀବନୀଟି ରାଜ୍ୟ ସରକାରଙ୍କ ଆନୁକୂଲ୍ୟରେ ଛପା ଯାଉଥିବା ଦୃଷ୍ଟିରୁ ତଥ୍ୟମୂଳକ ହେବା ଦରକାର । ମୁଁ ଜାତୀୟ କବିଙ୍କ ପୁଅ ବିଶିଷ୍ଟ ଇଂଜିନିୟର ନିରଞ୍ଜନ ଦାସଙ୍କ ସହିତ ସାକ୍ଷାତ କଲି ।

କଥାବାର୍ତ୍ତା ଭିତରେ ମତେ ଅନେକ ତଥ୍ୟ ମିଳିଲା । ବୀରବାବୁଙ୍କ ସାଙ୍ଗରେ ପ୍ରତ୍ୟକ୍ଷ ସମ୍ପର୍କ ଥିବା ଆଉ କେତେ ଲୋକଙ୍କୁ ଭେଟିଲି । ଜୀବନୀଟି ଲେଖିବା ପାଇଁ ଯାହା ସବୁ ଘଟଣାର ଦରକାର ଥିଲା ସେ ସବୁ ମିଳିଗଲା । ମୁଁ ଯଥା ସମୟରେ ପାଣ୍ଡୁଲିପିଟି ନେଇ ବିମଳେନ୍ଦୁବାବୁଙ୍କୁ ଦେଇଦେଲି । ସେ ବହୁତ ଖୁସି ହୋଇଗଲେ । ଯେତେଜଣଙ୍କୁ ସେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଜୀବନୀ ଲେଖିବାକୁ ଅନୁରୋଧ କରିଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ନିର୍ଦ୍ଦିଷ୍ଟ ସମୟ ଭିତରେ ପାଣ୍ଡୁଲିପି ଦେଇନଥିଲେ ।

ତା'ପରେ ଡକ୍ଟର ମହାନ୍ତିଙ୍କ ବରାଦରେ ଦେଶପ୍ରେମୀ ନିତ୍ୟାନନ୍ଦ କାନୁନ୍‌ଗୋ, ଜନଗଣର ନେତା ବୀରେନ ମିତ୍ର, ଉତ୍କଳ କେଶରୀ ହରେକୃଷ୍ଣ ମହତାବ ଓ ସ୍ୱାଧୀନତା ସଂଗ୍ରାମୀ ବିବୁଧେନ୍ଦ୍ର ମିଶ୍ରଙ୍କ ନାମରେ ଚାରିଖଣ୍ଡ ଜୀବନୀ ପୁସ୍ତକ ଲେଖିଥିଲି । ଗୋଟିଏ ପୁସ୍ତକ ପାଇଁ ତିନିଶହ ଟଙ୍କା କରି ପାରିଶ୍ରମିକ ବାବଦକୁ ମିଳିଥିଲା ।

ସ୍ୱାଧୀନତା ସଂଗ୍ରାମୀମାନଙ୍କ ଜୀବନୀ ପୁସ୍ତିକା ପ୍ରକାଶ ପାଇବା ପରେ ମୁଁ ଲେଖକ ଶ୍ରେଣୀରେ ନାଁ ଲେଖାଇଲି । ମାତ୍ର ମତେ ଲେଖକ ଭାବରେ କେହି ଗ୍ରହଣ କଲେ ନାହିଁ । ସେଥିରେ ମୋ ମନରେ ଅବଶୋଷ ନଥିଲା । କିନ୍ତୁ ମନରେ ଗୋଟିଏ ଭାବନା ଜାତ ହେଲା । ମୁଁ କ'ଣ ଜଣେ ଲେଖକ ହୋଇ ପାରିବିନି ? ମତେ କ'ଣ ଲୋକେ ଲେଖକ ହିସାବରେ ଗଣିବେ ନାହିଁ ?

ମନ କଥା ମନରେ ରହିଲା । କ'ଣ ଲେଖିବି ? କାହାପାଇଁ ଲେଖିବି ? କୋଉଠି ଛାପିବି ? କିଏ ପଢ଼ିବ ? ଇତ୍ୟାଦି ଅନେକ କଥା ମନକୁ ଭାରାକ୍ରାନ୍ତ କଲା । ଶେଷରେ ଗୋଟିଏ ନିଷ୍ପତ୍ତି କଲି । ଓଡ଼ିଆର ଯିଏ ଯେଉଁ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଛନ୍ତି, ସେଇମାନଙ୍କ ଠାରୁ ଲେଖା ସଂଗ୍ରହ କରି ଗୋଟିଏ ସଙ୍କଳନ କରିବି ।

ଓଡ଼ିଶାରେ ସବୁ ମିଳେ । ମାତ୍ର ଲେଖକମାନଙ୍କ ପାଖରୁ ଲେଖାଟିଏ ଠିକ୍ ସମୟରେ ମିଳେ ନାହିଁ । ସେ ବିଷୟରେ ମୋର ଅଭିଜ୍ଞତା ନଥିଲା । ଯାହାହେଉ, ପାଞ୍ଚ, ଦଶଥର ଦଉଡିଲା ପରେ ୪୫ଟି ଲେଖା ପାଇଲି । ମନରେ ସାହସ ଆସିଲା । ନିଜ ଚେଷ୍ଟାରେ ଜୀବନରେ ପ୍ରଥମ ବହିଟି ପ୍ରକାଶ ପାଇପାରିବ ବୋଲି ଦୃଢ଼ ହେଲି ।

କଟକ ବାଲୁବଜାରରେ ଥିବା ଶ୍ରୀରାମ ଏଜେନ୍ସି କାଗଜ ଗୋଦାମର ମାଲିକ ରାମଚନ୍ଦ୍ର ଭୁତ୍‌ଙ୍କ ସାଙ୍ଗରେ ମୋର ବହୁଦିନରୁ ଚିହ୍ନା ଥିଲା । ମୁଁ ଯାଇ ତାଙ୍କୁ ମୋ ମନର କଥା କହିଲି । ସେ ମତେ ସାହସ ଦେଇ କହିଲେ, "ବସନ୍ତ ଭାଇ, କିଛି ଚିନ୍ତା କର ନାହିଁ । ବହି କୋଉଠି ଛାପିବ ସ୍ଥିର କର । କେତେ କାଗଜ ଲାଗିବ ହିସାବ କର । ମୁଁ ସେ ପ୍ରେସକୁ କାଗଜ ପଠାଇଦେବି । ବହି ବାହାରିଲା ପରେ ମତେ ଟଙ୍କା ଦେଇଦେବ ।"

ଆମେ କଟକରେ ପଢ଼ିଲା ବେଳେ କଟକର ଡ଼ଗରପଡା ଅଞ୍ଚଳରେ 'ଜଗନ୍ନାଥ ପ୍ରୋସେସ' ନାଁରେ ଗୋଟିଏ ସଂସ୍ଥା ଥିଲା । ସେତେବେଳେ ସଂସ୍ଥା ପକ୍ଷରୁ କେବଳ 'ବ୍ଲକ' ତିଆରି ହେଉଥିଲା । କାଗଜ କିମ୍ବା ବହିରେ ଛାପିବା ପାଇଁ ବ୍ଲକ୍ ହିଁ ଏକମାତ୍ର ମାଧ୍ୟମ ଥିଲା ।

ସେମାନେ ତିନିଭାଇ । ମିଳିମିଶି କାମ କରୁଥିଲେ । କାମରେ ତାଙ୍କର ସୁନାମ ଥିଲା । ଆମେ ତାଙ୍କୁ 'ଦାଦା' ବୋଲି ଡାକୁଥିଲୁ। ନିଖିଳ ଉତ୍କଳ ଛାତ୍ର ୟୁନିଅନ ପକ୍ଷରୁ ମୁଖପତ୍ର ପାଇଁ ବ୍ଲକର ଆବଶ୍ୟକତା ପଡୁଥିଲା । ଆମେ ଜଗନ୍ନାଥ ପ୍ରୋସେସରେ ବ୍ଲକ ତିଆରି କରୁଥିଲୁ । ଅନେକ ସମୟରେ ପଇସା ବାକି ରହିଯାଉଥିଲା । 'ଦାଦା' ଆମକୁ ବିଶ୍ୱାସ କରୁଥିଲେ ।

ଦୀର୍ଘଦିନର ବ୍ୟବଧାନ । ମୁଁ ପାଠ ପଢ଼ା ଶେଷକରି ସାମ୍ବାଦିକତା ଭିତରେ ପଶିଲି । କଟକ ଛାଡ଼ି ଭୁବନେଶ୍ୱର ଆସିଲି । ମଝିରେ ଦାଦାଙ୍କ ସାଙ୍ଗରେ ଦେଖାହୋଇ ନଥିଲା ।

ସେମାନେ ପୁରୁଣା ଯାଗା ଛାଡ଼ି ସତୀଚଉରା ପାଖ କାଠଯୋଡି ନଈକୂଳରେ ନିଜ ଘର କରିଥିଲେ । ବ୍ଲକ୍ ତିଆରି ବେପାର ଛାଡି ଅପସେଟ୍ ମେସିନ୍ ପକାଇ ବହିପତ୍ର ଛାପୁଥିଲେ । ସେଥିରେ ସେମାନଙ୍କର ପ୍ରତିଷ୍ଠା ବଢ଼ିଥିଲା । ଭାଇମାନେ ଭିନେ ହୋଇ ଅଲଗା ବ୍ୟବସାୟ କରୁଥିଲେ । ମାଧବ ଦାଦା ତାଙ୍କ ପ୍ରତିଷ୍ଠାନର ନାଁ ରଖିଥିଲେ "ଜଗନ୍ନାଥ ପ୍ରୋସେସ" ।

ଖବର ନେଇ ଦିନେ ମୁଁ ମାଧବ ଦାଦାଙ୍କ ପାଖରେ ପହଞ୍ଚିଲି । ସେ ଦେଖି ଖୁସି ହୋଇଗଲେ । କେତେ ପୁରୁଣା କଥା ପଡିଲା । ବ୍ଲକ ତିଆରି କଲାବେଳେ ଏସିଡ୍ ପଡ଼ି ଗଞ୍ଜି ସବୁ କିପରି କଣା ହୋଇଯାଉଥିଲା ସେ କଥାକୁ ସେମାନେ ଭୁଲି ନଥିଲେ ।

କଥା ପ୍ରସଙ୍ଗରେ ମୁଁ ତାଙ୍କୁ ବହି ଛପାଇବା ସମ୍ପର୍କରେ କହିଲି । ସେ ତତ୍‌କ୍ଷଣାତ ରାଜି ହୋଇଗଲେ । କହିଲେ, "ଠିକ୍ ଅଛେ, ଆପନାର ଜଖନ ସୁବିଧା ହବେ, ଟାକା ଦିଏ ଦିବେନ। ଆମରା ଛେପେ ଦିବୋ ।" ଦାଦା କଥାରେ ମୋ ମନରେ ସାହସ ବଢ଼ିଗଲା ।

ବହିପାଇଁ କାଗଜର ବ୍ୟବସ୍ଥା ହୋଇଗଲା । ଛାପିବା ପାଇଁ ମଧ୍ୟ ପ୍ରେସ୍ ଠିକ୍ ହୋଇଗଲା । ବିଷୟବସ୍ତୁ ମିଳିଯାଇଥିଲା । କେବଳ ବାକି ରହିଲା ବହିର କଭର । ସେତେବେଳେ କମ୍ପ୍ୟୁଟରର ଏତେଟା ପ୍ରଚଳନ ନଥିଲା । ହାତରେ ଶିଳ୍ପୀମାନେ ବହିର କଭର ଡିଜାଇନ୍ କରୁଥିଲେ । ଶିଳ୍ପୀମାନଙ୍କ ଭିତରେ ଅସୀମଦା' (ଅସୀମ ମୁଖାର୍ଜୀ)ଙ୍କର ଖୁବ୍ ନାଁ ଥିଲା । ସେ ମାଷ୍ଟରକ୍ୟାଣ୍ଟିନ ଛକ ପାଖରେ ଥିବା ଗୋଦାବରୀଶ ସାହିତ୍ୟ ସଂସଦ ବିଲ୍ଡିଂର ଗୋଟିଏ ରୁମ୍‌ରେ ବିଭିନ୍ନ ଡିଜାଇନ୍ କରୁଥିଲେ । ପଇସା ରୋଜଗାର ଅପେକ୍ଷା ଡିଜାଇନ୍ କରିବା ଅସୀମଦା'ଙ୍କର ଏକ ସଉକ ଥିଲା । ମୂଲ କରି ସେ କୌଣସି କାମ କରୁନଥିଲେ ।

ଲୋକେ ତାଙ୍କୁ ଅସୀମଦା' ବୋଲି ଡାକୁଥିଲେ । ଦାଦା ବହୁମୁଖୀ ପ୍ରତିଭାର ଅଧିକାରୀ ଥିଲେ । ରଙ୍ଗମଞ୍ଚ ସଜାଇବା କଳାରେ ତାଙ୍କର ଏକ କୃତିତ୍ୱ ରହିଥିଲା ।

ମୋ କଥା ଶୁଣି ସେ ଖୁସି ହୋଇଗଲେ । କହିଲେ, "ଯାହାହେଉ ଏତେଦିନେ ଆପଣ ଲାଇନକୁ ଆସିଲେ । କାଗଜରେ ଖବର ଛାପିଦେଲେ କିଏ ଆପଣଙ୍କୁ ମନେ ରଖିବ ? କିଛି କରିଥିଲେ ଦିନେ ନା ଦିନେ ଲୋକେ ଆପଣଙ୍କୁ ଖୋଜିବେ ।

ଦାଦା ମତେ କଭର ପେଜ୍ ପାଇଁ ଫଟୋର ଏକ ଲମ୍ବା ତାଲିକା ଧରାଇ ଦେଲେ । ମୁଁ ଦାଦାଙ୍କୁ କହିଲି, "ଆପଣ ତ ପଣ୍ଡିତ, ବଢ଼େଇ ଉପାଖ୍ୟାନର ପୁନରାବୃତ୍ତି କଲେ । ପଣ୍ଡିତେ ଶିଶୁ କାଠ ପାଇବେ ନା ବଢ଼େଇକି ଦେବେ । ସେ ନାପସନ୍ଦ ବଢ଼େଇ । ପଣ୍ଡିତଙ୍କୁ ଯେତେବେଳେ ଦେଖିଲା କାଠ କଥା ପଚାରିଲା । ଶେଷରେ ପଣ୍ଡିତେ ବଢ଼େଇକି ତାଙ୍କର ନାସଦାନି ଦେବା ନୋହିଲା ।"

ସେମିତିଆ କଥା । ଆପଣ ଯୋଉ ତାଲିକା ଦେଲେ, ସେ ଫଟୋ ସବୁ ମୁଁ ପାଇବି ନା ଆପଣଙ୍କୁ ଦେବି ? ନା ଆପଣ ବହିର କଭର କରିବେ । ଶେଷରେ ମୁଁ ଲୁଚିବା ହିଁ ସାର୍ ହେବ ।

ଦାଦା ମତେ ଗୋଟିଏ ସହଜ ଉପାୟ ବତେଇ ଦେଲେ । "ଆପଣ ଆଇ ଆଣ୍ଡ ପି.ଆର. ଡିପାର୍ଟମେଣ୍ଟକୁ ଯଆନ୍ତୁ । ସେଠି କିଛି ଭୋଗ ଲଗେଇଲେ ଆପଣଙ୍କ କାମ ହୋଇଯିବ । ହଁ, ଗୋଟାଏ କଥା ମନେ ରଖିବେ । ଡାଇରେକ୍ଟରଙ୍କ ପାଖକୁ ଯାଇ ଅର୍ଡର କରେଇବେନାହିଁ । ଆପଣଙ୍କ ଫାଇଲରେ ଡାଇରେକ୍ଟର ଅର୍ଡର କରିଦେବେ ସତ, ମାତ୍ର ଫଟୋ ମିଳିବ ନାହିଁ ।"

ଦାଦାଙ୍କ କଥା ମାନି ପି.ଆର. ଡିପାର୍ଟମେଣ୍ଟକୁ ଗଲି । ପୁରୁଣା ଲୋକ ସବୁ ଅବସର ଗ୍ରହଣ କରି ସାରିଥିଲେ । ନୂଆ ପିଲାଙ୍କ ଭିତରେ ଦି'ତିନିଜଣ ମତେ ଜାଣିଥିଲେ । ସେମାନଙ୍କ ଭିତରୁ ଜଣକୁ ଫଟୋ ତାଲିକା ସହିତ କିଛି ହାତଗୁଞ୍ଜା ଦେଲି । ସେ ନାହିଁ କରୁଥିଲେ ।

ସତକୁ ସତ ଦି'ଦିନ ପରେ ମତେ ସେଠାରୁ ଅଧିକାଂଶ ଫଟୋ ମିଳିଗଲା । ଦାଦା ସେ ଫଟୋକୁ ସଜାଇ ମୋର ପ୍ରଥମ ସଙ୍କଳନ 'ଓଡ଼ିଶା'ର କଭର ପେଜ୍‌କୁ ସଜାଇଦେଲେ ।

୨୦୦୦ ଜୁନ୍ ମାସରେ ପୁସ୍ତକର ଲୋକାର୍ପଣ ପାଇଁ ସ୍ଥିର ହେଲା । ସେଥି ସହିତ ଗୋଟିଏ ଆଲୋଚନାଚକ୍ରର ଆୟୋଜନ ହୋଇଥିଲା । ବିଷୟବସ୍ତୁ ଥିଲା "ଗଣତନ୍ତ୍ରର ଚାରୋଟି ସ୍ତମ୍ଭ-ସୁଯୋଗ ଓ ଦାୟିତ୍ୱ ।

ଚାରୋଟି ସ୍ତମ୍ଭର ଚାରିଜଣ ବିଶିଷ୍ଟ ବ୍ୟକ୍ତିକୁ ଆଲୋଚନାରେ ଭାଗନେବା ପାଇଁ ଆମନ୍ତ୍ରଣ କରାଯାଇଥିଲା । ସେମାନଙ୍କ ଭିତରେ ଥିଲେ ଓଡ଼ିଶା ବିଧାନସଭାର ବାଚସ୍ପତି ଶରତ କୁମାର ରାୟ । ଓଡ଼ିଶା ହାଇକୋର୍ଟର ବିଚାରପତି ଚୌଧୁରୀ ପ୍ରତାପ କେଶରୀ ମିଶ୍ର, ଅବସରପ୍ରାପ୍ତ ପ୍ରଶାସକ ଅଧୂତ ନାରାୟଣ ତିୱାରୀ ଏବଂ କଲିକତାର ବରିଷ୍ଠ ସାମ୍ବାଦିକ ନିଖିଳ ମଜୁମଦାର ।

ନବୀନ ପଟ୍ଟନାୟକ ଦୁଇ ମାସ ଆଗରୁ ମୁଖ୍ୟମନ୍ତ୍ରୀ ହୋଇଥିଲେ । ସେ କାହାକୁ ଚିହ୍ନି ନଥିଲେ । ଅନ୍ୟମାନେ ମଧ୍ୟ ତାଙ୍କୁ ଦେଖିବାର ସୁଯୋଗ ପାଇନଥିଲେ । ମୁଖ୍ୟମନ୍ତ୍ରୀଙ୍କୁ କେମିତି ବହି ଲୋକାର୍ପଣ କରିବାକୁ ଡାକିବି ପ୍ରଥମେ କିଛି ଭାବିପାରି ନଥିଲି ।

ଦରଖାସ୍ତ ଖଣ୍ଡେ ଲେଖି ସେକ୍ରେଟାରିଏଟ୍ ଗଲି । ସିନିଅର ଓଏଏସ୍ ଅଫିସର ବେଣୁ ମିଶ୍ର ତାଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ଥିଲେ । ମୋର ବହୁଦିନର ଚିହ୍ନା । ତାଙ୍କ ଘର ଗୋବିନ୍ଦପୁର ଅଞ୍ଚଳର ବୋଦା ଗାଁ'ରେ । ସେ ସାହାଯ୍ୟକାରୀ ଲୋକ । କଥାବାର୍ତ୍ତା ମାର୍ଜିତ ।

ମତେ ଦେଖି କହିଲେ, "ଦେଖନ୍ତୁ, ଆପଣଙ୍କୁ ମୁଁ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରେଇଦେବି । ମାତ୍ର ସେ ଆପଣଙ୍କ ସଭାକୁ ଯିବେ କି ନାହିଁ, ସେକଥା ମୁଁ କହିପାରିବି ନାହିଁ । ଆପଣ ସି.ଏସ୍‌ଙ୍କୁ କହି ଚେଷ୍ଟା କରନ୍ତୁ ।"

ଆମ କଥାବାର୍ତ୍ତା ସମୟରେ ମନ୍ତ୍ରୀ ନଳିନୀକାନ୍ତ ମହାନ୍ତି ସେଠାରେ ପହଞ୍ଚିଲେ । ଆମ କଥା ଶୁଣି କହିଲେ, "ଇଏ ଗୋଟାଏ କଥା । ଆପଣ ଡାକିବେ, ମୁଖ୍ୟମନ୍ତ୍ରୀ ଯିବେ ନାହିଁ । ଚାଲନ୍ତୁ ମୋ ସାଙ୍ଗରେ ।"

ନଳିନୀବାବୁ ଓ ମୁଁ ମୁଖ୍ୟମନ୍ତ୍ରୀଙ୍କ ରୁମ୍‌ରେ ପଶିଲୁ । ନଳିନୀ ମତେ ଚିହ୍ନା କରେଇ ଦେଇ କହିଲେ, "ଇଏ ହେଉଛନ୍ତି ବରିଷ୍ଠ ସାମ୍ବାଦିକ ବସନ୍ତ ଦାସ । ବିଜୁବାବୁଙ୍କ ଅମଳର ଲୋକ । ସାର୍‌ଙ୍କ ସାଙ୍ଗରେ ଘନିଷ୍ଠ ସମ୍ପର୍କ ଥିଲା । ତାଙ୍କର ଗୋଟିଏ ବହି ଉଦ୍‌ଘାଟିତ ହେବ । ସେଥିରେ ଆପଣଙ୍କୁ ଯୋଗ ଦେବାକୁ ପଡ଼ିବ ।"

"ମେରା ଜାନା କଥା ଜରୁରୀ ହୈ, ନଳିନୀବାବୁ!" ମୁଖ୍ୟମନ୍ତ୍ରୀ ଚଷମା ଟେକି ନଳିନୀବାବୁଙ୍କ ପଚାରିଲେ । ନଳିନୀବାବୁ କହିଲେ, "ଇସମେ ପୁଛନେ କା କ୍ୟା ହୈ । ଆପକୋ ଜାନା ପଡେଗା । ବସନ୍ତବାବୁ ହମ୍ ସବକା ବଡ଼ା ଭାଇ ହୈ ।"

ମୁଖ୍ୟମନ୍ତ୍ରୀ, ଘଣ୍ଟି ବଜାଇ ବେଣୁବାବୁଙ୍କୁ ଡକାଇଲେ । ତାଙ୍କ ହାତକୁ ମୋ ଦରଖାସ୍ତ ଖଣ୍ଡକ ବଢ଼େଇ ଦେଇ କହିଲେ, "ଇସକା ପ୍ରୋଗ୍ରାମ ବନାୟି ଯେ । ମେଁ ଯାଉଁଗା ।"

ସେଦିନ ମୁଖ୍ୟମନ୍ତ୍ରୀ ପ୍ରଥମଥର ପାଇଁ ସ୍ୱସ୍ତି ହୋଟେଲ ଯାଇଥିଲେ । ସେଥିପାଇଁ ହୋଟେଲରେ ରେଡ୍ କାରପେଟ ବିଛା ଯାଇଥିଲା । ଝିଅମାନେ ଧାଡିରେ ଛିଡା ହୋଇ ମୁଖ୍ୟମନ୍ତ୍ରୀଙ୍କ ଉପରେ ଫୁଲ ପକାଉଥିଲେ । ମୁଖ୍ୟମନ୍ତ୍ରୀଙ୍କ କପାଳରେ ଯେତେବେଳେ ଜଣେ ଯୁବତୀ ଚନ୍ଦନ ଟୋପା ଲଗାଇ ଦେଲେ, କେଜାଣି କାହିଁକି ତାଙ୍କ ଦେହ ଶିହରୀ ଗଲା ଭଳିଆ ଲାଗିଥିଲା ।

ଓଡ଼ିଆ ପୁସ୍ତକର ଲୋକାର୍ପଣ ସହିତ ସେଦିନର ଆଲୋଚନାଚକ୍ର ସୁଚାରୁରୂପେ ସମ୍ପନ୍ନ ହୋଇଥିଲା । 'ଅନୁସନ୍ଧାନ' ପକ୍ଷରୁ ତିନିଜଣ ବରିଷ୍ଠ ସାମ୍ବାଦିକ ପି.ଟି.ଆଇ ମ୍ୟାନେଜର ରାମକୃଷ୍ଣ ବେହେରା, ବରେନ୍ଦ୍ରକୃଷ୍ଣ ଧଳ ଓ ଓ ପ୍ରଦୋଷ ପଟ୍ଟନାୟକଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା । ମୁଖ୍ୟମନ୍ତ୍ରୀ ମାନପତ୍ର, ଉତ୍ତରୀୟ ଓ ପୁଷ୍ପଗୁଚ୍ଛ ଦେଇ ସେମାନଙ୍କୁ ସମ୍ମାନିତ କରିଥିଲେ ।

ସେମାନଙ୍କ ମଧ୍ୟରୁ ରାମକୃଷ୍ଣ ବେହେରାଙ୍କୁ ସମ୍ବର୍ଦ୍ଧନା ଜଣାଇବା ବୋଧହୁଏ ଏକ ଭୁଲ୍ ନିଷ୍ପତ୍ତି ଥିଲା ବୋଲି ପରେ ମୁଁ ଅନୁଭବ କଲି । କାରଣ ଯେଉଁ ବ୍ୟକ୍ତିଙ୍କୁ ମୁଁ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ସମ୍ବର୍ଦ୍ଧିତ କରିଥିଲି, ସେଇମାନେ ସାମାନ୍ୟ ସ୍ୱାର୍ଥ ପାଇଁ ମୋ ନାଁରେ ଥାନାରେ ଏଫଆଇଆର ଦେଇ ମତେ ଜେଲ୍ ପଠାଇବାର ସବୁ ବ୍ୟବସ୍ଥା କରିଥିଲେ । ସେଥିପାଇଁ ଆମ ଗାଁ' ଗହଳିରେ ଗୋଟିଏ କଥା ଚଳେ, "ସବୁକରିବ, କଳାମୁଣ୍ଡିଆକୁ ବିଶ୍ୱାସ କରିବ ନାହିଁ"

'ଓଡ଼ିଶା' ପୁସ୍ତକଟି ସାଧାରଣରେ ଆଦୃତ ହେଲା । ସେଥିରେ ମୋର ଅନ୍ୟ କିଛି ଲାଭ ହେଉ ବା ନହେଉ, ମନରେ ସାହସ ବଢ଼ିଗଲା । ଓଡ଼ିଆ ରାଜନୀତିର ଏକ ସଂକ୍ଷିପ୍ତ ଇତିହାସ ଲେଖିବା ପାଇଁ ବିଭିନ୍ନ ଆଡ଼ୁ ପ୍ରସ୍ତାବ ଆସିଲା ।

୧୯୩୬ ମସିହାରେ ଭାଷାଭିତ୍ତିରେ ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ୧୯୩୬ରୁ ୨୦୦୦ ମସିହା । ଚଉଷଠି ବର୍ଷର ବ୍ୟବଧାନ । ଏଇ ସମୟ ଭିତରେ ବହୁ ଘଟଣା ଘଟିଯାଇଛି । ସେଥିମଧ୍ୟରୁ ଅନେକ ଘଟଣାକୁ ମୁଁ ନିଜ ଆଖିରେ ଦେଖିଛି । ଅନେକ କଥା ଅଙ୍ଗେ ନିଭେଇଛି । ତା'ସତ୍ତ୍ୱେ ସେସବୁ ଘଟଣାକୁ ଲିପିବଦ୍ଧ କରି ପ୍ରକାଶ କରିବା ସହଜସାଧ୍ୟ ବ୍ୟାପାର ନୁହେଁ । ଏପରି ଏକ ସତ୍ୟକୁ ମୁଁ ଅନୁଭବ କରିଥିଲି । ତଥାପି ସେ ଦିଗରେ ମନ ବଳେଇଲି ।

ଚଉଷଠି ବର୍ଷର ତଥ୍ୟକୁ ଏକାଠି କରି ପୁସ୍ତକ ଆକାରରେ ପ୍ରକାଶ କରିବାକୁ ବର୍ଷକରୁ ଅଧିକ ସମୟ ଲାଗିଗଲା । ରାଜନୀତିରେ ଯୋଗଦାନ କଥା କିଛିଦିନ ପାଇଁ ଚହଳ ସୃଷ୍ଟି କରିଥିଲା । ପୁସ୍ତକଟି ପ୍ରକାଶ ପାଇବା ସମୟରେ ଟିକିଏ ଆତଙ୍କିତ ଅବସ୍ଥାରେ ଥିଲି । ଯେଉଁମାନଙ୍କ ସମ୍ପର୍କରେ ପୁସ୍ତକରେ ଉଲ୍ଲେଖ ଥିଲା, ସେମାନେ ସମସ୍ତେ ସମାଜରେ ପ୍ରତିଷ୍ଠିତ ବ୍ୟକ୍ତି । ସେମାନଙ୍କର ଅର୍ଥ, ବାହୁବଳ ଭରପୁର ଥିଲା । ସେଥିସହିତ ସେମାନେ କେହି ସହନଶୀଳ ନଥିଲେ । ଅନ୍ୟକୁ ଖତମ କରିଦେବାକୁ ସେମାନେ ତିଳେ ହେଲେ କୁଣ୍ଠାବୋଧ କରୁନଥିଲେ । ମୋ ମନ ମଧ୍ୟରେ ଆଶଙ୍କା ସୃଷ୍ଟି ହୋଇଥିଲା । ମାତ୍ର ପୁସ୍ତକର ବିଷୟବସ୍ତୁ ସତ୍ୟଘଟଣା ଉପରେ ଆଧାରିତ ହୋଇଥିବାରୁ ମୋ ଉପରେ ଶାରୀରିକ ଆକ୍ରମଣ କରିବା ତ ଦୂରର କଥା, କୌଣସି ଗୋଟିଏ ବିଷୟରେ ପ୍ରତିବାଦ କରିବାକୁ ମଧ୍ୟ କେହି ସାହସ କରିନଥିଲେ ।

'ଓଡ଼ିଶା ରାଜନୀତିର ଗୋପନକଥା' ପୁସ୍ତକଟି ଏକ ଉତ୍ସବରେ ସୂଚନା ଭବନ (ବର୍ତ୍ତମାନ ଜୟଦେବ ଭବନ)ରେ ଲୋକାର୍ପିତ ହୋଇଥିଲା । ସେ ଉତ୍ସବରେ ସବୁ ମୁଖ୍ୟ ରାଜନୈତିକ ଦଳର ନେତାମାନେ ଉପସ୍ଥିତ ଥିଲେ । ସେଦିନ ଉତ୍ସବ ସ୍ଥଳରେ ଶହେରୁ ଅଧିକ ପୁସ୍ତକ ବିକ୍ରି ହୋଇ ସେତେବେଳେ ଏକ ରେକର୍ଡ ସୃଷ୍ଟି କରିଥିଲା ।

ଏହି ପୁସ୍ତକଟି ସମାଜରେ ବିଶେଷକରି ରାଜନୀତି କ୍ଷେତ୍ରରେ ମୋର ବିଶ୍ୱାସନୀୟତାକୁ ବଢ଼େଇ ଦେଇଥିଲା । ଲୋକେ ମୋ ଲେଖା ଉପରେ ଗୁରୁତ୍ୱ ଦେବାକୁ ଲାଗିଲେ । ସମ୍ବାଦପତ୍ରମାନଙ୍କରେ ମୋ ଲେଖା ପ୍ରକାଶ ପାଇଲେ ତା' ଉପରେ ଚର୍ଚ୍ଚା ହେଲା । ମୁଁ ଶଙ୍କାଗ୍ରସ୍ତ ହୋଇ ପାଞ୍ଚଶହ ପୁସ୍ତକ ଛାପିଥିଲି । ସେସବୁ ଅଳ୍ପସମୟ ଭିତରେ ହଟ୍ କେକ୍ ଭଳି ବିକ୍ରି ହୋଇଗଲା ।

ମୋର ତୃତୀୟ ପୁସ୍ତକ 'ଅକୁହା କଥା'କୁ ଅସୀମା ପ୍ରକାଶନ ପକ୍ଷରୁ ପ୍ରକାଶ କରଯାଇଥିଲା । ସେଥିରେ ବିଭିନ୍ନ ସମୟରେ ସମ୍ବାଦପତ୍ର ସାଙ୍ଗରେ ପ୍ରକାଶ ପାଇଥିବା ରାଜନୈତିକ ବିଶ୍ଳେଷଣ, ସାଂପ୍ରତିକ ଘଟଣାବଳୀ, ପ୍ରଶାସନିକ ତ୍ରୁଟି ସମ୍ପର୍କରେ ୮୨ଟି ଲେଖା ସ୍ଥାନ ପାଇଥିଲା । ସେ ପୁସ୍ତକଟି କେତେଦୂର ପାଠକୀୟ ଆଦୃତ ଲାଭ କରିଥିଲା, ସେ କଥା ମୁଁ କଳନା କରି ପାରିନଥିଲି ।

ମୋର ପ୍ରଥମ ଇଂରାଜୀ ପୁସ୍ତକ "ଫୁଟପ୍ରିଣ୍ଟର ଅଫ ଇଭେଣ୍ଟ ଫ୍ୟୁଡେଜ" ମତେ ସବୁଠାରୁ ଅଧିକ ଆନନ୍ଦ ଦେଇଥିଲା । ୧୮୩୦ ମସିହାରୁ ୨୦୦୩ ମସିହା ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ଘଟିଥିବା ଘଟଣାବଳୀ ସହିତ ଓଡ଼ିଶାର ଐତିହ୍ୟ, ପରମ୍ପରା, ସଂସ୍କୃତି ଓ ବିଭିନ୍ନ ବିଭବ ସମ୍ପର୍କରେ ଏଥିରେ ବିଶଦ ଭାବରେ ବର୍ଣ୍ଣନା କରାଯାଇଛି । ଏପରି ଏକ ପୁସ୍ତକ ରଚନା ପାଇଁ ମୋର କୌଣସି ଯୋଜନା ନଥିଲା । ମାତ୍ର ଗୋଟିଏ ଘଟଣା ଦ୍ୱାରା ପ୍ରଭାବିତ ହୋଇ ମୁଁ ପୁସ୍ତକ ରଚନା ଦିଗରେ ମନ ବଳାଇଲି ।

୧୯୯୭ ମସିହା ଫେବୃଆରୀ ମାସର ଘଟଣା । ମୁଁ ଓ ମୋର ପତ୍ନୀ ପ୍ରମଦା, ଲକ୍ଷ୍ନୌରୁ ପୁଷ୍କର ଏକ୍ସପ୍ରେସ ଟ୍ରେନରେ ବମ୍ବେ ଯାଉଥିଲୁ । ବମ୍ବେରେ ପୁଅ ଚନ୍ଦନ ରହୁଥିଲା । ଟ୍ରେନଟି ସନ୍ଧ୍ୟା ସାଢ଼େ ଆଠଟାରେ ଲକ୍ଷ୍ନୌ ଷ୍ଟେସନ ଛାଡ଼ିଲା । ଆମେ ସନ୍ଧ୍ୟାରେ ରାତ୍ରୀ ଭୋଜନ ସାରି ଦେଇଥିଲୁ । ମୁଁ ଟ୍ରାଉଜର ପଞ୍ଜାବୀ ପିନ୍ଧିଥିଲି । ପ୍ରମଦା ଶାଢ଼ୀ ପିନ୍ଧିଥିଲେ । ଆମେ ଓଡ଼ିଆରେ କଥାବାର୍ତ୍ତା ହୋଉଥିଲୁ । ଏ.ସି ଦ୍ୱିତୀୟ ଶ୍ରେଣୀ ଡ଼ବାରେ ତଳ ଉପର ହୋଇ ଆମର ଦୁଇଟି ବାର୍ଥ ଥିଲା । ଆମ ସାମନାରେ ବସିଥିବା ଦୁଇଜଣ ଭଦ୍ରଲୋକ ମତେ ପଚାରିଲେ, "ମାଫ୍ କରେଙ୍ଗେ । ଆପ ସର୍କଲସେ ବାଙ୍ଗାଲୀ ଲଗତେ, ଲେକିନ୍ ଦୁଶରା ବୋଲି ବୋଲତେ ହେଁ । ଆପ ଲୋଗ କାହାଁକି ରହେନେ ବାଲେ ।"

ମୁଁ ତାଙ୍କୁ ନମ୍ରତାର ସହିତ କହିଲି, "ହମଲୋଗ ଓଡ଼ିଶା ମେଁ ରହେନେ ବାଲେ ।" ଓଡ଼ିଶା ? ଓଡ଼ିଶା କାହାଁପର ହେ, ବାଙ୍ଗଲ ମେଁ କଥା ? କାଲକତା କା ଆସପାସ ?" ବିସ୍ମୟସୂଚକ ଭାବରେ ସେମାନେ ମତେ ପଚାରିଥିଲେ ।

ସେମାନଙ୍କ ପ୍ରଶ୍ନ ମତେ ବିଜୁଳି ପରି ସକ୍ ଦେଇଥିଲା । ମୁଁ ଭାବିଲି, ଓଡ଼ିଶା ପ୍ରଦେଶ ଗଠିତ ହେବାର ଷାଠିଏ ବର୍ଷ ହୋଇଗଲାଣି । ତଥାପି ଏ ରାଜ୍ୟର ପରିଚୟ ନାହିଁ । ଲୋକେ ଓଡ଼ିଆ କୋଉଠି ବୋଲି ପଚାରୁଛନ୍ତି । ଏହାଠାରୁ ବଳି ଦୁଃଖ ଓ ଲଜ୍ଜାର ବିଷୟ ଆଉ କ'ଣ ଥାଇପାରେ ? ଆମେ କ'ଣ ଆମ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାଇବୁ ନାହିଁ ।

ସେ ଡ଼ବାର ଝରକା ପାଖରେ ଆଉ ଦୁଇଜଣ ଭଦ୍ରଲୋକ ବସିଥିଲେ । ସେମାନଙ୍କର ଓଡ଼ିଶା ସମ୍ପର୍କରେ ସାମାନ୍ୟ ଧାରଣା ଥିଲା । କିନ୍ତୁ ସେମାନେ ଓଡ଼ିଶା ଆସିନଥିଲେ । ସେମାନଙ୍କ ଭିତରୁ ଜଣେ କହୁଥିଲେ, "ଓଡ଼ିଶାରେ କୋଣାର୍କ ବୋଲି ଗୋଟିଏ ସ୍ଥାନ ଅଛି । ସେଠାକାର ମନ୍ଦିର କୁଆଡ଼େ ଭାରି ସୁନ୍ଦର ।"

ତାଙ୍କ କଥାରେ ପ୍ରତିକ୍ରିୟା ପ୍ରକାଶ କରି ତାଙ୍କ ସମ୍ମୁଖରେ ବସିଥିବା ବନ୍ଧୁଜଣକ କହିଲେ, "କୋଣାର୍କ ମେ ଦେଖନ କୋ ହେ କା ଥା ? ଏକ ଟୁଟାହୁଆ ପୁରାନା ମନ୍ଦିର ହେ । ୱାହାଁ କୋଇ ଭଗବାନ ଜୀ କା ମୂର୍ତ୍ତି ନହିଁ ହେ । ୱାହାଁ ଯାକେ ସିରଫ୍ ପୈସା ବରବାଦ କରନା ଜରୁରତ୍ ନହିଁ ।

ମୁଁ ମୋ କ୍ରୋଧକୁ ନିୟନ୍ତ୍ରଣ କରିପାରିଲି ନାହିଁ । ପୂର୍ବରୁ ଆମ ସାମନାରେ ବସିଥିବା ଦୁଇଜଣ ବ୍ୟକ୍ତି 'ଓଡ଼ିଶା କୋଉଠି' ବୋଲି କହି ମୋ ମୁଡ୍ ଖରାପ କରିଦେଇଥିଲେ । ଏମାନେ ପୁଣି କହିଲେ କୋଣାର୍କ ଯିବା ଅର୍ଥ ପଇସା ବରବାଦ କରିବା । ଜଣେ ଓଡ଼ିଆ ହୋଇ ଏସବୁ କଥା ମୁଁ ଆଉ କେତେ ସହିଥାନ୍ତି ?

ମୁଁ ସେମାନଙ୍କ କଥାରେ ହସ୍ତକ୍ଷେପ କରି କହିଲି, କ୍ଷମା କରିବେ । ଆପଣମାନଙ୍କ ଭିତରୁ ବୋଧହୁଏ କେହି କୋଣାର୍କ ଦେଖି ନାହାନ୍ତି । ଦେଖିଥିଲେ କୋଣାର୍କ ସମ୍ପର୍କରେ

ଏପରି ମତାମତ ଦେଇନଥାନ୍ତେ । କୋଣାର୍କ ମନ୍ଦିରର ପଥର ଖୋଦିତ କାରୁକାର୍ଯ୍ୟ ବିଶ୍ୱବିଖ୍ୟାତ । ସେ ମନ୍ଦିର କେବଳ ଆମ ରାଜ୍ୟର ଗର୍ବ ନୁହେଁ । ସମଗ୍ର ଭାରତବର୍ଷର ଗର୍ବ ।

ସେମାନେ ମୋ ଆଡକୁ ଆଖି ତରାଟି ଅନେଇଲେ । ମୁଁ ଆଉ କିଛି କହିଥାଆନ୍ତି । ମାତ୍ର ପ୍ରମଦା ମତେ ସେମାନଙ୍କ ସାଙ୍ଗରେ ଯୁକ୍ତିତର୍କ ନକରିବାକୁ ସତର୍କ କରାଇଦେଲେ । ସେ ମତେ କହିଲେ, ଦେଖ, ଏଲାଇନରେ ଆମେ ପ୍ରଥମଥର କରିଯାଉଛେ । ଟ୍ରେନରେ ଆମର ଜଣେ ହେଲେ କେହି ଚିହ୍ନା ଲୋକ ନାହାନ୍ତି । ସେମାନେ ସବୁ ସ୍ଥାନୀୟ ଲୋକ । ସେମାନଙ୍କ ସାଙ୍ଗରେ ଯୁକ୍ତି କରିବା କ'ଣ ଦରକାର ? ପ୍ରମଦାଙ୍କ କଥାରେ ଯୁକ୍ତି ଥିଲା । ସେତେବେଳକୁ ରାତି ସାଢ଼େ ନଅଟା ହୋଇଯାଇଥିଲା । ମୁଁ ଉପର ବର୍ଥକୁ ଯାଇ ଶୋଇପଡ଼ିଲି ।

ପରଦିନ ସକାଳେ ଜଳଖିଆ ଖାଇଲା ବେଳେ ଆମ ଭିତରେ ଏକପ୍ରକାର ବନ୍ଧୁତା ସୃଷ୍ଟି ହୋଇଯାଇଥିଲା । ଟ୍ରେନଟି ସନ୍ଧ୍ୟାରେ ବମ୍ବେରେ ପହଞ୍ଚିବାକୁ ପ୍ରଚୁର ସମୟ ଥିଲା । ନାନା ରକମର କଥା ପଡ଼ିଲା । ପୂର୍ବ ସନ୍ଧ୍ୟାରେ ସୃଷ୍ଟି ହୋଇଥିବା ପରସ୍ପର ପ୍ରତି ସନ୍ଦେହ ଦୂର ହୋଇଯାଇଥିଲା । ବମ୍ବେରେ ଓହ୍ଲାଇ ଆମେ ଯେଝା ବାଟରେ ଚାଲିଯାଇଥିଲୁ ।

ବମ୍ବେରେ ଆଉ ଗୋଟିଏ ଘଟଣା ଘଟିଲା । ସେକଥା ମୋର ଏ ପର୍ଯ୍ୟନ୍ତ ମନେ ଅଛି । ବମ୍ବେରେ ଟ୍ରେନ ପହଞ୍ଚିଲା ପୂର୍ବରୁ ବିଦ୍ୟୁତ୍ ସରବରାହରେ ବାଧା ସୃଷ୍ଟିହେବାରୁ ପ୍ରାୟ ଦୁଇଘଣ୍ଟା ପର୍ଯ୍ୟନ୍ତ ଟ୍ରେନଟି ବାଟରେ ଅଟକି ଥିଲା । ସେଥିପାଇଁ ଆମେ ପହଞ୍ଚିଲା ବେଳକୁ ରାତି ଏଗାରଟା ବାଜି ଯାଇଥିଲା । ଚନ୍ଦନ ବ୍ୟସ୍ତ ହୋଇପଡ଼ିଥିଲା । ତା' ମନରେ ନାନା ପ୍ରକାର ଆଶଙ୍କା ସୃଷ୍ଟି ହୋଇଥିଲା । ଆମକୁ ଦେଖି ଖୁସି ହୋଇଗଲା ।

ଆମେ ଟାକ୍ସିରେ ଯିବା ସମୟରେ ସେଇ ପୁରୁଣା ପ୍ରଶ୍ନ । ଆପଣମାନେ କୋଉଠୁ ଆସିଲେ ? ଆପଣମାନେ ତ ୟୁ.ପି ଲୋକଭଳି ଲାଗୁନାହାନ୍ତି ? ମୁଁ ଫିଆଟ ଟାକ୍ସିର ଆଗ ସିଟ୍‌ରେ ବସିଥିଲି । ଗାଡ଼ିର ଆସବୋର୍ଡରେ ପ୍ରଭୁ ଜଗନ୍ନାଥଙ୍କର ଗୋଟିଏ ଷ୍ଟିକର ଲାଗିଥିଲା । ମୁଁ ଟାକ୍ସି ଡ୍ରାଇଭରକୁ ପଚାରିଲି, "ଗାଡ଼ିରେ ଲାଗିଥିବା ଛବିଟି କାହାର ? ତମେ ଗାଡ଼ିରେ ସେ ଛବି କାହିଁକି ଲଗାଇଛ ?"

ସେ କହିଲା, "ଆପଣମାନେ ବୋଧେ ଜାଣି ନାହାନ୍ତି । ଇଏ ହେଉଛନ୍ତି ପୁରୀ ଜଗନ୍ନାଥ ମହାପ୍ରଭୁଙ୍କର । ଖୁବ୍ ବଡ଼ ଠାକୁର । ତାଙ୍କର ବହୁତ ମହିମା । ଯିଏ ଯାହା ମାଗିଲେ ସେ ଦିଅନ୍ତି । ଓଡ଼ିଶାର ଜଣେ ବାବୁ ମତେ ଏ ଛବିଟି ଦେଇଥିଲେ । ମୁଁ ତାକୁ ଗାଡ଼ିରେ ଲଗେଇଛି । ଭଗବାନଙ୍କୁ ଦେଖିବାର ସୁଯୋଗ ମିଳିନାହିଁ । ମିଳିବ କି ନାହିଁ ଜାଣିନାହିଁ । ପ୍ରତିଦିନ ଧୂପଦୀପ ଦେଇ ପୂଜା କରୁଛି ।"

ମୁଁ ଡ୍ରାଇଭରକୁ କହିଲି, ତମେ ଯୋଉ ପୁରୀ କଥା କହୁଛ, ଆମେ ସେଇଠୁ ଆସିଛୁ । ଜଗନ୍ନାଥ ହେଉଛନ୍ତି ଜଗତର ଠାକୁର । କେବଳ ଓଡ଼ିଶାର ଠାକୁର ନୁହନ୍ତି । ମୋ କଥା ଶୁଣି

ଡ୍ରାଇଭର ଗାଡ଼ିର ବ୍ରେକ୍ ମାରିଲା । ଆମେ କିଛି ବୁଝିପାରିଲୁ ନାହିଁ । ବମ୍ବେ ସହରରେ ଏତେ ରାତିରେ ସେ ବାଟରେ କାହିଁକି ଗାଡ଼ି ଅଟକାଇଲା ? କ'ଣ ତା'ର ଉଦ୍ଦେଶ୍ୟ ହୋଇପାରେ ?

ସେ ଗାଡ଼ି ଅଟକାଇ ମୋ ମୁହଁକୁ ଚାହିଁଲା । ତା'ପରେ ଗୋଡରୁ ଚପଲ କାଢ଼ି ଆମକୁ ମୁଣ୍ଡିଆ ମାରିଲା । କହିଲା ମୋ ଜୀବନ ଆଜି ଧନ୍ୟ ହୋଇଗଲା । ଶ୍ରୀଜଗନ୍ନାଥ ଧାମର ଠାକୁର ଭକ୍ତ ଆଜି ମୋ ଗାଡ଼ିରେ ବସିଲେ । ସେଇ ମୋର ଯଥେଷ୍ଟ ।

ୱାଇ.ଏମ.ସି.ଏ ଗେଷ୍ଟ ହାଉସରେ ଆମର ରହିବାର ବ୍ୟବସ୍ଥା ହୋଇଥିଲା । ଗେଷ୍ଟ ହାଉସ ସାଧାରଣ ଭାବରେ ଏଗାରଟାରେ ବନ୍ଦ ହୋଇଯିବା କଥା। ଆମର ସୌଭାଗ୍ୟ ସେଦିନ ଅସ୍ୱାଭାବିକ ଭାବରେ ଷ୍ଟାଫମାନେ ଆମେ ପହଞ୍ଚିବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲେ ।

ଟାକ୍ସି ଗେଷ୍ଟ ହାଉସ ସାମନାରେ ରହିଲା । ଆମେ ବ୍ୟାଗ ଓହ୍ଲାଇବାକୁ ଗଲାବେଳେ ଡ୍ରାଇଭର ସେସବୁ ନିଜେ ଓହ୍ଲାଇ ଗେଷ୍ଟ ହାଉସକୁ ନେଇଗଲା । ଗେଷ୍ଟ ହାଉସ ଷ୍ଟାଫ ସେ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । କାରଣ ବମ୍ବେରେ ଟାକ୍ସିବାଲା ଡିକିରୁ ବ୍ୟାଗ କାଢ଼ିବାକୁ ପସନ୍ଦ କରିନଥାନ୍ତି ।

କିଛିଦିନ ବମ୍ବେରେ ରହିବା ପରେ ଆମେ ଭୁବନେଶ୍ୱର ଫେରିଲୁ । ଲକ୍ଷ୍ନୌରୁ ଟ୍ରେନରେ ବମ୍ବେ ଯିବା ସମୟରେ ଯାହାସବୁ ଘଟିଥିଲା, ସେକଥା ମୁଁ ଭୁଲି ନଥିଲି । ଓଡ଼ିଶାର ସମସ୍ତ ବିଭବ ସମ୍ପର୍କରେ ଇଂରାଜୀରେ ବହିଟିଏ ଲେଖିବି ବୋଲି ସ୍ଥିର କଲି । କିନ୍ତୁ ବହିରେ କ'ଣ ସବୁ ବିଷୟ ରହିବ, ସେ ବିଷୟରେ ତଥ୍ୟ ସବୁ କୋଉଠୁ ସଂଗ୍ରହ ହେବ ସେ କଥା ମୁଣ୍ଡକୁ ଘାରିଲା । ଏ ସମ୍ପର୍କରେ ମୋର ଶୁଭଚିନ୍ତକ ଅବସରପ୍ରାପ୍ତ ଆଇଏଏସ ଏ.ଏନ୍ ତିୱାରୀଙ୍କ ସହିତ ପରାମର୍ଶ କଲି । ସେ ଓଡ଼ିଶା ରେଫରେନ୍ସ ନାମରେ ଗୋଟିଏ ବଡ଼ ବହି ସଙ୍କଳନ କରି ସୁନାମ ଅର୍ଜନ କରିଥିଲେ । ସେ ମତେ ସାହସ ଦେଲେ । କହିଲେ, "ଆପଣ ଆରମ୍ଭ କରନ୍ତୁ । ସବୁ ଠିକ୍ ହୋଇଯିବ ।"

ଶ୍ରୀ ତିୱାରୀଙ୍କ କଥା ମୋ ମନରେ ନୂତନ ଉତ୍ସାହ ସୃଷ୍ଟି କଲା । ମୁଁ ଆଉ କେତେକ ବନ୍ଧୁଙ୍କ ସହିତ ଆଲୋଚନା କଲି । ପ୍ରଥମେ ପୁସ୍ତକର ବିଷୟବସ୍ତୁ ନିର୍ବାଚନ କରାଗଲା । ରାଜ୍ୟ ଅଭିଲେଖାଗାର, ହରେକୃଷ୍ଣ ମହତାବ ପାଠାଗାର, ଓଡ଼ିଶା ବିଧାନସଭା ଲାଇବ୍ରେରୀକୁ ଯାଇ କିଛି ତଥ୍ୟ ସଂଗ୍ରହ କଲି । ମନରୁ ଭୟ ଆପେଆପେ କଟିଗଲା ।

ଦୀର୍ଘ ଚାରିବର୍ଷର ପରିଶ୍ରମ ପରେ ଆତ୍ମପ୍ରକାଶ କଲା 'ଫୁଟ୍‌ପ୍ରିଣ୍ଟର ଅଫ ଇଭେଣ୍ଟଫୁଲ୍ ଡେଜ-ଓଡ଼ିଶା ୧୮୦୩-୨୦୦୩'। ପୁସ୍ତକଟି ନ୍ୟୁ ମାରିଅନ ହୋଟେଲରେ ଅନୁଷ୍ଠିତ ଏକ ଉତ୍ସବରେ ସୁପ୍ରିମକୋର୍ଟ ବିଚାରପତି ଅନଙ୍ଗ କୁମାର ପଟ୍ଟନାୟକଙ୍କ ଦ୍ୱାରା ଲୋକାର୍ପିତ ହୋଇଥିଲା। ଏହି ପୁସ୍ତକଟି ସାଧାରଣରେ, ବିଶେଷକରି ଯୁବସମାଜ ମଧ୍ୟରେ ବିଶେଷ ଆଦୃତ ହୋଇଥିଲା ।

ମୁଁ କଟକ ସହରରେ ଜନ୍ମ ହୋଇନାହିଁ । ମାତ୍ର ସେହି ଐତିହ୍ୟ ସହରରେ ବଢ଼ିଛି । ପାଠ ପଢ଼ିଛି । କିଶୋରରୁ ଯୁବକ ଓ ଯୁବକରୁ ପୌଢ଼ ହୋଇଛି । ପିଲାଦିନେ ସେ ସହରର ନଈ ପୋଖରୀରେ ବୁଡ଼ିଛି । ରାସ୍ତାରେ ଛିଡ଼ା ହୋଇ ଦହିବରା ଆଳୁଦମ ଖାଇଛି । ହୋଲି ଦିନ ଜୋବ୍ରା ଆନିକଟରେ ସାଙ୍ଗମାନଙ୍କ ସହିତ ଗାଧୋଇଛି । ମକର ସଂକ୍ରାନ୍ତିରେ ନଈର ପଠାରେ ଗୁଡ଼ି ଉଡାଇଛି । କାର୍ତ୍ତିକ ପୁନେଇରେ ଟୋକାଙ୍କ ସାଙ୍ଗରେ ଧବଳେଶ୍ୱର ଯାଇଛି । ବାଲିଯାତ୍ରାରେ ସାଙ୍ଗମେଳରେ ବୁଲି ଠୁଙ୍କା ପୁରି, ଛେନା ତରକାରୀ ଖାଇଛି । ଜାଣତରେ ହେଉ ବା ଅଜାଣତରେ ହେଉ ମୁଁ ଜଣେ ଖୋଦ୍ କଟକିଆ ହୋଇଯାଇଛି । କଟକ ସହରବାସୀଙ୍କ ପାଖରୁ ଅନେକ ସ୍ନେହ, ସହାନୁଭୂତି, ସାହାଯ୍ୟ ପାଇଛି । ସେସବୁ ମୋ ଜୀବନ ପାଇଁ ଅପାଶୋରା ରହିଯାଇଛି । ମାତ୍ର ଏସବୁ ବଦଳରେ ମୁଁ ଦେଇଛି କ'ଣ ? ଏଇକଥା ଦିନେ ମୋ ମନକୁ ଭାରାକ୍ରାନ୍ତ କରିଥିଲା ।

ମୁଁ ମୋର ଅନୁଜ ପ୍ରତିମ, କଟକ ସହରର ବିଧାୟକ ତଥା ରାଜ୍ୟର ଉଚ୍ଚଶିକ୍ଷା ମନ୍ତ୍ରୀ ସମୀର ଦେଙ୍କୁ ଜଣାଇଲି । ସେ ମତେ ସବୁରକମର ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଲେ ।

କଟକ ସହରର ଐତିହ୍ୟ, ପରମ୍ପରା, ସଂସ୍କୃତି ଅନ୍ୟ ସହର ଠାରୁ ଭିନ୍ନ । ଏ ସହରର ଲୋକେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ସମସ୍ତଙ୍କୁ ଭାଇ ବୋଲି ସମ୍ବୋଧନ କରନ୍ତି । କାହାରି କିଛି ସୁବିଧାଅସୁବିଧା ପଡ଼ିଲେ ପାଖ ପଡ଼ିଶା ଲୋକ ସାହାଯ୍ୟ କରିବାକୁ ବାହାରି ପଡ଼ନ୍ତି । ଏ ସହରରେ ଧନକୁ ବିଚାର କରି ବନ୍ଧୁତା ହୋଇନଥାଏ ।

ଏ ସହରରେ ଥିବା ରେଭେନ୍ସା କଲେଜର ଓଡ଼ିଶା କାହିଁକି, ସମଗ୍ର ଦେଶରେ ପ୍ରସିଦ୍ଧି ରହିଛି । ଏଇ କଲେଜରୁ ବାହାରିଥିବା ଶତାଧିକ ଛାତ୍ରଛାତ୍ରୀ ଦେଶ ବିଦେଶରେ ନାଁ କମେଇଛନ୍ତି । ଏଇଠି ଥିବା ମେଡିକାଲ କଲେଜରୁ ପାଠ ପଢ଼ି ଅନେକ ଡାକ୍ତର ବାହାରିଛନ୍ତି । ଏ ସହରରେ ବୈଜ୍ଞାନିକ, ଅଧ୍ୟାପକ, ଡାକ୍ତର, ଇଂଜିନିୟର, ସାମ୍ବାଦିକଙ୍କର ଚାରିଆଡ଼େ ପ୍ରତିଷ୍ଠା ଅଛି ।

ସେମାନଙ୍କ ସମ୍ପର୍କରେ ବିବରଣୀ ସଂଗ୍ରହ କରିବା ସହଜସାଧ ନଥିଲା । ଏସବୁ ବିଷୟରେ ପ୍ରାରମ୍ଭିକ ଆଲୋଚନା କରିବା ପାଇଁ ମନ୍ତ୍ରୀ ଶ୍ରୀ ଦେ ସହରର ବୁଦ୍ଧିଜୀବୀମାନଙ୍କର ଗୋଟିଏ ବୈଠକ ଡକାଇଥିଲେ । ସେଠାରେ ପୁସ୍ତକର ବିଷୟବସ୍ତୁ ସମ୍ପର୍କରେ ଆଲୋଚନା କରାଯାଇଥିଲା । ଶେଷରେ ସ୍ଥିର ହେଲା, ଅନ୍ୟାନ୍ୟ ବିଷୟ ମଧ୍ୟରେ ବିଭିନ୍ନ କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ଦିବଂଗତ ବରପୁତ୍ରମାନଙ୍କ ସମ୍ପର୍କରେ ପୁସ୍ତକରେ ବର୍ଣ୍ଣନା ରହିବ । ଯଥା ସମ୍ଭବ ସେମାନଙ୍କ ଫଟୋ ମଧ୍ୟ ପୁସ୍ତକରେ ସ୍ଥାନିତ ହେବ ।

ସେଥି୍ ସହିତ କଟକ ମ୍ୟୁନିସପାଲିଟି, ସହରରେ ଏକ ସମୟରେ ଚାଲିଥିବା ରଙ୍ଗମଞ୍ଚ, ପ୍ରେକ୍ଷାଳୟର ଇତିହାସ, କଟକର ବିଶ୍ୱପ୍ରସିଦ୍ଧ ରୂପା ତାରକସି କାମ, ଐତିହାସିକ କୀର୍ତ୍ତି ସମ୍ପର୍କରେ ମଧ୍ୟ ସବିଶେଷ ତଥ୍ୟ ରଖିବାକୁ ସ୍ଥିର ହୋଇଥିଲା ।

ସେଥି୍ ସହିତ କଟକ ସହରର ବିଭିନ୍ନ ସାହିବସ୍ତିରେ ଥିବା ମନ୍ଦିର, ମସଜିଦ୍, ପୀର ଓ ଚର୍ଚ୍ଚ ସମ୍ପର୍କରେ ବର୍ଣ୍ଣନା ସହିତ ପୁସ୍ତକରେ ଫଟୋ ରଖିବାକୁ ସେଦିନ ବୈଠକରେ ମତ ପ୍ରକାଶ ପାଇଥିଲା । ମୁଁ ସେମାନଙ୍କ ସହିତ ରାଜି ହେଲି । ବୈଠକ ଶେଷରେ ରାତ୍ରିଭୋଜନ ସାରି ମୁଁ ଭୁବନେଶ୍ୱର ଫେରିଲି ।

ମୋର ଚିନ୍ତା ବଢ଼ିଗଲା । ସମସ୍ତଙ୍କ ସାମନାରେ ହଁ ସିନା କରିଦେଲି । ତାକୁ କାର୍ଯ୍ୟକାରୀ କରିବି କେମିତି ? ମୋର କଟକ ଛାଡ଼ିବା ପାଖାପାଖି ତିରିଶ ବର୍ଷ ହୋଇଥିଲା । କଟକ ସହରରୁ ଚିହ୍ନା ଲୋକସବୁ କିଏ କୁଆଡ଼େ ଚାଲିଯାଇଥିଲେ ।

ତଥାପି ସାହସ ବାନ୍ଧି କାମ ଆରମ୍ଭ କଲି । ସହରରେ ଥିବା ସ୍କୁଲ, କଲେଜ, ମଠ, ମନ୍ଦିର, ଗୀର୍ଜା, ମସଜିଦ୍ ଓ ପୀରଗୁଡ଼ିକର ତାଲିକା ସଂଗ୍ରହ ହେଲା । ଏଥିରେ ମତେ ସମୀର ଦେ, ପୂର୍ବତନ ମନ୍ତ୍ରୀ ମୁସ୍ତାଫିଜ୍ ଅହମ୍ମଦ, କଟକର ପୂର୍ବତନ ସୂଚନା ଓ ଲୋକସମ୍ପର୍କ ଅଫିସର ବିଶ୍ୱେଶ୍ୱର ଦେ ଓ ମୋର ପୁରୁଣା ବନ୍ଧୁ ଫଟୋଗ୍ରାଫର ହୃଦୟନାଥ ଦାସ ସାହାଯ୍ୟ କଲେ ।

ମୁଁ ଗୋଟିଏ କାର୍ଯ୍ୟସୂଚୀ ତିଆରି କଲି । ପ୍ରତିଦିନ ସକାଳ ସାତଟାରେ ବସରେ କଟକ ଚାଲିଯାଏ । ବାଦାମବାଡି ବସଷ୍ଟାଣ୍ଡରେ ଓହ୍ଲାଏ । ସେଠାରେ ଦାସବାବୁ(ଏମ୍.ଏନ୍.ଦାସ) ଅପେକ୍ଷା କରିଥାନ୍ତି । ତାଙ୍କର ଗୋଟିଏ ଲୁନା ଅଛି । ଆମେ ପ୍ରଥମେ ସାଉଥ ଇଣ୍ଡିଆନ୍ ହୋଟେଲରେ ଜଳଖିଆ ଖାଉ । ଲୁନାରେ ତେଲ ପକାଇ ବାହାରୁ ।

ଦାସବାବୁ କଟକିଆ ଲୋକ । କଟକରେ ଜନ୍ମ । ଘର ସୂତାହାଟରେ । କଟକରେ ବଢ଼ିଛନ୍ତି । ସବୁଆଡ଼େ ତାଙ୍କର ଜଣାଶୁଣା । ଖୁବ୍ ଅମାୟିକ ଲୋକ । ସମସ୍ତେ ତାଙ୍କୁ ଶ୍ରଦ୍ଧା କରନ୍ତି ।

ଆମେ ଆମର କାର୍ଯ୍ୟସୂଚୀ ମୁତାବକ କାମ ଆରମ୍ଭ କରୁ । ଗୋଟିଏ ସାଇର କାମ ସରିଲେ ଆର ସାଇକୁ ଯାଉ । ମନ୍ଦିର ଓ ମଠଗୁଡ଼ିକର ଫଟୋ ଉଠାଇବାରେ କିଛି ଅସୁବିଧା ହେଲା ନାହିଁ। ମାତ୍ର ମସଜିଦ୍‌ର ଫଟୋ ଉଠାଇବାରେ କିଛି ପ୍ରତିବନ୍ଧକ ଦେଖାଦେଲା । କାରଣ ସାଇଭିତରେ ଥିବା ମସଜିଦ୍ ଚାରିପାଖରେ ଘର ହୋଇଯାଇଥିଲା । କେତେକ ସ୍ଥଳରେ ଘର ଭିତର ଦେଇ ଯିବାକୁ ପଡୁଥିଲା । ଆମର ଚିହ୍ନା ପରିଚୟ ଥିବାରୁ କୁହାବୋଲା କରି କୌଣସି ମତେ ଚଳେଇନେଲୁ ।

ସବୁଦିନେ ମଧ୍ୟାହ୍ନ ବାରଟା ପର୍ଯ୍ୟନ୍ତ ଫଟୋ ଉଠା ଚାଲେ । ତା'ପରେ ଆମେ ତାକୁ ପ୍ରିଣ୍ଟ ପାଇଁ ଷ୍ଟୁଡିଓରେ ଦେଇସାରି ଖାଉ । କୋଉଦିନ ଗଡ଼ଗଡିଆ ମନ୍ଦିରରେ ତ ଆଉ କୋଉଦିନ

ଚାନ୍ଦିନୀଚୌକ ଜଗନ୍ନାଥମ ମନ୍ଦିରରେ । ଦିନେଦିନେ ସାଉଥ ଇଣ୍ଡିଆନ୍ ହୋଟେଲରେ । କ୍ରମେ ଏହା ଏକ ରୁଟିନରେ ପଡ଼ିଗଲା । ଖାଇସାରିଲା ବେଳକୁ ଫଟୋ ସବୁ ପ୍ରିଣ୍ଟ ହୋଇସାରିଥାଏ । ମୁଁ ଫଟୋ ଧରି ସନ୍ଧ୍ୟାରେ ଭୁବନେଶ୍ୱର ଫେରିଆସେ । ଭୁବନେଶ୍ୱର ଫେରି ଫଟୋ ସଂକ୍ରାନ୍ତୀୟ ଯେଉଁ ସବୁ ତଥ୍ୟ ମିଳିଥାଏ, ତା' ଉପରେ ଲେଖାଲେଖି ହୁଏ, ଏ କାମ ପ୍ରାୟ ଚାରିମାସ ଚାଲିଲା ।

ପ୍ରତିଦିନ ବସରେ କଟକ ଯିବା ଓ ଫେରିବା, ବାହାରେ ଖାଇବା କଷ୍ଟକର ବ୍ୟାପାର ହେଲେ ବି ମନର ଦୃଢ଼ତା ଯୋଗୁ ମୁଁ ହଟିନଥିଲି । ସବୁଠାରୁ ଅସୁବିଧା ହେଲା ବିଭିନ୍ନ କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ଦିବଂଗତ ବରପୁତ୍ରମାନଙ୍କ ଫଟୋ ସଂଗ୍ରହ କରିବାରେ ।

ଶ୍ରୀରାମଚନ୍ଦ୍ର ଭବନ ଫଟୋ ଗ୍ୟାଲେରୀରେ ଅନେକ ବରପୁତ୍ରଙ୍କର ଫଟୋ ଲାଗିଥିଲା । ସେସବୁ ଏଭଳି ଢଙ୍ଗରେ ଲାଗିଥିଲା ଯେ, ତା'ର ରିକପି କରିବା ସମ୍ଭବ ନଥିଲା । ସେଠାକାର କେୟାରଟେକରଙ୍କୁ କିଛି ହାତଗୁଞ୍ଜା ଦେଇ କୌଣସି ମତେ ସେଠାରୁ କିଛି ଫଟୋ ମିଳିଲା । କିନ୍ତୁ ସେଠାରେ କେବଳ ସାହିତ୍ୟିକମାନଙ୍କର ଫଟୋ ଥିଲା ।

ସହରର ନାମକରା ଡାକ୍ତର, ଇଂଜିନିୟର, ସମାଜସେବୀ, ସଙ୍ଗୀତଜ୍ଞ, ନାଟ୍ୟକାର, କ୍ରୀଡାବିତ୍, ଲେଖକ, ସାମ୍ବାଦିକ, ସ୍ୱାଧୀନତା ସଂଗ୍ରାମୀ, ଲୋକପ୍ରତିନିଧି ଏମାନଙ୍କ ଫଟୋ ଖୋଜା ଚାଲିଲା । କେତେକଙ୍କ ଘରୁ କିଛି ଫଟୋ ମିଳିଲା । ଆଉ କିଛି ସଂଗ୍ରହ କରିବାକୁ ବାରଦୁଆର ବୁଲିବାକୁ ପଡ଼ିଲା ।

କଟକ ସହରର ବାସିନ୍ଦା ଥିଲେ ଉତ୍କଳଗୌରବ ମଧୁସୂଦନ ଦାସ । ସେ ତାଙ୍କ ବାସଭବନକୁ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଦାନ କରିଦେଇଥିଲେ । ଏବେ ସେଠାରେ ତାଙ୍କ ପାଳିତ କନ୍ୟା ଶୈଳବାଳାଙ୍କ ନାଁରେ ଶୈଳବାଳା ମହିଳା କଲେଜ ଚାଲିଛି । ସେଇ କୋଠାର ଉପର ମହଲାରେ ଉତ୍କଳ ଗୌରବଙ୍କର ନିତ୍ୟ ବ୍ୟବହାର୍ଯ୍ୟ ଜିନିଷପତ୍ର ଥିବା ଖବର ପାଇ ମୁଁ ଓ ଦାସବାବୁ ସେସବୁର ଫଟୋ ଉଠାଇବାକୁ ଗଲୁ ।

ପ୍ରଥମେ କଲେଜ ଅଧକ୍ଷା ଆମକୁ ଉପର ମହଲାକୁ ଯିବାକୁ ଅନୁମତି ଦେଲେ ନାହିଁ । ଉପରୁ ଚାପ ପକାଇବା ଫଳରେ ସେ ବାଧ ହୋଇ ଘରର ଚାବି ଖୋଲିଲେ । ଘର ଭିତର ଅବସ୍ଥା ଦେଖି ଆମକୁ କାନ୍ଦ ମାଡିଲା ।

ଯୋଉ ବ୍ୟକ୍ତି ଦେଶର ବିଭିନ୍ନ ଭାଗରେ ପରସ୍ପର ଠାରୁ ବିଚ୍ଛିନ୍ନ ହୋଇ ବସବାସ କରୁଥିବା ଓଡ଼ିଆମାନଙ୍କୁ ଏକାଠି କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସାରା ଜୀବନ ସଂଗ୍ରାମ କରିଥିଲେ, ଏ ଜାତି ପାଇଁ ସର୍ବସ୍ୱ ଦାନ କରି ନିଃସହାୟ ଅବସ୍ଥାରେ ସଂସାରରୁ ଚାଲି ଯାଇଥିଲେ, ସେହି ମହାନ୍ ବ୍ୟକ୍ତିଙ୍କ କୋଠରୀ ପରିତ୍ୟକ୍ତ ଅବସ୍ଥାରେ ଥିଲା । ଘରସାରା ଅଳନ୍ଧୁ । ଖଟ, ଟେବୁଲ, ଚେୟାର ଉପରେ ଇଞ୍ଚେ ମୋଟର ଧୂଳି । ତଳେ ପାଦ ପକାଇ

ହେଉନଥିଲା । ଉତ୍କଳ ଗୌରବଙ୍କ କୋଟ, ଟୋପି, ଜୋତା ଇତ୍ୟାଦି ଧୂଳିରେ ପୋତି ହୋଇପଡିଥିଲା ।

ପ୍ରଥମଦିନ ଆମେ ଫେରି ଆସିଲୁ । ପରଦିନ ସାଙ୍ଗରେ ଜଣେ ଲୋକ ନେଇ ସେ ଘରକୁ ସଫା କଲୁ । କାମ ଚଳିଲା ଭଳି ହେଲାରୁ କିଛି ଫଟୋ ସଂଗ୍ରହ କଲୁ ।

ମଧୁସୂଦନ କଲିକତାରେ ଉଚ୍ଚଶିକ୍ଷା ଲାଭ କରିବା ପାଇଁ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ମାତ୍ର ମନ ପ୍ରାଣରେ ସେ ହିନ୍ଦୁଥିଲେ । ପୁରୀ ଶ୍ରୀମନ୍ଦିର ପରିଚାଳନା ଭାର ହାତକୁ ନେଇ ଇଂରେଜ ସରକାର ଗଜପତି ମହାରାଜାଙ୍କୁ ଅଧିକାରରୁ ବଞ୍ଚିତ କରିଥିଲେ । ମଧୁସୂଦନ ଗୋରା ସରକାରଙ୍କ ଅନ୍ୟାୟ ନିଷ୍ପତ୍ତି ବିରୋଧରେ ମକଦ୍ଦମା କରି ରାଜପରିବାରର ଅଧିକାରକୁ ପୁନଃ ସାବ୍ୟସ୍ତ କରିଥିଲେ ।

ମଧୁସୂଦନଙ୍କ ଦେହାନ୍ତ ପରେ ଖ୍ରୀଷ୍ଟଧର୍ମର ରୀତିନୀତି ଅନୁସାରେ ତାଙ୍କ ମରଶରୀରକୁ କଟକର ଗୋରା କବରରେ କବର ଦିଆଯାଇଥିଲା । ବର୍ଷରେ ଦୁଇଥର, ମଧୁସୂଦନଙ୍କ ଜୟନ୍ତୀ ଓ ଶ୍ରାଦ୍ଧ ଅବସରରେ ଅଣ ଖ୍ରୀଷ୍ଟିଆନମାନଙ୍କୁ ଗୋରାକବର ଭିତରକୁ ଯିବାକୁ ଅନୁମତି ଦିଆଯାଉ ଥିଲା । ସେଠାକୁ ଯିବା ପାଇଁ ଆମେ ଗୋଟାଏ ଉପାୟ ପାଞ୍ଚିଲୁ । ମୁଁ ଜଣେ ବଙ୍ଗ ସରକାରୀ ଅଫିସର ଭାବରେ ନିଜକୁ ସଜାଇଲି । ସେଠାରେ ଥିବା କେୟାର ଟେକରଙ୍କୁ କହିଲି, ମୁଁ ଗୋରା କବରର ଅବସ୍ଥା ଅନୁଧାନ କରିବାକୁ ସରକାରଙ୍କ ପକ୍ଷରୁ ଆସିଛି । ମୋ ଠାରୁ ରିପୋର୍ଟ ପାଇଲେ ସରକାର ଏହାର ମରାମତି ପାଇଁ ଅର୍ଥର ବରାଦ କରିବେ । ତମେ ମୋ ସାଙ୍ଗରେ ଚାଲ । ଆମକୁ ଭିତରେ ସବୁ ବୁଲାଇ ଦେଖାଇବ । ମୋ ସହିତ ଫଟୋଗ୍ରାଫର ବାବୁ ଆସିଛନ୍ତି । ସେ ଫଟୋ ଉଠାଇବେ ।

ମୋ କଥାକୁ କେୟାର ଟେକର ବିଶ୍ୱାସ କରି ଗେଟ୍ ଖୋଲିଦେଲା । ମଧୁସୂଦନଙ୍କ କବର ଉପରୁ ଧୂଳି ସଫା କରିଦେଲା । ଆମେ ଫଟୋ ଉଠାଇ ସେଠାରୁ ଫେରିଲୁ ।

ଭୁବନାନନ୍ଦ ଦାସ ଓ ବିଚିତ୍ରାନନ୍ଦ ଦାସ ଦି' ଭାଇ । କଟକର ଡଗରପଡ଼ାରେ ସେମାନଙ୍କ ଘର । ବଡ଼ଭାଇ ଭୁବନାନନ୍ଦ ଦାସ, ମିଃ ଦାସ ଭାବରେ ଜଣାଶୁଣା । ତାଙ୍କୁ ଭାରତୀୟ ପାର୍ଲାମେଣ୍ଟର ଜନକ ବୋଲି କୁହାଯାଏ । ଓଡ଼ିଶାର ପ୍ରଥମ ଇଲେକ୍ଟ୍ରିକାଲ ଇଂଜିନିୟର ଥିଲେ ।

ସାନଭାଇ ବିଚିତ୍ରାନନ୍ଦ ଦାସ । ପେଶାରେ ଆଇନଜୀବୀ । ଲୋକେ ତାଙ୍କୁ 'ସ୍ୱାମୀଜୀ' ବୋଲି ସମ୍ବୋଧନ କରନ୍ତି । ସେ ସ୍ୱାଧୀନତା ପୂର୍ବରୁ ୧୯୩୭ ମସିହାରେ କଟକ ସହରରେ ଲୋକ ପ୍ରତିନିଧି ଥିଲେ ।

ଆମେ ତାଙ୍କ ଫଟୋ ସଂଗ୍ରହ ପାଇଁ ଚେଷ୍ଟା କଲୁ । ସ୍ୱାମୀଜୀ ଡଗରପଡା ଅଞ୍ଚଳରେ ଗୋଟିଏ ଅନାଥ ଆଶ୍ରମ ଗଢ଼ିଥିଲେ । ତାଙ୍କ ଷ୍ଟାଚ୍ୟୁରେ କଳାରଙ୍ଗ ଲାଗିଥିବାରୁ ଫଟୋରେ କିଛି ଜଣା ପଡ଼ିଲା ନାହିଁ ।

ଭୁବନାନନ୍ଦ ଦାସଙ୍କ ନାଁରେ କଟକର ଯୋବ୍ରାରେ ଥିବା ଇଂଜିନିୟରିଂ ସ୍କୁଲକୁ ନାମିତ କରାଯାଇଛି । ସେଠାରେ ମିଃ ଦାସଙ୍କର ଫଟୋ ଥାଇପାରେ ଭାବି ଆମେ ଇଂଜିନିୟରିଂ ସ୍କୁଲକୁ ଗଲୁ । ସ୍କୁଲର ଅଧ୍ୟକ୍ଷ ଭୁବନାନନ୍ଦ ଦାସଙ୍କ ବିଷୟରେ କିଛି ଜାଣିନଥିଲେ । ତାଙ୍କ ଫଟୋ ଏଠାରେ କାହିଁକି ରହିବ ବୋଲି ଆମକୁ ଓଲଟା ପଚାରିଲେ ।

ଦାସବାବୁ ଅଧ୍ୟକ୍ଷଙ୍କ ସାଙ୍ଗରେ କଥାବାର୍ତ୍ତା କରୁଥିଲା ବେଳେ ମୁଁ ଲାଇବ୍ରେରୀ ରୁମ୍‌କୁ ଚାଲିଗଲି । ସେ ରୁମ୍‌ର କାନ୍ଥରେ ଭୁବନାନନ୍ଦ ଦାସଙ୍କର ଫଟୋ ଟଙ୍ଗା ଯାଇଥିଲା । ମୁଁ କାହାକୁ କିଛି ନକହି ସ୍କୁଲର ପିଅନକୁ ପାଞ୍ଚୋଟି ଟଙ୍କା ବଢ଼ାଇ ଦେଇ କହିଲି, "ପ୍ରିନ୍‌ସିପାଲ କହିଲେ, ଏ ଫଟୋଟା ବାହାର କର ।" ମୋ ଠାରୁ ପାଞ୍ଚଟଙ୍କା ପାଇ ମୁଁ ବୋଧେ ଜଣେ ବଡ଼ ହାକିମ ବୋଲି ତା'ର ବିଶ୍ୱାସ ହେଲା ।

ସେ ଫଟୋଟା ବାହାର କରି ପୋଛାପୋଛି କରି ପ୍ରିନ୍‌ସିପାଲଙ୍କ ଟେବୁଲ ଉପରେ ଆଣି ଥୋଇଲା । ମୁଁ ପ୍ରିନ୍‌ସିପାଲଙ୍କୁ ସେ ଫଟୋ ଦେଖାଇ କହିଲି, "ଆପଣ ଏ ଅନୁଷ୍ଠାନର ଅଧ୍ୟକ୍ଷ । ଅଥଚ ଆପଣ ଏହାର ପ୍ରତିଷ୍ଠାତାଙ୍କ ସମ୍ପର୍କରେ କିଛି ଜାଣିନାହାନ୍ତି । ଆପଣ ପିଲାଙ୍କୁ କ'ଣ ଶିକ୍ଷା ଦେବେ ?" ସେ ଲଜ୍ଜିତ ହୋଇ କ୍ଷମା ଚାହିଁଲେ । ଆମେ ସେ ଫଟୋରୁ ଫଟୋ ଉଠାଇ ଫେରିଲୁ ।

କଟକ ସହରର ବାସିନ୍ଦା ଥିଲେ ଜାନକୀ ନାଥ ବୋଷ । ସୁନାମଧନ୍ୟ ଓକିଲ । ନେତାଜୀ ସୁବାଷ ଚନ୍ଦ୍ର ବୋଷଙ୍କ ପିତା । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଗୋପବନ୍ଧୁ ଚୌଧୁରୀ ଓ ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ପିତା ଗୋକୁଳାନନ୍ଦ ଚୌଧୁରୀ ଏ ସହରର ବାସିନ୍ଦା ଥିଲେ ।

ସେହିପରି ବାଗ୍ମୀ ବିଶ୍ୱନାଥ କର, ଗୋପାଳଚନ୍ଦ୍ର ପ୍ରହରାଜ, କର୍ମବୀର ଗୌରୀଶଙ୍କର ରାୟ, ଲକ୍ଷ୍ମୀନାରାୟଣ ପଟ୍ଟନାୟକ, ଉତ୍କଳ ଗୌରବଙ୍କର ଦୁଇ ଅନ୍ତରଙ୍ଗ ସହକର୍ମୀ ବ୍ରଜସୁନ୍ଦର ଦାସ ଓ ଲକ୍ଷ୍ମୀଧର ମହାନ୍ତି, ପ୍ୟାରୀମୋହନ ଆଚାର୍ଯ୍ୟ, ଓଡ଼ିଶାର ପ୍ରଥମ ରାଜବନ୍ଦୀ ରାଜକୃଷ୍ଣ ବୋଷ ପ୍ରମୁଖ ବିଭିନ୍ନ କ୍ଷେତ୍ରରେ ସେମାନଙ୍କ ଜୀବନର ସଫଳତାର ପାଦଚିହ୍ନ ଛାଡ଼ି ଯାଇଛନ୍ତି । ଆମେ ସେମାନଙ୍କ ଫଟୋ ସଂଗ୍ରହ କଲୁ ।

ଏମାନଙ୍କ ସହିତ ଆଉ ତିନିଜଣ ସାଧକ ଥିଲେ ଭକ୍ତକବି ମଧୁସୂଦନ ରାଓ, ଅନୁସୂୟା ପ୍ରସାଦ ପାଠକ ଓ ବାବୁଲାଲ ଦୋଷୀ । ସେମାନଙ୍କ ଜନ୍ମସ୍ଥାନ ଓଡ଼ିଶା ବାହାରେ । ମାତ୍ର ସେମାନେ କଟକ ସହରକୁ କର୍ମଭୂମି ଭାବରେ ବାଛି ନେଇଥିଲେ । ମଧୁସୂଦନଙ୍କ ପ୍ରତିଷ୍ଠିତ 'ଭକ୍ତମଧୁ ବିଦ୍ୟାପୀଠ', ଶ୍ରୀ ପାଠକଙ୍କ ହାତଗଢ଼ା ରାଷ୍ଟ୍ରଭାଷା ପ୍ରଚାର ସଭା ଓ ଶ୍ରୀ ଦୋଷୀଙ୍କ ବ୍ୟକ୍ତିଗତ ପ୍ରଚେଷ୍ଟାରେ ତିଆରି ହୋଇଥିବା 'କଳାବିକାଶ କେନ୍ଦ୍ର' କଟକ ସହରର କୀର୍ତ୍ତିରାଜି ଭାବରେ ଶୋଭା ପାଉଛି ।

ଫଟୋ ସଂଗ୍ରହ ସହିତ ଲେଖା ଚାଲିଥାଏ । ମୋର ସୌଭାଗ୍ୟ, ମୋ ଅନୁରୋଧ ରକ୍ଷାକରି ମୋର ଶିକ୍ଷାଗୁରୁ ପ୍ରତିଷ୍ଠିତ ସାହିତ୍ୟିକ ଅଧ୍ୟାପକ ପଠାଣୀ ପଟ୍ଟନାୟକ, ପୁସ୍ତକର ନାମକରଣ କଲେ, 'କଟକ ନଗର ଧବଳ ଟଗର' ।

କଟକର ବାଣୀପୀଠ ଶ୍ରୀରାମଚନ୍ଦ୍ର ଭବନର ଶତବାର୍ଷିକ ଉପଲକ୍ଷେ ନିର୍ମିତ ହୋଇଥିବା ଶତାବ୍ଦୀ ଭବନରେ ଆୟୋଜିତ ଏକ ଉତ୍ସବରେ ଏହି ପୁସ୍ତକଟି ଲୋକାର୍ପିତ ହୋଇଥିଲା । ସେହି ଉତ୍ସବରେ ଦଳମତ ନିର୍ବିଶେଷରେ ବହୁ ବିଶିଷ୍ଟ ବ୍ୟକ୍ତି ଯୋଗଦେଇ ମତେ ସମ୍ବର୍ଦ୍ଧିତ କରିଥିଲେ ।

'କଟକ ନଗର ଧବଳ ଟଗର' ପୁସ୍ତକଟି ପାଠକୀୟ ଆଦୃତି ଲାଭ କରିଥିଲା । କଟକର ବହୁ ବିଶିଷ୍ଟ ବ୍ୟକ୍ତି ଫୋନ ଯୋଗେ ମତେ ଅଭିନନ୍ଦନ ଜଣାଇଥିଲେ । ଏ ପୁସ୍ତକ ପ୍ରକାଶ ପାଇଲା ପରେ କଟକ ସହରରେ ମୋର ପ୍ରତିଷ୍ଠା ବଢ଼ିଯାଇଥିଲା । କିନ୍ତୁ ମତେ ସାହିତ୍ୟିକ କିମ୍ବା ଲେଖକ ଭାବରେ କେହି ଗ୍ରହଣ କରିନଥିଲେ । ମୋ ଦେହରେ ବାଜିଥିବା 'ବରିଷ୍ଠ ସାମ୍ବାଦିକ'ର ମୋହର ଲିଭି ନଥିଲା । ଏ ପୁସ୍ତକ ପାଇଁ ମାନସିକସ୍ତରରେ ମୁଁ ଖୁବ୍ ଆନନ୍ଦ ଅନୁଭବ କରିଥିଲି ।

ମୁଁ ଜୀବନରେ ଚାରିଥର ବିଦେଶଗସ୍ତରେ ଯିବାର ସୁଯୋଗ ପାଇଛି । ଦୁଇଥର ଏକା ଓ ଆଉ ଦୁଇଥର ସସ୍ତ୍ରୀକ । ଚାରିଥରରେ ବିଶ୍ୱର କୋଡିଏଟି ଉନ୍ନତ ରାଷ୍ଟ୍ର ବୁଲି ଦେଖିଛି । ସେଥିସହିତ ଯୁକ୍ତରାଷ୍ଟ୍ର ଆମେରିକାର ବିଭିନ୍ନ ରାଷ୍ଟ୍ର ମଧ୍ୟ ବୁଲିଛି ।

ରାତ୍ ଗୟା ବାତ୍ ଗୟା ନୀତିରେ କେତେକ ବିଶେଷ ଘଟଣାକୁ ବାଦ୍ ଦେଲେ ଅନ୍ୟାନ୍ୟ ଘଟଣା ସବୁ ମନରୁ ପାଶୋରିଯାଇଛି । ସେସବୁ ଭୁଲିଯିବା ପୂର୍ବରୁ ତାକୁ ଅନ୍ୟମାନଙ୍କ ଆନନ୍ଦ ପାଇଁ ଲିପିବଦ୍ଧ କରିବାକୁ ବିଭିନ୍ନ ଆଡୁ ପ୍ରସ୍ତାବ ଆସିଲା । ମୁଁ ସେଥିପ୍ରତି ଧ୍ୟାନ ଦେଉନଥିଲି । କିନ୍ତୁ ଅନୁରୋଧ କ୍ରମେ ଚାପରେ ପରିଣତ ହେଲା । ମୋର ଖସିବାର ଆଉ ବାଟ ନଥିଲା ।

ପ୍ରଥମ ବିଦେଶଯାତ୍ରା ୧୯୮୫ରେ । ଚତୁର୍ଥ ଥର ୨୦୦୮ ମସିହାରେ । ତେଇଶବର୍ଷର ବ୍ୟବଧାନ । ମୁଁ ପ୍ରଥମ ବିଦେଶଗସ୍ତରୁ ଫେରିଲା ପରେ ମୋ ଅନୁଭୂତି ଧାରାବାହିକ ଭାବରେ ସାପ୍ତାହିକ 'ଅନୁସନ୍ଧାନ'ରେ ପ୍ରକାଶ କରୁଥିଲି । ସେସବୁ ସାଧାରଣରେ ଆଦୃତ ହେଉଥିଲା । ମାତ୍ର ପୁରୁଣା କାଗଜକୁ ସାଇତି ରଖି ନଥିଲି । ମୁଁ କ'ଣ ଭାବିଥିଲି ସେସବୁ ଅନୁଭୂତିକୁ ଦେଖି ବହିଟିଏ ପ୍ରକାଶ ପାଇବ ବୋଲି ?

ପୁରୁଣା ନୋଟବୁକ୍ ଖୋଜିଲି । ସେଥିରେ କେତେକ ଘଟଣା ଟିପା ଯାଇଥିଲା । ସବୁକଥା ମନେ ପକେଇବାକୁ ଚେଷ୍ଟା କଲି । ସବୁ ହେଜ ହେଲା ନାହିଁ । କେତେକ ଘଟଣା ମନେ ପଡ଼ିଲା । ସେଇ ପୁରୁଣା ସ୍ମୃତିକୁ ନେଇ ଲେଖା ଆରମ୍ଭ କଲି । ବହୁ ଭାବିଚିନ୍ତା ନାଁ ଦେଲି 'ଯେ ଦେଶ ଯାଇ ସେ ଫଳ ଖାଇ' ।

ବହିଟି ମୁଁ ନିଜେ ଛାପିବି ବୋଲି ସ୍ଥିର କରିଥିଲି । ପୂର୍ବରୁ ମୋର ଯେତେ ବହି ପ୍ରକାଶ ପାଇଥିଲା ସେସବୁ ମୁଁ ଛାପିଥିଲି । ଆଉ କିଛି ହେଉ ନହେଉ ସାଙ୍ଗସାଥୀଙ୍କୁ କିଛି ବହି ବିନାମୂଲ୍ୟରେ ଦେଇପାରୁଥିଲି । ଘଟଣାକ୍ରମରେ 'ଯେ ଦେଶ ଯାଇ ସେ ଫଳ ଖାଇ' ପୁସ୍ତକଟି କଟକ କଲ୍ୟାଣୀ ନଗରରେ ଥିବା 'କାହାଣୀ' ସଂସ୍ଥା ପ୍ରକାଶ କରିଥିଲେ ।

ସର୍ତ୍ତ ମୁତାବକ ମୁଁ ପାଣ୍ଡୁଲିପିଟି ଡିଟିପି କରାଇଥିଲି । ତା' ସହିତ ଫଟୋରେ ସ୍ଥାନିତ ହେବାକୁ ଥିବା ରଙ୍ଗୀନ ଫଟୋ ସବୁ ସ୍କାନିଂ କରି ସିଡିରେ ଦେଇଥିଲି । ପ୍ରକାଶନ ସଂସ୍ଥା ପକ୍ଷରୁ ମତେ ଦୁଇଶହ ବହି ଦେବାକୁ କଥା ହୋଇଥିଲା । କିନ୍ତୁ ମତେ ଶହେ ଖଣ୍ଡ ବହି ଧରାଇଦେଇ ସେ ମତେ ଚିଟା କାଟିଲେ । ସେ ସଂସ୍ଥାକୁ ମୁଁ କେତେଥର ଗଲି । ସେ ଆଉ ଧରାଛୁଆଁ ଦେଲେନି । ବହି ବାଇଣ୍ଡିଂ ହୋଇନାହିଁ । ମ୍ୟାନେଜର ନାହାନ୍ତି । ଆଉଥରେ ଛପା ହେଲେ ବହି ମିଳିବ ଇତ୍ୟାଦି ଇତ୍ୟାଦି ନାନାକଥା ଭଣ୍ଡାଇ ମତେ କୁହାଗଲା । ପ୍ରକାଶକମାନେ ଲେଖକମାନଙ୍କୁ ଠକନ୍ତି ବୋଲି ମୁଁ ଆଗରୁ ଶୁଣିଥିଲି । ଏବେ ତାକୁ ଅଙ୍ଗେ ଲିଭେଇଲି । ଚୋର ମା' କବାଟ ଦେଇ କାନ୍ଦିଲା ଭଳି ମୋର ଅବସ୍ଥା ହେଲା ।

ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ରାମମୋହନ ରାୟ ଫାଉଣ୍ଡେସନ ପାଇଁ ସେ ବହିଟି ମନୋନୀତ ହେଲା । ପ୍ରକାଶକ ତିନିଶହ ବହି ସପ୍ଲାଇ କରି ହଜାର ହଜାର ଟଙ୍କା ପାଇଲେ । ମତେ ଟଙ୍କାଟିଏ ଦେବାକୁ ଉଚିତ୍ ମନେ କଲେ ନାହିଁ ।

ସବୁଠାରୁ ଦୁଃଖର ବିଷୟ ହେଲା, ମୋର ଅଗ୍ରଜ ପ୍ରତିମ ଜଣେ ଆତ୍ମୀୟ ବହିର ରୟାଲଟି ବାବଦକୁ ମୁଁ ସବୁ ଟଙ୍କା ପାଇଛି ବୋଲି ମୋଠାରୁ ଲେଖାଇନେଲେ । ସମ୍ପର୍କ ଦୃଷ୍ଟିରୁ ମୁଁ ତାଙ୍କୁ ମନା କରିପାରିନଥିଲି । ପ୍ରକାଶକମାନେ କିପରି ଏକାଧିକ ବାଟରେ ଲେଖକମାନଙ୍କୁ ପ୍ରତାରିତ କରିପାରନ୍ତି, ସେକଥା ମୁଁ ଅଙ୍ଗେ ଲିଭେଇଲି ।

ମିଡିଆ ଏକାଡ଼େମୀ, ଓଡ଼ିଶା ନାମରେ ଗୋଟିଏ ସଂସ୍ଥା ମୁଁ ୧୯୯୮ ମସିହାରେ ଗଢ଼ିଥିଲି । ସାମ୍ବାଦିକ ବୃତ୍ତିରେ ଯେଉଁ ଯୁବକଯୁବତୀମାନେ ଯୋଗ ଦେଉଥିଲେ ସେମାନଙ୍କୁ ବୃତ୍ତିଗତ ତାଲିମ୍ ଦେବା ଏହାର ମୂଳଲକ୍ଷ୍ୟ ଥିଲା । ସେଥିସହିତ ବିଭିନ୍ନ ରାଜ୍ୟ ଓ ଜାତୀୟସ୍ତରର ସମସ୍ୟା ସମ୍ପର୍କରେ ଏକାଡ଼େମୀ ପକ୍ଷରୁ ମଝିରେ ମଝିରେ ଆଲୋଚନାଚକ୍ରମାନ ଆୟୋଜିତ ହେଉଥିଲା ।

କେତେକ ସାହିତ୍ୟିକ ବନ୍ଧୁ, ବିଶେଷକରି ମୋର ଅନୁଜ ପ୍ରତିମ ସୁସାହିତ୍ୟିକ ବୈଷ୍ଣବ ଚରଣ ମହାନ୍ତିଙ୍କ ପରାମର୍ଶକ୍ରମେ ସାହିତ୍ୟମଞ୍ଚ ନାମରେ ଏକାଡ଼େମୀର ଗୋଟିଏ ଶାଖା ଖୋଲିଲା । ଅନ୍ୟାନ୍ୟ କାର୍ଯ୍ୟକ୍ରମ ମଧ୍ୟରେ ପ୍ରତିମାସର ପ୍ରଥମ ଶନିବାର ସନ୍ଧ୍ୟାରେ ସାହିତ୍ୟସଭାର ଆୟୋଜନ କରାଗଲା । ସେଥିରେ ସଦସ୍ୟମାନଙ୍କ ସଂଖ୍ୟା ବୃଦ୍ଧିପାଇ ଚାଳିଶରେ ପହଞ୍ଚିଥିଲା ।

ଓଡ଼ିଆ ଭାଷାରେ ମୌଳିକ ପ୍ରବନ୍ଧର ଅଭାବ ଥିବାର ଅନୁଭବ କରାଯାଇ ଗୋଟିଏ ପ୍ରବନ୍ଧ ପୁସ୍ତକ ସାହିତ୍ୟମଞ୍ଚ ପକ୍ଷରୁ ପ୍ରକାଶ କରିବା ପାଇଁ ସାହିତ୍ୟିକ ବନ୍ଧୁମାନେ ସ୍ଥିର କଲେ ।

ପ୍ରବନ୍ଧ ସଂଗ୍ରହ ଦାୟିତ୍ୱ ବନ୍ଧୁ ବୈଷ୍ଣବ ଚରଣଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ସେ ତାଙ୍କୁ ନିଷ୍ଠାର ସହିତ ପାଳନ କଲେ । ବହୁ କଷ୍ଟକରି ୬୨ଜଣ ପ୍ରତିଷ୍ଠିତ ପ୍ରାବନ୍ଧିକଙ୍କ ପାଖରୁ ପ୍ରବନ୍ଧ ସଂଗ୍ରହ କଲେ । ପୁସ୍ତକ ପ୍ରକାଶ ପାଇଲା । ଭୁବନେଶ୍ୱର ଉତ୍କଳ ହଲରେ ଅଧ୍ୟାପକ ରାଜକିଶୋର ମିଶ୍ର ଏ ପୁସ୍ତକର ନାମ 'ପ୍ରବନ୍ଧ ପ୍ରୟୋଗ' ରଖିଥିଲେ । ପ୍ରଖ୍ୟାତ ସାହିତ୍ୟିକ ମନୋଜ ଦାସ, ସେ ପୁସ୍ତକର ଲୋକାର୍ପଣ କରିଥିଲେ। ସେଦିନ ସେ ହଲରେ ଯେତେ ସଂଖ୍ୟାରେ ଶ୍ରୋତା ଉପସ୍ଥିତ ଥିଲେ, ପୂର୍ବରୁ କେବେ ତାହା ଦେଖାଯାଇନଥିଲା ।

ସେ ପୁସ୍ତକ ପ୍ରକାଶନର ଆର୍ଥିକ ଭାର ମୁଁ ବହନ କରିଥିଲି । ପ୍ରତ୍ୟେକ ସଦସ୍ୟ ଗିହାତି ହାରରେ ଦଶଖଣ୍ଡ ଲେଖାଏଁ ପୁସ୍ତକ କିଣିନେଇ ସେ ଅର୍ଥକୁ ଭରଣା କରାଯିବ ବୋଲି ନିଷ୍ପତ୍ତି ହୋଇଥିଲା । ମାତ୍ର ସାହିତ୍ୟ କ୍ଷେତ୍ରରେ ଯାହାହୁଏ, ମୋ କ୍ଷେତ୍ରରେ ସେଇୟା ଘଟିଲା । ଜଣେ, ଦି'ଜଣ 'ବନ୍ଧୁ'ଙ୍କୁ ବାଦ୍‌ଦେଲେ କେହି ସେମାନଙ୍କ ଦେଇଥିବା କଥା ରଖିଲେ ନାହିଁ । ଅପରପକ୍ଷରେ କିଛି ବନ୍ଧୁ ବହି ନେଇ ଆଉ ବୈଠକକୁ ଆସିଲେ ନାହିଁ । ଅଯାଗା ଘା' ଦେଖିହୁଏ ନାହିଁ କି, ଦେଖେଇ ହୁଏ ନାହିଁ ଭଳିଆ ପରିସ୍ଥିତି ହେଲା । ସେ ପୁସ୍ତକଟି ଏବେ ମୂଷାମାନଙ୍କର ଆହାର ହୋଇଛି ।

ମୋର ଇଂରାଜୀ ପୁସ୍ତକ "ଫୁଟପ୍ରିଣ୍ଟସ ଅଫ ଇଭେଣ୍ଟଫୁଲ୍ ଡେଜ୍" ୨୦୦୪ ମସିହାରେ ପ୍ରକାଶ ପାଇଥିଲା । ସେ ପୁସ୍ତକଟି ନିଛକ ଓଡ଼ିଶାର ରାଜନୈତିକ ଇତିହାସ ନଥିଲା । ସେଥିରେ ଓଡିଶାର ରାଜନୈତିକ ବିବର୍ତ୍ତନ ସମ୍ପର୍କରେ କେତେକ ଲେଖାଥିଲା ।

ସେଥିପାଇଁ ଓଡ଼ିଶା ପ୍ରଦେଶ ଗଠନର ପ୍ଲାଟିନମ୍ ଜୁବୁଲି ଅବସରରେ ଓଡ଼ିଶାର ରାଜନୀତି ସମ୍ପର୍କରେ ଇଂରାଜୀରେ ଗୋଟିଏ ବହି ଲେଖିବା ପାଇଁ ଅନେକ ବନ୍ଧୁ ପରାମର୍ଶ ଦେଲେ । ଗୋଟିଏ ରାଜ୍ୟର ପଞ୍ଚସ୍ତରୀ ବର୍ଷର ରାଜନୈତିକ ଇତିହାସକୁ ଲିପିବଦ୍ଧ କରିବା ନିଶ୍ଚିତ ଭାବରେ ଏକ ଦୁରୂହ ବ୍ୟାପାର । ତଥାପି ମୁଁ ଉଦ୍ୟମ ଆରମ୍ଭ କଲି ।

ଗୋଟିଏ ବର୍ଷର ନିରବଚ୍ଛିନ୍ନ ପରିଶ୍ରମ ପରେ ପ୍ରକାଶ ପାଇଲା "ପ୍ଲାଟିନମ୍ ଜୁବୁଲି ଅଫ ଓଡ଼ିଶା ପଲଟିକ୍ସ୍" । ଏଥିରେ ୧୯୩୬ ମସିହାରେ ଓଡ଼ିଶା ପ୍ରଦେଶ ଗଠନ ସମୟ ପରଠାରୁ ୨୦୧୧ ମସିହା ପର୍ଯ୍ୟନ୍ତ ରାଜ୍ୟରେ ଘଟିଥିବା ରାଜନୈତିକ ଘଟଣାବଳୀ ସ୍ଥାନ ପାଇଛି ।

ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଜୀବନୀ ଉପରେ ମୋର ଆଉ ଗୋଟିଏ ପୁସ୍ତକ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ପ୍ରକାଶ ପାଇଛି ।

ଗତ ଦୁଇ ହଜାର ମସିହାରେ ନବୀନ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବା ପରେ ଏ ପର୍ଯ୍ୟନ୍ତ ଯାହାସବୁ ଉଲ୍ଲେଖନୀୟ ଘଟଣା ସବୁ ଘଟିଯାଇଛି, ସେ ସମ୍ପର୍କରେ ଆଉ ଗୋଟିଏ

ପୁସ୍ତକ (ଓଡ଼ିଶା ରାଜନୀତିର ଗୋପନ କଥା - ଦ୍ୱିତୀୟ ଭାଗ)ର ପାଣ୍ଡୁଲିପି ଅଧା ହୋଇ ରହିଛି ।

୨୦୧୩ ମସିହା ଜାନୁଆରୀ ପହିଲା । ସମୟ ପାଖାପାଖି ଦୁଇଟା ହେବ । ସେଦିନ ଭୁବନେଶ୍ୱରର ରବି ଟକିଜ୍ ଛକ ପାଖରେ ଥିବା ହନୁମାନ ମନ୍ଦିରରେ ପ୍ରସାଦର ବ୍ୟବସ୍ଥା ହୋଇଥିଲା । ବରିଷ୍ଠ ବିଜେପି ନେତା ବିଜୟ ମହାପାତ୍ର ତା'ର ଉଦ୍ୟୋକ୍ତା ଥିଲେ ।

ଆମେ ପ୍ରସାଦ ଖାଇ ବସିଲା ବେଳେ ମୋବାଇଲ୍ ଫୋନ ବାଜିଲା । ସେ ପାଖରୁ ଡକ୍ଟର ବିଜୟାନନ୍ଦ ସିଂହ ଥିଲେ । ଡକ୍ଟର ସିଂହ ଓଡ଼ିଆ ସାହିତ୍ୟ ଜଗତର ଜଣେ ଜଣାଶୁଣା ବ୍ୟକ୍ତିତ୍ୱ । ଅସାଧାରଣ ସାଂଗଠନିକ ବ୍ୟକ୍ତି ମତେ କହିଲେ, ଭାଇ ନବବର୍ଷର ଶୁଭ ଅଭିନନ୍ଦନ ଓ କଙ୍ଗ୍ରାଚୁଲେସନ" ନୂଆବର୍ଷ ହୋଇଥିବାରୁ ଅଭିନନ୍ଦନ କଥା ବୁଝିଲି । କିନ୍ତୁ କଙ୍ଗ୍ରାଚୁଲେସନ କ'ଣ ପାଇଁ କଲେ ବୁଝି ପାରିଲିନାହିଁ ।

ମୁଁ କାରଣ ପଚାରିଲାରୁ ଡଃ ସିଂହ କହିଲେ, "ଆପଣଙ୍କ ଭ୍ରମଣ କାହାଣୀ ପୁସ୍ତକ 'ଯେ ଦେଶ ଯାଇ ସେ ଫଳ ଖାଇ' ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇବାକୁ ମନୋନୀତ ହୋଇଛି । ସେଥିପାଇଁ ଆପଣଙ୍କୁ ଅଭିନନ୍ଦନ ଜଣାଇଲି ।"

ପ୍ରଥମେ ମୁଁ କିଛି ବୁଝିପାରି ନଥିଲି । ମୋ ବହି ସମ୍ପର୍କରେ ମୁଁ ତ କାହାରି ସାଙ୍ଗରେ କିଛି ଆଲୋଚନା କରିନଥିଲି । କାହାକୁ କିଛି କହିନଥିଲି । ତେବେ ବହିଟି ଏକାଡ଼େମୀ ପୁରସ୍କାର ପାଇବା ପାଇଁ ମନୋନୀତ ହେଲା କିପରି ?

ଦିନେ ଗୋଟିଏ ସଭାରେ ପୂର୍ବତନ ପୁଲିସ୍ ଡିଜି ଶରତ ମିଶ୍ର ଦେଖାହେଲେ । ମତେ କହିଲେ, "ଆପଣଙ୍କ ବିଦେଶ ଭ୍ରମଣ କାହାଣୀ ବହିଟି ଖୁବ୍ ଭଲ ହୋଇଛି । ମୁଁ ପଚାରିଲି, "ଆପଣଙ୍କୁ ତ ମୁଁ ବହି ଖଣ୍ଡିଏ ଦେଇ ନାହିଁ । ଆପଣ କେମିତି ଜାଣିଲେ ?" "ଓହୋ, ଆପଣ ଜାଣି ନାହାନ୍ତି ପରା । ଭ୍ରମଣ କାହାଣୀ ପୁସ୍ତକ ମନୋନୟନ କମିଟିରେ ମୁଁ ଜଣେ ସଦସ୍ୟ ଥିଲି। ସେହି ଅବସରରେ ବହିଟି ତନ୍ନତନ୍ନ କରି ପଢ଼ିବାର ସୁଯୋଗ ମିଳିଥିଲା । ବହିଟି ଏକାଡ଼େମୀ ପୁରସ୍କାର ପାଇଥିବାରୁ ମୁଁ ବହୁତ ଖୁସି ।"

୨୦୧୩ ଜାନୁଆରୀ ୨୩ ତାରିଖରେ ରବୀନ୍ଦ୍ର ମଣ୍ଡପରେ ଏକ ମନୋଜ୍ଞ ଉତ୍ସବରେ ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରଦାନ କରାଯାଇଥିଲା ।

ମୁଁ ସେଦିନ ସଂସ୍କୃତି ଓ ପର୍ଯ୍ୟଟନ ବିଭାଗ ମନ୍ତ୍ରୀ ମହେଶ୍ୱର ମହାନ୍ତିଙ୍କ ହାତରୁ ପୁରସ୍କାର ଗ୍ରହଣ କରିବା ସମୟରେ ଅନୁଭବ କରିଥିଲି ପ୍ରକୃତରେ ସାଧନା କଲେ ସିଦ୍ଧି ମିଳେ ।

ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କଲା ପରେ, ମୁଁ ସାହିତ୍ୟିକ ଗୋଷ୍ଠୀ ଭିତରେ ସାମିଲ୍ ହୋଇଗଲି । ମତେ ସାହିତ୍ୟ ସଭାକୁ ନିମନ୍ତ୍ରଣ ପତ୍ର ମିଳିଲା । ସଭାମାନଙ୍କରେ ମୋ ନାଁ ସହିତ 'ସାହିତ୍ୟିକ' ଶବ୍ଦଟା ଆପେଆପେ ଯୋଡି ହୋଇଗଲା

ଗୋଟିଏ ସଭାରେ ବିଶିଷ୍ଟ ଔପନ୍ୟାସିକ ବିଭୂତି ପଟ୍ଟନାୟକ ଦେଖାହୋଇଗଲେ । ତାଙ୍କ ଘର ଜଗତସିଂହପୁର ଅନ୍ତର୍ଗତ ଡ଼ିଙ୍ଗେଶ୍ୱର ଗାଁ'ରେ । କଲେଜ ଜୀବନରୁ ତାଙ୍କ ସାଙ୍ଗରେ ମୋର ପରିଚୟ । ସେ ଉତ୍କଳ ଛାତ୍ର ୟୁନିଅନର ଜଣେ ଆଗଧାଡ଼ିର ନେତା ଥିଲେ । କଥା ପ୍ରସଙ୍ଗରେ ସେ ମତେ କହିଲେ, "ବସନ୍ତ, ତମେ ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଲ ମୁଁ ବହୁତ ଖୁସି। କିନ୍ତୁ ଗୋଟାଏ କଥା ମନେ ରଖିବ ଏହାଦ୍ୱାରା ତମର ଲାଭ ଅପେକ୍ଷା କ୍ଷତି ଅଧିକ ହେବ । ଅଯଥାରେ ତମର ଗୁଡ଼ାଏ ଶତ୍ରୁ ସୃଷ୍ଟି ହୋଇଯିବେ ।"

କିଛିଦିନ ଭିତରେ ମୁଁ ଅନୁଭବ କଲି, ବିଭୂତିବାବୁଙ୍କ କଥା ଅକ୍ଷରେଅକ୍ଷରେ ସତ । କିଛି ସାମ୍ବାଦିକ ଓ ତଥାକଥିତ ସାମ୍ବାଦିକ ମୋଠାରୁ କେମିତି ଟିକିଏ ଦୂରତା ବଜାୟ ରଖିଲା ଭଳି ମୋର ମନେ ହେଲା । ଯୋଉମାନେ ଆମ ଘରକୁ ଆସି ବସାଉଠା କରୁଥିଲେ, ଚା' ଜଳଖିଆ ଖାଉଥିଲେ, ତାଙ୍କର ଆସିବା କମିଗଲା ଭଳି ମୁଁ ଉପଲବ୍ଧି କଲି ।

ଜଣେ ବନ୍ଧୁଙ୍କୁ ଏହାର କାରଣ ପଚାରିଲି । ସେ କହିଲେ "ଏହା ହେଉଛି ହୀନମନ୍ୟତା ଓ ପରଶ୍ରୀକାତରତାର ପରିପ୍ରକାଶ । ସେଥିପାଇଁ ଆମେ ଛୋଟିଆ ଗଣ୍ଡି ଭିତରୁ ବାହାରକୁ ଯାଇ ପାରିନାହୁଁ । ପରସ୍ପରର ଗୋଡ଼ ଟାଣୁଛୁ । ଅନ୍ୟ କାହାରି ସଫଳତାରେ ଆମେ ସ୍ୱାଭାବିକ ଭାବରେ ଖୁସି ହୋଇପାରୁନାହୁଁ । ଲୋକେ ଆମକୁ 'ଚିଲିକା କଙ୍କଡ଼ା' ବୋଲି କହୁଛନ୍ତି ।

# ସାମ୍ବାଦିକତା ଜୀବନର ତିକ୍ତମଧୁର ସ୍ମୃତି

ମୁଁ ଯେତେବେଳେ ସାମ୍ବାଦିକ ଜୀବନ ଆରମ୍ଭ କରିଥିଲି, ସେତେବେଳେ ସାମ୍ବାଦିକତା ଏକ ଆଦର୍ଶ ଥିଲା । ଲୋକେ ସାମ୍ବାଦିକଙ୍କୁ ଦେଖିଲେ ଭକ୍ତି ଓ ସମ୍ମାନ କରୁଥିଲେ । ସମାଜରେ ସେମାନଙ୍କ ପ୍ରତିଷ୍ଠା ଥିଲା । ସାମ୍ବାଦିକତା କେବଳ ଏକ ବୃତ୍ତି ନଥିଲା, ଏହା ଏକ ପ୍ରବୃତ୍ତି ଥିଲା ।

ଓଡ଼ିଶାରେ ସାମ୍ବାଦିକତା କ୍ଷେତ୍ରରେ ଶ୍ରୀହର୍ଷ ମିଶ୍ର, ବାଞ୍ଛାନିଧି ଦାସ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଆର.ପି. ଶାସ୍ତ୍ରୀ, ବିନୋଦ କାନୁନ୍‌ଗୋ ପ୍ରମୁଖ ଯେଉଁ କୀର୍ତ୍ତି ସ୍ଥାପନ କରିଯାଇଛନ୍ତି, ତାହା ଯୁବପିଢ଼ି ପାଇଁ ପାଥେୟ ହୋଇରହିଛି । ମାତ୍ର ପରବର୍ତ୍ତୀ ସମୟରେ ସମ୍ବାଦପତ୍ର ଏକ ଶିଳ୍ପରେ ପରିଣତ ହୋଇଯିବା ପରେ ଏହାର ନୀତି ଓ ଆଦର୍ଶରେ ବ୍ୟାପକ ପରିବର୍ତ୍ତନ ଘଟିଛି ।

ଯେଉଁମାନେ ସମ୍ବାଦପତ୍ର ଶିଳ୍ପରେ ଯୋଗଦେଲେ, ସେମାନଙ୍କ ଆଭିମୁଖ୍ୟ ମଧ ବଦଳିଗଲା । ସମାଜ ଓ ରାଜ୍ୟର ସାମୂହିକ ସ୍ୱାର୍ଥ ବଦଳରେ ନିଜ ମାଲିକ ଓ ପରିବାରର ସ୍ୱାର୍ଥରକ୍ଷା ସେମାନଙ୍କର ଧେୟ ହୋଇଗଲା ।

ମୋର ପଚାଶ ବର୍ଷର ସାମ୍ବାଦିକ ଜୀବନକାଳ ମଧରେ ଏପରି ବହୁ ଘଟଣା ଘଟିଛି, ଯାହାକୁ ମୁଁ ଭୁଲି ପାରିନାହିଁ ।

ମୁଁ ଯୋଉଦିନ ଦୈନିକ 'ଜନଶକ୍ତି'ରେ ଯୋଗ ଦେଇଥିଲି, ସେଦିନ ସନ୍ଧ୍ୟାରେ କଟକର ଗୌରୀଶଙ୍କର ପାର୍କରେ ଗୋଟିଏ ସଭା ହେଉଥିଲା । ସୋସାଲିଷ୍ଟ ପାର୍ଟି ପକ୍ଷରୁ ସେ ସଭାର ଆୟୋଜନ ହୋଇଥିଲା । ସେ ସମୟରେ ସୋସାଲିଷ୍ଟ ପାର୍ଟିର କଟକ ସହରରେ ଯଥେଷ୍ଟ ପ୍ରଭାବ ଥିଲା । ସୋସାଲିଷ୍ଟ ନେତା ବିଶ୍ୱନାଥ ପଣ୍ଡିତଙ୍କ ନେତୃତ୍ୱରେ ସହରରେ ଅନେକ

ଶ୍ରମିକ ୟୁନିଅନ କାର୍ଯ୍ୟ କରୁଥିଲା । ମତେ ସେ ସଭାର ବିବରଣୀ ସଂଗ୍ରହ କରିବାକୁ କୁହାଯାଇଥିଲା ।

ସଭାରେ ଯେତେଜଣ ବକ୍ତା ଭାଷଣ ଦେଇଥିଲେ, ମୁଁ ସମସ୍ତଙ୍କ ଭାଷଣ ଟିପି ଗୋଟିଏ ନ୍ୟୁଜ୍ କରିଥିଲି । ସେଇଟା ଟିକେ ବଡ଼ ହୋଇଯାଇଥିଲା । ପରଦିନ ସକାଳେ ମୁଁ ତାକୁ ନେଇ 'ଜନଶକ୍ତି' ପରିଚାଳନା ଦାୟିତ୍ୱରେ ଥିବା ଶୈଳେନ ମହାପାତ୍ରଙ୍କୁ ଦେଲି । ଶ୍ରୀ ମହାପାତ୍ରଙ୍କର ସାମ୍ବାଦିକତା ସମ୍ପର୍କରେ କୌଣସି ଜ୍ଞାନ କିମ୍ବା ଅଭିଜ୍ଞତା ନଥିଲା । କେବଳ କମ୍ୟୁନିଷ୍ଟ ପାର୍ଟି ସହିତ ସମ୍ପର୍କ ଥିବାରୁ 'ଜନଶକ୍ତି'ରେ ସେ ଗୋଟିଏ ବଡ଼ ଆସନ ମାଡି ବସିଥିଲେ ।

ମୋ ଲେଖା ଦେଖି ସେ ମୋ ମୁହଁକୁ ଚାହିଁ ପଚାରିଲେ, "କ'ଣ ଏମ୍.ଏ ପଢ଼ିଛ ପରା ? ନ୍ୟୁଜ୍ କେମିତି ଲେଖାଯାଏ ଜାଣିନାହଁ ? ଏଇଟା କ'ଣ ସୋସାଲିଷ୍ଟ ପାର୍ଟିର କାଗଜ ? ସେଥିରେ ଏତେ ବଡ଼ ଲେଖା ଯିବ ? ତମେ କ'ଣ ସେ ଦଳରେ ଯୋଗ ଦେଇଛ ?" ଇତ୍ୟାଦି ଇତ୍ୟାଦି ଅନେକ କଥା କହି ଲେଖାଟି ଚିରି ଓ୍ୱେଷ୍ଟ ପେପରବାସ୍କେଟରେ ପକେଇଦେଲେ । ତାଙ୍କର ସେ ଦିନର ରୁକ୍ଷ ବ୍ୟବହାରରେ ମୁଁ ଅତ୍ୟନ୍ତ ବ୍ୟଥିତ ହୋଇଥିଲି । ଇଚ୍ଛା ହେଉଥିଲା, ତାଙ୍କୁ ମୁହଁତୋଡ ଜବାବ ଦେଇ ସେଇ ମୁହୂର୍ତ୍ତରେ ଚାକିରି ଛାଡି ଘରକୁ ଚାଲିଯିବି । କିନ୍ତୁ ଜଣେ ସାଧୁଙ୍କ ମହତ୍‌ବାଣୀ ମନେ ପଡ଼ିଗଲା । ସାଧୁ କହିଥିଲେ, "ରାଗ ସମୟରେ କୌଣସି ନିଷ୍ପତ୍ତି ନେବ ନାହିଁ କିମ୍ବା ଖୁସି ଥିଲାବେଳେ କୌଣସି ପ୍ରସ୍ତାବରେ ରାଜି ହୋଇଯିବନାହିଁ ।" ନିଜ ରାଗକୁ ମନରେ ଚାପି ସେଦିନ ମୁଁ ସବୁକଥା ସହିଯାଇଥିଲି ।

ଆଉଥରେ ଆଉ ଦୁଇଟି ଲେଖା ମୁଁ ଶୈଳେନ ବାବୁଙ୍କୁ ଦେଇଥିଲି । ସେ ଲେଖାର ଗୋଟିଏ ହେଡିଂରେ "ଡେଙ୍ଗା କପିଳ" ଓ ଆଉ ଗୋଟିଏ ହେଡିଂ ତଳ ଲାଇନରେ "ଗେଡା ବିନୋଦ" ଲେଖି କମ୍ପୋଜିଟରଙ୍କୁ ଦେଇଦେବାକୁ ସେ ମତେ କହିଥିଲେ । ପ୍ରଥମେ ମୁଁ ଭାବିଥିଲି, ବୋଧହୁଏ କମ୍ପୋଜିଟରଙ୍କ ମଧ୍ୟରେ ଡେଙ୍ଗା କପିଳ ଓ ଗେଡା ବିନୋଦ ନାମରେ ଦୁଇଜଣ ବ୍ୟକ୍ତି ଅଛନ୍ତି । ସେମାନଙ୍କୁ ପାଠ ଦୁଇଟି ଦେବାକୁ ହେବ । ମୁଁ ଯାଇ କମ୍ପୋଜିଟରଖାନାରେ କପିଳ ଓ ବିନୋଦ କିଏ ବୋଲି ଖୋଜିଲି ।

ମୋର ସେତେବେଳେ ଧାରଣା ନଥିଲା ଯେ, କାଠଗଡ଼ା ସାହିର କପିଳ ବେହେରା ଓ ଡଗରପଡ଼ାର ବିନୋଦ ଦାସ ନାମରେ ଦୁଇଜଣ ବ୍ୟକ୍ତି ସୀସା ଅକ୍ଷର ତିଆରି କରି ବିଭିନ୍ନ ପ୍ରେସକୁ ଯୋଗାଉଥିଲେ ଏବଂ ସେମାନଙ୍କ ନାଁ ଅନୁସାରେ ଅକ୍ଷରର ନାମ 'ବିନୋଦ' ଏବଂ 'କପିଳ' ହୋଇଥିଲା ।

ସେ ସମୟରେ ଆଧୁନିକ ମୁଦ୍ରଣ କୌଶଳ ବାହାରି ନଥିଲା । କମ୍ପୋଜିଟରମାନେ ଅକ୍ଷରକେସ୍‌ରୁ ଅକ୍ଷର ଖୋଜି ପାଠ କମ୍ପୋଜ କରୁଥିଲେ । ସାମ୍ବାଦିକତାର ଆଦ୍ୟ ଜୀବନରେ ମୋର ବୋକାମି କଥା ମନେ ପଡ଼ିଲେ ହସ ମାଡେ ।

ଅକ୍ଷର ପ୍ରେସରେ କାଗଜର ପେଜ୍ ମେକଅପ୍ ଗୋଟିଏ କଠିନ କାର୍ଯ୍ୟ ଥିଲା । ଥରେ ଥରେ କୋଉ ପାଠ 'କଲମ'ଠାରୁ ଛୋଟ ହୋଇଯାଉଥିଲାବେଳେ ଅନ୍ୟ କେତେବେଳେ ବଡ଼ ହୋଇଯାଉଥିଲା । ଛୋଟ ପାଠ ହେଲେ ହାତରେ ଲେଖି ତାକୁ ପୂରଣ କରିବାକୁ ପଡୁଥିଲା । ବଡ଼ ହେଲେ କାଟଛାଣ୍ଟ କରିବାର ଆବଶ୍ୟକତା ଦେଖାଦେଉଥିଲା ।

ପେଜ୍ ମେକଅପ୍ କରି ସାରି ଶୀଘ୍ର ଘରକୁ ଫେରିବା ପାଇଁ ତରତର ହେଉଥିବା କମ୍ପୋଜିଟରମାନଙ୍କର କଡା କଥା ବେଳେବେଳେ ଅସହ୍ୟ ହେଉଥିଲା । ଦିନଯାକ ନାଲି ଚା'ପିଇ, ବିଡି ଟାଣି ଟାଣି ସେମାନଙ୍କର ମୁଣ୍ଡ ଗରମ ହୋଇଯାଉଥିଲା । ତା'ରି ଭିତରେ ମତେ ଅନେକ ସମୟରେ ପେଜ୍ ମେକଅପ୍ କାମ କରିବାକୁ ପଡୁଥିଲା ।

ସେ ସମୟର ପରିସ୍ଥିତି ସମ୍ପର୍କରେ କହିଲେ, ଆଜି କେହି ବିଶ୍ୱାସ କରିବେ ନାହିଁ । କାରଣ ଆଜିକାଲି ଛୋଟକୁ ବଡ଼ ଓ ବଡ଼କୁ ସାନ ସବୁକାମ ମେସିନ୍ କରିଦେଉଛି । କ୍ରମେ ମଣିଷ ଗୌଣ ହୋଇଯାଉଛି ।

ସେ ସମୟରେ ସମ୍ବାଦ ସଂଗ୍ରହ କରି ତାକୁ ପରିବେଷଣ କରିବା କିପରି କଷ୍ଟସାଧ୍ୟ ବ୍ୟାପାର ଥିଲା, ତାହା ଗୋଟିଏ ଦୁଇଟି ଘଟଣାରୁ ଜଣାପଡ଼େ । ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ପ୍ରଥମ ମନ୍ତ୍ରିମଣ୍ଡଳର ପତନ ପରେ ୧୯୭୩ ମସିହା ମାର୍ଚ୍ଚ ମାସରୁ ୧୩ ମାସ ପାଇଁ ରାଷ୍ଟ୍ରପତି ଶାସନ ଜାରି ହୋଇଥିଲା । ୧୯୭୪ ମସିହାରେ ନିର୍ବାଚନ ପାଇଁ କଂଗ୍ରେସ ପ୍ରାର୍ଥୀ ତାଲିକା ଚୂଡାନ୍ତ ହୋଇନଥିଲା ।

ନିର୍ବାଚନ ପୂର୍ବରୁ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଦୁଇଦିନିଆ ଓଡ଼ିଶା ଗସ୍ତରେ ଆସିଥିଲେ । ଅନ୍ୟାନ୍ୟ କାର୍ଯ୍ୟକ୍ରମ ମଧ୍ୟରେ ଓଡ଼ିଶାରେ ଆଦିବାସୀ ସ୍କୁଲର ଶିକ୍ଷକମାନଙ୍କର ସୁନାବେଡାରେ ଅନୁଷ୍ଠିତ ଅଧିବେଶନରେ ଉଦ୍‌ବୋଧନ ଦେଇ ଶ୍ରୀମତୀ ଗାନ୍ଧୀଙ୍କ 'ହଲ' ଗେଷ୍ଟହାଉସରେ ରାତ୍ରୀଯାପନ ପାଇଁ ସ୍ଥିର ହୋଇଥିଲା ।

ଏହାର ସୁଯୋଗ ନେଇ କଂଗ୍ରେସ ଦଳର ପ୍ରାର୍ଥୀ ତାଲିକା ଶ୍ରୀମତୀ ଗାନ୍ଧୀଙ୍କ ପାଖରୁ ଅନୁମୋଦିତ କରିନେବା ପାଇଁ ଶ୍ରୀମତୀ ଶତପଥୀ ଉଦ୍ୟମ କରିଥିଲେ । ସେଥିପାଇଁ ସେ ସୁନାବେଡାସ୍ଥ ହିନ୍ଦୁସ୍ଥାନ ଏରୋନଟିକ ଲିମିଟେଡ(ହଲ)ର ସମ୍ମିଳନୀ କକ୍ଷରେ ତାଙ୍କର ଅନୁଗତମାନଙ୍କର ଗୋଟିଏ ସଭାର ଆୟୋଜନ କରିଥିଲେ ।

ଶ୍ରୀମତୀ ଶତପଥୀ କେବଳ ତାଙ୍କର ଅନୁଗତମାନଙ୍କୁ ସେ ସଭାକୁ ଡକାଇଥିଲେ । ତାଙ୍କ ବିରୋଧୀମାନଙ୍କୁ ବୈଠକ ସମ୍ପର୍କରେ କୌଣସି ସୂଚନା ଦିଆଯାଇନଥିଲା । ସେଥିପାଇଁ 'ହଲ' ଗେଷ୍ଟହାଉସରେ ନିରାପତ୍ତା ବ୍ୟବସ୍ଥା କଡାକଡି କରାଯାଇଥିଲା । ସ୍ଥାନୀୟ ରାଜନେତା କିମ୍ବା ସାମ୍ବାଦିକ କେହି ସେ ବୈଠକ ସମ୍ପର୍କରେ ସାମାନ୍ୟ ସୂଚନା ପାଇପାରି ନଥିଲେ ।

ଆଦିବାସୀ ଶିକ୍ଷକ ସମାବେଶର ବିବରଣୀ ସଂଗ୍ରହ କରିବା ବାହାନାରେ ମୁଁ ଓ ସେତେବେଳର ପି.ଟି.ଆଇ ମ୍ୟାନେଜର ରାମକୃଷ୍ଣ ବେହେରା, ୟୁ.ଏନ୍.ଆଇ ମ୍ୟାନେଜର ପି.ଦେବକୁମାର ସୁନାବେଡା ଯାଇଥିଲୁ । ଆମର କିନ୍ତୁ ଅସଲ ଉଦ୍ଦେଶ୍ୟ ଥିଲା କଂଗ୍ରେସ ଦଳ ପକ୍ଷରୁ ଆୟୋଜିତ ଗୋପନ ବୈଠକର ବିବରଣୀ ସଂଗ୍ରହ କରିବା ।

ଶିକ୍ଷକ ମହାସଂଘ ପକ୍ଷରୁ ଆମକୁ ଗୋଟିଏ ଗାଡି ଯୋଗାଇ ଦିଆଯାଇଥିଲା । ଆମେ ଓଡ଼ିଶା ସରକାରଙ୍କ ଘରୋଇ ବିଭାଗରୁ ଆବଶ୍ୟକ ସିକ୍ୟୁରିଟ୍ ପାସ୍ ସଂଗ୍ରହ କରି ସାଙ୍ଗରେ ନେଇଥିଲୁ ।

ଆମେ ସକାଳୁ ବାହାରି ସନ୍ଧ୍ୟା ସୁଦ୍ଧା ସୁନାବେଡାରେ ପହଞ୍ଚିଯିବୁ ବୋଲି ଆଶା ରଖିଥିଲୁ । କିନ୍ତୁ ଆମ ଭାଗ୍ୟ ଖରାପ । ଓଡ଼ିଶା ସୀମା ପାର ହୋଇ ଗଲାବେଳେ ହରିପୁରା ବଜାର ପାଖରେ ଆମ କାର ଗୋଟିଏ ପିଲାକୁ ଧକ୍କା ଦେଇଥିଲା । ସେଥିରେ ପିଲାର କିଛି କ୍ଷତି ହୋଇନଥିଲା । କିନ୍ତୁ କାରର ଡ୍ରାଇଭର ଛାନିଆ ହୋଇଯାଇଥିଲା । କୋଡିଏ କିଲୋମିଟର ରାସ୍ତା ଗଲେ ପୁଣି ଓଡ଼ିଶା ସୀମା ଥିବାରୁ ସେ ଅତି ଜୋରରେ କାର ଚଳାଇ ସେତିକି ରାସ୍ତା ପାର ହୋଇଯିବାକୁ ଚାହିଁଥିଲା ।

ସେତେବେଳକୁ ଆନ୍ଧ୍ରପ୍ରଦେଶରେ ନକ୍ସଲ ଆନ୍ଦୋଳନ ଆରମ୍ଭ ହୋଇଥିବାରୁ ପୁଲିସ ଅଧିକ ସକ୍ରିୟ ଥିଲେ । ଆମେ ପଲାସା ନିକଟରେ ପହଞ୍ଚିବା ପୂର୍ବରୁ ୱାରଲେସ ଯୋଗେ ଖବର ପାଇ ଆମ କାରକୁ ଜବତ କରିବା ପାଇଁ ପୁଲିସ ସେଠାରେ ଜଗି ରହିଥିଲେ । ବାଧହୋଇ ଆମେ ସେଠାରେ ଅଟକିଥିଲୁ । ଆମକୁ ପାଖରେ ଥିବା ପୁଲିସ ଫାଣ୍ଡିକୁ ନିଆଯାଇଥିଲା । ସେଠାରେ ଅଳ୍ପ ସଂଖ୍ୟକ ପୁଲିସ୍ ଥିଲେ । ସେମାନେ ତେଲଗୁ ଭାଷାରେ କଥାବାର୍ତ୍ତା ହେଉଥିଲେ ।

ବେହେରାବାବୁ ଓ ଦେବକୁମାର ତେଲୁଗୁ ଜାଣିଥିବାରୁ ସେମାନଙ୍କ କଥୋପକଥନ ସବୁ ଆମେ ଜାଣି ପାରିଥିଲୁ । ସେମାନେ ଜିଲ୍ଲା ଏସପିଙ୍କୁ ଜଣାଇଥିଲେ ଯେ, "ବଡ଼ ବଡ଼ ହାକିମ ମାନେ ସୁନାବେଡାରେ ପ୍ରଧାନମନ୍ତ୍ରୀଙ୍କ ସଭାକୁ ଯିବା ପାଇଁ ଭୁବନେଶ୍ୱରରୁ ଆସିଛନ୍ତି । ତାଙ୍କ କାର ଗୋଟିଏ ପିଲାକୁ ଧକ୍କା ଦେଇଛି । ପିଲାଟିର ବିଶେଷ କିଛି କ୍ଷତି ହୋଇନାହିଁ । କ'ଣ କରାଯିବ ?" ସେ ପାଖରୁ ଉତ୍ତର ଆସିଥିଲା, "ନିୟମ ଦୃଷ୍ଟିରୁ କାରକୁ ଜବତ କରି ଡ୍ରାଇଭରକୁ ଆରେଷ୍ଟ କର । ଅଫିସର ଯାଉଛନ୍ତି, ନିଷ୍ପତ୍ତି ନେବେ ।"

ଅଳ୍ପ ସମୟ ମଧ୍ୟରେ ଆଡିସନାଲ ଏସ୍‌ପି ପାହ୍ୟାର ଜଣେ ଅଫିସରଙ୍କ ସହିତ ଆଉ ତିନିଜଣ ଅଫିସର ସେଠାରେ ପହଞ୍ଚିଥିଲେ । ଆମେ ସାମ୍ବାଦିକ ବୋଲି ପରିଚୟ ଦେଇ ସିକ୍ୟୁରିଟି କାର୍ଡ ଦେଖାଇବାରୁ ସେମାନେ ଆମ ପ୍ରତି ସହାନୁଭୂତିଶୀଳ ହୋଇ ଘଣ୍ଟାକ ମଧ୍ୟରେ ଆମକୁ ଛାଡି ଦେଇଥିଲେ ।

ଏ ସମସ୍ତ କାର୍ଯ୍ୟଯୋଗୁ ବାଟରେ ଆମର ପ୍ରାୟ ତିନିଘଣ୍ଟା ବିଳମ୍ବ ହୋଇଥିଲା । ଆମେ ସୁନାବେଡାରେ ପହଞ୍ଚିଲାବେଳକୁ ରାତି ଦଶଟା ବାଜି ଯାଇଥିଲା । ବାଟରେ ଅଳ୍ପକିଛି ଖାଇଥିଲୁ । ସିଧା 'ହଲ' ଗେଷ୍ଟ ହାଉସକୁ ଯାଇ ତିନୋଟି ରୁମ୍‌ରେ ଶୋଇଗଲୁ ।

ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ସେଠାରେ ରାତ୍ରୀଯାପନର କାର୍ଯ୍ୟକ୍ରମ ଥିବାରୁ ନିରାପତ୍ତା ଦୃଷ୍ଟିରୁ ଗେଷ୍ଟ ହାଉସଟି ସି.ଆଇ.ଏସ.ଏଫଙ୍କୁ ହସ୍ତାନ୍ତର କରିଦେବା ପାଇଁ ସ୍ଥିର ହୋଇଥିଲା । ସେଥିପାଇଁ ସେଠାରେ ରହିବାକୁ କାହାକୁ ଅନୁମତି ଦିଆଯାଇ ନଥିଲା ।

ସକାଳ ହେବା ମାତ୍ରେ ପୁଲିସ ଅଫିସରମାନେ ଆସି କବାଟ ବାଡ଼େଇ ଆମକୁ ସେଠାରୁ ଚାଲିଯିବାକୁ କହିଥିଲେ । ଆମେ କିନ୍ତୁ ସେମାନଙ୍କ କଥା ଶୁଣି ନଥିଲୁ । କଥା କ୍ରମେ ବଡ଼ ହାକିମମାନଙ୍କ କାନକୁ ଗଲା । ସେତେବେଳେ ଭାସ୍କର ପଟ୍ଟନାୟକ କୋରାପୁଟ ଜିଲ୍ଲାର ଜିଲ୍ଲାପାଳ ଥିଲେ । ଦକ୍ଷିଣାଞ୍ଚଳ ରେଞ୍ଜର ଡିଆଇଜି ଥିଲେ ସୟଦ ହାଫିଜ୍ । ସେ ଦି'ଜଣ ଆମକୁ ଜାଣିଥିଲେ । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଆମକୁ ବଙ୍ଗଳା ଛାଡି ଚାଲିଯିବା ପାଇଁ ସେମାନଙ୍କ ପାଖରୁ ହୁକୁମ ଆସିଥିଲା । ଆମେ କିନ୍ତୁ କିଛି ଶୁଣି ନଥିଲୁ ।

'ହଲ'ର ଜେନେରାଲ ମ୍ୟାନେଜର ଥିଲେ ନରସିଂହମନ । ତାଙ୍କ ଅଫିସରେ ଗୋଟିଏ ବୈଠକ ବସିଲା । ଆମେ କହିଲୁ, "ବିଶେଷ କାରଣ ଯୋଗୁ ଆମେ ଭୁବନେଶ୍ୱରରୁ ଏଠାକୁ ଆସିଛୁ । ଆପଣଙ୍କ ପାଖରେ ଦୁଇଟି ବାଟ ଅଛି । ଆପଣ ଆମକୁ ଗିରଫ କରି ଦେଇପାରନ୍ତି କିମ୍ୱା ଏଠାରେ ରହିବାକୁ ସୁଯୋଗ ଦେଇପାରନ୍ତି । ଗିରଫ ନହେବା ପର୍ଯ୍ୟନ୍ତ ଆମେ ଏଠାରୁ ଯିବୁ ନାହିଁ । ପ୍ରଧାମନ୍ତ୍ରୀଙ୍କ କାର୍ଯ୍ୟକ୍ରମର ଖବର ସଂଗ୍ରହ କରିବାକୁ ଆସିଥିବା ଜାତୀୟ ନ୍ୟୁଜ ସଂସ୍ଥାର ଦୁଇଜଣ ସ୍ୱୀକୃତିପ୍ରାପ୍ତ ସାମ୍ବାଦିକଙ୍କ ସହିତ ଅମୃତ ବଜାର ପତ୍ରିକାର ସାମ୍ବାଦିକଙ୍କୁ ବିବରଣୀ ସଂଗ୍ରହ କରିବାକୁ ସୁଯାଗ ନଦେଇ ଗିରଫ କରିବାର ପରିଣତି ଯାହା ହେବ ସେଥିପାଇଁ ଆପଣମାନେ ଦାୟୀ ରହିବେ ।"

ଆମ କଥାର ଗୁରୁତ୍ୱକୁ ସେମାନେ ଅନୁଭବ କରିପାରିଥିଲେ । ଶେଷରେ କଥା ହେଲା ଆମେ ଗେଷ୍ଟହାଉସରେ ନରହି ଜେନେରାଲ ମ୍ୟାନେଜରଙ୍କ ବଙ୍ଗଳାରେ ଥିବା ଗେଷ୍ଟରୁମ୍‌ରେ ରହିବୁ । ଆମକୁ ଟେଲିଫୋନ ଲାଇନ ଯୋଗାଇ ଦିଆଯିବ ।

ସନ୍ଧ୍ୟା ଛଅଟାରେ ଆଦିବାସୀ ଶିକ୍ଷକ ଅଧିବେଶନ ଶେଷ ହେଲା । ଆମେ ଦଶମିନିଟ୍ ପୂର୍ବରୁ ଚାଲି ଆସିଥିଲୁ । ବାଟରେ ଆମକୁ ପୁଲିସ୍ ଅଟକାଇବାକୁ ଚେଷ୍ଟା କରିଥିଲା । କିନ୍ତୁ ଆମେ ନଅଟକି ଜେନେରାଲ ମ୍ୟାନେରଙ୍କ ବଙ୍ଗଳାକୁ ଚାଲି ଆସିଲୁ ।

ବେହେରାବାବୁ ଓ ଦେବକୁମାର ଜେନେରାଲ ମ୍ୟାନେଜରଙ୍କ ଟେଲିଫୋନରୁ ଭୁବନେଶ୍ୱରକୁ ଅଧିବେଶନର ବିବରଣୀ ପଠାଇଲା ବେଳକୁ ଛଅଟା କୋଡିଏ ମିନିଟ୍ ହୋଇଥିଲା ।

ସେତେବେଳେ କଟକ ରେଡିଓ ଷ୍ଟେସନରୁ ସାଢ଼େ ଛଅଟା ବେଳେ ଆଞ୍ଚଳିକ ସମ୍ବାଦ ପ୍ରସାର କରାଯାଉଥିଲା । ସୁନାବେଡାରେ ପ୍ରଧାନମନ୍ତ୍ରୀଙ୍କ ଭାଷଣ ପ୍ରଥମ ସନ୍ଧ୍ୟା ନ୍ୟୁଜ୍‌ରେ ସ୍ଥାନ ପାଇଥିଲା । ସେ ସମ୍ବାଦ ଶୁଣି ଶ୍ରୀ ନରସିଂହମନ ଚକିତ ହୋଇଯାଇଥିଲେ । ଅମକୁ ଲକ୍ଷ୍ୟ କରି ପଚାରିଥିଲେ, "ହାଓ କୁଡ୍ ଇଟ୍ ବି ପଶିବୁଲ୍ । ମିଟିଂ ସରିଛି କି ନାହିଁ, ରେଡିଓରେ ନ୍ୟୁଜ ଆସିବା କିପରି ସମ୍ଭବ ହେଲା ?"

ଆମେ ତାଙ୍କୁ ବୁଝାଇ କହିଥିଲୁ, ଏଇଥିପାଇଁ ଟେଲିଫୋନ ସୁବିଧା ଥିବା ସ୍ଥାନରେ ଆମେ ରହିବାକୁ ଚାହୁଁଥିଲୁ । ଆରାମରେ ଖାଇପିଇ ରହିବା ପାଇଁ ନୁହେଁ । ସେ ଅତ୍ୟନ୍ତ ଖୁସି ହୋଇ ଆମ ସହିତ କରମର୍ଦ୍ଦନ କରି ଆମକୁ ରାତ୍ରୀଭୋଜନ ପାଇଁ ଆମନ୍ତ୍ରଣ କରିଥିଲେ ।

ସନ୍ଧ୍ୟାରେ କଂଗ୍ରେସ ଦଳର ସଭାର ବ୍ୟବସ୍ଥା ହୋଇଥିଲା । ସେ ସଭାପାଇଁ ସୁରକ୍ଷା ବ୍ୟବସ୍ଥା ଏପରି ଥିଲା ଯେ, ଭିତରକୁ ମାଛି ମଧ ପଶିପାରୁ ନଥିଲା । କଟକ ଓ ଭୁବନେଶ୍ୱରରୁ ବଛା ବଛା ସ୍ପେଶାଲବ୍ରାଞ୍ଚ ଅଫିସରମାନେ ମେନ୍‌ଗେଟ୍‌ରେ ଜଗି ରହିଥିଲେ । ସେମାନେ ସମସ୍ତେ କଂଗ୍ରେସ କର୍ମୀଙ୍କ ପରି ଖଦଡ ଟ୍ରାଉଜର, ପଞ୍ଜାବୀ ଓ ମୁଣ୍ଡରେ ଖଦଡ ଟୋପି ପିନ୍ଧିଥିଲେ ।

ସେମାନେ ଆମକୁ ଚିହ୍ନିଥିଲେ । ଆମେ ମଧ ସେମାନଙ୍କୁ ଜାଣିଥିଲୁ । ତା ସତ୍ତ୍ୱେ, ସେମାନେ ଆମକୁ ଭିତରକୁ ଯିବାକୁ ଦେଇନଥିଲେ । ଆମେ ସେମାନଙ୍କୁ କହିଥିଲୁ, "ଆପଣମାନେ ଯଦି ଆମକୁ ଭିତରକୁ ଛାଡିବେ ନାହିଁ, ତେବେ ଆମେ ଆପଣମାନଙ୍କୁ ଧରା ପକେଇଦେବୁ । ଦଳୀୟ ସଭାରେ କିପରି ପୁଲିସ୍ ରହିଛନ୍ତି ସେ କଥା ବାହାରେ ପ୍ରକାଶ ପାଇବ । ଏଇଟା କ'ଣ ଭଲ କଥା ହେବ ?"

ଶେଷରେ ସେମାନେ ଆମ କଥାରେ ରାଜି ହୋଇଥିଲେ । ମାତ୍ର ସେମାନଙ୍କର ଗୋଟିଏ ସର୍ତ୍ତ ଥିଲା । ଆମେ ସେମାନଙ୍କ ପରି ଧଳା ଖଦଡ ଟ୍ରାଉଜର, ପଞ୍ଜାବୀ ଓ ଗାନ୍ଧୀ ଟୋପି ପିନ୍ଧି ଭିତରକୁ ଯିବୁ । ସେମାନେ ଆମପାଇଁ ସେସବୁ ଯୋଗାଡ କରି ଦେଇଥିଲେ । ଆମେ ଭିତରକୁ ଯାଇ କଂଗ୍ରେସ ଦଳର ଗୋପନୀୟ ସଭାର ତଥ୍ୟ ସଂଗ୍ରହ କରିପାରିଥିଲୁ ।

ସେ ବୈଠକରେ ଶ୍ରୀମତୀ ଶତପଥୀ, କଂଗ୍ରେସ ଦଳପାଇଁ ଯେଉଁ ପ୍ରାର୍ଥୀ ତାଲିକାଟି ଉପସ୍ଥାପିତ କରିଥିଲେ, ସେଥିରେ ସେ ତାଙ୍କର କେତେକ ସମାଲୋଚକଙ୍କୁ ବାଦ ଦେଇଥିଲେ । ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ପରେ ଏକ ନିରଙ୍କୁଶ ଶାସନ କ୍ଷମତା ହାସଲ କରିବା ପାଇଁ ତାଙ୍କର ଏହା ଏକ କୌଶଳ ଥିଲା ।

କିନ୍ତୁ ସେଠାରେ ଆମେ ଉପସ୍ଥିତ ଥାଇ ଗୋପନୀୟ ବୈଠକର ବିବରଣୀ ବାହାରେ ପ୍ରକାଶ କରିଦେଇଥିଲୁ । ଏଥିରେ ଶ୍ରୀମତୀ ଶତପଥୀଙ୍କୁ ଅପ୍ରୀତିକର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେଥିପାଇଁ ସେ ସ୍ପେଶାଲବ୍ରାଞ୍ଚ ପୁଲିସ ଅଫିସରଙ୍କ ଉପରେ ଅତ୍ୟନ୍ତ

କ୍ରୋଧାନ୍ୱିତ ହୋଇଥିଲେ । କେଉଁ ପରିସ୍ଥିତିରେ କିପରି ଭାବରେ ସେ ସଭାର ବିଷୟବସ୍ତୁ ବାହାରେ ପ୍ରକାଶ ପାଇଲା, ତାହା ଜାଣିବା ପାଇଁ ସେ ଅଧିକ ଧ୍ୟାନ ଦେଇଥିଲେ । ମାତ୍ର ତାଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ କେଉଁ ସାମ୍ବାଦିକ ସେଦିନର ବୈଠକରେ ଗୋପନରେ ଯୋଗ ଦେବାକୁ ସକ୍ଷମ ହୋଇଥିଲେ ସେମାନଙ୍କ ସମ୍ପର୍କରେ ସେ ସଠିକ୍ ଖବର ପାଇ ପାରିନଥିଲେ ।

ବରିଷ୍ଠ ସାମ୍ବାଦିକମାନଙ୍କର ଉଚ୍ଚପଦସ୍ଥ ପୁଲିସ ଅଫିସରମାନଙ୍କ ସୁସମ୍ପର୍କ ଥିବା ଦୃଷ୍ଟିରୁ ସେମାନଙ୍କ ନାମ ପ୍ରକାଶ ପାଇ ନଥିଲା । ନନ୍ଦିନୀଙ୍କ ଦ୍ୱାରା ପ୍ରସ୍ତୁତ ଗୁପ୍ତ ତାଲିକାଟି ପ୍ରକାଶ ପାଇଯିବା ପରେ ତାଙ୍କ ସମାଲୋଚକମାନେ ସକ୍ରିୟ ହୋଇଉଠିଥିଲେ । ଦଳୀୟ ଚାପ ଫଳରେ ଶ୍ରୀମତୀ ଶତପଥୀଙ୍କୁ ଶେଷରେ ତାଲିକାରେ କେତେକ ସଂଶୋଧନ କରିବାକୁ ପଡିଥିଲା ।

ମୋ ସାମ୍ବାଦିକ ଜୀବନ କାଳରେ ଆଉ ଗୋଟିଏ ଘଟଣା ସାରା ଦେଶରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା। ନନ୍ଦିନୀ ଶତପଥୀ ଦ୍ୱିତୀୟ ଥର ପାଇଁ ୧୯୭୪ ମସିହାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ଗାଦିନାସୀନ ହୋଇଥିଲେ ।

ସେତେବେଳେ ପ୍ରଧାନମନ୍ତ୍ରୀଙ୍କ 'ଗରିବୀ ହଟାଓ' କାର୍ଯ୍ୟକ୍ରମ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଇଥିଲା । ୧୯୭୪ ମସିହା ଅପ୍ରେଲ ପହିଲା ଦିନ ଶ୍ରୀମତୀ ଗାନ୍ଧୀ ସପରିବାରେ ଓଡ଼ିଶା ଆସି ରାଜଭବନରେ ରହିଥିଲେ । ସେଦିନ ଓଡ଼ିଶା ରାଜ୍ୟର ପ୍ରତିଷ୍ଠା ଦବସ । ସେହି ଉପଲକ୍ଷେ ଭୂମିହୀନମାନଙ୍କୁ ଜମିପଟ୍ଟା ବଣ୍ଟନ କରିବା ପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ସେଦିନ ରାଜଭବନ ହତା ଭିତରେ ଏକ ଉତ୍ସବର ଆୟୋଜନ କରାଯାଇଥିଲା ।

ସେତେବେଳକୁ ଜୟପ୍ରକାଶ ନାରାୟଣଙ୍କ ଆନ୍ଦୋଳନର ଡାକରା ଦେଶର ବିଭିନ୍ନ ପ୍ରାନ୍ତରେ ପ୍ରତିଧ୍ୱନିତ ହୋଇ ସାରିଥିଲା । ଶ୍ରୀମତୀ ଗାନ୍ଧୀ ଉତ୍ସବରେ ଉଦ୍‌ବୋଧନ ଦେଇ ଜୟପ୍ରକାଶ ନାରାୟଣଙ୍କ ଉଦ୍ଦେଶ୍ୟରେ କେତେକ ମନ୍ତବ୍ୟ ପ୍ରଦାନ କରିଥିଲେ । ପରବର୍ତ୍ତୀକାଳରେ ତାହା ଉଭୟଙ୍କ ମଧ୍ୟରେ ବ୍ୟକ୍ତିଗତସ୍ତରରେ ଅଧିକ ବିବାଦ ସୃଷ୍ଟି କରିଥିଲା ।

ଶ୍ରୀମତୀ ଗାନ୍ଧୀ ଜୟପ୍ରକାଶଙ୍କ ନାମ ଉଚ୍ଚାରଣ ନକରି କହିଥିଲେ, "ଯେଉଁମାନେ ଦେଶରେ ଏପରି ଆନ୍ଦୋଳନ ଚଳାଇଛନ୍ତି, ସେଥିପାଇଁ ସେମାନେ କେଉଁଠୁ ଅର୍ଥ ପାଉଛନ୍ତି ? କେଉଁ ବିଦେଶୀ ରାଷ୍ଟ୍ର ସେମାନଙ୍କୁ ଅର୍ଥ ଯୋଗାଉଛି ? ଆନ୍ଦୋଳନ ପାଇଁ ସେମାନେ ଏତେ ପରିମାଣରେ ଅର୍ଥ କିପରି ଖର୍ଚ୍ଚ କରି ପାରୁଛନ୍ତି ? ସେମାନେ ଏହାର ଜବାବ ଦେବା ଉଚିତ୍ ।"

ଶ୍ରୀମତୀ ଗାନ୍ଧୀଙ୍କର ଅଭିଯୋଗକୁ ଭୁବନେଶ୍ୱରର ୟୁଏନ୍‌ଆଇ ପ୍ରତିନିଧି ପି. ଦେବକୁମାର ଟିକିଏ ଏପଟସେପଟ କରି ଦେଇଥିଲେ । ଅଭିଯୋଗ ସହିତ ଜୟପ୍ରକାଶଙ୍କ ନାଁକୁ ଯୋଡ଼ି "ପ୍ରଧାନମନ୍ତ୍ରୀଙ୍କର ଜୟପ୍ରକାଶଙ୍କ ବିରୁଦ୍ଧରେ ବିଷୋଦ୍‌ଗାର" ଶିରୋନାମାରେ ଗୋଟିଏ ସମ୍ବାଦ ପରିବେଷଣ କରିଦେଲେ । ସେ ସମ୍ବାଦଟି ଦେଶର ପ୍ରମୁଖ ସମ୍ବାଦପତ୍ରମାନଙ୍କରେ ପ୍ରଥମ

ପୃଷ୍ଠାରେ ପ୍ରକାଶ ପାଇ ସାରା ଦେଶରେ ଚହଳ ସୃଷ୍ଟି କରିଥିଲା । ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ଏପରି ଅଭିଯୋଗକୁ ଜୟପ୍ରକାଶ ନାରାୟଣ ଦୃଢ଼ ଭାବରେ ବିରୋଧ କରିଥିଲେ ।

ରାଜଭବନରେ ଶ୍ରୀମତୀ ଗାନ୍ଧୀ ଯେଉଁ ଭାଷଣ ଦେଇଥିଲେ, ତାହା ଅମୃତ ବଜାର ପତ୍ରିକାର ଭୁବନେଶ୍ୱର ଅଫିସ ପକ୍ଷରୁ ଟେପ୍ କରାଯାଇଥିଲା । ଅମୃତ ବଜାର ପତ୍ରିକାର ମାଲିକ ଘୋଷ ପରିବାର ସହିତ ଶ୍ରୀମତୀ ଗାନ୍ଧୀଙ୍କର ଦୀର୍ଘଦିନର ସମ୍ପର୍କ ଥିଲା । ଶ୍ରୀମତୀ ଗାନ୍ଧୀଙ୍କ ଅଜା ମୋତିଲାଲ ନେହରୁ କଲିକତା ଆସିଲେ ଅମୃତ ବଜାର ପତ୍ରିକାର ମାଲିକ ତୁଷାରକାନ୍ତି ଘୋଷଙ୍କ ଆତିଥ୍ୟ ଗ୍ରହଣ କରୁଥିଲେ ।

ଏହି ସମ୍ପର୍କକୁ ଭିତ୍ତିକରି ଶ୍ରୀମତୀ ଶତପଥୀ 'ପତ୍ରିକା'କୁ ଅଧିକାଂଶ ସମୟରେ ନିଜର ରାଜନୈତିକ ସୁବିଧା ହାସଲ ପାଇଁ ବ୍ୟବହାର କରୁଥିଲେ ।

ଅମୃତ ବଜାର ପତ୍ରିକା ଅଫିସ ପକ୍ଷରୁ ଶ୍ରୀମତୀ ଗାନ୍ଧୀଙ୍କ ଭାଷଣ ଟେପ୍ ହେବା ଘଟଣା ସେଠାରେ ଉପସ୍ଥିତ ଥିବା କେନ୍ଦ୍ରୀୟ ଗୁଇନ୍ଦା ସଂସ୍ଥାର ଅଫିସରମାନଙ୍କ ଦୃଷ୍ଟି ଏଡାଇ ପାରିନଥିଲା । ସେମାନେ ପ୍ରଧାନମନ୍ତ୍ରୀଙ୍କ ଅଫିସରୁ ନିର୍ଦ୍ଦେଶ ପାଇ ଖୋଳତାଡ ଆରମ୍ଭ କରିଥିଲେ । ଶ୍ରୀମତୀ ଶତପଥୀ ମଧ୍ୟ ପତ୍ରିକା ଅଫିସ ସହିତ ଥିବା ତାଙ୍କ ସମ୍ପର୍କକୁ ଏଥିପାଇଁ ବ୍ୟବହାର କରିଥିଲେ । ଟେପ୍‌ର କ୍ୟାସେଟ୍‌ଟି ଗୁଇନ୍ଦା ପୁଲିସ ହାତରେ ପଡ଼ିଥିଲେ ଦେବକୁମାରଙ୍କ ଚାକିରି ଯିବା ସହିତ ତାଙ୍କ ପ୍ରତି ନିଶ୍ଚିତ ଭାବରେ ଦଣ୍ଡବିଧାନ ହୋଇଥାନ୍ତା । ସେଥିପାଇଁ ସେ କ୍ୟାସେଟ୍‌ଟିକୁ ସମ୍ବାଦ ବାହାରିବା ଦିନ ପୋଡ଼ି ଦିଆଯାଇଥିଲା । ସମସ୍ତ ଚେଷ୍ଟା ସତ୍ତ୍ୱେ ଉଭୟ କେନ୍ଦ୍ର ଓ ରାଜ୍ୟର ଗୁଇନ୍ଦା ଅଫିସରମାନେ ସେ କ୍ୟାସେଟ୍‌ଟିର ସନ୍ଧାନ ପାଇପାରିନଥିଲେ ।

ଦେଶରେ ଇମରଜେନ୍ସି ଜାରୀ ହୋଇଥିବା ସମୟର ଗୋଟିଏ ଘଟଣା ମୋ ସମେତ ଭୁବନେଶ୍ୱରର ଅନେକ ସାମ୍ବାଦିକଙ୍କ ପାଇଁ ବିପଦ ସୃଷ୍ଟି କରିଥିଲା । ତତ୍‌କାଳୀନ ଲୋକସମ୍ପର୍କ ବିଭାଗର ନିର୍ଦ୍ଦେଶକ ଏ.ଏନ୍.ତିଓ୍ୱାରୀ ସାହାଯ୍ୟ ନ କରିଥିଲେ ଅତିକମ୍‌ରେ ପାଞ୍ଚଜଣ ସାମ୍ବାଦିକଙ୍କୁ ଜେଲ୍ ଯିବାକୁ ପଡିଥାଆନ୍ତା ।

ଇମରଜେନ୍ସି ସମୟରେ ଗିରଫ ହୋଇ ଡକ୍ଟର ହରେକୃଷ୍ଣ ମହତାବ ଭଞ୍ଜନଗର ଜେଲ୍‌ରେ ଥିଲେ । ସେହି ସମୟରେ ତାଙ୍କ ଧର୍ମପତ୍ନୀ ସୁଭଦ୍ରା ମହତାବ ହଠାତ୍ ଅସୁସ୍ଥ ହୋଇପଡିଲେ । ତାଙ୍କୁ କ୍ୟାପିଟାଲ ହସ୍‌ପିଟାଲରେ ଚିକିତ୍ସା ପାଇଁ ଭର୍ତ୍ତି କରାଯାଇଥିଲା । ତାଙ୍କ ଆଖିରେ ଅସ୍ତ୍ରୋପଚାରର ଆବଶ୍ୟକତା ପଡ଼ିଥିଲା । ସେଥିପାଇଁ ତାଙ୍କର ପାଳକପୁତ୍ର ଭର୍ତ୍ତୃହରି ମହତାବ, ଡକ୍ଟର ମହତାବଙ୍କୁ ପାରୋଲରେ କିଛିଦିନ ପାଇଁ ଖଲାସ କରିବାକୁ ରାଜ୍ୟ ସରକାରଙ୍କୁ ଅନୁରୋଧ କରି ପତ୍ର ଲେଖିଥିଲେ । ସାଧାରଣ ଭାବେ ଏପରି ଏକ ନିବେଦନପତ୍ର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ବିଚାର ହେବା କଥା ।

ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ସେତେବେଳେ କଂଗ୍ରେସ ଅଧିବେଶନରେ ଯୋଗଦେବା ପାଇଁ ନାଗପୁର ଯାଇଥିଲେ । ପରିସ୍ଥିତିର ଗୁରୁତ୍ୱ ଦୃଷ୍ଟିରୁ ରାଜ୍ୟପାଳ ଆକବର ଅଲ୍ଲୀ ଖାଁ ସେ ଦରଖାସ୍ତର ଫୈସଲା କରି ଡକ୍ଟର ମହତାବଙ୍କୁ ପାରୋଲରେ ଖଲାସ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ରାଜ୍ୟପାଳ ତାରବାର୍ତ୍ତା ଯୋଗେ, ତାଙ୍କ ନିଷ୍ପତ୍ତି ସମ୍ପର୍କରେ ନାଗପୁରରେ ଥିବା ମୁଖ୍ୟମନ୍ତ୍ରୀଙ୍କୁ ଜଣାଇ ଦେଇଥିଲେ ।

ଡକ୍ଟର ମହତାବ ପାରୋଲରେ ଆସି ପୂର୍ବତନ ମନ୍ତ୍ରୀ ଚିତ୍ତରଞ୍ଜନ ନାୟକଙ୍କ ଫରେଷ୍ଟପାର୍କ ଅଞ୍ଚଳରେ ଥିବା ଘରେ ପହଞ୍ଚିଥିଲେ । ମୋର ଯାହା ମନେପଡୁଛି, ଘଟଣାଟି ଘଟିଥିଲା ୧୯୭୬ ମସିହା ପ୍ରଥମାର୍ଦ୍ଧରେ । ଡକ୍ଟର ମହତାବ ନିଜେ ଫୋନ କରି ସାମ୍ବାଦିକମାନଙ୍କୁ ସେଠାକୁ ଡକାଇଥିଲେ । ଅମୃତ ବଜାର ପତ୍ରିକାର ସ୍ୱତନ୍ତ୍ର ପ୍ରତିନିଧି ଭାବରେ କାମ କରୁଥିବା ଗୋପାଳ ମିଶ୍ର ଅନ୍ୟ କାମର ବାହାନା କରି ନିଜେ ନଯାଇ ଡକ୍ଟର ମହତାବଙ୍କ ପାଖକୁ ମତେ ପଠେଇ ଦେଲେ । ମୁଁ ସେଠାରେ ପହଞ୍ଚିଲା ପୂର୍ବରୁ ଅନେକ ସାମ୍ବାଦିକ ସେଠାରେ ପହଞ୍ଚି ସାରିଥିଲେ ।

ଡକ୍ଟର ମହତାବ, ଆମ ଆଗରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ କାର୍ଯ୍ୟର ପ୍ରଶଂସା କରିଥିଲେ । ସେ ଇମରଜେନ୍ସି ଜାରୀର ଯଥାର୍ଥତା ପ୍ରତିପାଦନ କରି ଗୋଟିଏ ବିବୃତ୍ତି ଟାଇପ୍ କରି ରଖିଥିଲେ । ସେ ବିବୃତ୍ତି ଦେଖି ଆମେ ଆଶ୍ଚର୍ଯ୍ୟ ହୋଇଯାଇଥିଲୁ । ଡକ୍ଟର ମହତାବ କିଭଳି ଏପରି ବିବୃତ୍ତି ଦେଇପାରିଲେ ତାହା ଆମ ସମସ୍ତଙ୍କୁ ଚକିତ କରିଥିଲା ।

ଡକ୍ଟର ମହତାବ ବୋଧହୁଏ ଆମ୍ଭମାନଙ୍କର ମାନସିକ ସ୍ଥିତିକୁ ଠଉରେଇ ପାରିଥିଲେ । ମନର ସନ୍ଦେହ ମୋଚନ ଉଦ୍ଦେଶ୍ୟରେ କହିଥିଲେ, "ଏଥିରେ ଭାବିବାର କ'ଣ ଅଛି ? ଶ୍ରୀମତୀ ଇନ୍ଦିରାଗାନ୍ଧୀ ଇମରଜେନ୍ସି ଜାରୀ ନକରିଥିଲେ ଦେଶରେ ଅରାଜକତା ସୃଷ୍ଟି ହୋଇଥାଆନ୍ତା । ଦେଶର ଅଖଣ୍ଡତା ପ୍ରତି ମଧ୍ୟ ବିପଦ ସୃଷ୍ଟି ହୋଇ ଥାଆନ୍ତା ।"

ଇମରଜେନ୍ସି ସମୟରେ ଯେ କୌଣସି ସମ୍ବାଦ ଛପାହେବା ପୂର୍ବରୁ କ୍ଷମତାପ୍ରାପ୍ତ ଅଧିକାରୀଙ୍କ ପକ୍ଷରୁ ତାକୁ ଯାଞ୍ଚ କରାଇବାର ବ୍ୟବସ୍ଥା ଥିଲା । ବିନା ଯାଞ୍ଚରେ କୌଣସି ସମ୍ବାଦ ପ୍ରକାଶ କରିବା ସମ୍ଭବ ନଥିଲା । ଡକ୍ଟର ମହତାବଙ୍କ ବିବୃତ୍ତି ଇମରଜେନ୍ସି ସପକ୍ଷରେ ଥିବାରୁ କେହି ତାକୁ ଯାଞ୍ଚ ନକରାଇ ସମ୍ବାଦପତ୍ରକୁ ପଠାଇ ଦେଇଥିଲେ । ସେହିଦିନ ସେ ବିବୃତ୍ତିଟି ପ୍ରମୁଖ ସମ୍ବାଦ ହୋଇ ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା ।

ଏହି ଘଟଣା ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀଙ୍କ ପାଇଁ ଏକ ସୁବର୍ଣ୍ଣ ସୁଯୋଗ ଆଣିଦେଇଥିଲା । କେଉଁ ପରିସ୍ଥିତିରେ ସାମ୍ବାଦିକମାନେ ପାରୋଲରେ ଜେଲରୁ ସାମୟିକ ମୁକ୍ତି ପାଇଥିବା ଜଣେ ବ୍ୟକ୍ତିଙ୍କ ସହିତ ସାକ୍ଷାତ କଲେ ? ତାଙ୍କ ବିବୃତ୍ତିକୁ ବିନା ଯାଞ୍ଚରେ ସମ୍ବାଦପତ୍ରର ଛପାଇଲେ, ତା'ର ତଦନ୍ତ କରି ତୁରନ୍ତ ରିପୋର୍ଟ ଦେବାକୁ ଲୋକସମ୍ପର୍କ ବିଭାଗର ଯୁଗ୍ମ ନିର୍ଦ୍ଦେଶକ ସୁବ୍ରତ ଯୋଶୀଙ୍କୁ ସେ ନିର୍ଦ୍ଦେଶ ଦେଇଥିଲେ ।

ଶ୍ରୀ ଯୋଶୀ ଜଣେ ନକରାତ୍ମକ ବ୍ୟକ୍ତି ଥିଲେ । ଯାହା କୁହାଯାଏ, ମାଛିମରା କିରାଣୀ । ଜିରାରୁ ଶୀରା କାଢ଼ିବା ଲୋକ । ସାମ୍ବାଦିକମାନଙ୍କ ଭିତରୁ ଯେଉଁମାନେ ମୁଖ୍ୟମନ୍ତ୍ରୀଙ୍କ ବିରୋଧୀ ଭାବରେ ଜଣାଶୁଣା ଥିଲେ, ସେହିପରି ପାଞ୍ଚଜଣ ସାମ୍ବାଦିକଙ୍କ ତାଲିକା ସେ ପ୍ରସ୍ତୁତ କରିଥିଲେ ।

ମାତ୍ର ସାମ୍ବାଦିକମାନଙ୍କର ଭାଗ୍ୟ ଭଲ । ସେ ତାଲିକା ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯିବା ପୂର୍ବରୁ ସେତେବେଳର ନିର୍ଦ୍ଦେଶକ ଏ.ଏନ. ତିୱାରୀ ସେଥିରେ ହସ୍ତକ୍ଷେପ କରିଥିଲେ ।

ଶ୍ରୀ ତିୱାରୀ ଫାଇଲରେ ମନ୍ତବ୍ୟ ଦେଇଥିଲେ ଯେ, ସାମ୍ବାଦିକମାନେ ସମ୍ବାଦପତ୍ରକୁ ଡକ୍ଟର ମହତାବଙ୍କ ବିବୃତିଟି ପଠାଇବା ପୂର୍ବରୁ ତାଙ୍କ ସାଙ୍ଗରେ ପରାମର୍ଶ କରିଥିଲେ । ସେହି ବିବୃତିଟି ଇମରଜେନ୍ସି ଜାରୀର ଯଥାର୍ଥତାକୁ ସ୍ୱୀକାର କରୁଥିବାରୁ ସେ ତାକୁ ଛାପିବା ପାଇଁ ଅନୁମତି ଦେଇଥିଲେ ।

ଏପରି ଉତ୍ତର ପାଇବା ପରେ ଶ୍ରୀମତୀ ଶତପଥୀ ସାମ୍ବାଦିକମାନଙ୍କ ବିରୋଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିନଥିଲେ ସତ, ମାତ୍ର ପରବର୍ତ୍ତୀ ସମୟରେ ଶ୍ରୀ ତିୱାରୀଙ୍କୁ ନାନା ବାଟରେ ହଇରାଣ କରିଥିଲେ ।

ସାମ୍ବାଦିକତା ଜୀବନରେ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ, ମୋରାରଜୀ ଦେଶାଇ, ଜୟପ୍ରକାଶ ନାରାୟଣ, ରାଜୀବ ଗାନ୍ଧୀ, ଅଟଳବିହାରୀ ବାଜପାୟୀ, ଲାଲକୃଷ୍ଣ ଆଡଭାନୀ, ନୀଲମ ସଂଜୀବ ରେଡ୍ଡୀ, ଜଗଜ୍ଜୀବନ ରାମ, ଦେବକାନ୍ତ ବରୁଆ ପ୍ରମୁଖ ରାଷ୍ଟ୍ରସ୍ତରୀୟ ନେତାମାନଙ୍କ ସଭାସମିତିରେ ଯୋଗଦେବା ସହିତ ସେମାନଙ୍କ ଦ୍ୱାରା ଆହୂତ ସାମ୍ବାଦିକ ସମ୍ମିଳନୀରେ ଯୋଗଦେବାର ସୌଭାଗ୍ୟ ମୋତେ ମିଳିଥିଲା । ସେଥିମଧ୍ୟରୁ ଶ୍ରୀମତୀ ଗାନ୍ଧୀ ଓ ଶ୍ରୀ ଦେଶାଇଙ୍କର ସାମ୍ବାଦିକ ସମ୍ମିଳନୀ ଏ ପର୍ଯ୍ୟନ୍ତ ଅପାଶୋରା ରହିଛି ।

ଦେଶରେ ଇମରଜେନ୍ସି ପରିସ୍ଥିତି ଜାରୀ ରହିଥିବା ସମୟରେ ଇନ୍ଦିରା ଗାନ୍ଧୀ ଓଡ଼ିଶା ଗସ୍ତରେ ଆସିଥିଲେ । ପରମ୍ପରା ଦୃଷ୍ଟିରୁ ସେ ରାଜଭବନରେ ଗୋଟିଏ ସାମ୍ବାଦିକ ସମ୍ମିଳନୀ ଡକାଇଥିଲେ । ସେ ସମ୍ମିଳନୀକୁ ଭୁବନେଶ୍ୱରରେ ଅବସ୍ଥାପିତ ସ୍ୱୀକୃତିପ୍ରାପ୍ତ ସାମ୍ବାଦିକଙ୍କ ସମେତ ବିଭିନ୍ନ ସମ୍ବାଦପତ୍ରର ସମ୍ପାଦକମାନଙ୍କୁ ମଧ୍ୟ ଆମନ୍ତ୍ରଣ କରାଯାଇଥିଲା ।

ସେହି ସମୟରେ ଜାତୀୟସ୍ତରରେ ଭାରତୀୟ ଜାତୀୟ କଂଗ୍ରେସ ଦଳରେ ଆଭ୍ୟନ୍ତରୀଣ କନ୍ଦଳ ଦେଖାଦେଇ ଦଳର ବିଭାଜନ ଆସନ୍ନ ହୋଇପଡିଥିଲା । ଦଳ ଭିତରେ କେତେକ ତୁଙ୍ଗ ନେତା ଗୋଟିଏ ଗୋଷ୍ଠୀ ଗଠନ କରି ଶ୍ରୀମତୀ ଗାନ୍ଧୀଙ୍କୁ ବିରୋଧ କରୁଥିଲେ ।

ସେଦିନ ପ୍ରଥମଥର ପାଇଁ କଡା ସୁରକ୍ଷା ଭିତରେ ସାମ୍ବାଦିକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ବ୍ୟକ୍ତିଗତ ଭାବରେ ଯାଞ୍ଚ କରାଯାଇ ଜଣ ଜଣ କରି ସାମ୍ବାଦିକମାନଙ୍କୁ ଭିତରକୁ ଛଡାଯାଉଥିଲା । ସବୁ କବାଟ, ଝରକା ପାଖରେ ସିକ୍ୟୁରିଟି ଫୋର୍ସ ଜଗି ରହିଥିଲେ ।

ଶ୍ରୀମତୀ ଗାନ୍ଧୀଙ୍କ ପାଖରେ କେବଳ ସେତେବେଳକାର କେନ୍ଦ୍ରମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ବସିବାର ସୁଯୋଗ ପାଇଥିଲେ । ପ୍ରଥମରୁ ସବୁକଥା ଠିକ୍ ଚାଲିଥିଲା । ଶ୍ରୀମତୀ ଗାନ୍ଧୀ ତାଙ୍କ ଭାଷଣ ଶେଷ କରିବା ପରେ ପ୍ରଶ୍ନ ପଚାରିବାକୁ ସାମ୍ବାଦିକମାନଙ୍କୁ କହିଥିଲେ ।

ଆମଭିତରେ ଥିଲେ କଟକରୁ ପ୍ରକାଶ ପାଉଥିବା 'ମାତୃଭୂମି'ର ସଂପାଦକ ବିଚିତ୍ରାନନ୍ଦ କର । ସେ ଶ୍ରୀମତୀ ଗାନ୍ଧୀଙ୍କ ବ୍ୟକ୍ତିଗତ ସ୍ୱଭାବ ସହିତ ପରିଚିତ ନଥିଲେ । ସ୍ଥାନ, କାଳ, ପାତ୍ର ଓ ପରିସ୍ଥିତିକୁ ନବିଚାରି ସେ ହଠାତ୍ ପଚାରିଦେଲେ, "ମାଡାମ୍ ! ଯେଉଁମାନେ ଆପଣଙ୍କୁ ଦଳ ଭିତରେ ବିରୋଧ କରୁଛନ୍ତି, ଆପଣ ସେମାନଙ୍କୁ କିପରି ସନ୍ତୁଷ୍ଟ କରିବେ ?"

ସେତେବେଳେ ଇମରଜେନ୍ସି ସମୟ । କଥା କହିବାର ସ୍ୱାଧୀନତା ନଥିଲା । ଶ୍ରୀମତୀ ଗାନ୍ଧୀ ଏପରି ଏକ ପ୍ରଶ୍ନର ସାମନା କରିବା ପାଇଁ ମାନସିକସ୍ତରରେ ପ୍ରସ୍ତୁତ ନଥିଲେ ।

ସେ ସାମନାରେ ଥିବା ଟେବୁଲ କାଚରେ ଗୋଟିଏ ବିଧାମାରି କହିଲେ "କିଏ ସେ ଏହି ପ୍ରଶ୍ନ କଲେ ? କଂଗ୍ରେସ ଦଳର ମୁଁ ନେତା ନା ସେମାନେ ନେତା । ସେମାନେ ମତେ ଖୁସି କରିବେ ନା ମୁଁ ତାଙ୍କୁ ଖୁସି କରିବି ? ଏପରି ଏକ ନିର୍ବୋଧ ପ୍ରଶ୍ନ ମୁଁ ଆଶା କରିନଥିଲି ।"

ଶ୍ରୀମତୀ ଗାନ୍ଧୀ କହିଲା ବେଳେ ସମଗ୍ର କକ୍ଷଟି ନିସ୍ତବ୍ଧ ହୋଇଯାଇଥିଲା । କେବଳ ମାଇକରୁ ଏକ ସ୍ୱର ପ୍ରତିଧ୍ୱନିତ୍ ହେଉଥିଲା । କିଛି ସମୟର ନୀରବତା ପରେ ବୟସ୍କ ଏବଂ ଅଭିଜ୍ଞ ସାମ୍ବାଦିକ ଆର.ପି. ଶାସ୍ତ୍ରୀ ଅନ୍ୟ ଏକ ପ୍ରଶ୍ନ ପଚାରି ଶ୍ରୀମତୀ ଗାନ୍ଧୀଙ୍କ କ୍ରୋଧ କମାଇ ଦେଇଥିଲେ ।

ରାଜନୀତିରେ ସବୁ ସମ୍ଭବବୋଲି ଯାହା କୁହାଯାଏ, କଂଗ୍ରେସ ଦଳ ଭିତରେ ତାହା ଆଉଥରେ ପ୍ରମାଣିତ ହୋଇଥିଲା । ଦେଶରେ ଇମରଜେନ୍ସି ଜାରୀ କରିବା ଠାରୁ ଆରମ୍ଭ କରି କଂଗ୍ରେସ ଦଳର ବିଭାଜନ ପାଇଁ, ଯେଉଁ ଜଗଜ୍ଜୀବନ ରାମ ଶ୍ରୀମତୀ ଗାନ୍ଧୀଙ୍କର ସମସ୍ତ ପ୍ରସ୍ତାବକୁ ସମର୍ଥନ କରିଥିଲେ, ସମୟ ବଦଳିବା ସହିତ ସେ ବଦଳିଯାଇଥିଲେ ।

୧୯୭୭ ମସିହା ଫେବୃୟାରୀ ୨ ତାରିଖରେ ସେ କଂଗ୍ରେସ ଦଳରୁ ଇସ୍ତଫା ଦେଇ "କଂଗ୍ରେସ ଫର ଡେମୋକ୍ରାସି (ସି.ଏଫ.ଡି)" ନାମରେ ଗୋଟିଏ ରାଜନୈତିକ ସଂଗଠନ ଗଢ଼ିଥିଲେ । ତାଙ୍କ ସହିତ ଉତ୍ତର ପ୍ରଦେଶର ପୂର୍ବତନ ମୁଖ୍ୟମନ୍ତ୍ରୀ ହେମବତୀ ନନ୍ଦନ ବହୁଗୁଣା ଓ ଇମରଜେନ୍ସି ସମୟରେ ଅତ୍ୟାଚାରର ପ୍ରତୀକ ସାଜିଥିବା ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ଯୋଗ ଦେଇଥିଲେ ।

ନିର୍ବାଚନ ପୂର୍ବରୁ ନବଗଠିତ ଜନତା ପାର୍ଟିର ନେତା ମୋରାରଜୀ ଦେଶାଇ ଏବଂ ସି.ଏଫ୍.ଡି. ନେତା ଜଗଜ୍ଜୀବନ ରାମ ମିଳିତ ଭାବରେ ଏକ ନିର୍ବାଚନ ସଭାରେ ଉଦ୍‌ବୋଧନ ଦେବା ପାଇଁ ଭୁବନେଶ୍ୱର ଆସିଥିଲେ । ଶ୍ରୀ ଦେଶାଇ ବିଜୁ ପଟ୍ଟନାୟକଙ୍କ ବାସଭବନ

'ନବୀନ ନିବାସ'ରେ ଅବସ୍ଥାନ କରିଥିଲା ବେଳେ ଶ୍ରୀ ରାମଙ୍କୁ, ଶ୍ରୀମତୀ ଶତପଥୀ ନେଇ ଷ୍ଟେଟ ଗେଷ୍ଟ ହାଉସରେ ରଖାଇଥିଲେ ।

ନବୀନ ନିବାସରେ ଅବସ୍ଥାନ କାଳରେ ଶ୍ରୀ ଦେଶାଇଙ୍କ ସହିତ ସାମ୍ବାଦିକମାନଙ୍କର ପ୍ରଥମଥର ପାଇଁ ଏକ ସୌଜନ୍ୟମୂଳକ ଆଳାପ ହୋଇଥିଲା ।

ସାଧାରଣ ଭାବରେ ଚିଡ଼ା ପ୍ରକୃତିର ଶ୍ରୀ ଦେଶାଇ, ସେଦିନ ଅସ୍ୱାଭାବିକ ଭାବରେ ଶାନ୍ତ ଓ ଆନ୍ତରିକତାର ସହିତ ସାମ୍ବାଦିକମାନଙ୍କର ସବୁ ପ୍ରଶ୍ନର ଉତ୍ତର ଦେଇଥିଲେ । ତାଙ୍କ ଚରିତ୍ରରେ ଏପରି ଆଶ୍ଚର୍ଯ୍ୟଜନକ ପରିବର୍ତ୍ତନର କାରଣ କ'ଣ ବୋଲି ପଚରାଯିବାରୁ ଶ୍ରୀ ଦେଶାଇ କହିଥିଲେ, "ଏଥିପାଇଁ ମୁଁ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ଅଶେଷ ଧନ୍ୟବାଦ ଦେଉଛି । ସେ ମତେ ଦୀର୍ଘ ୧୯ ମାସ କାଳ ଜେଲରେ ବନ୍ଦୀ କରି ରଖିନଥିଲେ ବୋଧହୁଏ ମୋର ଏ ପରିବର୍ତ୍ତନ ସମ୍ଭବ ହୋଇନଥାନ୍ତା । ତୁମ୍ଭେମାନେ ବର୍ତ୍ତମାନ ଯେଉଁ ଦେଶାଇଙ୍କୁ ଦେଖୁଛ, ସିଏ ଜଣେ ସମ୍ପୂର୍ଣ୍ଣ ପରିବର୍ତ୍ତିତ ମଣିଷ । ସେ ଦୃଷ୍ଟିରୁ ଯିଏ ଯାହା ଚାହଁ ନିଃସଙ୍କୋଚରେ ପଚାରିପାର ।"

ସେଦିନ ମୁଁ ଶ୍ରୀ ଦେଶାଇଙ୍କୁ ପଚାରିଥିଲି, "ଯେଉଁ ନନ୍ଦିନୀ ଶତପଥୀ ଜରୁରୀ ପରିସ୍ଥିତିରେ ଲୋକଙ୍କ ଉପରେ ଅତ୍ୟାଚାର ଚଳାଇଥିଲେ, ସାଧାରଣଲୋକଙ୍କୁ ଭୟଭୀତ କରିଥିଲେ ଏବଂ ସେମାନଙ୍କର ଦୁଃଖଦୁର୍ଦ୍ଦଶାର କାରଣ ହୋଇଥିଲେ, ସେପରି ବ୍ୟକ୍ତିଙ୍କ ସହିତ ଶ୍ରୀ ଦେଶାଇଙ୍କ ଭଳି ଜଣେ ସାଲିସ୍‌ବିହୀନ ନେତା କିଭଳି ସମଝୋତା କଲେ ।"

ଏଇ ପ୍ରଶ୍ନର ଉତ୍ତରରେ ଶ୍ରୀ ଦେଶାଇ କହିଥିଲେ, "ଆପଣମାନେ କ'ଣ ଭାରତୀୟ ସଂସ୍କୃତି ଓ ପରମ୍ପରା ସମ୍ପର୍କରେ ଅବଗତ ନୁହନ୍ତି ? ଏହି ଦେଶରେ ଦସ୍ୟୁ ରତ୍ନାକର ତ ପୁଣି ବାଲ୍ମୀକୀ ଋଷିରେ ପରିବର୍ତ୍ତିତ ହୋଇଥିଲେ । ଆଉ ଶ୍ରୀମତୀ ଶତପଥୀଙ୍କର ପରିବର୍ତ୍ତନ ହେବାରେ ଆଶ୍ଚର୍ଯ୍ୟ ହେଉଛନ୍ତି କାହିଁକି ? ବର୍ତ୍ତମାନର ଶତପଥୀ ପୂର୍ବଠାରୁ ଜଣେ ଭିନ୍ନ ବ୍ୟକ୍ତିତ୍ୱ ।"

୧୯୭୭ ମସିହାରେ ବିନାୟକ ଆଚାର୍ଯ୍ୟଙ୍କ ମନ୍ତ୍ରିମଣ୍ଡଳ ସମୟରେ ପୂର୍ବତନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ବିରୋଧରେ କ୍ଷମତାର ଅପବ୍ୟବହାର ଓ ଆୟ ବର୍ହିଭୂତ ସମ୍ପତ୍ତି ଠୁଳ ଅଭିଯୋଗରେ ଯେଉଁ ଦୁଇଟି ମକଦ୍ଦମା ଭିଜିଲାନ୍ସ ଥାନାରେ (କେଶ ନଂ. ୨୨/୭୭) ଆଗତ କରାଯାଇଥିଲା, ତା'ଉପରେ ତଦନ୍ତ କରାଯାଇ ଦୁର୍ନୀତି ସମ୍ପର୍କରେ 'ଆପାତଃ ପ୍ରମାଣଯୋଗ୍ୟ ତଥ୍ୟ' ମିଳିବାରୁ ଶ୍ରୀମତୀ ଶତପଥୀଙ୍କ ନାମରେ ଚାର୍ଜସିଟ ଦାଖଲ କରାଯାଇଥିଲା ।

ଏହି ଚାର୍ଜସିଟରେ କୁହାଯାଇଥିଲା ଯେ, ୧୯୭୪ ମସିହା ମାର୍ଚ୍ଚ ୬ ତାରିଖରୁ ୧୯୭୬ ମସିହା ଫେବୃୟାରୀ ୨୯ ତାରିଖ ମଧ୍ୟରେ ଶ୍ରୀମତୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିବା ସମୟରେ ତାଙ୍କ ଦରମା ଓ ଭତ୍ତା ମିଶି ୨୩ ହଜାର ୫୨୯ ଟଙ୍କା ୮୦ ପଇସା ସେ ସରକାରୀ ତହବିଲରୁ ପାଇଥିଲେ । କିନ୍ତୁ ତଦନ୍ତ ବେଳେ ମୌଖିକ ଭାବରେ ଏବଂ କାଗଜପତ୍ରରୁ

ଜଣାପଡ଼ିଥିଲା ଯେ, ଶ୍ରୀମତୀ ଶତପଥୀ ସେହି ସମୟ ମଧ୍ୟରେ ୧୨,୧୪, ୬୫୬ଟଙ୍କା ୮ ପଇସାର ମାଲିକ ହୋଇପାରିଥିଲେ ।

ଏହାବ୍ୟତୀତ କେନ୍ଦ୍ର ସରକାର, ୧୯୭୪ ମସିହା ମେ ମାସ ୧୫ ତାରିଖରେ କେବଳ ରାଷ୍ଟ୍ରାୟତ ସଂସ୍ଥା ମାଧ୍ୟମରେ କ୍ରୋମପଥର ରପ୍ତାନୀ କରାଯିବା ପାଇଁ ଯେଉଁ ଗାଇଡ୍‌ଲାଇନ ସ୍ଥିର କରିଥିଲେ, ମୁଖ୍ୟମନ୍ତ୍ରୀ, ଖଣି ଓ ଭୂତତ୍ତ୍ୱ ବିଭାଗର ୧୫/୭୭ ନମ୍ବର ୧୧୧/୭୬ ନମ୍ବର ଫାଇଲରେ କେନ୍ଦ୍ରୀୟ ଗାଇଡ୍‌ଲାଇନ୍‌କୁ ଭଙ୍ଗ କରି ଫେରୋ ଆଲୟ କର୍‌ପୋରେସନ୍‌କୁ ଦୁଇ ବର୍ଷ ପାଇଁ କ୍ରୋମପଥର ରପ୍ତାନୀ କରିବାକୁ ଅନୁମତି ପ୍ରଦାନ କରିଥିଲେ ।

ଏ ବାବଦରେ ଶ୍ରୀମତୀ ଶତପଥୀଙ୍କ ବେନାମୀ ପ୍ରତିଷ୍ଠାନ "ସମାଜବାଦୀ ସୋସାଇଟି" ପକ୍ଷରୁ ପ୍ରକାଶ ପାଉଥିବା ଦୈନିକ "ଧରିତ୍ରୀ" ବିଜ୍ଞାପନ ବାବଦକୁ ୯୮ ହଜାର ଟଙ୍କା ଅଗ୍ରୀମ ଲାଭ କରିଥିଲେ । ଏହା ବଦଳରେ ଫେରୋ ଆଲୟ କର୍‌ପୋରେସନ ଦୁଇ ବର୍ଷ ଭିତରେ ୯୦, ୫୩୭ ଟନ କ୍ରୋମ ପଥର ରପ୍ତାନୀ କରି ୩କୋଟି ୭୭ଲକ୍ଷ ୫୩ହଜାର ୯୨୯ଟଙ୍କା ଲାଭ ଉଠାଇଥିଲେ ।

ଏହି ଚାର୍ଜସିଟ ଦାଖଲ ହେବା ପରେ ଦୁର୍ନୀତି ଅଭିଯୋଗରେ ଶ୍ରୀମତୀ ଶତପଥୀଙ୍କ ନାଁରେ ଗିରଫ ପରୱାନା ବାହାର କରାଯାଇ ସରକାରୀ ବାସଭବନରୁ ତାଙ୍କୁ ଗିରଫ କରାଯାଇଥିଲା । ତାଙ୍କୁ ପ୍ରଥମେ କ୍ୟାପିଟାଲ ଥାନାକୁ ନିଆଯାଇଥିଲା । ପରେ ସେଠାରୁ ସଚିବାଳୟ ପଛରେ ଥିବା ଭିଜିଲାନ୍ସ କୋର୍ଟରେ ହାଜର କରାଯାଇଥିଲା ।

ଆଗରେ ପଛରେ ସଶସ୍ତ୍ର ପୁଲିସ ଜଗୁଆଳି ସହିତ ଗୋଟିଏ କାର୍ ଯୋଗେ ଶ୍ରୀମତୀ ଶତପଥୀଙ୍କୁ କୋର୍ଟକୁ ନିଆଯାଇଥିଲା ।

ତାଙ୍କ ଦୁଇପାଖରେ ଦୁଇଜଣ ମହିଳା ହୋମଗାର୍ଡ ଜଗି ବସିଥିଲେ । ତାଙ୍କ ସହିତ ତାଙ୍କ ଭଉଣୀ ଚନ୍ଦ୍ରିକା ମହାପାତ୍ର ମଧ୍ୟ ସେହି କାର୍‌ରେ କୋର୍ଟକୁ ଯାଇଥିଲେ ।

କୋର୍ଟରେ ଶ୍ରୀମତୀ ଶତପଥୀଙ୍କ ପକ୍ଷରୁ ଜାମିନ ଆବେଦନ କରାଯାଇଥିଲା । ଆବେଦନର ଶୁଣାଣି ଶେଷ ହେଲାବେଳକୁ ୪ଟା ବାଜି ଯାଇଥିଲା ।

ପ୍ରଚଳିତ ପ୍ରଥା ଅନୁଯାୟୀ ସାଧାରଣ ଅପରାଧୀଙ୍କ ପାଇଁ ଉଦ୍ଦିଷ୍ଟ ୭୫ ପଇସାର ଜଳଖିଆ ପୁଲିସ ପକ୍ଷରୁ ଶ୍ରୀମତୀ ଶତପଥୀଙ୍କୁ ଦିଆଯାଇଥିଲା ।

ସୂର୍ଯ୍ୟାସ୍ତ ପୂର୍ବରୁ ଦୁଇଜଣ ଜାମିନଦାରଙ୍କ ସହାୟତାରେ ଶ୍ରୀମତୀ ଶତପଥୀ କୋର୍ଟରୁ ଜାମିନରେ ଆସିଥିଲେ । ସେଦିନ ଶ୍ରୀମତୀ ଶତପଥୀଙ୍କୁ ଜଣେ ଅପରାଧୀ ଭାବରେ ଦେଖିବା ପାଇଁ କୋର୍ଟରେ ସାମ୍ବାଦିକ, ଫଟୋଗ୍ରାଫରଙ୍କ ସମେତ ବହୁ ଲୋକ ରୁଣ୍ଡ ହୋଇଥିଲେ ।

ଯେଉଁ ଦୁର୍ଦ୍ଦଷ ମହିଳା କ୍ଷମତା ଓ ଅର୍ଥଲୋଭରେ ଧରାକୁ ସରା ବୋଲି ମନେ କରୁଥିଲେ, ନିଜକୁ "ଏସିଆର ମୁକ୍ତିସୂର୍ଯ୍ୟ" ବୋଲି ମନେକରି ଅନ୍ୟମାନଙ୍କ ଉପରେ ଅତ୍ୟାଚାର ଚଳାଇ

ଆନନ୍ଦ ଅନୁଭବ କରୁଥିଲେ, ଯେଉଁ ମୁଖ୍ୟମନ୍ତ୍ରୀ ଦେଶରେ ସାଧାରଣ ଅବସ୍ଥା ଆଉ ଫେରିବ ନାହିଁ ବୋଲି ଆସ୍ଫାଳନ ଦେଖାଉଥିଲେ, ସେ ଯେ ଦିନେ ଦେଶର ପ୍ରଚଳିତ ଆଇନ୍ ବଳରେ ଗିରଫ ହୋଇ ଜାମିନରେ ଆସିବେ ସେ ବିଶ୍ୱାସ କାହାରି ନଥିଲା ।

ଗିରଫ ଅବସ୍ଥାରେ ସାମ୍ବାଦିକମାନେ ତାଙ୍କୁ ସାକ୍ଷାତ କଲାବେଳେ "କ'ଣ ଆପଣମାନେ ଖାଲି ଆସିଛନ୍ତି ନା କ୍ୟାମେରା ଆଣିଛନ୍ତି" ବୋଲି ଶ୍ରୀମତୀ ଶତପଥୀ ସାମ୍ବାଦିକମାନଙ୍କୁ ଓଲଟା ପ୍ରଶ୍ନ କରିଥିଲେ ।

ଉତ୍ତରରେ ସେତେବେଳର 'ପ୍ରଜାତନ୍ତ୍ର'ର ପ୍ରତିନିଧି ବାଳକୃଷ୍ଣ କାନୁନ୍‌ଗୋ ପରିହାସ ଛଳରେ ତାଙ୍କୁ କହିଥିଲେ, "ଆଜ୍ଞା ! କ୍ୟାମେରା କ'ଣ ହେବ ? ଆଜି ଆଖି ଯାହା ଦେଖିଲା, ତାହା ଜୀବନରେ ଭୁଲି ହେବ ନାହିଁ । ହଁ, କିସ ପୁଣି ଦେଖା ନଯାଏ ଜୀଇଁଥିଲେ ଜୀବନେ ?"

ଦେଶରେ ଜରୁରୀ ପରିସ୍ଥିତି ଜାରୀ ଥିବା ସମୟରେ ସଞ୍ଜୟ ଗାନ୍ଧୀ ୧୯୭୭ ମସିହା ଜାନୁୟାରୀ ୨୯ ଓ ୩୦ ତାରିଖରେ ଦୁଇଦିନ ପାଇଁ ଓଡ଼ିଶା ଗସ୍ତରେ ଆସି କଟକ, ବ୍ରହ୍ମପୁର ଓ ଭବାନୀପାଟଣାରେ ସାଧାରଣ ସଭାମାନଙ୍କରେ ଉଦ୍‌ବୋଧନ ଦେଇଥିଲେ ।

କୌଣସି ସାମ୍ବିଧାନିକ ପଦବୀର ଅଧିକାରୀ ନଥିଲେ ବି ସଞ୍ଜୟ ଗାନ୍ଧୀଙ୍କୁ ପ୍ରଧାନମନ୍ତ୍ରୀଙ୍କ ଭଳି ଷ୍ଟାଟସ୍, ସୁରକ୍ଷା ଓ ସମ୍ମାନ ଦିଆଯାଉଥିଲା । ଓଡ଼ିଶାରେ ସଞ୍ଜୟଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ କେନ୍ଦ୍ରମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନିର୍ଦ୍ଦେଶରେ ରାଜ୍ୟ ସରକାରଙ୍କ ପକ୍ଷରୁ ସବୁମତେ ଉଦ୍ୟମ ହୋଇଥିଲା ।

ସେଥିସହିତ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ଅଫିସରେ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ସେହି ସଭାରେ ଶ୍ରୀ ଗାନ୍ଧୀଙ୍କୁ "ଋତୁରାଜ" ବୋଲି ବର୍ଣ୍ଣନା କରାଯାଇଥିଲା ।

ଏକ ଉଚ୍ଚ ପରମ୍ପରା ସମ୍ପନ୍ନ ପରିବାରର ଦାୟାଦ ହୋଇଥିଲେ ହେଁ, ସଞ୍ଜୟ ଗାନ୍ଧୀଙ୍କ ଆଚରଣ ଓ ବ୍ୟବହାର ଅତ୍ୟନ୍ତ ଅଶାଳୀନ ଓ ରୁକ୍ଷ ଥିଲା । କାହାକୁ କିପରି ସମ୍ମାନ ଦେବାକୁ ହୁଏ, ବୟସ୍କ ଓ ଅଭିଜ୍ଞମାନଙ୍କ ସହିତ କିପରି ଆଚରଣ ପ୍ରଦର୍ଶନ କରବାକୁ ହୁଏ, ସେକଥା ଜାଣିବା ପାଇଁ ତାଙ୍କର ଆଗ୍ରହ କିମ୍ବା ଧୈର୍ଯ୍ୟ ନଥିଲା ।

ଇନ୍ଦିରା ଗାନ୍ଧୀଙ୍କ ପରେ ସେ ଦେଶର ଭବିଷ୍ୟତ ପ୍ରଧାନମନ୍ତ୍ରୀ ହେବେ ବୋଲି ସାଧାରଣରେ ଏକ ଧାରଣା ସୃଷ୍ଟି ହୋଇଥିଲା । ଚାଟୁକାରମାନେ 'ଯୁବରାଜ'ଙ୍କୁ ସବୁବେଳେ ଘେରି ରହୁଥିବାରୁ ସଞ୍ଜୟଙ୍କ ମିଜାସ୍ ଖୁବ୍ ଚଢ଼ା ରହୁଥିଲା । ଏସବୁସତ୍ତ୍ୱେ ନିଜର ଜ୍ଞାନଗରିମା ଏବଂ ରାଜନୈତିକ ଅଭିଜ୍ଞତା ନଥିବାରୁ ସେ ଯେଉଁ ସଭାକୁ ଯାଉଥିଲେ, ଦୁଇ-ତିନି ମିନିଟ୍ ଭିତରେ ତାଙ୍କ ଭାଷଣ ଶେଷ କରିଦେଉଥିଲେ ।

ଓଡ଼ିଶା ଗସ୍ତର ଦ୍ୱିତୀୟ ଦିନ ସଞ୍ଜୟ ଗାନ୍ଧୀ ଭବାନୀପାଟଣା ଗସ୍ତରେ ଯାଇଥିଲେ । ଚିର ଅବହେଳିତ କଳାହାଣ୍ଡି ଜିଲ୍ଲାର ସଦର ମହକୁମାରେ ସ୍ୱତନ୍ତ୍ର ତୋରଣମାନ ନିର୍ମାଣ କରି

ଭାବୀ ପ୍ରଧାନମନ୍ତ୍ରୀଙ୍କୁ ସ୍ୱାଗତ କରିବା ପାଇଁ କଂଗ୍ରେସ ପକ୍ଷରୁ ଯୁବକଂଗ୍ରେସ ନେତା ଭୁପିନ୍ଦର ସିଂହ ଓ ଅନ୍ୟମାନଙ୍କ ଉପରେ ଦାୟିତ୍ୱ ଦିଆଯାଇଥିଲା ।

ତୋରଣ ନିର୍ମାଣ ପାଇଁ କାଠ, ବାଉଁଶ ସଂଗ୍ରହ କରିବା ଉଦ୍ଦେଶ୍ୟରେ ଜଙ୍ଗଲ ବିଭାଗ ପକ୍ଷରୁ ଯୁବକଂଗ୍ରେସ ନେତାମାନଙ୍କୁ ଅସ୍ଥାୟୀ ପରମିଟ ଦିଆଯାଇଥିଲା । ଏହାର ସୁଯୋଗ ନେଇ ସେମାନେ ଲକ୍ଷାଧିକ ଟଙ୍କାର ଶାଗୁଆନ ଜଙ୍ଗଲ ଲୁଟ୍ କରିଥିଲେ ବୋଲି ସେତେବେଳେ ଅଭିଯୋଗ ହୋଇଥିଲା । ମାତ୍ର କଂଗ୍ରେସ ଦଳ ଶାସନରେ ଥିବାରୁ ଜଙ୍ଗଲ ଲୁଟ୍ ଘଟଣାକୁ ଚପାଇ ଦିଆଯାଇଥିଲା ।

କଳାହାଣ୍ଡି ଜିଲ୍ଲାର ବିଧାୟକମାନଙ୍କ ମଧ୍ୟରେ ସେତେବେଳେ ରାଜ ପରିବାରର ତିନିଜଣ ସଦସ୍ୟ ଅନ୍ତର୍ଭୁକ୍ତ ଥିଲେ । ନିର୍ବାଚନ ପୂର୍ବରୁ କଳାହାଣ୍ଡିର ପୂର୍ବତନ ମହାରାଜା ପ୍ରତାପ କେଶରୀ ଦେଓ କଂଗ୍ରେସ ଦଳ ସମର୍ଥନରେ ଲୋକସଭାକୁ ପ୍ରାର୍ଥୀ ହେବା ପାଇଁ ଏକପ୍ରକାର ସ୍ଥିର ହୋଇସାରିଥିଲା ।

ମହାରାଜାଙ୍କ ସପକ୍ଷରେ କଂଗ୍ରେସ 'ଯୁବରାଜ'ଙ୍କ ସମର୍ଥନ ହାସଲ ପାଇଁ କଳାହାଣ୍ଡି ମହାରାଜଙ୍କ ଆତ୍ମୀୟ ଜୁନାଗଡ଼ର ବିଧାୟକ ଉଦିତ ପ୍ରତାପ ଦେଓ ଏବଂ କୋକସରାର ବିଧାୟକ ଚନ୍ଦ୍ରଭାନୁ ସିଂହଦେଓ ପ୍ରମୁଖ ନୂତନ ଖଦଡ଼ବସ୍ତ୍ର ପରିଧାନ କରି ଫୁଲମାଳ ଧରି ସଞ୍ଜୟଙ୍କୁ ଅଭ୍ୟର୍ଥନା ଜଣାଇବା ପାଇଁ ଛିଡ଼ା ହୋଇଥିବା ଦୃଶ୍ୟ ସେଦିନ ଅତ୍ୟନ୍ତ ଉପଭୋଗ୍ୟ ହୋଇଥିଲା ।

ଅଳିଅଳରେ ରାଜପ୍ରାସାଦରେ ବଢ଼ିଥିବା ରାଜପୁତ୍ରମାନଙ୍କୁ ଯେ ଦିନେ ଅନ୍ୟ ଜଣେ 'ଯୁବରାଜ'ଙ୍କୁ ସ୍ୱାଗତ ଜଣାଇବା ପାଇଁ ସର୍ବସାଧାରଣଙ୍କ ସ୍ଥାନରେ ଘଣ୍ଟା ଘଣ୍ଟା ଧରି ଅପମାନିତ ଅବସ୍ଥାରେ ଛିଡ଼ା ହେବାକୁ ପଡ଼ିବ, ସେକଥା ସେମାନେ ନିଜେ ଭାବି ନଥିଲେ । ସେଦିନ କଳାହାଣ୍ଡିବାସୀ ସେ ଦୃଶ୍ୟକୁ ପ୍ରଥମେ ବିଶ୍ୱାସ କରିପାରିନଥିଲେ ।

ନିର୍ଦ୍ଦିଷ୍ଟ ସମୟର ପ୍ରାୟ ତିନିଘଣ୍ଟା ବିଳମ୍ବରେ, ସଞ୍ଜୟ ସଭାସ୍ଥଳରେ ପହଞ୍ଚିଥିଲେ । କାର୍‌ରୁ ଓହ୍ଲାଇ କାହାକୁ କିଛି ନକହି ସିଧା ମଞ୍ଚ ଉପରକୁ ଚାଲିଯାଇଥିଲେ । ବାଟରେ ଫୁଲମାଳ ଧରି ଘଣ୍ଟା ଘଣ୍ଟା ଛିଡ଼ା ହୋଇଥିବା ଲୋକଙ୍କୁ ଅନାଇବାକୁ ତାଙ୍କର ଫୁରୁସତ୍ ନଥିଲା ।

ସେମାନଙ୍କ ହାତରେ ସେ ଫୁଲମାଳ ଶୀତଦିନର ମଧ୍ୟାହ୍ନରେ ମଉଳି ଯାଇଥିଲା । ତା'ଛଡା, ଯେଉଁମାନେ 'ଯୁବରାଜ'ଙ୍କ ମୂଲ୍ୟବାନ ପରାମର୍ଶ ଶୁଣିବାକୁ ପଶୁଭଳି ଟ୍ରକରେ ବୁହାହୋଇ ସକାଳୁ ଆସି ଅପେକ୍ଷା କରିଥିଲେ, କେବଳ ତିନିମିନିଟ୍‌ର ଭାଷଣରେ ସେମାନଙ୍କୁ ମଧ୍ୟ ହତାଶ ହେବାକୁ ପଡ଼ିଥିଲା ।

ସଂଜୟ ଗାନ୍ଧୀଙ୍କ ଭବାନୀପାଟଣା ଗସ୍ତର ବିବରଣୀ ସଂଗ୍ରହ କରିବାକୁ ମୁଁ ଓ ପିଟିଆଇର ପ୍ରତିନିଧି ଶରତ ଦାଶ ଭବାନୀପାଟଣା ଯାଇଥିଲୁ । ଭବାନୀପାଟଣା ଯିବାରେ ଆମର ଦୁଇଟି

ଉଦ୍ଦେଶ୍ୟ ଥିଲା । କର୍ତ୍ତବ୍ୟ ଦୃଷ୍ଟିରୁ 'ଯୁବରାଜ'ଙ୍କ ସଭାର ବିବରଣୀ ସଂଗ୍ରହ କରି ପଠାଇବା ପ୍ରଥମ ଉଦ୍ଦେଶ୍ୟ ଥିଲେ ହେଁ, ଅନ୍ୟ ଉଦ୍ଦେଶ୍ୟଟି ଥିଲା ଗସ୍ତଖର୍ଚ୍ଚ ବାବଦକୁ କିଛି ଟଙ୍କା ପାଇବା ।

ଆମେ ସଂଜୟ ଗାନ୍ଧୀଙ୍କ ସଭାର ପୂର୍ବଦିନ ସନ୍ଧ୍ୟାରେ ଭବାନୀପାଟଣାରେ ପହଞ୍ଚିଯାଇଥିଲୁ । ସକାଳୁ ନିତ୍ୟକର୍ମ ସାରି ସଭା ପାଇଁ ତିଆରି ହୋଇଥିବା ପେଣ୍ଡାଲର ସାଜସଜା, ପାରମ୍ପରିକ ବେଶରେ ଟ୍ରକରେ ବୁହାହୋଇ ସଭାସ୍ଥଳକୁ ଆସୁଥିବା ଆଦିବାସୀ ଓ ବିଭିନ୍ନ ସ୍ଥାନରେ ନିର୍ମିତ ତୋରଣ ସମ୍ପର୍କରେ ପ୍ରାରମ୍ଭିକ ବିବରଣୀ ପଠାଇ ଦେଇଥିଲୁ ।

ନିରାପତ୍ତା ଦୃଷ୍ଟିରୁ ଭିଭିଆଇପିଙ୍କ ପେଣ୍ଡାଲ ପାଖରେ ଦୁଇଟି ଟେଲିଫୋନ ଲାଇନ୍ ସଂଯୋଗ କରାଯାଇଥାଏ । ସେଥିରୁ ଗୋଟିଏ ସିକ୍ୟୁରିଟ୍ ଷ୍ଟାଫଙ୍କ ପାଇଁ ଏବଂ ଅନ୍ୟଟି ଆଇନକାନୁନ ଦାୟିତ୍ୱରେ ଥିବା ଜିଲ୍ଲା ଅଫିସରମାନଙ୍କ ପାଇଁ ଉଦ୍ଦିଷ୍ଟ ଥାଏ । ଓଡ଼ିଶା କ୍ୟାଡରର ଆଇପିଏସ ଅଫିସର ପୂର୍ଣ୍ଣଚନ୍ଦ୍ର ସେନାପତି ସେ ସମୟରେ କଳାହାଣ୍ଡି ଜିଲ୍ଲାର ଏସ୍‌ପି ଥିଲେ ।

ସେ ଆମକୁ ଭଲ ଭାବରେ ଜାଣିଥିଲେ । ତଥାପି ସେ ଆମକୁ ପେଣ୍ଡାଲ ପାଖକୁ ଛାଡି ନଥିଲେ । ଏଇ ପ୍ରଶ୍ନକୁ କେନ୍ଦ୍ରକରି ଆମ ଭିତରେ କଥା କଟାକଟି ହୋଇଥିଲା । ମୁଁ ତାଙ୍କୁ ସ୍ପଷ୍ଟ ଭାବରେ କହିଥିଲି, "ଦେଖନ୍ତୁ ଏସ୍‌ପି ସାହେବ, ଆମେ ଭୁବନେଶ୍ୱରରୁ ସଂଜୟ ଗାନ୍ଧୀଙ୍କ ସଭାର ବିବରଣୀ ସଂଗ୍ରହ କରିବାକୁ ଆସିଛୁ । ଆମେ ସେ କାମ ନିଶ୍ଚୟ କରିବୁ । ଆମକୁ କେବଳ ଗୁଳି କରି ଆପଣ ଅଟକାଇ ପାରିବେ । ତା ପୂର୍ବରୁ ନୁହେଁ । ଯଦି ଆପଣଙ୍କର ଶକ୍ତି ଓ କ୍ଷମତା ଅଛି ତେବେ ଗୁଳି କରନ୍ତୁ ।"

ଆମ ଭିତରେ ହେଉଥିବା କଥାବାର୍ତ୍ତା ସେଠାରେ ଉପସ୍ଥିତ ଥିବା ପୁଲିସ ଡିଆଇଜି ବି.କେ ପାଣିଗ୍ରାହୀଙ୍କ କାନରେ ପଡିଥିଲା । ଶ୍ରୀ ପାଣିଗ୍ରାହୀ ପୁଲିସ ଅଫିସର ହୋଇଥିଲେ ବି ଖୁବ୍ ଭଦ୍ର ଓ ଅମାୟିକ ବ୍ୟକ୍ତିଥିଲେ । ପଦବୀର ଅହଂ ତାଙ୍କୁ ଗ୍ରାସ କରିନଥିଲା ।

ସେ ଦୀର୍ଘଦିନୁ ଆମ ଦି'ଜଣଙ୍କୁ ଜାଣିଥିଲେ । ଘଟଣାରେ ହସ୍ତକ୍ଷେପ କରି ଭିଭିଆଇପିଙ୍କ ହେଲିକେପ୍ଟର ସଭାସ୍ଥଳ ଛାଡିଲା ପରେ ଟେଲିଫୋନ କରିବା ପାଇଁ ସେ ଆମକୁ ଅନୁମତି ଦେଇଥିଲେ । ସମ୍ବାଦ ସଂଗ୍ରହ ସମୟରେ ବେଳେବେଳେ କିପରି ଅସୁବିଧା ଦେଖାଦେଇଥାଏ, ସେ କଥା ଆଗରୁ କଳନା କରିବା ସବୁବେଳେ ସମ୍ଭବ ହୋଇନଥାଏ ।

ସଂଜୟ ଗାନ୍ଧୀଙ୍କ ସଭାପରେ ଆମର ଭୁବନେଶ୍ୱର ଫେରିଆସିବା କଥା । କିନ୍ତୁ ଭୁବନେଶ୍ୱରରୁ ଖବର ଗଲା, "ଆସିବା ପୂର୍ବରୁ କଳାହାଣ୍ଡି ମହାରାଜାଙ୍କୁ ସାକ୍ଷାତ କରି ତାଙ୍କର କଂଗ୍ରେସରେ ଯୋଗଦେବା ସମ୍ପର୍କରେ କିଛି ତଥ୍ୟ ସଂଗ୍ରହ କରି ଆଣ ।"

ଖବର ପାଇବା ପରେ ଆମେ ମହାରାଜା ପ୍ରତାପ କେଶରୀ ଦେଓଙ୍କ ସହିତ ଯୋଗାଯୋଗ କରିବାକୁ ଚେଷ୍ଟା କରିଥିଲୁ । ମାତ୍ର ସେଦିନ ତାହା ସମ୍ଭବ ହୋଇନଥିଲା । ତା'ପରଦିନ ସକାଳେ ମଧ୍ୟ ଆମର ଉଦ୍ୟମ ବ୍ୟର୍ଥ ହୋଇଥିଲା । ମହାରାଜାଙ୍କ ପହଡ ଭାଙ୍ଗିବା ପରେ

ଆମକୁ ଖବର ମିଳିଲା, "ଉପରଓଳି ପାଞ୍ଚଟା ସମୟରେ ମହାରାଜାଙ୍କ ସହିତ ଉଆସରେ ଭେଟ ହୋଇପାରିବ ।"

ପାଞ୍ଚଟା ବାଜିବାର ପନ୍ଦର ମିନିଟ୍ ପୂର୍ବରୁ ଆମେ ଯାଇ ରାଜ ଉଆସରେ ପହଞ୍ଚିଥିଲୁ । ଉଆସ ସାମନାରେ ଥିବା ପାର୍କରେ ଦରମରା କେତୋଟି ହରିଣ ବୁଲୁଥିଲେ । ଯତ୍ନ ଅଭାବରୁ ହରିଣଗୁଡିକ ରୋଗାକ୍ରାନ୍ତ ଦେଖାଯାଉଥିଲେ ।

ଉଆସର ପ୍ରବେଶ ପଥରେ ଜଣେ ବନ୍ଧୁକଧାରୀ ଜଗୁଆଳି ଥିଲେ । ତାଙ୍କ ପୋଷାକରୁ ରାଜପରିବାରର ଦୁଃସ୍ଥିତି ସମ୍ପର୍କରେ ସୂଚନା ମିଳୁଥିଲା । ସେ ଧୋତି ସାଙ୍ଗକୁ କୋଟ୍ ସଦୃଶ ଯେଉଁ ସାର୍ଟଟି ପିନ୍ଧିଥିଲେ, ସେଥିରୁ ରଙ୍ଗଛାଡି ବିକୃତ ଦେଖାଯାଉଥିଲା ।

ସେ ଆମକୁ "ସଲାମ ସାହେବ" କହି ଉଆସ ଭିତରକୁ ନେଇଗଲେ । ଉଆସ ଭିତରେ ଖୋଲାଜାଗାରେ ମହାରାଜା ଗୋଟିଏ ଆର୍ମଚେୟାରରେ ବସି ଦରବାର କରୁଥିଲେ । ପ୍ରଜାମାନେ କୃତ୍ୟକୃତ୍ୟ ହୋଇ ମହାରାଜାଙ୍କ ମୁଖନିଃସୃତ ବାଣୀ ଶୁଣୁଥିଲେ । ଆମକୁ ଦେଖି "ଭାଗୋ ଭାଗୋ" ବୋଲି ମହାରାଜା ଚିତ୍କାର କଲେ । ପାଞ୍ଚମିନିଟ୍ ଭିତରେ ସେ ଜାଗାଟି ସଫା ହୋଇଯାଇଥିଲା ।

ମହାରାଜାଙ୍କ ଇସାରାରେ ଆମ ପାଇଁ ଚା' ଜଳଖିଆ ଆସିଗଲା । କଥାବାର୍ତ୍ତା ବେଳେ ମହାରାଜା ତାଙ୍କ ଆଭିମୁଖ୍ୟ ସ୍ପଷ୍ଟ କରି କହିଥିଲେ ଯେ, ତାଙ୍କର କଂଗ୍ରେସ ଦଳରେ ଯୋଗ ଦେବାର ନାହିଁ । କେବଳ କଂଗ୍ରେସ ସମର୍ଥନରେ ସେ ସ୍ୱାଧୀନ ପ୍ରାର୍ଥୀ ଭାବରେ କଳାହାଣ୍ଡି ଲୋକସଭା ଆସନରୁ ନିର୍ବାଚନ ଲଢ଼ିବେ । ଆମେ ମହାରାଜାଙ୍କ ପାଖରୁ ବିଦାୟ ନେଇ ଆସିଲାବେଳକୁ ପାଖାପାଖି ସାତଟା ବାଜି ଯାଇଥିଲା । ସେଦିନ ଆମେ ଭବାନୀପାଟଣାରୁ ଫେରି ପାରିନଥିଲୁ ।

କଟକରେ ଥିବା ସମୟରେ ଆଉ କେତୋଟି ଘଟଣାକୁ ମୁଁ ଭୁଲିପାରି ନାହିଁ । ମୁଁ ରହୁଥିବା ସରକାରୀ କ୍ୱାଟର ନିକଟରେ ପୁଲିସ ଲାଇନ୍ ଥିଲା । ସେଠାରେ ସିପାହୀମାନଙ୍କ ସହିତ କେତେଜଣ ଅଫିସର ସରକାରୀ କ୍ୱାଟରରେ ରହୁଥିଲେ ।

ସେଠାରେ ଥିବା ଜଣେ ପୁଲିସ୍ ସର୍ଜେଣ୍ଟଙ୍କ ଘରେ ନାଣ୍ଡି ନାଁରେ ଗୋଟିଏ ଝିଅ କାମ କରୁଥିଲା । ବୟସ ବୋଧହୁଏ ନଅ, ଦଶବର୍ଷ ହେବ । ଛୋଟ ପିଲା । କାମଦାମରେ କେତେବେଳେ ଭୁଲ୍‌ଭଟକା ହୋଇଯାଉଥିଲା । ସେଥିପାଇଁ ସର୍ଜେଣ୍ଟଙ୍କ ପତ୍ନୀ ତାକୁ ଶାରୀରିକ ନିର୍ଯାତନା ଦେଉଥିଲେ । ଅନ୍ୟ ଉପାୟ ନପାଇ ଝିଅଟି ସେସବୁ ନୀରବରେ ସହିଯାଉଥିଲା ।

ଦିନେ ସେ ଅତ୍ୟାଚାର ଚରମସୀମାରେ ପହଞ୍ଚିଗଲା । ସେ ଦିନ ସନ୍ଧ୍ୟାରେ ବାସନ ଧୋଉଧୋଉ ସାନ ଝିଅଟି ହାତରୁ କପ୍‌ଟିଏ ପଡି ଭାଙ୍ଗିଗଲା । ଏତିକିରେ ବାବୁଆଣୀଙ୍କ କ୍ରୋଧ ପଞ୍ଚମକୁ ଉଠିଗଲା ।

ସେ ଗୋଟିଏ ଲୁହା ଖଡିକାକୁ ନିଆଁରେ ତତେଇ ନାଣ୍ଡି ଦେହରେ ଚିଆଁ ଲଗେଇ ଦେଲେ । ଲାଣ୍ଡି ଯନ୍ତ୍ରଣାରେ ଛଟପଟ ହେଉଥିଲା ବେଳେ ବାବୁଆଣୀଙ୍କ ମନରେ ଦୟା ହେବା ପରିବର୍ତ୍ତେ ସେ ଅଧିକ କଠୋର ହୋଇ ସେଇ ରାତିରେ ତାକୁ ଘରୁ ବାହାର କରିଦେଲେ ।

ସେହି ସମୟରେ ଓଡ଼ିଶା ହାଇକୋର୍ଟର ନ୍ୟାୟମୂର୍ତ୍ତୀ କୁଞ୍ଜବିହାରୀ ପଣ୍ଡା କ୍ୟାଣ୍ଟନମେଣ୍ଟ ରୋଡ୍‌ରେ ରହୁଥିଲେ । ନାଣ୍ଡି କାନ୍ଦି କାନ୍ଦି ତାଙ୍କ ଗେଟ୍ ପାଖକୁ ଯାଇଥିଲା । ଶ୍ରୀ ପଣ୍ଡା ନାଣ୍ଡିକୁ ନିଜ ଘରକୁ ନେଇ, ତା'ର ପ୍ରାଥମିକ ଚିକିତ୍ସାର ବ୍ୟବସ୍ଥା କରିଥିଲେ । ତାଙ୍କ ଠାରୁ ଖବରପାଇ କଟକରେ ଥିବା ୟୁଏନଆଇ ପ୍ରତିନିଧି, ଖବରଟିକୁ ତାଙ୍କ ଚାନେଲରେ ପ୍ରସାର କରିଦେଲେ । ଏ ଖବରରେ ଚାରିଆଡେ ହୋହାଲ୍ଲା ଆରମ୍ଭ ହୋଇଗଲା ।

ଯାହା କୁହାଯାଏ, ଭାଗ୍ୟ ଖରାପ ଥିଲେ ଯୋଉଠି ବାଘର ଭୟ, ସେଇଠି ସନ୍ଧ୍ୟା ହୁଏ । ସେଦିନ ବିଶେଷ କିଛି କାର୍ଯ୍ୟକ୍ରମ ନଥିବାରୁ ମୁଁ ବରିଷ୍ଠ ଫଟୋଗ୍ରାଫର ହୃଦୟନାଥ ଦାସଙ୍କ ସାଙ୍ଗରେ ପାରାଦୀପ ଚାଲିଯାଇଥିଲି ।

ପାରାଦୀପରେ ଆମର କିଛି କାମ ନଥିଲା । କିଛି ସମୟ ବୁଲି ଫେରିଆସିବା କଥା । ମାତ୍ର ସେଠାରେ ଘରୋଇ ଲୋକ ସମ୍ପର୍କ ବିଭାଗର ନିର୍ଦ୍ଦେଶକ ଓ ଅତିରିକ୍ତ ସଚିବ ଏ.ଏନ୍.ତିୱାରୀଙ୍କ ସହିତ ଭେଟ ହୋଇଗଲା ।

ଶ୍ରୀ ତିୱାରୀ ତାଙ୍କ ଝିଅଜ୍ୱାଇଁଙ୍କୁ ନେଇ ପାରାଦୀପ ବୁଲିବାକୁ ଯାଇଥିଲେ । ତାଙ୍କ ଜ୍ୱାଇଁ ଉତ୍ତର ପ୍ରଦେଶ କ୍ୟାଡରର ଆଇ.ଏ.ଏସ୍ ଅଫିସର ।

ସେମାନଙ୍କ ପାଇଁ ପାରାଦୀପର ନେହେରୁ ବଙ୍ଗଳାରେ ଲଞ୍ଚର ବ୍ୟବସ୍ଥା ହୋଇଥିଲା । ଶ୍ରୀ ତିୱାରୀଙ୍କ ସହିତ ମୋର ଦୀର୍ଘଦିନୁ ଭଲ ସମ୍ପର୍କ ଥିଲା । ଶ୍ରୀ ଦାସଙ୍କୁ ମଧ୍ୟ ସେ ଭଲ ଭାବରେ ଜାଣିଥିଲେ । ସେ ଆମକୁ ତାଙ୍କ ସାଙ୍ଗରେ ଲଞ୍ଚ କରିବାକୁ ଡାକିଲେ । ଆମେ ତାଙ୍କ ସାଙ୍ଗରେ ଏକାଠି ଖାଇଲୁ ।

ଖାଇସାରି କଟକ ଫେରି ଆସିଥିଲେ କିଛି ଅସୁବିଧା ହୋଇ ନଥାନ୍ତା । କିନ୍ତୁ ଶ୍ରୀ ତିୱାରୀ ତାଙ୍କ ସାଙ୍ଗରେ ସମୁଦ୍ର ଭିତରକୁ ବୁଲିଯିବାକୁ ଆମକୁ ଡାକିଲେ । ଆମେ ନାହିଁ କରି ପାରିଲୁ ନାହିଁ । ସମୁଦ୍ର ଭିତରୁ ଫେରିଲା ବେଳକୁ ପାଞ୍ଚଟା ବାଜି ଯାଇଥିଲା ।

ଆମେ କଟକରେ ପହଞ୍ଚିଲା ବେଳକୁ ରାତି ପ୍ରାୟ ଆଠଟା । ନାଣ୍ଡିକୁ ଚିଆଁ ଦିଆଯାଇଥିବା ଖବର ୟୁ.ଏନ.ଆଇ ମାଧ୍ୟମରେ କଲିକତାର ଅମୃତ ବଜାର ପତ୍ରିକା ଅଫିସରେ ପହଞ୍ଚି ଯାଇଥିଲା ।

ଆମେ କାହିଁ ସେ ଖବର ପଠାଇ ନାହୁଁ ସେଥିପାଇଁ ଅଫିସରେ ବ୍ୟସ୍ତ ହୋଇପଡ଼ିଥିଲେ । ସେତେବେଳେ ମୋବାଇଲ୍ ଫୋନର ବ୍ୟବସ୍ଥା ନଥିଲା । ସାଧାରଣ ଫୋନ ଯୋଗେ କଥାବାର୍ତ୍ତା ହେବା କଥା । ତା'ଛଡା ଆମର ନିଜର ଟେଲିପ୍ରିଣ୍ଟର ଥିଲା । ସେଥିରେ ବାର୍ତ୍ତା ପ୍ରେରଣ କରି ହେଉଥିଲା ।

କଲିକତା ଅଫିସରୁ ଭୁବନେଶ୍ୱରରେ ଥିବା ଗୋପାଳ ମିଶ୍ରଙ୍କୁ ଦୁଇ ତିନିଥର ଫୋନ ଆସିସାରିଥିଲା । ସେଥିରେ ଗୋପାଳବାବୁ ଛାନିଆ ହୋଇ ମତେ ଫୋନ କରିଥିଲେ । କିନ୍ତୁ ମୁଁ ପାରାଦୀପ ଯାଇଥିବାରୁ ମୋ ସହିତ କଥାବାର୍ତ୍ତା କରିବା ସମ୍ଭବ ହୋଇ ନଥିଲା ।

ମୁଁ ଘରକୁ ଫେରି ସବୁକଥା ଶୁଣିଲି । ସେତେବେଳକୁ ଆଉ ଖବର ସଂଗ୍ରହ କରି ପଠାଇବା ସମ୍ଭବପର ନଥିଲା । ସକାଳେ ପଠାଇବି ବୋଲି କହି ବିଶ୍ରାମ ନେଲି । ନାଣ୍ଡିକୁ ସାକ୍ଷାତ କରି ସମ୍ଭବ ହେଲେ ତା'ର ଗୋଟିଏ ଫଟୋ ସହିତ ବିଶଦ ବିବରଣୀ ପଠାଇବାକୁ ଗୋପାଳବାବୁ ମତେ କହିଥିଲେ ।

ସକାଳ ହେଲା ମାତ୍ରେ ମୁଁ ଦାସବାବୁ (ଫଟୋଗ୍ରାଫର)ଙ୍କ ପାଖକୁ ଗଲି । ତାଙ୍କୁ ସ୍କୁଟରରେ ବସାଇ ନାଣ୍ଡିର ଖୋଜ ଖବର ନେଲି । ନାଣ୍ଡି ସେତେବେଳକୁ ତୁଳସୀପୁରରେ ଥିବା 'ସର୍ଟ ଷ୍ଟେ ହୋମ୍'କୁ ଚାଲିଯାଇଥିଲା ।

ସେଠି କେମିତି ତା' ସାଙ୍ଗରେ ଦେଖା ହେବ, ଆମେ ତା'ର ଫଟୋ ଉଠାଇବୁ ସେ କଥା ବୁଝି ପାରିଲୁ ନାହିଁ । ଖବର ପାଇଲୁ, ଗିରିଜାବାବୁ (ସମାଜସେବୀ ଗିରିଜା ଭୂଷଣ ପଟ୍ଟନାୟକ) ସର୍ଟ ଷ୍ଟେ ହୋମ ସହିତ ସଂପୃକ୍ତ ଥିଲେ । ଗିରିଜାବାବୁ କଳାବିକାଶ କେନ୍ଦ୍ର ସାମନାରେ ଥିବା ସରକାରୀ କ୍ୱାଟରରେ ରହୁଥିଲେ । ତାଙ୍କ ପତ୍ନୀ କମଳ କୁମାରୀ ପଟ୍ଟନାୟକ ସରକାରୀ କଲେଜରେ ଅଧ୍ୟାପିକା ଥିବାରୁ ତାଙ୍କୁ ସେ କ୍ୱାଟର ମିଳିଥିଲା । ଶ୍ରୀମତୀ ପଟ୍ଟନାୟକ ହେଉଛନ୍ତି ବିଜୁ ପଟ୍ଟନାୟକଙ୍କ ଭାଣିଜୀ । ଅତ୍ୟନ୍ତ ସ୍ନେହୀ ମଣିଷ । ଘରକୁ ଗଲେ ଖୁବ୍ ଆଦର କରନ୍ତି । ନ ଖୁଆଇ ଛାଡନ୍ତି ନାହିଁ ।

ଆମେ ଯାଇ ଗିରିଜାବାବୁଙ୍କୁ ଦେଖାକରି ସବୁକଥା କହିଲୁ । ଆମ ହାତରେ ସମୟ କମ୍ ଥିବା ବିଷୟରେ ମଧ୍ୟ ତାଙ୍କୁ ଜଣାଇଥିଲୁ । ଗିରିଜାବାବୁଙ୍କ ସାଙ୍ଗରେ ଆମର ଭଲ ସମ୍ପର୍କ ଥିଲା । ପରିସ୍ଥିତିର ଗୁରୁତ୍ୱକୁ ଉପଲବ୍ଧି କରି ସର୍ଟ ଷ୍ଟେ ହୋମର ପରିଚାଳକଙ୍କୁ ଫୋନ କରି ସେ ଆମର ଉଦ୍ଦେଶ୍ୟ ସମ୍ପର୍କରେ କହିଲେ । ସେତେବେଳକୁ ସକାଳ ନ'ଅଟା ବାଜି ଯାଇଥିଲା ।

ସର୍ଟ ଷ୍ଟେ ହୋମରେ ପହଞ୍ଚି ଆମେ ନାଣ୍ଡିକୁ ଦେଖିଲୁ । ପତଳି ସାନ ଝିଅଟିଏ । ଛୋଟ ହାଫ୍ ପ୍ୟାଣ୍ଟ ଓ ଫ୍ରକ୍ ଖଣ୍ଡିଏ ପିନ୍ଧିଥିଲା । ଲୁହା ଖଡିକା ଚିହ୍ନରେ ପିଠି ଓ ପେଟର କିଛି ଅଂଶ ପୋଡି ଯାଇଥିଲା । ଆମେ ସେସବୁର ଫଟୋ ଉଠାଇବାକୁ ଚେଷ୍ଟା କଲାବେଳେ ସମସ୍ୟା ଉପୁଜିଥିଲା । ଛୋଟ ପିଲା ହେଲେ ବି ନାଣ୍ଡି ଫ୍ରକ କାଢ଼ିବାକୁ ପ୍ରଥମେ ରାଜି ହୋଇ ନଥିଲା । ବହୁତ ବୁଝାବୁଝି ପରେ ଆମେ ସଫଳ ହେଲୁ । ଦାସବାବୁ ଦୁଇ ତିନୋଟି ଫଟୋ ଉଠାଇଲେ ।

ସେତେବେଳେ ଆଜିକାଲି ଭଳି ଫଟୋଗ୍ରାଫି କୌଶଳ ଏତେ ଉନ୍ନତ ଧରଣର ନଥିଲା । କ୍ୟାମେରାରେ କଳାଧଳା ରିଲ୍ ପୁରାଇ ଫଟୋ ଉଠାଇବାକୁ ପଡୁଥିଲା । ସାଧାରଣ ଭାବରେ ଗୋଟିଏ ରିଲ୍‌ରେ ତିରିଶଟି ଫଟୋ ଉଠାଯାଇ ପାରୁଥିଲା । ରିଲ୍ ସରିଗଲେ କ୍ୟାମେରାରୁ

କାଢ଼ି ତାକୁ ଡାର୍କ ରୁମ୍‌ରେ ଡେଭଲପ ଓ ପ୍ରିଣ୍ଟ କରାଯାଉଥିଲା । ସେଥିପାଇଁ ଅତିକମ୍‌ରେ ଦୁଇଘଣ୍ଟା ସମୟ ଲାଗୁଥିଲା ।

ଆମ ପାଖରେ ସେତିକି ସମୟ ନଥିଲା । ଭୁବନେଶ୍ୱର ଯାଇ ବିମାନ ଯୋଗେ କଲିକତାକୁ ଫଟୋ ପଠାଇବା ଆମ ପାଇଁ ଏକମାତ୍ର ଉପାୟ ଥିଲା । ସେ ସମୟରେ କଲିକତା ଓ ଭୁବନେଶ୍ୱର ମଧ୍ୟରେ ଗୋଟିଏ ମାତ୍ର 'ଫକର ପ୍ରେଣ୍ଡସିପ୍' ବିମାନ ଚଳାଚଳ କରୁଥିଲା । ମୋର ଯାହା ମନେ ପଡୁଛି, ବୋଧହୁଏ ମଧ୍ୟାହ୍ନ ବାରଟା ବେଳେ ବିମାନଟି କଲିକତାରୁ ଆସି ଅଧଘଣ୍ଟା ପରେ ପୁଣି ଫେରିଯାଉଥିଲା ।

ନାଣ୍ଡିର ଫଟୋଉଠା ସରିଲା ବେଳକୁ ସମୟ ସକାଳ ଦଶଟା ହୋଇଥିଲା । କଟକରୁ ଭୁବନେଶ୍ୱର ସ୍କୁଟରରେ ଯିବାକୁ ଅତିକମ୍‌ରେ ଘଣ୍ଟାଏ ସମୟ ଲାଗୁଥିଲା । ସେତେବେଳ ପର୍ଯ୍ୟନ୍ତ ଆମର ଜଳଖିଆ ଖିଆ ହୋଇନଥିଲା । ଆମେ ସ୍ଥିର କଲୁ ପୂରା ଫିଲ୍ମରିଲ୍‌ଟି କଲିକତା ଅଫିସରକୁ ପଠାଇଦେଲେ ସେମାନେ ତାକୁ ପ୍ରିଣ୍ଟ୍ କରି କାଗଜରେ ଛାପିଦେବେ ।

ସେ ସମୟରେ ଭୁବନେଶ୍ୱର ବିମାନ ବନ୍ଦରଟି ଅତି ଛୋଟ ଥିଲା । ସିକ୍ୟୁରିଟି ବ୍ୟବସ୍ଥା ଏତେଟା କଡାକଡି ନଥିଲା । ବିମାନର ସିଢ଼ି ପର୍ଯ୍ୟନ୍ତ ଯାଇହେଉଥିଲା । ଆମେ କଟକରୁ ସିଧାଯାଇ ବିମାନ ବନ୍ଦରରେ ପହଞ୍ଚିଲୁ । ସେଠାରେ ବିମାନର କ୍ୟାପେଟନଙ୍କୁ ଦେଖାକରି ଫଟୋ ଫିଲ୍ମ ପ୍ୟାକେଟ୍‌ଟି ତାଙ୍କ ହାତରେ ପଠାଇଦେଲୁ । ସେ ପ୍ୟାକେଟରେ ନାଣ୍ଡିର ଚିଆଁ ବିଷୟରେ ନ୍ୟୁଜ୍ ମଧ୍ୟ ଥିଲା ।

ଫଟୋ ଓ ନ୍ୟୁଜ୍ ପଠାଇସାରି ଫେରିଲା ବାଟରେ ଆମେ ଗୋପାଳବାବୁଙ୍କୁ ଦେଖାକଲୁ । ସେ ଆମ କାମର ତାରିଫ୍ କଲେ ସତ, ମାତ୍ର ଖୁସି ହୋଇ ପାରିନଥିଲେ । କାରଣ ଅଫିସରୁ ଏ ସମ୍ପର୍କରେ ବାଃ ବାଃ ମାରିବା ପାଇଁ ତାଙ୍କ ପାଖରେ ସୁଯୋଗ ନଥିଲା ।

ଭୁବନେଶ୍ୱରରୁ ଫେରି କଟକରେ ପହଞ୍ଚିଲା ବେଳକୁ ଦିନ ଦୁଇଟା । ଗାଧୁଆପାଧୁଆ କରି ଏକାଥରେ ମଧ୍ୟାହ୍ନ ଭୋଜନ ହେଲା । ଆମେ ପୂରା ଥକି ଯାଇଥିଲୁ । ଖାଇସାରି ବିଛଣାରେ ବସୁବସୁ ମୁଁ ଶୋଇ ଯାଇଥିଲି । ପରଦିନ ପ୍ରଥମ ପୃଷ୍ଠାରେ ନାଣ୍ଡିର ଫଟୋ ଥାଇ ବଡ଼ ବଡ଼ ଅକ୍ଷରରେ ସମସ୍ତ ଖବର ଅମୃତ ବଜାର ପତ୍ରିକାରେ ଛପା ଯାଇଥିଲା ।

ପୂର୍ବଦିନର ପରିଶ୍ରମରେ ଆମେ ଯେତିକି କଷ୍ଟ କରିଥିଲୁ ପତ୍ରିକାରେ ଫଟୋ ସହିତ ନ୍ୟୁଜ୍ ପ୍ରକାଶ ପାଇବା ପରେ ସେ କଷ୍ଟ କୁଆଡ଼େ ଉଭେଇ ଯାଇଥିଲା । ଏ ଘଟଣା ପରେ ନାଣ୍ଡି କୁଆଡ଼େ ଗଲା, କୋଉଠି ରହିଲା, କ'ଣ କଲା, କାର୍ଯ୍ୟବ୍ୟସ୍ତତା ଭିତରେ ସେ ଖବର ମୁଁ ଆଉ ରଖିପାରି ନଥିଲି ।

୧୯୮୦ ମସିହା ଅକ୍ଟୋବର ମାସରେ ଘଟିଥିବା ଛବିରାଣୀ ହତ୍ୟା ଘଟଣା ସାରା ଓଡ଼ିଶାରେ ଚାଞ୍ଚଲ୍ୟ ଖେଳାଇ ଦେଇଥିଲା । ପ୍ରଥମେ ମୁଁ ସେ ଖବର ପାଇନଥିଲି । ସେତେବେଳେ

ଅମୃତ ବଜାର ପତ୍ରିକା ଅଫିସ ବାରବାଟୀ ଷ୍ଟାଡିୟମର ୧୦ ନମ୍ବର କୋଠରୀରେ ଚାଲୁଥିଲା । ୧୧ ନମ୍ବର କୋଠରୀରେ 'ଜ୍ଞାନମଣ୍ଡଳ' ଅଫିସ କାର୍ଯ୍ୟ କରୁଥିଲା । ମୁଁ ପ୍ରତିଦିନ ସକାଳେ ଅଫିସ ଗଲେ ଜ୍ଞାନମଣ୍ଡଳ ପ୍ରଣେତା ବିନୋଦ କାନୁନ୍‌ଗୋଙ୍କୁ ଦେଖାକରି ପଦେ, ଦି'ପଦ କଥା ହେଉଥିଲି ।

ଶ୍ରୀ କାନୁନ୍‌ଗୋ ବାସ୍ତବରେ ଜଣେ ସାଧକ ଥିଲେ । ପାଠ ନବମ ଶ୍ରେଣୀ ପର୍ଯ୍ୟନ୍ତ । ବିଜ୍ଞାନର ଜଟିଳ ବିଷୟବସ୍ତୁକୁ ସେ ଯେପରି ସରଳ ଭାଷାରେ ବୁଝାଇ ଜ୍ଞାନମଣ୍ଡଳରେ ସ୍ଥାନୀତ କରିଥିଲେ, ତାକୁ ଦେଖିଲେ ତାଙ୍କ ସାଧନା ପାଖରେ ମୁଣ୍ଡ ନଇଁଯାଏ । ଜ୍ଞାନମଣ୍ଡଳ ସହିତ ସାଧାରଣ ପାଠକମାନଙ୍କ ପାଇଁ ସେ ଅନେକ ପୁସ୍ତକ ରଚନା କରିଯାଇଛନ୍ତି ।

ସବୁଦିନ ପରି ସେଦିନ ସକାଳେ ମୁଁ ତାଙ୍କୁ ଦେଖାକଲାବେଳେ ସେ ମତେ କହିଲେ, "କିରେ ଏଠି କ'ଣ ବୁଲୁଛୁ ? ତମ ଗାଁ' ପାଖରେ ପରା ଗୋଟାଏ ମର୍ଡର ହୋଇଛି । ଜଣେ ସାମ୍ବାଦିକର ସ୍ତ୍ରୀଙ୍କୁ କିଛିଲୋକ ଅତ୍ୟାଚର କରି ମାରିଦେଇଛନ୍ତି । ସେଠିକି ଯାଇ ଖବର ଆଣୁନୁ । ହଁ ଗଲାବେଳେ ସାଙ୍ଗରେ ଦାସବାବୁଙ୍କୁ ନେଇଗଲେ କିଛି ଫଟୋ ମିଳିଯିବ ।"

ମୁଁ ଯାଇ ଦାସବାବୁଙ୍କୁ ଦେଖାକଲି । କଟକ ସହରର ବକ୍ସି ବଜାର ନିକଟରେ ଥିବା ପୁରୁଣା ରେଡିଓ ଷ୍ଟେସନ ସାମନାରେ ତାଙ୍କର ଗୋଟିଏ ଫଟୋ ଷ୍ଟୁଡିଓ ଥିଲା । ଅନେକ ସମୟରେ ଦାସବାବୁ ସେଠାରେ ବସୁଥିଲେ । କୋଉଠି ସଭାସମିତି ହେଲେ କିମ୍ବା ଅନ୍ୟାନ୍ୟ ଘଟଣା ଘଟିଲେ ଆମେ ଦିଜଣ ଏକାଠି ଯାଉଥିଲୁ ।

ଦାସବାବୁଙ୍କର ଗୋଟିଏ ପୁରୁଣା ରାଜଦୁତ୍ ମଟର ସାଇକେଲ ଥିଲା । ଆମେ ସେହି ମଟର ସାଇକେଲରେ ଅନେକ ଯାଗାକୁ ଯାଇଛୁ ।

ଦାସବାବୁ ମୋ କଥା ଶୁଣି ଘଟଣାସ୍ଥଳକୁ ଯିବାକୁ ରାଜି ହୋଇଗଲେ । ଫଟୋ ଉଠାଇବା ଦାସବାବୁଙ୍କର ଉଭୟ ପେସା ଓ ନିଶା ଥିଲା ।

ଆମେ ଖାଇସାରି ବାହାରିଲୁ । କଟକ-ଜଗତସିଂହପୁର ରାସ୍ତାରେ ପଡ଼େ ବିରିଡି । କଟକରୁ ବିରିଡିର ଦୂରତା କୋଡିଏ କିଲୋମିଟର । ବିରିଡିରେ ବ୍ଲକ ଅଫିସ୍ ସହିତ ଛୋଟିଆ ବଜାରଟିଏ ଥିଲା । ସପ୍ତାହରେ ଦି'ଥର ବିରିଡି ହାଟ ହୁଏ । ତା' ଉପରେ ଆଖପାଖ ଅଞ୍ଚଳ, ବିଶେଷକରି ଧୋୟା ବାଇଶିମୌଜାର ଲୋକେ ଅନେକ ପରିମାଣରେ ନିର୍ଭରଶୀଳ । ବିରିଡି ହାଟ ପାଖରେ ଛବିରାଣୀଙ୍କୁ ହତ୍ୟା କରାଯାଇଥିବା ସମ୍ପର୍କରେ ବିନୋଦବାବୁ ମତେ ସୂଚନା ଦେଇଥିଲେ । ସେଥିପାଇଁ ଆମେ ପ୍ରଥମେ ବିରିଡି ହାଟକୁ ଯାଇଥିଲୁ ।

ଆମେ ଯାଇ ବିରିଡି ହାଟରେ ପହଞ୍ଚିଲା ବେଳକୁ ଚାରିଟା ବାଜି ଯାଇଥିଲା । ସେଦିନ ହାଟପାଳି ନଥିଲା । ତଥାପି କିଛି ଘ' ଜଳଖିଆ ଦୋକାନ ଖୋଲାଥିଲା । କିଛିଲୋକ କାରବାର ହେଉଥିଲେ । ଆମେ ଯାଇ ଦେଖିଲୁ ଗୋଟିଏ ସ୍ଥାନରେ ଜଣେ ପୁଲିସ୍ ସବ୍ ଇନିସପେକ୍ଟର

ଚୌକୀଟିଏ ପକାଇ ଯାତ୍ରାରେ ରାଜା ବସିବା ଢ଼ଙ୍ଗରେ ବସିଥିଲେ । ପାଖରେ ଥିବା ଗୋଟିଏ ବେଞ୍ଚରେ ଜଣେ ଭଦ୍ରଲୋକ ବସିଥିଲେ । ଆଖପାଖରେ ଦି ତିନିଜଣ ପୁଲିସ୍ କନେଷ୍ଟବଳ ବୁଲାବୁଲି କରୁଥିଲେ ।

ଆମକୁ ଦେଖି ଚଉକିରେ ବସିଥିବା ଜଗତସିଂହପୁର ଥାନାର ଅଫିସର ରବି ପୃଷ୍ଟି ନାଟକୀୟ ଢ଼ଙ୍ଗରେ ପଚାରିଲେ, "ତମେ ସବୁ କିଏ, କୁଆଡ଼େ ଆସିଛ ?"

ଆମ ପାଖରେ ପ୍ରେସ୍ କାର୍ଡ ଥିଲା । ସେତେବେଳେ ଲୋକସମ୍ପର୍କ ବିଭାଗ ଘରୋଇ ବିଭାଗର ଗୋଟିଏ ଅଂଶ ଥିଲା । ସେଥିପାଇଁ ସ୍ୱୀକୃତିପ୍ରାପ୍ତ ସାମ୍ବାଦିକମାନଙ୍କୁ ଦିଆଯାଉଥିବା କାର୍ଡରେ ହୋମ (ପି.ଆର) ବୋଲି ଲେଖାଯାଉଥିଲା ଓ ସେଥିରେ ଅଶୋକ ସ୍ତମ୍ଭର ଚିତ୍ର ରହୁଥିଲା । ମୁଁ ପୁଲିସ୍ ହାକିମଙ୍କୁ ମୁଣ୍ଡ ନୁଆଁଇ ନମସ୍କାର କର କହିଲି, "ଆମେ ଏଇ ପାଖରେ ଜଣେ ବନ୍ଧୁଙ୍କ ଘରକୁ ଆସିଥିଲୁ । ବାଟରେ ଶୁଣିଲୁ ଏଠାରେ କ'ଣ ଗୋଟାଏ ଗଣ୍ଡଗୋଳ ଘଟିଛି । ସେଥିପାଇଁ ଆପଣ ଆସିଛନ୍ତି । ଆପଣଙ୍କର ଏ ଅଞ୍ଚଳରେ ପୁଲିସ୍ ଅଫିସର ଭାବରେ ଖୁବ୍ ସୁନାମ ଅଛି । ଆପଣଙ୍କୁ ଦେଖାକରି କଥାବାର୍ତ୍ତା ହେବା ପାଇଁ ଏଠାକୁ ଚାଲିଆସିଲୁ ।"

ଶ୍ରୀ ପୃଷ୍ଟି ଜଣେ ପଇସାଖିଆ ଦୁର୍ନୀତିଗ୍ରସ୍ତ ଅଫିସର ଥିଲେ । ତାଙ୍କ ବ୍ୟବହାର ମଧ୍ୟ ରୁକ୍ଷ ଥିଲା । ସେ ଆମକୁ ବସିବାକୁ ମଧ୍ୟ କହିଲେ ନାହିଁ ।

ମୁଁ ମୋର ମନର ପ୍ରତିକ୍ରିୟାକୁ ପ୍ରକାଶ ନକରି ତାଙ୍କୁ ସାର୍ ବୋଲି ସମ୍ବୋଧନ କରି କ'ଣ ଘଟିଛି ବୋଲି ପଚାରିଲି । ସେ ଚଉକିରେ ବସି ନିଜ ନିଶ ମୋଡୁଥିଲେ ।

ବେଖାତିର ଢ଼ଙ୍ଗରେ ପାଖରେ ବସିଥିବା ଲୋକଙ୍କୁ ଦେଖାଇ କହିଲେ, "ହଁ, ୟା ସ୍ତ୍ରୀକୁ କିଛି ଲୋକ ମାରି ଦେଇଥିବା ଖବର ଶୁଣି ମୁଁ ଇନକ୍ୱାରୀ କରିବାକୁ ଆସିଛି ।" ମୁଁ ଅତି ନମ୍ରତାର ସହିତ ତାଙ୍କୁ ପଚାରିଲି, ସାର୍ ଆମେ ଏ ବାବୁଙ୍କ ସହିତ କିଛି କଥାବାର୍ତ୍ତା କରିପାରିବୁ । "ହଁ, ହଁ, ତାଙ୍କ ସାଙ୍ଗରେ କଥା ହୋଇପାର" ବୋଲି ସେ ହାଲୁକା ଭାବରେ ଆମକୁ କହିଥିଲେ । ମୁଁ ବିରିଡି ଯିବା ପୂର୍ବରୁ ଘଟଣା ସମ୍ପର୍କରେ କିଛି ତଥ୍ୟ ସଂଗ୍ରହ କରିଥିଲି ।

ବେଞ୍ଚରେ ବସିଥିବା ଲୋକ ଥିଲେ ନବ କିଶୋର ମହାପାତ୍ର । ସେ ବାଇଶିମୌଜା ଅନ୍ତର୍ଗତ ତିହସାଇବିରି ଗାଁ'ର ବାସିନ୍ଦା । ଛବିରାଣୀ ନାମକ ଜଣେ ବଙ୍ଗୀୟ ଯୁବତୀଙ୍କୁ ଭଲ ପାଇ ସେ ବିବାହ କରିଥିଲେ । ଛବିରାଣୀ ବଙ୍ଗାଳୀ ହେଲେ ବି ପୁରୀର ମୂଳ ବାସିନ୍ଦା । ଉଭୟ ବଙ୍ଗଳା ଓ ଓଡ଼ିଆ ଭଲ ଭାବରେ କହିପାରୁଥିଲେ । ଗାଁ'ରେ ଚଳିବା ପାଇଁ ରୋଜଗାରର ବ୍ୟବସ୍ଥା ନଥିବାରୁ ସେମାନେ ବିରିଡିରେ ଗୋଟିଏ ଘର ଭଡା ନେଇ ରହୁଥିଲେ । ପରିବାର କହିଲେ ସ୍ୱାମୀ, ସ୍ତ୍ରୀ ଓ ଦେଢ଼ବର୍ଷର ପୁଅ ତାନି ।

ନବ କିଶୋର ପ୍ରଥମେ ହକର ଥିଲେ । ପରେ ପ୍ରଗତିବାଦୀର ଏଜେଣ୍ଟ ଭାବରେ କାର୍ଯ୍ୟ କଲେ । ସେଥିସହିତ ସେ ଅଞ୍ଚଳର କିଛି ଖବର ମଧ୍ୟ ସେ ବିଭିନ୍ନ ପତ୍ରପତ୍ରିକାକୁ

ପଠାଉଥିଲେ ଓ ସେସବୁ ପ୍ରକାଶ ପାଉଥିଲା । ଏଜେଣ୍ଟ ବାବଦକୁ ପାଉଥିବା କମିଶନ ଓ ବିଭିନ୍ନ ସମ୍ବାଦପତ୍ରକୁ ପଠାଉଥିବା ନ୍ୟୁଜ୍ ପାଇଁ ଯୋଉ ପାରିଶ୍ରମିକ ପାଉଥିଲେ ସେଥିରେ ତାଙ୍କର ଗୁଜୁରାଣ ମେଣ୍ଟି ଯାଉଥିଲା । ସମ୍ବାଦ ପଠାଇବା କାମରେ ଛବିରାଣୀ, ସ୍ୱାମୀ ନବ କିଶୋରଙ୍କୁ ସାହାଯ୍ୟ କରୁଥିଲେ ।

୧୯୮୦ ମସିହା ବେଳକୁ ବ୍ରହ୍ମପୁର ଅଞ୍ଚଳର ରାଜୁ ରାଓ ଦୋରା ନାମକ ଜଣେ ଚୋରା ବେପାରୀ ବିରିଡି ଆସି ତାଙ୍କ ଆସ୍ଥାନ ଜମେଇ ସାରିଥିଲେ । ବାହାରକୁ ସେ ସିମେଣ୍ଟ ଓ ଚାଉଳର ଡିଲର ଭାବରେ ଜଣାଶୁଣା ଥିଲେ ବି ଅବକାରୀ ଜିନିଷ କାରବାରରେ ତାଙ୍କର ଅଧିକ ରୋଜଗାର ହେଉଥିଲା । ସେଇ ପଇସା ବଳରେ ଶ୍ରୀ ଦୋରା, ସ୍ଥାନୀୟ ପୋଲିସ୍, କଂଗ୍ରେସ ଦଳର ନେତା, ବିଡ଼ିଓ ପ୍ରମୁଖଙ୍କୁ ହାତରେ ରଖି ତାଙ୍କ ସାମ୍ରାଜ୍ୟ ଚଳାଉଥିଲେ ।

ରାଜୁ ରାଓଙ୍କ ଅବକାରୀ ପଦାର୍ଥ କାରବାର ଓ କଣ୍ଟ୍ରୋଲ ସାମଗ୍ରୀ ଚୋରାରେ ବିକ୍ରୀ ସମ୍ପର୍କରେ ନବ କିଶୋର ମଝିରେ ମଝିରେ ସମ୍ବାଦ ପଠାଉଥିଲେ । ସେସବୁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଉଥିଲା ।

ସେ ସମ୍ବାଦକୁ ଭିତ୍ତିକରି ରାଜୁ ଦୋରାଙ୍କ ଗୋଦାମ ଉପରେ ଥରେ ଚଢ଼ାଉ କରାଯାଇ ପ୍ରାୟ ପଚାଶ ହଜାର ଟଙ୍କାର ଚୋରା ଗଞ୍ଜେଇ ଓ ଅଫିମ ଜବତ କରାଯାଇଥିଲା । ମାତ୍ର କିଛି ହାତ ଗୁଞ୍ଜା ଦେଇ ଶ୍ରୀ ଦୋରା ସେଥିରୁ ଖଲାସ ହୋଇଯାଇଥିଲା ।

ଯେଉଁ ବାବୁମାନେ ଶ୍ରୀ ଦୋରାଙ୍କ ପାଖରୁ ଟଙ୍କା ନେଇଥିଲେ, ସେମାନେ ନବ କିଶୋର ପାଖରୁ ଚୋରା କାରବାର ବିଷୟରେ ଖବର ପାଇଥିଲେ ବୋଲି ତାଙ୍କୁ ଜଣାଇ ଦେଇଥିଲେ ।

ଏଥିରେ ଶ୍ରୀ ଦୋରା ଓ ତାଙ୍କ ସହଯୋଗୀମାନେ ଉତ୍‌କ୍ଷିପ୍ତ ହୋଇଥିଲେ । ନବ କିଶୋରଙ୍କ ମୁହଁ କିପରି ସବୁଦିନ ପାଇଁ ବନ୍ଦ କରିଦିଆଯିବ, ସେଥିପାଇଁ ସେମାନଙ୍କ ପକ୍ଷରୁ ଯୋଜନା ପ୍ରସ୍ତୁତ ହେଲା ।

ସେମାନେ ପ୍ରଥମେ ନବ କିଶୋରଙ୍କୁ ଧମକଚମକ ଦେଇଥିଲେ । ନିଜର କାର୍ଯ୍ୟଧାରା ନବଦଳାଇଲେ ତାଙ୍କୁ ଜୀବନରୁ ମାରିଦେବେ ବୋଲି କହିଥିଲେ । ହେଲେ ନବ କିଶୋର ସେମାନଙ୍କ କଥାକୁ ଖାତିର୍ କରିନଥିଲେ । ପୂର୍ବଭଳି ସେମାନଙ୍କ କଳା କାରବାର ସଂପର୍କରେ ବିଭିନ୍ନ ସମ୍ବାଦପତ୍ରକୁ ପଠାଉଥିଲେ ।

ମୁଁ ଘଟଣା ସମ୍ପର୍କରେ ଯାହା ଶୁଣିଥିଲି ସତ୍ୟାସତ୍ୟ ଜାଣିବା ପାଇଁ ମୋର ଆଗ୍ରହ ବଢ଼ିଥିଲା । ବିରିଡି ହାଟରେ ବେଞ୍ଚ ଉପରେ ବସିଥିବା ବ୍ୟକ୍ତି ନବ କିଶୋର ମହାପାତ୍ର ବୋଲି ମୁଁ ପୁଲିସ୍ ଅଫିସରଙ୍କ ଠାରୁ ଜାଣିବା ପରେ ମୋର କାମ ଆରମ୍ଭ କଲି । ମୁଁ ମୋ ପକେଟ୍‌ରେ ଥିବା ଆକ୍ରିଡେସନ କାର୍ଡ କାଢ଼ି ନବ କିଶୋରଙ୍କୁ ଦେଖାଇ କହିଲି, "ତମ ପାଖରେ ଯୋଉ ପୁଲିସ୍‌ବାବୁ ବସିଛନ୍ତି, ତାଙ୍କ ବାପା କଟକରେ ଥାଆନ୍ତି । ତାଙ୍କ ବାପାଙ୍କ ବାପା ଭୁବନେଶ୍ୱରରେ

ରହୁଛନ୍ତି । ସେହି ବାବୁ ଏହି କାର୍ଡ ମୋତେ ଦେଇଛନ୍ତି । ଏ ପୁଲିସ୍ ବାବୁ ତମର କିଛି କରିପାରିବେ ନାହିଁ। ପ୍ରକୃତରେ କ'ଣ ଘଟିଛି ମୋତେ ଖୋଲିକରି କହ ।"

ମୋ କଥା ଶୁଣି ପୁଲିସ୍ ସବ୍‌ଇନ୍ସପେକ୍ଟରଙ୍କ ଚେତା ପଶିଲା । ଚଉକିରେ ଯାତ୍ରାର ରାଜା ଭଳି ବସିଥିବା ପୋଜ୍‌ରୁ ସେ ଟିକେ ସଳଖ ହୋଇ ବସିଲେ । ତାଙ୍କ ପାଖରେ ଛିଡା ହୋଇଥିବା କନଷ୍ଟେବଲକୁ ଚା' ଆଣିବାକୁ ଇସାରା ଦେଲେ ।

ମୁଁ ଅନୁଭବ କଲି ମୋର ପରିଚୟ ପାଇ ସେ ବୋଧେ ଟିକିଏ ନରଭସ ହୋଇଯାଇଥିଲେ । ମୁଁ ସେପରି ପରିସ୍ଥିତିର ସୁଯୋଗ ନେବାକୁ ଚାହିଁଥିଲି । ଦାସବାବୁଙ୍କୁ ତାଙ୍କର ଫଟୋ ଉଠାଇବାକୁ କହିଲି । ସେ ପ୍ରଥମେ ଆପତ୍ତି କରିଥିଲେ ।

ମୁଁ ତାଙ୍କୁ କହିଲି, "ଦେଖନ୍ତୁ ଆପଣ ଜଣେ ପବ୍ଲିକ୍ ସର୍ଭେଣ୍ଟ । ସର୍ବସାଧାରଣ ସ୍ଥାନରେ ବସିଛନ୍ତି । ସେଥିରେ ଫଟୋ ଉଠାଇବା ପାଇଁ ଏତେ ଭୟ କାହିଁକି ? ଦାସବାବୁ ସାଙ୍ଗେ ସାଙ୍ଗେ ତାଙ୍କ ଫଟୋ ଉଠାଇବା ସହିତ ପାଖରେ ବସିଥିବା ନବକିଶୋରଙ୍କ ଫଟୋ ମଧ ଉଠାଇଥିଲେ ।"

ମୋ ପାଖରୁ ସାହାସ ପାଇ ନବ କିଶୋର ଘଟଣାର ଏକ ବିବରଣୀ ଦେଇ କହିଥିଲେ, "୧୯୮୦ ମସିହା ଅକ୍ଟୋବର ୩ ତାରିଖ ସକାଳେ, ମୁଁ ମୋ ସ୍ତ୍ରୀ ଛବିରାଣୀ ଓ ପୁଅକୁ ସାଙ୍ଗରେ ଧରି ବିରିଡି ବସ୍‌ଷ୍ଟାଣ୍ଡରେ ଅପେକ୍ଷା କରିଥିଲି । ଏ ଖବର ପାଇ ରାଜୁ ରାଓଙ୍କ ସମର୍ଥକ ବୀର ମାଣିଆ ଓ ଅନ୍ୟମାନେ ଆମକୁ ଘୋଷାରି ଘୋଷାରି ବିରିଡି ହାଟରେ ଥିବା କଂଗ୍ରେସ ଅଫିସକୁ ନେଇଯାଇଥିଲେ । ସେଠାରେ ମତେ ସେମାନେ ଖୁବ୍ ମାଡ଼ ମାରିଥିଲେ । କିଛି ସମୟ ପରେ ସେମାନେ ଛବିରାଣୀ ଓ ପୁଅକୁ ଛାଡିଦେଇ ମତେ ସେ ଘରେ ତାଲାପକାଇ ରଖିଲେ । ଶେଷରେ ମୋ ପାଖରୁ ଦୁଇଟି ସାଦାକାଗଜରେ ଦସ୍ତଖତ ନେବାପରେ ଛାଡି ଦେଇଥିଲେ ।

ଆମେ ସକାଳୁ କିଛି ଖାଇବା ପାଇଁ ସୁଯୋଗ ପାଇନଥିଲୁ । ଛବିରାଣୀ ଘରେ ରୋଷେଇ କରିବା ପାଇଁ ଯୋଗାଡ଼ କରୁଥିଲା ବେଳେ, ସରପଞ୍ଚ ଦିବାକର ନାୟକ ତାଙ୍କୁ ଶୀଘ୍ର ଘର ଛାଡି ଚାଲିଯିବାକୁ ଧମକ ଦେଇଥିଲେ । ଘର ନଛାଡିଲେ ଲୋକେ ଘରେ ନିଆଁ ଲଗାଇ ପୋଡ଼ିଦେବେ ବୋଲି କହିଥିଲେ । ଧମକରେ ଭୟଭୀତ ହୋଇ ଆମେ ବିରିଡି ଛାଡି ବାଇଶିମୌଜାକୁ ଚାଲିଯିବାକୁ ସ୍ଥିର କଲୁ ।

ବିରିଡିରୁ ବାଇଶିମୌଜା ଯିବାକୁ ହେଲେ ପ୍ରଥମେ ମାଛ ଗାଁ' କେନାଲ ଉପରେ ଥିବା କାଠପୋଲ ପାରିହେବାକୁ ପଡୁଥିଲା । ପୋଲ ପାରିହେଲା ପରେ ବିଲୁଆଖାଇ ନଈ । କାଠଯୋଡିର ଏକ ଶାଖା । ବର୍ଷାଦିନ ବ୍ୟତୀତ ଅନ୍ୟ ଦିନମାନଙ୍କରେ ସାଧାରଣତଃ ଶୁଖିଲା ଥାଏ ।

ସନ୍ଧ୍ୟା ପ୍ରାୟ ସାତଟା ବେଳକୁ ଆମେ ଘରୁ ଗୋଡ କାଢ଼ିଥିଲୁ । ଦିନଯାକ କିଛି ଖିଆପିଆ ହୋଇ ନଥିଲା । ସାଙ୍ଗରେ ଗୋଟିଏ ଝୁଲା ବ୍ୟାଗରେ ନିଜର ଧୋତି, ଗାମୁଛା, ଛବିରାଣୀର ଖଣ୍ଡେ ଘରପିନ୍ଧା ଶାଢ଼ୀ, ପ୍ୟାଣ୍ଟସାର୍ଟ ମୁଁ ନେଇଥିଲି ।

ଆମ ପାଖରେ ଗୋଟିଏ ବଡ଼ ଟର୍ଚ୍ଚଲାଇଟ୍ ଥିଲା । ଆମେ ନଈବାଲିରେ ପହଞ୍ଚିଲା ପରେ ଆମକୁ କିଛି ଲୋକ ଅନୁସରଣ କରୁଥିବାର ଆମେ ଅନୁଭବ କରିଥିଲୁ । ମୁଁ ଟର୍ଚ୍ଚ ପକାଇ ଦେଖିଲି ଯେ, ରାଜୁ ଦୋରା, ମାଧବ ତନ୍ତୀ, ସୁର ବାରିକ, ସରପଞ୍ଚ ଦିବାକର ଓ ଆଉ କିଛି ଲୋକ ଆମମାନଙ୍କୁ ଧରିବା ପାଇଁ ଆସୁଥିଲେ ।

ଅନ୍ଧାର ରାତି । ଚାରିଆଡ଼େ ନଈବାଲି । ଆମ ପାଖରେ ସାହା ଭରସା ହେବାକୁ କେହି ନଥିଲେ । ଆମେ ସ୍ୱାମୀସ୍ତ୍ରୀ ଦି'ଜଣ ଆତଙ୍କିତ ହୋଇପଡିଥିଲୁ । ଆମେ ଦେଖିଲୁ ନରପିଶାଚମାନଙ୍କ ପାଖରୁ ବଞ୍ଚିବା ସମ୍ଭବ ନୁହେଁ ।

ବଞ୍ଚିବାର ଅନ୍ୟ ଉପାୟ ନଥିବାରୁ ପୁଅକୁ ନେଇ ଶୀଘ୍ର ଚାଲିଯିବାକୁ ଛବିରାଣୀ ମତେ ଅନୁରୋଧ କରିଥିଲେ । ତାଙ୍କର ଧାରଣା ଥିଲା, ଏକୁଟିଆ ଜଣେ ସ୍ତ୍ରୀ ଲୋକ ଉପରେ ସେମାନେ ଅତ୍ୟାଚାର କରିବେ ନାହିଁ ।

କିନ୍ତୁ ତାଙ୍କ ଧାରଣା ଭୁଲ୍ ବୋଲି ପ୍ରମାଣିତ ହେଲା । ମୁଁ ସିନା ସେମାନଙ୍କ କବଳରୁ ଉଦ୍ଧାର ପାଇଗଲି, ମାତ୍ର ଛବିରାଣୀ ସେମାନଙ୍କ ବିକୃତ କାମନାର ଶିକାର ହେଲେ । ସେମାନେ ଛବିରାଣୀଙ୍କୁ ଗଣଧର୍ଷଣ କରିବା ପରେ ଜୀବନରୁ ମାରିଦେଇଥିଲେ ।

ମୁଁ ପାଖ ଗାଁ'ରେ ପହଞ୍ଚି ସବୁକଥା ଜଣାଇଲା ପରେ ସାଙ୍ଗସାଥିଙ୍କୁ ନେଇ ନଈବାଲିକୁ ଫେରିଥିଲି । ସେତେବେଳକୁ ସବୁ ଶେଷ ହୋଇଯାଇଥିଲା । ବିଲୁଆଖାଇର ଶୁଖିଲା ନଈବାଲିରେ ଛବିରାଣୀଙ୍କ ମୃତ ଶରୀର ପଡି ରହିଥିଲା । ଏହି ଘଟଣା ସମ୍ପର୍କରେ ମୁଁ ପାଖରେ ଥିବା ଅଣଖିଆ ପୋଷ୍ଟ ଅଫିସକୁ ଯାଇ ଜଗତସିଂହପୁର ଥାନାକୁ ଫୋନ କରିଥିଲି । ମାତ୍ର ଜଗତସିଂହପୁର ଥାନାରେ କର୍ତ୍ତବ୍ୟରତ ପୁଲିସ ସେ କଥା ଉପରେ କୌଣସି ଗୁରୁତ୍ୱ ଦେଇନଥିଲେ । ଟେଲିଫୋନ ବାର୍ତ୍ତା ପାଇଲା ପରେ ସେମାନେ ଚୁପ୍‌ଚାପ୍ ଶୋଇ ପଡିବାକୁ ଉଚିତ୍ ମନେକରିଥିଲେ ।

ନବ କିଶୋରଙ୍କ ପାଖରୁ ସବୁ କଥା ଶୁଣିବା ପରେ ମୋ ମୁଣ୍ଡ ଗୋଳମାଳ ହୋଇଗଲା । ଯେଉଁ ଥାନାବାବୁ ରବି ପୃଷ୍ଟି ନିଜ କର୍ତ୍ତବ୍ୟରେ ଅବହେଳା କରିବା ଫଳରେ ଅପରାଧୀମାନେ ଧରାପଡି ନଥିଲେ, ସିଏ ନିଜେ ତଦନ୍ତକାରୀ ଅଫିସର ଭାବରେ ସେଠାରେ ମୋ ସାମନାରେ ବସିଥିଲେ । ଏପରି ସ୍ଥିତିକୁ ମୁଁ ସହଜରେ ହଜମ କରିପାରିନଥିଲି ।

ନବ କିଶୋରଙ୍କ ପାଖରେ ଛବିରାଣୀଙ୍କ ଫଟୋ ଥାଇପାରେ ବୋଲି ଅନୁମାନ କରି ମୁଁ ତାଙ୍କୁ ଫଟୋଟି ମତେ ଦେବାକୁ କହିଲି । ମୋ ଅନୁମାନ ସତଥିଲା । ନବ କିଶୋର ତାଙ୍କ

ଛାତି ପକେଟରୁ ଛବିରାଣୀଙ୍କ ଫଟୋଟି ବାହାର କରି ମତେ ଦେଲାବେଳକୁ ପୁଲିସ୍ ସବ୍‌ଇନ୍‌ସ୍ପେକ୍ଟର ରବି ପୁଷ୍ଟି ସେଥିରେ ବାଧା ଦେବାକୁ ଚେଷ୍ଟା କରିଥିଲେ ।

ମୁଁ ତାଙ୍କୁ ଚିଡେଇବା ପାଇଁ କହିଲି, "ଦେଖନ୍ତୁ, ନବ କିଶୋରଙ୍କ ସହିତ କଥାବାର୍ତ୍ତା କରିବା ଆଗରୁ ମୁଁ ଆପଣଙ୍କ ଅନୁମତି ନେଇଛି । ଆପଣ ମତେ ଅନୁମତି ଦେଇଛନ୍ତି । ସେ କଥା ରେକର୍ଡ ହୋଇସାରିଛି । ଆପଣ ଏବେ ସେଥିରେ ହସ୍ତକ୍ଷେପ କଲେ ଅଡୁଆରେ ପଡିବେ ।"

ନବ କିଶୋରଙ୍କ ପାଖରୁ ଘଟଣାର ବିବରଣୀ ଓ ଫଟୋ ପାଇଲା ପରେ ଆମେ ଶୀଘ୍ର ସେ ସ୍ଥାନ ଛାଡି ଚାଲିଯିବାକୁ ଉଚିତ୍ ମନେକଲୁ । ଆମେ ଦେଖିଲୁ ପାଖରେ କୌଣସି ପୁଲିସ୍ ଗାଡି ନଥିଲା । ଆମେ ଅକ୍ଲେଶରେ ସେଠାରୁ ଫେରି ଯାଇପାରିବୁ ।

ମୁଁ ଦାସବାବୁଙ୍କୁ ତାଙ୍କ ମଟର ସାଇକେଲ ଷ୍ଟାର୍ଟ କରିବାକୁ ଇସାରାରେ କହିଲି । ସେ ମଟର ସାଇକେଲ ଷ୍ଟାର୍ଟ କରି ରଖିଲେ । ମୁଁ ତୁରନ୍ତ ଯାଇ ତା ଉପରେ ବସି ସେ ଯାଗା ଛାଡିଦେଲୁ ।

ମୋ ମନରେ ଅଜଣା ଆଶଙ୍କା ଜାତ ହୋଇଥିଲା । କାଳେ ପୁଲିସ୍ ଆମ ପଛରେ ଆସି ଆମ ପାଖରୁ କ୍ୟାମେରା, ଟେପ୍ ରେକର୍ଡର ଓ ଛବିରାଣୀ ଫଟୋ ନେଇଯିବେ । ସେଥିପାଇଁ ଆମେ ବିରିଡି ବସଷ୍ଟାଣ୍ଡରେ ପହଞ୍ଚିଲା ପରେ କଟକ ଆଡ଼େ ନଆସି ଓଲଟା ବାଟରେ ଜଗତସିଂହପୁର ଆଡ଼େ ଚାଲିଲୁ ।

ଦୁଇ କିଲୋମିଟର ଗଲା ପରେ ଅଣଖିଆ ପୋଷ୍ଟ ଅଫିସ୍ ପଡ଼ିଲା । ମୋର ଜଣେ ଆତ୍ମୀୟ, ଶଶିଭୂଷଣ ଦାସ ସେତେବେଳେ ସେଠାରେ ପୋଷ୍ଟମାଷ୍ଟର ଥିଲେ । ମୁଁ ତାଙ୍କୁ ସବୁକଥା କହି ଘଟଣା ଦିନ ରାତିରେ ନବକିଶୋର ଟେଲିଫୋନ କରିଥିବା ବାବଦକୁ ପଇସା ଦାଖଲ କରି ଯେଉଁ ରସିଦ ଦେଇଥିଲେ ତା'ର ଗୋଟିଏ ଫଟୋ କପି କରିବାକୁ ଅନୁରୋଧ କରିଥିଲି । ସେ ମୋ ଅନୁରୋଧ ରକ୍ଷା କରିଥିଲେ ।

ପୁଲିସ କବଳରୁ ରସିଦ ବହିକୁ ରକ୍ଷା କରିବାକୁ ତାଙ୍କୁ ଅନୁରୋଧ କରି ଆମେ କଟକ ଫେରିଥିଲୁ । ଫେରିବା ପୂର୍ବରୁ ସେ ଆମକୁ ଅଣଖିଆ ବଜାରରେ କିଛି ପକୁଡି ଓ ଚ'ରେ ଆପ୍ୟାୟିତ କରିଥିଲେ । ସେତେବେଳକୁ ରାତି ହୋଇଯାଇଥିବାରୁ ଆମର ଭୟ ଦୂର ହୋଇଯାଇଥିଲା ।

ମୁଁ କଟକ ଫେରି ସେହିଦିନ ରାତିରେ ସମସ୍ତ ଘଟଣା ସମ୍ପର୍କରେ ଗୋଟିଏ ନ୍ୟୁଜ୍ ପ୍ରସ୍ତୁତ କଲି । ରାତିରେ ଡେରି ହୋଇଥିବାରୁ ନ୍ୟୁଜ୍ ପଠାଇବା ସମ୍ଭବହୋଇ ପାରିନଥିଲା । ପରଦିନ ସକାଳେ ଭୁବନେଶ୍ୱର ଯାଇ ଗୋପାଳବାବୁଙ୍କୁ ଦେଖାକଲି । ନ୍ୟୁଜ୍ ସହିତ ନବକିଶୋରଙ୍କ ଠାରୁ ସଂଗ୍ରହ କରିଥିବା ଛବିରାଣୀ ଫଟୋଟି ତାଙ୍କୁ ଦେଲି । ଆମେ

ଦି'ଜଣ ଭୁବନେଶ୍ୱର ବିମାନ ବନ୍ଦରକୁ ଯାଇ ଫଟୋ ଓ ନ୍ୟୁଜ୍ କଲିକତା ଅଫିସ୍‌କୁ ପଠାଇଦେଲୁ ।

ଅମୃତ ବଜାର ପତ୍ରିକାର ଓଡ଼ିଶା ଏଡିସନରେ ଏହି ସମ୍ବାଦଟି ଛବିରାଣୀ ଫଟୋ ସହିତ ଆଠକଲମ ହେଡିଂରେ ପ୍ରଥମ ପୃଷ୍ଠାରେ ପ୍ରକାଶ ପାଇଥିଲା । ଏହି ସମ୍ବାଦଟି ବିଶେଷ ଆଲୋଡନ ସୃଷ୍ଟି କରିଥିଲା ।

ସ୍ଥାନୀୟ ସାମ୍ବାଦିକମାନେ ଛବିରାଣୀର ଫଟୋ ପାଇନଥିଲା ବେଳେ ଅମୃତ ବଜାର ପତ୍ରିକାରେ କିପରି ତା'ର ଫଟୋ ପ୍ରକାଶ ପାଇଲା ସେଥିପାଇଁ ଖୋଳତାଡ ଆରମ୍ଭ ହୋଇଥିଲା । ସେତେବେଳେ ବହୁଳ ପ୍ରସାରିତ 'ସମାଜ'ର ସଂପାଦକ ରାଧାନାଥ ରଥ ଅମୃତ ବଜାର ପତ୍ରିକାରେ ପ୍ରକାଶିତ ସମ୍ବାଦ ଓ ଛବିରାଣୀ ଫଟୋ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସାଙ୍ଗେସାଙ୍ଗେ ମତେ ଫୋନ କରି କହିଲେ, "ବାପା ଟିକିଏ ମୋ ପାଖକୁ ଆସିବ କି !"

ମୋର ଇଚ୍ଛାନଥିଲେ ବି, ଶ୍ରୀ ରଥଙ୍କ କଥାକୁ ମୁଁ ଏଡାଇଦେଇ ପାରିନଥିଲି । ମତେ ଦେଖି ସେ ପଚାରିଲେ, "ବାପା, ତମ କାଗଜରେ ଯାହା ବାହାରିଛି ସେସବୁ କ'ଣ ସତ ?" ମୁଁ ତାଙ୍କୁ କହିଲି, "ଦେଖନ୍ତୁ ଆଜ୍ଞା ମୁଁ ଘଟିଥିବା ଅଞ୍ଚଳକୁ ଯାଇ ଛବିରାଣୀଙ୍କ ସ୍ୱାମୀ ନବ କିଶୋର ମହାପାତ୍ର ଓ ଅନ୍ୟମାନଙ୍କ ସହିତ କଥାବାର୍ତ୍ତା କରିବା ପରେ ଯେଉଁସବୁ ତଥ୍ୟ ସଂଗ୍ରହ କଲି ତାକୁହିଁ ଭିତ୍ତିକରି ଏ ନ୍ୟୁଜ୍‌ଟି ପଠାଇଥିଲି । ସେମାନଙ୍କ କଥା ଯଦି ବାସ୍ତବ ସତ୍ୟ ଉପରେ ଆଧାରିତ ହୋଇନଥିବ ତେବେ ମୁଁ ନାଚାର ।"

ଘଟଣା ସମ୍ପର୍କରେ ସେ ମତେ କେତେକ କଥା ପଚାରିଥିଲେ । ମୁଁ ତାଙ୍କୁ ସବିଶେଷ ବିବରଣୀ ଦେଇଥିଲି । ସେଥିରେ ଶ୍ରୀ ରଥ ଅତ୍ୟନ୍ତ ବ୍ୟଥିତ ହୋଇ ତାଙ୍କ ପାଖରେ ଛିଡା ହୋଇଥିବା ସମାଜର ପ୍ରତିନିଧି ଦେବ ମିଶ୍ରଙ୍କୁ କହିଲେ, "ଦେବ ଶୀଘ୍ର ଖାତା କଲମ ଆଣ, ମୁଁ ଏପରି ଅନ୍ୟାୟକୁ ସହ୍ୟ କରିପାରିବିନାହିଁ । ସାଙ୍ଗେସାଙ୍ଗେ ପୁଲିସ୍ ଡି.ଜି ନରସିଂହ ସ୍ୱାଇଁଙ୍କୁ ଫୋନ୍ ଲଗାଅ । ଏ ଦେଶରେ କ'ଣ ସବୁ ଚାଲିଛି ?"

ଶ୍ରୀ ସ୍ୱାଇଁଙ୍କ ସହିତ ଫୋନ ଯୋଗାଯୋଗ ହେବାକ୍ଷଣି ଶ୍ରୀ ରଥ କ୍ରୋଧାନ୍ୱିତ ଭାବରେ ତାଙ୍କୁ କହିଥିଲେ "ନରସିଂହବାବୁ ଆପଣଙ୍କ ଶାସନରେ କ'ଣ ସବୁ ଚାଲିଛି ? ଏ ରାଜ୍ୟରେ କ'ଣ ଭଦ୍ରଲୋକ ବଞ୍ଚିପାରିବେ ନାହିଁ । କେବଳ ଚୋର, ଖଣ୍ଡ, ଡକେୟିତ ରହିବେ । ଗୋଟିଏ ନିରୀହ ସ୍ତ୍ରୀଲୋକ ଉପରେ ପାଶବିକ ଅତ୍ୟାଚାର କରାଯାଇ ତାଙ୍କୁ ନିର୍ମମ ଭାବରେ ହତ୍ୟା କରାଗଲା । ଘଟଣା ଘଟିବାର ତିନିଦିନ ବିତିଗଲାଣି । ଆପଣଙ୍କ ପୁଲିସ୍ କ'ଣ କରୁଛନ୍ତି ? କାହିଁ ଏ ପର୍ଯ୍ୟନ୍ତ ତ କେହି ଗିରଫ ହୋଇନାହାନ୍ତି । ମତେ ଆପଣ ଆଉ ଦୋଷ ଦେବେ ନାହିଁ । ମୁଁ ଆଉ ଚୁପ୍‌ହୋଇ ବସିପାରିବି ନାହିଁ ।" ମୁଁ କିଛି ସମୟ ସେଠାରେ ରହିଫେରିଆସିଥିଲି ।

ଘରେ ପହଞ୍ଚି ଖବର ପାଇଲି ପୁଲିସ୍ ଡ଼ି.ଜି ଶ୍ରୀ ସ୍ୱାଇଁ ମତେ ଖୋଜୁଥିଲେ । ମୁଁ ତାଙ୍କୁ ଫୋନ ଲଗାଇଲି । ତାଙ୍କ ଅଫିସକୁ ଯିବାପାଇଁ ସେ ମତେ ଅନୁରୋଧ କଲେ ।

ମୁଁ ରହୁଥିବା କ୍ୱାଟର ପାଖରୁ ଡି.ଜିଙ୍କ ଅଫିସ୍ ଚଲାବାଟ । ମୁଁ କିଛି ସମୟ ପରେ ସେଠାକୁ ଯାଇ ଶ୍ରୀ ସ୍ୱାଇଁଙ୍କୁ ଦେଖାକଲି । ଜଣେ ଦକ୍ଷ ଅଫିସର ହିସାବରେ ତାଙ୍କର ସୁନାମ ଥିଲା ।

ସେ ମୋ'ଠାରୁ ସବୁକଥା ଶୁଣି କିଛି ସମୟ ଗୁମ୍ ହୋଇ ବସିଗଲେ । ତା'ପରେ ମତେ କହିଲେ, 'ବସନ୍ତ ବାବୁ ଆପଣ ଯାଆନ୍ତୁ, ଯାହା ଦରକାର ମୁଁ କରିବି । ଅପରାଧୀମାନେ ନିଶ୍ଚିତଭାବେ ଧରାହୋଇ ଦଣ୍ଡ ପାଇବେ ।"

ସେହିଦିନ କ୍ରାଇମବ୍ରାଞ୍ଚର ଆଇ.ଜି ଟି.ଅନନ୍ତାଚାରିଙ୍କୁ ଘଟଣାର ତଦନ୍ତଭାର ଅର୍ପଣ କରାଯାଇଥିଲା । ତାଙ୍କ ସହିତ ଡି.ଆଇ.ଜି ବାଲସୁବ୍ରମଣ୍ୟମ ଯୋଗ ଦେଇଥିଲେ । ଏହି ଦୁଇଜଣ ଅଫିସର ସଚ୍ଚୋଟ ଓ ଦକ୍ଷ ଅଫିସର ଭାବରେ ସୁନାମ ଅର୍ଜନ କରିଥିଲେ । ଶ୍ରୀ ସୁବ୍ରମଣ୍ୟମ ନିଜ ପଦବୀକୁ ଭୁଲି ଜଣେ ସବ୍‌ଇନ୍ସପେକ୍ଟର ଭାବରେ ଘଟଣାସ୍ଥଳରେ ରହି ସତ୍ୟର ଉଦ୍‌ଘାଟନ କରିଥିଲେ । କ୍ରାଇମବ୍ରାଞ୍ଚର ତଦନ୍ତ ପରେ ଘଟଣାର ମୂଳ ଅପରାଧୀ ରାଜୁରାଓ ଦୋରାଙ୍କ ସହିତ ଅନ୍ୟମାନେ ଗିରଫ ହୋଇଥିଲେ । ସେମାନଙ୍କ ନାଁରେ କୋର୍ଟରେ ଚାର୍ଜସିଟ୍ ଦାଖଲ ହୋଇଥିଲା ।

ଦୀର୍ଘଦିନର ବିଚାର ପରେ କଟକ ଜିଲ୍ଲା ଜଜ୍, ପୁଲିସ ପକ୍ଷରୁ ଆଗତ ହୋଇଥିବା ଚାର୍ଜସିଟ୍ ଓ ପ୍ରମାଣକୁ ଆଧାରକରି ଅପରାଧୀମାନଙ୍କୁ ଦଶବର୍ଷ କାରାଦଣ୍ଡରେ ଦଣ୍ଡିତ କରିଥିଲେ ।

ଏକ ଅଜଣା କାରଣରୁ ରାଜ୍ୟ ସରକାର ଏହି ଦଣ୍ଡ ବିରୋଧରେ ଓଡ଼ିଶା ହାଇକୋର୍ଟରେ ଅପିଲ୍ କଲେ । ଓଡ଼ିଶା ହାଇକୋର୍ଟର ବିଚାରପତି ବାଳକୃଷ୍ଣ ବେହେରା ଓ ବିଚାରପତି କେ.ପି ମହାପାତ୍ର ଏହାର ଖୁବ୍‌ଶୀଘ୍ର ବିଚାରକରି 'ବେନିଫିଟ୍ ଅଫ ଡାଉଟ୍' ଆଧାରରେ ସମସ୍ତଙ୍କୁ ଖଲାସ କରିଦେଇଥିଲେ ।

ଏପରି ରାୟ ବିରୋଧରେ ସାଧାରଣରେ ଅସନ୍ତୋଷ ପ୍ରକାଶ ପାଇଥିଲା । ସମ୍ବାଦପତ୍ରମାନଙ୍କରେ ରାୟର ସମାଲୋଚନା କରାଯାଇଥିଲା ।

ଶେଷରେ ବାଧହୋଇ ରାଜ୍ୟ ସରକାର ସୁପ୍ରିମକୋର୍ଟରେ ସ୍ପେଶିଆଲ ଲିଭ୍ ପିଟିସନ ଦାଖଲ କଲେ । ସୁପ୍ରିମକୋର୍ଟର ମାନ୍ୟବର ବିଚାରପତି ଆର୍.ପି ସେଠୀ ଓ ଦୋରାଇସ୍ୱାମୀ ରାଜୁଙ୍କୁ ନେଇ ଗଠିତ ଖଣ୍ଡପୀଠ ଏକ ଐତିହାସିକ ରାୟ ଦେଇ ଅପରାଧୀମାନଙ୍କୁ କାରାଦଣ୍ଡରେ ଦଣ୍ଡିତ କରିଥିଲେ । ସେଥିସହିତ ଓଡ଼ିଶା ହାଇକୋର୍ଟଙ୍କ ଦାୟିତ୍ୱହୀନ ବିଚାରର ଦୃଢ଼ ସମାଲୋଚନା କରିଥିଲେ । ଏହି ରାୟ ପ୍ରକାଶ ପାଇବା ପରେ ନ୍ୟାୟଳୟ ଉପରେ ଜନସାଧାରଣଙ୍କର ବିଶ୍ୱାସ ଓ ଭରସା ପୁନଃ ପ୍ରତିଷ୍ଠିତ ହୋଇଥିଲା ।

# ଆଲୋଚନା ଚକ୍ର



ବିଶ୍ୱ ସାକ୍ଷରତା ଦିବସ ଅବସରରେ ଉଦ୍‌ବୋଧନ




ସୂଚନା କମିଶନ୍‌ର ସଫଳତା ଓ ବିଫଳତା ଉପରେ ମନ୍ତବ୍ୟ ପ୍ରଦାନ




ପୁଲିସ୍ କମିଶନର ବ୍ୟବସ୍ଥା ପ୍ରଚଳନ ପରେ ରାଜଧାନୀରେ ଟ୍ରାଫିକ୍ ସମସ୍ୟା ସମ୍ପର୍କରେ ଅଲୋଚନା



ଦୁର୍ନୀତି ନିବାରଣରେ ଗଣମାଧ୍ୟମର ଭୂମିକା ସମ୍ପର୍କରେ ଅଲୋଚନା ଚକ୍ର




ଜାତୀୟ ମୁକ୍ତି ସଂଗ୍ରାମକୁ ଓଡ଼ିଶାର ଅବଦାନ ସମ୍ପର୍କୀୟ ଆଲୋଚନା ଚକ୍ରରେ ଅଂଶଗ୍ରହଣ




ସଙ୍କଟରେ ଶିଶୁ ସାହିତ୍ୟ ସମ୍ପର୍କୀୟ ଆଲୋଚନା ଚକ୍ରରେ ବକ୍ତବ୍ୟ ପ୍ରଦାନ




ଯୁବ ଓ ଗଣମାଧ୍ୟମ ଶୀର୍ଷକ କର୍ମଶାଳାରେ ଉଦ୍‌ବୋଧନ




ପୁସ୍ତକମେଳା ପରିସରରେ ଆୟୋଜିତ 'କଥିତ ଓଡ଼ିଆ ଭାଷାରେ ଅନୂଦିତ ଶବ୍ଦର ଆବଶ୍ୟକତା'
ସମ୍ପର୍କରେ ଆଲୋଚନାଚକ୍ରରେ ଅଂଶଗ୍ରହଣ

# ପ୍ରଥମ ବିଦେଶ ଯାତ୍ରା



୧୦, ଡାଉନିଙ୍ଗ୍ ଷ୍ଟ୍ରିଟ୍ ସମ୍ମୁଖରେ ବନ୍ଧୁ ଘନଶ୍ୟାମ ଭାଇ ଭାଓସାର ଓ ରାଜୀବ ଶୁକ୍ଳଙ୍କ ସହିତ



ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ ସମ୍ମୁଖରେ ବନ୍ଧୁ ପ୍ରକାଶ ଦୁବେଙ୍କ ସହିତ



ମହାନ କବି ସେକ୍ସପିଅରଙ୍କ ବାସଭବନ ସମ୍ମୁଖରେ



ବ୍ରସେଲ୍ସ ସହରର ଏକ ଆଧୁନିକ ହୋଟେଲର ଅଭ୍ୟର୍ଥନା କକ୍ଷ ସମ୍ମୁଖରେ

# ସସ୍ତ୍ରୀକ ୟୁରୋପ ଭ୍ରମଣ



ପ୍ରାଗ୍ ସେଣ୍ଟ୍ରାଲ୍ ମାର୍କେଟ୍‌ରେ ପତ୍ନୀ ପ୍ରମଦା, ବୋହୂ ସାଲୋନୀ ଓ ନାତୁଣୀ ଏଲିନା ସହିତ



ବର୍ଲିନ ୱାଲ୍‌ର ଭଗ୍ନସ୍ତୁପ ସାମ୍ନାରେ



ଡୁଇସ୍‌ବର୍ଗର ରୋପ୍‌ୱେରେ ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସଙ୍କ ସହିତ



ଡସେଲ୍‌ଡର୍ଫ ବିମାନବନ୍ଦରରୁ ଅଶ୍ରୁଳ ବିଦାୟ

ଏହି ରାୟ ପ୍ରକାଶ ପାଇଲା ବେଳକୁ ମୁଁ ଘଟଣାଟି ସଂପୂର୍ଣ୍ଣ ଭୁଲିଯାଇଥିଲି । କେତେକ ବନ୍ଧୁ ମତେ ଟେଲିଫୋନ କରି ବଧାଇଦେବା ସଙ୍ଗେସଙ୍ଗେ ମନେ ପକାଇ ଦେଇଥିଲେ ଯେ, ଦୀର୍ଘ ୨୨ ବର୍ଷ ତଳେ ଏପରି ଏକ ଘଟଣାର ପର୍ଦ୍ଦାଫାଶ କରିବା ପାଇଁ ମୁଁ ଯେଉଁ ପରିଶ୍ରମ କରିଥିଲି ବିଳମ୍ବ ହେଲେବି ତା'ର ଫଳ ମିଳିଲା । ବାସ୍ତବରେ ଛବିରାଣୀ ହତ୍ୟା ଘଟଣାରେ ଅପରାଧୀମାନଙ୍କୁ ଗିରଫ କରିବା ଓ ସେମାନଙ୍କୁ ଦଣ୍ଡବିଧାନ ହେବାରେ ଗୁଣ୍ଡୁଚିମୂଷା ଭଳି ମୁଁ ଯେଉଁ ସାମାନ୍ୟ ଉଦ୍ୟମ କରିଥିଲି ତାହା ମତେ ଗଭୀର ଆତ୍ମସନ୍ତୋଷ ଦେଇଥିଲା ।

ପଚାଶବର୍ଷର ସାମ୍ବାଦିକତା ଜୀବନରେ ବହୁ ତଥ୍ୟ ସଂଗ୍ରହ କରି ପ୍ରକାଶ କରାଇବାରେ କୋଉଠି ପ୍ରଶଂସା ମିଳିଛି । ଅନ୍ୟ କୋଉଠି ନିନ୍ଦା ଶୁଣିବାକୁ ପଡିଛି । ଅପମାନ ମିଳିଛି । ହେଲେ ସେ ନିନ୍ଦା କିମ୍ବା ପ୍ରଶଂସାକୁ ଖାତିର ନକରି ମୁଁ ମୋ କାମ କରିଛି । ଏତେଦିନ ପରେ ସବୁ କଥା ହେଜ ହେଉନାହିଁ ।

୧୯୭୧ ମସିହା ସେପ୍ଟେମ୍ବର ମାସର ଘଟଣା । ସେତେବେଳେ ଚୌଧୁରୀ ନିଶାମଣି ନନ୍ଦ ଉତ୍କଳ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ସେହି ସମୟରେ ଡଃ ବିମଳେନ୍ଦୁ ମହାନ୍ତି ସେ ବିଶ୍ୱବିଦ୍ୟାଳୟରେ ଛାତ୍ର କଲ୍ୟାଣ ଡିନ୍ ଥିଲେ ।

ଏକାଧିକ କାରଣରୁ ସେ ଦି'ଜଣଙ୍କ ଭିତରେ ସମ୍ପର୍କ ଭଲ ନଥିଲା । ଉଭୟେ ଉଭୟଙ୍କୁ ଖାଲରେ ପକାଇବା ବାଟରେ ଥିଲେ । ଶ୍ରୀ ନନ୍ଦ, ବିଶ୍ୱବିଦ୍ୟାଳୟର କେତେକ ଅନିୟମିତତା କାର୍ଯ୍ୟ ସହିତ ସଂପୃକ୍ତ ଥିବାର ଅଭିଯୋଗ ହୋଇଥିଲା । ଡକ୍ଟର ମହାନ୍ତି ସେପରି ପରିସ୍ଥିତିରୁ ଫାଇଦା ନେବାକୁ ଚାହିଁଥିଲେ ।

ସେ ପତ୍ରିକା ଅଫିସକୁ ଆସି ଗୋପାଳବାବୁଙ୍କ ସହିତ ସେ ବିଷୟରେ କଥାବାର୍ତ୍ତା କଲେ । ସବୁକଥା ଲେଖିକରି ଦେଲେ, ତାକୁ ନ୍ୟୁଜ୍ କରାଯିବ ବୋଲି ଗୋପାଳବାବୁ ତାଙ୍କୁ ପରାମର୍ଶ ଦେଇଥିଲେ ।

ସେହି ଅନୁସାରେ ଡକ୍ଟର ମହାନ୍ତି ଚାରି, ପାଞ୍ଚ ପୃଷ୍ଠା କାଗଜରେ ଶ୍ରୀ ନନ୍ଦଙ୍କ ବିରୋଧରେ କେତେକ ଅଭିଯୋଗ ଟାଇପ୍ କରି ଆମ ଅଫିସରେ ଦେଇଗଲେ । ସେଥିରେ କୁଳପତିଙ୍କ ସମ୍ପର୍କରେ କେତେକ ଆପତ୍ତିଜନକ ଶବ୍ଦ ବ୍ୟବହାର କରାଯାଇଥିଲା । ସେସବୁ ପ୍ରକାଶିତ ହୋଇଥିଲେ ଆମ ନାଁରେ ସେ ନିଶ୍ଚିତ ଭାବରେ ମାନହାନୀ ମକଦ୍ଦମା କରିଥାନ୍ତେ ।

ସେହି ସମୟରେ ଓଡ଼ିଶାରେ ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ ସ୍ୱତନ୍ତ୍ର-ଉତ୍କଳ କଂଗ୍ରେସର ମିଳିତ ମନ୍ତ୍ରିମଣ୍ଡଳ ଥିଲା । ସେଥିରେ ଗଙ୍ଗାଧର ପ୍ରଧାନ, ମତ୍ସ୍ୟ ଓ ପଶୁପାଳନ ବିଭାଗର ମନ୍ତ୍ରୀ ଥିଲେ । ରାଜଧାନୀ ନିକଟବର୍ତ୍ତୀ କୌଶଲ୍ୟାଗଙ୍ଗରେ ସେତେବେଳେ ରାଜ୍ୟ ସରକାରଙ୍କ ପକ୍ଷରୁ ମାଛ ଯାଆଁଳ ଉତ୍ପାଦନ ସହିତ ମାଛ ଚାଷ ମଧ୍ୟ ହେଉଥିଲା । ସେ ସଂସ୍ଥା ବିରୋଧରେ ଗୋଟିଏ, ଦୁଇଟି କାଗଜରେ କିଛି ସମ୍ବାଦ ବାହାରିଥିଲା ।

ଶ୍ରୀ ପ୍ରଧାନ ସେ ସମ୍ବାଦକୁ ଖଣ୍ଡନ କରିବାକୁ ଚାହିଁଥିଲେ । ଭୁବନେଶ୍ୱରରୁ କିଛି ସାମ୍ବାଦିକଙ୍କୁ କୌଶଲ୍ୟାଗଙ୍ଗ ନେଇ ସେଠାରେ ସେମାନଙ୍କୁ ଆପ୍ୟାୟିତ କରିବା ପାଇଁ ସେ ବନ୍ଦୋବସ୍ତ କଲେ ।

ମୁଁ ସନ୍ଧ୍ୟା ପାର୍ଟିର ଭକ୍ତ ନଥିବାରୁ କୌଶଲ୍ୟାଗଙ୍ଗ ଯିବାପାଇଁ ଇଚ୍ଛୁକ ନଥିଲି । ଶ୍ରୀ ପ୍ରଧାନଙ୍କ ସହିତ ମୋର ଭଲ ସମ୍ପର୍କ ଥିଲା । ସେ ବ୍ୟକ୍ତିଗତ ଭାବରେ ମତେ ଯିବାକୁ ଅନୁରୋଧ କଲେ । ମୁଁ ତାଙ୍କ କଥା ଭାଙ୍ଗି ପାଇଲିନାହିଁ ।

ସେଦିନ ସନ୍ଧ୍ୟାରେ ବିମଳେନ୍ଦୁବାବୁ ଦେଇଥିବା ତଥ୍ୟକୁ ଏଡିଟ କରି କଲିକତା ପଠାଇବା କଥା । ଗୋପାଳବାବୁ କହିଲେ, "ତାକୁ ରଖ । ସନ୍ଧ୍ୟାରେ ଫେରିଲେ ଦେଖିବା ।" ମୁଁ ସେ ଟାଇପ କରା କାଗଜଟି ଟେବୁଲ ଉପରେ ରଖିଦେଇଥିଲି ।

କୌଶଲ୍ୟାଗଙ୍ଗରେ ମାଛ ମରାଯାଇ ଭଜା ହେଲା । ତା' ସାଙ୍ଗକୁ ଡ୍ରିଙ୍କ୍ସ । ସନ୍ଧ୍ୟାରେ ପାର୍ଟି ଜମିଗଲା । ଫେରୁଫେରୁ ରାତି ଦଶଟା । ଗୋପାଳବାବୁଙ୍କ ଟିକିଏ ନିଶା ଚଢ଼ି ଯାଇଥିଲା । କହିଲେ, "ଘରକୁ ଯାଇ ଆରାମ କର । ନ୍ୟୁଜ୍ କଥା ସକାଳେ କଥାବାର୍ତ୍ତା ହେବା ।"

ସେତେବେଳେ ଅମୃତ ବଜାର ପତ୍ରିକାର ନିଜସ୍ୱ ଟେଲିପ୍ରିଣ୍ଟର ସର୍ଭିସ ଥିଲା । ଭୁବନେଶ୍ୱର ଅଫିସରୁ ସିଧାସଳଖ କଲିକତା ଅଫିସକୁ ନ୍ୟୁଜ୍ ପଠାଯାଇପାରୁଥିଲା ।

ଭୁବନେଶ୍ୱର ଅଫିସରେ କଲିକତାର ଜଣେ ବଙ୍ଗାଳୀ ଟେଲିପ୍ରିଣ୍ଟର ଅପରେଟର ଥିଲେ । ନ୍ୟୁଜ୍ ଟାଇପ କରି ପଠାଇବା ଛଡା ତାଙ୍କୁ ଆଉ କିଛି ଜଣାନଥିଲା । ସେଥିପାଇଁ ତାଙ୍କୁ ପନିସମେଣ୍ଟରେ କଲିକତାରୁ ଭୁବନେଶ୍ୱରକୁ ପଠାଯାଇଥିଲା । ଆମେ ତାଙ୍କୁ ଦାଦା ବୋଲି ଡାକୁଥିଲୁ ।

ସେଦିନ ସନ୍ଧ୍ୟାରେ ଆମ ଅନୁପସ୍ଥିତିରେ ଟେବୁଲ୍ ଉପରେ ଟାଇପ କରା କାଗଜ ରଖା ହୋଇଥିବା ଦେଖି ସେ କିଛି ଆଗ ପଛ ନବିଚାରି ତାକୁ ଟେଲିପ୍ରିଣ୍ଟରରେ କଲିକତା ପଠାଇ ଦେଇଥିଲେ ।

ପରଦିନ ସକାଳେ ମୁଁ ଅଫିସ୍ ଆସି ସେ କାଗଜ ଖୋଜିଲି । ଯୋଉଠି ରଖିଥିଲି ସେଠାରେ ନଥିଲା । ମୋର ସନ୍ଦେହ ହେଲା । ବହୁତ ଖୋଜାଖୋଜି ପରେ ଦାଦାଙ୍କୁ ପଚାରିଲି । ସେ ଯାହା କହିଲେ ସେଥିରେ ମୋର ଝାଳ ବୋହିଗଲା ।

ଦାଦା କହିଲେ, ଆପଣଙ୍କ ଟେବୁଲ ଉପରେ ଟାଇପ ହୋଇ ନ୍ୟୁଜ୍ ଥିଲା । ମୁଁ ତାକୁ କଲିକତା ପଠାଇଦେଇଛି ।

ଗୋପାଳବାବୁ ଆସି ସବୁ ଘଟଣା ଶୁଣି ବ୍ୟସ୍ତ ହୋଇ ପଡିଲେ । ସେ ଖବର ଯଦି ବାହାରି ଯିବ, ତେବେ ତାହା ଆମ ପାଇଁ ବିପଦର କାରଣ ହୋଇଯିବ । ଏଇକଥା ତାଙ୍କୁ ବ୍ୟଥିତ କରିଥିଲା ।

ଟେଲିପ୍ରିଣ୍ଟର ଖୋଲି ସେ ନ୍ୟୁଜ୍‌କୁ କିଲ୍ କରିବାକୁ ଦାଦାଙ୍କୁ କହିଲି । ସେଦିନ ଟେଲିପ୍ରିଣ୍ଟର ଲାଇନ ଡାଉନ୍ ଥିଲା । ସେତେବେଳେ ଏସଟିଡି କଲ୍‌ର ବ୍ୟବସ୍ଥା ନଥିଲା । ମୋବାଇଲ୍ ଫୋନ ସେବା ବାହାରି ନଥିଲା । ଫୋନ ବୁକ୍ କରି କଥାବାର୍ତ୍ତା ହେବାକୁ ପଡୁଥିଲା ।

ଆମେ ଟେଲିଫୋନରେ ଫୋନ ବୁକ୍ କଲୁ । କିନ୍ତୁ ଆମର ଦୁର୍ଭାଗ୍ୟ । ସେଦିନ ଟେଲିଫୋନ ସର୍ଭିସ ମଧ୍ୟ ଠିକ୍ ନଥିଲା । କ'ଣ କରାଯିବ କିଛି ବୁଦ୍ଧି ଦେଖାଗଲାନାହିଁ ।

ମୁଁ ଛାନିଆରେ ସେକ୍ରେଟାରିଏଟ୍ ଦୌଡିଲି । ଜଣେ ମନ୍ତ୍ରୀଙ୍କ ଅଫିସରୁ ଇମିଡିଏଟ୍ କଲ ବୁକ୍ କଲି । କିଛି ସମୟ ପରେ ଲାଇନ୍ ମିଳିଗଲା । ମୁଁ ଫୋନ ଯୋଗେ ସେ ନ୍ୟୁଜ୍‌ଟି ନ ଦେବା ପାଇଁ କଲିକତା ଅଫିସକୁ ଅନୁରୋଧ କଲି ।

ସେତେବେଳକୁ ସମୟ ସାଢ଼େ ବାରଟା ହୋଇଥିଲା । ସେ ନ୍ୟୁଜ୍‌ଟି ପତ୍ରିକାର ସାମନା ପୃଷ୍ଠାରେ ସେକେଣ୍ଡ ଷ୍ଟୋରୀ ହିସାବରେ ବସିବା ପାଇଁ ପ୍ରେସକୁ ଛାଡି ଦିଆଯାଇଥିଲା । ମୋ ଅନୁରୋଧ ଶୁଣି ସେମାନେ ବିରକ୍ତ ହେଲେ । ଏତେବେଳେ ସେ ଷ୍ଟୋରୀକୁ ଉଠାଇ ଦେଲେ ଓଡ଼ିଶା ଏଡିସନ ପାଇଁ ଆଉ କୋଉ ପାଠ ବସିବ ବୋଲି ମତେ ଓଲଟା ପ୍ରଶ୍ନ କଲେ ।

ସେ ପାଠ ଛପା ହୋଇଗଲେ ପତ୍ରିକା ନାଁରେ ମାନହାନୀ ମକଦ୍ଦମା ହେବ ବୋଲି କହିବାରୁ ସେମାନେ ମତ ବଦଳାଇଲେ । ସେ ପାଠକୁ ଉଠାଇ ଅନ୍ୟ ପାଠ ବସାଇ କପି କ୍ଲୋଜ କରିଦେଇଥିଲେ । ମୁଁ ସେକ୍ରେଟାରିଏଟ୍‌ରୁ ଫେରିଲା ବେଳକୁ ଦିନ ଦି'ଟା । ସବୁକଥା ଗୋପାଳବାବୁଙ୍କୁ କହିଲି । ସେ ଟିକିଏ ଆଶ୍ୱସ୍ତ ହେଲେ । ଖରାବେଳେ ବିନା ଟେନସନରେ ବିଶ୍ରାମ ନେଲେ । ବିମଳେନ୍ଦୁବାବୁ ଦେଇଥିବା ସେ ନ୍ୟୁଜ୍‌ଟି ଆମେ ପରେ ଏଡିଟ୍ କରି ପଠାଇଥିଲୁ । ପତ୍ରିକାରେ ତାହା ବଡ଼ ଷ୍ଟୋରୀ ହୋଇ ବାହାରିଥିଲା ।

୧୯୭୪ ମସିହାର ଘଟଣା । ଓଡ଼ିଶାରେ ନନ୍ଦିନୀ ଶତପଥୀଙ୍କ ଦ୍ୱିତୀୟ ମନ୍ତ୍ରିମଣ୍ଡଳ ଚାଲିଥିଲା । ସେ ମନ୍ତ୍ରିମଣ୍ଡଳରେ ବାଙ୍କବିହାରୀ ଦାସ ରାଜସ୍ୱ ମନ୍ତ୍ରୀ ଥିଲେ । ଶ୍ରୀମତୀ ଶତପଥୀଙ୍କର ଖୁବ୍ ବିଶ୍ୱସ୍ତ । ଶ୍ରୀମତୀ ଶତପଥୀ ବାଙ୍କବାବୁ ଓ ବ୍ରଜମୋହନ ମହାନ୍ତିଙ୍କୁ ନେଇ ଗୋଟିଏ କିଚେନ୍ କ୍ୟାବିନେଟ୍ ଗଠନ କରିଥିଲେ । ମନ୍ତ୍ରିମଣ୍ଡଳରେ ଅନ୍ୟମାନଙ୍କୁ ଗୁରୁତ୍ୱ ଦିଆଯାଉନଥିଲା ।

ସେ ସମୟରେ ଆନ୍ଧ୍ର ପ୍ରଦେଶରେ ନକ୍ସଲ ଆନ୍ଦୋଳନ ମୁଣ୍ଡ ଟେକିଥିଲା । ଓଡ଼ିଶାରେ ସେ ଆନ୍ଦୋଳନର ପ୍ରଭାବ ଅନୁଭୂତ ହୋଇ ନଥିଲା । କେନ୍ଦ୍ର ସରକାର ନକ୍ସଲ ଆନ୍ଦୋଳନର ପ୍ରଭାବକୁ ସଙ୍କୁଚିତ କରିବା ପାଇଁ ପଦକ୍ଷେପ ଆରମ୍ଭ କରିଥିଲେ ।

ଦିଲ୍ଲୀଠାରେ ଆନ୍ତଃରାଜ୍ୟ ଉନ୍ନୟନ ପରିଷଦର ଗୋଟିଏ ବୈଠକ ବସିବା ପାଇଁ ସ୍ଥିର ହୋଇଥିଲା । ସାଧାରଣତଃ ବିଭିନ୍ନ ମୁଖ୍ୟମନ୍ତ୍ରୀ ସେ ବୈଠକରେ ଯୋଗ ଦେବା କଥା । ସେଥର ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ଯୋଗ ଦେଇନପାରି ରାଜସ୍ୱମନ୍ତ୍ରୀ ବାଙ୍କବିହାରୀ ଦାସଙ୍କୁ ଯୋଗଦେବାକୁ କହିଥିଲେ ।

ବୈଠକରେ ଆଲୋଚନା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ନକ୍ସଲ କାର୍ଯ୍ୟ ସଂପର୍କରେ କେତେକ ତଥ୍ୟ ସମ୍ବଳିତ ଗୋଟିଏ ରିପୋର୍ଟ ପ୍ରସ୍ତୁତ କରାଯାଇଥିଲା । ସେଥିରେ ଯୁବଗୋଷ୍ଠୀ କିଭଳି ନକ୍ସଲ ଆନ୍ଦୋଳନ ପ୍ରତି ଆକୃଷ୍ଟ ହେଉଥିଲେ ସେ ସମ୍ପର୍କରେ ସୂଚନା ଦିଆଯାଇଥିଲା । ସେସବୁ ଗୋପନୀୟ ଥିଲା, ଯାହାକୁ ଇଂରାଜୀରେ କୁହାଯାଏ "କ୍ଲାସିଫାଏଡ୍ ଡକୁମେଣ୍ଟ ।"

ସେକ୍ରେଟାରିଏଟ୍ ଗଲେ ବାଙ୍କବାବୁଙ୍କ ରୁମ୍‌କୁ ଯିବା ମୋର ଏକ ଧରାବନ୍ଧା ରୁଟିନ ଥିଲା । ବାଙ୍କବାବୁ ନିର୍ବାଚନ ରାଜନୀତିରେ ପ୍ରବେଶ ପୂର୍ବରୁ କିଛି ଦିନ ପାଇଁ ସାମ୍ବାଦିକତା କରୁଥିଲେ । ସାମ୍ବାଦିକମାନଙ୍କ ପ୍ରତି ତାଙ୍କର ଦରଦ ଥିଲା ।

ସରକାରୀ ମିଟିଂ କିମ୍ବା ଅଫିସରମାନଙ୍କ ସହିତ ଆଲୋଚନା ସମୟ ବ୍ୟତୀତ ତାଙ୍କ ରୁମ୍‌ରେ ସବୁବେଳେ ଲୋକ ଭିଡ଼ ରହୁଥିଲା । ଲୋକମାନଙ୍କୁ ରୁମ୍‌ରୁ ଚାଲିଯିବା ପାଇଁ କହିବା ବିଭିନ୍ନ ଦୃଷ୍ଟିରୁ ବାଙ୍କବାବୁଙ୍କ ପକ୍ଷରେ ସମ୍ଭବ ହେଉନଥିଲା ।

ଅନେକ ସମୟରେ ତାଙ୍କ ଜମାଦାର ଆସି ଆମ କେଇଜଣଙ୍କୁ 'ମନ୍ତ୍ରୀ ଡାକୁଛନ୍ତି' ବୋଲି ପ୍ରେସରୁମ୍‌ରୁ ଡାକି ନେଉଥିଲା । ଆମକୁ ଦେଖି ବାଙ୍କବାବୁ ଲୋକଙ୍କୁ ବିଦା କରିବା ପାଇଁ ଗୋଟିଏ ବାହାନା ପାଇଯାଉଥିଲେ ।

ସମୟ ସକାଳ ଏଗାରଟା ହେବ । ସେଦିନ ବାଙ୍କବାବୁଙ୍କର ଦିଲ୍ଲୀଯିବା କଥା । ସେ ତାଙ୍କ ରୁମ୍‌ରେ ନଥିଲେ । ମୁଖ୍ୟମନ୍ତ୍ରୀଙ୍କ ସାଙ୍ଗରେ ଆଲୋଚନା କରିବାକୁ ଉପର ମହଲାକୁ ଯାଇଥିଲେ ।

ମୁଁ ତାଙ୍କ ରୁମ୍‌କୁ ପଶିଲାବେଳେ ରୁମ୍‌ରେ କେହି ନଥିଲେ । ବାଙ୍କବାବୁଙ୍କ ଟେବୁଲ ଉପରେ 'କ୍ଲାସିଫାଏଡ୍ ଡକୁମେଣ୍ଟ' ଥିବା ଫାଇଲଟି ଥୁଆ ହୋଇଥିଲା । ଫାଇଲର କଣରେ ତିନି ରଙ୍ଗର ଗାର ପଡିଥିଲା । ମୁଁ ସେଇଥିରୁ ସେ ଫାଇଲରେ କ'ଣ ଅଛି ସହଜରେ ଠଉରେଇ ପାରିଥିଲି ।

ମିଠା ଖାଇବା ପ୍ରିୟ ଲୋକ ସାମନାରେ ରସଗୋଲା ଦେଖିଲେ ତା'ର ସ୍ଥିତି ଯାହା ହୁଏ, ମୋର ଅବସ୍ଥା ସେଇୟା ହେଲା । ମୁଁ ଚାରିଆଡକୁ ଅନେଇ ସନ୍ତର୍ପଣରେ ଫାଇଲଟି ଖୋଲିଲି ।

ସେଥିରେ ଓଡ଼ିଶାର ବିପ୍ଳବୀ କବି ରବି ସିଂ ଓଡ଼ିଶାର ମନ୍ତ୍ରୀ ଓ ସାଂସଦ ହୋଇଥିବା ଖୋର୍ଦ୍ଧା ଅଞ୍ଚଳର ଯୁବ କଂଗ୍ରେସ ନେତା ପ୍ରସନ୍ନ ପାଟ୍ଟଶାଣୀ ଓ ଆହୁରି ଅନେକ ରାଜନେତାଙ୍କର ନକ୍ସଲଙ୍କ ସହିତ ସମ୍ପର୍କ ଥିବା ସଂପର୍କରେ ସୂଚନା ଥିଲା । ମୁଁ ସର୍ଟହାଣ୍ଡ ଜାଣିଥିଲି । କମ୍ ସମୟ ଭିତରେ ସେମାନଙ୍କ ନାଁ ଟିପି ଦେଇ ଫାଇଲିଟ୍‌କୁ ଯଥା ସାଙ୍ଗରେ ରଖିଲା ବେଳକୁ ଜମାଦାର ଆସି କହିଲା 'ମନ୍ତ୍ରୀ ଆସୁଛନ୍ତି ।'

ମୋ ଦେହରୁ ଝାଳ ବୋହିଗଲା । ସାମାନ୍ୟ ଡେରି ହୋଇଥିଲେ ଧରା ପଡିଯାଇଥାଆନ୍ତି । ମୁଁ ଘରୁ ବାହାରିଲା ବେଳକୁ ବାଙ୍କବାବୁ ରୁମ୍‌କୁ ପଶିଲେ । ପଚାରିଲେ, "କେତେବେଳୁ ଆସିଲୁଣି ।" ଏଇତ ଘର ଭିତରେ ପଶୁଥିଲି । ଆପଣଙ୍କୁ ନ ଦେଖି ଫେରିଯାଉଥିଲି । ଏତିକି କହି ମୁଁ ତରତରରେ ବାହାରିଗଲି ।

ସେକ୍ରେଟାରିଏଟରୁ ତୁରନ୍ତ ଫେରି ସେ ଫାଇଲରୁ ଯାହା ସବୁ ତଥ୍ୟ ସଂଗ୍ରହ କରିଥିଲି, ତା' ଉପରେ ଗୋଟିଏ ବଡ଼ ଷ୍ଟୋରୀ କଲି । ଗୋପାଳବାବୁଙ୍କୁ ଦେଖାଇ କଲିକତା ପଠାଇଦେଲି ।

ପରଦିନ କାଗଜରେ ସେ ଖବରଟି ବଡ଼ ବଡ଼ ଅକ୍ଷରରେ ପ୍ରକାଶ ପାଇଥିଲା । ସେ ଖବରଟି ଓଡ଼ିଶାରେ ଆଲୋଡ଼ନ ସୃଷ୍ଟି କରିଥିଲା ।

ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ସେଥିରେ ଖୁବ୍ କ୍ଷୁବ୍ଧ ହୋଇଗଲେ । ବାଙ୍କବାବୁଙ୍କ ସୂତ୍ରରୁ ସେ ଖବର ଲିକ୍ ହୋଇଥିବା ସମ୍ପର୍କରେ ସେ ନିଃସନ୍ଦେହ ଥିଲେ । କିନ୍ତୁ ତାଙ୍କ ପାଖରେ କୌଣସି ଠୋସ୍ ପ୍ରମାଣ ନଥିଲା । ସେଥିପାଇଁ ସେ ବାଙ୍କବାବୁଙ୍କୁ ସେ ସମ୍ପର୍କରେ କିଛି ପଚାରିବାକୁ ସାହସ କରିନଥିଲେ ।

ସେ ସମ୍ବାଦର ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ପତ୍ନୀ ମାଳତୀ ଚୌଧୁରୀ ଜଣେ ଉଗ୍ରପନ୍ଥୀ ନେତ୍ରୀ ଥିଲେ । ବାମପନ୍ଥୀ ଚିନ୍ତାଧାରାରେ ସେ ବିଶ୍ୱାସ କରୁଥିଲେ ।

ଶ୍ରୀମତୀ ଚୌଧୁରୀ ଏ ସମ୍ବାଦ ସଂପର୍କରେ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଶ୍ରୀମତୀ ଶତପଥୀ ଦିଲ୍ଲୀରେ ଅନୁଷ୍ଠିତ ବୈଠକକୁ ଯାଇ ନଥିବାରୁ କ'ଣ ଘଟିଛି ସେ ଜାଣି ନାହାନ୍ତି ବୋଲି କହି ମୁଣ୍ଡ ଉପରୁ ବୋଝ ଖସେଇ ଦେଲେ ।

ବାଙ୍କବାବୁଙ୍କ ସହିତ ମାଳତୀ ଦେବୀଙ୍କର ଭଲ ସମ୍ପର୍କ ଥିଲା । ବାଙ୍କବାବୁ ତାଙ୍କୁ 'ନୁମା' ବୋଲି ସମ୍ବୋଧନ କରୁଥିଲେ । ମାଳତୀ ଦେବୀ ବାଙ୍କବାବୁଙ୍କ ଠାରୁ ଫାଇଲରେ ଥିବା ନାଁ ଗୁଡିକର ସତ୍ୟାସତ୍ୟ ସମ୍ପର୍କରେ ଜାଣିବାକୁ ଚାହିଁଥିଲେ । "ଫାଇଲଟି ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରେ ପ୍ରସ୍ତୁତ କରାଯାଇଥିବା ଦୃଷ୍ଟିରୁ ସେ ବିଷୟରେ ତାଙ୍କର କିଛି ଜ୍ଞାନ ନାହିଁ" ବୋଲି ସେ ବିନମ୍ରତାର ସହତ ଶ୍ରୀମତୀ ଚୌଧୁରୀଙ୍କୁ ଜଣାଇଥିଲେ ।

୧୯୮୮ ମସିହାର ଘଟଣା । ଚିନ୍ତାମଣୀ ପାଣିଗ୍ରାହୀ ସେତେବେଳେ ରାଷ୍ଟ୍ରମନ୍ତ୍ରୀ ଥିଲେ । ଶ୍ରୀ ପାଣିଗ୍ରାହୀ ତାଙ୍କ ନିର୍ବାଚନ ମଣ୍ଡଳୀ ସହିତ ସମ୍ପର୍କ ରଖୁଥିଲେ । ଲୋକଙ୍କ ହାନୀଲାଭ କଥା ବୁଝୁଥିଲେ । କାହା ପାଖରୁ ଚିଠି ଖଣ୍ଡିଏ ପାଇଲେ ଉତ୍ତର ଦେଉଥିଲେ ।

ନୟାଗଡ ଅଞ୍ଚଳରେ ଗୋଟିଏ ରାଷ୍ଟ୍ରାୟତ ବ୍ୟାଙ୍କର ଶାଖା ଖୋଲିବାର କାର୍ଯ୍ୟକ୍ରମ ଥିଲା । ସେଥିପାଇଁ ଶ୍ରୀ ପାଣିଗ୍ରାହୀ କେନ୍ଦ୍ର ଅର୍ଥ ରାଷ୍ଟ୍ରମନ୍ତ୍ରୀ ପି.ସି ସେଠୀଙ୍କୁ ଆମନ୍ତ୍ରଣ କରି ଆଣିଥିଲେ ।

ଶ୍ରୀ ପାଣିଗ୍ରାହୀ ସକ୍ରୀୟ ରାଜନୀତିକୁ ଆସିବା ପୂର୍ବରୁ ସାମ୍ବାଦିକତା କରୁଥିଲେ । ସାମ୍ବାଦିକମାନଙ୍କ ସହିତ ତାଙ୍କର ଭଲ ସମ୍ପର୍କ ଥିଲା । କେଜାଣି କାହିଁକି ସେ ମତେ 'ଗୁରୁଦେବ' ବୋଲି ଡାକୁଥିଲେ । ମୁଁ ମଧ ତାଙ୍କୁ 'ଗୁରୁଦେବ' ବୋଲି ସମ୍ବୋଧନ କରୁଥିଲି ।

ଶ୍ରୀ ପାଣିଗ୍ରାହୀଙ୍କ କଥା ଭାଙ୍ଗି ନପାରି ଆମେ କେଇଜଣ ନୟାଗଡ ବାହାରିଲୁ । ଆମ ସାଙ୍ଗରେ ପି.ଟି.ଆଇ.ର ଲିଙ୍ଗା ରାଓ ଥିଲେ । ଶ୍ରୀ ରାଓ, ଜଣେ ଖୁବ୍ ଫାଷ୍ଟ ଷ୍ଟେନୋଗ୍ରାଫର ଥିଲେ । ସେଥିପାଇଁ ପି.ଟି.ଆଇର ମ୍ୟାନେଜର ରାମକୃଷ୍ଣ ବେହେରା ତାଙ୍କୁ ନୟାଗଡ଼ ପଠାଇଥିଲେ ।

ଲିଙ୍ଗା ରାଓ ଯାଇଥିବାରୁ ଆମେ ସବୁ ଟିକିଏ ଢ଼ିଲା ହୋଇଯାଇଥିଲୁ । ଆମେ ଭାବିଥିଲୁ ଲିଙ୍ଗା ରାଓ ସବୁ ଭାଷଣ ଟିପି ଆଣିବେ, ସେଥିରୁ ଆମେ ନ୍ୟୁଜ୍ କରିଦେବୁ ।

କେନ୍ଦ୍ରମନ୍ତ୍ରୀ ଶ୍ରୀ ସେଠୀ ତାଙ୍କ ଭାଷଣ ଇଂରାଜୀରେ ଆରମ୍ଭ କରି ରେସପେକ୍ଟେଡ ପ୍ରେସିଡେଣ୍ଟ, ଲେଡିଜ୍ ଆଣ୍ଡ ଜେଣ୍ଟିଲମେନ, କହିଲା ପରେ ଲୋକଙ୍କୁ ପଚାରିଲେ ସେ ଇଂରାଜୀରେ କହିଲେ ଠିକ୍ ହେବ ନା ହିନ୍ଦୀରେ । ଲୋକଙ୍କ ପାଖରୁ ଦାବି ହେଲା ହିନ୍ଦୀରେ କହିବାକୁ । ତା'ପରେ ସେ ହିନ୍ଦୀରେ ଭାଷଣ ଦେଲେ । ଶେଷରେ "ଆଇ ଥ୍ୟାଙ୍କ ୟୁ, ଏଭ୍ରିବଡି" ବୋଲି କହି ତାଙ୍କ ବକ୍ତବ୍ୟ ଶେଷ କରିଥିଲେ ।

ଆମେ ଖୁସି ହୋଇଯାଇଥିଲୁ । ଲିଙ୍ଗା ରାଓ ତ ସବୁ ସର୍ଟହାଣ୍ଡରେ ଲେଖିଥିବେ । ଆମର ଆଉ ଚିନ୍ତା କ'ଣ ? ଫେରିଲା ପରେ ପି.ଟି.ଆଇ ଅଫିସରେ ବେହେରାବାବୁ ଲିଙ୍ଗା ରାଓଙ୍କୁ ସେ ଉତ୍ସବର ବିବରଣୀ ଦେବାକୁ କହିଲେ । ଶ୍ରୀ ରାଓ, ତାଙ୍କ ସର୍ଟହାଣ୍ଡ ଖାତାଟି ବେହେରାବାବୁଙ୍କୁ ବଢ଼ାଇ ଦେଲେ । ସେଥିରେ କେବଳ ଦୁଇଟି ଇଂରାଜୀ ବାକ୍ୟ ଥିଲା । ରେସପେକ୍ଟେଡ ପ୍ରେସିଡେଣ୍ଟ, ଲେଡିଜ୍ ଆଣ୍ଡ ଜେଣ୍ଟଲମେନ ଏବଂ ଆଇ ଥ୍ୟାଙ୍କ ୟୁ ଏଭ୍ରିବଡି ।

ବେହେରାବାବୁ ପଚାରିଲେ, "ମିଃ ରାଓ ! କେନ୍ଦ୍ରମନ୍ତ୍ରୀଙ୍କ ଭାଷଣ କାହିଁ ?" ଲିଙ୍ଗା ରାଓ ଉତ୍ତର ଦେଇଥିଲେ କେନ୍ଦ୍ରମନ୍ତ୍ରୀ ଇଂରାଜୀରେ ଯୋଉ ଦୁଇଟି ସେଣ୍ଟେନ୍ସ କହିଥିଲେ, ମୁଁ ତାକୁ ଟିପି ଆଣିଛି । ସେ ହିନ୍ଦୀରେ କ'ଣ କହିଲେ ମୁଁ କିଛି ବୁଝି ପାରିଲିନାହିଁ । ଆମେ ଶ୍ରୀ ରାଓଙ୍କ କଥା ଶୁଣି ନହସି ରହିପାରିନଥିଲୁ ।

ଆଉ ଗୋଟିଏ ଘଟଣା । ସେତେବେଳେ ନନ୍ଦିନୀ ଶତପଥୀ କେନ୍ଦ୍ରରେ ସୂଚନା ଓ ପ୍ରସାରଣ ବିଭାଗର ରାଷ୍ଟ୍ରମନ୍ତ୍ରୀ ଥିଲେ । ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ସହିତ ଭଲ ସମ୍ପର୍କ ଥିବାରୁ ସେ କାହାକୁ ଖାତିର କରୁନଥିଲେ ।

ଓଡ଼ିଶାରେ ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ ସ୍ୱତନ୍ତ୍ର ଉତ୍କଳ କଂଗ୍ରେସ ଦଳର ମିଳିତ ମନ୍ତ୍ରିମଣ୍ଡଳ ଚାଲୁଥିଲା । ମିଳିତ ମନ୍ତ୍ରିମଣ୍ଡଳକୁ ଭାଙ୍ଗି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ ଆସିବାକୁ ଶ୍ରୀମତୀ ଶତପଥୀଙ୍କର ପ୍ରବଳ ଆଗ୍ରହ ଥିଲା । ସେଥିପାଇଁ ସେ ଉଦ୍ୟମ ଆରମ୍ଭ କରିଥିଲେ ।

ମଝିରେ ମଝିରେ ଶ୍ରୀମତୀ ଶତପଥୀ କଟକ ଆସୁଥିଲେ । କଟକ ଆସିଲେ ପିଠାପୁରରେ ଥିବା ତାଙ୍କ ଘରେ ରହୁଥିଲେ । କଟକରେ ଥିବା ସାମ୍ବାଦିକମାନଙ୍କ ଭିତରେ ନଗେନ ବେଉରିଆ, ରାମହରି ମିଶ୍ରଙ୍କ ଭଳି କେତେକ ସାମ୍ବାଦିକଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ଶ୍ରୀମତୀ ଶତପଥୀ କଟକ ଆସିଲେ ଏମାନେ ତାଙ୍କ ଘରକୁ ଯାଉଥିଲେ ।

ମୁଁ ସେତେବେଳେ ଅମୃତ ବଜାର ପତ୍ରିକାର ପାର୍ଟ ଟାଇମ୍ କରେସପଣ୍ଡେଣ୍ଟ ଭାବରେ କଟକରେ କାମ କରୁଥିଲି । ସେହି ସମୟରେ ଦେବେନ୍ଦ୍ର ନାଥ ମହାନ୍ତି, 'ହିନ୍ଦୁସ୍ଥାନ ସମାଚାର' ନ୍ୟୁଜ୍ ସଂସ୍ଥାର ଓଡ଼ିଶା ପାଇଁ ମୁଖ୍ୟ ଥିଲେ । ତାଙ୍କ ସାଙ୍ଗରେ ବିଭିନ୍ନ ସମୟରେ ଦେଖାହୁଏ । ଥରେ ମୁଁ ତାଙ୍କୁ କିଛି କାମ ଦେବାକୁ କହିଥିଲି । ସେ କହିଲେ, "ଠିକ୍ ଅଛି । ତମେ ଆମ ପାଇଁ କାମ କର । କିନ୍ତୁ ଆମ ସଂସ୍ଥାର ଆର୍ଥିକ ସ୍ଥିତି ଭଲ ନାହିଁ । ଆମେ ତମକୁ ମାସକୁ ପଚାଶ ଟଙ୍କା ଦେଇ ପାରିବୁ । ଏଥିରେ ଯଦି ରାଜି, ତେବେ ମଝିରେ ମଝିରେ କିଛି ଖବର ଦିଅ ।"

ଥରେ ମୁଁ, ନଗେନବାବୁ ଓ ରାମହରିବାବୁ ଶ୍ରୀମତୀ ଶତପଥୀଙ୍କ ପାଖକୁ ଯାଇଥିଲୁ । ଶ୍ରୀମତୀ ଶତପଥୀ ଯେ, ମତେ ଜାଣିନଥିଲେ ତା' ନୁହେଁ । କିନ୍ତୁ ମୁଁ ତାଙ୍କ ଇନରସର୍କଲର ଲୋକ ନଥିଲି । କଥା ପ୍ରସଙ୍ଗରେ ଶ୍ରୀମତୀ ଶତପଥୀ ରାଜ୍ୟ ସରକାରଙ୍କ ସମ୍ପର୍କରେ କେତେକ କଟୁ ମନ୍ତବ୍ୟ ଦେଇଥିଲେ । ରାଜ୍ୟ ଯୋଜନା ଠିକ୍ ଭାବରେ କାର୍ଯ୍ୟକାରୀ ହୋଇପାରୁ ନାହିଁ ଇତ୍ୟାଦି ଇତ୍ୟାଦି କହି ସମାଲୋଚନା କରିଥିଲେ ।

ମୁଁ ଶ୍ରୀମତୀ ଶତପଥୀଙ୍କ ବକ୍ତବ୍ୟକୁ ଗୋଟିଏ ନ୍ୟୁଜ୍ କରି ହିନ୍ଦୁସ୍ଥାନ ସମାଚାରକୁ ପଠାଇଦେଲି । ଦେବେନ୍ଦ୍ରବାବୁ ତାକୁ ଏଡିଟ୍ କରି ସବୁ କାଗଜକୁ ରିଲିଜ୍ କରିଦେଲେ ।

'ପ୍ରଜାତନ୍ତ୍ର'ରେ ସେ ନ୍ୟୁଜଟି ନଗେନବାବୁଙ୍କ ହାତରେ ପଡିଲା । ସେ ସେଥିରେ କିଛି ପୁଟ ଲଗାଇ ପ୍ରଜାତନ୍ତ୍ରରେ ପ୍ରଥମ ଷ୍ଟୋରୀ କରି ଛାଡିଦେଲେ ।

ପ୍ରଜାତନ୍ତ୍ରର ସେ ସମୟରେ ବଜାରରେ କିଛିଟା କାଟତି ଥିଲା । ସେ ସମ୍ବାଦରେ ସରକାରୀସ୍ତରରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଲା । ସରକାରଙ୍କ ପକ୍ଷରୁ ଶ୍ରୀମତୀ ଶତପଥୀଙ୍କୁ ସମାଲୋଚନା କରାଗଲା । ସେ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଭିତରେ ମତାନ୍ତର ସୃଷ୍ଟି କରିବାକୁ ଉଦ୍ୟମ କରୁଛନ୍ତି ବୋଲି ଦୋଷାରୋପ ହେଲା ।

କ୍ରମେ ଏହି ଘଟଣା ଗୋଟାଏ 'ଇସ୍ୟୁ'ରେ ପରିଣତ ହୋଇଗଲା । ନଗେନବାବୁ ଓ ରାମହରିବାବୁ ଘଟଣାର ପୂର୍ବାପର ସମ୍ପର୍କ ଜାଣିଥିଲେ । ମୋ ଦ୍ୱାରା ସେ ସମ୍ବାଦଟି ପରିବେଷିତ ହୋଇଥିବା ବିଷୟରେ ସେମାନଙ୍କର ସନ୍ଦେହ ନଥିଲା ।

ମୁଁ ସେ ସମ୍ବାଦଟି ହିନ୍ଦୁସ୍ଥାନ ସମାଚାରକୁ ଦେଇନାହିଁ ବୋଲି ଲେଖିଦେବାକୁ ମୋ ଉପରେ ଚାପ ପଡିଲା । ଏପରି କି ସେତେବେଳର ପିଆଇବି ଅଫିସର ମିହିର ରାଓ ମଧ ମତେ ଡକାଇ ଗୋଟିଏ ଷ୍ଟେଟମେଣ୍ଟ ଦେବା ପାଇଁ ଅନୁରୋଧ କରିଥିଲେ ।

ମୁଁ ସେପରି ଷ୍ଟେଟ୍‌ମେଣ୍ଟିଏ ଦେଇଥିଲେ ଦେବେନ୍ଦ୍ରବାବୁ ନିଶ୍ଚିତ ଭାବରେ ଅଡୁଆରେ ପଡିଥାନ୍ତେ । କେନ୍ଦ୍ର ସୂଚନା ଓ ପ୍ରସାରଣ ମନ୍ତ୍ରୀ ଭାବରେ ଶ୍ରୀମତୀ ଶତପଥୀଙ୍କର ଅଖଣ୍ଡ କ୍ଷମତା ଥିଲା । ଦେବେନ୍ଦ୍ରବାବୁଙ୍କ ଚାକିରି ନେଇଯିବା ତାଙ୍କ ବାଁ ହାତର ଖେଳ ଥିଲା ।

ମୋ ବିବେକ ମତେ ଦଂଶନ କଲା । ମୁଁ ତ ଜୀବନରେ କାହାରି କିଛି ଉପକାର କରିନାହିଁ, କ୍ଷତି କାହିଁକି କରିବି ? ମୁଁ ମୋ କଥାରେ ଅଟଳ ରହିଲି । ମୁଁ ଉପସ୍ଥିତ ଥିଲାବେଳେ ଶ୍ରୀମତୀ ଶତପଥୀ ଯାହାସବୁ କହିଥିଲେ ମୁଁ ତାକୁ ହିନ୍ଦୁସ୍ଥାନ ସମାଚାରକୁ ପଠାଇଥିଲି ବୋଲି ସାଧାରଣରେ ପ୍ରକାଶ କଲି ।

ଏକପକ୍ଷରେ କେନ୍ଦ୍ରମନ୍ତ୍ରୀ ନନ୍ଦିନୀ ଶତପଥୀ, ଅନ୍ୟପକ୍ଷରେ ଦେବେନ୍ଦ୍ର ନାଥ ମହାନ୍ତି । ଦୁଇଜଣଙ୍କ ଜୀବନ ଦର୍ଶନ ଅଲଗା । ଚିନ୍ତାଧାରାରେ ଶ୍ରୀମତୀ ଶତପଥୀ ବାମପନ୍ଥୀ । ଶ୍ରୀ ମହାନ୍ତି ଆର୍‌ଏସଏସର ପୃଷ୍ଠପୋଷକ ।

ଶ୍ରୀ ମହାନ୍ତି ଏକପ୍ରକାର ଆତଙ୍କିତ ହୋଇପଡିଥିଲେ । ମୁଁ ଚାପରେ ପଡି ହିନ୍ଦୁସ୍ଥାନ ସମାଚାରକୁ କିଛି ନ୍ୟୁଜ୍ ଦେଇନାହିଁ ବୋଲି କହିଥିଲେ ଶ୍ରୀମତୀ ଶତପଥୀ ତାଙ୍କ ବିରୋଧରେ ନିଶ୍ଚିତ ଭାବରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥାନ୍ତେ ।

କିଛିଦିନର ଟଣାଓଟରା ପରେ ସମାଧାନର ଗୋଟିଏ ବାଟ ବାହାରିଲା । ଶ୍ରୀମତୀ ଶତପଥୀ ଆନୁଷ୍ଠାନିକ ଭାବରେ ହିନ୍ଦୁସ୍ଥାନ ସମାଚାରର କୌଣସି ପ୍ରତିନିଧିଙ୍କୁ ସାକ୍ଷାତକାର ଦେଇନାହାନ୍ତି ବୋଲି ବିବୃତିଟିଏ ଦେଲେ । ସେଥିରେ ସାପ ମଲା ନାହିଁ, କି ବାଡି ଭାଙ୍ଗିଲା ନାହିଁ । କିନ୍ତୁ ମୋର ଆତ୍ମସନ୍ତୋଷ ଥିଲା ଯେ, ମୁଁ ଚାପ ଆଗରେ ମୁଣ୍ଡ ନ ନୁଆଁଇ ଦେବେନ୍ଦ୍ରବାବୁଙ୍କୁ ସୁରକ୍ଷା ଦେଇଥିଲି ।

ଆଉ ଗୋଟିଏ ଛୋଟିଆ ଘଟଣା । ମୋ ପାଇଁ କିନ୍ତୁ ମହଙ୍ଗା ପଡିଥିଲା । ଭାରତୀୟ ଜାତୀୟ କଂଗ୍ରେସରେ ବିଭାଜନ ପରର ଘଟଣା । ଜାତୀୟସ୍ତରରେ ଏହି ଦଳର ବିଭାଜନ ଘଟି କଂଗ୍ରେସ (ଆର) ଓ କଂଗେସ (ଓ)ରେ ପରିଣତ ହୋଇଯାଇଥିଲା ।

ତାରକେଶ୍ୱରୀ ସିହ୍ନା ଥିଲେ କଂଗ୍ରେସ (ଓ)ର ଜଣେ ଆଗଧାଡିର ନେତ୍ରୀ । ଦେଖିବାକୁ ଯେମିତି, କଥାବାର୍ତ୍ତା ମଧ୍ୟ ସେମିତି । ସେ ଦୁଇଦିନିଆ ଗସ୍ତରେ ଭୁବନେଶ୍ୱର ଆସିଥିଲେ । ଅନ୍ୟାନ୍ୟ କାର୍ଯ୍ୟକ୍ରମ ମଧ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ତାଙ୍କର ଉଦ୍‌ବୋଧନ ଦେବାର ଥିଲା । ଗୋପାଳବାବୁ ସେଦିନ ଭୁବନେଶ୍ୱରରେ ନଥିଲେ । ଶ୍ରୀମତୀ ସିହ୍ନାଙ୍କ ଗସ୍ତ କାର୍ଯ୍ୟକ୍ରମ ସମ୍ପର୍କରେ ନ୍ୟୁଜ୍ ପଠାଇବା ଦାୟିତ୍ୱ ମୋ ଉପରେ ନ୍ୟସ୍ତ ଥିଲା ।

ଡାକ୍ତର ହରେକୃଷ୍ଣ ମଲ୍ଲିକ ସେ ସମୟରେ କଂଗ୍ରେସ (ଓ) ଓଡ଼ିଶା ଶାଖାର ସଭାପତି ଥିଲେ । ରାଜନୀତିରେ ଯୋଗଦେବା ପୂର୍ବରୁ ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଡାକ୍ତର ଥିଲେ । ତାଙ୍କ ସାଙ୍ଗରେ ମୋର ଘନିଷ୍ଠ ସମ୍ପର୍କ ଥିଲା ।

ଶ୍ରୀମତୀ ସିହ୍ନାଙ୍କୁ ସ୍ୱାଗତ କରିବା ପାଇଁ ବିମାନ ବନ୍ଦରକୁ ଯିବାବେଳେ ସେ ମତେ ସାଙ୍ଗରେ ନେଇଯାଇଥିଲେ । ବିମାନ ବନ୍ଦରରେ ଶ୍ରୀମତୀ ସିହ୍ନାଙ୍କ ସାଙ୍ଗରେ ମୋର ପରିଚୟ କରାଇଦେଲେ । ମୁଁ ଶ୍ରୀମତୀ ସିହ୍ନାଙ୍କ ଗାଡିରେ ତାଙ୍କ ସାଙ୍ଗରେ ଗଲି । ସେ ଷ୍ଟେଟ ଗେଷ୍ଟ ହାଉସକୁ ଯାଇ ଫ୍ରେସ ହୋଇ ମେକଅପ ନେଲା ପରେ ବାଣୀବିହାର ବାହାରିଲେ ।

ମୁଁ ଅଫିସକୁ ଫେରି ଶ୍ରୀମତୀ ସିହ୍ନାଙ୍କ ଭୁବନେଶ୍ୱର ପୋଗ୍ରାମ ସମ୍ପର୍କୀୟ ନ୍ୟୁଜ୍ କଲିକତାକୁ ପଠାଇ ଦେଲି । ସେଥିରେ ଲେଖିଥିଲି, "ବିମାନ ବନ୍ଦରରେ ଅନ୍ୟମାନଙ୍କ ମଧ୍ୟରେ କଂଗ୍ରେସ (ଓ) ଓଡ଼ିଶା ଶାଖାର ସଭାପତି ଡଃ. ହରେକୃଷ୍ଣ ମଲ୍ଲିକ, ଶ୍ରୀମତୀ ସିହ୍ନାଙ୍କୁ ସ୍ୱାଗତ ଜଣାଇଥିଲେ ।"

ମୋର ଦୁର୍ଭାଗ୍ୟ । କଲିକତା ଅଫିସରେ ବସିଥିବା ବଙ୍ଗବାସୀମାନେ ଡଃ ହରେକୃଷ୍ଣ ଦେଖିବା ପରେ ମଲ୍ଲିକ ଉପରେ ନଜର ନପକାଇ ମଲ୍ଲିକ ଯାଗାରେ ମହତାବ ବୋଲି ଲେଖିଦେଲେ । ଅମୃତ ବଜାର ପତ୍ରିକାର ପ୍ରଥମ ପୃଷ୍ଠାରେ ଡଃ ହରେକୃଷ୍ଣ ମହତାବ, ଶ୍ରୀମତୀ ସିହ୍ନାଙ୍କୁ ବିମାନବନ୍ଦରରେ ସ୍ୱାଗତ କରିଥିଲେ ବୋଲି ବାହାରିଗଲା ।

ସେ ସମୟରେ ଅମୃତ ବଜାର ପତ୍ରିକାର ଓଡ଼ିଶାରେ ଅଧିକ ପ୍ରସାର ଥିଲା । ଡକ୍ଟର ମହତାବ ସେ ସମ୍ବାଦଟି ପଢ଼ି ଖୁବ୍ ରାଗି ଯାଇଥିଲେ । ଗୋପାଳବାବୁଙ୍କୁ ଫୋନ ଲଗାଇଲେ । ସେ ନଥିଲେ । ତା'ପରେ ପଡିଥିଲା ମୋ ପାଳି ।

ମୁଁ ଫୋନ ଉଠାଇଲା ପରେ ସେ ପଟୁ ଶୁଣାଗଲା, "ମୁଁ ମହତାବ କହୁଛି । ତୁମର ଟିକିଏ କାଣ୍ଡଜ୍ଞାନ ନାହିଁ । ତୁମେ କିପରି ଲେଖିଦେଲ ମୁଁ ବିମାନବନ୍ଦରରେ ତାରକେଶ୍ୱରୀ ସିହ୍ନାଙ୍କୁ ସ୍ୱାଗତ କରିଥିଲି ବୋଲି ? ମୁଁ କ'ଣ କଂଗ୍ରେସ (ଓ)ର ସଭାପତି ? କାହା ସମ୍ପର୍କରେ କିଭଳି ନ୍ୟୁଜ୍ ଲେଖାଯାଏ, ଏଇ ସାମାନ୍ୟ ଭଦ୍ରତା ତୁମେ ଶିଖି ନାହଁ ।"

ଡକ୍ଟର ମହତାବ କହି ଚାଲିଥାନ୍ତି । ମୋ କାନମୁଣ୍ଡା ଝାଇଁ ଝାଇଁ ହୋଇଯାଉଥାଏ । ଉତ୍ତର ଦେବାର ସାହସ କିମ୍ବା ଶକ୍ତି ମୋର ନଥିଲା । ତାଙ୍କ କ୍ରୋଧ ଶାନ୍ତ ହେବା ପରେ ମୁଁ ବିନମ୍ରତାର ସହିତ କହିଥିଲି, "ଦେଖନ୍ତୁ ଆଜ୍ଞା, ମୁଁ ଡଃ ହରେକୃଷ୍ଣ ମଲ୍ଲିକ ବୋଲି ପଠାଇଥିଲି । କଲିକତାରେ ତାଙ୍କୁ କେହି ଚିହ୍ନନ୍ତି ନାହିଁ । ମୁଁ ବୋଧହୁଏ ଭୁଲ୍‌ରେ ଡଃ ମଲ୍ଲିକ ଲେଖି ଦେଇଛି ବୋଲି ଭାବି ସେମାନେ ଡଃ ହରେକୃଷ୍ଣ ପରେ ମଲ୍ଲିକ ଯାଗାରେ ମହତାବ ଲେଖିଦେଲେ ।"

ମୁଁ ଡକ୍ଟର ମହତାବଙ୍କୁ ବ୍ୟକ୍ତିଗତ ଭାବରେ ଜାଣିଥିଲି । ପ୍ରତିଶୋଧ ନେବା ପାଇଁ ସେ କେତେଦୂରକୁ ଯାଇପାରନ୍ତି ସେ ସମ୍ପର୍କରେ ମଧ୍ୟ ସମ୍ପୂର୍ଣ୍ଣ ଭାବରେ ଅବଗତ ଥିଲି ।

କାଳବିଳମ୍ବ ନକରି ମୁଁ ତାଙ୍କ ବାସଭବନ 'ଏକାମ୍ରନିବାସ'କୁ ଧାଇଁଲି । ତାଙ୍କର ସେତେବେଳକୁ କ୍ରୋଧ ଶାନ୍ତ ହୋଇଯାଇଥିଲା । ମୁଁ ତାଙ୍କୁ ଦେଖାକରି ସବୁ କଥା ଆଉଥରେ କହିଲି ।

ସେ ସବୁକଥା ଶୁଣି "ହଉ ହେଲା, ତୁମେ ଶୀଘ୍ର ଏହାର ସଂଶୋଧନ ପଠାଅ । ସେମାନଙ୍କୁ କୁହ ଫ୍ରଣ୍ଟପେଜରେ ଛାପିବେ ।" ମୁଁ କେବଳ 'ଆଜ୍ଞା' ବୋଲି କହି ନମସ୍କାର କରି ତାଙ୍କ ପାଖରୁ ଫେରିଆସିଥିଲି ।

ସୌଭାଗ୍ୟକୁ ପରଦିନ ପତ୍ରିକାର ପ୍ରଥମ ପୃଷ୍ଠାରେ ସଂଶୋଧନଟି ପ୍ରକାଶ ପାଇଲା । ପରେ ଡକ୍ଟର ମହତାବଙ୍କ ଆଉ କିଛି ପ୍ରତିକ୍ରିୟା ପ୍ରକାଶ ପାଇନଥିଲା । ଏକ ଆସନ୍ନ ବିପଦରୁ ମୁଁ ରକ୍ଷା ପାଇଯାଇଥିଲି ।

କଟକରେ ଥିବା ସମୟରେ ଆଉ ଗୋଟିଏ ଘଟଣାକୁ ମୁଁ ଆଜିପର୍ଯ୍ୟନ୍ତ ଭୁଲିପାରି ନାହିଁ । ନିଜର ବ୍ୟକ୍ତିତ୍ୱର ପ୍ରଚାର ପାଇଁ କିଭଳି ଛଳନା ଓ ମିଥ୍ୟାଚାରର ଆଶ୍ରୟ ନିଆଯାଏ, ସେ ଘଟଣାଟି ଥିଲା ତା'ର ଏକ ଜ୍ୱଳନ୍ତ ଉଦାହରଣ ।

ମୋର ସ୍ପଷ୍ଟ ମନେ ପଡୁଛି । ସେଦିନ ଥିଲା ୧୯୮୬ ମସିହା ମାର୍ଚ୍ଚମାସ ୧୮ ତାରିଖ । କଟକରେ ଭାରତୀୟ ପେଶାଦାର ସାମ୍ବାଦିକ ମହାସଂଘର ତିନିଦିନିଆ ଜାତୀୟ ପରିଷଦ ଅଧିବେଶନ ଶେଷ ହୋଇଯାଏ । ଅଧିବେଶନ ଶେଷରେ ବିଭିନ୍ନ ରାଜ୍ୟରୁ ଆସିଥିବା ପ୍ରତିନିଧିମାନେ ନିଜ ନିଜ ରାଜ୍ୟକୁ ଫେରି ଯାଇଥିଲେ । ମାତ୍ର ସଭାପତି ବିକ୍ରମ ରାଓ କଟକରେ ଆଉ ଗୋଟିଏ ଦିନ ରହିଥିଲେ ।

ଶ୍ରୀ ରାଓ, 'ସମାଜ ସଂପାଦକ ରାଧାନାଥ ରଥଙ୍କୁ ଦେଖା କରିବାକୁ ଚାହିଁଥିଲେ । ୧୮ ତାରିଖ ସକାଳେ ଶ୍ରୀ ରଥ ତାଙ୍କୁ ଜଳଖିଆ ଖାଇବା ପାଇଁ ଡାକିଥିଲେ । ମୁଁ ଶ୍ରୀ ରାଓଙ୍କ ସହିତ 'ସମାଜ' ଅଫିସକୁ ଯାଇଥିଲି । ପ୍ରଥମେ ଶ୍ରୀ ରଥଙ୍କ ଝିଅ ମନୋରମା ମହାପାତ୍ରଙ୍କ ସହିତ ସାକ୍ଷାତ ହୋଇଥିଲା । ଶ୍ରୀ ରାଓଙ୍କ ସହିତ ମତେ ଦେଖି ସେ ଟିକିଏ ବିଚଳିତ ହୋଇଯାଇଥିଲା ।

ମୁଁ ତାଙ୍କୁ କହିଲି, "ଦେଖନ୍ତୁ, ମାଡାମ, ମୁଁ ବିନା ନିମନ୍ତ୍ରଣରେ କୋଉଠିକ୍ ଯାଏ ନାହିଁ । ଜଳଖିଆ ଖାଇବା ତ ଦୂରର କଥା । ସେଥିପାଇଁ ଆପଣ ବ୍ୟସ୍ତ ହେବେ ନାହିଁ ।

ଶ୍ରୀମତୀ ମହାପାତ୍ର, ଶ୍ରୀ ରାଓଙ୍କୁ ଭିତରକୁ ଡାକି ଦେଲେ । ମୁଁ ବାହାରେ ପଡ଼ିଥିବା ଚଉକୀରେ ବସି ରହିଲି । ଶ୍ରୀମତୀ ମହାପାତ୍ର, ଶ୍ରୀ ରାଓଙ୍କ ସହିତ ଯେତିକି ସମୟ କଥାବାର୍ତ୍ତା ହେଲେ ସେଥିରୁ ଅଧିକାଂଶ ସମୟ କଟିଥିଲା ମୋ ବିରୋଧରେ ବିଷୋଦଚାରଣ କରିବାରେ । ଜଳଖିଆ ପର୍ବ ପରେ ଆମେ ସମାଜ ଅଫିସରୁ ଫେରିଥିଲୁ ।

ସେ ଦିନ ସମାଜ ସଂପାଦକ ରାଧାନାଥ ରଥ, କମ୍ୟୁନିଷ୍ଟ ନେତା ଗଙ୍ଗାଧର ପାଇକରାୟଙ୍କ ସହିତ ଏକ ରାଜନୈତିକ କାର୍ଯ୍ୟକ୍ରମରେ ଯୋଗଦେବା ପାଇଁ ଖୋର୍ଦ୍ଧା ନିକଟବର୍ତ୍ତୀ ଗଣମାଣତ୍ରି ଗ୍ରାମକୁ ଯାଇଥିଲୁ ।

ସେଠାରେ କଂଗ୍ରେସ ଓ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ଉତ୍କଟ ବିବାଦ ଥିଲା । ସେଥିପାଇଁ ସେ ସଭାକୁ ନଯିବା ପାଇଁ ସେତେବେଳର ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଶ୍ରୀ

ରଥଙ୍କ ପାଖକୁ ଖବର ପଠାଇଥିଲେ । ତା'ସତ୍ତ୍ୱେ ସେ କମ୍ୟୁନିଷ୍ଟ ନେତାଙ୍କ ସହିତ ସଭାକୁ ଯାଇଥିଲେ ।

ଶ୍ରୀ ରଥ, ପ୍ରତିନିଧି ସଭା ସମିତିକୁ ଅତିଥି ହୋଇ ଯିବାକୁ ଯେତିକି ବ୍ୟାକୁଳ ଥିଲେ, ତାଙ୍କୁ ନିମନ୍ତ୍ରଣ କରି ସମାଜରେ ପବ୍ଲିସିଟି ପାଇବା ପାଇଁ ଆୟୋଜକମାନେ ତିରୋଧିକ ଆଗ୍ରହୀ ହେଉଥିଲେ ସନ୍ଧ୍ୟାହେଲେ କୌଣସି ସଭାର କାର୍ଯ୍ୟକ୍ରମ ନଥିଲେ ଶ୍ରୀ ରଥ ବ୍ୟସ୍ତ ହୋଇପଡୁଥିଲେ । ସେଥିପାଇଁ ତାଙ୍କ ଚେଲାମାନେ ତାଙ୍କ ପାଇଁ ଅଧିକାଂଶ ଦଳ ନିମନ୍ତ୍ରଣ ଯୋଗାଡ କରୁଥିଲେ ।

ସେ ଦିନ ରାଜନୈତିକ ସଭା କାମ ଶେଷକରି ଫେରିଲା ପରେ ଶ୍ରୀ ରଥ ଓ ଶ୍ରୀ ପାଇକରାୟ ବସିଥିବା ଗାଡ଼ି ଉପରେ କିଛି କଂଗ୍ରେସ ଲୋକ ଆକ୍ରମଣ କରିଥିଲେ । ଶ୍ରୀ ରଥ, ଗାଡିର ଆମ ସିଟ୍‌ରେ ବସିଥିଲେ । ଗାଡିର ଡ୍ରାଇଭର ବିଜୟ କୁମାର ପରିଡା(ବିପିନ) ବୁଦ୍ଧି ଖର୍ଚ୍ଚ କରି ଶ୍ରୀ ରଥଙ୍କୁ ସିଟ୍‌ରୁ ତଳକୁ ଖସେଇ ଦେଇଥିଲେ । ଫଳରେ ତାଙ୍କ ଦେହରେ କୌଣସି ଆଘାତ ଲାଗି ନଥିଲା ।

ଶ୍ରୀ ରଥ ଓ ଶ୍ରୀ ପାଇକରାୟ ଖୋର୍ଦ୍ଧାରେ ପହଞ୍ଚିଲା ପରେ ଡାକ୍ତର ଶରତ ମିଶ୍ରଙ୍କୁ ଡକେଇ ଥିଲେ । ଖବରପାଇ ସେତେବେଳର ସବ୍‌କଲେକ୍ଟର ସର୍ବେଶ୍ୱର ମହାନ୍ତି ମଧ ସେଠାକୁ ଯାଇଥିଲେ । "ଶ୍ରୀ ରଥଙ୍କ କହିବା ଅନୁସାରେ ତାଙ୍କ ଦେହର ବିଭିନ୍ନ ଅଂଶରେ ବ୍ୟାଣ୍ଡେଜ ବନ୍ଧା ଯାଇଥିଲା । ଉପରେ ଟିଚର ଆୟୋଡିନ ଢ଼ଳା ଯାଇଥିଲା । ମାତ୍ର ବାସ୍ତବରେ ସେ ଆହତ ହୋଇନଥିଲେ ।" ଏକଥା କହିଥିଲେ ସେଠାରେ ଉପସ୍ଥିତ ଥିବା ଜଣେ ବରିଷ୍ଠ ଅଫିସର ।

ଶ୍ରୀ ରଥ ଖୋର୍ଦ୍ଧାରେ ଥାଇ କଟକକୁ ଖବର ପଠାଇ କହିଥିଲେ, ତାଙ୍କ ଉପରେ ମରଣାତ୍ମକ ଆକ୍ରମଣ ହୋଇଥିଲା । ତାଙ୍କୁ ଜୀବନରେ ମାରିଦେବା ପାଇଁ ଉଦ୍ୟମ ହୋଇଥିଲା ।

ଏ ଖବରପାଇ ତାଙ୍କ ଚେଲା ଚାମୁଣ୍ଡାମାନେ ପ୍ରଚାରରେ ଲାଗିଗଲେ । "ସାମ୍ବାଦିକମାନଙ୍କ ଉପରେ ବର୍ବରୋଚିତ ଆକ୍ରମଣ ହୋଇଥିବା କଥା ଚାରିଆଡେ ପ୍ରଚାର କଲେ । ପରଦିନ ମାର୍ଚ୍ଚ ୧୯ ତାରିଖ ଦିନ କଟକ ପ୍ରେସ୍ କ୍ଲବରେ ଏକ ଜରୁରୀ ବୈଠକ ଡକାଇ ଘଟଣାର ପ୍ରତିବାଦ ସ୍ୱରୂପ ମାର୍ଚ୍ଚ ୨୧ ତାରିଖ ଶୁକ୍ରବାର ଦିନଟିକୁ 'ପ୍ରତିବାଦ ଦିବସ' ରୂପେ ପାଳନ କରିବାକୁ ସମଗ୍ର ରାଜ୍ୟର ସାମ୍ବାଦିକଙ୍କୁ ଆବେଦନ କରାଗଲା । 'କଳାବ୍ୟାଜ' ପରିଧାନ କରିବାକୁ ଏବଂ ବିଧାନସଭା ବିବରଣୀ ସଂଗ୍ରହ ବର୍ଜନ କରିବାକୁ ସାମ୍ବାଦିକ ଭାଇମାନଙ୍କୁ ଅନୁରୋଧ କରାଗଲା । ଏହାବ୍ୟତୀତ ଏହାର ପ୍ରତିବାଦରେ ସମସ୍ତ ସମ୍ବାଦପତ୍ରର ପ୍ରକାଶକଙ୍କୁ ଦିନକ ପାଇଁ ସମ୍ବାଦପତ୍ର ପ୍ରକାଶନ ବନ୍ଦ ରଖିବା ପାଇଁ ନିବେଦନ କରାଯାଉଥିଲା ।"

ମୁଁ ଆଉ କେତେକ ବନ୍ଧୁ ସେଦିନ ସେଠାରେ ଉପସ୍ଥିତ ଥିଲୁ । ଆମର ଭିନ୍ନମତ ଥିଲା । ଆମେ ଦର୍ଶାଇଥିଲୁ ଶ୍ରୀ ରଥ ସେଦିନ ଜଣେ କର୍ତ୍ତବ୍ୟରତ ସାମ୍ବାଦିକ ଭାବରେ ସମ୍ବାଦ ସଂଗ୍ରହ କରିବାକୁ ଏକ ରାଜନୈତିକ ସଭାକୁ ଅତିଥି ହୋଇ ଯାଇଥିଲେ ।

ମାର୍ଚ୍ଚ ୨୧ ତାରିଖ ଅପରାହ୍ନରେ ମୁଁ ବିଧାନସଭାକୁ ଯାଇଥିଲି । ରାଧାନାଥ ରଥଙ୍କ ଭୟ ଦେଖାଇ ତାଙ୍କ ଚେଲାମାନେ ଅନ୍ୟ ସାମ୍ବାଦିକ ବନ୍ଧୁ ବିଧାନସଭା ଭିତରକୁ ଛାଡି ଦେଉନଥିଲେ ।

ମୁଁ ଯେହେତୁ ସେମାନଙ୍କ ମତ ସହିତ ସହମତି ନଥିଲି, ସେମାନଙ୍କ କଥାକୁ ଖାତିର ନକରି ପ୍ରେସ୍ ଗ୍ୟାଲେରିକୁ ଗଲି, ମତେ ସେମାନେ ବାଧାଦେବାକୁ ଉଦ୍ୟମ କରିଥିଲେ । ମୋ ଦେଖାଦେଖି ଆଉ କେତେଜଣ ଗ୍ୟାଲେରିକୁ ଯାଇଥିଲେ ।

ଏହାପରେ ମୋ ବିରୋଧରେ ଆରମ୍ଭ ହୋଇଥିଲା ଷଡ଼ଯନ୍ତ୍ର । ମୋ ଚରିତ୍ର ସଂହାର କରାଯାଇ ସମାଜର ପ୍ରଥମ ପୃଷ୍ଠାରେ ବଡ଼ ବଡ଼ ଅକ୍ଷରରେ ସମ୍ବାଦ ପ୍ରକାଶ କରାଯାଇଥିଲା । ମୁଁ ସେଥିରେ ବିବ୍ରତ ନହୋଇ ମୋ ନିଷ୍ପତ୍ତିରେ ଅଟଳ ଥିଲି ।

ସେତେବେଳେ ମୁଁ ଉତ୍କଳ ସାମ୍ବାଦିକ ସଂଘର ସାଧାରଣ ସଂପାଦକ ଥିଲି । ମୁଁ କିପରି ସଂଘର ସଭାପତି ହୋଇପାରିବି ନାହିଁ ସେଥିପାଇଁ ଶ୍ରୀ ରଥଙ୍କ ଆଶୀର୍ବାଦକ୍ରମେ ଯୋଜନାବଦ୍ଧ ଭାବେ କାର୍ଯ୍ୟ ଆରମ୍ଭ ହୋଇଥିଲା । ମାତ୍ର ନୀତି ସହିତ ସାଲିସ୍ ନକରି ମୋ ନୀତିରେ ଅଟଳଥିବାରୁ ମୋର ମନବଳ ବଢ଼ିଯାଇଥିଲା ।

ମୁଁ ସେମାନଙ୍କୁ ସ୍ପଷ୍ଟ ଭାବରେ କହିଥିଲି, "ତମେ ସବୁ ବଳପ୍ରୟୋଗ କରି ମତେ ମୋ କର୍ତ୍ତବ୍ୟ ପାଳନରୁ ଅଟକାଇ ପାରିବ ନାହିଁ । କାରଣ ତମେସବୁ ହେଉଛ ପଞ୍ଝାଏ ନୀତିହୀନ ବ୍ୟକ୍ତି । ନିଜ ଚାକିରୀର ସୁରକ୍ଷା ପାଇଁ ନୀତି ସହିତ ସାଲିସ୍ କରୁଛ । ମାଲିକଙ୍କୁ ଖୁସିକରି ହାତ ଚିକ୍କଣ କରିବା ପାଇଁ ଲାଗିଛ । ତମେ କ'ଣ ମତେ ଅଟକାଇବ ।

ସମୟର ପରିବର୍ତ୍ତନ ସହିତ ଆଜିକାଲି ସମ୍ବାଦ ସଂଗ୍ରହ କରିବାର ବାଟ ବଦଳିଗଲାଣି । ଆଜିକାଲି ପିଲାଏ ବଜାରରୁ କଞ୍ଚାମାଲ ଆଣି ତାକୁ ରୋଷେଇ କରି ଖାଇବାରେ ବିଶ୍ୱାସ କରୁନାହାନ୍ତି । ସେମାନଙ୍କୁ ଦରକାର ପିଜା, ବରଗର ଭଳି ରେଡିମେଡ୍ ଖାଦ୍ୟ ।

ସେମାନଙ୍କ ଚାହିଦା ଅନୁଯାୟୀ 'କୁକ୍‌ଡ୍ ଫୁଡ୍' ମଧ୍ୟ ମିଳିଯାଉଛି । 'ରାତ୍ ଗୟା ବାତ୍ ଗୟା' ନୀତିରେ ଯାହା ପାରିଲେ ତାକୁ ପଠାଇଦେଲେ କାମ ସରିଲା ବୋଲି ସେମାନେ ବିଚାରୁଛନ୍ତି ।

ସହଜରେ ସେମାନଙ୍କ କାମ ହୋଇଯାଉଛି ସତ, ମାତ୍ର କଞ୍ଚାମାଲ ଆଣି ରୋଷେଇ କରି ଅନ୍ୟମାନଙ୍କୁ ପରଷିବାରେ ଯେଉଁ ଆନନ୍ଦ, ତାହା ସେମାନେ ନିଶ୍ଚିତ ଭାବରେ ପାଇପାରୁ ନଥିବେ ।

# ଓଡ଼ିଶା ରାଜନୀତିର କେତୋଟି ଆଖିଦେଖା କଥା

ସାମ୍ବାଦିକତାର ପଚାଶ ବର୍ଷ ଭିତରେ ମୁଁ ଓଡ଼ିଶା ରାଜନୀତିର ବହୁ ଉତ୍‌ଥାନପତନ ନିଜ ଆଖିରେ ଦେଖିଛି । ଏହି ସମୟ ଭିତରେ ମୁଁ ଏକାଧିକ ମୁଖ୍ୟମନ୍ତ୍ରୀଙ୍କ ଘନିଷ୍ଠ ସମ୍ପର୍କରେ ଆସିଛି । ସେମାନଙ୍କ କାର୍ଯ୍ୟଶୈଳୀକୁ ନିକଟରୁ ଅନୁଧାନ କରିବାର ସୁଯୋଗ ମତେ ମିଳିଛି ।

୧୯୭୧ରୁ ୨୦୦୦ମସିହା ପର୍ଯ୍ୟନ୍ତ ଓଡ଼ିଶା ରାଜନୀତିର ବିବର୍ତ୍ତନକୁ ଅନୁଧାନ କରିବାର ସୁଯୋଗ ପାଇଛି । ଅନେକ ମନ୍ତ୍ରିମଣ୍ଡଳର ଗଠନ ଓ ପତନ ମୋ ଆଖି ଆଗରେ ଘଟିଛି । ସେସବୁ କଥା ମୋ ମନ ଭିତରେ ଏବେ ବି ତାଜା ରହିଛି ।

୧୯୬୯ ମସିହା ଶେଷବେଳକୁ ଭାରତୀୟ ଜାତୀୟ କଂଗ୍ରେସ ଦଳ ଭିତରେ ତୀବ୍ର ମତଭେଦ ସୃଷ୍ଟି ହୋଇଥିଲା । ଦଳ ଭିତରେ ମୋରାରଜୀ ଦେଶାଇ, ନୀଲମ୍ ସଞ୍ଜିବ ରେଡ୍ଡୀ, ଏସ୍. ନିଜଲିଙ୍ଗପା, ଏସ୍.କେ ପାଟିଲ, ଚନ୍ଦ୍ରଭାନୁ ଗୁପ୍ତ, ଅତୁଲ୍ୟ ଘୋଷ ପ୍ରମୁଖ କେତେକ ନେତା ମିଶି 'ସିଣ୍ଡିକେଟ୍' ନାମରେ ଗୋଟିଏ ଗୋଷ୍ଠୀ ଗଠନ କରି ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ଗାଦିଚ୍ୟୁତ କରିବା ପାଇଁ ଉଦ୍ୟମ କରୁଥିଲେ ।

ଅନ୍ୟପକ୍ଷରେ ଜଗଜ୍ଜୀବନ ରାମ, ୱାଇ.ବି ଚାଭନ, ସି. ସୁବ୍ରମଣ୍ୟମ ପ୍ରମୁଖ ଶ୍ରୀମତୀ ଗାନ୍ଧୀଙ୍କୁ ସମର୍ଥନ କରୁଥିଲେ ।

ଭାରତର ରାଷ୍ଟ୍ରପତି ଜାକିର ହୁସେନଙ୍କ ଆକସ୍ମିକ ବିୟୋଗ ପରେ ରାଷ୍ଟ୍ରପତି ନିର୍ବାଚନକୁ କେନ୍ଦ୍ରକରି ଦୁଇ ଗୋଷ୍ଠୀ ମୁହାଁମୁହିଁ ହୋଇଥିଲେ । ଶେଷରେ ଦଳର ବିଭାଜନ ଘଟି କଂଗ୍ରେସ(ଆର) ଓ କଂଗ୍ରେସ(ଓ)ରେ ପରିଣତ ହୋଇଥିଲା ।

ଦଳର ଭବିଷ୍ୟତ କର୍ମପନ୍ଥା ନିର୍ଦ୍ଧାରଣ ନିମନ୍ତେ ୧୯୭୦ ମସିହା ଫେବୃଆରୀ ମାସ ୨୨ ତାରିଖରେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ଗୋଟିଏ ବୈଠକ କଟକର ସ୍ୱରାଜ ଆଶ୍ରମ ଠାରେ ଡକାଯାଇଥିଲା । ସେହି ବୈଠକରେ କଂଗ୍ରେସ କାର୍ଯ୍ୟକାରୀ ସଦସ୍ୟ ସର୍ଦ୍ଦାର ଦରବାରା ସିଂହ ପର୍ଯ୍ୟବେକ୍ଷକ ଭାବେ ଯୋଗଦେଇଥିଲେ ।

ଜଗଜ୍ଜୀବନ ରାମଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସ ପ୍ରତି ଆନୁଗତ୍ୟ ପ୍ରକାଶ କରିବା ଉଦ୍ଦେଶ୍ୟରେ ବିଜୁ ପଟ୍ଟନାୟକ ସେ ବୈଠକରେ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ । ନିଜଲିଙ୍ଗପ୍ପାଙ୍କ କଂଗ୍ରେସ ପ୍ରତି ଆନୁଗତ୍ୟ ସ୍ୱୀକାର କରିବା ପାଇଁ ଦୀନବନ୍ଧୁ ସାହୁ ତା' ଉପରେ ଗୋଟିଏ ସଂଶୋଧନ ପ୍ରସ୍ତାବ ଆଣିଥିଲେ ।

ଦୀର୍ଘ ସମୟ ଧରି ଆଲୋଚନା ପରେ ଶ୍ରୀ ସାହୁଙ୍କ ସଂଶୋଧନ ପ୍ରସ୍ତାବଟି ନାକଚ ହୋଇ ଯାଇଥିଲା ଏବଂ ଶ୍ରୀ ପଟ୍ଟନାୟକଙ୍କ ପ୍ରସ୍ତାବଟି ଗୃହୀତ ହୋଇଥିଲା ।

ଏହାପରେ ଦୀନବନ୍ଧୁ ସାହୁ, ବିଜୟ କୁମାର ପାଣି, ଡକ୍ଟର ହରେକୃଷ୍ଣ ମଲ୍ଲିକ ପ୍ରମୁଖ ସେ ବୈଠକ ଛାଡି ଚାଲିଯାଇଥିଲେ ।

ସେମାନଙ୍କର ବୈଠକ ଛାଡ଼ି ଚାଲିଯିବାର ଦୃଶ୍ୟ ଅତ୍ୟନ୍ତ ହୃଦୟ ବିଦାରକ ହୋଇଥିଲା । ଏପରି ଏକ ପରିସ୍ଥିତିକୁ ସହ୍ୟ କରି ନପାରି ଅନେକ କଂଗ୍ରେସ ନେତା କ୍ରନ୍ଦନ କରୁଥିବାର ଦେଖାଯାଇଥିଲା । ଏଥିସହିତ ଓଡ଼ିଶା ପ୍ରଦେଶ କଂଗ୍ରେସ ବସ୍ତୁତଃ ଦୁଇ ଭାଗ ହୋଇଯାଇଥିଲା । ସେଦିନର ସେ ବୈଠକର ଦୃଶ୍ୟ ମୁଁ ଆଜି ପର୍ଯ୍ୟନ୍ତ ଭୁଲିପାରିନାହିଁ ।

୧୯୭୨ ମସିହାର ଘଟଣା । ମୁଁ ନୂଆ ନୂଆ ଭୁବନେଶ୍ୱରକୁ ଆସିଥାଏ । ବିଧାନସଭାର ଅଧିବେଶନ ଚାଲୁଥିଲା ବେଳେ ଜାନୁଆରୀ ୪ ତାରିଖ ଦିନ କଂଗ୍ରେସ ଓ ସିପିଆଇର ମିଳିତ ବିକ୍ଷୋଭର ଆୟୋଜନ ହୋଇଥିଲା ।

ସେତେବେଳେ ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ ସ୍ୱତନ୍ତ୍ର ଓ ଉତ୍କଳ କଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ କ୍ଷମତାରେ ଥିଲେ । ସେଦିନ ବିକ୍ଷୋଭ ପଟୁଆର କଞ୍ଚନା ଛକରୁ ବାହାରି ରାଜପଥ ବାଟ ଦେଇ ବିଧାନସଭା ନିକଟକୁ ଆସିଥିଲା ।

ବିକ୍ଷୋଭର ସମ୍ମୁଖ ଭାଗରେ କଂଗ୍ରେସ ନେତା ବିନାୟକ ଆଚାର୍ଯ୍ୟ, ବ୍ରଜମୋହନ ମହାନ୍ତି, ବନମାଳୀ ପଟ୍ଟନାୟକ, ସିପିଆଇ ନେତା ଦୁର୍ଗାଚରଣ ମହାନ୍ତି ଓ ସୋସାଲିଷ୍ଟ ନେତା ପ୍ରସନ୍ନ କୁମାର ଦାଶ ପ୍ରମୁଖ ରହିଥିଲେ । ଡକ୍ଟର ହରେକୃଷ୍ଣ ମହତାବ, ବାଙ୍କ ବିହାରୀ ଦାସ, ସଦାନନ୍ଦ ମହାନ୍ତି ପ୍ରମୁଖ ପୁରୋଭାଗରେ ଥିଲେ ।

ବିକ୍ଷୋଭ ପଟୁଆରକୁ ବିଧାନସଭା ସମ୍ମୁଖରେ ପୁଲିସ ଅଟକାଇ ଥିଲା । ପରେ ବିକ୍ଷୋଭକାରୀଙ୍କ ପକ୍ଷରୁ ଟେକାପଥର ମାଡ଼ ହୋଇଥିଲା । ପାଲଟା ଜବାବରେ ପୁଲିସ ପକ୍ଷରୁ ଲୁହବୁହା ଗ୍ୟାସ ଓ ଲାଠିଚାର୍ଜ କରାଯାଇଥିଲା । ଏଥିରେ ବିନାୟକ ଆଚାର୍ଯ୍ୟ, ବନମାଳୀ ପଟ୍ଟନାୟକ, ବ୍ରଜମୋହନ ମହାନ୍ତି, ଦୁର୍ଗାଚରଣ ମହାନ୍ତି ପ୍ରମୁଖ ଆହତ ହୋଇଥିଲେ । ସେମାନଙ୍କୁ ଚିକିତ୍ସା ପାଇଁ କ୍ୟାପିଟାଲ ହସ୍‌ପିଟାଲରେ ଭର୍ତ୍ତି କରାଯାଇଥିଲା ।

ଏହାପରେ ବାତାବରଣ ଅଶାନ୍ତ ହୋଇଯାଇଥିଲା । ଡକ୍ଟର ମହତାବଙ୍କ ଇଙ୍ଗିତରେ କଂଗ୍ରେସ ଦଳର କେତେକ ବିଧାୟକ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାଶଙ୍କ ଚେମ୍ବରରେ ପଶି ତାଙ୍କୁ ନାନାପ୍ରକାର

ଗାଳିଗୁଲଜ କରି ତୁରନ୍ତ ଇସ୍ତଫା ଦେବା ପାଇଁ ଦାବି କରିଥିଲେ । କଥା ସେତିକିରେ ଅଟକି ନଥିଲା ।

କେତେକ ବିଧାୟକ ବଳ ପ୍ରୟୋଗ କରି ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କ ଚେମ୍ବର ବାହାରକୁ ଘୋଷାରି ଆଣିଥିଲେ । ଡକ୍ଟର ମହତାବ, ବିଧାନସଭା ବାରଣ୍ଡାରେ ଥାଇ "ଚେମେଡ଼ା ବୁଢ଼ାକୁ ଘୋଷାରି ଆଣ, ମାଡ଼ ନଖାଇଲେ ସିଏ ଯିବନାହିଁ" ବୋଲି ଉତ୍ତେଜିତ କଣ୍ଠରେ କହୁଥିବା କଥା ଶୁଣାଯାଇଥିଲା । ମୁଖ୍ୟମନ୍ତ୍ରୀଙ୍କୁ ବିକ୍ଷୋଭକାରୀମାନେ ବିଧାନସଭା ପୋର୍ଟିକୋ ପର୍ଯ୍ୟନ୍ତ ଜବରଦସ୍ତ ନେଇଯାଇଥିଲେ । ପୁଲିସ ମାଡ଼ରେ ଆହତ ହୋଇ ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ନେତାମାନଙ୍କୁ ଦେଖିବାକୁ ଯିବା ପାଇଁ ତାଙ୍କୁ ଏକପ୍ରକାର ବାଧ୍ୟ କରିଥିଲେ ।

ରାଜନୀତି କ୍ଷେତ୍ରରେ ଯେ, କେହି କାହାର ଶତ୍ରୁ ବା ମିତ୍ର ନୁହନ୍ତି, ସେଦିନ ସେକଥା ଆଉଥରେ ପ୍ରମାଣିତ ହୋଇଥିଲା । ସେଦିନ ଘଟିଥିବା ସମସ୍ତ ଘଟଣା ଆଖିରେ ଦେଖିବାର ସୁଯୋଗ ମତେ ମିଳିଥିଲା ।

ଅପରାହ୍ନରେ ବିଧାନସଭା ଆରମ୍ଭ ହେବା ପରେ ପୂର୍ବାହ୍ନର ଘଟଣା ସେଠାରେ ପ୍ରତିଫଳିତ ହୋଇଥିଲା । ଉଭୟ ଶାସକ ଓ ବିରୋଧୀ ଦଳ ସଦସ୍ୟମାନେ ପରସ୍ପରକୁ ଦୋଷାରୋପ କରିଥିଲେ ।

କଂଗ୍ରେସ ଦଳର କେତେକ ସଦସ୍ୟ ମାଇକ୍ ଭାଙ୍ଗି ଗୃହର ମଧ୍ୟଭାଗକୁ ପଶି ଆସିଥିଲେ । ସେମାନଙ୍କ ଭିତରେ ଥିଲେ ରାମଗିରିର ବିଧାୟକ ଗୋରସାଙ୍ଗ ସବର । ତାଙ୍କ ଉଚ୍ଚତା ପାଞ୍ଚଫୁଟ୍‌ରୁ କମ୍ ଥିଲା । ସେ ଗୋଟିଏ ଭଙ୍ଗା ମାଇକ୍ ଧରି ବିଜୁ ପଟ୍ଟନାୟକଙ୍କ ଆଡକୁ ମାଡି ଆସିଥିଲେ । ବିଜୁ ପଟ୍ଟନାୟକଙ୍କ ଉଚ୍ଚତା ଛଅଫୁଟ୍‌ରୁ ଅଧିକ । ଶ୍ରୀ ପଟ୍ଟନାୟକ ଶ୍ରୀ ସବରଙ୍କୁ ଦେଖି କେବଳ ହସିଦେଇଥିଲେ ।

ତା' ପରଦିନ ମୁଖ୍ୟମନ୍ତ୍ରୀ ଶ୍ରୀ ଦାଶ, ବିଧାନସଭାରେ ତାଙ୍କ ଚେମ୍ବରରେ ପ୍ରସନ୍ନ କୁମାର ଦାଶ, ତ୍ରିଲୋଚନ କାନୁନ୍‌ଗୋ, ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ, ଶ୍ରୀବଲ୍ଲଭ ପାଣିଗ୍ରାହୀ, ଡକ୍ଟର ବେଣୁଧର ବଳିଆରସିଂ ଓ ଗଙ୍ଗାଧର ପାଇକରାୟ ପମୁଖ ପ୍ରବେଶ କରି କିଭଳି ତାଙ୍କୁ ଅପମାନିତ କରି ତାଙ୍କ ଉପରେ ଶାରୀରିକ ଆକ୍ରମଣ କରିଥିଲେ ସେ ସମ୍ପର୍କରେ ଏକ ବିବୃତି ରଖିଥିଲେ ।

ଏହି ଘଟଣା ପରେ ମିଳିତ ମନ୍ତ୍ରିମଣ୍ଡଳର ପତନ ଘଟାଇ ଓଡ଼ିଶାରେ ଗୋଟିଏ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବା ପାଇଁ ଉଦ୍ୟମ ହୋଇଥିଲା । ସେହି ଉଦ୍ଦେଶ୍ୟ ସାଧନ ପାଇଁ କଂଗ୍ରେସ ନେତା ସର୍ଦ୍ଦାର ଯୋଗୀନ୍ଦ୍ର ସିଂହଙ୍କୁ ଓଡ଼ିଶାରେ ଅସ୍ଥାୟୀ ରାଜ୍ୟପାଳ ଭାବରେ ଅବସ୍ଥାପିତ କରାଯାଇଥିଲା ।

ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳର ପତନ ଘଟାଇ କଂଗ୍ରେସ ସରକାର ଗଠନରେ ସଫଳ ହେଲେ ତାଙ୍କୁ ସ୍ଥାୟୀ ରାଜ୍ୟପାଳ କରାଯିବ ବୋଲି ପ୍ରତିଶ୍ରୁତି ଦିଆଯାଇଥିଲା । ଶ୍ରୀ ସିଂହ

ଭୁବନେଶ୍ୱର ରାଜଭବନକୁ ଏକପ୍ରକାର କଂଗ୍ରେସ ଦଳର କାର୍ଯ୍ୟାଳୟରେ ପରିଣତ କରିଦେଇଥିଲେ ।

ମିଳିତ ସରକାରର ପତନ ଘଟାଇବା ଉଦ୍ଦେଶ୍ୟରେ ପ୍ରଥମେ ସ୍ୱତନ୍ତ୍ର ଦଳରୁ କିଛି ସଦସ୍ୟଙ୍କର ଦଳ ତ୍ୟାଗ ପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା । ସେଥିପାଇଁ ଏକ ଯୋଜନାବଦ୍ଧ କାର୍ଯ୍ୟସୂଚୀ ତିଆରି କରାଯାଇଥିଲା । ସୋସାଲିଷ୍ଟ ଦଳରୁ ଆସି କଂଗ୍ରେସରେ ଯୋଗ ଦେଇଥିବା ବାଙ୍କ ବିହାରୀ ଦାସ ଏହି ଯୋଜନାର ମୂଳ ସୂତ୍ରଧର ଥିଲେ । ନନ୍ଦିନୀ ଶତପଥୀଙ୍କ ଜରିଆରେ କଂଗ୍ରେସ ଦଳ ପକ୍ଷରୁ ଏଥିପାଇଁ ଅମାପ ଟଙ୍କା ଖର୍ଚ୍ଚ କରାଯାଇଥିଲା ।

ସେତେବେଳେ ସର୍ବଭାରତୀୟ ସମ୍ବାଦ ସରବରାହ ସଂସ୍ଥା 'ପ୍ରେସ୍ ଟ୍ରଷ୍ଟ୍ ଅଫ୍ ଇଣ୍ଡିଆ'(ପି.ଟି.ଆଇ)ର ଭୁବନେଶ୍ୱର ମ୍ୟାନେଜର ଭାବରେ ରାମକୃଷ୍ଣ ବେହେରା ଅବସ୍ଥାପିତ ହୋଇଥିଲେ । ପିଟିଆଇରେ ଯୋଗଦେବା ପୂର୍ବରୁ ଛାତ୍ରାବସ୍ଥାରୁ ସେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି(ସିପିଆଇ) ସହିତ ସଂପୃକ୍ତ ଥିଲେ । ପରେ ବାଙ୍କ ବିହାରୀ ଦାସଙ୍କ ସହିତ ତାଙ୍କର ଘନିଷ୍ଠତା ବୃଦ୍ଧି ପାଇଥିଲା ।

ଓଡ଼ିଶା କ୍ୟାଡରର ଆଇଏଏସ୍ ଅଫିସର ରାଧାକାନ୍ତ ନାଏକ ଜଣେ ଉଚ୍ଚାଭିଳାଷୀ ବ୍ୟକ୍ତି । ହରିଜନ ପରିବାରରୁ ଆସି ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବା ଶ୍ରୀ ନାଏକଙ୍କର ରାଜନୈତିକ ଅଭୀପ୍ସା ଥିଲା । ଓଡ଼ିଶାରେ କଂଗ୍ରେସ ସରକାର ପ୍ରତିଷ୍ଠିତ ହେଲେ ଏହି ଅଭୀପ୍ସାକୁ ଚରିତାର୍ଥ କରିବା ଆଶାରେ ସେ ସୁଯୋଗ ଖୋଜୁଥିଲେ । ଶ୍ରୀ ନାଏକଙ୍କର ଶ୍ରୀ ବେହେରାଙ୍କ ସହିତ ଆଗରୁ ସମ୍ପର୍କ ଥିଲା ।

ସେତେବେଳେ ପ୍ରକାଶ ଚନ୍ଦ୍ର ସାହୁ ନାମରେ ଜଣେ ବ୍ରହ୍ମପୁର ଅଧିବାସୀ ଭୁବନେଶ୍ୱର ଟେଲିଫୋନ ଏକ୍ସଚେଞ୍ଜରେ 'ମନିଟର' ଭାବରେ କାର୍ଯ୍ୟ କରୁଥିଲେ । ଚାକିରି ଜୀବନ ଭିତରେ ସେ ନିଜର ଗୋଟିଏ ବସ୍ ବ୍ରହ୍ମପୁରରୁ ଭୁବନେଶ୍ୱରକୁ ଚଳାଇବାକୁ ସକ୍ଷମ ହୋଇଥିଲେ । ସେ ବସ୍‌ଟି ସକାଳେ ବ୍ରହ୍ମପୁରରୁ ଭୁବନେଶ୍ୱର ଆସି ଦିନବେଳା ପିଟିଆଇ ଅଫିସ ହତାରେ ରହି ସନ୍ଧ୍ୟାରେ ପୁଣି ବ୍ରହ୍ମପୁର ଫେରିଯାଉଥିଲା ।

ନିଜ ଉଦ୍ଦେଶ୍ୟ ସାଧନ ପାଇଁ ଶ୍ରୀ ବେହେରା ଓ ଶ୍ରୀ ନାଏକ ଶ୍ରୀ ସାହୁଙ୍କୁ ହାତ କଲେ । ପରବର୍ତ୍ତୀ ସମୟରେ ବ୍ରହ୍ମପୁରର କଂଗ୍ରେସ ନେତା ଚିତ୍ତରଞ୍ଜନ ଦାସ(ବୁଲୁ) ସେମାନଙ୍କ ସହିତ ଯୋଗ ଦେଲେ । ମିଳିତ ମନ୍ତ୍ରିମଣ୍ଡଳ ଭାଙ୍ଗିବା ଦିଗରେ ଏହି ଚାରିଜଣ ବ୍ୟକ୍ତି ବାଙ୍କବିହାରୀ ଦାସଙ୍କ ପ୍ରରୋଚନାରେ କାର୍ଯ୍ୟ କରିଥିଲେ । ସେତେବେଳେ ସେମାନଙ୍କୁ 'ଗ୍ୟାଙ୍ଗ ଅଫ୍ ଫୋର' ବୋଲି କୁହାଯାଉଥିଲା । ସେମାନଙ୍କ ଯୋଜନା ଅନୁଯାୟୀ ମିଳିତ ମନ୍ତ୍ରିମଣ୍ଡଳରେ ଥିବା ମତ୍ସ୍ୟ ଓ ପଶୁପାଳନ ବିଭାଗ ମନ୍ତ୍ରୀ ଗଙ୍ଗାଧର ପ୍ରଧାନ, ପୂର୍ତ୍ତ ଓ ପରିବହନ ବିଭାଗ ଉପମନ୍ତ୍ରୀ ଡମ୍ବରୁ ମାଝୀ ଓ ଅନ୍ୟ ଚାରିଜଣ ଆଦିବାସୀ ବିଧାୟକଙ୍କୁ ରାଜଧାନୀରୁ ଅପହରଣ କରାଯାଇଥିଲା ।

ମିଳିତ ମନ୍ତ୍ରିମଣ୍ଡଳର ଦୁଇଜଣ ମନ୍ତ୍ରୀଙ୍କ ସମେତ ଛଅଜଣ ବିଧାୟକଙ୍କର ଅପହରଣ ଘଟଣାରୁ ମିଳିତ ସାମ୍ମୁଖ୍ୟ ମନ୍ତ୍ରିମଣ୍ଡଳର ଯେ ପତନ ଘଟିବ ତା'ର ସ୍ପଷ୍ଟ ସୂଚନା ମିଳିଥିଲା । ସେଥିସହିତ ଉତ୍କଳ କଂଗ୍ରେସ ଦଳର କଂଗ୍ରେସ ଦଳ ସହିତ ମିଶ୍ରଣ ଦିଗରେ ମଧ ଉଦ୍ୟମ ଆରମ୍ଭ ହୋଇଥିଲା । ଏ ଦିଗରେ ତତ୍କାଳୀନ କେନ୍ଦ୍ରମନ୍ତ୍ରୀ ଉମାଶଙ୍କର ଦୀକ୍ଷିତ ସକ୍ରିୟ ଭୂମିକା ନେଇଥିଲେ ।

ସ୍ୱତନ୍ତ୍ର ଦଳର ଛଅଜଣ ନେତାଙ୍କୁ ଭୁବନେଶ୍ୱରରୁ ଦିଲ୍ଲୀ ନିଆଗଲେ ଧରାପଡିବାର ଭୟ ଥିବାରୁ ସେମାନଙ୍କୁ ପ୍ରଥମେ ବିମାନଯୋଗେ ଭାଇଜାଗ ପଠାଯାଇଥିଲା । ସେଠାରୁ ପରେ ସେମାନଙ୍କୁ ଦିଲ୍ଲୀ ନିଆଯାଇଥିଲା । ସେମାନେ ଦିଲ୍ଲୀ ଯାଇ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ସାକ୍ଷାତ କରି କଂଗ୍ରେସ ଦଳରେ ଯୋଗଦେଇଥିଲେ ।

୧୯୭୨ ମସିହା ଜୁନ୍ ୯ ତାରିଖ ଓଡ଼ିଶା ରାଜନୀତିର ଏକ ସ୍ମରଣୀୟ ଦିବସ ଥିଲା । ସେଦିନ ବିଜୁ ପଟ୍ଟନାୟକ ଉତ୍କଳ କଂଗ୍ରେସ ବିଧାୟକ ଦଳର ବୈଠକ ଡକାଇଥିଲେ । ସେ ବୈଠକରେ ଦୁଇଟି ପ୍ରସ୍ତାବ ଗୃହୀତ ହୋଇଥିଲା । ପ୍ରଥମ ପ୍ରସ୍ତାବରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ଘୋଷିତ ସମାଜବାଦୀ କାର୍ଯ୍ୟକ୍ରମକୁ ପ୍ରଶଂସା କରାଯାଇଥିଲା । ଦ୍ୱିତୀୟ ପ୍ରସ୍ତାବଟି ଉତ୍କଳ କଂଗ୍ରେସର କଂଗ୍ରେସ ଦଳରେ ମିଶ୍ରଣ ସହିତ ଉତ୍କଳ କଂଗ୍ରେସ ମିଳିତ ସାମ୍ମୁଖ୍ୟରୁ ଓହରି ଆସିବା ପାଇଁ ଉଦ୍ଦିଷ୍ଟ ଥିଲା ।

ପ୍ରସ୍ତାବ ଦୁଇଟିକୁ ଉତ୍କଳ କଂଗ୍ରେସ ବିଧାୟକ ଦଳର ନେତା ନୀଳମଣି ରାଉତରାୟ ଆଗତ କରିଥିଲେ । ରାଜସ୍ୱମନ୍ତ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତି ତାକୁ ସମର୍ଥନ କରିଥିଲେ । ଉତ୍କଳ କଂଗ୍ରେସକୁ ଭାଙ୍ଗି ଦିଆଯାଇ ତାଙ୍କୁ କଂଗ୍ରେସ ଦଳରେ ମିଶାଇ ଦିଆଗଲା ବୋଲି ଦଳୀୟ କାର୍ଯ୍ୟାଳୟରୁ ବିଜୁ ପଟ୍ଟନାୟକ ସାମ୍ବାଦିକମାନଙ୍କ ଆଗରେ ଘୋଷଣା କରିଥିଲେ । ସେଥିସହିତ ଉତ୍କଳ କଂଗ୍ରେସ ପତାକାକୁ ଓହ୍ଲାଇ ଦିଆଯାଇଥିଲା ।

୧୯୭୨ ମସିହା ଜୁନ୍ ୧୪ ତାରିଖ ଓଡ଼ିଶା ରାଜନୀତିର ଇତିହାସରେ ଆଉ ଏକ ମନେ ରଖିଲା ଭଳି ଦିନ । ସେଦିନ କେନ୍ଦ୍ରରେ ରାଷ୍ଟ୍ରମନ୍ତ୍ରୀ ଥିବା ନନ୍ଦିନୀ ଶତପଥୀ ଓଡ଼ିଶାର ପ୍ରଥମ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରିଥିଲେ । ସେତେବେଳେ ଶ୍ରୀମତୀ ଶତପଥୀ ବିଧାନସଭାର ସଦସ୍ୟା ନଥିଲେ କିମ୍ବା କଂଗ୍ରେସ ବିଧାୟକ ଦଳ ବୈଠକ ବସି ତାଙ୍କୁ ନେତା ଭାବରେ ନିର୍ବାଚନ କରାଯାଇ ନଥିଲା । ଅପରପକ୍ଷରେ କଂଗ୍ରେସ ବିଧାୟକ ଦଳର ଆନୁଷ୍ଠାନିକ ବୈଠକ ବସିଥିଲେ ବିନାୟକ ଆଚାର୍ଯ୍ୟଙ୍କ ନାମ ପ୍ରସ୍ତାବ କରିବାକୁ ବିଧାୟକ ଦଳର ଏକ ଅଣ ଆନୁଷ୍ଠାନିକ ବୈଠକରେ ପୂର୍ବ ରାତିରେ ନିଷ୍ପତ୍ତି ହୋଇଥିଲା ।

ମାତ୍ର ଶ୍ରୀମତୀ ଶତପଥୀଙ୍କ ଏକାନ୍ତ ଘନିଷ୍ଠ, ଅଖିଳ ଭାରତ କଂଗ୍ରେସ କମିଟିର ସାଧାରଣ ସଂପାଦକ ଚନ୍ଦ୍ରଜିତ ଯାଦବଙ୍କର ସାମାନ୍ୟ ଧମକରେ ଶ୍ରୀ ଆଚାର୍ଯ୍ୟ ଛାନିଆ ହୋଇଯାଇଥିଲେ ।

ଶ୍ରୀ ଆଚାର୍ଯ୍ୟ କଂଗ୍ରେସ ବିଧାୟକ ଦଳର ବୈଠକରେ ଦଳର ନେତା ପାଇଁ ଶ୍ରୀମତୀ ଶତପଥୀଙ୍କ ନାମ ପ୍ରସ୍ତାବ କରିଥିଲେ । ପୂର୍ବରାତିର ନିଷ୍ପତ୍ତି ଅନୁଯାୟୀ କଂଗ୍ରେସ ବିଧାୟକ ଦଳର ନେତା ପାଇଁ ଶ୍ରୀ ଆଚାର୍ଯ୍ୟଙ୍କ ନାମ ପ୍ରସ୍ତାବ କରିବାକୁ ତ୍ରିଲୋଚନ କାନୁନ୍‌ଗୋ ଚାହିଁଥିଲେ, କିନ୍ତୁ ତାଙ୍କୁ କେହି ସମର୍ଥକ ମିଳିନଥିଲେ । ସେଦିନ କଂଗ୍ରେସ ବିଧାୟକ ଦଳ ବୈଠକର ଦୃଶ୍ୟ ଏକ ବାହାଘରର ଭ୍ରମ ସୃଷ୍ଟି କରିଥିଲା । ସୁଦୃଶ୍ୟ ତୋରଣ ସାଙ୍ଗକୁ ଝାଡ଼୍ ଲାଇଟ୍ ଝକ୍‌ମକ୍ କରୁଥିଲା । ସେଦିନ ପ୍ରଥମ ଓ ଶେଷଥର ପାଇଁ ଶ୍ରୀମତୀ ଶତପଥୀ ହାତରେ ଚୁଡ଼ି ଓ ମଥାରେ ସିନ୍ଦୂର ପିନ୍ଧିଥିବାର ଦେଖାଯାଇଥିଲା ।

ଶ୍ରୀମତୀ ଶତପଥୀ କଂଗ୍ରେସ ବିଧାୟକ ଦଳର ନେତା ନିର୍ବାଚିତ ହେବା ପରେ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ସେଥିରେ ସେ ବ୍ରଜମୋହନ ମହାନ୍ତି ଓ ବାଙ୍କ ବିହାରୀ ଦାସଙ୍କୁ ନେଇ ଗୋଟିଏ "କିଚେନ୍ କ୍ୟାବିନେଟ୍" ଗଢ଼ିଥିଲେ । ଉତ୍କଳ କଂଗ୍ରେସକୁ କଂଗ୍ରେସ ଦଳରେ ମିଶାଇବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିବା ନୀଳମଣି ରାଉତରାୟଙ୍କୁ ମନ୍ତ୍ରିମଣ୍ଡଳରେ ଅଣଦେଖା କରାଯାଇଥିଲା ।

କେବଳ ସେତିକି ନୁହେଁ, ଶ୍ରୀମତୀ ଶତପଥୀ ପ୍ରତିହିଂସା ପରାୟଣ ହୋଇ ଡକ୍ଟର ହରେକୃଷ୍ଣ ମହତାବଙ୍କୁ କଂଗ୍ରେସ ଦଳରୁ ସସପେଣ୍ଡ କରାଇଥିଲେ । ସେଥିସହିତ ବିଜୁ ପଟ୍ଟନାୟକ ଓ ଉତ୍କଳ କଂଗ୍ରେସର ଛଅଜଣ ନେତା- ପ୍ରତାପ ଚନ୍ଦ୍ର ମହାନ୍ତି, ପ୍ରହ୍ଲାଦ ମଲ୍ଲିକ, ରାମକୃଷ୍ଣ ପଟ୍ଟନାୟକ, ଶରତ କୁମାର କର, ଚନ୍ଦ୍ରମାଧବ ମିଶ୍ର ଓ ବୃନ୍ଦାବନ ନାୟକଙ୍କୁ କଂଗ୍ରେସ ଦଳରେ ମିଶାଇ ଦେଇନଥିଲେ । ଶ୍ରୀମତୀ ଶତପଥୀଙ୍କର ଏପରି କାର୍ଯ୍ୟ ପାଇଁ ଭବିଷ୍ୟତରେ ତାଙ୍କୁ ଅଧିକ ମୂଲ୍ୟ ଦେବାକୁ ପଡିଥିଲା ।

୧୯୭୩ ମସିହା, ଜାନୁଆରୀ ମାସ । ତାରିଖ ମନେ ନାହିଁ । ସେଦିନ ରାଜଧାନୀରେ ପ୍ରଚାର ହୋଇଗଲା, ନୀଳମଣି ରାଉତରାୟ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଛନ୍ତି । ମୁଁ ସେତେବେଳେ ରାଜଧାନୀର ତିନି ନମ୍ବର ୟୁନିଟ୍‌ରେ ଗୋଟିଏ ସରକାରୀ କ୍ୱାର୍ଟର୍ସରେ ରହୁଥିଲି । ସେ କ୍ୱାର୍ଟର୍ସକୁ ଷ୍ଟେଟ୍‌ସମ୍ୟାନର ସ୍ପେଶାଲ କରେସପଣ୍ଡେଣ୍ଟ ଆର.ପି. ବାଗଚି ପ୍ରାୟ ପ୍ରତିଦିନ ସକାଳେ ଆସି ଚା' ପିଉଥିଲେ ।

ସେଦିନ କଥା ପ୍ରସଙ୍ଗରେ ନୀଳମଣି ରାଉତରାୟଙ୍କ ଇସ୍ତଫା ଦେବା ପ୍ରସଙ୍ଗ ଉଠିଲା । ଖବର ସଂଗ୍ରହରେ ବାଗଚି ଦା' କେବେହେଲେ କାହା ସହିତ ସମଝୋତା କରୁନଥିଲେ । ମତେ କହିଲେ, "ଚାଲ ଯିବା, ଶ୍ରୀ ରାଉତରାୟଙ୍କୁ ତାଙ୍କ କ୍ୱାର୍ଟର୍ସରେ ଭେଟିବା ।"

ସେତେବେଳେ ମୋ ପାଖରେ କ୍ୟାରିଅର ବିହୀନ ଗୋଟିଏ ରାଲେ ସାଇକେଲ ଥିଲା । ମୁଁ ଦାଦାଙ୍କୁ ପଚାରିଲି, କେମିତି ଯିବା ? "କାହିଁକି, ମୁଁ ଆଗରେ ବସିବି, ତମେ ସାଇକେଲ ଚଳାଇବ । ଆମ କାମ ହୋଇଯିବ ।" ଏହା ଥିଲା ଦାଦାଙ୍କ ଉତ୍ତର ।

କଥାଟା କେମିତି କାହିଁକି ମତେ ଟିକେ ଅଡୁଆ ଲାଗିଲା । ବାଗଚିବାବୁଙ୍କ ଭଳି ପ୍ରତିଷ୍ଠିତ ସାମ୍ବାଦିକ ମୋ ସାଇକେଲ ଆଗରେ ବସି ଯିବେ ? ସେ ବୋଧେ ମୋ ମନ କଥା ବୁଝି ପାରିଥିଲେ । କହିଲେ, "ସମୟ କମ୍ । ଆଉ ଡେରି କରନାହିଁ । ଶୀଘ୍ର ବାହାର ।"

ଏ.ଜି. ଛକରୁ ଛଅ ନମ୍ବର ମେଡିକାଲ ଯିବା ରାସ୍ତାରେ ଶ୍ରୀ ରାଉତରାୟଙ୍କ କ୍ୱାଟର । ଆମେ ସେଠାରେ ପହଞ୍ଚିଲା ବେଳକୁ ତାଙ୍କ କାର କ୍ୱାଟର୍ସରୁ ବାହାରି ଏଆରପୋର୍ଟ ଆଡ଼େ ବାହାରି ଯିବାର ଆମେ ଦେଖିଲୁ । ବାଗଚି ଦା', କହିଲେ, "ବସନ୍ତ, ଆସିଛେ ଯେତେବେଳେ ନୀଳମଣିବାବୁଙ୍କୁ ନିଶ୍ଚୟ ଦେଖା କରିବା । ଚାଲ ଏୟାରପୋର୍ଟ ।"

ସାଇକେଲରେ ଯିବା ପାଇଁ ଆବଡ଼ାଖାବଡ଼ା ଉଠାଣି ରାସ୍ତା । ଆମେ ପହଞ୍ଚିଲା ବେଳକୁ ମୁଁ ଧଇଁସଇଁ ହୋଇଯାଇଥିଲି ।

ଆମର ଭାଗ୍ୟ ଭଲ । ସେତେବେଳକୁ ନୀଳମଣିବାବୁ ପ୍ଳେନ୍ ପାଖକୁ ଯାଇ ନଥିଲେ । ଆମେ ଯାଇ ତାଙ୍କୁ ଦେଖାକଲୁ । ମୋର ନିଃଶ୍ୱାସପ୍ରଶ୍ୱାସ ଏତେ ଜୋରରେ ଚାଲୁଥିଲା ଯେ, ମୁଁ ଠିକ୍ ଭାବରେ କଥାବାର୍ତ୍ତା କରିପାରୁନଥିଲି ।

ସେ ମତେ ଏପରି ଅବସ୍ଥାରେ ଦେଖି ବିସ୍ମିତ ହୋଇଯାଇଥିଲେ । ତାଙ୍କ ସାଙ୍ଗରେ ମୋର ପିଲାଦିନୁ ସଦ୍‌ଭାବ ଥିଲା । ମୁଁ ତାଙ୍କୁ ସବୁକଥା କହିଲି । ସେ କହିଲେ, "ମୁଁ ଆଜି ବମ୍ବେ ଯାଉଛି । ନଳିନୀକୁ ନେଇ ଆସିବି । ଫେରିଲା ପରେ ଯାହା ନିଷ୍ପତ୍ତି ନେବି ।" ଆମେ ଆଶ୍ୱସ୍ତ ହୋଇ ଫେରିଆସିଥିଲୁ ।

ଦୁଇଦିନ ପରେ ସେ ୨୧ ଜଣ ବିଧାୟକଙ୍କ ସହ କଂଗ୍ରେସ ବିଧାୟକ ଦଳରୁ ଅଲଗା ହୋଇଯାଇଥିଲେ । ଫଳରେ ଶ୍ରୀମତୀ ଶତପଥୀଙ୍କ ସରକାର ସଂଖ୍ୟାନ୍ୟୂନ ହୋଇଯାଇଥିଲା । ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ସେ ବାଧ୍ୟ ହୋଇଥିଲେ ।

ଏହି ଘଟଣାକୁ ନେଇ ସେତେବେଳେ ଏକ ରାଜନୈତିକ ଝଡ଼ ସୃଷ୍ଟି ହୋଇଥିଲା । ମନ୍ତ୍ରିମଣ୍ଡଳରୁ ଶ୍ରୀ ରାଉତରାୟ ଓ ଅନ୍ୟମାନଙ୍କ ସମର୍ଥନ ପ୍ରତ୍ୟାହାରର ସୂଚନା ରାଜ୍ୟପାଳଙ୍କ ପାଖରୁ ପାଇବା ପରେ ରାଜ୍ୟ ମନ୍ତ୍ରିମଣ୍ଡଳର ଏକ ତୁରନ୍ତ ବୈଠକ ଡକାଯାଇଥିଲା । ସେଥିରେ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବା ସଙ୍ଗେସଙ୍ଗେ ବିଧାନସଭାକୁ ଭାଙ୍ଗି ନଦେଇ 'ପ୍ରୋରୋଗ' କରିବାକୁ ରାଜ୍ୟପାଳଙ୍କୁ ସୁପାରିଶ କରାଯାଇଥିଲା ବୋଲି କହି ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ଦାବି କରୁଥିଲେ ।

କିନ୍ତୁ ରାଜ୍ୟ ମନ୍ତ୍ରିମଣ୍ଡଳର ସଦସ୍ୟ ଥିବା ଶ୍ରୀ ରାଉତରାୟ ମନ୍ତ୍ରିମଣ୍ଡଳର କୌଣସି ବୈଠକ ଅନୁଷ୍ଠିତ ହୋଇ ନଥିଲା ବୋଲି ମୁଖ୍ୟମନ୍ତ୍ରୀଙ୍କ ଦାବିକୁ ଖଣ୍ଡନ କରିଥିଲେ ।

ଶ୍ରୀ ରାଉତରାୟ ତାଙ୍କ ଆତ୍ମଜୀବନୀ 'ସ୍ମୃତି ଓ ଅନୁଭୂତି'ରେ ଏ ସମ୍ପର୍କରେ ଉଲ୍ଲେଖ କରିଥିଲେ ଯେ, "ମନ୍ତ୍ରିମଣ୍ଡଳ ବୈଠକ ସେଦିନ ଆଦୌ ବସି ନଥିଲା । ରାଜ୍ୟପାଳ ଓ

ମୁଖ୍ୟମନ୍ତ୍ରୀ ସଲାସୁତୁରା ହୋଇ କାରସାଦି କରି କାଗଜପତ୍ରରେ ମନ୍ତ୍ରିମଣ୍ଡଳର ବୈଠକ ବସିଥିଲା ବୋଲି ଦେଖାଇ ଦେଇଥିଲେ । ମୁଁ ମନ୍ତ୍ରିମଣ୍ଡଳର ଜଣେ ସଭ୍ୟ ଥିଲି । ମନ୍ତ୍ରିମଣ୍ଡଳ ବୈଠକର ନୋଟିସ୍ କାଗଜ ମୁଁ ସକାଳ ୭ଘଣ୍ଟା ୩୦ ମିନିଟ୍‌ରେ ପାଇଥିଲି । ବାଚସ୍ପତିଙ୍କ ଠାରୁ ଜାଣି ରାଜ୍ୟପାଳ, ନନ୍ଦିନୀ ଦେବୀଙ୍କୁ ଜଣାଇଦେଇ, କପଟତା ପ୍ରୟୋଗ କରି ଶାସକ କଂଗ୍ରେସ ଦଳକୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ସବୁପ୍ରକାର ନୀଚସ୍ତରୀୟ କାରସାଦି କରିଥିଲେ ।"

ଓଡ଼ିଶା ବିଧାନସଭା କମ୍ପ୍ଲେକ୍ସରେ 'ବେଣୁ' ଏକ ଜଣାଶୁଣା ନାଁ । ବହୁଦିନୁ ବେଣୁର ଆସେମ୍ବ୍ଲିରେ କ୍ୟାଣ୍ଟିନ୍‌ଟିଏ ଅଛି । ଦୀର୍ଘଦିନର ଅଭିଜ୍ଞତା ବଳରେ କାହାର କ'ଣ ଆବଶ୍ୟକତା ସେ ଜାଣିପାରେ ।

ସେଦିନ ଥିଲା ଶୁକ୍ରବାର । ସକାଳୁ ବିଧାନସଭା ବସିବା ପାଇଁ ଥିବାରୁ ବେଣୁ କ୍ୟାଣ୍ଟିନ୍‌ରେ ଉପମା, ଘୁଗୁନି ତିଆରି ହୋଇଥିଲା । ବିଧାୟକଙ୍କ ସହିତ କେତେକ ଦର୍ଶକ ମଧ୍ୟ ସେଦିନ କ୍ୟାଣ୍ଟିନ୍‌ରେ ଉପସ୍ଥିତ ଥିଲେ । ଉପବାଚସ୍ପତି ଚିନ୍ତାମଣି ଜେନା ତରତର ହୋଇ "ଘଣ୍ଟି ବାଜିଯିବ, ଶୀଘ୍ର ଜଳଖିଆ ଦିଅ" ବୋଲି କହିବାରୁ ବେଣୁ କହିଲା, "କାହିଁକି ଆଜ୍ଞା ଏମିତି ତରବର ହେଉଛନ୍ତି ? ଆଜି କ'ଣ ଆଉ ଘଣ୍ଟି ବାଜିବ ? କାଲିରାତିରେ ପରା ସରକାରଙ୍କର ଘଣ୍ଟି ବାଜିଯାଇଛି । ଆଜି ଆଉ ବିଧାନସଭା ବସିବ ନାହିଁ । ଆପଣମାନେ ଆରାମରେ ଖାଆନ୍ତୁ ।"

ବେଣୁ କଥାରେ ଅନେକଙ୍କ ଆଖିପତା ଟେକି ହୋଇଯାଇଥିଲା । କାହିଁ, କିଛି ତ ଶୁଣାଶୁଣି ନଥିଲା ! ସରକାରଙ୍କର ଘଣ୍ଟି ବାଜିଗଲା ବୋଲି କ'ଣ ବେଣୁ କହୁଛି ? ବେଣୁ ଚାରିଆଡକୁ ଟିକେ ଅନେଇ ସନ୍ତର୍ପଣରେ କହିଲା, "ଆଜ୍ଞା ! କାଲି ରାତିରେ ରାଉତରାୟବାବୁ ଅନ୍ୟ ଏମ୍.ଏଲ୍.ଏଙ୍କୁ ନେଇ ସରକାରରୁ ଚାଲିଯାଇଛନ୍ତି । ଆଜି ସରକାର ଭାଙ୍ଗିଯିବ ।"

କଥାର ସତ୍ୟତା ବୁଝିବାକୁ କିଛି ବିଧାୟକ ଦଉଡ଼ାଦଉଡ଼ି ଆରମ୍ଭ କରିଦେଲେ । ସତକୁ ସତ ସେଦିନ ସକାଳେ ବିଧାନସଭା ଆରମ୍ଭ ହେବା ପାଇଁ ଆଉ ଘଣ୍ଟି ବାଜି ନଥିଲା ।

ନନ୍ଦିନୀ ଶତପଥୀ ଓଡ଼ିଶାକୁ ମୁଖ୍ୟମନ୍ତ୍ରୀ ଭାବରେ ମନୋନୀତ ହୋଇ ଆସିବା ପୂର୍ବରୁ ରାଜ୍ୟସଭାର ସଦସ୍ୟା ଥିଲେ । କେନ୍ଦ୍ରରେ ସୂଚନା ଓ ପ୍ରସାରଣ ବିଭାଗର ଉପମନ୍ତ୍ରୀ ରହିଥିଲେ ।

ରାଜ୍ୟ ବିଧାନସଭାର ସଦସ୍ୟ ନଥାଇ ଜୁନ୍ ମାସରେ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇଥିବା ନନ୍ଦିନୀ ଶତପଥୀଙ୍କୁ ଡିସେମ୍ବର ମାସ ମଧ୍ୟରେ ବିଧାନସଭାକୁ ନିର୍ବାଚିତ ହୋଇ ଆସିବାର ଆବଶ୍ୟକତା ପଡ଼ିଲା । ଏଥିପାଇଁ ଏକ ନିରାପଦ ନିର୍ବାଚନମଣ୍ଡଳୀ ଖୋଜା ଚାଲିଲା । ମୁଖ୍ୟମନ୍ତ୍ରୀ କେଉଁ ନିର୍ବାଚନମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରିବେ ସେ ସମ୍ପର୍କରେ ନାନା ପ୍ରକାର କଳ୍ପନାଜଳ୍ପନା ଚାଲିଥିଲା ।

ଦିନେ ଶ୍ରୀମତୀ ଶତପଥୀ ଦିଲ୍ଲୀରୁ ରାଜ୍ୟ ସରକାରଙ୍କ ବିମାନରେ ରାଜଧାନୀ ଫେରୁଥିବା ଖବର ପାଇ ସାମ୍ବାଦିକମାନେ ବିମାନ ବନ୍ଦରକୁ ଯାଇଥିଲେ । ସେହି ସମୟରେ ସର୍ଭିସ

ବିମାନରେ ଦିଲ୍ଲୀ ଯିବା ପାଇଁ ରନୱେ ନିକଟରେ ବିଜୁ ପଟ୍ଟନାୟକ ଅପେକ୍ଷା କରିଥିଲେ । ସାମ୍ବାଦିକମାନେ ତାଙ୍କୁ ଭେଟିଥିଲେ ।

ଶ୍ରୀ ପଟ୍ଟନାୟକ ସାମ୍ବାଦିକମାନଙ୍କୁ ତାଙ୍କ ସ୍ୱଭାବ ସୁଲଭ ଢଙ୍ଗରେ ପଚାରିଥିଲେ, "କିରେ, ସକାଳୁ ସକାଳୁ କୁଆଡେ ସବୁ ଯାଉଛ ? କ'ଣ ମୁଖ୍ୟମନ୍ତ୍ରୀ ଆସିବେ କି ? ଏଇଠି ରୁହ, ଅସଲ ଖବର ପାଇବ, ସିଆଡ଼େ କାହିଁ ଯାଉଛ ? ନନ୍ଦିନୀ ତ ଏଇଠିକି ଆସିବ ।" ସାମ୍ବାଦିକମାନେ ସେଇଠି ଅଟକି ଗଲେ । ଶ୍ରୀ ପଟ୍ଟନାୟକଙ୍କ ସହିତ କିଛି ସମୟ ଥଟ୍ଟାମଜ୍ଜା ଗପ ଚାଲିଲା ।  ବିଜୁ ପଟ୍ଟନାୟକଙ୍କ ସହିତ ସାମ୍ବାଦିକମାନଙ୍କର ଏକ ଭିନ୍ନ ଧରଣର ସମ୍ପର୍କ ଥିଲା ।

ସତକୁ ସତ କିଛି ସମୟ ପରେ ମୁଖ୍ୟମନ୍ତ୍ରୀଙ୍କ 'ଇମ୍ପାଲା' କାର ଆସି ବିଜୁ ପଟ୍ଟନାୟକଙ୍କ ପାଖରେ ଅଟକିଲା । ଶ୍ରୀମତୀ ଶତପଥୀ ସେଥିରୁ ବାହାରି ଶ୍ରୀ ପଟ୍ଟନାୟକଙ୍କ ପାଖକୁ ଗଲେ । ଉପସ୍ଥିତ ସାମ୍ବାଦିକମାନଙ୍କ ମଧ୍ୟରେ କୌତୂହଳ ବୃଦ୍ଧି ପାଇଲା । ଅହଙ୍କାରୀ ମୁଖ୍ୟମନ୍ତ୍ରୀ ପୁଣି ବିଜୁ ପଟ୍ଟନାୟକଙ୍କ ପାଖକୁ ଗଲେ ? କ୍ଷମତାରେ ନଥିଲେ ମଧ୍ୟ ଦୁର୍ଦ୍ଧର୍ଷ ବିଜୁ ପଟ୍ଟନାୟକ କୌଣସି ପରିବେଶ ଓ ପରିସ୍ଥିତିକୁ ଖାତିର ନକରି ତାଙ୍କ କାନ୍ଧରେ ହାତ ମାରି ନନ୍ଦିନୀଙ୍କୁ ପଚାରିଲେ, "କ'ଣ ଠିକ୍ କଲୁ ? ଆସ୍କା ହେଉ କି କଟକ, ବିନା ପ୍ରତିଦ୍ୱନ୍ଦ୍ୱିତାରେ ହୋଇଯିବ । ଶୀଘ୍ର ମନସ୍ଥିର କରି ମତେ କହ ।"

କେଉଁ ପ୍ରତିଦାନ ଆଶାରେ ସେ ଏପରି ଏକ ଦାନ ଶ୍ରୀମତୀ ଶତପଥୀଙ୍କୁ ଦେବାକୁ ଚାହୁଁଛନ୍ତି ବୋଲି ଜଣେ ସାମ୍ବାଦିକ ଜାଣିବାକୁ ଚାହିଁବାରୁ ଶ୍ରୀ ପଟ୍ଟନାୟକ କହିଲେ, "ଆରେ ୟାର, ଯେତେବେଳେ ବିଜୁ ପଟ୍ଟନାୟକ ନନ୍ଦିନୀକୁ କିଛି ଦେବାକୁ ଚାହେଁ, ସେଥିରେ କିଛି ସର୍ତ୍ତ ନଥାଏ, ତାହା ନିଃସର୍ତ୍ତ ।"

ଏଇ ସମୟ ମଧ୍ୟରେ ମୁଖ୍ୟମନ୍ତ୍ରୀଙ୍କ ଇମ୍ପାଲା ଦ୍ରୁତଗତିରେ ସେଠାରୁ ଚାଲିଯାଇଥିଲା । କିଛି ସମୟ ପରେ ଶ୍ରୀ ପଟ୍ଟନାୟକ ମଧ୍ୟ ସର୍ଭିସ ବିମାନ ଭିତରକୁ ଚାଲିଯାଇଥିଲେ ।

ସେତେବେଳେ ଆସ୍କା ବିଧାନସଭା ଆସନରୁ କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ପ୍ରତିନିଧିତ୍ୱ କରୁଥିଲେ । କବିରାଜ ହିସାବରେ ସେ ପ୍ରଖ୍ୟାତ ଥିଲେ ।

ରାଜନୀତି ପ୍ରତି ତାଙ୍କର ସେତେଟା ଆସକ୍ତି ନଥିଲା । ବିଜୁ ପଟ୍ଟନାୟକଙ୍କୁ ସେ ଯଥେଷ୍ଟ ଶ୍ରଦ୍ଧା ଓ ଭକ୍ତି କରୁଥିଲେ । ସେହି ହିସାବରେ ଆସ୍କାରୁ ପ୍ରତିଯୋଗିତା କରିବାକୁ ଶ୍ରୀ ପଟ୍ଟନାୟକ ଶ୍ରୀମତୀ ଶତପଥୀଙ୍କୁ ପ୍ରସ୍ତାବ ଦେଇଥିଲେ ।

ବହୁ ବିଚାର ଆଲୋଚନା ପରେ କଟକ ବିଧାନସଭା ଆସନରୁ ଉପନିର୍ବାଚନ ଲଢ଼ିବାକୁ ଶ୍ରୀମତୀ ଶତପଥୀ ନିଷ୍ପତ୍ତି କଲେ । ମୁଖ୍ୟମନ୍ତ୍ରୀ ରାଜ୍ୟସଭାକୁ ନିର୍ବାଚିତ ହେବା ପରେ ରାଜ୍ୟସଭାରେ ତାଙ୍କର ଯେଉଁ ସ୍ଥାନଟି-ଖାଲି ହେବ, କଟକ ସହର ବିଧାୟକ

ଭୈରବ ଚନ୍ଦ୍ର ମହାନ୍ତିଙ୍କୁ ସେ ସ୍ଥାନରେ ରାଜ୍ୟସଭାକୁ ପଠାଯିବା ପାଇଁ କଥାବାର୍ତ୍ତା ହୋଇ ନିଷ୍ପତ୍ତି ହୋଇଥିଲା ।

କଟକ ସହରର ଏହି ଉପନିର୍ବାଚନ, ଭାରତୀୟ ନିର୍ବାଚନ ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା । କଳାଟଙ୍କା ଓ 'ମସଲ ପାଓ୍ୱାର' (ଗୁଣ୍ଡା ଶକ୍ତି) ବଳରେ ଯେ କ'ଣ କରାଯାଇ ନପାରେ, ସେକଥା ଏହି ନିର୍ବାଚନରେ ପ୍ରମାଣିତ ହୋଇଥିଲା ।

କଟକ ସହରର ଗଳିକନ୍ଦି ରାସ୍ତାରେ ରାତାରାତି କିରାସିନ ଲ୍ୟାମ୍ପ ବଦଳରେ ଇଲେକ୍‌ଟ୍ରିକ ଖୁଣ୍ଟ ସବୁ ପୋତା ହୋଇଗଲା । ରାସ୍ତା ପିଚୁ ହେବା ପାଇଁ ଗୋଡ଼ି ଜମା ହେଲା । ରାତାରାତି ଟିଉବ୍‌ୱେଲ ଖୋଳା ହେବାରେ ଲାଗିଲା । କଟକ ସହରର ନବକଳେବର ହେଲାଭଳି ମନେ ହେଲା ।

ତା'ଛଡା, ଶାସକ କଂଗ୍ରେସର ଗୁଣ୍ଡାମାନେ ମାରଣାସ୍ତ୍ର ଧରି ଖୋଲାଖୋଲି ଭାବରେ ରାସ୍ତାରେ ବୁଲି ପ୍ରତିପକ୍ଷକୁ ଭୟଭୀତ କରିବାକୁ ଲାଗିଲେ । ପୁଲିସ ଓ ଜିଲ୍ଲା ପ୍ରଶାସନ ସବୁ ଦେଖି ଆଖି ବୁଜିଦେଲେ ।

ପୂର୍ବତନ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କ ଭାଷାରେ "କଂଗ୍ରେସ ସ୍ୱେଚ୍ଛାସେବକଙ୍କ ପାଇଁ ରହିବା, ଖାଇବା, ପିଇବା ପାଇଁ ଯେପରି ବ୍ୟବସ୍ଥା ହୋଇଥିଲା, ସେଥିରେ ଆକୃଷ୍ଟ ହୋଇ ଦୂରଦୂରାନ୍ତରରୁ ବହୁ କର୍ମୀ ଆସି ପ୍ରଚାର କାର୍ଯ୍ୟରେ ଯୋଗ ଦେଇଥିଲେ । କଟକ ଉପନିର୍ବାଚନ ସମୟରେ ଭୋଟ ଗ୍ରହଣର କିଛିଦିନ ପୂର୍ବରୁ ଭାରତରେ ଥିବା ଋଷ ଦେଶର ଦୂତାବାସରୁ କେତେକ ଅଫିସର ଆସି ଭୁବନେଶ୍ୱର ସରକାରୀ ଅତିଥି ଭବନରେ ରହୁଥିଲେ । କଟକ ଉପନିର୍ବାଚନରେ କୌଣସି ଗୋଟିଏ ବୈଦେଶିକ ଶକ୍ତି କିଛି ଅର୍ଥ ବିନିଯୋଗ କରିଥିବାର ଅଭିଯୋଗ ମଧ୍ୟ ସେତେବେଳେ ହୋଇଥିଲା ।"

କଟକ ସହରରେ ନିର୍ବାଚନ ପୂର୍ବରାତିରେ ସବୁବେଳେ 'ଅମୋଘଅସ୍ତ୍ର'ର ପ୍ରୟୋଗ କରାଯାଉଥିଲା । ଏହି 'ଅମୋଘଅସ୍ତ୍ର' ସହରର ଗଳିକନ୍ଦିରେ ରହୁଥିବା ଗରିବ, ଖଟିଖିଆ, ଦିନମଜୁରିଆ, ରିକ୍ସାବାଲାଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଉଥିଲା ।

୧୯୫୨ ମସିହାରୁ କଟକ ସହରର ପ୍ରତିନିଧି ହୋଇ ଦିନରାତି ଲୋକଙ୍କ ସେବାରେ ବ୍ରତୀ ଥିବା ବୀରେନ ମିତ୍ରଙ୍କୁ ନିର୍ବାଚନ ସମୟରେ ନିଜ ସାହିରେ ଦେଖି ଲୋକେ ସବୁ ଭୁଲି ଯାଉଥିଲେ । ସମସ୍ତ ପ୍ରଲୋଭନ ସତ୍ତ୍ୱେ ସାହିଲୋକେ 'ଦାଦା'ଙ୍କୁ ଭୋଟ ଦେଉଥିଲେ । ମାତ୍ର ଏହି ଉପନିର୍ବାଚନରେ ଶ୍ରୀ ମିତ୍ର, ଅସୁସ୍ଥତା ଯୋଗୁ କୌଣସି ସାହି ବସ୍ତିକୁ ନିଜେ ଯାଇ ନପାରି ଅନ୍ୟମାନଙ୍କ ଉପରେ ନିର୍ଭର କରିଥିଲେ ।

ଭୋଟ ଦିନ ପୂର୍ବରୁ ଟଙ୍କା ପଇସା ବାଣ୍ଟିବାର ଦାୟିତ୍ୱ ଯେଉଁ ନେତାମାନଙ୍କୁ ଦିଆଯାଇଥିଲା, ସେମାନେ ସେ ଅର୍ଥ ଲୋକଙ୍କୁ ନବାଣ୍ଟି ନିଜ ଭିତରେ ବାଣ୍ଟି ନେଲେ ବୋଲି

ବିଜୁ ପଟ୍ଟନାୟକ ନିର୍ବାଚନ ଦିନ ସକାଳେ ତାଙ୍କ ତୁଳସୀପୁର ବାସଭବନରେ ସାମ୍ବାଦିକମାନଙ୍କୁ ଅତ୍ୟନ୍ତ ଦୁଃଖର ସହ କହିଥିଲେ । ଶ୍ରୀମତୀ ଶତପଥୀ ସେହି ଉପନିର୍ବାଚନରେ ଆଠ ହଜାରରୁ ଅଧିକ ଭୋଟରେ ଜୟଯୁକ୍ତ ହୋଇଥିଲେ ।

ଉପନିର୍ବାଚନରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହେବା ପରେ ଶ୍ରୀମତୀ ଶତପଥୀ ରାଜ୍ୟସଭାରୁ ଇସ୍ତଫା ଦେଲେ । ତାଙ୍କ ସ୍ଥାନରେ ତାଙ୍କ ପାଇଁ କଟକ ବିଧାନସଭା ଆସନ ଛାଡ଼ି ଦେଇଥିବା ଭୈରବ ଚନ୍ଦ୍ର ମହାନ୍ତିଙ୍କୁ ରାଜ୍ୟସଭାକୁ ପ୍ରାର୍ଥୀ କରାଯାଇଥିଲା । ତାଙ୍କ ବିରୋଧରେ ମିଳିତ ବିରୋଧୀ ଦଳ ପକ୍ଷରୁ ସୁନ୍ଦରଗଡ଼ର ଆଦିବାସୀ ନେତା ଦେବାନନ୍ଦ ଅମାତ୍‌ଙ୍କୁ ପ୍ରାର୍ଥୀ କରାଯାଇଥିଲା ।

୧୯୭୩ ମସିହା ମାର୍ଚ୍ଚ ପହିଲା ଦିନ ମୁଖ୍ୟମନ୍ତ୍ରୀ ଇସ୍ତଫା ଦେବା ପରେ ବିଧାନସଭାର ବୈଠକ ବସିନଥିଲା । ମାତ୍ର ରାଜ୍ୟସଭା ପାଇଁ ନିର୍ବାଚନ କରାଯାଇଥିଲା । ସେଥିରେ କଂଗ୍ରେସ ପ୍ରାର୍ଥୀ ଶ୍ରୀ ମହାନ୍ତି ପରାସ୍ତ ହୋଇଥିଲେ । ଏହି ଘଟଣାରେ ଶ୍ରୀ ମହାନ୍ତି ଦାରୁଣ ଆଘାତ ପାଇଥିଲେ । ଦୁଇବର୍ଷ ପରେ ଅବଶ୍ୟ ଶ୍ରୀ ମହାନ୍ତି ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ ।

ଏହି ଘଟଣା ପୂର୍ବରୁ ଓଡ଼ିଶାର ତିନିଜଣ ପ୍ରମୁଖ ରାଜନେତା ଡକ୍ଟର ହରେକୃଷ୍ଣ ମହତାବ, ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ବିଜୁ ପଟ୍ଟନାୟକ ସେମାନଙ୍କ ମଧ୍ୟରେ ଥିବା ସମସ୍ତ ମତଭେଦକୁ ଭୁଲି 'ପ୍ରଗତିଦଳ' ନାମରେ ଗୋଟିଏ ରାଜନୈତିକ ଦଳ ଗଢ଼ିଥିଲେ । ରାଜ୍ୟରେ ପ୍ରତିଷ୍ଠିତ କଂଗ୍ରେସ ସରକାରର ପତନ ଘଟାଇ ଏକ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବା ସେମାନଙ୍କର ଉଦ୍ଦେଶ୍ୟ ଥିଲା ।

ସେଦିନ ସକାଳ ପ୍ରାୟ ଦଶଟା ସମୟରେ ବିଧାନସଭା ପରିସର ମଧ୍ୟରେ ଥିବା କମିଟି ରୁମ୍‌ରେ ପ୍ରଗତିଦଳର ନେତା ନିର୍ବାଚନ ଉଦ୍ଦେଶ୍ୟରେ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ସେଥିରେ ଡକ୍ଟର ହରେକୃଷ୍ଣ ମହତାବ, ରାଜେନ୍ଦ୍ର ନାରାୟଣ ସିଂହଦେଓ, ନୀଳମଣି ରାଉତରାୟ ଓ ଅନ୍ୟ ସଦସ୍ୟମାନେ ଯୋଗ ଦେଇଥିଲେ ।

ମାତ୍ର ବିଜୁ ପଟ୍ଟନାୟକ ନିର୍ଦ୍ଦିଷ୍ଟ ସମୟରେ ସେଠାକୁ ନଆସି ବିଧାୟକମାନଙ୍କୁ ତାଙ୍କ ବାସଭବନ 'ନବୀନ ନିବାସ'କୁ ଡକାଇ ପଠାଇଥିଲେ ।

ନବୀନ ନିବାସରେ ସମସ୍ତେ ଏକାଠି ରହିଲେ ନିରୋଳାରେ ଆଲୋଚନା କରିବା ସହିତ ଆବଶ୍ୟକ ପଡିଲେ ସମସ୍ତେ ସୁବିଧାରେ ରାଜଭବନ ଯାଇପାରିବେ ବୋଲି ସେ ଯୁକ୍ତି ଦର୍ଶାଇ ଥିଲେ । ମାତ୍ର ଏପରି ଯୁକ୍ତି ପଛରେ ଶ୍ରୀ ପଟ୍ଟନାୟକଙ୍କର ବ୍ୟକ୍ତିଗତ ସ୍ୱାର୍ଥ ନିହିତ ଥିଲା । ରାଜ୍ୟରେ ଏକ ବିକଳ୍ପ ମନ୍ତ୍ରିମଣ୍ଡଳ ଗଢ଼ା ହେବାର ସମ୍ଭାବନା ଦେଖାଦେଲେ ସେ ତା'ର ନେତୃତ୍ୱ ନେବେ ବୋଲି ଶ୍ରୀ ପଟ୍ଟନାୟକ ନିଷ୍ପତ୍ତି କରିସାରିଥିଲେ । କିନ୍ତୁ ଏହି ନିଷ୍ପତ୍ତି ସମ୍ପର୍କରେ ସେ କାହାକୁ କିଛି ସୂଚନା ଦେଇ ନଥିଲେ ।

ସେହି ବୈଠକରେ ଶ୍ରୀ ପଟ୍ଟନାୟକ ପ୍ରଗତିଦଳ ବିଧାୟକ ଦଳର ନେତା ନିର୍ବାଚିତ ହୋଇଥିଲେ । ସେଦିନ ଅପରାହ୍ଣରେ ବିଜୁ ପଟ୍ଟନାୟକ, ପ୍ରଗତି ବିଧାୟକ ଦଳର ଏକ ତାଲିକା ସହ ରାଜ୍ୟପାଳ ବି.ଡି. ଜଟୀଙ୍କୁ ଦେଖାକରି ରାଜ୍ୟରେ ଏକ ବିକଳ୍ପ ସରକାର ଗଠନ ନିମନ୍ତେ ତାଙ୍କୁ ନିମନ୍ତ୍ରଣ କରିବାକୁ ଦାବୀ କରିଥିଲେ ।

ତାଙ୍କୁ ସମର୍ଥନ କରୁଥିବା ସଦସ୍ୟମାନଙ୍କୁ ରାଜଭବନକୁ ଆଣିବା ନିମନ୍ତେ ରାଜ୍ୟପାଳ ଶ୍ରୀ ପଟ୍ଟନାୟକଙ୍କୁ ପରାମର୍ଶ ଦେଇଥିଲେ ।

ରାଜ୍ୟପାଳଙ୍କ ପରାମର୍ଶ ଅନୁଯାୟୀ ଶ୍ରୀ ପଟ୍ଟନାୟକଙ୍କ ନେତୃତ୍ୱରେ ପ୍ରଗତି ଦଳର ୭୧ଜଣ ବିଧାୟକ ସେଦିନ ଅପରାହ୍ନରେ ରାଜଭବନକୁ ଯାଇଥିଲେ । ସବୁ ବିଧାୟକଙ୍କ ସହିତ ବ୍ୟକ୍ତିଗତ ଭାବରେ ସାକ୍ଷାତ କରି ୧୪୦ଟି ଆସନ ବିଶିଷ୍ଟ ଓଡ଼ିଶା ବିଧାନସଭାରେ ପ୍ରଗତି ଦଳ ପଛରେ ୭୧ଜଣ ବିଧାୟକଙ୍କର ସମର୍ଥନ ଥିବା ସମ୍ପର୍କରେ ରାଜ୍ୟପାଳଙ୍କର ହୃଦ୍‌ବୋଧ ହୋଇଥିଲା ।

ରାଜ୍ୟରେ ଏକ ବିକଳ୍ପ ମନ୍ତ୍ରିମଣ୍ଡଳ ଗଠନ କରିବା ନିମନ୍ତେ ଯେକୌଣସି ସମୟରେ ରାଜ୍ୟପାଳ ବିଜୁ ପଟ୍ଟନାୟକଙ୍କୁ ସେ ନିମନ୍ତ୍ରଣ କରିବେ ବୋଲି ସମସ୍ତେ ବିଶ୍ୱାସ କରିଥିଲେ । ମାତ୍ର ରାଜ୍ୟପାଳ କୌଣସି ନିଷ୍ପତ୍ତି ନନେଇ ଟାଳଟୁଳ ନୀତି ଗ୍ରହଣ କରିଥିଲେ ।

ଏଥିରେ ଅସନ୍ତୋଷ ପ୍ରକାଶ କରି ଡକ୍ଟର ମହତାବ ରାଜ୍ୟରେ ମନ୍ତ୍ରିମଣ୍ଡଳ ଗଠନ ନିମନ୍ତେ ଶୀଘ୍ର ଏକ ନିଷ୍ପତ୍ତି ନେବାକୁ ରାଜ୍ୟପାଳଙ୍କୁ ଅନୁରୋଧ କରିଥିଲେ । ମନ୍ତ୍ରିମଣ୍ଡଳ ଗଠନ ପ୍ରକ୍ରିୟାରେ ବିଳମ୍ବ ଘଟିଲେ ରାଜନୈତିକ 'ଘୋଡ଼ା ବେପାର' ଆରମ୍ଭ ହୋଇ 'ଆୟାରାମ- ଗୟାରାମ' ଖେଳ ଆରମ୍ଭ ହୋଇଯିବ ବୋଲି ସେ ଆଶଙ୍କା ପ୍ରକଟ କରିଥିଲେ ।

ସେତେବେଳେ ବିହାର ଓ ଅନ୍ୟାନ୍ୟ ରାଜ୍ୟରେ ବିଧାନସଭାର ସଦସ୍ୟମାନେ ଗୋଟିଏ ଦିନରେ ଏକାଧିକ ଥର ଦଳବଦଳ କରୁଥିବାରୁ ସେମାନଙ୍କର ସେପରି କାର୍ଯ୍ୟକୁ 'ଆୟାରାମ-ଗୟାରାମ' ବୋଲି କୁହାଯାଉଥିଲା । ରାଜନୈତିକ କ୍ଷେତ୍ରରେ ସେତେବେଳେ ସେ କଥାର ବହୁଳ ବ୍ୟବହାର ହେଉଥିଲା ।

ଡକ୍ଟର ମହତାବ ଜଣେ ଅଭିଜ୍ଞ ଓ ପ୍ରବୀଣ ରାଜନୀତିଜ୍ଞ । ସେଦିନ ରାଜଭବନରେ ରାଜ୍ୟପାଳଙ୍କୁ ଆୟାରାମ-ଗୟାରାମ ସମ୍ପର୍କରେ ସେ ଯାହା କହିଥିଲେ, ତାହା ସାଂପ୍ରତିକ ରାଜନୈତିକ ପରିସ୍ଥିତିକୁ ଅନୁଧ୍ୟାନ କରି ପ୍ରକାଶ କରିଥିଲେ କିମ୍ବା ବିଜୁ ପଟ୍ଟନାୟକଙ୍କୁ ମୁଖ୍ୟମନ୍ତ୍ରୀ କରାଇ ନଦେବା ପାଇଁ ତାଙ୍କର ସେପରି ଅଭିମତ ଉଦ୍ଦିଷ୍ଟ ଥିଲା, ସେକଥା ଅବଶ୍ୟ ବହୁଦିନ ପର୍ଯ୍ୟନ୍ତ ସ୍ପଷ୍ଟ ହୋଇନଥିଲା ।

ଡକ୍ଟର ମହତାବଙ୍କ କଥାର ଉଦ୍ଦେଶ୍ୟ ଯାହା ଥାଉ ନା କାହିଁକି, ଓଡ଼ିଶାରେ ଅନ୍ୟ ଏକ ବିକଳ୍ପ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ ପାଇଁ ସୁଯୋଗ ନଦେବାକୁ ମନ ସ୍ଥିର କରି ସାରିଥିବା

ରାଜ୍ୟପାଳ ତାଙ୍କ ଉଦ୍ଦେଶ୍ୟ ସାଧନ ନିମିତ୍ତ ଏହି କଥାକୁ ଗୋଟିଏ ଅସ୍ତ୍ର ରୂପେ ବ୍ୟବହାର କରିଥିଲେ ।

ରାଜ୍ୟର ରାଜନୈତିକ ସ୍ଥିତି ସମ୍ପର୍କରେ ସେ ରାଷ୍ଟ୍ରପତିଙ୍କ ପାଖକୁ ସେଦିନ ରାତିରେ ଗୋଟିଏ ରିପୋର୍ଟ ପଠାଇଥିଲେ । ସେଥିରେ ଡକ୍ଟର ମହତାବଙ୍କ ମନ୍ତବ୍ୟକୁ ଉଦ୍ଧାର କରିଥିଲେ । "କୌଣସି ଗୋଟିଏ ଦଳ ବା ଏକାଧିକ ଦଳ ମିଳିତ ଭାବରେ ଏକ ଦୃଢ଼ ଓ ସ୍ଥିର ସରକାର ଗଠନ କରିବା ସମ୍ପର୍କରେ ସେ ସନ୍ତୁଷ୍ଟ ନୁହନ୍ତି । ରାଜ୍ୟରେ ଏକ ଅଣକଂଗ୍ରେସ ସରକାର ଗଠନ କରାଗଲେ ତାହା ଦୀର୍ଘସ୍ଥାୟୀ ହେବ ନାହିଁ" । ସେଥିପାଇଁ ସଂବିଧାନର ୩୫୬ ଧାରା ଅନୁଯାୟୀ ରାଷ୍ଟ୍ରପତି, ରାଜ୍ୟର ପ୍ରଶାସନ ଦାୟିତ୍ୱ ହାତକୁ ନେବାକୁ ଓ ବିଧାନସଭାକୁ ଭଙ୍ଗ କରିବାକୁ ସେ ସୁପାରିଶ କରିଥିଲେ । ଏହା ଫଳରେ ଦ୍ୱିତୀୟଥର ପାଇଁ ମୁଖ୍ୟମନ୍ତ୍ରୀ ହେବାକୁ ବିଜୁ ପଟ୍ଟନାୟକ ଯେଉଁ ଉଦ୍ୟମ କରିଥିଲେ, ତାହା ଆହୁରି ୧୭ବର୍ଷ ବିଳମ୍ବ ହୋଇଯାଇଥିଲା ।

ଶ୍ରୀମତୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିଲାବେଳେ ପ୍ରତିମାସରେ ଅତିକମ୍‌ରେ ଦୁଇଥର ଦିଲ୍ଲୀ ଯାଉଥିଲେ । ବେଶ ପୋଷାକ, ଚାଲିଚଳଣି ଏପରିକି କେଶ ବିନ୍ୟାସରେ ମଧ୍ୟ ସେ ଶ୍ରୀମତୀ ଗାନ୍ଧୀଙ୍କୁ ଅନୁକରଣ କରୁଥିଲେ ।

ଦେଶର ଇମରଜେନ୍ସି ଜାରୀ ହୋଇଥିବା ସମୟରେ ଭାରତୀୟ ରାଜନୀତି କ୍ଷେତ୍ରରେ ଇନ୍ଦିରା ଗାନ୍ଧୀଙ୍କ ଦ୍ୱିତୀୟ ପୁତ୍ର ସଂଜୟ ଗାନ୍ଧୀଙ୍କର ଆବିର୍ଭାବ ହୋଇଥିଲା । ସେ ଜଣେ ଉଦ୍ଧତ ଧରଣର ଯୁବକ ଥିଲେ । କାହାକୁ ସମ୍ମାନ କରିବା ତ ଦୂରର କଥା, ଅନ୍ୟମାନଙ୍କୁ ଅପମାନିତ କରି ସେ ଆନନ୍ଦ ଅନୁଭବ କରୁଥିଲେ । ତାଙ୍କୁ ସମସ୍ତେ 'ଯୁବରାଜ' ବୋଲି ଡାକୁଥିଲେ । ଶ୍ରୀ ଗାନ୍ଧୀ ତାଙ୍କର ଚାରିସୂତ୍ରୀ କାର୍ଯ୍ୟକ୍ରମ ଘୋଷଣା କରିଥିଲେ । ସେଥିରେ ପରିବାର ନିୟୋଜନ ସାଙ୍ଗକୁ ବୃକ୍ଷରୋପଣ କାର୍ଯ୍ୟ ଅନ୍ତର୍ଭୁକ୍ତ ଥିଲା । ପରିବାର ନିୟୋଜନ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରାଇବା ପାଇଁ ସେ ଅତି କଠୋର ପଦକ୍ଷେପ ନେଇଥିଲେ ।

ସେ ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କର ଅହଂ ଭାବ ଓ ନିଜକୁ 'ଏସିଆର ମୁକ୍ତସୂର୍ଯ୍ୟ' ବୋଲି ବର୍ଣ୍ଣନା କରିବା ଘଟଣା ଶ୍ରୀ ଗାନ୍ଧୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ନନ୍ଦିନୀ ଶତପଥୀ ନିଜକୁ ଦ୍ୱିତୀୟ ଇନ୍ଦିରା ଗାନ୍ଧୀ ଭାବରେ ପ୍ରତିପାଦିତ କରୁଥିବା ସମ୍ପର୍କରେ ତାଙ୍କର ହୃଦ୍‌ବୋଧ ହେବାରୁ ତାଙ୍କୁ କ୍ଷମତାରୁ ହଟାଇବା ପାଇଁ ଶ୍ରୀ ଗାନ୍ଧୀ ମନ ସ୍ଥିର କରିଥିଲେ ।

କିନ୍ତୁ ଶ୍ରୀମତୀ ଶତପଥୀଙ୍କୁ ଗାଦିରୁ ହଟାଇବା ଏତେ ସହଜ ବ୍ୟାପାର ନଥିଲା । କାରଣ ଇନ୍ଦିରାଙ୍କ ଠାରୁ ବର ପାଇ ସେ ଅତି ବଳୀୟାନ ହୋଇଥିଲେ । ଦଳୀୟ ସଂଗଠନ, ସରକାର, ପୁଲିସ ସବୁ ତାଙ୍କ ହାତ ମୁଠାରେ ଥିଲା । ତା'ଛଡା ଶ୍ରୀମତୀ ଗାନ୍ଧୀ ମଧ୍ୟ ତାଙ୍କ ପ୍ରତି ପ୍ରାଥମିକ ଅବସ୍ଥାରେ ବିମୁଖ ନଥିଲେ ।

ରାଜନୀତିର ଗତି ଅତି ବିଚିତ୍ର ବୋଲି ଯାହା କୁହାଯାଏ, ଶ୍ରୀମତୀ ଶତପଥୀଙ୍କ କ୍ଷେତ୍ରରେ ତାହାହିଁ ଘଟିଥିଲା । ଏକାଧିକ ଘଟଣାରେ କ୍ରୁଦ୍ଧ ହୋଇ ସଂଜୟ ଗାନ୍ଧୀ, ଶ୍ରୀମତୀ ଶତପଥୀଙ୍କୁ କ୍ଷମତାରୁ ହଟାଇବା ଅଭିଯାନ ପ୍ରତି ଶ୍ରୀମତୀ ଗାନ୍ଧୀଙ୍କ ଆଶୀର୍ବାଦ ଲାଭ କରିବାରେ ସକ୍ଷମ ହେଲେ ।

ଯେଉଁ ଇନ୍ଦିରା ଗାନ୍ଧୀ ସମସ୍ତ ପ୍ରକାର ନୀତିନିୟମ, ପରମ୍ପରାକୁ ଜଳାଞ୍ଜଳି ଦେଇ ଶ୍ରୀମତୀ ଶତପଥୀଙ୍କୁ ମୁଖ୍ୟମନ୍ତ୍ରୀ ଭାବରେ ମନୋନୀତ କରି ଓଡ଼ିଶାବାସୀଙ୍କ ମୁଣ୍ଡ ଉପରେ ଲଦି ଦେଇଥିଲେ, ପୁତ୍ରମୋହରେ ପଡି ସେ ନନ୍ଦିନୀଙ୍କୁ କ୍ଷମତାରୁ ବିଦା କରିବା ପାଇଁ ସମ୍ମତି ଦେଇଥିଲେ ।

ଓଡ଼ିଶା ରାଜନୀତିରେ ୧୯୭୬ ମସିହା ଡିସେମ୍ବର ମାସ ୧୬ ତାରିଖ ଏକ ମାଇଲ ଖୁଣ୍ଟ ଭାବରେ ରହିଗଲା । ସେଦିନ ତଥାକଥିତ 'ଏସିଆର ମୁକ୍ତିସୂର୍ଯ୍ୟ' ଅସ୍ତମିତ ହୋଇଯାଇଥିଲେ । ଓଡ଼ିଶାର ରାଜନୈତିକ, ସାମାଜିକ ଓ ସାଧାରଣ ଜୀବନରେ ଢ଼ାଙ୍କିଥିବା କଳାବାଦଲ ସବୁଦିନ ପାଇଁ ଅପସରି ଯାଇଥିଲା । ମାନସିକ ଓ ଶାରୀରିକ ଯନ୍ତ୍ରଣାରେ ଛଟପଟ ହେଉଥିବା ଓଡ଼ିଶାବାସୀ ସେହିଦିନଠାରୁ ନିଜକୁ ମୁକ୍ତ ମନେ କରିବା ସହିତ ସ୍ୱାଧୀନ ଭାବରେ ମତବ୍ୟକ୍ତ କରିବାର ସୁଯୋଗ ପାଇଥିଲେ ।

ସେଦିନ ସକାଳ ନଅଟା ବେଳୁ ମୁଁ ଓ ପି.ଟି.ଆଇ. ପ୍ରତିନିଧି ଶରତ ଦାସ ରାଜଭବନ ସାମନାରେ ଛିଡ଼ା ହୋଇ ରାଜନୀତି ଗତିବିଧିକୁ ଲକ୍ଷ୍ୟ କରୁଥିଲୁ । ଆମେ ଦି'ଜଣ 'ହାତୀର ଲାଞ୍ଜ' ହୋଇଥିବାରୁ ସବୁ ଅଡୁଆ କାମକୁ ଆମ 'ବସ୍' ମାନେ ଆମକୁ ପଠାଉଥିଲେ ।

ସେଦିନ ଖବର ମିଳିଥିଲା ଯେ ସନ୍ଧ୍ୟା ପୂର୍ବରୁ ଇସ୍ତଫା ଦେବା ପାଇଁ ଶ୍ରୀମତୀ ଶତପଥୀଙ୍କୁ ନିର୍ଦ୍ଦେଶ ମିଳିବ । ଦୀର୍ଘ ଦୁଇଘଣ୍ଟା ରାସ୍ତାରେ ଅପେକ୍ଷା କଲା ପରେ ଇସ୍ତଫାର କୌଣସି ସୂଚନା ମିଳିନଥିଲା ।

ଆମେ ବାଧହୋଇ ମୁଖ୍ୟମନ୍ତ୍ରିଙ୍କ ସରକାରୀ ବାସଭବନକୁ ଗଲୁ । ଦିନ ଏଗାରଟା ସୁଦ୍ଧା ମୁଖ୍ୟମନ୍ତ୍ରୀ ନିଜ ବାସଭବନରେ ଅନୁଗତ ମନ୍ତ୍ରୀମାନଙ୍କ ସହିତ ନିଭୃତ ଆଲୋଚନା କରୁଥିଲେ । ସେମାନଙ୍କ ଭିତରେ ଗଙ୍ଗାଧର ମହାପାତ୍ର, ଶ୍ରୀବଲ୍ଲଭ ପାଣିଗ୍ରାହୀ, ଯଦୁନାଥ ଦାଶ ମହାପାତ୍ର, ବ୍ରହ୍ମାନନ୍ଦ ବିଶ୍ୱାଳ, ଦିବ୍ୟଲୋଚନ ଶେଖର ଦେଓ, କୃପାସିନ୍ଧୁ ଭୋଇ ଓ ଲକ୍ଷ୍ମଣ ମଲିକ ପ୍ରମୁଖ ଅନ୍ତର୍ଭୁକ୍ତ ଥିଲେ ।

ଆଲୋଚନାରେ ନିଷ୍ପତ୍ତି ହୋଇଥିଲା ଯେ କେନ୍ଦ୍ରର ନିର୍ଦ୍ଦେଶ ସତ୍ତ୍ୱେ ମୁଖ୍ୟମନ୍ତ୍ରୀ ନିଜ ପଦବୀରୁ ଇସ୍ତଫା ଦେବେ ନାହିଁ । ଯେକୌଣସି ପରିସ୍ଥିତିର ମୁକାବିଲା କରାଯିବ ।

ସେଠାରେ ଉପସ୍ଥିତ ଥିବା ସାମ୍ବାଦିକମାନଙ୍କୁ ବରିଷ୍ଠ ମନ୍ତ୍ରୀ ଗଙ୍ଗାଧର ମହାପାତ୍ର କହିଥିଲେ, "ତମେ ସବୁ ଭାବିଛ ମୁଖ୍ୟମନ୍ତ୍ରୀ ଇସ୍ତଫା ଦେଇଦେବେ ? କାହିଁ ସବୁ କୁହୁଡ଼ି ପହଁରୁଛ ? ଆଜି ମୁଖ୍ୟମନ୍ତ୍ରୀ ତାଙ୍କ ନିଜ ନିର୍ବାଚନମଣ୍ଡଳୀ ଢ଼େଙ୍କାନାଳ ଗସ୍ତରେ ଯାଉଛନ୍ତି ।

ତମେ ସବୁ କାହିଁକି ଦଉଡ଼ାଦଉଡ଼ି କରୁଛ ? ଯାଅ, ଘରେ ଖାଇପିଇ ଆରାମ କର । ମୁଖ୍ୟମନ୍ତ୍ରୀଙ୍କର ଇସ୍ତଫା ଦେବାର ପ୍ରଶ୍ନ ଉଠୁନାହିଁ ।"

ଏଇକଥା ମୁଁ ଗୋପାଳବାବୁଙ୍କୁ ଜଣାଇଲା ପରେ ସେ ମତେ ଢ଼େଙ୍କାନାଳ ଯିବାକୁ କହିଲେ। ମୁଁ ଶରତବାବୁଙ୍କୁ ସାଙ୍ଗ କଲି । ମୁଖ୍ୟମନ୍ତ୍ରୀଙ୍କ ରାଜନୈତିକ ପି.ଏ. ଭାଗବତ ନନ୍ଦ ଗୋଟିଏ ଆମ୍ବାସାଡ଼ର ଗାଡ଼ି ଓ କିଛି 'ବାଟଖର୍ଚ୍ଚ' ସଙ୍ଗେସଙ୍ଗେ ଯୋଗାଡ କରିଦେଲେ ।

ମୁଖ୍ୟମନ୍ତ୍ରୀ ଓ ତାଙ୍କ ସ୍ୱାମୀ ଦେବେନ୍ଦ୍ର ଶତପଥୀ ଓ ଅନ୍ୟମାନଙ୍କ ପାଇଁ ଢ଼େଙ୍କାନାଳ ସର୍କିଟ୍ ହାଉସରେ ଖାଦ୍ୟପେୟର ସୁବନ୍ଦୋବସ୍ତ ହୋଇଥିଲା । ଘଟଣାକ୍ରମେ ଆମକୁ ମଧ୍ୟ ସେଠାରେ ଏକତ୍ର ଖାଇବାର ସୁଯୋଗ ମିଳିଥିଲା ।

ଭୋଜନ ସମୟରେ ଆମର ଢ଼େଙ୍କାନାଳ ଆସିବାର କାରଣ କ'ଣ ବୋଲି ମୁଖ୍ୟମନ୍ତ୍ରୀ ସଂଶୟାଚ୍ଛନ୍ନ ଭାବରେ ପ୍ରଶ୍ନ କରିଥିଲେ । ହେଲେ ଆମେ ଆମ ଉଦ୍ଦେଶ୍ୟ ସମ୍ପର୍କରେ କିଛି କହିନଥିଲୁ । ମୁଖ୍ୟମନ୍ତ୍ରୀ ଢ଼େଙ୍କାନାଳ ଆସିଥିବାରୁ ଆମେ ଖବର ସଂଗ୍ରହ କରିବାକୁ ଆସିଛୁ ବୋଲି ତାଙ୍କୁ ଜଣାଇଥିଲୁ । କିନ୍ତୁ ଶ୍ରୀମତୀ ଶତପଥୀ ଆମ କଥାକୁ ବିଶ୍ୱାସ କରିନଥିଲେ ।

ସେଦିନ ଢ଼େଙ୍କାନାଳ ସହରରେ ଥିବା ବସଷ୍ଟାଣ୍ଡ ପାଖ ପଡିଆରେ ଗୋଟିଏ ସାଧାରଣ ସଭାର ଆୟୋଜନ ହୋଇଥିଲା । ଅନ୍ୟଦିନ ଭଳି ସେଦିନ ମଧ୍ୟ ଟ୍ରକ୍, ବସରେ ଲୋକେ ବୁହା ହୋଇ ସଭାକୁ ଆସିଥିଲେ । ସଭାରେ ଅନ୍ୟମାନଙ୍କ ମଧ୍ୟରେ ଜିଲ୍ଲାପାଳ ସୁଧାଂଶୁ ଭୂଷଣ ମିଶ୍ର ଉପସ୍ଥିତ ଥିଲେ ।

ମୁଖ୍ୟମନ୍ତ୍ରୀ ଭାଷଣ ଦେଉଥିଲା ବେଳେ ଜିଲ୍ଲାପାଳ ହଠାତ୍ ସଭାରୁ ଉଠି ଚାଲିଗଲେ । ଏହାକୁ ଅନ୍ୟ କେହି ଗୁରୁତ୍ୱ ନ ଦେଇଥିଲେ ମଧ୍ୟ ଆମମାନଙ୍କ ପାଇଁ ତାହା ଗୁରୁତ୍ୱପୂର୍ଣ୍ଣ ଥିଲା । କାରଣ ଶ୍ରୀମତୀ ଶତପଥୀଙ୍କ ଭଳି ସର୍ବମୟକର୍ତ୍ତ୍ରୀ ମୁଖ୍ୟମନ୍ତ୍ରୀଙ୍କ ସଭାରୁ ଜଣେ ଜିଲ୍ଲାପାଳ ସ୍ୱାଭାବିକ ଅବସ୍ଥାରେ ଉଠି ଚାଲିଯିବା ସେତେବେଳେ ଏକ ସାଧାରଣ ଘଟଣା ନଥିଲା ।

ଦିଲ୍ଲୀରୁ ମୁଖ୍ୟମନ୍ତ୍ରୀଙ୍କ ପାଇଁ ଜିଲ୍ଲାପାଳଙ୍କ ଜରିଆରେ ନିର୍ଦ୍ଦେଶ ଆସିଥିଲା, "ଆଜି ସନ୍ଧ୍ୟା ସାଢ଼େଛଅଟା ପୂର୍ବରୁ ନିଜ ପଦବୀରୁ ଇସ୍ତଫା ନଦେଲେ ଶ୍ରୀମତୀ ଶତପଥୀଙ୍କ ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରାଯାଇ ରାଜ୍ୟରେ ରାଷ୍ଟ୍ରପତି ଶାସନ ଜାରି କରାଯିବ ।"

ଜିଲ୍ଲାପାଳ ଶ୍ରୀ ମିଶ୍ର ଜଣେ ଚତୁର ଓ ଅଭିଜ୍ଞ ପ୍ରଶାସକ । କିନ୍ତୁ ଏପରି ଏକ ନିର୍ଦ୍ଦେଶ ସେ କିପରି ଭାବରେ ମୁଖ୍ୟମନ୍ତ୍ରୀଙ୍କୁ ଜଣାଇବେ ସେଥିପାଇଁ କିଛିକ୍ଷଣ ଚିନ୍ତାରେ ପଡିଯାଇଥିଲେ । ଶେଷରେ ସାହସ ସଞ୍ଚୟ କରି ଦିଲ୍ଲୀରୁ ଆସିଥିବା ଖବରଟି ମୁଖ୍ୟମନ୍ତ୍ରୀଙ୍କ କାନରେ କହିଦେଲେ । ସେଥିରେ ମୁଖ୍ୟମନ୍ତ୍ରୀଙ୍କ ମୁଖମଣ୍ଡଳରେ ଏକ ଅସ୍ୱାଭାବିକ ପ୍ରତିକ୍ରିୟା ପ୍ରକାଶ ପାଇଥିଲା ।

ସେ ନିଜ ଭାଷଣର ମୋଡ ବଦଳାଇ କହିଥିଲେ, "ମୁଁ ଆଉ କେତେଦିନ କ୍ଷମତାରେ ରହିବି, ନରହିବି ସେଇଟା ବଡ଼ କଥା ନୁହେଁ । କିନ୍ତୁ କ୍ଷମତାରେ ଥାଇ ଶେଷ ମୁହୂର୍ତ୍ତରେ ମୁଁ

ମୋର ନିର୍ବାଚନ ମଣ୍ଡଳୀକୁ ଆସି ଭାଇଭଉଣୀମାନଙ୍କୁ ଉଦ୍‌ବୋଧନ ଦେବାର ସୁଯୋଗ ପାଇଥିବାରୁ ଗର୍ବ ଅନୁଭବ କରୁଛି ।"

ମୁଖ୍ୟମନ୍ତ୍ରୀ ତାଙ୍କ କଥାର ଗୁମର ଖୋଲିନଥିଲେ ମଧ୍ୟ ଆମେ ତାଙ୍କ ହାବଭାବରୁ ସବୁକଥା ଠଉରେଇ ପାରିଥିଲୁ । ସେ ତାଙ୍କ ଭାଷଣକୁ କାଟଛାଣ୍ଟ କରି ଭୁବନେଶ୍ୱର ଅଭିମୁଖେ ବାହାରି ଥିଲେ । ତାଙ୍କ ପାଖରେ ଥିଲା ଶୀତତାପ ନିୟନ୍ତ୍ରିତ ଇମ୍ପାଲା କାର । ଘଣ୍ଟାରେ ଶହେ କିଲୋମିଟର ବେଗରେ ଯାଇପାରୁ ଥିଲା । ଆଉ ଆମ ପାଖରେ ପୁରୁଣା ଆମ୍ବାସାଡାର । ଚେଷ୍ଟା କଲେବି ମିଟର କଣ୍ଟା ଷାଠିଏରୁ ଉପରକୁ ଉଠୁନଥିଲା ।

ଆମେ ମୁଖ୍ୟମନ୍ତ୍ରୀଙ୍କ ବାସଭବନ ପାଖରେ ପହଞ୍ଚିଲା ବେଳକୁ ଘଣ୍ଟାରେ ଛଅଟା ବାଜି କୋଡିଏ ମିନିଟ୍ ହୋଇଯାଇଥିଲା । ସେତିକିବେଳେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀଙ୍କ ଗାଡ଼ି ତାଙ୍କ ସରକାରୀ ବାସଭବନରୁ ରାଜଭବନ ଅଭିମୁଖେ ବାହାରୁଥିଲା ।

ଶ୍ରୀମତୀ ଶତପଥୀଙ୍କ ବାସଭବନ, ତାଙ୍କ ସମର୍ଥକ ମନ୍ତ୍ରୀ, ଏମ୍.ଏଲ୍.ଏ ଓ ସାମ୍ବାଦିକଙ୍କ ଦ୍ୱାରା ଭରପୂର ହୋଇଯାଇଥିଲା । ସମସ୍ତଙ୍କ ମନରେ ଏକ ଅଜଣା ଆଶଙ୍କା । ସତରେ କ'ଣ ଶ୍ରୀମତୀ ଶତପଥୀ ବିନା ମୁକାବିଲାରେ କ୍ଷମତାରୁ ଚାଲିଯିବେ ? ସବୁ କ୍ଷମତା ତାଙ୍କ ହାତରେ । ଚିଫ୍ ସେକ୍ରେଟାରୀଙ୍କ ଠାରୁ ଆରମ୍ଭ କରି ଡି.ଜି ପୁଲିସ ତାଙ୍କର ଖାସ୍‌ଲୋକ । ନ୍ୟାୟଅନ୍ୟାୟ ସେମାନଙ୍କ ପାଇଁ ବଡ଼କଥା ନୁହଁ । ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକୁ ତାମିଲ୍ କରିବା ସେତେବେଳେ ସେମାନଙ୍କ ପାଇଁ ରାଜଧର୍ମ ଥିଲା ।

ମାତ୍ର ଦଶମିନିଟ୍ ମଧ୍ୟରେ ମୁଖ୍ୟମନ୍ତ୍ରୀ ରାଜଭବନରୁ ଫେରିଆସି ଘୋଷଣା କଲେ ଯେ, ସେ ମୁଖ୍ୟମନ୍ତ୍ରୀ ପଦବୀରୁ ଇସ୍ତଫା ଦେଇଛନ୍ତି । ସେତେବେଳକୁ ସମୟ ଛଅଟା ବାଜି ଚାଳିଶ ମିନିଟ୍ ହୋଇଥିଲା । ମୁଖ୍ୟମନ୍ତ୍ରୀ ତାଙ୍କ ସରକାରୀ ବାସଭବନରେ ଉପସ୍ଥିତ ଥିବା ସାମ୍ବାଦିକଙ୍କୁ କହିଥିଲେ, "ମୁଁ ବର୍ତ୍ତମାନ ଆଉ ମୁଖ୍ୟମନ୍ତ୍ରୀ ନାହିଁ, କିନ୍ତୁ ଆପଣମାନେ ଦେଖିପାରନ୍ତି ମୋ ସହିତ କେତେ ମନ୍ତ୍ରୀ ଆଉ କେତେ ଏମ୍.ଏଲ୍.ଏ ଏଠାରେ ଅଛନ୍ତି ।"

ଶ୍ରୀମତୀ ଶତପଥୀ ତାଙ୍କ ଇସ୍ତଫା କଥା ଘୋଷଣା କରିବା ସମୟରେ ରାଜ୍ୟ ଅତିଥି ଭବନରେ ରାଜନୈତିକ ନାଟକର ଅନ୍ୟ ଏକ ଦୃଶ୍ୟ ଅଭିନୀତ ହେଉଥିଲା । ଅତିଥି ଭବନର ୨୧ ନମ୍ବର ରୁମ୍‌ରେ ଅବସ୍ଥାନ କରୁଥିବା ନିଖିଳ ଭାରତ କଂଗ୍ରେସ କମିଟିର ସାଧାରଣ ସଂପାଦକ ଅବଦୁଲ ରହମନ ଅନ୍ତୁଲେ ଘୋଷଣା କରିଥିଲେ, "ଓଡ଼ିଶାରେ ପୂର୍ବରୁ କାଗଜପତ୍ରରେ ଜମିଦାରୀ ଉଠି ଯାଇଥିଲେ ହେଁ, ଆଜିଠାରୁ ପ୍ରକୃତରେ ଜମିଦାରୀ ଶାସନର ଅବସାନ ଘଟିଲା । ନନ୍ଦିନୀ ଶତପଥୀଙ୍କ ଇସ୍ତଫା ପରେ ଦେଶର ଏକମାତ୍ର ନେତ୍ରୀ ଇନ୍ଦିରା ଗାନ୍ଧୀ ଓ ଓଡ଼ିଶାବାସୀଙ୍କ ମଧ୍ୟରେ ସିଧାସଳଖ ସମ୍ପର୍କ ସ୍ଥାପିତ ହେଲା । ଏହା ସମସ୍ତଙ୍କ ପାଇଁ ଖୁସି ଖବର ।"

ଓଡ଼ିଶା ରାଜଭବନ ଏକ ସମୟରେ ଶ୍ରୀମତୀ ଶତପଥୀଙ୍କ ଇଙ୍ଗିତରେ ପରିଚାଳିତ ହେଉଥିଲା । ୧୯୭୩ ମସିହା ଅପ୍ରେଲ ପହିଲା ଦିନ ପ୍ରଗତି ଦଳର ୭୧ ଜଣ ସଦସ୍ୟଙ୍କ ସମର୍ଥନ ଥିବା ସତ୍ତ୍ୱେ ସେ ଦଳର ନେତା ବିଜୁ ପଟ୍ଟନାୟକଙ୍କୁ ମୁଖ୍ୟମନ୍ତ୍ରୀ କରାଇ ନଦେବା ପାଇଁ ରାଜ୍ୟପାଳ ବି.ଡି ଜଟ୍ଟୀଙ୍କୁ ବ୍ୟବହାର କରି ଶ୍ରୀମତୀ ଶତପଥୀ ଅନ୍ତରାୟ ସୃଷ୍ଟି କରିଥିଲେ ।

ମାତ୍ର ଭାଗ୍ୟର ବିଡମ୍ବନା ଯେ ସେହି ରାଜଭବନରେ ଶ୍ରୀମତୀ ଶତପଥୀଙ୍କ ଇସ୍ତଫା ଗ୍ରହଣ ପାଇଁ ଆବଶ୍ୟକତାଠାରୁ ଅଧିକ ସମୟ ଲାଗି ନଥିଲା । ରାଜ୍ୟପାଳ ଭଗବତ ଦୟାଲ ଶର୍ମା ଶ୍ରୀମତୀ ଶତପଥୀଙ୍କ ଇସ୍ତଫା ତୁରନ୍ତ ଗ୍ରହଣକରି ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରି ପାଇଁ ସୁପାରିସ କରିଥିଲେ । ତତ୍‌କ୍ଷଣାତ୍ ତାହା କାର୍ଯ୍ୟକାରୀ ହୋଇଥିଲା ।

ରାତି ଆଠଟା ବେଳକୁ ଶ୍ରୀ ଅନ୍ତୁଲେ ବସିଥିବା ରୁମ୍ ବାହାରେ କଂଗ୍ରେସ ବିଧାୟକମାନଙ୍କର ଲମ୍ବା ଧାଡ଼ି ଲାଗିଥିବାର ଦେଖାଯାଇଥିଲା । ଷ୍ଟେଟ ଗେଷ୍ଟ ହାଉସର ୨୧ନମ୍ବର ରୁମ୍‌ର ଗୋଟିଏ କୋଣରେ ଗୋଟିଏ ଟେବୁଲ ଉପରେ କିଛି ସାଦା କାଗଜ ଥୁଆହୋଇଥିଲା । ସେଥିରେ ଦସ୍ତଖତ କରି ଶ୍ରୀମତୀ ଗାନ୍ଧୀଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିବା ପାଇଁ ଏମ୍.ଏଲ୍.ଏ.ମାନଙ୍କ ଭିତରେ ଅହେତୁକ ଆଗ୍ରହ ପ୍ରକାଶ ପାଇବା ସହିତ ଠେଲାପେଲା ମଧ୍ୟ ଚାଲିଥିଲା । ବିଧାୟକମାନେ କାଗଜରେ ଦସ୍ତଖତ କରି ଶ୍ରୀ ଅନ୍ତୁଲେଙ୍କୁ ମୁଣ୍ଡିଆ ମାରି ରୁମ୍‌ରୁ ବାହାରିଯାଉଥିଲେ । ଏପରି କରିବା ସତେ ଯେପରି ସେମାନଙ୍କର ପରମ କର୍ତ୍ତବ୍ୟ ବୋଲି ସେମାନେ ମନେକରୁଥିଲେ ।

ଯେଉଁ ବିଧାୟକମାନେ ବାହାରେ ଖୁବ୍ ବାହାସ୍ଫୋଟ ମାରି ନିଜର ଗରିମା ଦେଖାଉଥିଲେ, ସେଦିନ ସନ୍ଧ୍ୟାରେ ସେମାନଙ୍କର ଦୟନୀୟ ଅବସ୍ଥା ଦେଖି ମନରେ ସେମାନଙ୍କ ପ୍ରତି ଅନୁକମ୍ପା ଜାତ ହୋଇଥିଲା । କିଛି ନବୁଝି କିପରି ଏକ ସାଦା କାଗଜରେ ସେଦିନ ସେମାନେ ଦସ୍ତଖତ କରିଦେଲେ ତାହା ବୁଝାପଡ଼ିନଥିଲା ।

ଅତିଥିଭବନର ଭି.ଆଇ.ପି. ରୁମ୍‌ରେ ବିଧାୟକମାନେ ଦସ୍ତଖତ ଦେଉଥିବା ସମୟରେ ତଳମହଲାରେ ଅତିଥି ଭବନ ପୋର୍ଟିକୋ ପାଖରେ କିଛି କୋଳାହଳ ଶୁଣାଯାଇଥିଲା ।

ଖବର ନେବାରେ ଜଣାଯାଇଥିଲା ଯେ କିଛି ସମୟ ପୂର୍ବରୁ ଯେଉଁମାନେ ଶ୍ରୀମତୀ ଶତପଥୀଙ୍କ ସରକାରୀ ବାସଭବନ ବୈଠକଖାନାରେ ତାଙ୍କର ଅନୁଗତ ଭାବରେ ଶ୍ରୀମତୀ ଗାନ୍ଧୀଙ୍କ ବିରୋଧରେ ବିଷୋଦ୍‌ଗାର କରୁଥିଲେ, ସେହିମାନେ ନିଜ ମତ ପରିବର୍ତ୍ତନ କରି ପ୍ରତି ଆନୁଗତ୍ୟ ପ୍ରକାଶ କରିବା ଉଦ୍ଦେଶ୍ୟରେ ଶ୍ରୀ ଅନ୍ତୁଲେଙ୍କୁ ସାକ୍ଷାତ୍ କରିବା ପାଇଁ ଅତିଥି ଭବନରେ ଭିଡ଼ ଲଗାଇଥିଲେ ।

ପ୍ରଥମେ ଶ୍ରୀମତୀ ଶତପଥୀଙ୍କ ବିରୋଧୀ ଗୋଷ୍ଠୀ ପକ୍ଷରୁ ସେମାନେ ବିରୋଧର ସମ୍ମୁଖୀନ ହୋଇଥିଲେ । ମାତ୍ର ପରେ ଶ୍ରୀ ଅନ୍ତୁଲେଙ୍କ ହସ୍ତକ୍ଷେପ ଫଳରେ ଆନୁଗତ୍ୟ ସ୍ୱୀକାର ପାଇଁ

ସେମାନଙ୍କୁ ଅନୁମତି ମିଳିଥିଲା । ଉଦ୍ଦିଷ୍ଟ କାଗଜରେ ଦସ୍ତଖତ କରି ସେମାନେ ନିଜର ପବିତ୍ର କର୍ତ୍ତବ୍ୟ ସଂପାଦନ କରିଥିଲେ ।

ସେଦିନ ରାତିରେ ଶ୍ରୀ ଅନ୍ତୁଲେ ସାମ୍ବାଦିକମାନଙ୍କୁ ନୈଶଭୋଜିରେ ଆପ୍ୟାୟିତ କରିଥିଲେ । ସେହି ଭୋଜିସଭାରେ କେନ୍ଦ୍ର ଉପମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମଧ୍ୟ ଯୋଗ ଦେଇଥିଲେ । ଭାରତୀୟ ଜାତୀୟ କଂଗ୍ରେସର ଅତୀତ, ପରମ୍ପରା ଓ ସଂସ୍କୃତିର ବଳିଦାନ ଦିଆଯାଇ ସେ ସନ୍ଧ୍ୟାରେ ସ୍କଚ୍‌ହୁଇସ୍କି ସାଙ୍ଗକୁ କୁକୁଡ଼ା ରୋଷ୍ଟର ଧୁମ୍ ଆସର ରାତିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଚାଲିଥିଲା ।

ନନ୍ଦିନୀ ଶତପଥୀ କ୍ଷମତାରୁ ହଟିଯିବା ପରେ ଶ୍ରୀ ପଟ୍ଟନାୟକ ସେଦିନ ଖୁସି ଜଣାପଡୁଥିଲେ । ସାମ୍ବାଦିକମାନଙ୍କ ସହିତ କଥା ପ୍ରସଙ୍ଗରେ ଓଡ଼ିଶାରେ ଶୀଘ୍ର ଅନ୍ୟ ଏକ କଂଗ୍ରେସ ସରକାର ଗଠନ କରାଯିବ ବୋଲି ଶ୍ରୀ ପଟ୍ଟନାୟକ ସୂଚନା ଦେଇଥିଲେ ।

ନନ୍ଦିନୀ ଶତପଥୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବା ସମୟରେ ତାଙ୍କ ସାନପୁଅ ତଥାଗତ ଶତପଥୀ କ୍ଷମତା ଅଳିନ୍ଦ ବାହାରେ ଆଉ ଏକ କ୍ଷମତା ବଳୟ ସୃଷ୍ଟି କରିଥିଲେ । ଇନ୍ଦିରା ନନ୍ଦନ ସଂଜୟଙ୍କ ଭଳି ତଥାଗତ, ଓଡ଼ିଶାରେ ନିଜର ଏକ ସଂଗଠନ ତିଆରି କରି ସ୍ୱେଚ୍ଛାଚାରୀ ହେବାରେ ଲାଗିଲେ ।

ତଥାଗତ ନିଜର ଏକ ଗୁଇନ୍ଦା ସଂସ୍ଥା "ତଥାଗତ ଇଣ୍ଟେଲିଜେନ୍ସ ସିକ୍ରେଟ ସର୍ଭିସ ଏଜେନ୍ସି" (ଟିସା) ଗଠନ କଲେ । ସେଥିରେ ବହୁ ଯୁବକଙ୍କୁ ସାମିଲ୍ କରାଯାଇ ସେମାନଙ୍କୁ ଅର୍ଦ୍ଧ ସାମରିକ ତାଲିମ୍ ଦିଆଯାଇଥିଲା । ଏଥିପାଇଁ ବେଆଇନ୍ ଭାବରେ ପୁଲିସ ଅସ୍ତ୍ରାଗାରରୁ ପୁଲିସ ଫୋର୍ସ ପାଇଁ ଗଚ୍ଛିତ ରିଭଲଭର ଓ ଗୁଳି ଇତ୍ୟାଦି ବ୍ୟବହାର ପାଇଁ ତଥାଗତ ଓ ତାଙ୍କ ଗୋଷ୍ଠୀଙ୍କୁ ସୁଯୋଗ ମିଳୁଥିଲା ।

ସେତେବେଳେ ଭି. ଆପାରାଓ ନାମକ ଓଡ଼ିଶା କ୍ୟାଡ଼ରର ଜଣେ ଆଇ.ପି.ଏସ୍. ଅଫିସର କଟକର ଏସ୍‌ପି ଥିଲେ । ସେ ଜଣେ ପୁଲିସ ଅଫିସର ଭାବେ ନିଜର ସୀମା ସରହଦ ଭୁଲି ତଥାଗତଙ୍କ ସଂସ୍ଥା ସହିତ ଜଡ଼ିତ ହୋଇ ଯାଇଥିଲେ । କଟକ ଜିଲ୍ଲାର ବଇରିଠାରେ ଥିବା ପୁଲିସ ଫାୟାରିଂ ରେଞ୍ଜକୁ ଅନଧିକାର ଓ ବେଆଇନ ଭାବରେ ତଥାଗତ ଓ ତାଙ୍କ ସଂଗଠନର ସଦସ୍ୟମାନଙ୍କୁ ବନ୍ଧୁକ ଚାଳନା ଅଭ୍ୟାସ ପାଇଁ ଦିଆଯାଉଥିଲା । ଏହା ଏକ ଗୁରୁତର ଅପରାଧ ହୋଇଥିଲେ ହେଁ ମୁଖ୍ୟମନ୍ତ୍ରୀଙ୍କ ଡରରେ ଏହା ବିରୁଦ୍ଧରେ ସେତେବେଳେ କେହି ପାଟି ଖୋଲୁ ନଥିଲେ ।

ନନ୍ଦିନୀ ଶତପଥୀଙ୍କ ଆଶୀର୍ବାଦରୁ ଆଠଜଣ ଅଫିସରଙ୍କୁ ଟପି ଆଇଜି ପଦ ଲାଭ କରିଥିବା ନରସିଂହ ସ୍ୱାଇଁ 'ଟିସା'କୁ ଦିଗ୍‌ଦର୍ଶନ ଦେଉଥିବା କଥା ପରବର୍ତ୍ତୀ କାଳରେ ଜଣାପଡିଥିଲା । ସ୍ପେଶାଲବ୍ରାଞ୍ଚ ପୁଲିସ ପକ୍ଷରୁ ବିଭିନ୍ନ ସଂଗଠନରେ ଏଜେଣ୍ଟ ନିଯୁକ୍ତ କରି ଗୋପନୀୟ ଖବର ସଂଗ୍ରହ ପାଇଁ 'ସିକ୍ରେଟ ସର୍ଭିସ ଫଣ୍ଡ' ନାମରେ ଯେଉଁ ପାଣ୍ଠି ଥିଲା,

ଆଇ.ଜି.ଙ୍କ ନିର୍ଦ୍ଦେଶରେ ସେ ଟଙ୍କା 'ଟିସା'କୁ ଦିଆଯାଇଥିଲା । ଏହି ପାଣ୍ଠିର ଆୟବ୍ୟୟ ସାଧାରଣରେ ପ୍ରକାଶ ପାଉନଥିବାରୁ ପ୍ରକୃତରେ 'ଟିସା'କୁ କେତେ ଅର୍ଥ ଦିଆଯାଇଥିଲା ତା'ର ହିସାବ କେହି ଜାଣିପାରି ନଥିଲେ ।

ମୁଖ୍ୟତଃ 'ଟିସା'ର ଦୁଇଟି କାମ ଥିଲା ବୋଲି ପରବର୍ତ୍ତୀ କାଳରେ ତଦନ୍ତରୁ ଜଣାପଡ଼ିଥିଲା । ସେଥିମଧ୍ୟରୁ ପ୍ରଥମଟି ନନ୍ଦିନୀ ଶତପଥୀଙ୍କୁ ସମର୍ଥନ କରୁନଥିବା ବ୍ୟକ୍ତି ବା ଗୋଷ୍ଠୀର ଗତିବିଧି ଓ କାର୍ଯ୍ୟକଳାପ ଉପରେ ନଜର ରଖି ମୁଖ୍ୟମନ୍ତ୍ରୀଙ୍କୁ ସେସବୁ ଜଣାଇବା ଏବଂ ଦ୍ୱିତୀୟରେ ମୁଖ୍ୟମନ୍ତ୍ରୀଙ୍କ ବିରୋଧିମାନଙ୍କୁ ଭୟଭୀତ କରାଇ ସେମାନଙ୍କୁ ଜବତ କରିବା ।

କେତେକ ନିର୍ଦ୍ଦିଷ୍ଟ ଅଭିଯୋଗକ୍ରମେ ଢେଙ୍କାନାଳର ତଦାନିନ୍ତନ କଲେକ୍ଟର ସରିତା ଜୟନ୍ତ ଦାସ, ଆଇ.ଏ.ଏସ୍. ତଥାଗତଙ୍କୁ ଗିରଫ କରି ତାଙ୍କ ଜୀପ୍‌କୁ ଜବତ କଲାବେଳେ ସେଥିରୁ ନାନାପ୍ରକାର ଅସ୍ତ୍ରଶସ୍ତ୍ର ଜବତ ହୋଇଥିଲା ବୋଲି ନିଜେ ଜିଲ୍ଲାପାଳ ସାମ୍ବାଦିକମାନଙ୍କୁ କହିଥିଲେ । ସୈନ୍ୟବାହିନୀ ଦ୍ୱାରା ବ୍ୟବହାର କରାଯାଉଥିବା ଜୁଙ୍ଗୋ ଜୀପ୍‌କୁ କେଉଁ ସୂତ୍ରରୁ ଓ କିପରି ଭାବରେ ତଥାଗତ ନିଜ ଅକ୍ତିଆରରେ ରଖିଥିଲେ ତାହା ସେତେବେଳେ ଆଲୋଚ୍ୟ ବିଷୟ ହୋଇଥିଲା ।

ପରବର୍ତ୍ତୀ କାଳରେ 'ଟିସା'ର କାର୍ଯ୍ୟକଳାପ ସମ୍ପର୍କରେ ତଦନ୍ତ କରିଥିବା ଭିଜିଲାନ୍ସ ପୁଲିସ ଡି.ଆଇ.ଜି., ରାଜ୍ୟ ସରକାରଙ୍କୁ ଦେଇଥିବା ରିପୋର୍ଟରେ ଦର୍ଶାଇଥିଲେ, "ଜାତୀୟ ସମାଜବାଦୀ ସଂସ୍ଥା (ନ୍ୟାସନାଲ ସୋସିଆଲିଷ୍ଟ କରପ୍‌ସ)ର ଟିସା ଏକ ଗୁଣ୍ଡା ସଂସ୍ଥା ଥିଲା ।

କଂଗ୍ରେସ, ଯୁବକଂଗ୍ରେସ ଏବଂ ବିରୋଧୀ ଦଳରେ ଥିବା ନିଜ ରାଜନୈତିକ ବିରୋଧିମାନଙ୍କୁ ଜବତ କରିବା ଏବଂ ଆବଶ୍ୟକ ପଡ଼ିଲେ ସେମାନଙ୍କୁ ଖତମ୍ କରିଦେବାର ଏକମାତ୍ର ଲକ୍ଷ୍ୟ ନେଇ ନିଜ ହାତ ମୁଠାରେ ଏକ ସ୍ୱତନ୍ତ୍ର ଶକ୍ତିଶାଳୀ ବାହିନୀ ଗଠନ ଉଦ୍ଦେଶ୍ୟରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ୧୯୭୫ ମସିହ ଅକ୍ଟୋବର ଆଠ ତାରିଖରେ ବାଙ୍କୀଠାରେ ଏହି ସଂସ୍ଥାର ଶୁଭାରମ୍ଭ କରିଥିଲେ ।"

ଏହି ରିପୋର୍ଟରେ ଆହୁରି ଉଲ୍ଲେଖ କରାଯାଇଥିଲା, "ମୁଖ୍ୟମନ୍ତ୍ରୀଙ୍କ ନିକଟକୁ ସ୍ପେଶାଲ ବ୍ରାଞ୍ଚରୁ ଯେଉଁସବୁ ଗୋପନୀୟ ବିବରଣୀ ପଠାଯାଉଥିଲା, ସେସବୁ ଗୋପନୀୟ ବିବରଣୀ ପାଠ କରିବାକୁ ଶ୍ରୀ ଶତପଥୀ ସୁଯୋଗ ପାଉଥିଲେ ।

ତଥାଗତ ଶତପଥୀଙ୍କ ବାସଭବନରୁ ଜବତ ହୋଇଥିବା ବଲାଙ୍ଗୀରରେ ଯୁବକଂଗ୍ରେସ ବୈଠକ ସଂକ୍ରାନ୍ତରେ ସ୍ପେଶାଲ ବ୍ରାଞ୍ଚ ଏସ୍.ପି, ପି.କେ ମିଶ୍ରଙ୍କ ଦସ୍ତଖତରେ ୟୁ.ଓ.ଆଇ. ୩୪୪/ସେଲ୍/ଏସ୍.ବି. ତା ୧୦.୧୧.୧୯୭୬ରେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଯାଇଥିବା 'ଟପ୍ ସିକ୍ରେଟ୍' ରିପୋର୍ଟ ଏବଂ ରାଉରକେଲାସ୍ଥ ହିନ୍ଦୁସ୍ଥାନ ଷ୍ଟିଲ୍ ୱାର୍କସ୍‌ଙ୍କ କାର୍ଯ୍ୟକଳାପ

ସମ୍ପର୍କରେ ଗୃହ ବିଭାଗର ଯୁଗ୍ମ ସଚିବ ମେମୋ ନମ୍ବର ୯୫୫(୨)ସି. ତାରିଖ ୧୯୭୬ ଫେବୃୟାରୀ ୩ରେ ପଠାଇଥିବା ଅନ୍ୟ ଏକ 'କନଫିଡ଼େନସିଆଲ' ଚିଠିରୁ ଏହା ପ୍ରମାଣିତ ହୋଇଥିଲା ।"

ଭିଜିଲାନ୍ସ ସଂସ୍ଥାଦ୍ୱାରା ତଥାଗତ ଶତପଥୀଙ୍କ ବାସଭବନରୁ ଜବତ ହୋଇଥିବା ଡାଏରୀର ବିଷୟବସ୍ତୁ ସେତେବେଳେ ଖୁବ୍ ଆଲୋଡ଼ନ ସୃଷ୍ଟି କରିଥିଲା । ଏହି ଡାଏରୀର ବିଷୟବସ୍ତୁ ପ୍ରକାଶ କରିଥିବା ଦୈନିକ 'ପ୍ରଜାତନ୍ତ୍ର' ବଜାରରେ ଅଧିକ ମୂଲ୍ୟରେ ବିକ୍ରି ହୋଇଥିବାର ଦେଖାଯାଇଥିଲା ।

ସେ ଡାଏରୀରେ ନନ୍ଦିନୀ ଶତପଥୀଙ୍କୁ କେନ୍ଦ୍ରକରି ଅନେକ ଅଶ୍ଳୀଳ ଶବ୍ଦ ପ୍ରୟୋଗ କରାଯାଇ ଆପତ୍ତିଜନକ କଥା ସବୁ ଲେଖା ଯାଇଥିଲା ।

ନନ୍ଦିନୀ ଶତପଥୀଙ୍କ ମନ୍ତ୍ରିମଣ୍ଡଳର ପତନ ପରେ ମାତ୍ର ୧୩ ଦିନ ପାଇଁ ରାଷ୍ଟ୍ରପତି ଶାସନ ଜାରି ହୋଇଥିଲା । ପରେ କଂଗ୍ରେସ ହାଇକମାଣ୍ଡଙ୍କ ନିଷ୍ପତ୍ତି କ୍ରମେ ବିନାୟକ ଆଚାର୍ଯ୍ୟ ଡିସେମ୍ବର ୨୯ ତାରିଖ ଦିନ ମୁଖ୍ୟମନ୍ତ୍ରୀ ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ ।

ବିନାୟକ ଆଚାର୍ଯ୍ୟଙ୍କୁ ଲୋକେ 'ବିନାୟକ ମାଷ୍ଟ୍ରେ' ବୋଲି ଡାକନ୍ତି । ସେ ରାଜନୀତିକୁ ଆସିବା ପୂର୍ବରୁ ବ୍ରହ୍ମପୁର ମ୍ୟୁନିସପାଲିଟି ହାଇସ୍କୁଲରେ ହେଡ୍‌ମାଷ୍ଟର ଥିଲେ । ଗଞ୍ଜାମର ବିଶିଷ୍ଟ କମ୍ୟୁନିଷ୍ଟ ନେତା ବିଜୟ ଦାସଙ୍କ ପରାମର୍ଶକ୍ରମେ ଶ୍ରୀ ଆଚାର୍ଯ୍ୟ ୧୯୫୪ ମସିହାରେ ଅନୁଷ୍ଠିତ ହୋଇଥିବା ଏକ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କମ୍ୟୁନିଷ୍ଟ ପ୍ରାର୍ଥୀ ଭାବରେ ବ୍ରହ୍ମପୁର ଆସନରୁ ପ୍ରତିଦ୍ୱନ୍ଦିତା କରିଥିଲେ । ମାତ୍ର ନିର୍ବାଚନରେ ହାରିଯାଇ ଶ୍ରୀ ଆଚାର୍ଯ୍ୟ ପୁଣି ଶିକ୍ଷକ ବୃତ୍ତିକୁ ଫେରିଯାଇଥିଲେ । ପରେ ସେ ୧୯୬୭ ମସିହାରେ ଶିକ୍ଷକ ଚାକିରିରୁ ଇସ୍ତଫା ଦେଇ କଂଗ୍ରେସ ଦଳରେ ଯୋଗ ଦେଇଥିଲେ ଏବଂ ବ୍ରହ୍ମପୁର ନିର୍ବାଚନମଣ୍ଡଳୀରୁ ରାଜ୍ୟ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ।

ଶ୍ରୀ ଆଚାର୍ଯ୍ୟଙ୍କ ନେତୃତ୍ୱରେ ନୂତନ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲେ ହେଁ, ନନ୍ଦିନୀ ଶତପଥୀ ମନ୍ତ୍ରିମଣ୍ଡଳର ପତନ ଘଟାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରି ଉପମନ୍ତ୍ରୀରୁ ରାଷ୍ଟ୍ରମନ୍ତ୍ରୀ ପଦବୀକୁ ପଦୋନ୍ନତି ପାଇଥିବା ଜାନକୀ ବଲ୍ଲଭ ପଟ୍ଟନାୟକ ବସ୍ତୁତଃ ଏହି ମନ୍ତ୍ରିମଣ୍ଡଳକୁ ବାହାରୁ ନିୟନ୍ତ୍ରଣ କରୁଥିଲେ ।

ତାଙ୍କରି ଦ୍ୱାରା ମନୋନୀତ ହୋଇ ଭେଙ୍କଟରମଣ ମୁଖ୍ୟମନ୍ତ୍ରୀଙ୍କ ସଚିବ ଭାବରେ ନିଯୁକ୍ତ ହୋଇଥିଲେ । ଶ୍ରୀ ପଟ୍ଟନାୟକ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନିକଟତମ ଭାବରେ ପରିଚିତ ହୋଇଥିବାରୁ ତାଙ୍କରି ପରାମର୍ଶରେ ମନ୍ତ୍ରିମଣ୍ଡଳରେ ପ୍ରାୟ ସବୁ ନିଷ୍ପତ୍ତି ହେଉଥିଲା । ଶ୍ରୀ ଆଚାର୍ଯ୍ୟ ଜଣେ ଧୀରସ୍ଥିର ପ୍ରକୃତିର ବ୍ୟକ୍ତି ଥିଲେ । ରାଜନୈତିକ ଦୃଢ଼ତା ତାଙ୍କର ନଥିଲା । ସେଥିପାଇଁ ତାଙ୍କ ଦ୍ୱାର ସମସ୍ତଙ୍କ ପାଇଁ ଖୋଲା ଥିଲା ।

ଶ୍ରୀ ଆଚାର୍ଯ୍ୟ ମୁଖ୍ୟମନ୍ତ୍ରୀ ଥିବା ସମୟରେ ଓଡ଼ିଶାରେ ସ୍ଥାୟୀ ରାଜ୍ୟପାଳ କେହି ନଥିଲେ । ଶ୍ରୀମତୀ ଶତପଥୀଙ୍କ ସହିତ ମତାନ୍ତର ହେବାରୁ ରାଜ୍ୟପାଳ ଆକବର ଅଲ୍ଲୀ ଖାଁ ନିଜ ପଦବୀରୁ ଇସ୍ତଫା ଦେଇ ଚାଲିଯାଇଥିଲେ । ତାଙ୍କ ସ୍ଥାନରେ ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ଶିବନାରାୟଣ ଶଙ୍କର କାର୍ଯ୍ୟନିର୍ବାହୀ ରାଜ୍ୟପାଳ ଭାବରେ ଦାୟିତ୍ୱରେ ରହିଥିଲେ ।

ଜାନୁଆରୀ ମାସରେ ହଠାତ୍ ଶ୍ରୀ ଶଙ୍କର ହୃଦ୍‌ରୋଗରେ ଆକ୍ରାନ୍ତ ହେବାରୁ ତାଙ୍କୁ ଚିକିତ୍ସା ପାଇଁ କଟକସ୍ଥିତ ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜ ହସ୍‌ପିଟାଲର ଇଣ୍ଟେନସିଭ୍ କେୟାର ୟୁନିଟ୍‌ରେ ଭର୍ତ୍ତି କରାଯାଇଥିଲା ।

ଯେ କୌଣସି ବ୍ୟକ୍ତି ଅସୁସ୍ଥ ହୋଇ ଡାକ୍ତରଖାନାରେ ଭର୍ତ୍ତି ହେବା କିଛି ଉଲ୍ଲେଖନୀୟ ଘଟଣା ନୁହେଁ । କିନ୍ତୁ ଶ୍ରୀ ଶଙ୍କରଙ୍କ ଅସୁସ୍ଥତା ଯୋଗୁଁ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଥିଲା ।

ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ବଲାଙ୍ଗୀରର ପୂର୍ବତନ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର ଓଡ଼ିଶା ରାଜନୀତିରେ ଯଥେଷ୍ଟ ପ୍ରଭାବ ଥିଲା । ତାଙ୍କ ମୃତ୍ୟୁ ପରେ ତାଙ୍କ କନିଷ୍ଠ ପୁତ୍ର ଅନଙ୍ଗ ଉଦୟ ସିଂହଦେଓ କଂଗ୍ରେସରେ ଯୋଗ ଦେଇଥିଲେ ।

ଶ୍ରୀ ଆଚାର୍ଯ୍ୟ ମୁଖ୍ୟମନ୍ତ୍ରୀ ଥିବା ସମୟରେ ରାଜନୈତିକ ଆବଶ୍ୟକତା ଦୃଷ୍ଟିରୁ ଶ୍ରୀ ସିଂହଦେଓଙ୍କୁ ମନ୍ତ୍ରୀ କରାଯିବାର ଜରୁରୀ ଦରକାର ପଡ଼ିଲା । ଓଡ଼ିଶାର କାର୍ଯ୍ୟନିର୍ବାହୀ ରାଜ୍ୟପାଳ ଚିକିତ୍ସା ପାଇଁ ଡାକ୍ତରଖାନାରେ ଥିବାରୁ ସେଠାରେ ଶ୍ରୀ ସିଂହଦେଓଙ୍କ ଶପଥ ଗ୍ରହଣ ପାଇଁ ବ୍ୟବସ୍ଥା କରାଗଲା । ଇଣ୍ଟେନସିଭ୍ କେୟାର ୟୁନିଟର କାଚଘରେ ଅସୁସ୍ଥ ରାଜ୍ୟପାଳ ଶ୍ରୀ ଶଙ୍କର ଶ୍ରୀ ସିଂହଦେଓଙ୍କୁ ମନ୍ତ୍ରୀ ଭାବରେ ପଦ ଓ ଗୋପନୀୟତାର ଶପଥ ପାଠ କରାଇଥିଲେ । ଏହା ଓଡ଼ିଶା ରାଜନୀତିରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା ।

ପ୍ରତିବର୍ଷ ଜାନୁଆରୀ ୨୬ ତାରିଖରେ ରାଜଧାନୀ ଭୁବନେଶ୍ୱର ଠାରେ ଅନୁଷ୍ଠିତ ଜନରାଜ୍ୟ ଦିବସର ମିଳିତ ପ୍ୟାରେଡ୍ ଉତ୍ସବରେ ରାଜ୍ୟପାଳମାନେ ଅଭିବାଦନ ଗ୍ରହଣ କରୁଥିଲେ । କିନ୍ତୁ ୧୯୭୭ ମସିହା ଜାନୁୟାରୀ ୨୬ ତାରିଖ ଦିନ ରାଜ୍ୟପାଳ ଅସୁସ୍ଥ ଥିବାରୁ ତାଙ୍କ ସ୍ଥାନରେ ସେକ୍ରେଟାରୀଏଟ୍ ସାମନାରେ ଥିବା ପ୍ୟାରେଡ୍ ଗ୍ରାଉଣ୍ଡରେ ଅନୁଷ୍ଠିତ ଜନରାଜ୍ୟ ଦିବସ ପ୍ୟାରେଡ୍‌ରେ ମୁଖ୍ୟମନ୍ତ୍ରୀ ଶ୍ରୀ ଆଚାର୍ଯ୍ୟ ଅଭିବାଦନ ଗ୍ରହଣ କରିଥିଲେ । ଏଥିରେ ଏକ ନୂତନ ପରମ୍ପରା ସୃଷ୍ଟି ହୋଇଥିଲା ।

ଅଷ୍ଟମ ଲୋକସଭା ନିର୍ବାଚନରେ ଓଡ଼ିଶା ସମେତ ପଶ୍ଚିମବଙ୍ଗ, ବିହାର, ଉତ୍ତର ପ୍ରଦେଶ, ମଧ୍ୟପ୍ରଦେଶ, ରାଜସ୍ଥାନ, ହିମାଚଳ ପ୍ରଦେଶ, ପଞ୍ଜାବ ଓ ହରିଅଣାରେ ଶାସନ କ୍ଷମତାରେ ଥିବା କଂଗ୍ରେସ ଦଳ ଶୋଚନୀୟ ପରାଜୟ ବରଣ କରିଥିଲା ।

ଓଡ଼ିଶାରେ ଲୋକସଭାର ୨୧ଟି ଆସନ ମଧ୍ୟରୁ କଂଗ୍ରେସ ଦଳ କେବଳ ଚାରିଟି ଆସନ ଲାଭ କରିଥିଲା । କଂଗ୍ରେସ ଦଳର ସମର୍ଥନରେ କଳାହାଣ୍ଡିର ପୂର୍ବତନ ମହାରାଜା ପ୍ରତାପ କେଶରୀ ଦେଓ ସ୍ୱାଧୀନପ୍ରାର୍ଥୀ ଭାବରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ ।

ଯେଉଁ ରାଜ୍ୟଗୁଡ଼ିକରେ କଂଗ୍ରେସ ଦଳ ଲୋକସଭା ନିର୍ବାଚନରେ ପରାଜୟ ବରଣ କରିଥିଲା, ସେସବୁ ରାଜ୍ୟଗୁଡ଼ିକରେ କଂଗ୍ରେସ ଦଳର ଆଉ ଶାସନ କ୍ଷମତାରେ ରହିବାର ଅଧିକାର ନାହିଁ ବୋଲି କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ, ବିଶିଷ୍ଟ ଜାଠନେତା ଚୌଧୁରୀ ଚରଣ ସିଂହ ଯୁକ୍ତି ଦର୍ଶାଇଥିଲେ ।

ସେଥିସହିତ ସଂପୃକ୍ତ ରାଜ୍ୟର ମୁଖ୍ୟମନ୍ତ୍ରୀମାନଙ୍କୁ ପତ୍ର ଲେଖି ମନ୍ତ୍ରିମଣ୍ଡଳର ଇସ୍ତଫା ଦେବା ସଙ୍ଗେସଙ୍ଗେ ବିଧାନସଭାଗୁଡ଼ିକୁ ଭାଙ୍ଗିଦେବା ନିମନ୍ତେ ସୁପାରିଶ କରିବାକୁ ସେ ପରାମର୍ଶ ଦେଇଥିଲେ ।

କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀଙ୍କ ପତ୍ରରେ ଅସନ୍ତୋଷ ପ୍ରକାଶ କରି ରାଜସ୍ଥାନ, ବିହାର, ମଧ୍ୟପ୍ରଦେଶ ଏବଂ ପଞ୍ଜାବ ରାଜ୍ୟ ସରକାରମାନେ ସୁପ୍ରିମକୋର୍ଟରେ ଅପିଲ କରିଥିଲେ । ଓଡ଼ିଶା ସରକାର ମଧ୍ୟ ହାଇକୋର୍ଟରେ ଏକ ଅନୁରୂପ ପିଟିସନ୍ ଦାଖଲ କରିଥିଲେ ।

ଅପ୍ରେଲ ୨୯ ତାରିଖ ଦିନ ସୁପ୍ରିମକୋର୍ଟ, ଚାରୋଟି ରାଜ୍ୟ ପକ୍ଷରୁ ଦାଖଲ ହୋଇଥିବା ମକଦ୍ଦମାକୁ ଖାରଜ କରିଦେଇଥିଲେ । ସେଇଦିନ ସନ୍ଧ୍ୟାରେ କେନ୍ଦ୍ର ମନ୍ତ୍ରିମଣ୍ଡଳ ନଅଟି କଂଗ୍ରେସ ଶାସିତ ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରିବା ପାଇଁ ନିଷ୍ପତ୍ତି ନେଲେ । ଏହି ଘଟଣା ପରେ ଓଡ଼ିଶା ସରକାରଙ୍କ ପକ୍ଷରୁ ହାଇକୋର୍ଟରେ ଦାଖଲ ହୋଇଥିବା ପିଟିସନ ଅକାମୀ ହୋଇଯାଇଥିଲା । ଶ୍ରୀ ଆଚାର୍ଯ୍ୟଙ୍କ ମନ୍ତ୍ରିମଣ୍ଡଳର ପତନ ପରେ ଅପ୍ରେଲ ୩୦ ତାରିଖରୁ ଓଡ଼ିଶାରେ ପଞ୍ଚମ ଥର ପାଇଁ ରାଷ୍ଟ୍ରପତି ଶାସନ ଲାଗୁକରାଯାଇଥିଲା ।

୧୯୭୭ ମସିହାରେ ଅନୁଷ୍ଠିତ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ନବଗଠିତ ଜନତା ପାର୍ଟି ଓଡ଼ିଶା ବିଧାନସଭାର ୧୪୦ ଆସନ ମଧ୍ୟରୁ ୧୧୦ଟି ଆସନ ଦଖଲ କରିଥିଲା । ମନ୍ତ୍ରିମଣ୍ଡଳ ଗଠନ ପ୍ରଶ୍ନକୁ କେନ୍ଦ୍ରକରି ନାନାପ୍ରକାର କଳ୍ପନାଜଳ୍ପନା ଚାଲିଥିଲା ।

ଦେଶର ଜରୁରୀକାଳୀନ ପରିସ୍ଥିତି ସମୟରେ ଜେଲ ବରଣ କରିଥିବା ନେତାମାନଙ୍କ ମଧ୍ୟରୁ ଜଣେ ରାଜ୍ୟର ମୁଖ୍ୟମନ୍ତ୍ରୀ ହେବା ଉଚିତ୍ ବୋଲି ଜନତା ପାର୍ଟିର ଅନ୍ୟତମ ନେତା ପ୍ରତାପ ଚନ୍ଦ୍ର ମହାନ୍ତିଙ୍କ ପକ୍ଷରୁ ବିଧାୟକ ଦଳ ବୈଠକ ପୂର୍ବରୁ ଦାବି କରାଯାଇଥିଲା ।

କିନ୍ତୁ ନିର୍ବାଚନ ପୂର୍ବରୁ ନୀଳମଣି ରାଉତରାୟ ଜନତା ପାର୍ଟି ବିଧାୟକ ଦଳର ନେତା ନିର୍ବାଚିତ ହୋଇ ମୁଖ୍ୟମନ୍ତ୍ରୀ ହେବେ ବୋଲି ଏକପ୍ରକାର ନିଷ୍ପତ୍ତି ହୋଇ ସାରିଥିଲା । ସେହି ନିଷ୍ପତ୍ତିକୁ ଭିତ୍ତିକରି ରାଜ୍ୟସଭା ସଭ୍ୟ ପଦରୁ ଇସ୍ତଫା ଦେଇ ଶ୍ରୀ ରାଉତରାୟ ବିଧାନସଭା ନିର୍ବାଚନରେ ବାସୁଦେବପୁର ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ ।

୧୯୭୭ ମସିହା ଜୁନ୍ ୨୧ ତାରିଖ ଦିନ ବିଧାନସଭା କମିଟି ରୁମ୍‌ରେ ଜନତା ପାର୍ଟି ବିଧାୟକ ଦଳର ବୈଠକ ଅନୁଷ୍ଠିତ ହୋଇଥିଲା । ଦଳର ହାଇକମାଣ୍ଡଙ୍କ ପ୍ରତିନିଧି, କେନ୍ଦ୍ରମନ୍ତ୍ରୀ ସିକନ୍ଦର ବଖ୍‌ତ ସେଥିରେ ପର୍ଯ୍ୟବେକ୍ଷକ ଭାବରେ ଯୋଗଦେଇଥିଲେ ।

ପୂର୍ବ ନିଷ୍ପତ୍ତି ଅନୁଯାୟୀ ଶ୍ରୀ ରାଉତରାୟ ନିର୍ଦ୍ୱନ୍ଦ୍ୱରେ ବିଧାୟକ ଦଳର ନେତା ନିର୍ବାଚିତ ହୋଇଥିଲେ । ଶ୍ରୀ ରାଉତରାୟ ଜନତା ବିଧାୟକ ଦଳର ନେତା ନିର୍ବାଚିତ ହେବାର ବହୁ ପୂର୍ବରୁ କେନ୍ଦ୍ରରେ ମୋରାରଜୀ ଦେଶାଇଙ୍କ ନେତୃତ୍ୱରେ ଜନତା ପାର୍ଟିର ମନ୍ତ୍ରିମଣ୍ଡଳ ଗଠିତ ହୋଇସାରିଥିଲା ।

ଶ୍ରୀ ଦେଶାଇ ଜଣେ ସଚ୍ଚା ଗାନ୍ଧୀବାଦୀ ନେତା ଥିଲେ । ଜୀବନରେ କେବେହେଲେ ସେ ନୀତି ସହିତ ସାଲିସ କରି ନଥିଲେ । ନେତା ନିର୍ବାଚିତ ହୋଇ ଶ୍ରୀ ରାଉତରାୟ ଶ୍ରୀ ଦେଶାଇଙ୍କ ସହିତ ମନ୍ତ୍ରିମଣ୍ଡଳ ଗଠନ ସମ୍ପର୍କରେ ଆଲୋଚନା କରିବା ସମୟରେ ପ୍ରସ୍ତାବିତ ମନ୍ତ୍ରିମଣ୍ଡଳର ସଂଖ୍ୟା ରାଜ୍ୟ ବିଧାନସଭା ସଦସ୍ୟ ସଂଖ୍ୟାର ଏକ ଦଶମାଂଶ ମଧ୍ୟରେ ସୀମିତ ରଖିବାକୁ ପ୍ରଧାନମନ୍ତ୍ରୀ ଶ୍ରୀ ରାଉତରାୟଙ୍କୁ ତାଗିଦ କରିଦେଇଥିଲେ ।

୧୯୭୮ ମସିହା ଜୁନ୍ ଦ୍ୱିତୀୟ ସପ୍ତାହରେ ପୂର୍ବତନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କର ଦୁଇଦିନିଆ ଓଡ଼ିଶା ଗସ୍ତ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ଶ୍ରୀମତୀ ଗାନ୍ଧୀ ନିର୍ବାଚନରେ ପରାଜିତ ହୋଇଥିବାରୁ ପାର୍ଲାମେଣ୍ଟ ସଦସ୍ୟ ନଥିଲେ । ଓଡ଼ିଶା ଗସ୍ତ ସମୟରେ ତାଙ୍କୁ କେଉଁଭଳି ସୁରକ୍ଷା ଦିଆଯିବ, ସେ ସମ୍ପର୍କରେ ପ୍ରଶ୍ନ ଉଠିଥିଲା ।

ମୁଖ୍ୟମନ୍ତ୍ରୀ ଶ୍ରୀ ରାଉତରାୟ, ଶ୍ରୀମତୀ ଗାନ୍ଧୀଙ୍କୁ ରାଜ୍ୟ ସରକାରଙ୍କ ଅତିଥି ଭାବରେ ରଖିବାକୁ ନିଷ୍ପତ୍ତି ନେବା ଫଳରେ ସେ ସମ୍ପର୍କରେ ଆଉ ଅଧିକ ଚର୍ଚ୍ଚା ହୋଇ ନଥିଲା । କିନ୍ତୁ ସେପରି ନିଷ୍ପତ୍ତି ପାଇଁ ମୁଖ୍ୟମନ୍ତ୍ରୀଙ୍କୁ ନିଜ ଦଳ ପକ୍ଷରୁ ସମାଲୋଚିତ ହେବାକୁ ପଡ଼ିଥିଲା ।

ଜୁନ୍ ୯ ତାରିଖ ପୂର୍ବାହ୍ଣରେ ଶ୍ରୀମତୀ ଗାନ୍ଧୀ ବିମାନ ଯୋଗେ ଦିଲ୍ଲୀରୁ ଆସି ଭୁବନେଶ୍ୱରରେ ପହଞ୍ଚିଥିଲେ । ଅନ୍ୟାନ୍ୟ କାର୍ଯ୍ୟକ୍ରମ ମଧ୍ୟରେ ଶ୍ରୀମତୀ ଗାନ୍ଧୀ କଟକର ବାରବାଟୀ ଷ୍ଟାଡିୟମଠାରେ କଂଗ୍ରେସ କର୍ମୀମାନଙ୍କୁ ଉଦ୍‌ବୋଧନ ଦେବା ପାଇଁ ଆୟୋଜନ ହୋଇଥିଲା ।

ନିଜ ସ୍ୱାର୍ଥ ପାଇଁ ଦେଶରେ ଜରୁରୀକାଳୀନ ପରିସ୍ଥିତି ଜାରୀ କରି ସମଗ୍ର ଦେଶରେ ଶ୍ରୀମତୀ ଗାନ୍ଧୀ ଯେଉଁଳି ଭାବରେ ଅତ୍ୟାଚାର ଚଳାଇଥିଲେ, ତାକୁ ଦେଶବାସୀ ସହଜରେ ଭୁଲି ପାରିନଥିଲେ । ବିଶେଷକରି ଜନତା ପାର୍ଟିର ନେତୃବୃନ୍ଦ ଓ କର୍ମୀମାନଙ୍କର ଶ୍ରୀମତୀ ଗାନ୍ଧୀଙ୍କ ବିରୋଧରେ ସୃଷ୍ଟି ହୋଇଥିବା କ୍ରୋଧ ପ୍ରଶମିତ ହୋଇ ନଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀ ରାଉତରାୟ ଶ୍ରୀମତୀ ଗାନ୍ଧୀଙ୍କୁ ସରକାରୀ ଅତିଥି କରିବା ନିଷ୍ପତ୍ତିକୁ ଶାସକ ଦଳର ବହୁ ଲୋକ ପ୍ରକାଶ୍ୟରେ ବିରୋଧ କରିଥିଲେ ।

ଶ୍ରୀମତୀ ଗାନ୍ଧୀଙ୍କୁ ଐତିହାସିକ କଟକ ସହରରେ ପୂରାଇ ନଦେବା ଉଦ୍ଦେଶ୍ୟରେ ଜନତା ପାର୍ଟିର ଅନେକ ନେତା ଓ କର୍ମୀ କଟକ ସହର ଉପକଣ୍ଠରେ କାଠଯୋଡ଼ି ପୋଲର ଅପର ପାର୍ଶ୍ୱରେ ବିକ୍ଷୋଭର ଆୟୋଜନ କରିଥିଲେ । ସେଥିପାଇଁ ଶ୍ରୀମତୀ ଗାନ୍ଧୀଙ୍କ ସହିତ ସଶସ୍ତ୍ର ପୁଲିସ ସୁରକ୍ଷା ବ୍ୟବସ୍ଥା କରାଯାଇଥିଲା ।

ତା'ସତ୍ତ୍ୱେ ଶ୍ରୀମତୀ ଗାନ୍ଧୀ ଯାଉଥିବା ଓଡ଼ିଶା ସରକାରଙ୍କ ଇମ୍ପାଲା ଗାଡ଼ି ଉପରେ ବିକ୍ଷୋଭକାରୀମାନେ ବିଭିନ୍ନ ପ୍ରକାରର ମାରଣାସ୍ତ୍ର ସହିତ ଆକ୍ରମଣ କରିଥିଲେ । ଷ୍ଟେଟ ଗେଷ୍ଟ ହାଉସ ଡ୍ରାଇଭର ଓ ସୁରକ୍ଷା କର୍ମଚାରୀଙ୍କ ବିଚକ୍ଷଣତା ଯୋଗୁଁ ଶ୍ରୀମତୀ ଗାନ୍ଧୀ ଅକ୍ଷତ ଭାବରେ ବର୍ତ୍ତିଯାଇଥିଲେ ।

ଘଟଣାସ୍ଥଳରେ ଉପସ୍ଥିତ ଥିବା ତତ୍‌କାଳୀନ କଟକ ଜିଲ୍ଲାପାଳ ବିନୋଦ ଝା'ଙ୍କର ଏହି ଗଣ୍ଡଗୋଳ ଭିତରେ ଗୋଡ଼ ଭାଙ୍ଗିଯାଇଥିଲା । ଏସ୍‌.ପି. ଅନାଦି ସାହୁ ମଧ୍ୟ ଆହତ ହୋଇଥିଲେ ।

ଶ୍ରୀମତୀ ଗାନ୍ଧୀ ଷ୍ଟାଡିୟମରେ ପହଞ୍ଚି ଦଳୀୟ କର୍ମୀମାନଙ୍କୁ ଉଦ୍‌ବୋଧନ ଦେବା ପୂର୍ବରୁ କ୍ଲବ ହାଉସ ଉପର ମହଲାରେ ସାମ୍ବାଦିକମାନଙ୍କୁ ଭେଟିଥିଲେ । ଶ୍ରୀମତୀ ଗାନ୍ଧୀ ସେତେବେଳେ କୌଣସି ପଦପଦବୀରେ ନଥିବା ହେତୁ ସେଦିନ ତାଙ୍କୁ ପଚାରିବା ପାଇଁ ସାମ୍ବାଦିକମାନଙ୍କ ପାଖରେ ବିଶେଷ ପ୍ରଶ୍ନ ନଥିଲା । ଅନ୍ୟପକ୍ଷରେ ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ଯଥେଷ୍ଟ ସମୟ ଥିଲା । ତାଙ୍କୁ ଜୀବନରେ ମାରିଦେବା ପାଇଁ ତାଙ୍କ ଉପରେ ଆକ୍ରମଣ ହୋଇଥିଲା ବୋଲି ଶ୍ରୀମତୀ ଗାନ୍ଧୀ ସାମ୍ବାଦିକମାନଙ୍କୁ ପ୍ରତିକ୍ରିୟାରେ ପ୍ରକାଶ କରିଥିଲେ । ତା'ପରେ କଂଗ୍ରେସ କର୍ମୀମାନଙ୍କୁ ଉଦ୍‌ବୋଧନ ଦେଇ ଶ୍ରୀମତୀ ଗାନ୍ଧୀ ଭୁବନେଶ୍ୱର ଫେରିଆସିଥିଲେ ।

କେନ୍ଦ୍ରରେ ଜନତା ପାର୍ଟି ସରକାରକୁ ଆସିବା ପରେ ଭାରତୀୟ ଜାତୀୟ କଂଗ୍ରେସରେ ଆଭ୍ୟନ୍ତରୀଣ କନ୍ଦଳ ଯୋଗୁଁ ୧୯୭୮ ମସିହାରେ ଦ୍ୱିତୀୟଥର ପାଇଁ ଦଳରେ ବିଭାଜନ ଘଟିଥିଲା । ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ ଗଠିତ ନୂତନ ଦଳ କଂଗ୍ରେସ(ଆଇ) ଭାବରେ ଜଣାଶୁଣା ହୋଇଥିଲା । ସେ ଦଳକୁ ନିର୍ବାଚନ ସଙ୍କେତ ଭାବରେ 'ହାତ ଚିହ୍ନ' ମିଳିଥିଲା । ଅନ୍ୟପକ୍ଷରେ ସଂଜୀବ ରେଡ୍‌ଡ଼ୀଙ୍କ ଦ୍ୱାରା ପରିଚାଳିତ କଂଗ୍ରେସର ଅନ୍ୟ ଗୋଷ୍ଠୀ କଂଗ୍ରେସ ପୂର୍ବରୁ ଥିବା ଦଳର ନିର୍ବାଚନ ଚିହ୍ନ 'ଗାଈବାଛୁରୀ'କୁ ବଜାୟ ରଖିଥିଲେ ।

ଉଭୟ ଗୋଷ୍ଠୀ ନିଜକୁ ପ୍ରକୃତ କଂଗ୍ରେସ ବୋଲି ଦାବି କରିବା ଫଳରେ ମାମଲା କୋର୍ଟ କଚେରୀ ପର୍ଯ୍ୟନ୍ତ ଯାଇଥିଲା । ଶେଷରେ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସ (ଆଇ) ପ୍ରକୃତ କଂଗ୍ରେସ ବୋଲି ୧୯୮୨ ମସିହାରେ କୋର୍ଟ ନିର୍ଦ୍ଦେଶ ଦେଇଥିଲେ ।

କଂଗ୍ରେସ ଦଳର କାର୍ଯ୍ୟାଳୟ ଶ୍ରୀ ରେଡ୍‌ଡ୍ରୀଙ୍କ ଗୋଷ୍ଠୀ ଅକ୍ତିଆରରେ ଥିବାରୁ କଂଗ୍ରେସ (ଆଇ)ର କାର୍ଯ୍ୟାଳୟ କଂଗ୍ରେସ ସାଂସଦ ଜି.ଭେଙ୍କଟସ୍ୱାମୀଙ୍କ ୨୪, ଆକବର ରୋଡ଼ରେ ଥିବା ବାସଭବନରେ ଖୋଲିଥିଲା ।

ପୂର୍ବ ନିଷ୍ପତ୍ତିର ନଜିର ଦେଖାଇ ଓଡ଼ିଶା ସମେତ ନଅଟି ଅଣକଂଗ୍ରେସ ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରିବା ପାଇଁ କେନ୍ଦ୍ରରେ ପ୍ରତିଷ୍ଠିତ ସରକାର ନିଷ୍ପତ୍ତି ଗ୍ରହଣ କରିଥିଲେ । ତଦନୁଯାୟୀ ୧୯୮୦ ମସିହା ଫେବୃଆରୀ ୧୭ ତାରିଖରେ ରାଉତରାୟ ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରାଯାଇ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରି କରାଯାଇଥିଲା ।

ରାଜ୍ୟ ସରକାରଗୁଡ଼ିକୁ ଭାଙ୍ଗିଦେବା କ୍ଷେତ୍ରରେ କୌଣସି ନିର୍ଦ୍ଦିଷ୍ଟ ନୀତିନିୟମ ପାଳନ କରାଯାଇ ନଥିଲା । ଯେଉଁ ରାଜ୍ୟରେ ଲୋକସଭା ନିର୍ବାଚନରେ ଶାସନ କ୍ଷମତାରେ ଥିବା ଅଣକଂଗ୍ରେସ ଦଳଗୁଡ଼ିକ ପରାଜୟ ବରଣ କରିଥିଲେ, ସେସବୁ ରାଜ୍ୟ ସରକାରକୁ ଭାଙ୍ଗି ଦେବା ପାଇଁ କେନ୍ଦ୍ର ସରକାର ଯେଉଁ ନିଷ୍ପତ୍ତି ନେଇଥିଲେ, ହରିଆନା ଓ ହିମାଚଳ ପ୍ରଦେଶ କ୍ଷେତ୍ରରେ ତାହା ପ୍ରଯୁଜ୍ୟ ହୋଇ ନଥିଲା । କାରଣ ସେ ଦୁଇଟି ରାଜ୍ୟରେ ଥିବା ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ରାତାରାତି ନିଜର ରୂପ ବଦଳାଇ କଂଗ୍ରେସ ମନ୍ତ୍ରିମଣ୍ଡଳରେ ପରିଣତ ହୋଇଯାଇଥିଲେ ।

୧୯୮୦ ମସିହାରେ ରାଜ୍ୟ ବିଧାନସଭା ପାଇଁ ଯେଉଁ ନିର୍ବାଚନ ହୋଇଥିଲା ସେଥିରେ କଂଗ୍ରେସ ଦଳ ଅଭୂତପୂର୍ବ ସଫଳତା ଲାଭ କରିଥିଲା । ୧୯୭୭ ମସିହାରେ କଂଗ୍ରେସ ଦଳକୁ ଲୋକେ ମଇଳାଲୁଗା ଭଳି ଫୋପାଡ଼ି ଦେଇଥିଲେ । ମାତ୍ର ଅଢ଼େଇବର୍ଷର ବ୍ୟବଧାନ ପରେ ସେହି ଦଳକୁ ସେମାନେ ପୁଣି କ୍ଷମତାକୁ ଫେରାଇ ଆଣିଥିଲେ । ସେହି ନିର୍ବାଚନରେ କଂଗ୍ରେସ ଦଳ ୧୧୭ଟି ଆସନ ଲାଭ କରିଥିଲା । ବିଧାନସଭାର ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ଫଳାଫଳ ପ୍ରକାଶ ପାଇବା ପରେ କଂଗ୍ରେସ ଦଳ ପକ୍ଷରୁ ମନ୍ତ୍ରିମଣ୍ଡଳ ଗଢ଼ାଯିବା ନିଶ୍ଚିତ ହୋଇଥିଲା । ମାତ୍ର ମୁଖ୍ୟମନ୍ତ୍ରୀ ପଦକୁ ନେଇ କିଛିଦିନ ପାଇଁ ନାନାପ୍ରକାର କଳ୍ପନାଜଳ୍ପନା ଚାଲିଥିଲା ।

ଶେଷରେ କେନ୍ଦ୍ର ପର୍ଯ୍ୟଟନ ଓ ବେସାମରିକ ବିମାନ ଚଳାଚଳ ଏବଂ ଶ୍ରମ ମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ଏକ ୧୯ଜଣିଆ ମନ୍ତ୍ରିମଣ୍ଡଳ ଗଠନ କରାଯାଇଥିଲା । ସେଥିରେ ଆଠଜଣ କ୍ୟାବିନେଟ ମନ୍ତ୍ରୀ, ୧୦ଜଣ ରାଷ୍ଟ୍ରମନ୍ତ୍ରୀ ଓ ଜଣେ ଉପମନ୍ତ୍ରୀ ଥିଲେ ।

୧୯୬୧ ମସିହାରୁ ୧୯୮୦ ମସିହା ପର୍ଯ୍ୟନ୍ତ ଓଡ଼ିଶା ରାଜନୀତି ଘଟଣା ବହୁଳ ଥିଲା । ଏହି ସମୟ ମଧ୍ୟରେ ରାଜ୍ୟରେ ନଅ ଥର ମନ୍ତ୍ରିମଣ୍ଡଳ ବଦଳିବା ସହିତ ଦୁଇଥର ରାଷ୍ଟ୍ରପତି ଶାସନ ଜାରିହୋଇ ଓଡ଼ିଶା ରାଜନୀତିରେ ଏକ ଅସ୍ଥିର ପରିସ୍ଥିତି ସୃଷ୍ଟି ହୋଇଥିଲା ।

୧୯୮୦ ମସିହାରେ କଂଗ୍ରେସ ଦଳ ବିଧାନସଭାର ୧୧୭ଟି ଆସନ ଲାଭ କରି ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବା ପରେ ରାଜ୍ୟ ପ୍ରଶାସନରେ ସ୍ଥିରତା ଆସିଥିଲା । ସେଥିସହିତ ରାଜ୍ୟର ସାମୂହିକ ବିକାଶର ଭିତ୍ତି ସ୍ଥାପିତ ହୋଇଥିଲା ।

ଜୀବନରେ କଣ୍ଟ୍ରାକ୍ଟରୀ କରି ପ୍ରଚୁର ଅର୍ଥ ରୋଜଗାର କରିଥିବା ବସନ୍ତ କୁମାର ବିଶ୍ୱାଳ, ସେହି ମନ୍ତ୍ରିମଣ୍ଡଳରେ ଯୋଗଦେଇଥିଲେ । ମନ୍ତ୍ରୀ ପଦବୀକୁ ଅର୍ଥ ଉପାର୍ଜନର ଏକ ମାଧ୍ୟମ ଭାବରେ ବ୍ୟବହାର କରିବାକୁ ସେ ଚାହିଁଲେ । ମୁଖ୍ୟମନ୍ତ୍ରୀଙ୍କ ସହିତ ଥିବା ଦୀର୍ଘଦିନର ସମ୍ପର୍କକୁ ସେ ସେଥିପାଇଁ ବିନିଯୋଗ କଲେ ।

ଏତିକିରେ ତାଙ୍କର ଆକାଂକ୍ଷା ପୂର୍ଣ୍ଣ ହେଲା ନାହିଁ । କ୍ରମେ ସେ ଉଭୟ ଶାସକଦଳ ଓ ଶାସନକଳରେ ନିଜର କାୟା ବିସ୍ତାର କରି ନିଜକୁ 'ସୁପର ଚିଫ୍ ମିନିଷ୍ଟର' ଭାବରେ ପ୍ରତିପାଦିତ କରିଥିଲେ ।

ନିଜ ଅଧୀନରେ ଥିବା ବିଭାଗଗୁଡିକ ବ୍ୟତୀତ ଅନ୍ୟ ମନ୍ତ୍ରୀମାନଙ୍କ ବିଭାଗରେ ମଧ୍ୟ ସେ ହସ୍ତକ୍ଷେପ କରିବାକୁ ଲାଗିଲେ । ଦିନକୁ ଦିନ ଶାସନରେ ଶ୍ରୀ ବିଶ୍ୱାଳଙ୍କ ଦୌରାତ୍ମ୍ୟ ବୃଦ୍ଧି ପାଇବାରେ ଲାଗିଲା ।

ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ, ଶ୍ରୀ ବିଶ୍ୱାଳଙ୍କ ଆଚରଣରେ କ୍ଷୁବ୍ଧ ହୋଇଥିଲେ ବି ପ୍ରାରମ୍ଭିକ ଅବସ୍ଥାରେ ତାଙ୍କ ବିରୋଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ନଥିଲେ । ମୁଖ୍ୟମନ୍ତ୍ରୀଙ୍କ କୋହଳ ମନୋଭାବକୁ ଦୁର୍ବଳତା ବୋଲି ବିଚାରି ଶ୍ରୀ ବିଶ୍ୱାଳ ତାଙ୍କର ଆଧିପତ୍ୟ ଜାହିର କରିବାରେ ଲାଗିଲେ ।

ଅଳ୍ପଦିନ ମଧ୍ୟରେ ଶ୍ରୀ ବିଶ୍ୱାଳ ଉଭୟ କଂଗ୍ରେସ ଦଳ ଓ ସରକାରରେ ଏକପ୍ରକାର ସର୍ବେସର୍ବା ହୋଇଗଲେ । ପ୍ରାଥମିକ ଅବସ୍ଥାରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଟଙ୍କା ପଇସା ନେଣଦେଣ ଦାୟିତ୍ୱ ଶ୍ରୀ ବିଶ୍ୱାଳଙ୍କ ଉପରେ ନ୍ୟସ୍ତ କରିଥିଲେ । ଶ୍ରୀ ବିଶ୍ୱାଳ ମୁଖ୍ୟମନ୍ତ୍ରୀଙ୍କର ଅତି ଘନିଷ୍ଠ ହୋଇଥିବାରୁ, ସରକାରୀ ଦଳରୁ ଫାଇଦା ହାସଲ ଉଦ୍ଦେଶ୍ୟରେ ଶିଳ୍ପପତି, ଠିକାଦାର ଓ ବ୍ୟବସାୟୀମାନେ ତାଙ୍କୁ ତୁଷ୍ଟ କରି ସବୁ କାମ କରାଇ ନେଉଥିଲେ । ମୁଖ୍ୟମନ୍ତ୍ରୀ ମଧ୍ୟ ବିନା ଆପତ୍ତିରେ ଶ୍ରୀ ବିଶ୍ୱାଳଙ୍କ ସମସ୍ତ ପ୍ରସ୍ତାବକୁ ଅନୁମୋଦନ କରୁଥିଲେ ।

ଶ୍ରୀ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ନିରଞ୍ଜନ ପଟ୍ଟନାୟକ ଜଳସେଚନ ଓ ଶକ୍ତି ବିଭାଗର ରାଷ୍ଟ୍ରମନ୍ତ୍ରୀ ହୋଇଥିଲେ । ଶ୍ରୀ ବିଶ୍ୱାଳଙ୍କର ବ୍ୟବହାରରେ ଶ୍ରୀ ପଟ୍ଟନାୟକ ଆପତ୍ତି ଉଠାଇବାରୁ ସେମାନଙ୍କ ମଧ୍ୟରେ ତିକ୍ତତା ସୃଷ୍ଟି ହୋଇଥିଲା । ମୁଖ୍ୟମନ୍ତ୍ରୀଙ୍କ ଆତ୍ମୀୟ (ଜ୍ୱାଇଁଙ୍କ ବଡ଼ଭାଇ) ଭାବରେ ଶ୍ରୀ ପଟ୍ଟନାୟକଙ୍କର ମୁଖ୍ୟମନ୍ତ୍ରୀଙ୍କ ପରିବାର ସହିତ ଆତ୍ମୀୟ ସମ୍ପର୍କ ଥିଲା । ପରିସ୍ଥିତି ଚାପରେ ପଡ଼ି ମୁଖ୍ୟମନ୍ତ୍ରୀ ଉଭୟ ଶ୍ରୀ ବିଶ୍ୱାଳ ଓ ଶ୍ରୀ ପଟ୍ଟନାୟକଙ୍କ ବିବାଦକୁ ସହ୍ୟ କରୁଥିଲେ ।

୧୯୮୦ ମସିହା ସେପ୍ଟେମ୍ବର ମାସ ଶେଷ ଭାଗରେ ମହାନଦୀ ଓ ତା'ର ଶାଖାନଦୀଗୁଡ଼ିକରେ ପ୍ରବଳ ବନ୍ୟା ହୋଇଥିଲା । ହୀରାକୁଦ ଜଳଭଣ୍ଡାରରୁ ଆଠ ଲକ୍ଷ କ୍ୟୁସେକ୍ ଜଳ ନିଷ୍କାସନ ହେବା ପରେ ଏବଂ ଜଳଭଣ୍ଡାରର ନିମ୍ନଭାଗରେ କ୍ରମାଗତ ଭାବରେ ଦୁଇଦିନ ଧରି ବର୍ଷା ହେବା ଫଳରେ ଏହି ବନ୍ୟା ସୃଷ୍ଟି ହୋଇଥିଲା । କଟକର ନରାଜ ପାଖରେ ମହାନଦୀରେ ଆଠ ଲକ୍ଷ କ୍ୟୁସେକ୍ ଜଳ ପ୍ରବାହିତ ହେବାର ସାମର୍ଥ୍ୟ ଥିଲାବେଳେ ବର୍ଷା ଫଳରେ ଜଳସ୍ତର ବୃଦ୍ଧି ପାଇ ଏହି ପରିମାଣ ୧୬ ଲକ୍ଷ କ୍ୟୁସେକ୍‌ରେ ପହଞ୍ଚିବାରୁ ବନ୍ୟା ହୋଇଥିଲା । କଟକ ସହରରେ ଥିବା ଐତିହାସିକ ଗଡ଼ଖାଇ ଭିତରେ ବନ୍ୟାଜଳ ପ୍ରବେଶ କରିବା ଦ୍ୱାରା ସହରର ସ୍ଥିତି ପ୍ରତି ବିପଦ ଦେଖାଦେଇଥିଲା । ସହରର ଖାଲୁଆ ଅଞ୍ଚଳରୁ ଜନସାଧାରଣଙ୍କୁ ନିରାପଦ ସ୍ଥାନକୁ ସ୍ଥାନାନ୍ତରିତ କରାଯାଇଥିଲା । ପରିସ୍ଥିତିର ସାମ୍ନା କରିବା ପାଇଁ ଲୋକଙ୍କୁ ରେଡ଼ିଓ ମାଧ୍ୟମରେ ବାରମ୍ବାର ପରାମର୍ଶ ଦିଆଯାଇଥିଲା ।

ଲୋକେ ଆତଙ୍କିତ ଅବସ୍ଥାରେ ପିଲାଛୁଆ ଧରି ଜୀବନ ରକ୍ଷା ପାଇଁ ବାରବାଟୀ ଷ୍ଟାଡିୟମ, ରେଭେନ୍ସା କଲେଜକୁ ଧାଇଁଥିଲେ । କଟକ ସହରର ବାସିନ୍ଦାମାନଙ୍କ ଭିତରେ କୋକୁଆଭୟ ସୃଷ୍ଟି ହୋଇଥିଲା ।

କଟକ ସହରରେ ଥିବା ୧୬୩୩ ମସିହାର ମୋଗଲ ଶାସନ କାଳରେ ନିର୍ମିତ 'ଲାଲ୍‌ବାଗ କୋଠି', ୧୭୧୫ ମସିହାରେ ମୋଗଲ ସାମ୍ରାଜ୍ୟର ଅନ୍ୟତମ କଳାକୃତି ଥିବା 'କଦମ ରସୁଲ', ମୋଗଲ ସମ୍ରାଟ ଆଉରଙ୍ଗଜେବଙ୍କ ଶାସନ ସମୟରେ ନିର୍ମିତ 'ଜୁମା ମସ୍‌ଜିଦ' ପ୍ରତି ବିପଦ ଦେଖାଦେଇଥିଲା ।

ଯେକୌଣସି ସମୟରେ କଟକ ସହର ବନ୍ୟା ପ୍ଲାବିତ ହୋଇଯିବାର ଆଶଙ୍କା ବୃଦ୍ଧି ପାଇଥିଲା । ପରିସ୍ଥିତି ଜିଲ୍ଲା ପ୍ରଶାସକଙ୍କ ଆୟତ୍ତ ବାହାରକୁ ଚାଲିଗଲା । ଲୋକଙ୍କୁ କେବଳ ସାନ୍ତ୍ୱନା ଦେବା ଛଡ଼ା ପ୍ରଶାସନ ହାତରେ ଆଉ କିଛି ଉପାୟ ନଥିଲା ।

ପ୍ରବଳ ବନ୍ୟା ଯୋଗୁଁ କଟକ, ଭୁବନେଶ୍ୱର ମଧ୍ୟରେ ଥିବା ଜାତୀୟ ରାଜପଥରେ ଏକାଧିକ ସ୍ଥାନରେ ଘାଇ ହୋଇଯାଇଥିଲା । ଲୋକେ ଭାଗ୍ୟ ଓ ଭଗବାନଙ୍କ ଉପରେ ଭରସା କରି ଭୟ ଓ ଆତଙ୍କରେ ସମୟ କାଟିଥିଲେ । ଦୀର୍ଘ ବାରଘଣ୍ଟା କାଳ ଅନିଶ୍ଚିତ ଅବସ୍ଥା ଲାଗି ରହିବା ପରେ ବନ୍ୟାଜଳ କମିବାକୁ ଲାଗିଥିଲା । କଟକ ସହର କୌଣସିମତେ ରକ୍ଷା ପାଇଯାଇଥିଲା ।

ବନ୍ୟାର ପ୍ରକୋପ ପ୍ରଶମିତ ହେବାପରେ ଭବିଷ୍ୟତରେ ବନ୍ୟା ଦାଉରୁ କଟକ ସହରକୁ କିପରି ରକ୍ଷା କରାଯାଇ ପାରିବ ସେଥିପାଇଁ ସରକାରୀସ୍ତରରେ ଚର୍ଚ୍ଚା ଆରମ୍ଭ ହେଲା । ହୀରାକୁଦ ନଦୀ ବନ୍ଧ ଯୋଜନା ଦ୍ୱାରା ମହାନଦୀର ବନ୍ୟାକୁ ଯେ ସମ୍ପୂର୍ଣ୍ଣ ରୂପେ ଆୟତ୍ତ କରାଯାଇ ପାରିବ ନାହିଁ, ସେଥିରେ ବିଶେଷଜ୍ଞମାନେ ଏକମତ ହୋଇଥିଲେ ।

କଟକ ସହରକୁ ବନ୍ୟା ପ୍ରକୋପରୁ ରକ୍ଷା କରବା ପାଇଁ ସହରର ଚାରିପାଖରେ ଏକ ସୁରକ୍ଷା ବଳୟ ନିର୍ମାଣର ଆବଶ୍ୟକତାକୁ ଉପଲବ୍ଧି କରାଯାଇ ଯୋଜନା ପ୍ରସ୍ତୁତ ହେଲା । ସେଥିପାଇଁ ଆବଶ୍ୟକୀୟ ଅର୍ଥ ଯୋଗାଇ ଦେବାକୁ କେନ୍ଦ୍ର ସରକାରଙ୍କୁ ଅନୁରୋଧ କରାଗଲା । ସେଥି ସହିତ ୧୧୦ ବର୍ଷର ପୁରୁଣା ମହାନଦୀ ଆନିକଟ ବଦଳରେ ନୂଆ ବ୍ୟାରେଜ ନିର୍ମାଣ ପାଇଁ ମଧ ପ୍ରସ୍ତାବ ଗଲା ।

୧୯୮୦ ମସିହା ଅକ୍ଟୋବର ୧୪ ତାରିଖରେ ୯୦ କୋଟି ଟଙ୍କା ବ୍ୟୟରେ କଟକର ଯୋବ୍ରାଠାରେ ମହାନଦୀ ଉପରେ ଏକ ନୂତନ ବ୍ୟାରେଜ୍ ନିର୍ମାଣ ପାଇଁ ୱାଶିଂଟନ ଠାରେ ବିଶ୍ୱବ୍ୟାଙ୍କ ଓ ଓଡ଼ିଶା ସରକାରଙ୍କ ମଧରେ ଏକ ଚୁକ୍ତିପତ୍ର ସ୍ୱାକ୍ଷରିତ ହୋଇଥିଲା । ରାଜ୍ୟ ସରକାରଙ୍କ ପକ୍ଷରୁ ତଦାନୀନ୍ତନ ଜଳସେଚନ ବିଭାଗର ସଚିବ ବି. ରାମଦୋରାଇ ଏବଂ ମୁଖ୍ୟ ଯନ୍ତ୍ରୀ ସୁରେଶ ଚନ୍ଦ୍ର ତ୍ରିପାଠୀ ଏହି ଚୁକ୍ତି ସ୍ୱାକ୍ଷର କରିଥିଲେ ।

କଟକର ଯୋବ୍ରାଠାରେ ମହାନଦୀ ଉପରେ ବ୍ୟାରେଜ ନିର୍ମାଣ ପାଇଁ ଯେଉଁ ଟେଣ୍ଡର ଆହ୍ୱାନ କରାଯାଇଥିଲା, ସେଥିରେ ରାଜ୍ୟ ସରକାରଙ୍କ ନିଜସ୍ୱ ସଂସ୍ଥା 'ଓଡ଼ିଶା କନଷ୍ଟ୍ରକ୍ସନ କର୍ପୋରେସନ'(ଓସିସି)ର ଟେଣ୍ଡର ସର୍ବନିମ୍ନ ହୋଇଥିଲା । ସେ ଦୃଷ୍ଟିରୁ ବ୍ୟାରେଜ୍ ନିର୍ମାଣ ଦାୟିତ୍ୱ ଓସିସି ଉପରେ ନ୍ୟସ୍ତ କରିବା ପାଇଁ ନୀତିଗତ ଭାବରେ ସ୍ଥିର ହୋଇଥିଲା ।

ମାତ୍ର ସେ କାମର ଦାୟିତ୍ୱ ତାଙ୍କର ମାମୁ ନିତ୍ୟାନନ୍ଦ ସାମନ୍ତରାୟଙ୍କ ଦ୍ୱାରା ଗଠିତ 'ଜେ.ଏ.ସ୍. କମ୍ପାନୀ'କୁ ଦେବାକୁ ପୂର୍ତ୍ତମନ୍ତ୍ରୀ ବସନ୍ତ କୁମାର ବିଶ୍ୱାଳ ଚାପ ସୃଷ୍ଟି କରିଥିଲେ ।

ଶ୍ରୀ ବିଶ୍ୱାଳ ନିର୍ବାଚନରେ ଅଂଶ ଗ୍ରହଣ କରି ମନ୍ତ୍ରୀ ହେବା ପୂର୍ବରୁ ସାମନ୍ତରାୟ ପରିବାର ଦ୍ୱାରା ବହୁବାଟରେ ଅନୁଗୃହୀତ ହୋଇଥିଲେ । ମାତ୍ର ଘଟଣାକ୍ରମେ ସେ ସାମନ୍ତରାୟ ପରିବାର ନାଁରେ ଭିଜିଲାନ୍ସ ମକଦ୍ଦମା କରାଇବା ଠାରୁ ଆରମ୍ଭ କରି ତାଙ୍କୁ ତଳିତଳାନ୍ତ କରିବାକୁ ପଛେଇ ନଥିଲେ ।

ବିଧିରବିଧାନ ଏପରି ଯେ, ଶ୍ରୀ ବିଶ୍ୱାଳ ତାଙ୍କ ଜୀବଦ୍ଦଶାରେ ସାମନ୍ତରାୟ ପରିବାରର ଦାୟାଦ ଦେବାଶିଷ ସାମନ୍ତରାୟଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ନିଜ ନିର୍ବାଚନମଣ୍ଡଳୀ ତିର୍ତ୍ତୋଲରେ ହାରିଯାଇଥିଲେ ।

ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ବ୍ୟାରେଜ ନିର୍ମାଣ ଦାୟିତ୍ୱ ଜେ.ଏସ୍. କଂପାନୀକୁ ଦେବା ପାଇଁ ଜଳସେଚନ ମନ୍ତ୍ରୀ ନିରଞ୍ଜନ ପଟ୍ଟନାୟକଙ୍କୁ କହିଥିଲେ । କେବଳ ଏଇ କାମ କରିବା ପାଇଁ ନୂତନ ଭାବରେ ଗଠିତ ହୋଇଥିବା ଜେ.ଏସ୍. କଂପାନୀର ଆବଶ୍ୟକ ଯନ୍ତ୍ରପାତି, ଜ୍ଞାନକୌଶଳ ଓ ଅଭିଜ୍ଞତା ନଥିବା ଦର୍ଶାଇ, ଜଳସେଚନ ମନ୍ତ୍ରୀ, ବ୍ୟାରେଜ ନିର୍ମାଣ ଦାୟିତ୍ୱ ଜେ.ଏସ୍ କଂପାନୀକୁ ଦିଆଯାଇ ପାରିବ ନାହିଁ ବୋଲି ଯୁକ୍ତି ବାଢ଼ିଥିଲେ ।

ବହୁ ଆଲୋଚନା ପରେ ଏକ ମିଳାମିଶାର ବାଟ ବାହାରିଥିଲା । ଯାହାଫଳରେ ମୂଳ କାମକୁ ଭାଗ ଭାଗ କରି ମହାନଦୀ ବ୍ୟାରେଜ କାମ ଓସିସିକୁ ଓ ବିରୂପା ବ୍ୟାରେଜ କାମ ଜେଏସ୍ କଂପାନୀକୁ ଦିଆଯାଇଥିଲା । ଏହି ଘଟଣା ପରେ ପୂର୍ତ୍ତମନ୍ତ୍ରୀ ଶ୍ରୀ ବିଶ୍ୱାଳ ଓ ଜଳସେଚନ ମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କ ମଧ୍ୟରେ ସମ୍ପର୍କ ତିକ୍ତ ହୋଇଥିଲା ।

୧୯୮୪ ମସିହା ଅକ୍ଟୋବର ୨୯ ତାରିଖ ଦିନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଦୁଇଦିନିଆ ଓଡ଼ିଶା ଗସ୍ତରେ ଆସିଥିଲେ । ଅକ୍ଟୋବର ୩୦ ତାରିଖରେ ଓଡ଼ିଶାରୁ ବିଦାୟ ନେବା ପୂର୍ବରୁ ଶ୍ରୀମତୀ ଗାନ୍ଧୀ ରାଜଧାନୀର ପ୍ୟାରେଡ୍ ପଡ଼ିଆରେ ଏକ ସାଧାରଣ ସଭାରେ ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଇଥିଲେ । ସେଠାରେ ସେ କହିଥିଲେ- "ମୁଁ କ୍ଷମତାରେ ରହେ ବା ନରହେ, ମୋ ଜୀବନର ଶେଷ ରକ୍ତବିନ୍ଦୁ ଦେଶସେବାରେ ନିୟୋଜିତ ହେବ ।"

ଶ୍ରୀମତୀ ଗାନ୍ଧୀ ଦିଲ୍ଲୀ ଫେରିଯିବା ପରଦିନ, ଅକ୍ଟୋବର ୩୧ ତାରିଖରେ ତାଙ୍କର ଦୁଇଜଣ ଶିଖ୍ ନିରାପତ୍ତା ରକ୍ଷୀଙ୍କ ଗୁଳିମାଡ଼ରେ ଶୋଚନୀୟ ଭାବରେ ମୃତ୍ୟୁବରଣ କରିଥିଲେ । ଶ୍ରୀମତୀ ଗାନ୍ଧୀଙ୍କ ଆକସ୍ମିକ ବିୟୋଗରେ ସମଗ୍ର ଦେଶବାସୀ ସ୍ତମ୍ଭୀଭୂତ ହୋଇଯାଇଥିଲେ । ଏହି ମର୍ମନ୍ତୁଦ ଘଟଣା ସାରାଦେଶରେ ସହାନୁଭୂତିର ହାୱା ସୃଷ୍ଟି କରିଥିଲା ।

ଏହି ଘଟଣାର କିଛିମାସ ପରେ ଓଡ଼ିଶା ବିଧାନସଭା ପାଇଁ ନିର୍ବାଚନ ହୋଇଥିଲା । କଂଗ୍ରେସ ଦଳ ଦେଶରେ ସୃଷ୍ଟି ହୋଇଥିବା ସହାନୁଭୂତି ହାୱାରୁ ଫାଇଦା ଉଠାଇଥିଲା । ୧୯୮୦ ମସିହା ନିର୍ବାଚନରେ କଂଗ୍ରେସ ଦଳ ବିଧାନସଭାରେ ଅଧିକାର କରିଥିବା ୧୧୭ଟି ଆସନକୁ ୧୯୮୫ ମସିହାରେ ବଜାୟ ରଖିଥିଲା ।

ମାତ୍ର ୧୯୮୯ ମସିହାରେ ଲୋକସଭା ପାଇଁ ହୋଇଥିବା ନିର୍ବାଚନରେ ଓଡ଼ିଶାରେ କଂଗ୍ରେସ ଦଳର ବିପର୍ଯ୍ୟୟ ଘଟିଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ, ୧୯୮୯ ମସିହା ଡିସେମ୍ବର ମାସ ୭ ତାରିଖ ଦିନ ଏକ ସାମ୍ବାଦିକ ସମ୍ମିଳନୀ ଡକାଇ "ଲୋକସଭା ନିର୍ବାଚନରେ କଂଗ୍ରେସ ଦଳର ବିପର୍ଯ୍ୟୟ ପାଇଁ ନିଜକୁ ଦାୟୀ କରି ନୈତିକତା ଦୃଷ୍ଟିରୁ ଉଭୟ ମୁଖ୍ୟମନ୍ତ୍ରୀ ଓ ପ୍ରଦେଶ କଂଗ୍ରେସ କମିଟି ସଭାପତି ପଦରୁ ଇସ୍ତଫା ଦେଉଛନ୍ତି" ବୋଲି ଘୋଷଣା କରିଥିଲେ ।

ଶ୍ରୀ ପଟ୍ଟନାୟକଙ୍କ ଇସ୍ତଫା ପରେ ପରବର୍ତ୍ତୀ ମୁଖ୍ୟମନ୍ତ୍ରୀ କିଏ ହେବେ ସେ ସମ୍ପର୍କରେ ଦଳର ହାଇକମାଣ୍ଡସ୍ତରରେ ଚର୍ଚ୍ଚା ଚାଲିଲା । ଶେଷରେ ଆଦିବାସୀ ନେତା ହେମାନନ୍ଦ ବିଶ୍ୱାଳଙ୍କ ମୁଣ୍ଡରେ ହାତୀ ସୁନା କଳସ ଢ଼ାଳିଥିଲା ।

ଶ୍ରୀ ବିଶ୍ୱାଳ ୧୯୮୯ ମସିହା ଡିସେମ୍ବର ମାସ ୭ତାରିଖ ଦିନ ରାଜଭବନରେ ଅନୁଷ୍ଠିତ ଏକ ନିରାଡମ୍ବର ଉତ୍ସବରେ ଏକ ପଚିଶଜଣିଆ ମନ୍ତ୍ରିପରିଷଦର ମୁଖ୍ୟ ଭାବରେ ଶପଥ ଗ୍ରହଣ କରିଥିଲେ । ତାଙ୍କ ମନ୍ତ୍ରିପରିଷଦରେ ୮ଜଣ କ୍ୟାବିନେଟ୍ ମନ୍ତ୍ରୀ, ୧୫ଜଣ ରାଷ୍ଟ୍ରମନ୍ତ୍ରୀ ଓ ଦୁଇଜଣ ଉପମନ୍ତ୍ରୀ ଯୋଗଦେଇଥିଲେ ।

ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ କ୍ଷମତାରୁ ହଟାଇବା ପାଇଁ ଯେଉଁମାନେ ଆନ୍ଦୋଳନ କରିଥିଲେ ଏବଂ ଯେଉଁମାନେ ଶ୍ରୀ ପଟ୍ଟନାୟକଙ୍କ ବିରୋଧୀ ଭାବରେ ଜଣାଶୁଣା ଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଏହି ମନ୍ତ୍ରିମଣ୍ଡଳରେ ସାମିଲ୍ କରାଯାଇଥିଲା । ଶ୍ରୀ ପଟ୍ଟନାୟକଙ୍କର ଅନୁଗତ ଭାବରେ ଜଣାଶୁଣା ଯୁଗଳ କିଶୋର ପଟ୍ଟନାୟକ, ଯଦୁନାଥ ଦାସ ମହାପାତ୍ର, ନିରଞ୍ଜନ ପଟ୍ଟନାୟକ, ହରିହର କରଣ, ହବିବୁଲ୍ଲା ଖାଁ ପ୍ରମୁଖଙ୍କୁ ମନ୍ତ୍ରିମଣ୍ଡଳର ବାହାରେ ରଖାଯାଇଥିଲା ।

ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ବଦଳରେ ହେମାନନ୍ଦ ବିଶ୍ୱାଳଙ୍କୁ ମୁଖ୍ୟମନ୍ତ୍ରୀ ଭାବରେ ଗାଦିନସୀନ କରାଇବାରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିବା ପୂର୍ବତନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ କୌଶଳକ୍ରମେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ମୁଖ୍ୟ ହୋଇଯାଇଥିଲେ ।

୧୯୭୬ ମସିହା ଡିସେମ୍ବର ୧୬ ତାରିଖ ଦିନ ଅତ୍ୟନ୍ତ ଦୟନୀୟ ପରିସ୍ଥିତିରେ ମୁଖ୍ୟମନ୍ତ୍ରୀ ପଦରୁ ବିଦାୟ ନେବା ପରେ ଶ୍ରୀମତୀ ଶତପଥୀ ରାଜନୀତିରୁ ଏକପ୍ରକାର ବାନପ୍ରସ୍ଥ ନେଇ ସାରିଥିଲେ । ଏଇ ୧୩ ବର୍ଷ ସମୟ ଭିତରେ ତାଙ୍କୁ ବହୁ କଣ୍ଟକିତ ପଥ ଅତିକ୍ରମ କରିବାକୁ ପଡ଼ିଥିଲା ।

ଏଇ ସମୟ ମଧ୍ୟରେ ସେ କଂଗ୍ରେସ ଦଳ ତ୍ୟାଗ କରି ୧୯୮୪ ମସିହା ମେ ମାସ ୪ ତାରିଖରେ 'ଜାଗ୍ରତ ଓଡ଼ିଶା' ନାମରେ ଏକ ସଂଗଠନ ତିଆରି କରିଥିଲେ । "ରାଜନୀତିରୁ ଉର୍ଦ୍ଧ୍ୱରେ ରହି ଦେଶକୁ ସଂଗଠିତ କରିବା 'ଜାଗ୍ରତ ଓଡ଼ିଶା'ର ଲକ୍ଷ୍ୟ" ବୋଲି ସେ ପ୍ରାଥମିକ ସ୍ତରରେ ଘୋଷଣା କରିଥିଲେ । ମାତ୍ର ପରେ ସେ ଏହାକୁ ଏକ ରାଜନୈତିକ ଦଳରେ ରୂପାନ୍ତରିତ କରିଥିଲେ ।

୧୯୮୫ ମସିହା ରାଜ୍ୟ ବିଧାନସଭା ନିର୍ବାଚନରେ ତାଙ୍କ ସମେତ 'ଜାଗ୍ରତ ଓଡ଼ିଶା'ର ତିନିଜଣ ପ୍ରାର୍ଥୀ ପ୍ରତିଦ୍ୱନ୍ଦ୍ୱିତା କରି ହାରିଯାଇଥିଲେ । ଶ୍ରୀମତୀ ଶତପଥୀଙ୍କର ଅସମ୍ଭବ ସାଂଗଠନିକ ଶକ୍ତି ଥିବାରୁ ସମସ୍ତ ପ୍ରତିକୂଳ ପରିସ୍ଥିତି ଭିତରେ ସେ ଭାଙ୍ଗି ପଡି ନଥିଲେ । ଭବିଷ୍ୟତର ସୁଯୋଗକୁ ଧୈର୍ଯ୍ୟର ସହିତ ସେ ଦୀର୍ଘଦିନ ଧରି ଅପେକ୍ଷା କରିରହିଥିଲେ ।

୧୯୯୦ ମସିହାରେ ରାଜ୍ୟ ବିଧାନସଭା ନିର୍ବାଚନ ବେଳକୁ ଓଡ଼ିଶା ରାଜନୀତିର ପାଣିପାଗ ବଦଳି ଯାଇଥିଲା । ଏକାଧିକ କାରଣରୁ ଲୋକେ କଂଗ୍ରେସ ଦଳ ପ୍ରତି ବିମୁଖ ହୋଇଯାଇଥିଲେ । ଜନତାଦଳର ନେତା ତଥା ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଏପରି ଏକ ସ୍ଥିତିରୁ ଫାଇଦା ଉଠାଇଥିଲେ । ନିର୍ବାଚନରେ ଶ୍ରୀ ପଟ୍ଟନାୟକ ବିଧାନସଭାର ୧୪୭ଟି ଆସନ ମଧ୍ୟରୁ ୧୨୩ ଆସନ ଦଖଲ କରି ଏକ ରେକର୍ଡ ସୃଷ୍ଟି କରିଥିଲେ ।

ଜାତି, ଜାତକରେ ବିଶ୍ୱାସ କରୁନଥିବା ଓ ବ୍ରାହ୍ମଧର୍ମରେ ଦୀକ୍ଷିତ ସ୍ୱର୍ଗତ ଲକ୍ଷ୍ମୀ ନାରାୟଣ ପଟ୍ଟନାୟକଙ୍କ ପୁତ୍ର ବିଜୁ ପଟ୍ଟନାୟକ କେଜାଣି କାହିଁକି ନିଜର ସ୍ୱନକ୍ଷତ୍ର ମାର୍ଚ୍ଚ ୫ ତାରିଖ

ଦିନ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ନେବା ପାଇଁ ମନ ବଳାଇଲେ ତାହା କେହି ବୁଝିପାରିଲେ ନାହିଁ ।

ରାଜଭବନ ପରିସର ମଧ୍ୟରେ ସେଦିନ ଅନୁଷ୍ଠିତ ହୋଇଥିବା ଶପଥ ଉତ୍ସବରେ ଶ୍ରୀ ପଟ୍ଟନାୟକ, ତାଙ୍କ ସମ୍ପର୍କରେ ହିସାବ ରଖୁଥିବା ସମସ୍ତ ବ୍ୟକ୍ତିଙ୍କ ଅଙ୍କ ଭୁଲ ବୋଲି ଆଉଥରେ ପ୍ରମାଣିତ କରିଥିଲେ । ସେଦିନ ଶ୍ରୀ ପଟ୍ଟନାୟକ କେବଳ ନିଜେ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ନେଇ ଅନ୍ୟମାନଙ୍କୁ ହତାଶ କରିଥିଲେ ।

ଶପଥ ଗ୍ରହଣ ଉତ୍ସବ ଶେଷରେ ଯେତେବେଳେ ସାମ୍ବାଦିକମାନେ ସେଥିପ୍ରତି ତାଙ୍କ ଦୃଷ୍ଟି ଆକର୍ଷଣ କଲେ, ଏକ ଖାମଖିଆଲ ଢଙ୍ଗରେ ଶ୍ରୀ ପଟ୍ଟନାୟକ ଉତ୍ତର ଦେଇଥିଲେ, "ମୁଁ କ'ଣ ଯଥେଷ୍ଟ ନୁହେଁ ? ମୋର କୌଣସି ମନ୍ତ୍ରିମଣ୍ଡଳ ଦରକାର ନାହିଁ, ମୁଁ ହେଉଛି ମନ୍ତ୍ରିମଣ୍ଡଳ ।"

୧୯୬୩ ମସିହାରେ ଶ୍ରୀ ପଟ୍ଟନାୟକ ସକ୍ରିୟ ରାଜନୀତିରୁ ବିଦାୟ ନେଇଥିଲେ । ଦୀର୍ଘ ୨୭ ବର୍ଷ ପରେ ପୁଣି ସେ କ୍ଷମତାକୁ ଫେରିଲେ ।

ଏଇ ସତେଇଶ ବର୍ଷର ବ୍ୟବଧାନ ମଧ୍ୟରେ ମହାନଦୀରେ ଯେ ଯଥେଷ୍ଟ ଜଳ ପ୍ରବାହିତ ହୋଇଯାଇଥିଲା, ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ସମୟକୁ ବୋଧହୁଏ ଶ୍ରୀ ପଟ୍ଟନାୟକ ସେଦିଗ ପ୍ରତି ଯଥେଷ୍ଟ ସଚେତନ ନଥିଲେ । ତା' ନ ହୋଇଥିଲେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଶାସନରେ ସହାୟତା କରିବା ପାଇଁ ଦୀର୍ଘ ତିରିଶ ବର୍ଷ ତଳେ ଓଡ଼ିଶାର ଚିଫ୍ ସେକ୍ରେଟାରୀ ଥିବା ବି.ଶିବରମଣଙ୍କୁ ଶ୍ରୀ ପଟ୍ଟନାୟକ ପୁଣି ଆଣି ତାଙ୍କର ସ୍ୱତନ୍ତ୍ର ଅଧିକାରୀ କରି ସେକ୍ରେଟାରୀଏଟ୍‌ର ଉପର ମହଲାରେ ବସାଇ ନଥାନ୍ତେ ।

ଶିବରମଣ ଜଣେ ଦକ୍ଷ ଓ ବୁଦ୍ଧିଆ ଅଫିସର ଭାବରେ ଖ୍ୟାତି ଅର୍ଜନ କରିଥିଲେ । କିନ୍ତୁ ବୟସାଧିକ୍ୟ ଯୋଗୁଁ ସେ ଏକପ୍ରକାର ଅଥର୍ବ ହୋଇଯାଇଥିଲେ ।

ଦୀର୍ଘ ୩୦ ବର୍ଷ ତଳେ ସେ ଚିଫ୍ ସେକ୍ରେଟାରୀ ଥିଲାବେଳର ପ୍ରାୟ ସବୁ ଅଫିସର ଇତିମଧ୍ୟରେ ଅବସର ଗ୍ରହଣ କରିସାରିଥିଲେ । ୧୯୯୦ ମସିହାରେ ରାଜ୍ୟ ପ୍ରଶାସନର ଉଚ୍ଚ ପଦବୀରେ ଥିବା ଅଫିସରମାନଙ୍କ ସହିତ ତାଙ୍କର ବ୍ୟକ୍ତିଗତ ସମ୍ପର୍କ ନଥିଲା । ସେଥିପାଇଁ ଷଷ୍ଠ ଦଶନ୍ଧିର ପ୍ରାରମ୍ଭରେ ସେ ଯେଉଁଳି ତତ୍କାଳୀନ ଯୁବ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଇଚ୍ଛାକୁ ବିନା ବାଧାରେ କାର୍ଯ୍ୟରେ ପରିଣତ କରି ପାରୁଥିଲେ, ୧୯୯୦ ମସିହାରେ ତାହା ଆଉ ତାଙ୍କ ପକ୍ଷରେ ସମ୍ଭବ ହୋଇନଥିଲା ।

ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଭାବରେ ଦାୟିତ୍ୱ ନେବା ପରେ ୧୯୬୩ ବ୍ୟାଚ୍‌ର ଆଇଏଏସ୍ ଅଫିସର ପ୍ୟାରୀମୋହନ ମହାପାତ୍ର ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ସଚିବ ଭାବରେ ଅବସ୍ଥାପିତ ହୋଇଥିଲେ ।

ଶ୍ରୀ ମହାପାତ୍ରଙ୍କର ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରେ ନିଯୁକ୍ତି ସମ୍ପର୍କରେ ସେତେବେଳେ ନାନାକଥା ଶୁଣାଯାଇଥିଲା । ପୂର୍ବରୁ ଶ୍ରୀ ମହାପାତ୍ର ରାଜ୍ୟର ମୁଖ୍ୟ ନିର୍ବାଚନ ଅଧିକାରୀ ଥିବା ସମୟରେ ଜନତା ଦଳକୁ ସୁହାଇଲା ଭଳି କେତେକ ପଦକ୍ଷେପ ନେଇଥିଲେ ।

ନିର୍ବାଚନ ପୂର୍ବରୁ କଂଗ୍ରେସ ଦଳର ପରାଜୟ ସମ୍ପର୍କରେ ଯଥେଷ୍ଟ ସୂଚନା ମିଳିଥିଲା । ସେଥିପାଇଁ ଶ୍ରୀ ମହାପାତ୍ର, କଂଗ୍ରେସ ଦଳର ନେତୃବୃନ୍ଦଙ୍କୁ ବହୁବାଟରେ ଅପଦସ୍ଥ କରି ବିଜୁ ପଟ୍ଟନାୟକଙ୍କର ନିକଟତର ହେବାକୁ ଉଦ୍ୟମ କରିଥିଲେ ।

ଶ୍ରୀ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବା ପରେ ପ୍ୟାରୀମୋହନ ମହାପାତ୍ରଙ୍କୁ ଜଣେ ଦକ୍ଷ ଓ ନିର୍ମଳ ପ୍ରଶାସକ ବୋଲି ବିଚାରି ତାଙ୍କୁ ନିଜର ସେକ୍ରେଟାରୀ କରିଆଣିଥିଲେ । ଏପରି ନିଷ୍ପତ୍ତି ନେବା ପାଇଁ ଅବଶ୍ୟ ମୁଖ୍ୟମନ୍ତ୍ରୀଙ୍କୁ ଜନତା ଦଳର କେତେକ ନେତା ପରାମର୍ଶ ଦେଇଥିଲେ ।

ଅଳ୍ପଦିନ ଭିତରେ ଶ୍ରୀ ମହାପାତ୍ର, ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରେ ନିଜ ଆସ୍ଥାନ ଜମାଇବାକୁ ଲାଗିଲେ । ବୟସାଧିକ୍ୟ ଯୋଗୁଁ ହେଉ କିମ୍ବା ଦୀର୍ଘଦିନର ଅଭ୍ୟାସ ଯୋଗୁଁ ହେଉ, କୌଣସି ବିଷୟରେ ଚିନ୍ତା କରି ଓ ଅନ୍ୟମାନଙ୍କ ସହିତ ପରାମର୍ଶ କରି ନିଷ୍ପତ୍ତି ନେବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କର ଧୈର୍ଯ୍ୟ ରହୁ ନଥିଲା । ତତ୍‌କାଳ ନିଷ୍ପତ୍ତିରେ ସେ ବିଶ୍ୱାସ କରୁଥିଲେ ।

ଚତୁର ପ୍ରଶାସକ ଶ୍ରୀ ମହାପାତ୍ର ମୁଖ୍ୟମନ୍ତ୍ରୀଙ୍କର ଏହି ଦୁର୍ବଳତାକୁ ତାଙ୍କର ଏକ ଅସ୍ତ୍ର ରୂପେ ବ୍ୟବହାର କରିବାକୁ ଚାହିଁଲେ । ସେ ଯେଉଁ କାମ ହାସଲ କରିବାକୁ ଚାହୁଁଥିଲେ, ମୁଖ୍ୟମନ୍ତ୍ରୀଙ୍କ ମିଜାସ ଥଣ୍ଡା ଥିଲାବେଳେ ସେ ସମ୍ପର୍କୀୟ ଫାଇଲ୍ କରାଇନେଉଥିଲେ ।

ମନ୍ତ୍ରିମଣ୍ଡଳରେ ଥିବା ବିଜୟ ମହାପାତ୍ର, ରାମକୃଷ୍ଣ ପଟ୍ଟନାୟକ, ନଳିନୀକାନ୍ତ ମହାନ୍ତି, ଜଗନ୍ନାଥ ମଲ୍ଲିକ, ସୁରେନ୍ଦ୍ର ନାଥ ନାୟକ ପ୍ରମୁଖ ଟାଣୁଆ ମନ୍ତ୍ରୀମାନେ ଏପରି ଏକ ସ୍ଥିତିକୁ ହାଲୁକା ଭାବରେ ଗ୍ରହଣ କରିପାରିନଥିଲେ । ଫଳରେ ଶ୍ରୀ ମହାପାତ୍ରଙ୍କ ସହିତ ସେମାନଙ୍କର ଏକପ୍ରକାର ଶୀତଳ ଯୁଦ୍ଧ ଆରମ୍ଭ ହୋଇଯାଇଥିଲା ।

ମୁଖ୍ୟମନ୍ତ୍ରୀଙ୍କ ସହିତ ଏହି ମନ୍ତ୍ରୀମାନଙ୍କର ଦୀର୍ଘଦିନର ସମ୍ପର୍କ ଥିବାରୁ ଏବଂ ଦଳୀୟ ସଂଗଠନରେ ଶ୍ରୀ ପଟ୍ଟନାୟକ, ସେମାନଙ୍କ ଉପରେ ଅଧିକ ନିର୍ଭରଶୀଳ ହେଉଥିବାରୁ ପ୍ୟାରୀବାବୁ ସେମାନଙ୍କର ବିଶେଷ କ୍ଷତିସାଧନ କରିପାରିନଥିଲେ ।

ଶ୍ରୀ ମହାପାତ୍ର ଜଣେ ଉଚ୍ଚାଭିଳାଷୀ ବ୍ୟକ୍ତି । ତାଙ୍କର ଉଦ୍ଦେଶ୍ୟ ଚରିତାର୍ଥ କରିବା ଉଦ୍ଦେଶ୍ୟରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କର ଅନୁଗତ ନଥିବା ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଭାଗବତ ବେହେରା ଓ ବିଶ୍ୱଭୂଷଣ ହରିଚନ୍ଦନ ପ୍ରମୁଖ ମନ୍ତ୍ରୀମାନଙ୍କ ସହିତ ସେ ସମ୍ପର୍କ ସ୍ଥାପନ କଲେ ।

ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ତାଙ୍କର ଧର୍ମପତ୍ନୀ ଜ୍ଞାନ ପଟ୍ଟନାୟକଙ୍କୁ ଖୁବ୍ ଶ୍ରଦ୍ଧା କରୁଥିଲେ । ତାଙ୍କର କୌଣସି କଥାକୁ ଟାଳି ଦେଇପାରୁ ନଥିଲେ ।

ଶ୍ରୀମତୀ ପଟ୍ଟନାୟକଙ୍କ ଅନୁରୋଧକ୍ରମେ ମୁଖ୍ୟମନ୍ତ୍ରୀ ବେଲାରପୁର ବାଉଁଶ କମ୍ପାନୀର ରୟାଲଟି ବୃଦ୍ଧି କରିବାକୁ ନିଷ୍ପତ୍ତି କରିଥିଲେ । କ୍ୟାବିନେଟ୍‌ର ଅନୁମୋଦନକୁ ଆଖିରେ ରଖି ସେ ଏପରି ନିଷ୍ପତ୍ତି ନେଇଥିଲେ । ଏପରି ନିଷ୍ପତ୍ତି ନେବା ପାଇଁ ତାଙ୍କର ସାମ୍ବିଧାନିକ ଅଧିକାର ରହିଥିଲା ।

ଶ୍ରୀ ମହାପାତ୍ର ମୁଖ୍ୟମନ୍ତ୍ରୀଙ୍କର ଏପରି ଗୋପନୀୟ ନିଷ୍ପତ୍ତି ସମ୍ପର୍କରେ ବିଜୁ ବିରୋଧୀ ମନ୍ତ୍ରୀମାନଙ୍କୁ କ୍ୟାବିନେଟ୍ ବୈଠକ ପୂର୍ବରୁ ଜଣାଇଦେଇଥିଲେ । ଫଳରେ ପ୍ରଥମ କ୍ୟାବିନେଟ୍ ବୈଠକରେ ମୁଖ୍ୟମନ୍ତ୍ରୀଙ୍କ ନିଷ୍ପତ୍ତି ଅନୁମୋଦିତ ହୋଇପାରି ନଥିଲା ।

ଏହି ଘଟଣା ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କୁ ଖୁବ୍ ଆଘାତ ଦେଇଥିଲା । ପରେ ଅବଶ୍ୟ ଶ୍ରୀ ପଟ୍ଟନାୟକଙ୍କ ନାଲିଆଖିକୁ ଡରି କ୍ୟାବିନେଟ୍‌ରେ ତାଙ୍କ ନିଷ୍ପତ୍ତି ଉପରେ ମନ୍ତ୍ରୀମାନେ ମୋହର ଲଗାଇ ଦେଇଥିଲେ ।

ଶ୍ରୀ ମହାପାତ୍ରଙ୍କ ଭୂମିକା ସମ୍ପର୍କରେ କେତେକ ଅନୁଗତ ମନ୍ତ୍ରୀ ମୁଖ୍ୟମନ୍ତ୍ରୀଙ୍କୁ ଜଣାଇବା ପରେ ସେ (ମୁଖ୍ୟମନ୍ତ୍ରୀ) ଶ୍ରୀ ମହାପାତ୍ରଙ୍କୁ ତାଙ୍କୁ ଅଫିସରୁ ହଟାଇ ଉନ୍ନୟନ କମିଶନର ଭାବରେ ଅବସ୍ଥାପିତ କରିଦେଇଥିଲେ । ଶ୍ରୀ ମହାପାତ୍ର ଯେ ଆଉ ବିଶ୍ୱସନୀୟ ନୁହନ୍ତି, ସେ କଥା ବୁଝିବାକୁ ବିଜୁ ପଟ୍ଟନାୟକଙ୍କ ଭଳି ଅଭିଜ୍ଞ ବ୍ୟକ୍ତିଙ୍କୁ ବେଶୀ ସମୟ ଲାଗିନଥିଲା ।

ସେଥିପାଇଁ ତତ୍‌କାଳୀନ ମୁଖ୍ୟ ଶାସନ ସଚିବ ରବି ନାରାୟଣ ଦାସଙ୍କ ଅବସର ଗ୍ରହଣ ପରେ ମୁଖ୍ୟମନ୍ତ୍ରୀ, ଶ୍ରୀ ମହାପାତ୍ରଙ୍କୁ ସେ ଆସନରେ ନବସାଇ ଶ୍ରୀ ଦାସଙ୍କ କାର୍ଯ୍ୟକାଳକୁ ଛଅମାସ ପାଇଁ ବୃଦ୍ଧି କରିଦେଇଥିଲେ ।

ବିଜୁ ପଟ୍ଟନାୟକଙ୍କର ମହିଳାମାନଙ୍କ ପ୍ରତି ଏକ ଅହେତୁକ ଦୁର୍ବଳତା ଥିଲା । ଜୀବନର ଶେଷ ପର୍ଯ୍ୟନ୍ତ ଏହି ଦୁର୍ବଳତା ତାଙ୍କ ବ୍ୟକ୍ତିତ୍ୱର ଏକ ଅଙ୍ଗ ଭାବରେ ରହିଯାଇଥିଲା । ଅନେକ ମହିଳା ଏହି ଦୁର୍ବଳତାର ସୁଯୋଗ ନେଇ ଅନାୟାସରେ ମୁଖ୍ୟମନ୍ତ୍ରୀଙ୍କ ଠାରୁ ବହୁ ଅବାଞ୍ଛିତ ସୁବିଧା ହାସଲ କରିଥିଲେ ।

ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କୁ ଯେତେବେଳେ ସାମ୍ବାଦିକମାନେ ଏ ସମ୍ପର୍କରେ ପ୍ରଶ୍ନ କରିଥିଲେ, ସେ ସ୍ୱଭାବ ସୁଲଭ ଢ଼ଙ୍ଗରେ ଉତ୍ତର ଦେଇଥିଲେ, "ହଁ, ମୁଁ ମହିଳାମାନଙ୍କୁ ଭଲପାଏ । ସେଥିରେ ଅସୁବିଧା କ'ଣ ଅଛି ? ତମେ ମହିଳାମାନଙ୍କୁ ପଚାରୁନ, ସେମାନେ କାହିଁକି ମୋତେ ଏତେ ଭଲ ପାଉଛନ୍ତି ?" ଏ ସମ୍ପର୍କରେ କୁଆଡ଼େ ଥରେ ତାଙ୍କ ଧର୍ମପତ୍ନୀ ଜ୍ଞାନ ପଟ୍ଟନାୟକ ଶ୍ରୀ ପଟ୍ଟନାୟକଙ୍କ ଦୃଷ୍ଟି ଆକର୍ଷଣ କରିଥିବାରୁ ଶ୍ରୀ ପଟ୍ଟନାୟକ ପରିହାସ ଛଳରେ କହିଥିଲେ, "ମୁଁ ମହିଳାମାନଙ୍କୁ ଭଲ ନପାଉଥିଲେ ତମକୁ କିପରି ବିଭା ହେଲି ।"

ସେତେବେଳେ ଦିନ ମଜୁରିଆଙ୍କ ପାଇଁ ସର୍ବନିମ୍ନ ମଜୁରି ଏଗାର ଟଙ୍କା ଥିଲା । କେତେକ ସ୍ଥଳରେ ଏହି ମଜୁରି ମଧ୍ୟ ସେମାନଙ୍କୁ ମିଳୁନଥିଲା । ଏପରି ଏକ ସ୍ଥିତିରେ ବ୍ୟଥିତ ହୋଇ

ରାଜ୍ୟରେ ପ୍ରଚଳିତ ସର୍ବନିମ୍ନ ମଜୁରି ବଢ଼ାଇବା ପାଇଁ ସେ ନିଷ୍ପତ୍ତି କଲେ । ରାଜ୍ୟ ବିଧାନସଭାର ଅଧିବେଶନ ଚାଲିଥିଲା ବେଳେ ମଜୁରି ବୃଦ୍ଧି ପାଇଁ ସରକାରୀ କିମ୍ବା ବିରୋଧୀ ଦଳରୁ କୌଣସି ଦାବି ହୋଇ ନଥିଲାବେଳେ ମୁଖ୍ୟମନ୍ତ୍ରୀ, ସର୍ବନିମ୍ନ ମଜୁରି ୧୧ଟଙ୍କାରୁ ୨୫ ଟଙ୍କାକୁ ବୃଦ୍ଧି କରାଗଲା ବୋଲି ଏକତରଫା ଭାବରେ ଗୃହରେ ଘୋଷଣା କରିଦେଲେ । ଏଥିରେ ଅନ୍ୟ ମନ୍ତ୍ରୀମାନଙ୍କ ସମେତ ସରକାରୀ ଦଳର ସଦସ୍ୟମାନେ ହତବାକ୍ ହୋଇଯାଇଥିଲେ ।

ବିଜୁ ପଟ୍ଟନାୟକଙ୍କ ଦ୍ୱିତୀୟଥର ମୁଖ୍ୟମନ୍ତ୍ରିତ୍ୱ ସମୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଥିଲା ଓଡ଼ିଶାରେ ଜିଲ୍ଲା ସଂଖ୍ୟା ବୃଦ୍ଧି । ସେ ଓଡ଼ିଶାର ୧୩ଟି ଜିଲ୍ଲାକୁ ବୃଦ୍ଧି କରି ୩୦ ଜିଲ୍ଲାରେ ପରିଣତ କରିଥିଲେ ।

୧୯୯୦ ମସିହା ନିର୍ବାଚନ ପୂର୍ବରୁ ଓଡ଼ିଶାରେ ଜନତା ଦଳ, ସିପିଆଇ ଓ ସିପିଆଇଏମ୍ ସହିତ ଏକ ମେଣ୍ଟଗଠନ କରିବା ଦ୍ୱାରା ଦଳକୁ ଅଧିକ ସଫଳତା ମିଳିଥିଲା । କିନ୍ତୁ ୧୯୯୫ ମସିହା ନିର୍ବାଚନ ବେଳକୁ ସେହି ମେଣ୍ଟ ଭାଙ୍ଗି ଯାଇଥିଲା ।

ନିର୍ବାଚନ ପୂର୍ବରୁ ସିପିଆଇ ନେତା ଇନ୍ଦ୍ରଜିତ ଗୁପ୍ତ ଭୁବନେଶ୍ୱର ଆସିଥିବା ସମୟରେ ତାଙ୍କୁ ରାତ୍ରିଭୋଜନକୁ ଆମନ୍ତ୍ରଣ କରି ତାଙ୍କ ସାଙ୍ଗରେ ନିର୍ବାଚନ ମେଣ୍ଟ ସମ୍ପର୍କରେ ଆଲୋଚନା କରିବା ପାଇଁ ଦଳର କେତେକ ସଦସ୍ୟ ଜନତା ଦଳ ସୁପ୍ରିମୋ ବିଜୁ ପଟ୍ଟନାୟକଙ୍କୁ ଅନୁରୋଧ କରିଥିଲେ । ଶ୍ରୀ ପଟ୍ଟନାୟକ ମଧ୍ୟ ସେଥିରେ ସହମତ ହୋଇଥିଲେ ।

ମାତ୍ର ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଅଶୋକ ଦାସ ଓ ଅନ୍ୟ ଚାଟୁକାରମାନେ ଶ୍ରୀ ପଟ୍ଟନାୟକଙ୍କୁ ସେଥିରୁ ନିବର୍ତ୍ତାଇ ଦେଇଥିଲେ । ଏଥିପାଇଁ ଶ୍ରୀ ଦାସ କଂଗ୍ରେସ ଦଳ ଦ୍ୱାରା ଆର୍ଥିକ ଦୃଷ୍ଟିରୁ ଲାଭବାନ ହୋଇଥିଲେ । ଜନତାଦଳ ସହିତ ବାମପନ୍ଥୀମାନଙ୍କ ବୁଝାମଣା ନହେବା ଦିଗରେ ବରିଷ୍ଠ କଂଗ୍ରେସ ନେତା ନିରଞ୍ଜନ ପଟ୍ଟନାୟକ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

୧୯୯୪ ମସିହା ଡିସେମ୍ବର ମାସରେ ଶାସନ କ୍ଷମତାରେ ଥିବା ଜନତା ଦଳ ପକ୍ଷରୁ ରାଜଧାନୀ ଭୁବନେଶ୍ୱରରେ ଏକ ବିଶାଳ ର୍‍ୟାଲିର ଆୟୋଜନ କରାଯାଇଥିଲା । ସେଥିରେ ଏନ୍.ଟି. ରାମାରାଓ, ଲାଲୁ ପ୍ରସାଦ ଯାଦବ, ରାମକୃଷ୍ଣ ହେଗଡେ, ଏଚ୍.ଡି. ଦେବେଗୌଡା ପ୍ରମୁଖ ଦେଶର ବରିଷ୍ଠ ଅଣକଂଗ୍ରେସ ନେତାମାନେ ଯୋଗଦେଇଥିଲେ ।

ଏହି ର୍‍ୟାଲି ଫଳରେ ଜନତା ଦଳ ସପକ୍ଷରେ ଏକ ହାୱା ସୃଷ୍ଟି ହୋଇଥିଲା । ତା'ର ଅଳ୍ପଦିନ ମଧ୍ୟରେ ନିର୍ବାଚନ ହୋଇଥିଲେ ଜନତା ଦଳର ବିଜୟ ସୁନିଶ୍ଚିତ ଥିଲା । ମାତ୍ର ବିଜୁ ପଟ୍ଟନାୟକ ବିଧାନସଭା ନିର୍ବାଚନକୁ ଦୁଇମାସ ପାଇଁ ଘୁଞ୍ଚାଇ ଦେବାକୁ ନିଷ୍ପତ୍ତି କରି ସେ ସୁଯୋଗକୁ ହାତଛଡ଼ା କରିଦେଇଥିଲେ । ଶ୍ରୀ ପଟ୍ଟନାୟକ ସେପରି ନିଷ୍ପତ୍ତି ନେବା ପଛରେ ତାଙ୍କ ପ୍ରମୁଖ ସଚିବ ପ୍ୟାରୀମୋହନ ମହାପାତ୍ରଙ୍କର ହାତ ଥିବା କଥା ସେତେବେଳେ ଦଳୀୟ ସୂତ୍ରରୁ ଜଣାପଡିଥିଲା ।

ଜନତା ଦଳ ଯେ ଦ୍ୱିତୀୟ ଥର ପାଇଁ କ୍ଷମତାକୁ ଆସିବ ନାହିଁ, ତା'ର ସୂଚନା ବିଜୁ ପଟ୍ଟନାୟକ ବହୁପୂର୍ବରୁ ପାଇସାରିଥିଲେ । କିନ୍ତୁ ଦଳକୁ ସଜାଡ଼ି ପୁଣି ତାକୁ ଠିକ୍ ରାସ୍ତାକୁ ଆଣିବା ପାଇଁ ତାଙ୍କର ଆଉ ଶକ୍ତି କିମ୍ବା ସାମର୍ଥ୍ୟ ନଥିଲା । ପରାଜୟକୁ ସ୍ୱୀକାର କରିବା ବ୍ୟତୀତ ବିଜୁ ପଟ୍ଟନାୟକଙ୍କ ଭଳି ବିରାଟ ବ୍ୟକ୍ତିତ୍ୱ ପାଖରେ ଆଉ କିଛି ଉପାୟ ନଥିଲା । ଏହି ନିର୍ବାଚନ ପରେ ଶ୍ରୀ ପଟ୍ଟନାୟକ ଏକପ୍ରକାର ଭାଙ୍ଗି ପଡ଼ିଥିଲେ ।

୧୯୯୫ ମସିହାର ନିର୍ବାଚନ, ଜନତା ଦଳ ପାଇଁ ଶେଷ ନିର୍ବାଚନ ଥିଲା । ଏହାପରେ ଦଳ ବହୁ ଭାଗରେ ବିଭାଜିତ ହୋଇଯାଇଥିଲା । ୧୯୯୦ ମସିହାରୁ ୧୯୯୫ ମସିହା ପର୍ଯ୍ୟନ୍ତ ଦୀର୍ଘ ୫ ବର୍ଷ କାଳ ନିରବଚ୍ଛିନ୍ନ ଭାବରେ କ୍ଷମତାରେ ରହିଥିଲେ ମଧ୍ୟ ବିଜୁ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳ ଜନସାଧାରଣଙ୍କୁ ବିଶେଷ ପ୍ରଭାବିତ କରିପାରିନଥିଲା ।

ରାଉରକେଲା ଷ୍ଟିଲ ପ୍ଲାଣ୍ଟ ପ୍ରତିଷ୍ଠା କରିବାରେ ବିଜୁ ପଟ୍ଟନାୟକ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଦୀର୍ଘଦିନର ବ୍ୟବଧାନ ପରେ ପୁଣି କ୍ଷମତାକୁ ଆସିବା ପରେ ରାଜ୍ୟରେ ଆଉ ଏକ ଷ୍ଟିଲ ପ୍ଲାଣ୍ଟ ପ୍ରତିଷ୍ଠା କରିବା ନିଶା ତାଙ୍କ ମୁଣ୍ଡରେ ପଶିଲା ।

ସେଥିପାଇଁ ପ୍ରବାସୀ ଭାରତୀୟ ଶିଳ୍ପପତି ସ୍ୱରାଜ ପଲଙ୍କ ସହିତ ଯୋଗାଯୋଗ କରି ମୁଖ୍ୟମନ୍ତ୍ରୀ ତାଙ୍କୁ ଓଡ଼ିଶା ଆଣିଥିଲେ । ଜର୍ମାନୀରେ ଅବସ୍ଥାପିତ ବିଶିଷ୍ଟ ଓଡ଼ିଆ ଇଞ୍ଜିନିୟର ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ ଏହି କାର୍ଯ୍ୟରେ ମୁଖ୍ୟମନ୍ତ୍ରୀଙ୍କୁ ସହାୟତା କରିଥିଲେ ।

ରାଜ୍ୟରେ ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠା ଉଦ୍ଦେଶ୍ୟରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ, ଟାଟା କଂପାନୀର ରତନ ଟାଟାଙ୍କ ଠାରୁ ଆରମ୍ଭ କରି ରୀତା ସିଂ, ଗଣପତି କଂପାନୀ, ଭୂଷଣ ଷ୍ଟିଲ ଓ ଅନ୍ୟାନ୍ୟ କମ୍ପାନୀ ସହିତ ସଂପର୍କ ସ୍ଥାପନ କରିଥିଲେ । ମାତ୍ର ତାଙ୍କ ସମୟରେ ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠା ସମ୍ଭବ ହୋଇନଥିଲା ।

ରାଜ୍ୟ ସରକାରୀ କର୍ମଚାରୀମାନେ ବର୍ଷରେ ଥରେ ରାଜ୍ୟ ଭିତରେ ସପରିବାର ବୁଲିଯିବା ପାଇଁ ଏଲ୍.ଟି.ସି ପାଇବାର ଏକ ବ୍ୟବସ୍ଥା ବହୁ ଦିନୁ ଚଳିଆସୁଥିଲା । ଅଧିକାଂଶ କ୍ଷେତ୍ରରେ କର୍ମଚାରୀମାନେ କୁଆଡ଼େ ନଯାଇ ଫଲସ୍ ବିଲ୍ କରି ଏ ବାବଦରେ ଦି' ପଇସା ପାଉଥିଲେ । ସେହିଭଳି ଉପାର୍ଜିତ ଛୁଟି (ଇ.ଏଲ୍.)କୁ ସରକାରଙ୍କୁ ବିକି ସେ ବାବଦରେ ମଧ୍ୟ ସେମାନଙ୍କର କିଛି ରୋଜଗାର ହେଉଥିଲା ।

ଖର୍ଚ୍ଚକାଟ ନାଁରେ ମୁଖ୍ୟମନ୍ତ୍ରୀ ଏ ଦୁଇଟି ରୋଜଗାର ପନ୍ଥାକୁ ବନ୍ଦ କରି ଦେବାରୁ କର୍ମଚାରୀମାନଙ୍କ ମନରେ ଘୋର ଅସନ୍ତୋଷ ସୃଷ୍ଟି ହୋଇଥିଲା । ଏହି ଅସନ୍ତୋଷ କ୍ରମେ ଏକ ବିଦ୍ରୋହର ରୂପ ନେଇଥିଲା । ୧୯୯୩ ମସିହା ମେ ମାସ ପାଞ୍ଚ ତାରିଖ ଦିନ କର୍ମଚାରୀମାନେ ସଂଘବଦ୍ଧ ହୋଇ ସଚିବାଳୟ ମଧ୍ୟରେ ଲଙ୍କାକାଣ୍ଡ ଘଟାଇଥିଲେ । ସେମାନଙ୍କ ଆକ୍ରମଣରୁ ମୁଖ୍ୟମନ୍ତ୍ରୀ କିମ୍ବା ମୁଖ୍ୟ ଶାସନ ସଚିବ ମଧ୍ୟ ବାଦ୍ ପଡ଼ି ନଥିଲେ ।

ମୁଖ୍ୟ ଶାସନ ସଚିବ ରବିନାରାୟଣ ଦାସ କର୍ମଚାରୀମାନଙ୍କର ମୁଖ୍ୟ ଶରବ୍ୟ ହୋଇଥିଲେ । ଶ୍ରୀ ଦାସଙ୍କ ପରାମର୍ଶକ୍ରମେ ମୁଖ୍ୟମନ୍ତ୍ରୀ କର୍ମଚାରୀ ବିରୋଧୀ ନିଷ୍ପତ୍ତି ନେଇଥିଲେ ବୋଲି ସେମାନଙ୍କର ହୃଦବୋଧ ହୋଇଥିଲା । ସେଥିପାଇଁ ସେମାନେ ମୁଖ୍ୟ ଶାସନ ସଚିବଙ୍କ ରୁମ୍ ଭିତରେ ପଶି ଆସବାବପତ୍ର ଭଙ୍ଗାରୁଜା କରିବା ସହିତ ତାଙ୍କ ଉପରେ ଆକ୍ରମଣ କରିଥିଲେ ।

ସୌଭାଗ୍ୟକ୍ରମେ ସେମାନଙ୍କ ଆକ୍ରମଣରୁ ଶ୍ରୀ ଦାସଙ୍କ ଜୀବନ ରକ୍ଷା ହୋଇଯାଇଥିଲେ ହେଁ ତାଙ୍କ ମୁଣ୍ଡରେ ଓ ଅନ୍ୟାନ୍ୟ ସ୍ଥାନରେ ଗୁରୁତର ଆଘାତ ଲାଗିଥିଲା । ରକ୍ତାକ୍ତ ଅବସ୍ଥାରେ ସେ ମେଡିକାଲ ଯାଇଥିଲେ । ଅନ୍ୟାନ୍ୟ ମନ୍ତ୍ରୀ ଓ ସଚିବମାନେ କିଏ କୁଆଡ଼େ ଲୁଚିଥିଲେ ।

ଦୀର୍ଘ ଦୁଇଘଣ୍ଟାରୁ ଅଧିକ କାଳ ସଚିବାଳୟରେ ଅରାଜକତା ଚାଲିଥିଲା ଏବଂ ସେଥିରେ ବହୁ ସରକାରୀ ସମ୍ପତ୍ତି ନଷ୍ଟ ହେଲା । ତା' ସତ୍ତ୍ୱେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ କାହାରି ବିରୁଦ୍ଧରେ କୌଣସି ପ୍ରତିହିଂସାମୂଳକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିନଥିଲେ ।

ଓଡ଼ିଶା ରାଜନୀତିରେ ଶ୍ରୀକାନ୍ତ ଜେନା ଜଣେ 'ଭିଲିଆନ' ବୋଲି କେତେକ ଲୋକ କୁହନ୍ତି । ରାଜନୀତିରେ ହଟଚମଟ କରିବାରେ ସେ ଖୁବ୍ ଧୁରନ୍ଧର । ଛାତ୍ର ଜୀବନ ପରେ ଦିଗହରା ହୋଇଥିବା ଶ୍ରୀ ଜେନା, ବିଜୁ ପଟ୍ଟନାୟକଙ୍କ ଦୟା ଓ ଆଶୀର୍ବାଦରୁ ରାଜନୀତିକୁ ଆସି ମଣିଷ ହୋଇଥିଲେ ହେଁ, ସାଧାରଣରେ ଶ୍ରୀ ପଟ୍ଟନାୟକଙ୍କ ବିରୁଦ୍ଧରେ ବିଷୋଦ୍‌ଗାର କରିବାକୁ କେବେ ପଛାଉନଥିଲେ ।

ଏପରିକି ବିଭିନ୍ନ ସମୟରେ ସାମ୍ବାଦିକ ସମ୍ମିଳନୀମାନ ଡକାଇ ବିଜୁ ପଟ୍ଟନାୟକ 'ଦୁର୍ନୀତିର ପାହାଡ଼' ବୋଲି କହିବାକୁ ସେ ଦ୍ୱିଧାବୋଧ କରୁନଥିଲେ । ଏସବୁ ସତ୍ତ୍ୱେ ଶ୍ରୀ ପଟ୍ଟନାୟକ ତାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନକରି 'ଅବୁଝା ପୁଅ' ଭାବରେ ତାଙ୍କୁ କ୍ଷମା ପ୍ରଦାନ କରିଥିଲେ ।

କିନ୍ତୁ 'କୃତଘ୍ନତାର କୌଣସି ସୀମା ନଥାଏ' ବୋଲି ଯାହା କୁହାଯାଏ ଶ୍ରୀ ଜେନା ତା'ର ପ୍ରତୀକ ଥିଲେ । ଅତୀତର ସମସ୍ତ ସାହାଯ୍ୟ, ସହଯୋଗ ଓ ସହାନୁଭୂତିକୁ ଭୁଲିଯାଇ ଶ୍ରୀ ପଟ୍ଟନାୟକଙ୍କୁ ଅଡୁଆରେ ପକାଇବା ପାଇଁ ଶ୍ରୀ ଜେନା ଗୋଟିଏ ଯୋଜନା ପ୍ରସ୍ତୁତ କରିଥିଲେ । କେନ୍ଦ୍ରରେ ଶ୍ରୀ ପଟ୍ଟନାୟକଙ୍କ ପତିଆରା କ୍ଷୁଣ୍ଣ କରି ସାଧାରଣରେ ତାଙ୍କୁ ଅପଦସ୍ଥ କରିବା ପାଇଁ ଷଡ଼ଯନ୍ତ୍ର ଚାଲିଲା । ମିଥ୍ୟା ଅଭିଯୋଗ ଆରୋପ କରାଯାଇ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଭିଜିଲାନ୍ସ ମକଦ୍ଦମା ହୋଇଥିଲା ।

ଶ୍ରୀକାନ୍ତ ଜେନାଙ୍କ ସମସ୍ତ ଷଡ଼ଯନ୍ତ୍ର ସତ୍ତ୍ୱେ ଜାତୀୟ ରାଜନୀତିରେ ତାଙ୍କର ମର୍ଯ୍ୟାଦା କ୍ଷୁର୍ଣ୍ଣ ହୋଇ ନଥିଲା । ଶ୍ରୀ ପଟ୍ଟନାୟକଙ୍କ ବିରୁଦ୍ଧରେ ରାଜ୍ୟ ସରକାର ଦାୟର କରିଥିବା

# ଆମେରିକା ପରିଦର୍ଶନ




ଆମେରିକା ଓଡ଼ିଆ ସୋସାଇଟିର ୩୯ତମ ଅଧିବେଶନରେ ଉଦ୍‌ବୋଧନ



ନ୍ୟୁୟର୍କ ସହରର ଗ୍ରୀନ୍‌ପାର୍କ ନିକଟରେ ଥିବା ପ୍ରସିଦ୍ଧ 'ବୁଲ୍' ପାଖରେ



ଜର୍ଜ ୱାଶିଙ୍ଗ୍‌ଟନ୍‌ଙ୍କ ପ୍ରତିମୂର୍ତ୍ତି ସାମ୍ନାରେ




ସାନ୍‌ଫ୍ରାନ୍ସିସ୍‌କୋ ସହରର ଫାଇନ୍ ଆର୍ଟ୍ସ ବିଲ୍‌ଡିଂର ପ୍ରବେଶଦ୍ୱାର ସାମ୍ନାରେ



ହ୍ୱାଇଟ୍ ହାଉସ୍‌ର ପ୍ରବେଶ ଦ୍ୱାର ସାମନାରେ

ସାନ୍‌ଫ୍ରାନ୍ସିସ୍‌କୋ ସହରର ୟୁନିଅନ ସ୍କୋୟାର୍ ସାମନାରେ



ସାନ୍‌ଫ୍ରାନ୍‌ସିସ୍‌କୋ ସିଭିକ୍ ସେଣ୍ଟର ପାଖରେ



ୱାଶିଙ୍ଗଟନ୍ ସ୍ମାରକୀ ଷ୍ଟାଚ୍ୟୁ ସାମ୍ନାରେ

# ଆମେରିକାରେ ଆତ୍ମୀୟ ସ୍ୱଜନ



ସାନ୍‌ଜୋସେରେ ବୈଜ୍ଞାନିକ ଡକ୍ଟର ଗୌରୀ ଦାସଙ୍କ ବଗିଚାରେ



ଦେଲାୱାର ୱାଟର୍ କ୍ୟାମ୍ପ୍ ଟୁରିଷ୍ଟ ସେଣ୍ଟର ନିକଟରରେ ଡକ୍ଟର ବୀରେନ୍ଦ୍ର ପଟ୍ଟନାୟକଙ୍କ ସହିତ




ଓଣ୍ଟାରିଓ ସହରର ମାର୍କେଟ୍‌ରେ ବୈଜ୍ଞାନିକ ଡକ୍ଟର ଆଶୁତୋଷ ଦତ୍ତଙ୍କ ପରିବାର ସହିତ



ଆଲ୍‌ବାମାରେ ପ୍ରଫେସର ଦିଗମ୍ବର ମିଶ୍ରଙ୍କ ପରିବାର ସହିତ



ଆଥେନ୍ସ ସହରରେ ଥିବା ଶ୍ରୀଜଗନ୍ନାଥ ମନ୍ଦିର ପରିସରରେ ପ୍ରଫେସର ଦିଗମ୍ବର ମିଶ୍ର ପ୍ରମୁଖଙ୍କ ସହିତ



ଟରଣ୍ଟୋ ସହରରେ ବନ୍ଧୁ ଧୀରେନ୍ ପଟ୍ଟନାୟକ ଓ ଡକ୍ଟର ମିନତୀ ପଟ୍ଟନାୟକଙ୍କ ସହିତ ଅନ୍ତରଙ୍ଗ ମୁହୂର୍ତ୍ତରେ




ବର୍ମିଙ୍ଗ୍‌ହାମ ସହରରେ ସିଭିଲ ରାଇଟ୍ସ ଇନ୍‌ଷ୍ଟିଚ୍ୟୁଟ୍ ସମ୍ମୁଖରେ ପ୍ରଫେସର ଦିଗମ୍ବର ମିଶ୍ରଙ୍କ ସହିତ



ବଲ୍ଟିମୋର୍ ସହରରେ ଥିବା ହିନ୍ଦୁ ମନ୍ଦିରରେ ଡକ୍ଟର ନରେଶ ଦାସ ଓ ପରିବାରବର୍ଗଙ୍କ ସହିତ

ଭିଜିଲାନ୍ସ ମକଦ୍ଦମା ରାଜନୈତିକ ପ୍ରତିହିଂସାର ଏକ ଅଙ୍ଗ ବୋଲି ରାଜ୍ୟବାସୀ ବୁଝିପାରିଥିଲେ । ଶେଷ ପର୍ଯ୍ୟନ୍ତ ଶ୍ରୀ ପଟ୍ଟନାୟକଙ୍କର ପ୍ରତି ସେମାନଙ୍କର ଶ୍ରଦ୍ଧା ଓ ସମ୍ମାନ ଅକ୍ଷୁର୍ଣ୍ଣ ରହିଥିଲା ।

ଶ୍ରୀ ପଟ୍ଟନାୟକ ଏହି ମକଦ୍ଦମା ବିରୁଦ୍ଧରେ ଓଡ଼ିଶା ହାଇକୋର୍ଟରେ ଅପିଲ୍ କରିଥିଲେ ଏବଂ ସେ ମକଦ୍ଦମା ପରିଚାଳନା କରିବା ପାଇଁ ସୁପ୍ରିମକୋର୍ଟର ବରିଷ୍ଠ ଆଡ଼ଭୋକେଟ୍ ଶ୍ରୀ ପି.ଏନ୍. ଲେଖୀଙ୍କୁ ନିଯୁକ୍ତ କରିଥିଲେ ।

ଶ୍ରୀ ଲେଖୀ ଦିଲ୍ଲୀରୁ କଟକ ଯାତାୟାତ ଖର୍ଚ୍ଚ ବ୍ୟତୀତ ମକଦ୍ଦମା ଲଢ଼ିବା ପାଇଁ କୋର୍ଟରେ ହାଜର ହେଲେ ଦିନକୁ ପଚାଶ ହଜାର ଟଙ୍କା ଫିସ୍ ନେଉଥିଲେ । ଗୋଟିଏ ଦୁଇଟି ତାରିଖରେ ଆଡ଼ଭୋକେଟ୍ ଶ୍ରୀ ଲେଖୀଙ୍କର କେତେକ ମନ୍ତବ୍ୟରେ ଓଡ଼ିଶା ହାଇକୋର୍ଟର ଏକ ଡିଭିଜନ ବେଞ୍ଚ କ୍ଷୁର୍ଣ୍ଣ ହୋଇଥିବା ସମ୍ପର୍କରେ ଶ୍ରୀ ପଟ୍ଟନାୟକଙ୍କର ହୃଦ୍‌ବୋଧ ହେବାରୁ ସେ ଆଉ ଶ୍ରୀ ଲେଖୀଙ୍କୁ ମକଦ୍ଦମା ପରିଚାଳନା ଦାୟିତ୍ୱ ନଦେଇ ସୁପ୍ରିମକୋର୍ଟର ଅନ୍ୟତମ ବରିଷ୍ଠ ଆଡ୍‌ଭୋକେଟ୍ ଜି. ରାମସ୍ୱାମୀଙ୍କୁ ନିଜ ସପକ୍ଷରେ ଲଢ଼ିବା ପାଇଁ ନିଯୁକ୍ତ କରିଥିଲେ ।

ଶ୍ରୀ ରାମସ୍ୱାମୀ ଜଣେ କର୍ତ୍ତବ୍ୟନିଷ୍ଠ ଆଡ୍‌ଭୋକେଟ୍ ଭାବରେ ଜଣାଶୁଣା । ସେ ମକଦ୍ଦମା ଚଳାଇବାକୁ ଥରେ କୋର୍ଟକୁ ଆସିଲେ ଯାତାୟାତ ଖର୍ଚ୍ଚ ବାଦ ଅନ୍ୟୁନ ଦୁଇଲକ୍ଷ ଟଙ୍କା ନେଉଥିଲେ ହେଁ, ଶ୍ରୀ ପଟ୍ଟନାୟକଙ୍କ ଠାରୁ କୌଣସି ଅର୍ଥ ଗ୍ରହଣ କରି ନଥିଲେ । ଶ୍ରୀ ରାମସ୍ୱାମୀଙ୍କ ବଳିଷ୍ଠ ଯୁକ୍ତି ଫଳରେ ଶ୍ରୀ ପଟ୍ଟନାୟକଙ୍କ ବିରୁଦ୍ଧରେ ଆଗତ ଭିଜିଲାନ୍ସ ମକଦ୍ଦମା କ୍ରମେ ଦୁର୍ବଳ ଆସୁଥିଲା । ମାତ୍ର ଶ୍ରୀ ପଟ୍ଟନାୟକ ଅସୁସ୍ଥ ହୋଇ ପରଲୋକ ଗମନ ପରେ ରାଜ୍ୟ ସରକାର ସେ ମକଦ୍ଦମାକୁ ପ୍ରତ୍ୟାହାର କରିନେଇଥିଲେ ।

୧୯୯୫ ମସିହା ନିର୍ବାଚନରେ ଜନତାଦଳ ମାତ୍ର ୪୬ଟି ଆସନ ଲାଭ କରିଥିଲା । ନିର୍ବାଚନରେ ଜନତା ଦଳର ପରାଜୟକୁ ବିଜୁ ପଟ୍ଟନାୟକ ହାଲୁକା ଭାବେ ଗ୍ରହଣ କରି ନେଇଥିଲେ । କିନ୍ତୁ ତାଙ୍କ ବିରୁଦ୍ଧରେ ଭିଜିଲାନ୍ସ ମକଦ୍ଦମା ଓ ସେଥିରେ ଶ୍ରୀକାନ୍ତ ଜେନାଙ୍କ ଭୂମିକାକୁ ସେ ଶେଷ ପର୍ଯ୍ୟନ୍ତ ଭୁଲି ପାରିନଥିଲେ ।

ଥରେ ସେ ଭାବ ବିହ୍ୱଳ ହୋଇ କହିଥିଲେ, "ଯେଉଁମାନଙ୍କୁ ମୁଁ ମଣିଷ କରିଥିଲି, ବିଶ୍ୱାସ କରି ସେମାନଙ୍କୁ ସବୁ କ୍ଷମତା ଅର୍ପଣ କରିଥିଲି, ସେମାନେ ମତେ ଚିତା କାଟିଲେ ।"

ନିର୍ବାଚନ ଫଳାଫଳରେ ଶ୍ରୀ ପଟ୍ଟନାୟକ ଏକପ୍ରକାର ବିତସ୍ପୃହ ହୋଇପଡିଥିଲେ । ରାଜ୍ୟ ରାଜନୀତିରୁ ବିଦାୟ ନେଇ ସେ ପାର୍ଲାମେଣ୍ଟକୁ ଯିବା ପାଇଁ ନିଷ୍ପତ୍ତି କଲେ । ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ତାଙ୍କୁ ଏକାଧିକ ସ୍ଥାନରୁ ପ୍ରସ୍ତାବ ଆସିଥିଲା ।

ଶେଷରେ ସେ ତାଙ୍କ ଜନ୍ମଭୂମି ଆସ୍କା ଓ କର୍ମଭୂମି କଟକ ଲୋକସଭା ଆସନରୁ ପ୍ରତିଦ୍ୱନ୍ଦିତା କରିଥିଲେ । ଉଭୟ ସ୍ଥାନରୁ ଜୟଯୁକ୍ତ ହେଲେ । ବହୁ ବିଚାର ପରେ କଟକ

ଆସନଟି ଛାଡି ସେ ଆସ୍କା ଆସନଟି ରଖିଲେ । ଲୋକ ପ୍ରତିନିଧି ଆଇନ୍ ଅନୁଯାୟୀ ତାଙ୍କୁ ବିଧାନସଭା ଆସନରୁ ଇସ୍ତଫା ଦେବାକୁ ପଡିଥିଲା ।

କିଛିଦିନ ଅସୁସ୍ଥ ହେବା ପରେ ଶ୍ରୀ ପଟ୍ଟନାୟକ ୧୯୯୭ ମସିହା ଅପ୍ରେଲ ୧୭ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ବିଜୁ ପଟ୍ଟନାୟକଙ୍କ ଦେହାନ୍ତ ପରେ ତାଙ୍କ ମର ଶରୀରକୁ ଭୁବନେଶ୍ୱର ଆଣି ଶେଷକୃତ୍ୟ ସମ୍ପନ୍ନ କରିବା ପାଇଁ ତାଙ୍କର ଦୁଇପୁତ୍ର, ପ୍ରେମ ଓ ନବୀନ ପ୍ରାଥମିକ ଅବସ୍ଥାରେ ବିଶେଷ ଆଗ୍ରହ ପ୍ରକାଶ କରି ନଥିଲେ । କିନ୍ତୁ ଅନ୍ୟମାନଙ୍କ ଚାପରେ, ବିଶେଷ କରି ଦିଲୀପ ରାୟଙ୍କ ଉଦ୍ୟମ ଫଳରେ ସ୍ୱର୍ଗତ ପଟ୍ଟନାୟକଙ୍କ ମରଶରୀର ଏକ ସ୍ୱତନ୍ତ୍ର ବିମାନ ଯୋଗେ ଭୁବନେଶ୍ୱରରେ ଆସି ପହଞ୍ଚିଲା । ସେଦିନ ବିମାନ ବନ୍ଦରଠାରୁ ଆରମ୍ଭ କରି ତାଙ୍କ ବାସସ୍ଥଳୀ 'ନବୀନ ନିବାସ' ଏବଂ ପୁରୀ ଯିବା ରାସ୍ତାରେ ହଜାର ହଜାର ସଂଖ୍ୟାରେ ରାଜ୍ୟବାସୀ ସ୍ୱର୍ଗତ ନେତାଙ୍କ ପ୍ରତି ଯେଉଳି ଶେଷ ସମ୍ମାନ ପ୍ରଦର୍ଶନ କରିଥିଲେ, ବୋଧହୁଏ ଅନ୍ୟ କାହାରି କ୍ଷେତ୍ରରେ ସେପରି ଘଟି ନଥିଲା ।

ସମ୍ପୂର୍ଣ୍ଣ ରାଷ୍ଟ୍ରୀୟ ମର୍ଯ୍ୟାଦା ସହିତ ପୁରୀର ସ୍ୱର୍ଗଦ୍ୱାର ଠାରେ ସ୍ୱର୍ଗତ ପଟ୍ଟନାୟକଙ୍କ ଶେଷକୃତ୍ୟ ସମ୍ପନ୍ନ ହୋଇଥିଲା । ସେଦିନ ଭାରତବର୍ଷର ପୂର୍ବତନ ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖର, ଅଟଳବିହାରୀ ବାଜପାୟୀ, ଦେବେଗୌଡ଼ାଙ୍କ ସମେତ କ୍ରିଷ୍ଣକାନ୍ତ, ଏସ୍.ଆର୍.ବୋମାଇ, ମଧୁ ଦଣ୍ଡବତେ, ଭୈରୋ ସିଂହ ଶେଖାୱତ୍, ଲାଲକୃଷ୍ଣ ଆଡ଼ଭାଣୀ, ଲାଲୁ ପ୍ରସାଦ ଯାଦବ, ସାହେବ ସିଂହ ବର୍ମା ପ୍ରମୁଖ ସବୁ ରାଜନୈତିକ ଦଳର ନେତୃବର୍ଗ ଭୁବନେଶ୍ୱର ଆସି ସେହି ପ୍ରବାଦ ପୁରୁଷଙ୍କ ପ୍ରତି ଶେଷ ସମ୍ମାନ ପ୍ରଦର୍ଶନ କରିଥିଲେ ।

ସ୍ୱର୍ଗତ ପଟ୍ଟନାୟକଙ୍କ ଏକାଦଶାହ ଉପଲକ୍ଷେ ଭୁବନେଶ୍ୱରଠାରେ ଆୟୋଜିତ ଶୋକସଭାରେ ଅନ୍ୟମାନଙ୍କ ମଧ୍ୟରେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଯୋଗଦେଇ ସମସ୍ତ ରାଜନୈତିକ ବିରୋଧ ସତ୍ତ୍ୱେ ସ୍ୱର୍ଗତ ପଟ୍ଟନାୟକଙ୍କୁ 'ଝଡ଼ର ଇଗଲ ଓ ମାଟିର ମୂର୍ତ୍ତିକାର' ବୋଲି ବର୍ଣ୍ଣନା କରିଥିଲେ । ସେ ଦିନର ସେ ଶୋକସଭାରେ ଅନ୍ୟମାନଙ୍କ ମଧ୍ୟରେ ଲାଲକୃଷ୍ଣ ଆଡ଼ଭାଣୀ, ଏସ୍.ଆର୍. ବୋମାଇ, ଏଚ୍.ଡି. ଦେବେଗୌଡା, ସାହେବ ସିଂ ବର୍ମା ପ୍ରମୁଖ କେନ୍ଦ୍ରୀୟ ନେତୃବୃନ୍ଦ ଯୋଗଦେଇ ସ୍ୱର୍ଗତ ପଟ୍ଟନାୟକଙ୍କ ସ୍ମୃତିପ୍ରତି ଯେଉଳି ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ, ତାହା ପୂର୍ବରୁ କେବେ ଦେଖାଦେଇ ନଥିଲା ।

୧୯୯୫ ମସିହା ନିର୍ବାଚନ ପରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ଓଡ଼ିଶାରେ ଆଉଥରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରାଯାଇଥିଲା । ସ୍ୱାଭାବିକ ଭାବରେ ସେ ମନ୍ତ୍ରିମଣ୍ଡଳ ପାଞ୍ଚ ବର୍ଷକାଳ ଚାଲିଥାଆନ୍ତା । ମାତ୍ର କେନ୍ଦୁଝର ଜିଲ୍ଲାର ଠାକୁରମୁଣ୍ଡା ଅନ୍ତର୍ଗତ ମନୋହରପୁର ଠାରେ ଅଷ୍ଟ୍ରେଲିଆ ନାଗରିକ ଗ୍ରାହାମ ଷ୍ଟେନସ ଓ ତାଙ୍କର ଦୁଇ ଶିଶୁପୁତ୍ରଙ୍କ

ଅମାନୁଷିକ ହତ୍ୟା ଘଟଣା, ବାରିପଦା ସହର ନିକଟରେ ଜଣେ ଖ୍ରୀଷ୍ଟିୟାନ ଶିକ୍ଷୟିତ୍ରୀ(ନନ୍)ଙ୍କ ଉପରେ ପାଶବିକ ଅତ୍ୟାଚାର ଘଟଣା ପରେ ଶ୍ରୀ ପଟ୍ଟନାୟକଙ୍କ ବିରୋଧୀ ଗୋଷ୍ଠୀ ତାଙ୍କ ବିରୋଧରେ ସୋନିଆ ଗାନ୍ଧୀଙ୍କ ଆଗରେ ଫେରାଦ ହେଲେ । ଆନ୍ତର୍ଜାତିକ ଚାପରେ ସୋନିଆ ଗାନ୍ଧୀ ଶ୍ରୀ ପଟ୍ଟନାୟକଙ୍କୁ ଇସ୍ତଫା ଦେବାକୁ ପରାମର୍ଶ ଦେଇଥିଲେ ।

ଜାନକୀଙ୍କ ପରେ କିଏ ? ଏହି ପ୍ରଶ୍ନକୁ କେନ୍ଦ୍ରକରି କଂଗ୍ରେସ ଦଳରେ ଘମାଘୋଟ ଆଲୋଚନା ଚାଲିଲା । ମୁଖ୍ୟମନ୍ତ୍ରୀ ପଦପାଇଁ ଏକାଧିକ ନେତା ନିଜ ନିଜ ସପକ୍ଷରେ ଦିଲ୍ଲୀରେ ଲବି ଆରମ୍ଭ କରିଦେଲେ । ଶେଷରେ ସୋନିଆ ଗାନ୍ଧୀ ଗିରିଧର ଗମାଙ୍ଗଙ୍କୁ ମୁଖ୍ୟମନ୍ତ୍ରୀ କରିବାକୁ ସ୍ଥିର କଲେ ।

ଶ୍ରୀମତୀ ଗାନ୍ଧୀ ଶ୍ରୀ ଗମାଙ୍ଗଙ୍କୁ କଂଗ୍ରେସ ବିଧାୟକ ଦଳର ନେତା ମନୋନୀତ କରି ସନ୍ଧ୍ୟାରେ ଏକ ସ୍ୱତନ୍ତ୍ର ବିମାନରେ ଭୁବନେଶ୍ୱର ପଠାଇଦେଲେ । ସେ ସମୟରେ ଶ୍ରୀ ଗମାଙ୍ଗ ଓଡ଼ିଶା ରାଜନୀତି ପ୍ରତି ବିତୃଷ୍ଣ ହୋଇ ଅଧିକାଂଶ ସମୟ ଦିଲ୍ଲୀରେ ରହୁଥିଲେ ।

ଗିରିଧର ଗମାଙ୍ଗଙ୍କୁ ନେଇ ସ୍ୱତନ୍ତ୍ର ବିମାନ ଭୁବନେଶ୍ୱରରେ ପହଞ୍ଚିବା ପରେ କଂଗ୍ରେସ ବିଧାୟକ ଦଳର ବୈଠକ ପାଞ୍ଚ ମିନିଟ୍ ପାଇଁ ବସିଥିଲା । "ହାଇକମାଣ୍ଡଙ୍କ ଦ୍ୱାରା ମନୋନୀତ ପ୍ରାର୍ଥୀ ଗିରିଧର ଗମାଙ୍ଗଙ୍କୁ କଂଗ୍ରେସ ବିଧାୟକ ଦଳର ନେତା ନିର୍ବାଚନ କରାଗଲା" ବୋଲି ବିଧାୟକ ଦଳର ସଂପାଦକ ଗଣେଶ୍ୱର ବେହେରା ବାହାରେ ଅପେକ୍ଷାରତ ସାମ୍ବାଦିକମାନଙ୍କ ଆଗରେ ଘୋଷଣା କରିଥିଲେ ।

ଶ୍ରୀ ଗମାଙ୍ଗଙ୍କ ନାମ ବିଦାୟୀ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରସ୍ତାବ କରିଥିଲେ । କଂଗ୍ରେସ ବିଧାୟକ ଦଳର ଏକାଧିକ ସଦସ୍ୟ ତାକୁ ସମର୍ଥ କରିଥିଲେ ।

ଶ୍ରୀ ଗମାଙ୍ଗ ୧୯୯୯ ମସିହା ଫେବୃୟାରୀ ୧୭ ତାରିଖ ସକାଳ ୧୦ଟା ବେଳେ ରାଜଭବନରେ ନିର୍ମିତ ଏକ ସ୍ୱତନ୍ତ୍ର ମଞ୍ଚରେ ଓଡ଼ିଶାର ତ୍ରୟୋଦଶ ମୁଖ୍ୟମନ୍ତ୍ରୀ ଭାବରେ ଏକା ଶପଥ ଗ୍ରହଣ କରିଥିଲେ ।

ଶ୍ରୀ ଗମାଙ୍ଗ ସବୁବେଳେ ଗୋଟିଏ ସୁବିଧା ବାଟ ଧରିଥିଲେ, ଯେକୌଣସି ପ୍ରଶ୍ନର ଉତ୍ତରରେ "ହାଇକମାଣ୍ଡଙ୍କୁ ପଚାର" ବୋଲି ସେ ସବୁବେଳେ କହୁଥିଲେ । ବାସ୍ତବ କ୍ଷେତ୍ରରେ ମଧ୍ୟ ସେ ସବୁକଥା ପାଇଁ ଦଳର ହାଇକମାଣ୍ଡ ସୋନିଆ ଗାନ୍ଧୀଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଥିଲେ ।

ଶ୍ରୀ ଗମାଙ୍ଗଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟର ସବୁଠାରୁ ଉଲ୍ଲେଖନୀୟ ଘଟଣା ହେଲା ମହାବାତ୍ୟା । ବଙ୍ଗୋପସାଗରରେ ସୃଷ୍ଟି ହୋଇଥିବା ଲଘୁଚାପ ଘୂର୍ଣ୍ଣିବାତ୍ୟାରେ ପରିଣତ ହୋଇ ପ୍ରଥମେ ୧୯୯୯ ମସିହା ଅକ୍ଟୋବର ୧୭ ତାରିଖରେ ଗଞ୍ଜାମ ଜିଲ୍ଲାରେ ପ୍ରବଳ କ୍ଷୟକ୍ଷତି ଘଟାଇଥିଲା ।

ଏହାର ବାରଦିନ ପରେ ଅକ୍ଟୋବର ୨୯ ତାରିଖ ଦିନ ପୁନର୍ବାର ଲଘୁଚାପ ଘନୀଭୂତ ହୋଇ ତାହା ମହାବାତ୍ୟାର ରୂପ ନେଲା । ଏହି ଅଭୂତପୂର୍ବ ମହାବାତ୍ୟା ଦୀର୍ଘ ୩୦ ଘଣ୍ଟା କାଳ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ତାଣ୍ଡବଲୀଳା ସୃଷ୍ଟି କଲା ।

ଏପରି ଏକ ମହାବାତ୍ୟା ଓ ତା'ର ପରବର୍ତ୍ତୀ ଅବସ୍ଥାକୁ ମୁକାବିଲା କରିବା ପାଇଁ ଶ୍ରୀ ଗମାଙ୍ଗଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ସରକାର ମାନସିକସ୍ତରରେ ପ୍ରସ୍ତୁତ ନଥିଲେ । ରାଜ୍ୟ ପ୍ରଶାସନରେ ମୁଖ୍ୟମନ୍ତ୍ରୀଙ୍କ ଅନଭିଜ୍ଞତା ସାଙ୍ଗକୁ ତାଙ୍କ ଦପ୍ତରରେ ଅବସ୍ଥାପିତ ଅଫିସରମାନଙ୍କ ମଧ୍ୟରେ ଅସହଯୋଗ ମନୋଭାବ ଯୋଗୁଁ ଶାସନ କଳ ଏକପ୍ରକାର ଅଚଳ ହୋଇପଡ଼ିଲା ।

ମହାବାତ୍ୟା ଜନିତ ପରିସ୍ଥିତିକୁ କିପରି ମୁକାବିଲା କରାଯିବ ସେଥିପାଇଁ ରାଜ୍ୟ ସରକାର କିଛି କୂଳକିନାରା ପାଇଲେ ନାହିଁ । ବଜାରରେ ଖାଦ୍ୟ ପଦାର୍ଥ ମିଳିଲା ନାହିଁ । ରାଜଧାନୀ ଭୁବନେଶ୍ୱରରେ ପାନୀୟଜଳର ଘୋର ଅଭାବ ଦେଖାଦେଲା । ପେଟ୍ରୋଲ, ଡିଜେଲ ଓ କିରାସିନି ଦୁଷ୍ପ୍ରାପ୍ୟ ହୋଇଗଲା ।

ଏକପକ୍ଷରେ ଓଡ଼ିଶାରେ ସୃଷ୍ଟି ହୋଇଥିବା ମହାବାତ୍ୟା ଜନିତ ପରିସ୍ଥିତିକୁ ମୁକାବିଲା କରିବାରେ ରାଜ୍ୟ ସରକାରଙ୍କ ବିଫଳତାର ଅଭିଯୋଗ ଓ ଅନ୍ୟପକ୍ଷରେ ଦଳ ଭିତରେ ଗମାଙ୍ଗ ବିରୋଧୀ ହାୱା ଅଧିକ ହେବା ଫଳରେ ଦଳର ହାଇକମାଣ୍ଡ ସୋନିଆ ଗାନ୍ଧୀ ଓଡ଼ିଶାର ନେତୃତ୍ୱ ପରିବର୍ତ୍ତନ ପାଇଁ ନିଷ୍ପତ୍ତି କଲେ ।

ମୁଖ୍ୟମନ୍ତ୍ରୀ ଶ୍ରୀ ଗମାଙ୍ଗଙ୍କ ଠାରୁ ଇସ୍ତଫାପତ୍ର ନେବା ପାଇଁ ଶ୍ରୀମତୀ ଗାନ୍ଧୀ ଦଳର ଦୁଇଜଣ ପୁରୁଣା ନେତା ମାଧବ ରାଓ ସିନ୍ଧିଆ ଓ ଭାୟଲାର ରବିଙ୍କୁ ଭୁବନେଶ୍ୱର ପଠାଇଥିଲେ । ମାତ୍ର ଶ୍ରୀ ଗମାଙ୍ଗ ସେମାନଙ୍କୁ ଦେଖାଦେଇନଥିଲେ । ସେମାନଙ୍କୁ କୋଡିଏ ଲକ୍ଷ ଟଙ୍କା ଦେଲେ ଇସ୍ତଫା ଦେବାକୁ ପଡିବ ନାହିଁ ବୋଲି ସେମାନେ ଶ୍ରୀ ଗମାଙ୍ଗଙ୍କୁ ପ୍ରସ୍ତାବ ଦେଇଥିବା କଥା ସେତେବେଳେ ଶୁଣାଯାଇଥିଲା । ମାତ୍ର ଶ୍ରୀ ଗମାଙ୍ଗ କୁଆଡ଼େ ସେଥିପ୍ରତି କର୍ଣ୍ଣପାତ କରିନଥିଲେ ।

ଦୀର୍ଘ ସମୟ ଅପେକ୍ଷା ପରେ ଯେତେବେଳେ ସେମାନେ ଶ୍ରୀ ଗମାଙ୍ଗଙ୍କୁ ସାକ୍ଷାତ କରି ଇସ୍ତଫା ପ୍ରଦାନ ପାଇଁ କହିଥିଲେ, "ସୋନିଆ ଗାନ୍ଧୀ ମତେ ମୁଖ୍ୟମନ୍ତ୍ରୀ କରି ପଠାଇଛନ୍ତି, ସେ ଚାହିଁଲେ ମୁଁ ତାଙ୍କୁ ଇସ୍ତଫା ଦେଇଦେବି । ମୁଁ ବର୍ତ୍ତମାନ ସୁଦ୍ଧା ମୁଖ୍ୟମନ୍ତ୍ରୀ ରହିଛି । ମୋ ଇସ୍ତଫା ସହିତ ଓଡ଼ିଶାର ସମ୍ମାନ ଏବଂ ସ୍ୱାଭିମାନର ପ୍ରଶ୍ନ ଜଡ଼ିତ ଅଛି । ମୁଁ ଏଠାକୁ ଶାସନ କରିବାକୁ ଆସିଛି, କାହାଦ୍ୱାରା ଶାସିତ ହେବାକୁ ନୁହେଁ । ମୁଁ ବର୍ତ୍ତମାନ ଶ୍ରୀମତୀ ଗାନ୍ଧୀଙ୍କୁ ସାକ୍ଷାତ କରିବାକୁ ଚାଲିଲି" ବୋଲି କହି ଶ୍ରୀ ଗମାଙ୍ଗ ରାଜ୍ୟ ସରକାରଙ୍କ ବିମାନ ଯୋଗେ ଦିଲ୍ଲୀ ଯିବା ଉଦ୍ଦେଶ୍ୟରେ ବିମାନ ବନ୍ଦରକୁ ଚାଲିଯାଇଥିଲେ । ଏଥିରେ ଶ୍ରୀ ସିନ୍ଧିଆ ଓ ଶ୍ରୀ ରବି ଅତ୍ୟନ୍ତ ଅପମାନିତ ମନେ କରିଥିଲେ ।

ଶ୍ରୀ ଗମାଙ୍ଗ ଦିଲ୍ଲୀରେ ପହଞ୍ଚି ଦଳର ହାଇକମାଣ୍ଡ ସୋନିଆ ଗାନ୍ଧୀଙ୍କୁ ସାକ୍ଷାତ କରି ଇସ୍ତଫାପତ୍ର ପ୍ରଦାନ କରିଥିଲେ । ଶ୍ରୀମତୀ ଗାନ୍ଧୀ ତାକୁ ଗ୍ରହଣ କରିନେଇଥିଲେ ।

ମୁଖ୍ୟମନ୍ତ୍ରୀ ପଦରୁ ଗିରିଧର ଗମାଙ୍ଗଙ୍କୁ ବିଦାୟ ପରେ ସମସ୍ତଙ୍କର ଗ୍ରହଣଯୋଗ୍ୟ ହେଲା ଭଳି ଜଣେ ନେତାଙ୍କର ଖୋଜା ପଡ଼ିଲା । ଏଥିପାଇଁ ପୂର୍ବରୁ ମୁଖ୍ୟମନ୍ତ୍ରୀ ହୋଇଥିବା ଓ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥିବା ହେମାନନ୍ଦ ବିଶ୍ୱାଳଙ୍କୁ ମୁଖ୍ୟମନ୍ତ୍ରୀ ଭାବେ ମନୋନୀତ କରାଯାଇଥିଲା । ଶ୍ରୀ ବିଶ୍ୱାଳ ମାତ୍ର ତିନିମାସ ପାଇଁ କ୍ଷମତାରେ ରହିଥିଲେ ।

ବିଜୁ ପଟ୍ଟନାୟକଙ୍କ ଦେହାନ୍ତ ପରେ ଓଡ଼ିଶା ରାଜନୀତିରେ ସୃଷ୍ଟି ହୋଇଥିବା ଶୂନ୍ୟସ୍ଥାନ କିପରି ପୂରଣ ହେବ ସାଧାରଣରେ ତାହା ଏକ ଆଲୋଚ୍ୟ ବିଷୟ ହୋଇଗଲା ।

ରାଜ୍ୟରେ ଏକ ଆଞ୍ଚଳିକ ଦଳ ଗଢ଼ିବା ପାଇଁ ବିଜୁ ପଟ୍ଟନାୟକଙ୍କ ଜୀବଦ୍ଦଶାରେ ଉଦ୍ୟମ କରାଯାଇଥିଲା । ମାତ୍ର ଆବଶ୍ୟକ ସଂଖ୍ୟକ ସଦସ୍ୟଙ୍କ ସମର୍ଥନ ନଥିବା ଯୋଗୁଁ ତାହା କାର୍ଯ୍ୟକାରୀ ହୋଇପାରିନଥିଲା ।

ସେହି ପରିକଳ୍ପନାକୁ ସାକାର କରିବା ପାଇଁ ପଶ୍ଚିମ ଓଡ଼ିଶାର ନେତୃବୃନ୍ଦ, ଉପକୂଳବର୍ତ୍ତୀ ଅଞ୍ଚଳର ନେତାଭାବେ ସ୍ୱୀକୃତ, ପୂର୍ବତନ ମନ୍ତ୍ରୀ ବିଜୟ ମହାପାତ୍ରଙ୍କ ସହିତ ସମ୍ଝୋତା କରିଥିଲେ । ଉଭୟ ଗୋଷ୍ଠୀର ଏଥିପାଇଁ ଏକାଧିକ ବୈଠକ ଅନୁଷ୍ଠିତ ହୋଇ ଦିବଂଗତ ନେତା ବିଜୁ ପଟ୍ଟନାୟକଙ୍କ ନାମରେ ଓଡ଼ିଶାରେ 'ବିଜୁ ଜନତା ଦଳ' (ବିଜେଡ଼ି) ନାମରେ ଏକ ଆଞ୍ଚଳିକ ଦଳ ଗଠନ ନିମନ୍ତେ ସ୍ଥିର ହୋଇଥିଲା ।

୧୯୯୭ ମସିହା ଡିସେମ୍ବର ମାସ ୨୬ ତାରିଖରେ ଏକ ସ୍ୱତନ୍ତ୍ର ଉତ୍ସବରେ ବିଜୁ ପଟ୍ଟନାୟକଙ୍କ ନାମରେ ଜନତା ଦଳ ଜନ୍ମଲାଭ କଲା । ବିଜୁ ପଟ୍ଟନାୟକଙ୍କ ସାନପୁଅ ନବୀନ ପଟ୍ଟନାୟକଙ୍କୁ ଏହାର ପ୍ରତିଷ୍ଠାତା ସଭାପତି କରାଗଲା । ବିଜେଡି ଗଢ଼ା ଯିବାରେ ଭାରତୀୟ ଜନତା ପାର୍ଟିର ପ୍ରମୁଖ ନେତା ପ୍ରମୋଦ ମହାଜନ ବିଶେଷ ଭୂମିକା ଗ୍ରହଣ କରିଥିଲେ ।

୧୯୯୫ ମସିହା ନିର୍ବାଚନରେ ଜନତା ଦଳ ଟିକଟରେ ରାଜ୍ୟ ବିଧାନସଭାକୁ ନିର୍ବାଚିତ ୪୬ ଜଣ ସଦସ୍ୟଙ୍କ ମଧ୍ୟରୁ ବିଜୁ ପଟ୍ଟନାୟକ, ପ୍ରସନ୍ନ ଆଚାର୍ଯ୍ୟ, ଅର୍ଜ୍ଜୁନ ଚରଣ ସେଠୀ, ପ୍ରସନ୍ନ କୁମାର ପାଟ୍ଟଶାଣୀ, ପଦ୍ମନାଭ ବେହେରା ଓ ବ୍ରଜ କିଶୋର ତ୍ରିପାଠୀ ପରବର୍ତ୍ତୀ ସମୟରେ ଲୋକସଭାକୁ ନିର୍ବାଚିତ ହୋଇଯିବା ଫଳରେ ବିଜେଡି ଗଠିତ ହେବା ସମୟକୁ ଜନତା ଦଳ ବିଧାୟକଙ୍କ ସଂଖ୍ୟା ୪୦କୁ ଖସି ଆସିଥିଲା ।

ସେମାନଙ୍କ ମଧ୍ୟରୁ ୨୭ଜଣ ବିଧାୟକ ବିଜେଡିରେ ଯୋଗ ଦେଇଥିଲା ବେଳେ ଅନ୍ୟ ଯେଉଁ ୧୩ ଜଣ ସଦସ୍ୟ ମୂଳ ଜନତା ଦଳରେ ରହିଗଲେ ସେମାନଙ୍କ ମଧ୍ୟରେ ଅଶୋକ ଦାସ, ନଳୀନିକାନ୍ତ ମହାନ୍ତି, ସୁରେନ୍ଦ୍ର ନାଥ ନାୟକ, ନରସିଂହ ମିଶ୍ର, ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ, ମଙ୍ଗଳା କିଷାନ ପ୍ରମୁଖ ଅନ୍ତର୍ଭୁକ୍ତ ଥିଲେ ।

ବିଜେଡିରେ ଯେଉଁମାନେ ଯୋଗଦେଇ ନଥିଲେ ସେମାନଙ୍କର ବିଜେଡି ନେତୃବର୍ଗଙ୍କ ସହିତ କୌଣସି ଆଦର୍ଶଗତ ରାଜନୈତିକ ମତଭେଦ ନଥିଲା । ବ୍ୟକ୍ତିଗତ ସ୍ୱାର୍ଥ, ପରସ୍ପର ପ୍ରତି ଈର୍ଷା ଓ ଅସହିଷ୍ଣୁତାର ବଶବର୍ତ୍ତୀ ହୋଇ ସେମାନେ ସେପରି ନିଷ୍ପତ୍ତି ନେଇଥିଲେ ବୋଲି ସାଧାରଣରେ ବିଶ୍ୱାସ ସୃଷ୍ଟି ହୋଇଥିଲା ।

ତା'ଛଡା ପୂର୍ବତନ କେନ୍ଦ୍ରମନ୍ତ୍ରୀ ତଥା ଓଡ଼ିଶା ରାଜନୀତିର ଖଳନାୟକ ଶ୍ରୀକାନ୍ତ ଜେନାଙ୍କ ଦ୍ୱାରା ପ୍ରଚୁର ଅର୍ଥର ପ୍ରଲୋଭନ ବିଜେଡିରେ ଯୋଗ ନଦେବା ପାଇଁ କେତେକ ପ୍ରଭାବଶାଳୀ ବିଧାୟକଙ୍କୁ ପ୍ରଭାବିତ କରିଥିବା କଥା ବିଜେଡ଼ି ନେତାମାନଙ୍କ ପାଖରୁ ଶୁଣାଯାଇଥିଲା ।

୧୯୯୭ ମସିହାରେ ନବୀନ ପଟ୍ଟନାୟକ ଯେତେବେଳେ ଓଡ଼ିଶା ରାଜନୀତିରେ ପାଦ ଥାପିଦେଲେ, ସେତେବେଳକୁ ତାଙ୍କର ରାଜନୀତି ଶାସ୍ତ୍ରରେ ଖଡ଼ିଛୁଆଁ ହୋଇନଥିଲା । ତା'ଛଡା, ଓଡ଼ିଶାର ପାଣି ପବନ, ଜନଜୀବନ, ଓଡ଼ିଶାର ଭାଷା, ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ସେ ସଂପୂର୍ଣ୍ଣ ଅଜ୍ଞ ଥିଲେ ।

ତା'ସତ୍ତ୍ୱେ କେବଳ ବିଜୁ ପଟ୍ଟନାୟକଙ୍କ ପୁଅ ବୋଲି ଓଡ଼ିଶାର ଲୋକେ ତାଙ୍କୁ ବିନାଦ୍ୱିଧାରେ ଆଦରି ଦେଇଥିଲେ । ଦୀର୍ଘ ୧୭ ବର୍ଷର ରାଜନୈତିକ ଜୀବନ ଭିତରେ ଓଡ଼ିଆ ଭାଷାରେ କହିବା, ଲେଖିବା ଓ ପଢ଼ିବାକୁ ସେ ଆଗ୍ରହ ପ୍ରକାଶ କରିବା ଦେଖିବାକୁ ମିଳିନାହିଁ ।

ସାଧାରଣ ଜନତା ତଥା ଦଳର ଲୋକଙ୍କ ଠାରୁ ଦୂରତ୍ୱ ବଜାୟ ରଖିବା ତାଙ୍କର ଏକ ପୁଞ୍ଜି ବୋଲି ସେ ବିଚାରୁଛନ୍ତି । ଯେ କୌଣସି ସଭାସମିତିକୁ ଗଲେ ଇଂରେଜୀ ଅକ୍ଷରରେ ଲେଖା ଓଡ଼ିଆ ଭାଷଣକୁ ବିକୃତ ଭାବରେ ପାଠ କରିବାରେ ସେ ଆନନ୍ଦ ଅନୁଭବ କରୁଛନ୍ତି । ନବୀନ ବାଲେଶ୍ୱରକୁ ବାଲାଶୋର, ବାରିପଦାକୁ ବାଡ଼ିପଡ଼ା ଇତ୍ୟାଦି କହିଲା ବେଳେ ଆମେ ଓଡ଼ିଆଏ ନିଜର ସ୍ୱାଭିମାନକୁ ଭୁଲି ତାଳି ମାରୁଛୁ ।

ନବୀନ ପଟ୍ଟନାୟକ ଓଡ଼ିଶା ଆସିବା ସମୟରେ ବିଜୁ ପଟ୍ଟନାୟକଙ୍କ ମୃତ୍ୟୁଜନିତ ଏକ ଅନୁକମ୍ପାର ବାତାବରଣ ସୃଷ୍ଟି ହୋଇଥିଲା । ସ୍ୱର୍ଗତ ପଟ୍ଟନାୟକ କେତେ ଲୋକପ୍ରିୟ ଥିଲେ ତାଙ୍କ ଦେହାନ୍ତ ପରେ ତା'ର ସୂଚନା ମିଳିଥିଲା ।

ବିଜୁ ପଟ୍ଟନାୟକ ଜୀବିତାବସ୍ଥାରେ ଓଡ଼ିଶାରେ ଭାରତୀୟ ଜନତା ପାର୍ଟି (ବି.ଜେ.ପି)ର ଅସ୍ତିତ୍ୱ କିମ୍ବା ଶକ୍ତିକୁ ସ୍ୱୀକାର କରୁନଥିଲେ । ବିଜେପି ଏକ 'ସାଇନବୋର୍ଡ଼ ପାର୍ଟି' ବୋଲି ସେ ବାରମ୍ବାର କହୁଥିଲେ । ସେତେବେଳେ ଓଡ଼ିଶା ରାଜନୀତିରେ ବିଜେପିର ଭିତ୍ତିଭୂମି ସୁଦୃଢ଼ ନଥିଲା ।

୧୯୮୫ ମସିହାରେ ଏହି ଦଳ ବିଧାନସଭାରେ ମାତ୍ର ଗୋଟିଏ ଆସନ ଲାଭ କରିଥିଲା । ୧୯୯୦ ମସିହାରେ ଏହି ଦଳର ଆସନ ସଂଖ୍ୟା ଦୁଇକୁ ବୃଦ୍ଧି ପାଇଥିଲା । ୧୯୯୫ରେ ଏହି ସଂଖ୍ୟା ୯ରେ ପହଞ୍ଚି ପାରିଥିଲା । କିନ୍ତୁ ସେତେବେଳେ କେତେକ ରାଜ୍ୟ ସମେତ

କେନ୍ଦ୍ରରେ ବିଜେପିର ଶକ୍ତି ଯଥେଷ୍ଟ ପରିମାଣରେ ବୃଦ୍ଧି ପାଇଥିଲା । ନିକଟ ଭବିଷ୍ୟତରେ ଏହି ଦଳ କେନ୍ଦ୍ରରେ ଶାସନ କ୍ଷମତାକୁ ଆସିବାର ସୂଚନା ମିଳିସାରିଥିଲା ।

ଓଡ଼ିଶାରେ ନିଜର ଭିତ୍ତିଭୂମିକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ବିଜେପିର ଅଭିଜ୍ଞ ନେତୃବୃନ୍ଦ ବିଜେଡିର ଲୋକପ୍ରିୟତାକୁ ନିର୍ବାଚନରେ ଅସ୍ତ୍ରରୂପେ ବ୍ୟବହାର କରିବାକୁ ଚାହିଁଥିଲେ । ବିଜୁ ପଟ୍ଟନାୟକଙ୍କ ମୃତ୍ୟୁ ଫଳରେ ଓଡ଼ିଶାରେ ଯେଉଁ ଅନୁକମ୍ପା ସୃଷ୍ଟି ହୋଇଥିଲା, ସେଥିରେ ବିଜେଡି ସପକ୍ଷରେ ଯେ ଜନମତ ଯିବ, ସେ ସମ୍ପର୍କରେ ବିଜେପି କେନ୍ଦ୍ରୀୟ ନେତାମାନେ ନିଶ୍ଚିତ ଥିଲେ ।

ସେ ଦୃଷ୍ଟିରୁ ବିଜେଡି ସହିତ ଏକ ସାମ୍ମୁଖ୍ୟ କିମ୍ବା ମେଣ୍ଟ ଗଠନର ଆବଶ୍ୟକତା ଉପରେ ବିଜେପି ପକ୍ଷରୁ ଗୁରୁତ୍ୱ ଆରୋପ କରାଯାଇଥିଲା । ସେଥିପାଇଁ ଓଡ଼ିଶା ରାଜନୀତିରେ ନବାଗତ ନବୀନ ପଟ୍ଟନାୟକଙ୍କୁ ପ୍ରଭାବିତ କରାଗଲା । ସ୍ୱର୍ଗୀୟ ପିତାଙ୍କ ବନ୍ଧୁ ଭାବରେ ନବୀନ ପଟ୍ଟନାୟକ ଶ୍ରୀ ବାଜ୍‌ପେୟୀ ଓ ବିଜେପିର ଅନ୍ୟାନ୍ୟ ନେତୃବୃନ୍ଦଙ୍କୁ ଯଥେଷ୍ଟ ସମ୍ମାନ କରୁଥିଲେ । ଶ୍ରୀ ପଟ୍ଟନାୟକଙ୍କର ଏହି ଦୁର୍ବଳତାରୁ ବିଜେପି ନେତୃବୃନ୍ଦ ସୁଯୋଗ ନେବାକୁ ଚାହିଁଲେ ।

ଘଟଣାକ୍ରମରେ ବିଜେଡିରେ ବିଜୟ ମହାପାତ୍ରଙ୍କ ସାଂଗଠନିକ ଦକ୍ଷତା ଯୋଗୁ ତାଙ୍କର ପ୍ରଭାବ ବୃଦ୍ଧି ପାଇବାରେ ଲାଗିଲା । ଏହା ଦଳରେ ଥିବା କେତେକ ନେତା ସହ୍ୟ କରି ପାରିନଥିଲେ । ଶ୍ରୀ ମହାପାତ୍ରଙ୍କ ବିରୋଧରେ ସେମାନେ ଗୋଟିଏ ଯୋଜନା ପ୍ରସ୍ତୁତ କରିଥିଲେ । ଯୋଜନା ଅନୁଯାୟୀ ପ୍ରାର୍ଥୀପତ୍ର ଦାଖଲର ଶେଷଦିନ ନବୀନ ପଟ୍ଟନାୟକ, ଶ୍ରୀ ମହାପାତ୍ରଙ୍କୁ ଦଳବିରୋଧୀ କାର୍ଯ୍ୟପାଇଁ ଦଳରୁ ବହିଷ୍କାର କରି ତାଙ୍କ ସ୍ଥାନରେ 'ପ୍ରଜାତନ୍ତ୍ର'ର ଭୁବନେଶ୍ୱର ପ୍ରତିନିଧି ଭାବରେ କାର୍ଯ୍ୟ କରୁଥିବା ଅତନୁ ସବ୍ୟସାଚୀଙ୍କୁ ପାଟକୁରାରୁ ବିଜେଡି ପ୍ରାର୍ଥୀ କରିଦେଲେ ।

ନବୀନ ପଟ୍ଟନାୟକଙ୍କ ପରାମର୍ଶଦାତା ସାଜିଥିବା ପ୍ୟାରୀ ମୋହନ ମହାପାତ୍ର ଏହି ଯୋଜନାର ମୁଖ୍ୟ ସୂତ୍ରଧର ଥିଲେ । ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଓଡ଼ିଶାରେ ମନ୍ତ୍ରିମଣ୍ଡଳ ଗଠନ ପୂର୍ବରୁ ଶ୍ରୀ ମହାପାତ୍ର, ମୁଖ୍ୟ ନିର୍ବାଚନ ଅଧିକାରୀ ଥିଲେ । ନିର୍ବାଚନ ପରିଚାଳନା ସମ୍ପର୍କରେ ତାଙ୍କର ପ୍ରତ୍ୟକ୍ଷ ଜ୍ଞାନ ଥିଲା । କେଉଁ ସମୟରେ ଓ କିପରି ଭାବରେ ଶ୍ରୀ ମହାପାତ୍ରଙ୍କୁ ଦଳରୁ ବହିଷ୍କାର କଲେ ସେ ଆଉ ସ୍ୱାଧୀନ ପ୍ରାର୍ଥୀ ଭାବରେ ମଧ ପ୍ରତିଦ୍ୱନ୍ଦିତା କରିପାରିବେ ନାହିଁ, ସେ ହିସାବ ତାଙ୍କୁ ଜଣାଥିଲା । ସେହି ଅନୁଯାୟୀ ପ୍ରାର୍ଥୀପତ୍ର ଦାଖଲର ଶେଷ ମୁହୂର୍ତ୍ତରେ ବିଜୟ ମହାପାତ୍ରଙ୍କୁ ଦଳରୁ ବହିଷ୍କାର କରାଯାଇଥିଲା ।

ନବୀନ ପଟ୍ଟନାୟକଙ୍କ ଷଡ଼ଯନ୍ତ୍ରର ଶିକାର ହୋଇ ବିଧାନସଭା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାରୁ ବଞ୍ଚିତ ହୋଇଥିବା ବିଜୟ ମହାପାତ୍ର ଚୁପ୍ ହୋଇ ବସିନଥିଲେ । ବିଜେଡିର ଏକ ବିକଳ୍ପ ରାଜନୈତିକ ଶକ୍ତି ଗଠନ କରିବା ଉଦ୍ଦେଶ୍ୟରେ ଶ୍ରୀ ମହାପାତ୍ର ରାଜ୍ୟର ବିଭିନ୍ନ ଅଞ୍ଚଳ ଗସ୍ତକରି ଜନସମ୍ପର୍କ ବୃଦ୍ଧି କରିଥିଲେ ।

ବିଜୟ ମହାପାତ୍ରଙ୍କ ଚକ୍ରାନ୍ତ ଯୋଗୁ ତାଙ୍କୁ ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ସଚିବ ପଦରୁ ହଟାଇ ଦିଆଯାଇଥିଲା ଏବଂ ସେ ଚିଫ୍‌ସେକ୍ରେଟାରୀ ହୋଇପାରିନଥିଲେ ବୋଲି ପ୍ୟାରୀବାବୁ ଏକ ଧାରଣାର ବଶବର୍ତ୍ତୀ ହୋଇଥିଲେ । ସେଥିପାଇଁ ଶ୍ରୀ ମହାପାତ୍ରଙ୍କୁ ଯେତେବାଟରେ ହଇରାଣ କରାଯାଇପାରେ ସେ ଦିଗରେ ଉଦ୍ୟମ ଅବ୍ୟାହତ ରଖିଥିଲେ । ଏପରିକି "ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ବିଜୟ ମହାପାତ୍ରଙ୍କୁ ବିଧାନସଭାରେ ପୂରାଇ ଦିଆଯିବନାହିଁ" ବୋଲି ପ୍ୟାରୀବାବୁ ଏକ ସମୟରେ ଘୋଷଣା କରିଥିଲେ । ଏପରି ଘୋଷଣା ତାଙ୍କର ଅହଂଭାବର ପରିଚୟ ଦେଇଥିଲା ।

୨୦୦୦ ମସିହା ଅକ୍ଟୋବର ୧୧ ତାରିଖ ଦିନ ବିଜୟ ମହାପାତ୍ରଙ୍କ ନେତୃତ୍ୱରେ 'ଓଡ଼ିଶା ଗଣ ପରିଷଦ'(ଓଜିପି) ନାମରେ ଏକ ନୂଆ ଆଞ୍ଚଳିକ ଦଳ ଜନ୍ମଲାଭ କରିଥିଲା । ସେଥିରେ ନରସିଂହ ମିଶ୍ର, ତଥାଗତ ସତପଥୀ, ରୁଦ୍ରମାଧବ ରାୟ, ଅରୁଣ ଦେ, ସଂଜୟ ଦାସବର୍ମା ପ୍ରମୁଖ ବହୁନେତା ଯୋଗଦେଇଥିଲେ ।

୨୦୦୪ ମସିହା ନିର୍ବାଚନ ପୂର୍ବରୁ ଓଜିପି ଭାରତୀୟ ଜାତୀୟ କଂଗ୍ରେସ ସହିତ ବୁଝାମଣା କରିଥିଲା । ସେଥିରେ ଓଜିପିକୁ ଚାରୋଟି ଆସନ ମିଳିଥିଲା । ଦଳର ପ୍ରାର୍ଥୀ ଅରୁଣ ଦେ ବାଲେଶ୍ୱର ଓ ଉତ୍କଳ କେଶରୀ ପରିଡ଼ା କେନ୍ଦ୍ରାପଡାରୁ ନିର୍ବାଚିତ ହୋଇଥିଲେ ।

ନିର୍ବାଚନର ଅବ୍ୟବହିତ ପୂର୍ବରୁ ବିଜେଡ଼ିର ପରାମର୍ଶଦାତା ସାଜିଥିବା ପ୍ୟାରୀମୋହନ ମହାପାତ୍ର ଟଙ୍କାପଇସା ଓ ବିଭିନ୍ନ ପଦପଦବୀର ପ୍ରଲୋଭନ ଦେଖାଇ ଓଜିପିର ବହୁ ନେତାଙ୍କୁ ବିଜେଡ଼ିକୁ ନେଇଯାଇଥିଲେ । ସେବର୍ଷ ନିର୍ବାଚନରେ ଅନ୍ତତଃ ଆଠ ଜଣ ପୂର୍ବତନ ଓଜିପି ନେତା ବିଧାନସଭାକୁ ନିର୍ବାଚିତ ହୋଇଥିଲେ ।

ଆଉ ଏକ ରାଜନୈତିକ ଘଟଣାକ୍ରମରେ ଶରଦ ପାୱାରଙ୍କ ନେତୃତ୍ୱରେ ପରିଚାଳିତ ଜାତୀୟ କଂଗ୍ରେସ ଦଳ(ଏନ୍‌ସିପି) ସହିତ ଓଜିପିର ମିଶ୍ରଣ ଘଟିଥିଲା । ୨୦୦୯ ମସିହା ନିର୍ବାଚନ ପୂର୍ବରୁ ଏନସିପି ଓ ବିଜେଡ଼ି ମଧ୍ୟରେ ଆସନ ବୁଝାମଣା ହେବାରୁ ଶ୍ରୀ ମହାପାତ୍ର ଏନ୍‌ସିପିରୁ ଇସ୍ତଫା ଦେଇ ଭାରତୀୟ ଜନତା ପାର୍ଟିରେ ଯୋଗଦେଇଥିଲେ ।

ଏକାଦିକ୍ରମେ ଚାରିଥର ମୁଖ୍ୟମନ୍ତ୍ରୀ ହୋଇ ଦୀର୍ଘ ପନ୍ଦର ବର୍ଷକାଳ ଶାସନ କ୍ଷମତାରେ ରହିବା ଓଡ଼ିଶା ରାଜନୀତିରେ ନିଶ୍ଚିତ ଭାବରେ ଏକ ବିରଳ ରେକର୍ଡ । ନବୀନ ପଟ୍ଟନାୟକ ଏକମାତ୍ର ରାଜନେତା ଯିଏକି ଏହି ବିରଳ ରେକର୍ଡର ଅଧିକାରୀ ହୋଇପାରିଛନ୍ତି ।

କେବଳ ଏଇକ୍ଷେତ୍ର ନୁହେଁ, ଅନେକ କ୍ଷେତ୍ରରେ ନବୀନ ନୂତନ ରେକର୍ଡ ପ୍ରତିଷ୍ଠା କରିଛନ୍ତି । ଦୀର୍ଘ ୧୭ ବର୍ଷର ରାଜନୈତିକ ଜୀବନରେ ସେ କେବେହେଲେ କୌଣସି ସାମ୍ବାଦିକ ସମ୍ମିଳନୀ ଡାକି ନାହାନ୍ତି କିମ୍ବା ଅନୌପଚାରିକ ଭାବରେ କୌଣସି ସାମ୍ବାଦିକଙ୍କ ସହିତ କୌଣସି ବିଷୟରେ ଆଲୋଚନା ମଧ୍ୟ କରିନାହାନ୍ତି ।

ରାଜ୍ୟର ସ୍ୱାର୍ଥ ସମ୍ବଳିତ କୌଣସି ବିଷୟରେ ସେ ରାଜ୍ୟବାସୀଙ୍କୁ ବିଶ୍ୱାସକୁ ନେଇନାହାନ୍ତି କିମ୍ବା କୌଣସି ସମସ୍ୟାର ସମାଧାନ ପାଇଁ ଥରେ ହେଲେ ସର୍ବଦଳୀୟ ବୈଠକଟିଏ ଡକାଇ ନାହାନ୍ତି ।

କେବଳ ସେତିକି ନୁହେଁ, କୌଣସି ବିଷୟରେ ନିଷ୍ପତ୍ତି ନେବା ପୂର୍ବରୁ ନିଜର ସହକର୍ମୀ(ମନ୍ତ୍ରୀ) ମାନଙ୍କ ସହିତ ପରାମର୍ଶ ନକରି, ସବୁକଥା ପ୍ରଶାସନିକ ଅଫିସରମାନଙ୍କ ଉପରେ ଛାଡ଼ି ଦେଇଛନ୍ତି । ସେଇମାନଙ୍କ ପରାମର୍ଶରେ ସବୁ ନିଷ୍ପତ୍ତି ନେଇଛନ୍ତି । ତାଙ୍କ ଶାସନରେ ମନ୍ତ୍ରୀମାନେ କେବଳ ରବରଷ୍ଟାମ୍ପ ହୋଇଛନ୍ତି ।

ପନ୍ଦରବର୍ଷର ମୁଖ୍ୟମନ୍ତ୍ରିତ୍ୱ ସମୟରେ ନବୀନ, ୩୬ଜଣ ମନ୍ତ୍ରୀଙ୍କୁ ମନ୍ତ୍ରିମଣ୍ଡଳରୁ ନିକାଲି ଆଉ ଏକ ରେକର୍ଡ କରିଛନ୍ତି । ସେମାନଙ୍କୁ ସାଧାରଣରେ ଅପଦସ୍ଥ କରିଛନ୍ତି । ଏସବୁ କାମରେ ଅଧିକାଂଶ କ୍ଷେତ୍ରରେ ପ୍ୟାରୀମୋହନ ମହାପାତ୍ର ତାଙ୍କୁ ସହାୟତା କରିଛନ୍ତି ।

ନବୀନ ପଟ୍ଟନାୟକ ତାଙ୍କ ରାଜନୈତିକ ଜୀବନରେ ଅନେକଙ୍କୁ ଅପଦସ୍ଥ କରିଛନ୍ତି । ଅନେକଙ୍କ ରାଜନୈତିକ ଜୀବନକୁ ନେଇ ଖେଳ ଖେଳିଛନ୍ତି । ଅନ୍ୟକୁ ଅସୁବିଧାରେ ପକାଇ ଆନନ୍ଦ ଅନୁଭବ କରିଛନ୍ତି ।

୨୦୦୨ ମସିହାରେ ଅନୁଷ୍ଠିତ ଦ୍ୱିବାର୍ଷିକ ରାଜ୍ୟସଭା ନିର୍ବାଚନରେ ସେ ଯେଭଳି ଭାବରେ ଅପଦସ୍ଥ ହୋଇ ନୈତିକ ପରାଜୟ ବରଣ କରିଥିଲେ ସେକଥା ସେ କେବେହେଲେ ଭୁଲିପାରି ନଥିବେ ।

ସେ ବର୍ଷ ଓଡ଼ିଶାରୁ ରାଜ୍ୟସଭାରେ ଚାରିଟି ଆସନ ଖାଲି ପଡ଼ିଥିଲା । ସେ ସମସ୍ତ ଆସନ ଦଖଲ କରିବା ପାଇଁ ଶାସନ କ୍ଷମତାରେ ଥିବା ବିଜେଡି-ବିଜେପି ମେଣ୍ଟର ମାତ୍ର ପାଞ୍ଚୋଟି ସଂଖ୍ୟା କମ୍ ଥିଲା ।

ରାଜନୈତିକ କୌଶଳ ମାଧ୍ୟମରେ ଏହି ସବୁ ଆସନ ହାସଲ କରିବା ମେଣ୍ଟ ପକ୍ଷରେ ସହଜସାଧ ଥିଲା । ମାତ୍ର ନିଜର ଅପରିପକ୍ୱତା ଯୋଗୁଁ ମୁଖ୍ୟମନ୍ତ୍ରୀ ସେ ସୁଯୋଗକୁ ହାତଛଡ଼ା କରିଦେଲେ । ସେ ନିର୍ବାଚନରେ ତାଙ୍କର ଏକପ୍ରକାର ନୈତିକ ପରାଜୟ ଘଟିଲା ବୋଲି ରାଜନୈତିକ ମହଲ ବିଚାର କଲେ ।

ଏହାପୂର୍ବରୁ ୧୯୯୮ ମସିହାରେ ଅନୁଷ୍ଠିତ ରାଜ୍ୟସଭାର ଦ୍ୱିବାର୍ଷିକ ନିର୍ବାଚନରେ ଶ୍ରୀ ପଟ୍ଟନାୟକ ଅପଦସ୍ଥ ହୋଇଥିଲେ । ତାଙ୍କର ଡୁନ୍ ସ୍କୁଲ ବନ୍ଧୁ ଅନଙ୍ଗ ଉଦୟ ସିଂହଦେଓ ସେଥର ରାଜ୍ୟସଭା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରି ଅଳ୍ପ ବ୍ୟବଧାନରେ ହାରିଯାଇଥିଲେ ।

ନବୀନ ପଟ୍ଟନାୟକ ବିଜେଡିର ଅନ୍ୟତମ ପ୍ରତିଷ୍ଠାତା ସଦସ୍ୟ ଓ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କର ଅତ୍ୟନ୍ତ ଘନିଷ୍ଠ ଦିଲୀପ ରାୟଙ୍କୁ ନିଜର ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀ ବୋଲି

ଭାବୁଥିଲେ। ସେଥିପାଇଁ ତାଙ୍କୁ ଆଉଥରେ ନିର୍ବାଚନରେ ବିଜେଡିରୁ ପ୍ରାର୍ଥୀ ନକରିବାକୁ ମନ ସ୍ଥିର କରିଥିଲେ । ମାତ୍ର ସେ ନିଜ ନିଷ୍ପତ୍ତି ସମ୍ପର୍କରେ କାହାରିକୁ କିଛି ସୂଚନା ଦେଇନଥିଲେ ।

ଶ୍ରୀ ପଟ୍ଟନାୟକଙ୍କ ବିଶ୍ୱାସଘାତକତା ସମ୍ପର୍କରେ ସଚେତନ ଥିବା ଶ୍ରୀ ରାୟ ନିର୍ବାଚନ ପାଇଁ ପ୍ରାର୍ଥୀପତ୍ର ଦାଖଲର ବହୁ ପୂର୍ବରୁ ୧୨ଜଣ ପ୍ରସ୍ତାବକଙ୍କର ସତ୍ୟପାଠ ସହିତ ଦସ୍ତଖତ ଗୋପନରେ ସଂଗ୍ରହ କରି ନିଜ ପାଖରେ ରଖିଥିଲେ ।

ବିଜେଡି ବିଧାୟକମାନଙ୍କ ଉପରେ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ ଗୁଇନ୍ଦା ପୁଲିସ୍ ତୀକ୍ଷ୍ଣଦୃଷ୍ଟି ରଖିଥିବାରୁ ଶ୍ରୀ ରାୟ ସେମାନଙ୍କ ସହିତ କୌଣସି ସମ୍ପର୍କ ସ୍ଥାପନ କରିନଥିଲେ। ତାଙ୍କ ପ୍ରସ୍ତାବକମାନଙ୍କ ମଧ୍ୟରେ ବିଜେଡିର କୌଣସି ବିଧାୟକଙ୍କୁ ସାମିଲ୍ କରିନଥିଲେ ।

ଶ୍ରୀ ରାୟଙ୍କ ପ୍ରସ୍ତାବକମାନଙ୍କ ମଧ୍ୟରେ ଛଅଜଣ ବିଜେପି, ତିନିଜଣ କଂଗ୍ରେସ, ଦୁଇଜଣ ଝାଡ଼ଖଣ୍ଡ ମୁକ୍ତିମୋର୍ଚ୍ଚାରୁ ଓ ଜଣେ ସ୍ୱାଧୀନ ସଦସ୍ୟ (ମାନସ ରଞ୍ଜନ ମଲ୍ଲିକ) ଅନ୍ତର୍ଭୁକ୍ତ ଥିଲେ ।

ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ, ଦିଲୀପ ରାୟଙ୍କ ପ୍ରାର୍ଥୀପତ୍ର ଦାଖଲ ଉଦ୍ୟମକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ରାଜଧାନୀସ୍ଥ ବିଶିଷ୍ଟ ବ୍ୟବସାୟ ପ୍ରତିଷ୍ଠାନ 'ଲାଲଚାନ୍ଦ୍ ଜୁଏଲର୍ସ'ର ମାଲିକ ସଂଜୟ ହଂସଙ୍କୁ ରାଜ୍ୟସଭା ନିର୍ବାଚନରେ ସ୍ୱାଧୀନପ୍ରାର୍ଥୀ ହେବାପାଇଁ ପ୍ରବର୍ତ୍ତାଇଥିଲେ। ଏଥିରେ ରାଜ୍ୟ ବିଦ୍ୟୁତ୍ ଓ ଖଣି ବିଭାଗ ମନ୍ତ୍ରୀ ଅନଙ୍ଗ ଉଦୟ ସିଂହଦେଓ ମଧ୍ୟସ୍ଥତା କରି ବେଶ୍ ଲାଭବାନ ହୋଇଥିବା କଥା ସେତେବେଳେ ଭୁବନେଶ୍ୱର ସହରରେ ଆଲୋଚନାର ବିଷୟ ହୋଇଥିଲା।

ଶ୍ରୀ ରାୟ ନିଜ ପ୍ରାର୍ଥୀପତ୍ର ସପକ୍ଷରେ ୧୨ଜଣ ବିଧାୟକଙ୍କର ସତ୍ୟପାଠ ଓ ଦସ୍ତଖତ ସଂଗ୍ରହ କରିଥିଲେ । ମାତ୍ର ସେ ସମର୍ଥନ ହାସଲ ଦିଗରେ ବିଫଳ ହୋଇଛନ୍ତି ବୋଲି ଏକ ବାର୍ତ୍ତା ଗଣମାଧ୍ୟମରେ ପ୍ରଚାର କରିଦେଲେ। ସେଥିସହିତ ପ୍ରାର୍ଥୀପତ୍ର ଦାଖଲର ଶେଷଦିନ ପୂର୍ବରୁ ହତାଶ ହୋଇ ସେ କଲିକତା ଚାଲିଯାଉଛନ୍ତି ବୋଲି, ସମ୍ବାଦପତ୍ର ଓ ଟେଲିଭିଜନ ମାଧ୍ୟମରେ ପ୍ରଚାରିତ ହୋଇଥିଲା।

ପୂର୍ବ ଯୋଜନା ଅନୁଯାୟୀ ରାତି ପ୍ରାୟ ସାଢ଼େ ଆଠଟାରେ ଦିଲ୍ଲୀପ ରାୟଙ୍କ କାର୍ ଆସି ଭୁବନେଶ୍ୱର ରେଲଷ୍ଟେସନ୍‌ର ଏକନମ୍ବର ପ୍ଲାଟ୍‌ଫର୍ମ୍ ସାମନାରେ ଲାଗିଲା। ସେଥିରୁ ଶ୍ରୀ ରାୟ ଓହ୍ଲାଇଲେ। ତାଙ୍କ ସହିତ ତାଙ୍କର ବ୍ୟାଗେଜ୍ ଓ ରାତ୍ରିଭୋଜନ ମଧ୍ୟ ଓହ୍ଲାଯାଇଥିଲା।

ରାଜ୍ୟସଭା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା ପାଇଁ ଆବଶ୍ୟକ ସମର୍ଥକ ଯୋଗାଡ଼ କରିବାରେ ବିଫଳ ହେବାରୁ ସେ କଲିକତା ଚାଲିଯାଉଛନ୍ତି ବୋଲି ପ୍ଲାଟ୍‌ଫର୍ମ୍‌ରେ ଉପସ୍ଥିତ ଥିବା କେତେକ ସାମ୍ବାଦିକ ଓ ବନ୍ଧୁମାନଙ୍କୁ ଶ୍ରୀ ରାୟ କହିଥିଲେ।

ଏପରି ଏକ ଶୁଭଖବର ମୁଖ୍ୟମନ୍ତ୍ରୀଙ୍କୁ ଜଣାଇ ବାଃ ବାଃ ନେବାକୁ ସେଠାରେ ଉପସ୍ଥିତ ଥିବା କେତେକ ଗୁଇନ୍ଦା ଅଫିସର ଉଚିତ ମନେକଲେ। ଏପରି ସମ୍ବାଦରେ ମୁଖ୍ୟମନ୍ତ୍ରୀଙ୍କ ଶିବିରରେ ଆନନ୍ଦ ଲହରୀ ଖେଳିଯାଇଥିଲା। କଲିକତାରେ ଶ୍ରୀ ରାୟଙ୍କ କାର୍ଯ୍ୟକଳାପ ପ୍ରତି ଦୃଷ୍ଟି ରଖିବା ପାଇଁ ଶ୍ରୀ ରାୟ ଯାଉଥିବା ପୁରୀ-ହାଓଡ଼ା ଏକ୍ସପ୍ରେସ୍‌ରେ ଗୁଇନ୍ଦା ଅଫିସର୍‌ମାନଙ୍କୁ ପଠାଯିବା ପାଇଁ ତୁରନ୍ତ ନିର୍ଦ୍ଦେଶ ଦିଆଗଲା।

ଯଥାସମୟରେ ପୁରୀ ଏକ୍ସପ୍ରେସ୍ ଏକନମ୍ବର ପ୍ଲାଟ୍‌ଫର୍ମ୍‌ରେ ଆସି ଲାଗିଲା। ଶ୍ରୀ ରାୟ ତାଙ୍କ ଜିନିଷପତ୍ର ସହିତ ଫାଷ୍ଟକ୍ଲାସ୍ ଏୟାର୍ କଣ୍ଡିସନ୍ କୋଚ୍‌ରେ ପଶିଲେ। ପ୍ଲାଟ୍‌ଫର୍ମରେ ଉପସ୍ଥିତ ଗୁଇନ୍ଦା ଅଫିସର୍‌ମାନେ ଏଥିରେ ଆଶ୍ୱସ୍ତ ହୋଇ ସର୍ବଶେଷ ସମ୍ବାଦ ମୁଖ୍ୟମନ୍ତ୍ରୀଙ୍କୁ ଜଣାଇଦେଇଥିଲେ।

ଶ୍ରୀ ରାୟ ଟ୍ରେନ୍ ଭିତରେ ପଶିବା ପରେ ତାଙ୍କ ଗତିବିଧି ଉପରେ ଲକ୍ଷ୍ୟ ରଖିବା ପାଇଁ ସେ ଟ୍ରେନ୍‌ରେ ଯାଉଥିବା ଗୁଇନ୍ଦା ଅଫିସର ଅନ୍ୟ ଡବାରେ ଯାଇ ଆନନ୍ଦରେ ଶୋଇପଡ଼ିଲେ। ପୁରୀ ଏକ୍ସପ୍ରେସ୍ ଭଦ୍ରକ ଷ୍ଟେସନ୍‌ରେ ପହଞ୍ଚିବା ମାତ୍ରେ ପୂର୍ବ ପ୍ରସ୍ତୁତି ଅନୁଯାୟୀ ଶ୍ରୀ ରାୟ ଟ୍ରେନ୍‌ରୁ ଓହ୍ଲାଇ ରାତ୍ରିର ବିଳମ୍ବିତ ପ୍ରହରରେ କାର୍ ଯୋଗେ ଭୁବନେଶ୍ୱର ଫେରିଆସିଥିଲେ।

ଦିଲୀପ ରାୟ ଯେ ଆଉ ରାଜ୍ୟସଭାକୁ ନିର୍ବାଚିତ ହୋଇପାରିବେ ନାହିଁ, ସେ ବିଷୟରେ ମୁଖ୍ୟମନ୍ତ୍ରୀ ଓ ତାଙ୍କ ତୋଷାମୋଦକାରୀମାନେ ଏକପ୍ରକାର ନିଶ୍ଚିତ ହୋଇଥିଲେ। ରାତିଟି ସୁଖନିଦ୍ରାରେ କଟାଇଲେ। ସେତେବେଳେ ସେମାନେ ସ୍ୱପ୍ନରେ ସୁଦ୍ଧା ଭାବିନଥିଲେ ଯେ, ସକାଳର ସୂର୍ଯ୍ୟୋଦୟ ପରେ ରାତିର ସୁଖ, ବିଷାଦରେ ପରିଣତ ହେବ ବୋଲି।

ପ୍ରାର୍ଥୀପତ୍ର ଦାଖଲର ଶେଷ ସମୟ ଯେତିକି ପାଖେଇ ଆସୁଥିଲା ବିଧାନସଭା ପରିସରରେ କେଜାଣି କାହିଁକି ଏକପ୍ରକାର ଉତ୍ତେଜନା ବୃଦ୍ଧି ପାଉଥିଲା। ସମୟ ଅପରାହ୍ଣ ଗୋଟାଏ ପୂର୍ବରୁ ହଠାତ୍ କୋଳାହଳ ଶୁଣାଗଲା।

କୋଳାହଳର କାରଣ କ'ଣ ବୁଝିଲାବେଳକୁ ଦେଖାଗଲା ଯେ, ଦିଲୀପ ରାୟ ତାଙ୍କ ସମର୍ଥକମାନଙ୍କ ସହିତ ରାଜ୍ୟସଭା ନିର୍ବାଚନର ରିଟର୍ଣ୍ଣିଂ ଅଫିସର, ବିଧାନସଭା ସଚିବଙ୍କ ପ୍ରକୋଷ୍ଠରେ ପ୍ରାର୍ଥୀପତ୍ର ଦାଖଲ ପାଇଁ ଉପସ୍ଥିତ ହେଲେ।

ଏପରି ଏକ ଦୃଶ୍ୟ ସେଠାରେ ଉପସ୍ଥିତ ଥିବା ଗୁଇନ୍ଦା ପୁଲିସ୍ ଅଫିସରମାନଙ୍କ ପାଇଁ ଆଶ୍ଚର୍ଯ୍ୟଜନକ ହୋଇଥଲା। ସେମାନେ ଏପରି ଏକ ସତ୍ୟକୁ ସ୍ୱୀକାର କରିବାକୁ ବାଧ ହୋଇଥିଲେ। ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଏପରି ଏକ ଘଟଣାରେ ଅତ୍ୟନ୍ତ କ୍ଷୁବ୍ଧ ହୋଇଥିଲେ। ଶ୍ରୀ ରାୟଙ୍କ ନାମାଙ୍କନପତ୍ର କିପରି ନାକଚ ହେବ ସେଥିପାଇଁ ତାଙ୍କ ଶିବିରରୁ ଯୋଜନା ହୋଇଥିଲା।

ଦିଲୀପ ରାୟଙ୍କ ମନୋନୟନପତ୍ରକୁ ନାକଚ କରିବା ପାଇଁ ବି.ଜେ.ଡି. ପକ୍ଷରୁ ଯୁକ୍ତି ଦର୍ଶାଯାଉଥିଲା ବେଳେ ଶ୍ରୀ ରାୟଙ୍କ ଆଡ୍‌ଭୋକେଟ୍ ଶିବାନନ୍ଦ ରାୟ ସମସ୍ତ ୧୨ ଜଣ ପ୍ରସ୍ତାବକଙ୍କ ସତ୍ୟପାଠ ରିଟର୍ଣ୍ଣିଂ ଅଫିସରଙ୍କ ନିକଟରେ ଦାଖଲ କରିଥିଲେ।

ଦିଲୀପ ରାୟ ସେ ନିର୍ବାଚନରେ ଅନ୍ୟୁନ ୧୨ଜଣ ବିଜେଡି ବିଧାୟକଙ୍କ ସମର୍ଥନରେ ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ। ରାଜ୍ୟସଭା ନିର୍ବାଚନ ପୂର୍ବରୁ ବିଜେଡି ସାଂସଦୀୟ ଦଳରେ ବିଭାଜନ ହୋଇସାରିଥିଲା । ସେଥିପାଇଁ କେଉଁ ବିଧାୟକମାନେ ଶ୍ରୀ ରାୟଙ୍କ ସପକ୍ଷରେ ମତଦାନ କରିଥିଲେ ତା'ର ସୂଚନା ମିଳିଥିଲା। କିନ୍ତୁ ଦଳଭିତରେ ଏକ ସମ୍ଭାବ୍ୟ ବିଭାଜନକୁ ଏଡ଼ାଇବା ଉଦ୍ଦେଶ୍ୟରେ ଦଳର ସଭାପତି ତଥା ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ସେମାନଙ୍କ ବିରୋଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ସାହସ କରିନଥିଲେ।

ଏକାଧିକ ଦିଗରୁ ବିଚାର କଲେ ୨୦୦୨ ମସିହାର ରାଜ୍ୟସଭା ନିର୍ବାଚନ ନବୀନ ପଟ୍ଟନାୟକଙ୍କ ପାଇଁ ନୈତିକ ପରାଜୟ ଥିଲା। ଦିଲୀପ ରାୟଙ୍କ ସହିତ ସେହି ନିର୍ବାଚନରେ ବିଜେଡି-ବିଜେପି ମେଣ୍ଟରୁ ପ୍ରମିଳା ବହିଦାର, ସୁଶ୍ରୀ ଦେବୀ (ବିଜେଡି) ଓ ସୁରେନ୍ଦ୍ର ଲାଠ (ବିଜେପି) ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ ।

ନିର୍ବାଚନରେ ଜିତି ଦିଲୀପ ରାୟ ରାଜ୍ୟସଭାକୁ ଯାଇଥିଲେ।

କିନ୍ତୁ ସବୁଦିନ ସମସ୍ତଙ୍କର ସମାନ ଯାଏନାହିଁ। ସୃଷ୍ଟିର ନିୟମ ଅନୁସାରେ ପୂର୍ଣ୍ଣମୀ ପରେ ଅମାବାସ୍ୟା ଆସିଥାଏ। ପ୍ୟାରୀବାବୁ କ୍ଷମତା ମୋହରେ ଅନ୍ଧ ହୋଇ ଅନ୍ୟମାନଙ୍କ ପ୍ରତି ଯେଉଁ ଆଚରଣ ପ୍ରଦର୍ଶନ କରିଥିଲେ, ଅନ୍ୟମାନଙ୍କ ଆଖିରୁ ଲୁହ ଗଡ଼ିବାର କାରଣ ହୋଇଥିଲେ ଶେଷରେ ତାଙ୍କୁ ସେହି ଦଶା ଭୋଗ କରିବାକୁ ପଡ଼ିଲା।

ଭାଗବତରେ ଯାହା କୁହାଯାଇଛି, "ଯେ ପାଞ୍ଚେ ପରର ମନ୍ଦ, ତା' ମନ୍ଦ ପାଞ୍ଚନ୍ତି ଗୋବିନ୍ଦ ।" ପ୍ୟାରୀବାବୁଙ୍କ କ୍ଷେତ୍ରରେ ସେଇୟା ହେଲା । ତାଙ୍କୁ ପସନ୍ଦ ଲାଗୁନଥିବା ଏବଂ ତାଙ୍କ ଆନୁଗତ୍ୟ ସ୍ୱୀକାର କରୁନଥିବା ନେତାମାନଙ୍କୁ ନାନାବାଟରେ ହଇରାଣ କରିବା, ସେମାନଙ୍କୁ ବିଜେଡିରୁ ତଡ଼ିବା ପରେ ଶେଷରେ ତାଙ୍କ ପାଳି ପଡିଥିଲା ।

୨୦୦୯ ମସିହା ନିର୍ବାଚନ ପରେ ଶ୍ରୀ ମହାପାତ୍ରଙ୍କର କ୍ଷମତା ପ୍ରତି ଆସକ୍ତି ବୃଦ୍ଧି ପାଇଲା । ନବୀନଙ୍କୁ କ୍ଷମତାରୁ ହଟାଇ ମୁଖ୍ୟମନ୍ତ୍ରୀ ଚଉକି ଦଖଲ ପାଇଁ ସେ ଉଦ୍ୟମ ଆରମ୍ଭ କଲେ । ମାତ୍ର ବିଛାମନ୍ତ୍ର ନଜାଣି ସାପଗାତରେ ହାତ ପୁରାଇଲେ ଯାହା ହେବା କଥା ସେଇୟା ହେଲା ।

ଶ୍ରୀ ମହାପାତ୍ର କ୍ଷମତା ବଳରେ ବଳୀୟାନ ଥିଲେ । ରାଜନୀତିର ଦାଓଁପେଞ୍ଚ ତାଙ୍କୁ ଜଣାନଥିଲା। ଅର୍ଥ ଓ କ୍ଷମତା ବଳରେ ସବୁକଥା ହାସଲ କରାଯାଇପାରିବ ବୋଲି ତାଙ୍କର ବିଶ୍ୱାସ ଥିଲା ।

୨୦୧୨ ମସିହା ମେ ମାସ ୨୯ ତାରିଖ । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ବିଦେଶଗସ୍ତରେ ଲଣ୍ଡନ ଯାଇଥିଲେ । ତାଙ୍କ ଅନୁପସ୍ଥିତିରେ ତାଙ୍କୁ ଗାଦିଚ୍ୟୁତ କରିବା ସହଜସାଧ ହୋଇପାରିବ ବୋଲି ବିଚାରି ପ୍ୟାରୀମୋହନ ଯୋଜନା ପ୍ରସ୍ତୁତ କଲେ । ଯୋଜନା ଅନୁଯାୟୀ ପାଖାପାଖି ପଚାଶ ଜଣ ଅନୁଗତ ବିଧାୟକଙ୍କୁ ତାଙ୍କ ସହିଦନଗର ବାସଭବନକୁ ଡକାଯାଇଥିଲା । ସେଥିରେ ମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ, ମହେଶ୍ୱର ମହାନ୍ତି, ପ୍ରଫୁଲ୍ଲଚନ୍ଦ୍ର ସାମଲ, ବଦ୍ରିନାଥ ପାତ୍ର, ସଞ୍ଜୀବ ସାହୁ, ଅଞ୍ଜଳି ବେହେରାଙ୍କ ସମେତ ବହୁ ବିଧାୟକ ସହାୟତା କରିଥିବା କଥା ପରେ ଜଣାପଡିଥିଲା ।

ବିଧାୟକଙ୍କ ସଂଖ୍ୟା ତିରିଶ ହେବା ପୂର୍ବରୁ ପ୍ୟାରୀଙ୍କ ଯୋଜନା ପ୍ରଘଟ ହୋଇଗଲା । ତାଙ୍କ ଯୋଜନାକୁ ଭଣ୍ଡୁର କରିବା ପାଇଁ ନବୀନଙ୍କ କେତେକ ଅନୁଗତ ସେଠାରେ ପହଞ୍ଚିଗଲେ । ଖବରପାଇ ଏକାଧିକ ଟେଲିଭିଜନ ଚ୍ୟାନେଲ ପ୍ରତିନିଧିମାନେ ମଧ୍ୟ ପ୍ଲଟ ନଂ. ୧୧୧ ସହିଦନଗରରେ ଉପସ୍ଥିତ ହୋଇଗଲେ । ବିଧାୟକମାନଙ୍କ ସଂଖ୍ୟା ସେତିକିରେ ରହିଗଲା ।

ନବୀନବାବୁ ପ୍ୟାରୀଙ୍କ ଷଡ଼ଯନ୍ତ୍ର ସମ୍ପର୍କରେ ଖବର ପାଇ ତାଙ୍କର ବିଦେଶଗସ୍ତକୁ କାଟଛାଣ୍ଟ କରି ଶୀଘ୍ର ଓଡ଼ିଶା ଫେରିଆସିଲେ । ସଂଜୟ ଦାସବର୍ମା, ଅରୁଣ ସାହୁ, ଅତନୁ ସବ୍ୟସାଚୀ ପ୍ରମୁଖ ଯେଉଁ ବିଧାୟକମାନେ ପ୍ୟାରୀଙ୍କ ଇସାରାରେ ଉଠ୍‌ବସ୍ ହେଉଥିଲେ, ସାପ କାତି ଛଡାଇଲା ପରି ସେମାନେ ରାତାରାତି ସେମାନଙ୍କର ରୂପ ବଦଳାଇଦେଲେ ।

ପ୍ୟାରୀଙ୍କ ଅନୁଗତମାନେ କିଭଳି ନବୀନଙ୍କ ଅନୁଗତ ବୋଲି ସାଧାରଣରେ ପତିଆରା ସୃଷ୍ଟି କରିପାରିବେ ସେଥିପାଇଁ ଆରମ୍ଭ ହୋଇଗଲା ପ୍ରତିଯୋଗିତା । ନବୀନ ବିଦେଶରୁ ଫେରିଲା ପରେ ବିମାନ ବନ୍ଦରରେ ତାଙ୍କୁ କିପରି ସମ୍ବର୍ଦ୍ଧନା ଦିଆଯିବ ସେଥିପାଇଁ ସେମାନେ ଲାଗିପଡ଼ିଲେ ।

ନବୀନ ବିଦେଶରୁ ଫେରି ଦିଲ୍ଲୀରେ ଗୋଟିଏ ଦିନ ରହିଲେ । ଭୁବନେଶ୍ୱରରେ ଘଟିଥିବା ଘଟଣା ସମ୍ପର୍କରେ ସବୁ ତଥ୍ୟ ସଂଗ୍ରହ କଲେ । ପ୍ୟାରୀଙ୍କ ବିରୋଧରେ କି ପ୍ରକାର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ସେ ବିଷୟରେ ଅନୁଗତ ସାଂସଦମାନଙ୍କ ସହିତ ପରାମର୍ଶ କଲେ ।

ଭୁବନେଶ୍ୱର ଫେରି ନବୀନ, ପ୍ୟାରୀମୋହନ ମହାପାତ୍ରଙ୍କୁ ଦଳରୁ ବାହାର କରିଦେଲେ । ସେଥି ସହିତ ପ୍ୟାରୀଙ୍କୁ 'ବେଇମାନ' ଓ 'ଚୋର' ବୋଲି କହି ସାଧାରଣରେ ଗାଳିଦେଲେ । ସଞ୍ଜୀବ ସାହୁ ଓ ଅଞ୍ଜଳି ବେହେରାଙ୍କୁ ମନ୍ତ୍ରିମଣ୍ଡଳରୁ ଅନ୍ତର କରିଦେଲେ । ସେମାନଙ୍କ ସହିତ ବିଧାୟକ ପ୍ରଭାତ ବିଶ୍ୱାଳ ଓ ବିଭୂତି ବଳବନ୍ତରାୟଙ୍କୁ ମଧ୍ୟ ଦଳରୁ ବହିଷ୍କାର କରିଦେଲେ ।

ଏହି ଘଟଣାର କିଛିଦିନ ପରେ ମନ୍ତ୍ରିମଣ୍ଡଳରେ ଏକ ବଡ଼ଧରଣର ଅଦଳବଦଳ କରି ପାଞ୍ଚଜଣ ମନ୍ତ୍ରୀଙ୍କୁ ତଡ଼ି ଦେଇଥିଲେ ।

ବିଜେଡିରୁ ବାହାରିଗଲା ପରେ ପ୍ୟାରୀ ସାଧାରଣରେ ନାନା ପ୍ରକାର ତୁମ୍ବିତୋଫାନ କଲେ । "ବିଜେଡିକୁ ମୁଁ ଗଢ଼ିଛି । ବିଜେଡି ମୋ ସଂଗଠନ । ନବୀନ ପଟ୍ଟନାୟକଙ୍କ ପାଖରେ କେହି ନାହାନ୍ତି । ମୁଁ ତାଙ୍କୁ ବାହାର କରିଦେଇ ବିଜେଡ଼ିକୁ ହାତକୁ ନେବି" ଇତ୍ୟାଦି ଇତ୍ୟାଦି ବହୁ କଥା କହି ନିଜର ପତିଆରା ବଜାୟ ରଖିବାକୁ ଚାହିଁଲେ ।

ପ୍ୟାରୀବାବୁ 'ଓଡ଼ିଶା ଜନମୋର୍ଚ୍ଚା'(ଓଜେଏମ୍) ନାମରେ ଗୋଟିଏ ଆଞ୍ଚଳିକ ଦଳ ଗଢ଼ି ତାକୁ ବିଜେଡିର ବିକଳ୍ପ ବୋଲି ପ୍ରଚାର କଲେ । କିଛିଦିନ ପରେ ଓଜେଏମ୍ ଗୋଟିଏ ଫମ୍ପା ମାଠିଆ ବୋଲି ଜଣାପଡିଲା ।

ହାତରୁ କ୍ଷମତା ଚାଲିଯିବା ପରେ ପ୍ୟାରୀବାବୁ ଦନ୍ତହୀନ ବୃଦ୍ଧ ବ୍ୟାଘ୍ର ଭଳି ହୋଇଗଲେ । ୨୦୧୪ ମସିହା ନିର୍ବାଚନ ପୂର୍ବରୁ ଜଣେ, ଦି'ଜଣଙ୍କୁ ଛାଡ଼ିଦେଲେ ଓଜେଏମ୍‌ରେ କେହି ଯୋଗ ଦେଇନଥିଲେ । ନବୀନ ପଟ୍ଟନାୟକଙ୍କ ବିକଳ୍ପ ବୋଲି ଦାବି କରୁଥିବା ପ୍ୟାରୀବାବୁ ତାଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ ଦି'ବର୍ଷ ଭିତରେ ଜଣେ ନିର୍ବାଚିତ ସରପଞ୍ଚଙ୍କୁ ମଧ୍ୟ ତାଙ୍କ ପାଖକୁ ନେବାରେ ସମର୍ଥ ହୋଇପାରିନଥିଲେ । ଅପରପକ୍ଷେ ଭୁବନେଶ୍ୱର ମହାନଗର ନିଗମର ପ୍ରଥମ ମେୟର ମିହିର କୁମାର ମହାନ୍ତି, ଡକ୍ଟର ଶରତ ଚନ୍ଦ୍ର ମିଶ୍ର, ରାଜକିଶୋର ସିଂହ ପ୍ରମୁଖ ତାଙ୍କୁ ଛାଡ଼ି ବିଜେଡିକୁ ଚାଲିଯାଇଥିଲେ ।

ରାଜଧାନୀର ଦୁଇ ନମ୍ବର ୟୁନିଟ୍‌ରେ ମୁଁ ରହୁଥିବା ସରକାରୀ କ୍ୱାଟର୍ସ ଆରପଟେ 'କଂଗ୍ରେସ ଭବନ' । ସେହି କୋଠାରେ ଓଡ଼ିଶା ପ୍ରଦେଶ କଂଗ୍ରେସ ଅଫିସ୍ ରହିଛି । ୧୯୭୨ ମସିହାରେ କଂଗ୍ରେସ ସରକାର ଅମଳରେ ଲକ୍ଷ୍ମଣ ମଲ୍ଲିକ ପୂର୍ତ୍ତମନ୍ତ୍ରୀ ଥିଲାବେଳେ ଏହି କୋଠାଟି ତିଆରି ହୋଇଥିଲା । ଏକଥା ବୋଧହୁଏ କଂଗ୍ରେସ ଦଳର କୌଣସି କର୍ମକର୍ତ୍ତାଙ୍କୁ ମାଲୁମ୍ ନାହିଁ । ତା' ନୋହିଥିଲେ, ଶ୍ରୀ ମଲ୍ଲିକଙ୍କ ଦେହାନ୍ତ ପରେ ସେମାନେ ତାଙ୍କପାଇଁ ସାମାନ୍ୟ ଶୋକସଭାଟିଏ କରିବାକୁ ଭୁଲିନଥାନ୍ତେ ।

ପିଲାଦିନୁ ମୁଁ କଂଗ୍ରେସ ଦଳର ନେତାମାନଙ୍କୁ ଦେଖିଆସିଛି । ସେମାନଙ୍କ ତ୍ୟାଗ, ଉଚ୍ଚାରଣ ଆଚରଣକୁ ପାଖରୁ ଅନୁଧ୍ୟାନ କରିଛି । ମୋ ବଡ଼ଦାଦା (ବାପା)ଅକ୍ଷୟ କୁମାର ଦାସ ଜଣେ ସ୍ୱାଧୀନତା ସଂଗ୍ରାମୀ ଥିଲେ । ମୁକ୍ତି ସଂଗ୍ରାମରେ ମାତି ଜେଲ୍ ଯାଇଥିଲେ ।

କଟକରେ ଆମ ଘର ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଇଁ ଏକ ପ୍ରକାର କ୍ୟାମ୍ପ ଥିଲା । ମଝିରେ ମଝିରେ ଅନେକ ସଂଗ୍ରାମୀ ଆମ ଘରକୁ ଆସୁଥିଲେ । ଆମେ ସାଧମତେ ସେମାନଙ୍କ ଚର୍ଚ୍ଚା କରୁଥିଲୁ । ମୋର ମନେ ପଡୁଛି, ଯେଉଁଦିନ ସନ୍ଧ୍ୟାରେ ଗୌରାଙ୍ଗବାବୁ (ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଗୌରାଙ୍ଗ ଚରଣ ଦାସ) ଆମ ଘରକୁ ଆସୁଥିଲେ, ସେଦିନ ଆମଘରେ

ଦି'ଥର ରୋଷେଇ ହେଉଥିଲା । ଆମ ଘରେ ଅଧିକାଂଶ ଦିନ ରାତିରେ ରୁଟି ଡାଲମା ହୁଏ । ଗୌରାଙ୍ଗବାବୁ ତାଟିଆରେ ଡାଲମା ଖାଆନ୍ତି ନାହିଁ । ବାଁ ହାତରେ କଂସାଟା ଉଠାଇ ପିଇଦିଅନ୍ତି ।

ଗୌରାଙ୍ଗବାବୁଙ୍କ ଡାହାଣ ହାତଟି ଛୋଟ; କହୁଣୀ ପର୍ଯ୍ୟନ୍ତ । ସେଥିପାଇଁ ଲୋକେ ତାଙ୍କୁ ଖଣ୍ଡିଗୌରାଙ୍ଗ ବୋଲି ଡାକୁଥିଲେ । ଗୋଟିଏ ହାତରେ ସେ ସବୁକାମ କରୁଥିଲେ । ସେ କୂଅରୁ ବାଲଟିରେ ପାଣି କାଢ଼ିଲା ବେଳେ ଦେଖିବା କଥା । ବାଁ ହାତରେ କୂଅରୁ ଦଉଡା ଭିଡି ସେ ତାଙ୍କ ଛୋଟିଆ ହାତରେ ଗୁଡେଇ ଦିଅନ୍ତି ।

କଂଗ୍ରେସ ଅଫିସ ଓ ମୋ କ୍ୱାଟର୍ସ ଭିତରେ ବ୍ୟବଧାନ ଗୋଟିଏ ରାସ୍ତା । ଆମ କ୍ୱାର୍ଟର୍ସରେ ଛିଡା ହେଲେ କଂଗ୍ରେସ ଅଫିସ ଭିତରେ କ'ଣ ଘଟୁଛି ସବୁ ଦେଖାଯାଏ । ଗତ ପଚିଶିବର୍ଷ ଭିତରେ କଂଗ୍ରେସ ଭବନ ଭିତରେ ଘଟିଥିବା ଅନେକ ଘଟଣା ମୁଁ ଦେଖିଛି ।

୧୯୯୨ ମସିହା ଫେବୃୟାରୀ ୧୪ ତାରିଖ ଦିନ କଂଗ୍ରେସର ଦୁଇଗୋଷ୍ଠୀ ପରସ୍ପରର ମୁହାଁମୁହିଁ ହେବାପରେ ସେମାନଙ୍କ ଭିତରେ କିପରି ରକ୍ତାକ୍ତ ସଂଘର୍ଷ ହୋଇଥିଲା, ସେ ଦୃଶ୍ୟ ମୁଁ ଏ ପର୍ଯ୍ୟନ୍ତ ଭୁଲି ପାରିନାହିଁ ।

ସନ୍ଧ୍ୟାର ବିଳମ୍ବିତ ପ୍ରହରରେ କଂଗ୍ରେସ ଭବନ ହତା ଭିତରେ କିପରି ଉଦ୍‌ଭ୍ରାନ୍ତ ଯୁବକମାନଙ୍କର ଆଡ୍ଡା ହୁଏ, ଶୋଭାଯାତ୍ରା କିମ୍ବା ବିକ୍ଷୋଭର ଆୟୋଜନ ହେଲେ କିପରି ଅସାମାଜିକ ମଦ୍ୟପ ଯୁବକମାନେ ସେଠାରେ ଆସି ଜମା ହୁଅନ୍ତି, ସେସବୁ ଦୃଶ୍ୟକୁ ମୁଁ ପାଖରୁ ଦେଖିଛି ।

ଖଦୀବସ୍ତ୍ର ପରିଧାନ କଂଗ୍ରେସ ନେତାମାନଙ୍କର ଏକ ପରିଚୟ ଥିଲା । ଗାନ୍ଧୀ ଟୋପି ସେମାନଙ୍କର ମର୍ଯ୍ୟାଦା ବଢ଼ାଉଥିଲା । ମାତ୍ର ସମୟ ବଦଳିବା ସହିତ କଂଗ୍ରେସ ଲୋକେ ସେମାନଙ୍କର ଆଦର୍ଶ ଓ ପରମ୍ପରାକୁ ବୁଡ଼େଇଦେଲେଣି । କଂଗ୍ରେସ ଲୋକ ଆଉ ଖଦୀ ପିନ୍ଧୁ ନାହାନ୍ତି । ଆଜିକାଲିର ତଥାକଥିତ ନେତାମାନେ ବଙ୍ଗଳା କିମ୍ବା ହୋଟେଲ ନହେଲେ ରହୁନାହାନ୍ତି । କୁକୁଡ଼ା ନହେଲେ ଖାଉନାହାନ୍ତି । ମଦ ନହେଲେ ପିଉନାହାନ୍ତି । ଲୋକେ ସେମାନଙ୍କୁ ଆଉ ଶ୍ରଦ୍ଧା ବା ଭକ୍ତି କରୁନାହାନ୍ତି । ଅନେକେ ସେମାନଙ୍କୁ ଟାଉଟର ଆଖ୍ୟା ଦେଲେଣି ।

୧୯୯୯ ମସିହା ମହାବାତ୍ୟା ପରେ ବାତ୍ୟାକ୍ଲିଷ୍ଟ ଲୋକଙ୍କ ପାଇଁ ଅନ୍ୟାନ୍ୟ ରାଜ୍ୟରୁ ଲୁଗାପଟା, ବାସମତୀ ଚାଉଳ, କମ୍ବଳ ବୋଝେଇ ହୋଇ ଆସିଥିବା ଟ୍ରକକୁ କିପରି କିଛି କଂଗ୍ରେସ ଲୋକ ଲୁଟ୍ କରିନେଇଥିଲେ ସେକଥା ମଧ୍ୟ ମୁଁ ଦେଖିଛି ।

୨୦୧୨ ମସିହାର ଘଟଣା । ନିରଞ୍ଜନ ପଟ୍ଟନାୟକ ପ୍ରଦେଶ କଂଗ୍ରେସ କମିଟିର ସଭାପତି ହେବାପରେ ଏକ ପରିବର୍ତ୍ତନର ଡାକରା ଦେଇଥିଲେ । ତାଙ୍କର ଡାକରାରେ

ଭୁବନେଶ୍ୱର ଠାରେ ଗୋଟିଏ ବିକ୍ଷୋଭର ଆୟୋଜନ ହୋଇଥିଲା । ସେ ବିକ୍ଷୋଭ ପରେ ଶାସନରେ ପରିବର୍ତ୍ତନ ପାଇଁ ଲୋକଙ୍କ ପାଖକୁ ଗୋଟିଏ ବାର୍ତ୍ତା ଯାଇଥିଲା ।

ବିକ୍ଷୋଭ ଦିନ ପୁଲିସର ମାତ୍ରାଧିକ କାର୍ଯ୍ୟାନୁଷ୍ଠାନର ପ୍ରତିବାଦ କରାଯାଇ 'ଓଡ଼ିଶାବନ୍ଦ' ଡାକରା ଦିଆଯାଇଥିଲା । ସେ ବନ୍ଦ ଶାନ୍ତିପୂର୍ଣ୍ଣ ଥିଲା । ଓଡ଼ିଶାର ସର୍ବତ୍ର ତାହା ସଫଳ ହୋଇଥିଲା । ଦୀର୍ଘଦିନ ଶାସନ କ୍ଷମତାରେ ଥିବା ନବୀନ ପଟ୍ଟନାୟକଙ୍କ ବିରୋଧରେ କଂଗ୍ରେସ ଦଳର ବିକ୍ଷୋଭ ଓ ଓଡ଼ିଶାବନ୍ଦ ଏକ ପରିବର୍ତ୍ତନର ବାତାବରଣ ସୃଷ୍ଟି କରିଥିଲା ।

ଶ୍ରୀ ପଟ୍ଟନାୟକଙ୍କ ନେତୃତ୍ୱରେ ଲୋକେ ପରିବର୍ତ୍ତନ ଆଡକୁ ମୁହାଁଉଥିଲା ବେଳେ କେନ୍ଦ୍ରମନ୍ତ୍ରୀ ଥିବା ଶ୍ରୀକାନ୍ତ (ଚକ୍ରାନ୍ତ) ଜେନା ଓ ଅନ୍ୟମାନଙ୍କ ପ୍ରରୋଚନାରେ ପଡି କଂଗ୍ରେସ ଦଳର 'ହାଇକମାଣ୍ଡ' ନେତୃତ୍ୱ ପରିବର୍ତ୍ତନ କରିଦେଲେ ।

ସେଦିନ ଥିଲା ଅକ୍ଷୟ ତୃତୀୟା । ଶ୍ରୀ ପଟ୍ଟନାୟକ ରାଜ୍ୟର ବିଭିନ୍ନ ସ୍ଥାନରୁ କିଛି ନେତାମାନଙ୍କୁ କଂଗ୍ରେସରେ ଯୋଗଦାନ ପାଇଁ କଂଗ୍ରେସ ଭବନରେ ଗୋଟିଏ ସଭାର ଆୟୋଜନ କରିଥିଲେ । ସେ ନିଜେ ଗୋଟିଏ ଗ୍ରାମକୁ ଯାଇ ଅକ୍ଷିମୁଠି ଚାଳନା କରୁଥିବା ବେଳେ ତାଙ୍କୁ କିଛି ନଜଣାଇ ତାଙ୍କ ସ୍ଥାନରେ ଜୟଦେବ ଜେନାଙ୍କୁ ଆଣି କଂଗ୍ରେସ ସଭାପତି ଭାବରେ ବସାଇ ଦିଆଗଲା । ଏହି ଘଟଣା ରାଜ୍ୟର ଅଗଣିତ କଂଗ୍ରେସପ୍ରେମୀଙ୍କ ମନରେ ଦାରୁଣ ଆଘାତ ଦେଇଥିଲା ।

ଜୟଦେବ ଜେନାଙ୍କର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ସହିତ ଭିତିରି ବୁଝାମଣା ଥିବା ସମ୍ପର୍କରେ ଆଗରୁ ଶୁଣାଯାଇଥିଲା । ଶ୍ରୀ ଜେନା ପ୍ରଦେଶ କଂଗ୍ରେସ ସଭାପତି ହେବା ପରେ ତାଙ୍କ କାର୍ଯ୍ୟକଳାପରୁ ସେ କଥା ସ୍ପଷ୍ଟ ହୋଇଗଲା ।

କେନ୍ଦ୍ରରେ ମନ୍ତ୍ରୀ ଥିବା ଶ୍ରୀକାନ୍ତ ଓ ଜୟଦେବ ମିଶି 'ଜେନା ବ୍ରଦର୍ସ' ନାମରେ ଗୋଟିଏ ଗୋଷ୍ଠୀ ଗଠନ କଲେ । ଶ୍ରୀକାନ୍ତ ଜନତା ଦଳରେ ଥିଲାବେଳେ କଂଗ୍ରେସ ନେତା ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହିତ ଗୋପନ ସମ୍ପର୍କ ରଖିଥିଲେ ।

କଂଗ୍ରେସ ଦଳରେ ଆସି ଶରଣ ପଶିଲା ପରେ ଗୋପନରେ ବିଜେଡ଼ି ସୁପ୍ରିମୋ ନବୀନ ପଟ୍ଟନାୟକଙ୍କ ସାଙ୍ଗରେ ସମ୍ପର୍କ ଯୋଡିଲେ । ଏହି ସମ୍ପର୍କ ଭିତ୍ତିରେ ୨୦୦୯ ମସିହା ଲୋକସଭା ନିର୍ବାଚନରେ ଶ୍ରୀକାନ୍ତଙ୍କ ବିରୋଧରେ ନବୀନ ପଟ୍ଟନାୟକ ବାଲେଶ୍ୱର ଲୋକସଭା ଆସନରେ ବିଜେଡି ପକ୍ଷରୁ ପ୍ରାର୍ଥୀ ଛିଡା କରାଇ ନଥିଲେ । ନିର୍ବାଚନ ମଇଦାନରେ ଶଙ୍ଖଚିହ୍ନ ଅନୁପସ୍ଥିତିରେ ଶ୍ରୀ ଜେନା ସ୍ୱଚ୍ଛ ଭୋଟରେ ଜିତିଥିଲେ ।

୨୦୧୪ ମସିହା ନିର୍ବାଚନରେ 'ଜେନାବ୍ରଦର୍ସ' ଦଳୀୟ ପ୍ରାର୍ଥୀ ଓ ଦଳର ବୃହତ୍ତର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ବ୍ୟକ୍ତିସ୍ୱାର୍ଥରେ ମାତିଗଲେ । ନବୀନଙ୍କ ସାଙ୍ଗରେ ସେମାନଙ୍କର ଗୋପନ ବୁଝାମଣା ହୋଇଗଲା ।

କେତେକ ଆସନରେ ବିଜେଡି ପ୍ରାର୍ଥୀଙ୍କର ଜିତିବାର ସମ୍ଭାବନାକୁ ଆଖିଆଗରେ ରଖି କଂଗ୍ରେସ ଦଳ ପକ୍ଷରୁ ଅପେକ୍ଷାକୃତ ଦୁର୍ବଳ ପ୍ରାର୍ଥୀ ଛିଡା କରାଗଲା । ଅନ୍ୟୂନ ପଚିଶଟି ଆସନକୁ ନିଲାମ କରିଦିଆଗଲା । ପ୍ରତ୍ୟେକ ନିଲାମର ମୂଲ୍ୟ ଦଶଲକ୍ଷରୁ କୋଟିଏ ଟଙ୍କା ପର୍ଯ୍ୟନ୍ତ ଯାଇଥିବା କଥା ଶୁଣାଯାଇଥିଲା । ଦଳୀୟ ଟିକଟ୍ ବିକ୍ରି ସଂକ୍ରାନ୍ତରେ ପୂର୍ବତନ ମୁଖ୍ୟମନ୍ତ୍ରୀ ହେମାନନ୍ଦ ବିଶ୍ୱାଳ ଓ ପୂର୍ବତନ ମନ୍ତ୍ରୀ ସୀତାକାନ୍ତ ମହାପାତ୍ର ଖୋଲାଖୋଲି ଭାବରେ ଅଭିଯୋଗ କଲେ । ସେ ଅଭିଯୋଗକୁ ଖଣ୍ଡନ କରିବାକୁ କେହି ସାହସ କଲେନାହିଁ ।

ଏହାର ଫଳ ଯାହା ହେବା କଥା ତାହା ହିଁ ହେଲା । କଂଗ୍ରେସ ବିଧାୟକ ଦଳର ସଂଖ୍ୟା ୨୭ରୁ ୧୬କୁ ଖସିଆସିଲା । 'ଜେନାବ୍ରଦର୍ସ' ମଧ୍ଯ ସେମାନଙ୍କ କର୍ମର ଫଳ ପାଇଲେ । ସେମାନଙ୍କ କାର୍ଯ୍ୟ ଯୋଗୁ ଲୋକେ ସେମାନଙ୍କୁ ପ୍ରତ୍ୟାଖ୍ୟାନ କଲେ ।

ମାତ୍ର ଦଳର ହାଇକମାଣ୍ଡଙ୍କର ସେମାନେ ଗେହ୍ଲା ପୁଅ ହୋଇରହିଲେ । ନିର୍ବାଚନରେ ଦଳର ବିପର୍ଯ୍ୟୟ ପରେ ବି ପ୍ରଦେଶ କଂଗ୍ରେସ ନେତୃତ୍ୱ ବଦଳିଲା ନାହିଁ । ଲୋକଙ୍କ ଭାବନାକୁ ହାଇକମାଣ୍ଡ ଉପଲବ୍ଧ କରିପାରିଲେ ନାହିଁ ।

ଜେନା ବ୍ରଦର୍ସ କ୍ଷମତାରେ ଥାଇ କନ୍ଧମାଳ ଲୋକସଭା ଆସନରେ ଉପନିର୍ବାଚନ ହେଲା । ଗତ ୨୦୧୪ ସାଧାରଣ ନିର୍ବାଚନ ସମୟରେ ସେଠାରେ କଂଗ୍ରେସ ପ୍ରାର୍ଥୀ ପରାଜିତ ହୋଇଥିଲେ ମଧ୍ୟ କଂଗ୍ରେସ ଦଳ ଦ୍ୱିତୀୟ ସ୍ଥାନରେ ଥିଲା । ମାତ୍ର ଉପନିର୍ବାଚନରେ କଂଗ୍ରେସ ଦଳ ତିନି ନମ୍ବର ସ୍ଥାନକୁ ଖସି ଆସିଲା । ଦଳୀୟ ପ୍ରାର୍ଥୀ ଅମାନତ ହରାଇଲେ । ଗୋଟିଏ ୧୨୯ ବର୍ଷର ଦଳ ପକ୍ଷରେ ଏହାଠାରୁ ଅଧିକ ଲଜ୍ଜାଜନକ ସ୍ଥିତି ଆଉ କ'ଣ ହୋଇପାରେ ?

# ଭୁଲି ନାହିଁ

ଛାତ୍ର ଦିନଠାରୁ ସାମ୍ବାଦିକ ଜୀବନର ସଂଗ୍ରାମ ପର୍ଯ୍ୟନ୍ତ ଅନେକ ଘଟଣା, ଅଘଟଣ ମୋ ଜୀବନରେ ଘଟିଛି । ସେସବୁ ମଧ୍ୟରୁ କେତେକ ପାଶୋରି ଗଲିଣି । ଆଉ କିଛି ଘଟଣା ମୋ ଜୀବନକୁ ପ୍ରଭାବିତ କରିଥିଲା । ସେସବୁ ଏବେବି ମୋ ମନ ଭିତରେ ତାଜା ରହିଛି ।

ଆମେ ସ୍କୁଲ କଲେଜରେ ପଢ଼ିଲା ବେଳେ ଆର୍ଥିକ ସ୍ୱଚ୍ଛଳତା ନଥିବା ପରିବାର, ପିଲାଙ୍କୁ ମାସିକ ଫିସ୍ ଛାଡ଼ କରାଯାଉଥିଲା । ସେଥିପାଇଁ ସଂପୃକ୍ତ ଲୋକପ୍ରତିନିଧି(ବିଧାୟକ)ଙ୍କ ସୁପାରିସର ଆବଶ୍ୟକ ପଡୁଥିଲା ।

୧୯୫୭ ମସିହାର ଘଟଣା । ମୁଁ ଖ୍ରୀଷ୍ଟ କଲେଜରେ ପଢୁଥିଲି । ସେତେବେଳେ ଆମ ଗାଁ' ଗୋବିନ୍ଦପୁର ନିର୍ବାଚନମଣ୍ଡଳୀର ଅନ୍ତର୍ଭୁକ୍ତ ଥିଲା । ବିଧାୟକ ଥିଲେ ନୀଳମଣି ପ୍ରଧାନ । ସେ ବିଧାନସଭା ସାମନାରେ ଥିବା କ୍ୱାଟର୍ସରେ ରହୁଥିଲେ । ମୁଁ ଦିନେ ସାଇକେଲରେ ଯାଇ ଭୁବନେଶ୍ୱରରେ ତାଙ୍କୁ ତାଙ୍କ କ୍ୱାଟରରେ ଦେଖାକଲି । ସେ ଟିକେ ଚିଡ଼ା ପ୍ରକୃତିର ଥିଲେ । ମତେ ଦେଖି ଚିଡ଼ି ଗଲେ । କହିଲେ, "ଚିହ୍ନା ନାହିଁ କି ପରିଚୟ ନାହିଁ । ଚାଲିଆସିଲା ସାର୍ଟିଫିକେଟ୍ ପାଇଁ । ତମ ଗାଁ' କୋଉଠି ? ମୁଁ ତମକୁ ଚିହ୍ନି ନାହିଁ, ସାର୍ଟିଫିକେଟ୍ ମିଳିବ ନାହିଁ ।"

ମନଦୁଃଖରେ ମୁଁ ଫେରି ଆସୁଥିଲି । ସେ କ'ଣ ଭାବିଲେ କେଜାଣି, ମତେ ପଛରୁ ଡାକିଲେ । କହିଲେ, "କୋଉ ଗାଁ' କହିଲୁ ? ମଇନ୍ଦପୁର ? ମଇନ୍ଦପୁରର ଅକ୍ଷୟକୁ ଚିହ୍ନିଛୁ ? ମୁଁ କହିଲି ମୁଁ ତାଙ୍କ ପୁତୁରା । ତାଙ୍କର ପାଖରେ ରହି ପଢୁଛି ।"

"ଆଗରୁ ଚିହ୍ନା ଦେଲୁ ନାହିଁ କାହିଁକି ? କୋଉଥିରେ ଆସିଛୁ ? ଭାତ ଖାଇନଥିବୁ ? ହଉ, ରହ ।" ଶ୍ରୀ ପ୍ରଧାନଙ୍କର ଏତେଗୁଡାଏ ପ୍ରଶ୍ନରେ ମୁଁ ଏକପ୍ରକାର ଅଣନିଃଶ୍ୱାସୀ ହୋଇଯାଇଥିଲି । ସେ ମତେ ଅଟକାଇଲେ । ହାତରେ ରୋଷେଇ କରୁଥିଲେ । ଭାତ, ଡାଲମା ନିଜେ ଖାଇଲେ । ମତେ ଖୁଆଇଲେ । ସେ ଦିନର ସେ ଖାଇବା ଖୁବ୍ ସୁଆଦିଆ ହୋଇଥିଲା ।

ଖାଇସାରିବା ପରେ ଶ୍ରୀ ପ୍ରଧାନ ଗୋଟିଏ ସାଦା କାଗଜରେ "ମୁଁ ବନ୍ୟାଞ୍ଚଳରୁ ଆସିଛି । ଆମର ପରିବାରର ଆର୍ଥିକ ସ୍ଥିତି ଭଲ ନାହିଁ । ମତେ କଲେଜ ଦରମା ଛାଡ କରାଯାଉ" ବୋଲି ଲେଖି ମତେ ଧରେଇ ଦେଲେ । ଆସିଲା ବେଳେ ଟଙ୍କିକିଆ କଏନଟିଏ ଦେଲେ । ସେ ଦିନର ଶ୍ରୀ ପ୍ରଧାନଙ୍କ ବ୍ୟବହାର ମୋ ମନକୁ ଗଭୀର ଭାବେ ପ୍ରଭାବିତ କରିଥିଲା ।

ପରବର୍ତ୍ତୀ ସମୟରେ ଶ୍ରୀ ପ୍ରଧାନଙ୍କ ପୁଅ ଅନ୍ତର୍ଯ୍ୟାମୀ ପ୍ରଧାନ ଗୋବିନ୍ଦପୁରର ବିଧାୟକ ହୋଇଥିଲେ । ମୁଁ ତାଙ୍କୁ ତାଙ୍କ ବାପାଙ୍କ ହାତଲେଖା ସାର୍ଟିଫିକେଟ୍‌ଟି ଦେଖାଇଥିଲି । ସେ ତାକୁ ଦେଖି ଆନନ୍ଦରେ ବିଭୋର ହୋଇଯାଇଥିଲା ।

୧୯୫୯ ମସିହା ମେ ମାସ ୨୨ ତାରିଖରେ କଂଗ୍ରେସ ଦଳ ଓ ଗଣତନ୍ତ୍ର ପରିଷଦକୁ ନେଇ ରାଜ୍ୟରେ ଗୋଟିଏ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ଡକ୍ଟର ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ଥିଲେ । ସେ ସମୟରେ ସେକ୍ରେଟାରିଏଟ୍‌ରେ ଏତେ ଗହଳିଚହଳି ନଥିଲା । ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବା ପାଇଁ କସରତ କରିବାକୁ ପଡୁ ନଥିଲା ।

କଟକ ନୂଆବଜାର ଅଞ୍ଚଳର ତିନିଘରିଆ ଗାଁ'ର ସୂର୍ଯ୍ୟମଣି ଖୁଣ୍ଟିଆ କ୍ରାଏଷ୍ଟ କଲେଜରେ ମୋର ସହପାଠୀ ଥିଲା । ତା' ଭାଇ ନୀଳମଣି ଖୁଣ୍ଟିଆ, ମୁଖ୍ୟମନ୍ତ୍ରୀଙ୍କର ସ୍ପେଶାଲ ଅଫିସର ଥିଲେ । ମୁଁ ଓ ସୂର୍ଯ୍ୟମଣି ଦିନେ ଭୁବନେଶ୍ୱର ଯାଇଥିଲୁ । ସେ ପ୍ରସ୍ତାବ ଦେଲେ, "ଚାଲ ସେକ୍ରେଟାରିଏଟ୍ ଯିବା । ଭାଇଙ୍କୁ ଦେଖାକରି ଫେରିବା ।"

ଆମେ ଯାଇ ସୂର୍ଯ୍ୟମଣି ଭାଇଙ୍କୁ ଦେଖାକଲୁ । ସୂର୍ଯ୍ୟମଣିର ସାଙ୍ଗ ଭାବରେ ସେ ମତେ ଜାଣିଥିଲେ । ଦେଖି ଖୁସି ହୋଇଗଲେ । କ୍ୟାଣ୍ଟିନରୁ ଜଳଖିଆ ମଗେଇ ଖାଇବାକୁ ଦେଲେ, ମତେ କହିଲେ, "ବୁଢ଼ା ଏକଲା ଅଛନ୍ତି । ତାଙ୍କୁ ଟିକିଏ ଦେଖା କରୁନ ।"

ମୁଁ ଯାଇ ଡକ୍ଟର ମହତାବଙ୍କୁ ଦେଖୁଦେଖୁ ସେ କହିଲେ, "କେତେବେଳେ ଆସିଲ ? ହଁ ଶୁଣ । ଆମ ସରକାର ଆଉ ଅଳ୍ପଦିନେ ଭାଙ୍ଗିଯିବ । ତମର ବହିପତ୍ର ନଥିବ । ନୀଳମଣି ପାଖରୁ କିଛି ଟଙ୍କା ନେଇଯାଅ ।"

ମୁଁ ଡକ୍ଟର ମହତାବଙ୍କ କଥାରୁ କିଛି ବୁଝି ପାରିନଥିଲି । ହେଲେ ତାଙ୍କୁ କିଛି ନକହି ନୀଳମଣିବାବୁଙ୍କୁ ଦେଖାକଲି । ସେ କହିଲେ, "ମୁଖ୍ୟମନ୍ତ୍ରୀଙ୍କ ହାତପାଣ୍ଠି( ବର୍ତ୍ତମାନ ମୁଖ୍ୟମନ୍ତ୍ରୀଙ୍କ ରିଲିଫ ପାଣ୍ଠି)ରେ କିଛି ଟଙ୍କା ଅଛି । ସେ ଯାହାକୁ ଚାହିଁବେ ଦେଇପାରିବେ । ତମେ କଲେଜରେ ପଢୁଛ । ତମର ବହିପତ୍ର ନାହିଁ । ତମକୁ ମୁଖ୍ୟମନ୍ତ୍ରୀଙ୍କ ହାତପାଣ୍ଠିରୁ କିଛି ଟଙ୍କା ମିଳୁ ବୋଲି ଖଣ୍ଡେ ଦରଖାସ୍ତରେ ଲେଖିଦିଅ ।"

ନୀଳମଣିବାବୁ କହିବା ମୁତାବକ ମୁଁ ସାଦା କାଗଜରେ ଦରଖାସ୍ତ ଖଣ୍ଡିଏ ଲେଖିଦେଲି । ସେ ମୋ ଦରଖାସ୍ତଟି ନେଇ ମୁଖ୍ୟମନ୍ତ୍ରୀଙ୍କ କୋଠରୀକୁ ଗଲେ । ଦଶମିନିଟ୍ ଭିତରେ ଫେରି ଆସି ମତେ ତିନିଶହ ଟଙ୍କା ଥିବା ଲଫାପାଟିଏ ଦେଲେ ।

ସେ ଦିନର ଡକ୍ଟର ମହତାବଙ୍କର ସେ ସାହାଯ୍ୟ ଯୋଗୁ ତାଙ୍କ ପ୍ରତି ମୋର ଭକ୍ତି ବହୁଗୁଣରେ ବଢ଼ିଯାଇଥିଲା । ମୁଁ ଏ ପର୍ଯ୍ୟନ୍ତ ସେ କଥାକୁ ଭୁଲିନାହିଁ ।

ଘଟଣାକ୍ରମେ ୧୯୬୬ ମସିହା ସେପ୍ଟେମ୍ବର ମାସରେ ମୁଁ ଦୈନିକ 'ଜନଶକ୍ତି'ରେ ଜଣେ ସାମ୍ବାଦିକ ଭାବରେ ଯୋଗ ଦେଇଥିଲି । ଜନକଲ୍ୟାଣ ପବ୍ଲିକେଶନ ଟ୍ରଷ୍ଟ ଆନୁକୂଲ୍ୟରେ ଜନଶକ୍ତି ପ୍ରକାଶ ପାଉଥିଲା । ବୀରେନ ମିତ୍ର ସେତେବେଳକୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ବାଖରାବାଦରେ ଶୈଳେନ ରାୟଙ୍କ 'ପିତୃଶତ୍ରୁ' ଘରେ ରହୁଥିଲେ । ଶ୍ରୀ ମିତ୍ରଙ୍କୁ ସମସ୍ତେ 'ଦାଦା' ବୋଲି ଡାକୁଥିଲେ ।

କିଛିଦିନ ପରେ ଦାଦା ମତେ ଡାକି ତାଙ୍କ ରାଜନୈତିକ କାର୍ଯ୍ୟରେ ସାହାଯ୍ୟ କରିବାକୁ କହିଲେ । ମୋର ଇଛା ନଥିଲା । କିନ୍ତୁ ଦାଦାଙ୍କ କଥାକୁ ଟାଳି ଦେଇପାରିନଥିଲି ।

ଦାଦାଙ୍କର ପ୍ରତିଦିନ ଦି'ଓଳି ଦରବାର ହୁଏ । ସନ୍ଧ୍ୟା ଦରବାର ସରିଲାବେଳକୁ ଦିନେଦିନେ ରାତି ଏଗାରଟା ହୋଇଯାଏ । ଦାଦାଙ୍କ ଘରେ ଅନ୍ୟମାନେ ଶୋଇଯାଇଥାନ୍ତି । କେବଳ ରୋଷେୟା ଅପେକ୍ଷା କରିଥାଏ । ଦାଦା ରାତିରେ ଦି'ଖଣ୍ଡ ପରଟା, ତା' ସାଙ୍ଗରେ ଅଳ୍ପ ମାଂସ ଖାଆନ୍ତି । ଦରବାର ସରିଲେ ତାଙ୍କ ପାଇଁ ଖାଇବା ତିଆରି ହୁଏ ।

ରାତିରେ ମୁଁ ସାଇକେଲରେ ବାହାରିଲା ବେଳେ ଦାଦା ମତେ ଅଟକାନ୍ତି । ସାଙ୍ଗରେ ଖାଇବାକୁ ଡାକନ୍ତି । ମୁଁ କହେ, "ଦେଖନ୍ତୁ ପୁଝାରୀ ଦି'ଖଣ୍ଡ ପରଟା ପାଇଁ ଅଟା ଦଳିକରି ରଖିଛି । ସେଥିରୁ ଆପଣ କ'ଣ ଖାଇବେ, ଆଉ ମୁଁ କ'ଣ ଖାଇବି ? ବରଂ ଆପଣ ଖାଆନ୍ତୁ । ମୁଁ ଘରେ ଯାଇ ଖାଇବି ।"

"ଘରେ କ'ଣ ତୋର ପିଲା, ମାଇକିନା ଅଛନ୍ତି ଯେ, ତୋ ପାଇଁ ଗରମ ଗରମ ଖାଇବା ରଖି ଅପେକ୍ଷା କରିଥିବେ । ତତେ ଏଠୁ ସାଇକେଲରେ ଯିବା ପାଇଁ ଅତି କମ୍‌ରେ ଅଧଘଣ୍ଟାଏ ସମୟ ଲାଗିବ । ପେଟରେ କିଛି ପଡ଼ି ଯାଇଥିଲେ ଆଉ କିଛି ହେଲେ ଭଲ, ନହେଲେ ନାହିଁ। ମୁଁ ଅନେକଥର ଦାଦାଙ୍କ ସାଙ୍ଗରେ ଖାଇଛି । ପୁଝାରୀ ଏଥିରେ ଆବାକ୍ ହୋଇଯାଏ । ଶେଷରେ ସେ ଦୁଇଖଣ୍ଡ ପରଟା ଜାଗାରେ ଚାରିଖଣ୍ଡ ପରଟା ପାଇଁ ଅଟା ଦଳିଲା । କିଛିଦିନ ଭିତରେ ଏହା ଏକ ନିତିଦିନିଆ ଘଟଣାରେ ପରିଣତ ହୋଇଗଲା ।

ଜୀବନରେ ଅନେକ ରାଜନେତାଙ୍କ ସଂସ୍ପର୍ଶରେ ଆସିଛି । ମାତ୍ର ଦାଦାଙ୍କ ପରି ସହୃଦୟ ବ୍ୟକ୍ତି ମୁଁ ଅନ୍ୟତ୍ର ଦେଖିନାହିଁ । ପର ଦୁଃଖରେ ଦୁଃଖୀ ହେବା, ଅନ୍ୟର ଅସହାୟତାରେ ସାହାଯ୍ୟ କରିବା, ଦାଦାଙ୍କର ଗୋଟିଏ ଈଶ୍ୱରଦତ୍ତ ଗୁଣ ଥିଲା । ସେଥିରେ ଛଳନା କିମ୍ବା ଆବିଳତା ନଥିଲା । ଜୀବନରେ ମୁଁ ଦାଦାଙ୍କୁ ଭୁଲିପାରିନାହିଁ ।

୧୯୬୫ ମସିହା ବେଳକୁ ଓଡ଼ିଶାର କଳାହାଣ୍ଡି ଜିଲ୍ଲାରେ ମରୁଡି ଯୋଗୁଁ ବ୍ୟାପକ ଫସଲହାନି ଘଟିଲା । ଖାଦ୍ୟ ବିନା ଚାରିଆଡ଼େ ହାହାକାର ପଡ଼ିଗଲା । ଅନାହାରରେ ଲୋକେ

ମରିବାକୁ ବସିଲେ । ସେପରି ପରିସ୍ଥିତି ବଲାଙ୍ଗୀର ଓ ସମ୍ବଲପୁରର କେତେକ ଅଞ୍ଚଳକୁ ବ୍ୟାପୀ ଥିଲା ।

ଭବାନୀଚରଣ ପଟ୍ଟନାୟକ ସେତେବେଳେ ରାଜ୍ୟସଭା ସଦସ୍ୟ ଥିଲେ । ସେଥିସହିତ 'ଭାରତ ସେବକ ସମାଜ'ର ଓଡ଼ିଶା ଶାଖାର ଅଧ୍ୟକ୍ଷ ମଧ୍ୟ ରହିଥିଲେ । ଏକ ସମୟରେ ଓଡ଼ିଶାରେ କଂଗ୍ରେସ ନେତାମାନଙ୍କ ଭିତରେ ତାଙ୍କ ସ୍ଥାନ ତୃତୀୟରେ ଥିଲା ।

ରାଜନୈତିକ କାରଣରୁ ସେତେବେଳକୁ ବୀରେନ୍ ମିତ୍ର ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ । ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ ହୋଇଥିଲେ । ପ୍ରଶାସନକୁ ଠିକ୍ ବାଟରେ ଚଳାଇବାର ଦକ୍ଷତା ଶ୍ରୀ ତ୍ରିପାଠୀଙ୍କର ନଥିଲା । ସେଥିପାଇଁ ଓଡ଼ିଶାର ପଶ୍ଚିମାଞ୍ଚଳରେ ସୃଷ୍ଟି ହୋଇଥିବା ଦୁର୍ଭିକ୍ଷ ଭଳି ପରିସ୍ଥିତିକୁ ରୋକା ଯାଇପାରିନଥିଲା । ଦିନକୁ ଦିନ ମୃତ୍ୟୁ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଲା ।

ପରିସ୍ଥିତି ଅନୁଧ୍ୟାନ କରିବାକୁ ଶ୍ରୀ ପଟ୍ଟନାୟକ ବାହାରିଲେ । ମୁଁ ଲ' ପଢୁଥିଲି । ତାଙ୍କ ସାଙ୍ଗରେ ଦେଖାହୋଇଗଲା । ତାଙ୍କ ସାଙ୍ଗରେ ଯାଇପାରିବି କି ନାହିଁ ପଚାରିଲେ ? କଲେଜ ବନ୍ଦ ଥିଲା । ମୁଁ ତାଙ୍କ ସାଙ୍ଗରେ ବାହାରିଲି ।

ସେ ସମୟରେ ଓଡ଼ିଶାରେ ରାସ୍ତାଘାଟର ଉନ୍ନତି ହୋଇ ନଥିଲା । ସବୁଜାଗାକୁ କାର୍ ଯିବା ସମ୍ଭବପର ନଥିଲା । ସେ ଗୋଟିଏ ଜୀପ୍ ଧରିଲେ । ନିଜେ ଚଲେଇଲେ । ଲେଫ୍ଟହାଣ୍ଡ ଡ୍ରାଇଭ୍ । ଗାଡ଼ିର ଡାହାଣ ପଟେ ମୁଁ । ପଛରେ ତାଙ୍କର ଗୋଟିଏ ବେଡିଂ । ମୋର ଗୋଟିଏ ବ୍ୟାଗ୍ । ସାଙ୍ଗରେ ଗୁଡ, ବିସ୍କୁଟ ଇତ୍ୟାଦି କିଛି ଖାଦ୍ୟ ପଦାର୍ଥ ଥିଲା । ଆମେ ପ୍ରାୟ ପନ୍ଦର ଦିନ କାଳ ବିଭିନ୍ନ ଅଞ୍ଚଳ ବୁଲିଥିଲୁ । ଲୋକଙ୍କ ଅବସ୍ଥା ଦେଖି ପରିସ୍ଥିତିର ଆକଳନ କଲୁ ।

ସେଠାରୁ ଫେରି କିଛି ବନ୍ଧୁଙ୍କୁ ଧରି କିଛି ଖାଦ୍ୟ ପଦାର୍ଥ ସହ ମୁଁ ପୁଣି ବାହାରିଲି । ମୋ ସାଙ୍ଗରେ ଥିଲେ ତ୍ରିଲୋଚନ କାନୁନ୍‌ଗୋ, ଚୌଧୁରୀ ପ୍ରତାପ କେଶରୀ ମିଶ୍ର, ପୂର୍ଣ୍ଣଚନ୍ଦ୍ର ସିଂହ, ନିରୋଦ ମହାନ୍ତି, ଅମିତାଭ ବାଗଚୀ ପ୍ରମୁଖ ।

ଆମକୁ ଚାଲିଚାଲି ଯିବାକୁ ପଡୁଥିଲା । ଦିନକୁ ଖୁବ୍ କମ୍‌ରେ କୋଡିଏ କିଲୋମିଟର । ସନ୍‌ଷ୍ଟ୍ରୋକ୍‌ରୁ ବଞ୍ଚିବା ପାଇଁ ଆମେ ପକେଟରେ ଓଲିପିଆଜ ଓ କାଗେଜି ଲେମ୍ବୁ ରଖୁଥିଲୁ ।

ପରିସ୍ଥିତିର ମୁକାବିଲା ପାଇଁ ପ୍ରଶାସନିକ କଳ ମାନସିକସ୍ତରରେ ପ୍ରସ୍ତୁତ ନଥିଲେ । ପରିସ୍ଥିତି ସମ୍ପର୍କରେ ଠିକ୍ ଖବର ଭୁବନେଶ୍ୱରରେ ପହଞ୍ଚୁନଥିଲା । ସବୁ ଠିକ୍ ଚାଲିଛି । ପରିସ୍ଥିତି କ୍ରମେ ସୁଧୁରୁଛି ବୋଲି ସ୍ଥାନୀୟ ଅଫିସରମାନେ ଉପରକୁ ଖବର ପଠାଉଥିଲେ ।

ଆମେ ସେ ଅଞ୍ଚଳରୁ ଫେରିଆସି ବୀରେନ୍ ଦା'(ପୂର୍ବତନ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର)ଙ୍କୁ ସବୁକଥା କହିଲୁ । ଲୋକଙ୍କ ଦୁର୍ଦ୍ଦଶା କଥା ଶୁଣି ସେ କାନ୍ଦି ପକାଇଲେ । ଆମକୁ କହିଲେ, ତମେ ସବୁ ଯାଇ ବିଜୁ(ବିଜୁ ପଟ୍ଟନାୟକ)ଙ୍କୁ ସବୁ କଥା କହ । ସେ ଚାହିଁଲେ ଅନେକ କଥା କରିହେବ ।

ଦାଦା ଫୋନ କରି ଶ୍ରୀ ପଟ୍ଟନାୟକଙ୍କ ସାଙ୍ଗରେ କଥାବାର୍ତ୍ତା ପାଇଁ ଟାଇମ୍ ଫିକ୍ସ କରିଦେଲେ । ପରଦିନ ନିର୍ଦ୍ଧାରିତ ସମୟରେ ଆମେ ଚାରିଜଣ ମୁଁ, ତ୍ରିଲୋଚନ, ପୂର୍ଣ୍ଣ ଓ ନିରୋଦ ବିଜୁ ପଟ୍ଟନାୟକଙ୍କୁ ତାଙ୍କ ଆନନ୍ଦ ଭବନ ବାସଭବନରେ ଦେଖାକଲୁ । ସେ ସେତେବେଳେ ରାଜ୍ୟ ଯୋଜନାବୋର୍ଡର ଅଧ୍ୟକ୍ଷ ଥିଲେ ।

ମୁଁ ସେଦିନ ଲକ୍ଷ୍ୟକଲି ପ୍ରଥମଥର ପାଇଁ ଶ୍ରୀ ପଟ୍ଟନାୟକ ଦୀର୍ଘ ଦୁଇଘଣ୍ଟା କାଳ ଧୈର୍ଯ୍ୟର ସହିତ ବସି ଆମ କଥା ଶୁଣିଲେ । ଶେଷରେ କହିଲେ, "Get ready. Tomorrow you will talk to Orissa government."

ତା'ପରେ କଂଗ୍ରେସ ବିଧାୟକ ଦଳର ସଂପାଦକ ପ୍ରତାପଚନ୍ଦ୍ର ମହାନ୍ତିଙ୍କୁ ଫୋନ ଲଗାଇ କହିଲେ, "ପ୍ରତାପ, ଏ ପିଲାମାନଙ୍କୁ କାଲି ସେକ୍ରେଟାରିଏଟ୍‌କୁ ନେବୁ । ସେମାନେ କାଲି ରାଜ୍ୟ ସରକାରଙ୍କ ସହିତ କଥାବାର୍ତ୍ତା କରିବେ । ହଁ, ମନେରଖ, ସେମାନଙ୍କୁ ଭଲ ହୋଟେଲରେ ଖୁଆଇକରି ନେବୁ ।"

ସେତେବେଳେ ଭଲ ହୋଟେଲ କହିଲେ 'ରାଜମହଲ ହୋଟେଲ'କୁ ବୁଝାଉଥିଲା । ପ୍ରତାପବାବୁ ଆମକୁ ନେଇ ସେଠାରେ ଖୁଆଇଲେ । ତା'ପରେ ସେକ୍ରେଟାରିଏଟ୍‌କୁ ଗଲୁ । ଆମକୁ କ୍ୟାବିନେଟ୍ ରୁମ୍ ଭିତରକୁ ନିଆଗଲା । ତାହା ପରିଷଦର ଏକ ବ୍ୟତିକ୍ରମ ଥିଲା । କାରଣ କ୍ୟାବିନେଟ୍ ରୁମ୍ ଭିତରକୁ ଯିବାର ଅଧିକାର କେବଳ ମନ୍ତ୍ରିପରିଷଦର ସଦସ୍ୟ ଓ ସଂପୃକ୍ତ ସଚିବ କିମ୍ବା ସେମାନଙ୍କର କ୍ଷମତାପ୍ରାପ୍ତ ଅଧିକାରୀମାନଙ୍କର ରହିଛି ।

ଆମେ କ୍ୟାବିନେଟ୍ ରୁମ୍‌ରେ ପହଞ୍ଚିବା ପୂର୍ବରୁ ସ୍ୱାସ୍ଥ୍ୟମନ୍ତ୍ରୀ ଡକ୍ଟର ପି.ଭି ଜଗନ୍ନାଥ ରାଓ, ଆଦିବାସୀ ଓ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଟୋୟକା ସାଙ୍ଗନା, କୃଷିମନ୍ତ୍ରୀ ରାମପ୍ରସାଦ ମିଶ୍ର, ଜଳସେଚନ, ଶକ୍ତି ଓ ରାଜସ୍ୱମନ୍ତ୍ରୀ ପ୍ରହ୍ଲାଦ ମଲ୍ଲିକ, ଗ୍ରାମ୍ୟ ଗୋଷ୍ଠୀ ଉନ୍ନୟନ ଉପମନ୍ତ୍ରୀ ଅନୁପ ସିଂହଦେଓ ପ୍ରମୁଖ ସେଠାରେ ପହଞ୍ଚି ସାରିଥିଲେ । ସେମାନଙ୍କ ସାଙ୍ଗରେ ଚିଫ୍ ସେକ୍ରେଟାରୀ ଆଲଫ୍ରେଡ୍ କେନିଥ ବ୍ୟାରେନ, ସ୍ୱାସ୍ଥ୍ୟ ସଚିବ, କୃଷି ସଚିବ, ରାଜସ୍ୱ ସଚିବ ଓ ଅନ୍ୟ ଅଫିସରମାନେ ଉପସ୍ଥିତ ଥିଲେ ।

ଠିକ୍ ଚାରିଟାବେଳେ ମୁଖ୍ୟମନ୍ତ୍ରୀଙ୍କୁ ସାଙ୍ଗରେ ଧରି ବିଜୁ ପଟ୍ଟନାୟକ କ୍ୟାବିନେଟ୍ ରୁମ୍‌ରେ ପ୍ରବେଶ କଲେ । ସେ ରୁମ୍‌ରେ ସମ୍ପୂର୍ଣ୍ଣ ନୀରବତା ବିରାଜମାନ କରୁଥିଲା । ଏକ ଅଜଣା ଆଶଙ୍କାରେ ସମସ୍ତେ ଚୁପ୍‌ଚାପ ବସିଥିଲେ ।

ବିଜୁବାବୁ ପ୍ରଥମେ ପ୍ରସଙ୍ଗ ଆରମ୍ଭ କରି କହିଲେ,

"These are our young friends. They have spent about fifteen days in drought affected areas and have made detailed study about the prevailing situation there. They will narrate their experience and you people get ready to reply to their querries."

ଶ୍ରୀ ପଟ୍ଟନାୟକଙ୍କ ଇଙ୍ଗିତରେ ଆମେ ଘଟଣାର ଅବତାରଣା କଲୁ । ବାସ୍ତବ ସ୍ଥିତି ଓ ସରକାରୀ ନିଷ୍ପତ୍ତି ମଧ୍ୟରେ ଥିବା ତାରତମ୍ୟ ସମ୍ପର୍କରେ ଏକ ବିସ୍ତୃତ ଚିତ୍ର ପ୍ରଦାନ କଲୁ । ଖଡିଆଳ ପାଖରେ ଗୋଟିଏ ଡାକବଙ୍ଗଳାରେ ଏକ ଅସ୍ଥାୟୀ ଡାକ୍ତରଖାନା ଚାଲୁଥିବା ସମ୍ପର୍କରେ ସରକାରୀ ଅଫିସରମାନେ ଗୋଟିଏ ରିପୋର୍ଟ ଦାଖଲ କରିଥିଲେ । ବାସ୍ତବ କ୍ଷେତ୍ରରେ ସେଠାରେ ଡାକ୍ତରଖାନାର ଚିହ୍ନବର୍ଣ୍ଣ ନଥିଲା । ଦୁଇଦିନ ତଳେ ଆମେ ସେ ବଙ୍ଗଳାରେ ରହିଥିଲୁ । ବିଶେଷଜ୍ଞ ଡାକ୍ତରମାନଙ୍କ ଅନୁପସ୍ଥିତିରେ ଲୋକେ କିପରି ଆବଶ୍ୟକ ଚିକିତ୍ସାରୁ ବଞ୍ଚିତ ହେଉଛନ୍ତି ସେ ବିଷୟ ଆମେ ପ୍ରକାଶ କରିଥିଲୁ ।

ସବୁକଥା ଶୁଣି ଶ୍ରୀ ପଟ୍ଟନାୟକଙ୍କର ମୁଡ୍ ଅଫ ହୋଇଯାଇଥିଲା । ସେ ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀଙ୍କୁ ପଚାରିଲେ, "କଳାହାଣ୍ଡି ଜିଲ୍ଲାକୁ ବିଶେଷଜ୍ଞ ଡାକ୍ତରମାନେ କାହିଁକି ଯାଇନାହାନ୍ତି ?"

ଶ୍ରୀ ତ୍ରିପାଠୀ ଚିରାଚରିତ ରୀତିରେ ଉତ୍ତର ଦେଇ କହିଲେ, "ସରକାର ଡାକ୍ତରମାନଙ୍କର ବଦଳି କରିଛନ୍ତି । ସେମାନେ ଯିବାକୁ ରାଜି ହେଉନାହାନ୍ତି । ସରକାର ଆଉ କ'ଣ କରି ପାରିବେ ?" ବାସ୍, ମୁଖ୍ୟମନ୍ତ୍ରୀଙ୍କର ଏଇ ଗୋଟିଏ ବାକ୍ୟ ଶ୍ରୀ ପଟ୍ଟନାୟକଙ୍କ ଧୈର୍ଯ୍ୟଚ୍ୟୁତି ପାଇଁ ଯଥେଷ୍ଟ ଥିଲା । ସେ ମୁଖ୍ୟମନ୍ତ୍ରୀଙ୍କୁ ଲକ୍ଷ୍ୟକରି କହିଲେ, "What a wretched Chief Minister who can not transfer his doctors. You close down all the three medical colleges and ask all professors to join in kalahandi within twentyfour hours or else sack them."

ବିଜୁ ପଟ୍ଟନାୟକଙ୍କ କ୍ରୋଧ ପ୍ରଶମିତ ହୋଇ ନଥିଲା । ସେ ସ୍ୱାସ୍ଥ୍ୟମନ୍ତ୍ରୀଙ୍କୁ କ୍ରୋଧାନ୍ୱିତ ଭାବରେ କହିଲେ, "Mr. Rao, you have no business to be here in Bhubaneswar. Get ready to fly with me to kalahandi tomorrow. If I don't find the temporary hospital functioning at Kharial, I will just throw all your officers to Bay of Bengal."

ସେଦିନର କଥାବାର୍ତ୍ତାରେ ଭୁବନେଶ୍ୱରରେ ଗ୍ରହଣ କରାଯାଉଥିବା ସରକାରୀ ନିଷ୍ପତ୍ତି ଯେ, କାର୍ଯ୍ୟରେ ପରିଣତ ହେଉନାହିଁ, ସେ ବିଷୟରେ ଶ୍ରୀ ପଟ୍ଟନାୟକଙ୍କର ହୃଦ୍‌ବୋଧ ହୋଇଥିଲା । ଶ୍ରୀ ପଟ୍ଟନାୟକଙ୍କ ପ୍ରତ୍ୟକ୍ଷ ହସ୍ତକ୍ଷେପ ଫଳରେ ଅଳ୍ପଦିନ ମଧ୍ୟରେ ପରିସ୍ଥିତି ସୁଧୁରିଥିଲା । ଅନେକ ଲୋକଙ୍କୁ ମୃତ୍ୟୁମୁଖରୁ ରକ୍ଷା କରାଯାଇପାରିଥିଲା ।

ଲୋକଙ୍କ ଦୁର୍ଦ୍ଦଶା ଦୂର କରିବାରେ ଗୁଣ୍ଡୁଚିମୂଷା ଭଳି ଆମେ ସାମାନ୍ୟ ସହଯୋଗ କରିଥିବାରୁ ଗଭୀର ଆତ୍ମସନ୍ତୋଷ ଲାଭ କରିଥିଲୁ ।

ସମସ୍ତ ପ୍ରକାର ପ୍ରଚଳିତ ନିୟମ ଓ ପରମ୍ପରାକୁ ପଛରେ ପକାଇ ଆମେ ସେଦିନ ଯେଉଁଭଳି ଭାବରେ କ୍ୟାବିନେଟ୍ ରୁମ୍‌ରେ ରାଜ୍ୟ ସରକାରଙ୍କ ସହିତ ଖୋଲାମନରେ ଆଲୋଚନା କରିଥିଲୁ ଦୀର୍ଘଦିନ ପରେ ମଧ୍ୟ ସେ କଥା ମନରୁ ପାସୋର ଯାଇନାହିଁ ।

ଆଉ ଦିନକର କଥା । ୧୯୮୯ ମସିହା ସେପ୍ଟେମ୍ବର ମାସ ଛଅ ତାରିଖ । ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ଥିବା ସମୟର ଘଟଣା । କେନ୍ଦ୍ରସରକାର ସମ୍ବାଦପତ୍ର ଉପରେ ଅଙ୍କୁଶ ଲଗାଇବା ଉଦ୍ଦେଶ୍ୟରେ ଗୋଟିଏ ବିଲ୍ ଆଗତ କରିଥିଲେ । ଏହାକୁ ବିରୋଧ କରି ଦିଲ୍ଲୀର 'ଇଣ୍ଡିଆ ଗେଟ୍' ସାମନାରେ ଗୋଟିଏ ବଡ଼ ଧରଣର ବିକ୍ଷୋଭର ଆୟୋଜନ ହୋଇଥିଲା । ସେଥିରେ 'ଇଣ୍ଡିଆନ ଏକ୍ସପ୍ରେସ'ର ମାଲିକ ରାମନାଥ ଗୋଏଙ୍କା, 'ଷ୍ଟେଟସମ୍ୟାନ' ହାଉସ ପକ୍ଷରୁ ସି.ଆର. ଇରାନୀଙ୍କ ସମେତ ବିଖ୍ୟାତ ସ୍ତମ୍ଭକାର ଖୁସୱନ୍ତ ସିଂହ ପ୍ରମୁଖ ଯୋଗଦେଇଥିଲେ ।

ସେହି ସମୟରେ ମୁଁ ଦିଲ୍ଲୀ ଯାଇଥିଲି । ମୁଁ ଦିଲ୍ଲୀ ଗଲେ 'ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘ' ଅଫିସକୁ ଯାଏ । ସେଥର ମଧ୍ୟ ଯାଇଥିଲି । ମୁଁ ସେତେବେଳେ ମହାସଂଘର ଉପସଭାପତି ଥିଲି । ସଭାପତି ଦିଲ୍ଲୀରେ ନଥିବାରୁ ମହାସଂଘ ପକ୍ଷରୁ ମତେ ବିକ୍ଷୋଭରେ ଯୋଗଦେବାକୁ ଅନୁରୋଧ କରାଗଲା । ମୁଁ ଯାଇ ଇଣ୍ଡିଆ ଗେଟ୍ ପାଖରେ ପହଞ୍ଚିବା ବେଳକୁ ଅନେକ ଲୋକ ରୁଣ୍ଡ ହୋଇସାରିଥିଲେ । ଯେଉଁମାନଙ୍କ ପାଦ କେବେ ମାଟିରେ ପଡ଼ିନଥିଲା, ଯେଉଁମାନଙ୍କ ଗୋଡ଼ରେ ଧୂଳି ବାଜି ନଥିଲା, ସେମାନଙ୍କୁ ସେଠାରେ ଦେଖି ମୁଁ ନିଶ୍ଚିତ ହୋଇଯାଇଥିଲି ।

ଖବରକାଗଜ ମାଲିକ ଶ୍ରୀ ଗୋଏଙ୍କା, ଶ୍ରୀ ଇରାନୀ ପ୍ରମୁଖଙ୍କ ଜୀବନ ଶୀତତାପ ନିୟନ୍ତ୍ରିତ କୋଠରୀରେ କଟିଛି । ବାତାନୁକୂଳିତ କାର ବ୍ୟତୀତ ଅନ୍ୟ କାର ସେମାନେ ଦେଖିନାହାନ୍ତି । ଘଟଣାଚକ୍ରରେ ଦିନେ ଯେ ସେମାନଙ୍କୁ ଅନ୍ୟମାନଙ୍କ ସହିତ ଖୋଲା ମଇଦାନରେ ବିକ୍ଷୋଭ କରିବାକୁ ପଡ଼ିବ, ସେକଥା ସେମାନେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ ।

ସମସ୍ତେ ଆସିଯିବା ପରେ ବିକ୍ଷୋଭ ଆରମ୍ଭ ହେଲା । ସେତେବେଳକୁ ସକାଳ ନଅଟା ବାଜି ଯାଇଥିଲା । ବିକ୍ଷୋଭ ପୂର୍ବରୁ ଶ୍ରୀ ଗୋଏଙ୍କା, ଶ୍ରୀ ଇରାନୀ ପ୍ରମୁଖ ଝାଉଁଳି ପଡ଼ିଥିଲେ ।

ଦିଲ୍ଲୀ ମହଲରେ ମୁଁ ପରିଚିତ ନଥିଲି । କିନ୍ତୁ ବିକ୍ଷୋଭର ନେତୃତ୍ୱ ନେବା ଫଳରେ ସମସ୍ତଙ୍କ ଦୃଷ୍ଟି ମୋ ଉପରେ ପଡ଼ିଥିଲା । ବିକ୍ଷୋଭ ପରେ 'ବୋଟ କ୍ଲବ'ରେ ଏକ ପ୍ରତିବାଦ ସଭାର ଆୟୋଜନ ହୋଇଥିଲା । ସେ ସଭାକୁ ଚନ୍ଦ୍ରଶେଖର ଓ ବିଜୁ ପଟ୍ଟନାୟକଙ୍କୁ ଡକାଯାଇଥିଲା । ସେ ଦି'ଜଣ ପାର୍ଲାମେଣ୍ଟ ସଦସ୍ୟ ଥିଲେ ।

ସେମାନେ ଗାଡ଼ିରୁ ଓହ୍ଲାଇ ଚାଲିଚାଲି ଆସୁଥିଲେ । ବାଟରେ ଭେଟ ହୋଇଗଲା । ବିଜୁବାବୁ ମୋ କାନ୍ଧରେ ହାତ ପକାଇ କହିଲେ, "କିରେ, କୋଉଦିନ ଆସିଛୁ । ଆଉସବୁ କିଏ ଆସିଛନ୍ତି ?"

ବିଜୁ ପଟ୍ଟନାୟକଙ୍କର ଦିଲ୍ଲୀରେ ଖୁବ୍ ପ୍ରତିଷ୍ଠା ଥିଲା । ତାଙ୍କର ସେଇ କେଇପଦ କଥା ମୋ ପାଇଁ ଯଥେଷ୍ଟ ଥିଲା । ସଭାକୁ ଯାଉଥିବା ଅନେକ ସାମ୍ବାଦିକ ମୋ ଆଡ଼କୁ ଚାହିଁଲେ

ଏବଂ ସେମାନଙ୍କ ଭିତରେ କଥା ଚାଲିଲା । ଏ ଲୋକ କିଏ ? ଯାହା କାନ୍ଧରେ ବିଜୁ ପଟ୍ଟନାୟକ ହାତ ରଖି ଚାଲିଲେ ।

କୁସୁମ ପରଶେ ପଟ ନିସ୍ତରେ ଭଳି ବିଜୁ ପଟ୍ଟନାୟକଙ୍କ ଭଳି ବ୍ୟକ୍ତିତ୍ୱଙ୍କ ସାନ୍ନିଧ ମିଳିବା ପରେ ସେଦିନ ମୋର ସମ୍ମାନ ବଢ଼ିଯାଇଥିଲା । ସେଦିନର ଘଟଣାକୁ ମୁଁ ଭୁଲିପାରିନାହିଁ ।

ଓଡ଼ିଶାର ରାଜନେତାମାନଙ୍କ ଭିତରେ ନୀଳମଣି ରାଉତରାୟ ଭାରି ଭଦ୍ର ଲୋକ । କାହାରି କଥା ଭାଙ୍ଗି ପାରନ୍ତି ନାହିଁ । ଥରେ ଜଣକୁ ସାହାଯ୍ୟ କରିବା ପାଇଁ ମନସ୍ଥିର କଲେ ଆଉ ପଛାନ୍ତି ନାହିଁ । କିନ୍ତୁ ସବୁକଥାକୁ ନିୟମରେ ପକାଇ କରନ୍ତି ।

ଓଡ଼ିଶାରେ ଦୀର୍ଘ ସମୟ ଧରି ଶ୍ରୀ ରାଉତରାୟ ଉପମନ୍ତ୍ରୀ, କ୍ୟାବିନେଟ୍ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓ ଶେଷରେ କେନ୍ଦ୍ରମନ୍ତ୍ରୀ ହୋଇଥିଲେ । ହେଲେ ତାଙ୍କ ବିରୋଧରେ କୌଣସି ଅଭିଯୋଗ ଶୁଣାଯାଏ ନାହିଁ ।

'ଅମୃତ ବଜାର' ପତ୍ରିକାର ମାଲିକ ଘୋଷ ପରିବାର ସହିତ ମୋର ଭଲ ସମ୍ପର୍କ ଥିଲା । ପତ୍ରିକାର ସଂପାଦକ ତୁଷାରକାନ୍ତ ଘୋଷଙ୍କର ନାତୁଣୀ ବୋହୂ ସୁବର୍ଣ୍ଣା ଘୋଷ ଓଡ଼ିଆ ଝିଅ । ତାଙ୍କ ଘର ଅନୁଗୁଳ ନିକଟ ବଣିଆବାହାଲ ଗାଁ'ରେ । ସେ ରେଭେନ୍ସା କଲେଜରୁ ବିଏ ପାସ୍ କରି ଆହ୍ଲାବାଦରେ ପଢୁଥିଲା ବେଳେ ସେଠାରେ ଅଧକ୍ଷ ରହିଥିବା ଶ୍ରୀ ଘୋଷଙ୍କ ନାତି ତୁହିନକାନ୍ତି ଘୋଷଙ୍କ ସହିତ ପରିଚୟ ହୋଇଥିଲା । ପରେ ସେମାନେ ବିବାହ କରିଥିଲେ ।

ଶ୍ରୀମତୀ ଘୋଷ ମାଲିକଙ୍କ ପରିବାରର । ମୁଁ ଜଣେ ସ୍ୱଳ୍ପ ବେତନଭୋଗୀ କର୍ମଚାରୀ । ନୀତି ଦୃଷ୍ଟିରୁ ବିଚାର କଲେ ଖାଦକ ଓ ଖାଦ୍ୟର ସମ୍ପର୍କ ହେବା କଥା । କିନ୍ତୁ ଆମର ସମ୍ପର୍କ ଭିନ୍ନ ଥିଲା । ସେ ମତେ କର୍ମଚାରୀ ଭାବରେ ନଦେଖି ଜଣେ ବନ୍ଧୁ ଭାବରେ ବିଚାରୁଥିଲେ ।

ସେ ଓଡ଼ିଆ ଭାଷାରେ ଓଡ଼ିଶାର ବିଭିନ୍ନ ବିଭବ ଉପରେ କେତେକ ଡକୁମେଣ୍ଟାରୀ ଫିଲ୍ମ କରିଥିଲେ । ସେଥିରେ ମୁଁ ତାଙ୍କୁ ସାହାଯ୍ୟ କରିଥିଲି । ସେ ସାହାଯ୍ୟ ସେ ଭୁଲି ନଥିଲେ ।

ପରେ ସ୍ନେହ (ସୋସାଇଟି ଫର୍ ଏଡୁକେଶନ ଆଣ୍ଡ ହେଲ୍‌ଥ) ନାମରେ ଗୋଟିଏ ସ୍ୱେଚ୍ଛାସେବୀ ସଂଗଠନ ଗଢ଼ିଥିଲେ । ସେଥିରେ ମତେ ସଂପୃକ୍ତ କରିଥିଲେ । ଥରେ ତାଙ୍କର କେନ୍ଦ୍ର ଜଙ୍ଗଲ ଓ ପରିବେଶ ବିଭାଗରେ ଗୋଟିଏ କାମ ପଡ଼ିଲା ।

ଶ୍ରୀ ରାଉତରାୟ ସେ ବିଭାଗର କ୍ୟାବିନେଟ୍ ମନ୍ତ୍ରୀ ଥିଲେ । ସେ ରେଭେନ୍ସା କଲେଜରେ ଅଧ୍ୟୟନ ସମୟରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବିବୁଧେନ୍ଦ୍ର ମିଶ୍ରଙ୍କ ସାଙ୍ଗରେ ମିଶି ୟୁନିଅନ ଜ୍ୟାକ(ବ୍ରିଟିଶ ସରକାରଙ୍କ ପତାକା)କୁ ଓହ୍ଲାଇ ତ୍ରିରଙ୍ଗା ପତାକା ଉଡ଼ାଇ ଦେଇଥିଲେ । ସେହି ଅପରାଧରେ ଉଭୟଙ୍କୁ କଲେଜରୁ ବାହାର କରିଦିଆଯାଇଥିଲା । ଶ୍ରୀ ରାଉତରାୟ କଲିକତା ଯାଇ ସେଠାରେ ଅଧ୍ୟୟନ କରିଥିଲେ । ସେହି ସମୟରେ ଶ୍ରୀମତୀ ଘୋଷଙ୍କ ବାପା ବସନ୍ତ କୁମାର ମିଶ୍ର କଲିକତାରେ ଚାକିରୀ କରୁଥିଲେ । ଶ୍ରୀ ରାଉତରାୟ ଶ୍ରୀ ମିଶ୍ରଙ୍କ ଦ୍ୱାରା ଉପକୃତ ହୋଇଥିଲେ ।

ଶ୍ରୀମତୀ ଘୋଷ ଓ ମୁଁ ଦିଲ୍ଲୀ ଗଲୁ । ନୀଳମଣିବାବୁଙ୍କ ସେକ୍ରେଟାରୀ ଥିଲେ ସିଦ୍ଧାର୍ଥ ପ୍ରଧାନ । ତାଙ୍କ ଘର କଟକରେ । ସେ ଇନକମ୍ ଟାକ୍ସ ବିଭାଗର ଅଫିସର । ମାତ୍ର ସେ ନିଜ ବିଭାଗ ଅପେକ୍ଷା ଅନ୍ୟତ୍ର କାମ କରିବାରେ ଆନନ୍ଦ ପାଉଥିଲେ । ସେ ମତେ ଜାଣିଥିଲେ ।

ମୁଁ ଦିଲ୍ଲୀରେ ପହଞ୍ଚି ଶ୍ରୀ ପ୍ରଧାନଙ୍କ ସହିତ ଫୋନ ଯୋଗେ କଥାବାର୍ତ୍ତା କଲି । ନୀଳମଣିବାବୁଙ୍କ ସହିତ ସାକ୍ଷାତ କରାଇଦେବା ବଦଳରେ "ମନ୍ତ୍ରୀ ବ୍ୟସ୍ତ ଅଛନ୍ତି, ଦେଖାହୋଇ ପାରିବ ନାହିଁ" ବୋଲି ରୋକ୍‌ଠୋକ୍ ଶୁଣାଇଦେଲେ ।

ଶ୍ରୀ ପ୍ରଧାନଙ୍କ ବ୍ୟବହାର ମତେ ଖୁବ୍ ଆଘାତ ଦେଇଥିଲା । ମୁଁ ନିଷ୍ପତ୍ତି କଲି, ଦିଲ୍ଲୀ ଆସିଛୁ ଯେତେବେଳେ ନୀଳମଣିବାବୁଙ୍କ ସାଙ୍ଗରେ ସାକ୍ଷାତ ନକରି ଫେରିବି ନାହିଁ ।

ମୁଁ ଗୋଟାଏ ଉପାୟ ପାଞ୍ଚିଲି । ଖୁବ୍ ସକାଳୁ ଗୋଟିଏ ଅଟୋ ଧରି ତାଙ୍କ କ୍ୱାଟର୍ସକୁ ଗଲି । କିଛି ଦୂରରେ ଅଟୋଟି ରଖି ଚାଲିଚାଲି ଗଲି । ଗେଟରେ ପୁଲିସ ଜଗୁଆଳୀ ଥିଲେ । ସେମାନେ ମତେ କିଛି ପଚାରିବା ପୂର୍ବରୁ ମୁଁ ସେମାନଙ୍କୁ ପଚାରିଲି, "ସାହେବ ମର୍ଣ୍ଣିଂ ୱାକ୍‌ସେ ୱାପସ ଆୟେ ? ମୁଝେ ଚା' ପିନେ କେ ଲିୟେ ବୁଲାୟେ ଥେ ।"

ମୋ କଥାକୁ ସେମାନେ ବିଶ୍ୱାସ କରିଥିଲେ । କହିଲେ, "ସାହେବ ଅଭି ଆନେ ବାଲେ ହେଁ । ଆପ ଥୋଡ଼ା ରୁକ ଜାୟିୟେ ।"

ଆମ କଥା ଅଧା ହୋଇଛି, ନୀଳମଣିବାବୁ ମର୍ଣ୍ଣିଂ ୱାକରୁ ଫେରିଲେ । ମତେ ଦେଖି ସାଙ୍ଗରେ ଭିତରକୁ ନେଇଗଲେ । ମୁଁ ତାଙ୍କୁ ସବୁକଥା କହିଲି ।

ସେ କହିଲେ, "ତୁ ତାଙ୍କୁ (ମିସେସ୍ ଘୋଷ) ସାଙ୍ଗରେ ନେଇ ଆ । ଏଠାରେ ଜଳଖିଆ ଖାଇବା । ମୁଁ ଅପେକ୍ଷା କରିଥିବି ।

ମୁଁ 'ଓଡ଼ିଶା ଭବନ' ଫେରି ମିସେସ ଘୋଷଙ୍କ ସହିତ ନୀଳମଣିବାବୁଙ୍କ କ୍ୱାଟର୍ସକୁ ଗଲି । ସେ ନିଜ ହାତରେ ଜଳଖିଆ ବାଢ଼ିଲେ । ମିସେସ ଘୋଷଙ୍କୁ ବାଧକରି ମିଠା ଖୁଆଇଲେ । ସେ ମିଠା ଖୁଆଉଥିଲା ବେଳେ ସିଦ୍ଧାର୍ଥ ପ୍ରଧାନ ସେଠାରେ ପହଞ୍ଚିଥିଲେ । ମନ୍ତ୍ରୀ ମିଠା ଖୁଆଉଥିବା ଦେଖି ସେ ଅବାକ୍ ହୋଇଯାଇଥିଲେ ।

ସେ ଭାବି ନଥିଲେ ଯେ ନୀଳମଣିବାବୁଙ୍କ ସହିତ ଆମର ଏତେ ଘନିଷ୍ଠ ସମ୍ପର୍କ ଥିଲା । ସାଙ୍ଗେସାଙ୍ଗେ ତାଙ୍କ ବ୍ୟବହାର ବଦଳିଗଲା । ମତେ ଦେଖି କହିଲେ, "ବସନ୍ତବାବୁ, ଆପଣ ମିନିଷ୍ଟରଙ୍କୁ ଦେଖା କରିବେ ବୋଲି କହୁଥିଲେ । କାହିଁ ଆସିଲେ ନାହିଁ ? କ'ଣ କାମ ଅଛି କହୁନାହାନ୍ତି !"

ତାଙ୍କ ମୁଖା ଖୋଲି ଦେଇ ଅପମାନିତ କରିବାକୁ ଇଚ୍ଛା ହେଉଥିଲା । କିନ୍ତୁ ମନକୁ ବୁଝାଇ ଦେଲି । ଏମାନେ ସରକାରୀ ଗୋଲାମ । ହାକିମଙ୍କ ମର୍ଜିରେ ଚଳନ୍ତି । ହାକିମଙ୍କ

ଖୁସିରେ ସେମାନଙ୍କର ଖୁସି । ନିଜର ବିବେକ ବୋଲି କିଛି ନଥାଏ । ଏ ସଂପର୍କରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କର ଗୋଟିଏ କବିତାର କିଛି ଅଂଶ ମୋର ମନେ ପଡ଼ିଗଲା ।

"ଚାକିରି ଝକ୍‌ମାରି, ଏ ଜୀବନରେ ନାହିଁକର
ଖାମିଦ ହସିଲେ ହସି, ଅଖୁସିରେ ଖୁସି
ଗଧକୁ କହିଲେ ଘୋଡ଼ା ଦିନଯାଏ ହାଁଜିମାରି
ଚାକିରି ଝକ୍‌ମାରି....."

ନୀଳମଣିବାବୁଙ୍କର ସେ ଦିନର ସେ ସ୍ନେହ ବ୍ୟବହାର ଜୀବନରେ ଭୁଲି ହୋଇନାହିଁ ।

ଦୀର୍ଘ ୪୫ ବର୍ଷ ତଳର କଥା । ୧୯୬୯ ମସିହା ନଭେମ୍ବର ମାସ ୨୧ ତାରିଖ । ଓଡ଼ିଶାର ଅନ୍ୟତମ ବରପୁତ୍ର ଡକ୍ଟର ହରେକୃଷ୍ଣ ମହତାବଙ୍କ ଶୁଭ ଜନ୍ମତିଥି । ଏହି ଉପଲକ୍ଷେ କଟକର ରାଷ୍ଟ୍ରଭାଷ୍ୟ ଭବନ ହଲରେ ଏକ ଉତ୍ସବର ଆୟୋଜନ ହୋଇଥାଏ ।

ଗଢ଼ାହେଲା 'କବିଚନ୍ଦ୍ର ସମ୍ବର୍ଦ୍ଧନା ସମିତି' । ଡକ୍ଟର ମହତାବ ସଭାପତି ଓ ମୁଁ ସଂପାଦକ । ଅନ୍ୟମାନଙ୍କ ମଧ୍ୟରେ ବିଶିଷ୍ଟ ସାମ୍ବାଦିକ ଉଦୟନାଥ ଷଡ଼ଙ୍ଗୀ, ବିଚିତ୍ରାନନ୍ଦ କର, ନଗେନ ବେଉରିଆ ଉପସଭାପତି, ଶୁଭେନ୍ଦ୍ର ବର୍ମା ଓ ରବିନାରାୟଣ ମହାନ୍ତି ପ୍ରମୁଖ ଯୁଗ୍ମସଂପାଦକ ଥିଲେ । ଏମାନେ ସମସ୍ତେ ଆମ ପାଖରୁ ବିଦାୟ ନେଇ ଗଲେଣି ।

ଘଟଣାକ୍ରମରେ ବିଚିତ୍ରାନନ୍ଦ କର ଓ ନଗେନ ବେଉରିଆ 'ଉତ୍କଳ ସାହିତ୍ୟ ସମାଜ'ର ସଭାପତି ଓ ସଂପାଦକ ହେଲେ । ମୁଁ କାର୍ଯ୍ୟକାରୀ କମିଟିକୁ ନିର୍ବାଚିତ ହୋଇଥିଲି । ଆମେ ପୂର୍ବ ନିଷ୍ପତ୍ତିର ପରିବର୍ତ୍ତନ କଲୁ । କବିଚନ୍ଦ୍ର କାଳୀଚରଣଙ୍କ ଜୀବନଦେଖାରେ ତାଙ୍କ ତୈଳଚିତ୍ର ଶ୍ରୀରାମଚନ୍ଦ୍ର ଭବନରେ ପ୍ରଥମଥର ପାଇଁ ସ୍ଥାନ ପାଇଥିଲା । ତାହା ଆମ୍ଭମାନଙ୍କ ପାଇଁ ଗୋଟିଏ ମାନସିକ ବିଜୟ ବୋଲି ଆମେ ବିଚାରିଥିଲୁ ।

ସେ ପ୍ରଥା ଆଜିକାଲି ଚଳୁଛି କି ନାହିଁ, ମୁଁ ସେ କଥା ବୁଝିବାକୁ ଚେଷ୍ଟା କରିନାହିଁ ।

କବିଚନ୍ଦ୍ରଙ୍କ ଅବର୍ତ୍ତମାନରେ ମଧ୍ୟ ତାଙ୍କର ଜୟନ୍ତୀ ଉଭୟ କଟକ ଓ ଭୁବନେଶ୍ୱରରେ ପାଳିତ ହୋଇଥିଲା ।

ସେ ସମୟରେ କଟକର 'ଉତ୍କଳ ସାହିତ୍ୟ ସମାଜ' ସମିତି, ଜୀବିତାବସ୍ଥାରେ ସାରସ୍ୱତ ସାଧକମାନଙ୍କର ତୈଳଚିତ୍ରକୁ ଶ୍ରୀରାମଚନ୍ଦ୍ର ଭବନର ଫଟୋ ଗ୍ୟାଲେରୀରେ ସ୍ଥାନ ନଦେବାକୁ ନିଷ୍ପତ୍ତି ନେଇଥିଲେ ।

ମୋ ସାମ୍ବାଦିକ ଜୀବନରେ ଆଉଗୋଟିଏ ଉଲ୍ଲେଖନୀୟ ଘଟଣା ହେଉଛି, ଓଡ଼ିଶା ବିଧାନସଭାର ପଶ୍ଚିମ ପଟ ପ୍ରବେଶ ଦ୍ୱାରରେ ଲାଗିଥିବା ତ୍ରୁଟିପୂର୍ଣ୍ଣ ନାମଫଳକର ପରିବର୍ତ୍ତନା କରିବାରେ ମୋର ଭୂମିକା । ଓଡ଼ିଶା ପ୍ରଦେଶ ଗଠନ ପରଠାରୁ ପ୍ରଧାନମନ୍ତ୍ରୀ (ସ୍ୱାଧୀନତା ପୂର୍ବରୁ ପ୍ରଦେଶର ଶାସନମୁଖ୍ୟଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା) ଓ ମୁଖ୍ୟମନ୍ତ୍ରୀଙ୍କ ନାମ ତାଲିକା

ଓ ସେମାନଙ୍କ ଶାସନ ସମୟ ଥାଇ ଯେଉଁ ମାର୍ବଲ ଫଳକଟି ଲାଗିଥିଲା, ସେଥିରେ କେତେକ ତ୍ରୁଟି ଥିଲା।

ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାର ପ୍ରଥମ ମୁଖ୍ୟମନ୍ତ୍ରୀ ଥିବା ସ୍ଥଳେ ସେ ଫଳକଟିରେ ନବକୃଷ୍ଣ ଚୌଧୁରୀଙ୍କୁ ପ୍ରଥମ ମୁଖ୍ୟମନ୍ତ୍ରୀ ବୋଲି ଦର୍ଶାଯାଇଥିଲା। ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ନୂତନ ସମ୍ବିଧାନ ପ୍ରବର୍ତ୍ତିତ ହେବା ପରେ ରାଜ୍ୟର ପ୍ରଧାନମନ୍ତ୍ରୀଙ୍କୁ ମୁଖ୍ୟମନ୍ତ୍ରୀ କୁହାଗଲା। ଡକ୍ଟର ହରେକୃଷ୍ଣ ମହତାବ ୧୯୫୦ ମସିହା ଜାନୁଆରୀ ୨୬ ତାରିଖରୁ ୧୯୫୦ ମସିହା ମେ ମାସି ୧୨ ତାରିଖ ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ।

ମୁଁ ଏ ତ୍ରୁଟି ସମ୍ପର୍କରେ ପ୍ରଥମେ ବାଚସ୍ପତି ମହେଶ୍ୱର ମହାନ୍ତିଙ୍କ ଦୃଷ୍ଟି ଆକର୍ଷଣ କରି ତା'ର ସଂଶୋଧନ ନିମନ୍ତେ ନିବେଦନ କରିଥିଲି। ସେ ମୋ ପତ୍ର ପାଇ କହିଲେ, "ବସନ୍ତ ଭାଇ! ଭିଧାନସଭା କ'ଣ ଭୁଲ, ଆଉ ଆପଣ ଠିକ୍?"

ଶ୍ରୀ ମହାନ୍ତିଙ୍କ ପରେ ଆଉ ଦୁଇଜଣ ବାଚସ୍ପତି କ୍ଷମତାସୀନ ଥିଲେ। ମୁଁ ସେମାନଙ୍କୁ ମଧ୍ୟ ପତ୍ର ଲେଖିଥିଲି। ହେଲେ କୌଣସି କାର୍ଯ୍ୟାନୁଷ୍ଠାନ ହୋଇନଥିଲା। ମୁଁ କିନ୍ତୁ ଧୈର୍ଯ୍ୟ ହରାଇ ନଥିଲି। ପଞ୍ଚଦଶ ବିଧାନସଭାର ବାଚସ୍ପତି ନିରଞ୍ଜନ ପୁଜାରୀଙ୍କୁ ଏ ସମ୍ପର୍କରେ ଏକ ପତ୍ର ଲେଖି ଫଳକରେ ଥିବା ତ୍ରୁଟିର ସଂଶୋଧନ ପାଇଁ ନିବେଦନ କଲି। ମୋ ପତ୍ର ସହିତ ଏ ସଂକ୍ରାନ୍ତରେ ତତ୍କାଳୀନ ମୁଖ୍ୟ ଶାସନ ସଚିବଙ୍କ ଦସ୍ତଖତରେ ଜାରି ହୋଇଥିବା ଏକ ନୋଟିଫିକେସନର କପି ମଧ୍ୟ ସଂଲଗ୍ନ କରିଥିଲେ।

ଏହି ପତ୍ରରେ ଏକ ନକଲ ମୁଁ ବିରୋଧୀ ଦଳ ନେତା ନରସିଂହ ମିଶ୍ରଙ୍କୁ ଦେଇଥିଲି। ଶ୍ରୀ ମିଶ୍ର ୨୦୧୪ ମସିହାର ବିଧାନସଭା ବଜେଟ ଅଧିବେଶନ କାଳରେ ବ୍ୟୟ ମଞ୍ଜୁରୀ ବିଲ୍‌ର ଆଲୋଚନା ସମୟରେ ମୋ ପତ୍ର ସମ୍ପର୍କରେ ଗୃହରେ ଉଲ୍ଲେଖ କରିଥିଲେ।

ବାଚସ୍ପତି ଶ୍ରୀ ପୁଜାରୀ ଏହା ଉପରେ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ବୋଲି ଘୋଷଣା କରିଥିଲେ। ୨୦୧୪ ମସିହାର ବିଧାନସଭାର ଶୀତକାଳୀନ ଅଧିବେଶନ ପୂର୍ବରୁ ତ୍ରୁଟିପୂର୍ଣ୍ଣ ନାମଫଳକଟି ଉଠାଇନେଇ ନୂଆ ଫଳକଟିଏ ଲାଗିଯାଇଥିଲା।

ଏହା ମୋ ସାମ୍ବାଦିକ ଜୀବନର ଏକ ସଫଳତା ବୋଲି ମୁଁ ବିଚାର କରେ।

# ପରିଶିଷ୍ଟ

## ଲେଖକଙ୍କର ଜୀବନ ସ୍ରୋତ

| | | |
|---|---|---|
| **ଜନ୍ମ** | ଅବିଭକ୍ତ କଟକ ଜିଲ୍ଲାର ବିରିଡ଼ି ବ୍ଲକ ଅନ୍ତର୍ଗତ ମଇଁଦିପୁର ଗ୍ରାମରେ ଜାନୁୟାରୀ ଦୁଇ ତାରିଖ ଉଣେଇଶ ଚାଳିଶି ମସିହା | |
| **ଶିକ୍ଷା** | ମାଟ୍ରିକୁଲେସନ | ପ୍ୟାରୀମୋହନ ଏକାଡେମୀ, କଟକ |
| | ବି.ଏ. ଡିଗ୍ରୀ | କ୍ରାଏଷ୍ଟ କଲେଜ୍, କଟକ |
| | ସ୍ନାତକୋତ୍ତର ଡିଗ୍ରୀ (ରାଜନୀତି ବିଜ୍ଞାନ) | ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର |
| | ଆଇନ୍ ବିଦ୍ୟା ଅଧ୍ୟୟନ | ମଧୁସୂଦନ ଲ' କଲେଜ୍, କଟକ |

### ସାମ୍ବାଦିକ ଜୀବନ

୧୯୬୫-୬୬ : ଦୈନିକ 'ଇଷ୍ଟର୍ଣ୍ଣ ଟାଇମ୍ସ'ର କଟକ ରିପୋର୍ଟର

୧୯୬୬-୬୮ : କଟକରୁ ପ୍ରକାଶିତ ଦୈନିକ 'ଜନଶକ୍ତି'ର ସହସମ୍ପାଦକ ଓ ସ୍ୱତନ୍ତ୍ର ପ୍ରତିନିଧି

୧୯୬୮-୭୧ : 'ଅମୃତ ବଜାର ପତ୍ରିକା'ର ସାମୟିକ ପ୍ରତିନିଧି (କଟକ)

୧୯୭୧-୭୨ : ଭୁବନେଶ୍ୱରରୁ ପ୍ରକାଶିତ ଦୈନିକ 'ସ୍ୱରାଜ୍ୟ'ର ସହସମ୍ପାଦକ

୧୯୭୧-୭୯ : 'ଅମୃତ ବଜାର ପତ୍ରିକା' ଓ 'ଯୁଗାନ୍ତର'ର ଭୁବନେଶ୍ୱର ପ୍ରତିନିଧି

୧୯୭୯-୮୭ : 'ଅମୃତ ବଜାର ପତ୍ରିକା' ଓ 'ଯୁଗାନ୍ତର'ର କଟକ ପ୍ରତିନିଧି

୧୯୮୭-୯୪ : 'ଅମୃତ ବଜାର ପତ୍ରିକା' ଓ 'ଯୁଗାନ୍ତର'ର ସ୍ୱତନ୍ତ୍ର ପ୍ରତିନିଧି (ଭୁବନେଶ୍ୱର)

୧୯୯୪-୯୬ : 'ପତ୍ରିକା ଗ୍ରୁପ୍ ଅଫ୍ ପେପର' ('ଅମୃତ ବଜାର ପତ୍ରିକା' ଓ 'ଯୁଗାନ୍ତର' ଓ 'ନର୍ଦ୍ଦନ୍ ଇଣ୍ଡିଆ ପତ୍ରିକା')ର ଓଡ଼ିଶା ପାଇଁ ବ୍ୟୁରୋ ଚିଫ୍

୧୯୯୬-୦୨ : ସାପ୍ତାହିକ 'ଅନୁସନ୍ଧାନ'ର ସମ୍ପାଦକ

୨୦୦୨ରୁ : ମୁକ୍ତବୃତ୍ତ ସାମ୍ବାଦିକ ଓ ସ୍ତମ୍ଭକାର ଭାବରେ କାର୍ଯ୍ୟରତ

## ସାମ୍ବାଦିକତା କ୍ଷେତ୍ରରେ ଉଲ୍ଲେଖନୀୟ ଭୂମିକା :

୧୯୬୬-୮୯ : 'ଉତ୍କଳ ସାମ୍ବାଦିକ ସଂଘ' କାର୍ଯ୍ୟକାରୀ କମିଟିର ସଦସ୍ୟ
୧୯୬୬-୮୯ : 'ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘ' ଜାତୀୟ ପରିଷଦ ସଦସ୍ୟ
୧୯୮୩-୮୭ : 'ଉତ୍କଳ ସାମ୍ବାଦିକ ସଂଘ'ର ସାଧାରଣ ସମ୍ପାଦକ
୧୯୮୫-୦୫ : ଓଡ଼ିଶା ବିଧାନସଭା ପ୍ରେସ୍ ଆଡଭାଇଜରି କମିଟି ସଦସ୍ୟ
୧୯୮୬-୮୮ : ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରେସ୍ ଆକ୍ରିଡିଟେସନ୍ କମିଟି ସଦସ୍ୟ
୧୯୮୭-୮୯ : ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘର ଉପସଭାପତି
୧୯୮୭-୮୯ : ଭାରତ ସରକାରଙ୍କ ସୂଚନା ଓ ପ୍ରସାରଣ ମନ୍ତ୍ରାଳୟ ପକ୍ଷରୁ ଗଠିତ କେନ୍ଦ୍ରୀୟ ପ୍ରେସ୍ ଆକ୍ରିଡିଟେସନ୍ କମିଟି ସଦସ୍ୟ
୧୯୯୯ : ମିଡିଆ ଏକାଡେମି, ଓଡ଼ିଶାର ପ୍ରତିଷ୍ଠାତା
୨୦୦୩ : ଓଡ଼ିଶା ବିଧାନସଭା ଶ୍ରେଷ୍ଠ ବିଧାୟକ ଚୟନ କମିଟିର ପ୍ରଥମ ସଦସ୍ୟ

## ସାଂଗଠନିକ କୃତିତ୍ୱ :

୧୯୬୪-୬୫ : 'ନିଖିଳ ଉତ୍କଳ ଛାତ୍ର ୟୁନିଅନ୍' କଟକ ଜିଲ୍ଲା ଶାଖାର ସମ୍ପାଦକ
୧୯୬୫-୬୬ : 'ନିଖିଳ ଉତ୍କଳ ଛାତ୍ର ୟୁନିଅନ୍'ର ରାଜ୍ୟସ୍ତରୀୟ ସାଧାରଣ ସମ୍ପାଦକ
୧୯୬୫-୭୨ : 'ଓଡ଼ିଶା କୁସ୍ତି ଓ ଭାରୋତ୍ତଳନ ସଂଘ'ର ଯୁଗ୍ମ ସମ୍ପାଦକ
୧୯୭୦ : କଟକଠାରେ ଅନୁଷ୍ଠିତ 'ନାସ୍‌ନାଲ୍ ଗେମ୍ସ' ପରିଚଳନା କମିଟିର ଯୁଗ୍ମ ସମ୍ପାଦକ
୧୯୯୦-୯୫ : ଭୁବନେଶ୍ୱର ମ୍ୟୁନିସିପାଲିଟି ହସ୍ପିଟାଲ୍ ବ୍ଲଡ୍ ବ୍ୟାଙ୍କ୍ ପରିଚାଳନା କିମିଟି ସଦସ୍ୟ
୧୯୯୦-୯୫ : କ୍ୟାପିଟାଲ୍ ହସ୍ପିଟାଲ୍ ପରାମର୍ଶଦାତା କମିଟି ସଦସ୍ୟ
୧୯୯୩-୯୭ : ସ୍ୱେଚ୍ଛାସେବୀ ଅନୁଷ୍ଠାନ 'ସ୍ନେହ'ର ପ୍ରତିଷ୍ଠାତା ସମ୍ପାଦକ
୧୯୯୫-୦୫ : 'ୟୁନିଅନ୍ ଫ୍ରେଣ୍ଡସ୍'ର ପ୍ରତିଷ୍ଠାତା ସାଧାରଣ ସମ୍ପାଦକ
୨୦୦୪-୧୪ : ସ୍ୱାମୀ ବିବେକାନନ୍ଦ ମେମୋରିଆଲ୍ ସ୍ୱୟଂଶାସିତ କଲେଜ୍ ପରିଚାଳନା କମିଟିର ସଦସ୍ୟ
ଭାରତୀୟ ରେଡ୍‌କ୍ରସ୍ ସୋସାଇଟି ଓଡ଼ିଶା ଶାଖାର ଆଜୀବନ ସଦସ୍ୟ

## ପ୍ରକାଶିତ ପୁସ୍ତକାବଳୀ:

୧୯୯୭ : ଜାତୀୟକବି ବୀରକିଶୋର
୧୯୯୮ : ଦେଶପ୍ରେମୀ ନିତ୍ୟାନନ୍ଦ କାନୁନ୍‌ଗୋ
୧୯୯୮ : ଜନତାର ନେତା ବୀରେନ୍ ମିତ୍ର
୧୯୯୯ : ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବ
୧୯୯୯ : ସ୍ୱାଧୀନତା ସଂଗ୍ରାମୀ ବିବୁଧେନ୍ଦ୍ର ମିଶ୍ର
୨୦୦୦ : 'ଓଡ଼ିଶା' (ସଂକଳନ)
୨୦୦୧ : 'ଓଡ଼ିଶା ରାଜନୀତିର ଗୋପନ କଥା'
୨୦୦୪ : 'ଫୁଟ୍ ପ୍ରିଣ୍ଟସ୍ ଅଫ୍ ଇଭେଣ୍ଟଫୁଲ୍ ଡେଜ୍, ଓଡ଼ିଶା ୧୮୦୩-୨୦୦୩'
୨୦୦୬ : 'ଅକୁହା କଥା'
୨୦୦୯ : 'କଟକ ନଗର ଧବଳ ଟଗର'
୨୦୦୯ : 'ଯେ ଦେଶେ ଯାଇ ସେ ଫଳ ଖାଇ'
୨୦୧୦ : ପ୍ରବନ୍ଧ ପୟୋଧି (ସଂକଳନ)
୨୦୧୧ : ପ୍ଲାଟିନମ୍ ଜୁବୁଲି ଅଫ୍ ଓଡ଼ିଶା ପଲିଟିକ୍ସ
୨୦୧୩ : ଓଡ଼ିଆ ଜାତୀୟତାର ଜନକ ମଧୁସୂଦନ
୨୦୧୪ : ବସନ୍ତ ପଞ୍ଚସପ୍ତତି

## ବିଭିନ୍ନ ସଂସ୍ଥା ଓ ସଂଗଠନ ପକ୍ଷରୁ ସମ୍ମାନ ଓ ପୁରସ୍କାର

୧୯୫୩ : ପ୍ରଜତନ୍ତ୍ର ପ୍ରଚାର ସମିତି ପକ୍ଷରୁ 'ଶ୍ରେଷ୍ଠମୀନା' ଭାବରେ ପୁରସ୍କୃତ
୧୯୬୨ : ପ୍ରତିରକ୍ଷା ମନ୍ତ୍ରାଳୟ ପକ୍ଷରୁ ଆୟୋଜିତ ସିନିଅର୍‌ର ଡିଭିଜନ୍ ଏନ୍.ସି.ସି.ର ଆଡ୍‌ଭାନ୍ସ ଲିଡରସିପ୍ କୋର୍ସ ସମାପ୍ତ କରି ସମ୍ମାନୀତ
୧୯୬୪ : ଶ୍ରେଷ୍ଠ ଅଣ୍ଡର୍ ଅଫିସର୍ ଭାବରେ ପୁରସ୍କୃତ
୧୯୮୨ : 'କଟକ ମିଡ୍ ଟାଉନ୍ ରୋଟାରୀ କ୍ଲବ' ପକ୍ଷରୁ ପୁରସ୍କୃତ
୧୯୮୫ : ଓଡ଼ିଶାର ସାଂସ୍କୃତିକ କ୍ଷେତ୍ରକୁ ବିଶେଷ ଅବଦାନ ପାଇଁ 'ସପ୍ତଧାରା' ପକ୍ଷରୁ ସମ୍ମାନିତ
୧୯୯୯ : ସର୍ବାଧିକ ଜୀବନୀ ପୁସ୍ତକ ରଚନା ପାଇଁ 'ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର' ପକ୍ଷରୁ ସମ୍ମାନିତ

୨୦୦୨ : ସାମ୍ବାଦିକତା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ଓଡ଼ିଶା ପ୍ରେସ୍ ଏକାଡେମୀ ପକ୍ଷରୁ 'ପ୍ରଦ୍ୟୁମ୍ନ ବଳ' ସମ୍ମାନ

୨୦୦୩ : ଶ୍ରେଷ୍ଠ ସାମ୍ବାଦିକ ଭାବରେ 'ଚିନ୍ତା ଓ ଚେତନା' ପକ୍ଷରୁ ରାଷ୍ଟ୍ରୀୟ ସମ୍ମାନ

୨୦୦୩ : ରାଜୀବ ଗାନ୍ଧି ସଦ୍‌ଭାବନା ପୁରସ୍କାର

୨୦୦୭ : ରାଜଧାନୀ ପୁସ୍ତକମେଳା ପୁରସ୍କାର

୨୦୦୭ : ନିଖିଳ ଭାରତ କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ର ସମ୍ପାଦକ ପରିଷଦ ପକ୍ଷରୁ ଶ୍ରେଷ୍ଠ ସାମ୍ବାଦିକ ସମ୍ମାନ

୨୦୦୮ : 'ପିକକ୍' ପକ୍ଷରୁ ସ୍ୱରୂପ ଜେନା ସ୍ମାରକୀ ସମ୍ମାନ

୨୦୦୮ ପ୍ରାଣନାଥ ସ୍ମୃତି ସମ୍ମାନ

୨୦୧୦ : ରାଜନୈତିକ ସାପ୍ତାହିକ 'ନେତା' ପକ୍ଷରୁ ସମ୍ମାନୀତ

୨୦୧୧ : ସ୍ୱାମୀ ଦୟାନନ୍ଦ ସର୍ଭିସ୍ ମିଶନ ପକ୍ଷରୁ 'ଗୁରୁ ପ୍ରଣାମ' ସମ୍ମାନ

୨୦୧୧ : ସାପ୍ତାହିକ 'କ୍ୟାପିଟାଲ୍ ପୋଷ୍ଟର' ପକ୍ଷରୁ ସମ୍ମାନୀତ

୨୦୧୧ : ସାପ୍ତାହିକ 'ସୁବାର୍ତ୍ତା' ପକ୍ଷରୁ ସୁବାର୍ତ୍ତା ଗୌରବ ପୁରସ୍କାର

୨୦୧୨ : ଜଷ୍ଟିସ୍ ରାଜକିଶୋର ଦାସ ସ୍ମାରକୀ ସମ୍ମାନ

୨୦୧୩ : ଭ୍ରମଣ କାହାଣୀ 'ଯେ ଦେଶ ଯାଇ ସେ ଫଳ ଖାଇ' ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମି ପୁରସ୍କାର

୨୦୧୩ : ଗୌରୀଶଙ୍କର ସ୍ମୃତିସମ୍ମାନ

## ବିଦେଶ ଭ୍ରମଣ

୧୯୮୫ : ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘ ପ୍ରତିନିଧି ଦଳରେ ଡି.ପି.ଆର (ଉତ୍ତର କୋରିଆ), ଅବିଭକ୍ତ ସୋଭିଏତ୍‌ଋଷ, ନେଦରଲାଣ୍ଡ, ଜର୍ମାନୀ, ସ୍ୱିଜରଲାଣ୍ଡ, ଫ୍ରାନ୍ସ, ଇଂଲଣ୍ଡ ଓ ବେଲଜିଅମ୍ ଭ୍ରମଣ

୨୦୦୬ : ଚେକ୍ ରିପବ୍ଲିକ, ଅଷ୍ଟ୍ରିଆ, ପୂର୍ବ ଜର୍ମାନୀ ପରିଦର୍ଶନ

୨୦୦୭ : ପୋଲାଣ୍ଡ ଓ ଅନ୍ୟାନ୍ୟ ୟୁରୋପୀୟ ରାଷ୍ଟ୍ର ଗସ୍ତ

୨୦୦୮ : କାନାଡ଼ାର ଟରୋଣ୍ଟୋଠାରେ ଅନୁଷ୍ଠିତ ଆମେରିକା ଓଡ଼ିଆ ସୋସାଇଟିର ୩୯ତମ ଅଧିବେଶନରେ ଅତିଥି ଭାବେ ଯୋଗଦାନ

୨୦୦୮ : ଯୁକ୍ତରାଷ୍ଟ୍ର ଆମେରିକାର ନ୍ୟୁୟର୍କ, ନ୍ୟୁଜର୍ସି, କାଲିଫର୍ଣ୍ଣିଆ, ସାନ୍‌ଜୋସେ, ସାନ୍‌ଫ୍ରାନ୍‌ସିସ୍କୋ, ଆଲ୍‌ବାମା, ୱାଶିଂଟନ୍ ଡି.ସି ଇତ୍ୟାଦି ରାଷ୍ଟ୍ର ଭ୍ରମଣ



୧୯୪୦ ମସିହାରେ ଅବିଭକ୍ତ କଟକ ଜିଲ୍ଲାରେ ଜନ୍ମିତ ବସନ୍ତ ଦାସ ଓଡ଼ିଶାର ସାମ୍ବାଦିକତା କ୍ଷେତ୍ରରେ ସୁପରିଚିତ । ପରିଣତ ବୟସରେ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରି ସେ ଯଶସ୍ୱୀ ହୋଇଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିବା ସହିତ ମଧୁସୂଦନ ଲ' କଲେଜରେ ସେ ଆଇନବିଦ୍ୟା ଅଧ୍ୟୟନ କରିଥିଲେ । ପରେ ସରକାରୀ ଚାକିରି ନକରି ସାମ୍ବାଦିକତା ବୃତ୍ତିକୁ ପେସା ଭାବରେ ଗ୍ରହଣ କରିଥିଲେ। କଟକରୁ ପ୍ରକାଶିତ ଇଂରାଜୀ ଦୈନିକ 'ଇଷ୍ଟର୍ଣ୍ଣ ଟାଇମ୍ସ'ରୁ ସାମ୍ବାଦିକତା ଆରମ୍ଭ କରିଥିବା ଶ୍ରୀ ଦାସ 'ଅମୃତ ବଜାର ପତ୍ରିକା' ଗ୍ରୁପ୍‌ର ଓଡ଼ିଶା ବ୍ୟୁରୋମୁଖ୍ୟ ଭାବରେ କାର୍ଯ୍ୟ କରି ଅବସର ଗ୍ରହଣ କରିଛନ୍ତି। ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ତାଙ୍କ ରଚିତ ୧୬ଖଣ୍ଡ ପୁସ୍ତକ ମଧ୍ୟରୁ 'ଫୁଟ୍‌ପ୍ରିଣ୍ଟ୍‌ସ୍ ଅଫ୍ ଇଭେଣ୍ଟଫୁଲ୍ ଡେଜ୍'କୁ ଓଡ଼ିଶାର ଊନବିଂଶ ଓ ବିଂଶ ଶତାବ୍ଦୀର ସାମାଜିକ ଓ ରାଜନୈତିକ ଘଟଣାବଳୀର ଏକ ବିଶେଷ ଇତିହାସଗ୍ରନ୍ଥ ଭାବରେ ବିବେଚନା କରାଯାଏ। ଭ୍ରମଣକାହାଣୀ ପୁସ୍ତକ 'ଯେ ଦେଶ ଯାଇ ସେ ଫଳ ଖାଇ' ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଛନ୍ତି। ଭାରତୀୟ ପେସାଦାର ସାମ୍ବାଦିକ ମହାସଂଘର ପ୍ରତିନିଧି ଦଳରେ ଯୋଗଦେଇ ସେ ଉତ୍ତର କୋରିଆ, ଅବିଭକ୍ତ ସୋଭିଏତ୍ ଋଷ, ନେଦରଲାଣ୍ଡ, ପଶ୍ଚିମ ଜର୍ମାନୀ, ଫ୍ରାନ୍ସ, ସ୍ୱିଜରଲାଣ୍ଡ, ଇଂଲଣ୍ଡ, ବେଲଜିଅମ୍ ଆଦି ଗସ୍ତ କରିବା ସହିତ ପରବର୍ତ୍ତୀ କାଳରେ ଚେକ୍ ରିପବ୍ଲିକ, ଅଷ୍ଟ୍ରିଆ, ପୋଲାଣ୍ଡ, ପୂର୍ବ ଜର୍ମାନୀ, କାନାଡ଼ା ଓ ଯୁକ୍ତରାଷ୍ଟ୍ର ଆମେରିକା ଭ୍ରମଣ କରିଛନ୍ତି।

ସଂପ୍ରତି ଜଣେ ମୁକ୍ତବୃତ୍ତ ସାମ୍ବାଦିକ ଭାବରେ କାର୍ଯ୍ୟରତ ଶ୍ରୀ ଦାସ 'ମିଡିଆ ଏକାଡେମି, ଓଡ଼ିଶା'ର ପ୍ରତିଷ୍ଠାତା । 'ବସନ୍ତ ପଞ୍ଚସପ୍ତତି' ତାଙ୍କର ଅନୁପମ ଆତ୍ମକଥା ।





ISBN 81-89436-92-9